

## ଡ଼. ଦ୍ୱାରିକାନାଥ ନାୟକ

ନାଟକ, ସାହିତ୍ୟ ଏବଂ ସଂସ୍କୃତି
କ୍ଷେତ୍ରରେ ଡକ୍ଟର ଦ୍ୱାରିକାନାଥ
ନାୟକ ଜଣେ ପରିଚିତ ବ୍ୟକ୍ତିତ୍ୱ ।
ତାଙ୍କ ଅଭିନୟ, ନିର୍ଦ୍ଦେଶିତ ତଥା
ସଂଗୀତ ନିର୍ଦ୍ଦେଶନାରେ ଅନେକ
ଓଡ଼ିଆ ତଥା ସମ୍ବଲପୁରୀ ନାଟକ
ଜିଲ୍ଲା, ରାଜ୍ୟ ତଥା
ଜାତୀୟସ୍ତରରେ ପୁରସ୍କୃତ ଏବଂ
ପ୍ରଶଂସିତ ହୋଇଛି । ତାଙ୍କ ରଚିତ
ପ୍ରକାଶିତ ପୁସ୍ତକଭାବରେ
ଉଲ୍‌ଗୁଲାନ୍ (ନାଟକ),
ସମ୍ବଲପୁରୀ ଲୋକଗୀତରେ
ସମାଜ ଜୀବନର ସ୍ୱରୂପ ପାଠକ
ମହଲରେ ଆଦୃତ ହୋଇଛି ।
ଏତଦ୍‌ବ୍ୟତିତ ତାଙ୍କ ସମ୍ପାଦନାରେ
ଲୋକକବି ହଳଧର ଗ୍ରନ୍ଥାବଳୀ
ଏବଂ ପଶ୍ଚିମ ଓଡ଼ିଶାର
ଲୋକନୃତ୍ୟ ଗ୍ରନ୍ଥଦ୍ୱୟ ପ୍ରକାଶିତ ।
ଅବସର ପରେ ଏବେ ସେ ତାଙ୍କ
ସମ୍ବଲପୁର ଧନୁପାଲିସ୍ଥିତ ନିଜର
ବାସଭବନରେ ସପରିବାରେ
ଅବସ୍ଥାନ କରୁଛନ୍ତି ।

## ନିଜସ୍ୱ ସଂଳାପ


ଲେଖକ - ଡ. ଦ୍ୱାରିକାନାଥ ନାୟକ

ପ୍ରକାଶକ - ଡ. ଦ୍ୱାରିକାନାଥ ନାୟକ
ଧନୁପାଲି, ସମ୍ବଲପୁର-୭୬୮୦୦୫
ଓଡ଼ିଶା

ପ୍ରଥମ ସଂସ୍କରଣ- ୨୦୨୧

ଅକ୍ଷରସଜ୍ଜା - ବାଲଗୋପାଲ ପଣ୍ଡା

ପ୍ରଚ୍ଛଦ - ଗୌରାଙ୍ଗ ମିତ୍ର

ମୁଦ୍ରଣ - ପ୍ରିଣ୍ଟେକ, ସମ୍ବଲପୁର
୯୪୩୭୧ ୩୨୮୦୯

ମୂଲ୍ୟ - ୪୫୦/- ଟଙ୍କା ମାତ୍ର

**NIJASWA SANLAPA**

Writer - **Dr. Dwarikanath Nayak**

Publisher - **Dr. Dwarikanath Nayak**
Dhanupali, Sambalpur
768005 (Odisha)

1st Edition - 2021

DTP - **Balgopal Panda**

Cover - **Gouranga Mitra**

Printed at - Printech Sambalpur
94371 32809

Price - Rs 450/-

**ସଙ୍କଳ୍ପ....**

ଆତ୍ମଜୀବନୀ ରଚନା କରିବାର ଅଭିପ୍ରାୟ ଜନ୍ମନେଇଥିଲା ଅନ୍ତରଙ୍ଗ ବନ୍ଧୁମାନଙ୍କ ଅନୁରୋଧରୁ । ତେବେ, ମୋ ଜୀବନରେ ଘଟିଥିବା ଘଟଣାସବୁ, ଅନ୍ୟ ସାଧାରଣ ମଣିଷଙ୍କ ଗତାନୁଗତିକ ଜୀବନ ଭଳି, ତେବେ ବିଶେଷତା ରହିଛି ମୋ ସାଂସ୍କୃତିକ ଜୀବନରେ, ଯାହା ମର୍ମେମର୍ମେ ମୁଁ ଅନୁଭବ କରିଥିଲି । ତେଣୁ, ଏହି ପୁସ୍ତକ କେବଳ ଆତ୍ମଜୀବନୀ ଭିତରେ ସୀମିତ ରହିନାହିଁ, ବରଂ ଆତ୍ମାନୁଭୂତିରେ ପରିପୂର୍ଣ୍ଣ । ସଂସ୍କୃତି କ୍ଷେତ୍ରର ସାହିତ୍ୟ, ନାଟକ ଏବଂ ସଂଗୀତ ମୋ ସମଗ୍ର ଜୀବନକୁ ଆଚ୍ଛାଦିତ କରିଛି । ଏହି ପୁସ୍ତକର ତାହା ହିଁ ମୂଳାଧାର । ଆଗରୁ ଲେଖିବାର ଇଚ୍ଛା ଥିଲା, ଅବସର ପରେ ଅସୁସ୍ଥତା ଯୋଗୁଁ ଲେଖି ପାରିନଥିଲି । ତେବେ କରୋନା କାଳର ନୀରବତାରେ ଅନ୍ତରାତ୍ମାର ଗର୍ଜନ ମୋ ସମଗ୍ର ଶରୀରକୁ ରୋମାଞ୍ଚିତ କଲା । ଫଳସ୍ୱରୂପ, ଦୈନନ୍ଦିନ ଅଭ୍ୟାସ ମୁତାବକ ଫେସବୁକ୍ ପୃଷ୍ଠାରେ କରୋନା ସଂଳାପ ଧାରାବାହିକ ପରେ ଆରମ୍ଭ କଲି ଜୀବନାନୁଭୂତିର ଆଲେଖ୍ୟ 'ନିଜସ୍ୱ ସଂଳାପ' । ଫେସବୁକ୍ ପୃଷ୍ଠାରେ ପାଠକରି ସଂଖ୍ୟାଧିକ ପାଠକ ଉତ୍ସୁକତାର ସହ ପ୍ରେରଣା ଯୋଗାଇଲେ । କ୍ରମେ ଏହି ଧାରାବାହିକ ମୋର ସମଗ୍ର ସାଂସ୍କୃତିକ ଜୀବନକୁ ସ୍ଥାନିତ କଲା ଶହେଟି ଅଧ୍ୟାୟରେ । ଲେଖାଟି ଅନେକ ବରିଷ୍ଠ, କନିଷ୍ଠ ଶୁଭେଚ୍ଛୁମାନଙ୍କ ନିତିଦିନିଆ ପାଠକର ମାନ୍ୟତା ପ୍ରଦାନ କରିଥିଲା ଏବଂ ସେହିମାନଙ୍କ ଅନୁପ୍ରେରଣାରେ ତାହା ଆଜି ପୁସ୍ତକାକାରରେ ପ୍ରକାଶିତ ।

ଏହା କେବଳ ମୋ ଜୀବନକାହାଣୀ ନୁହେଁ, ଅନେକ ଅଧ୍ୟାୟରେ ବନ୍ଧୁବର୍ଗ ଆସିଛନ୍ତି, କଳାକାରମାନେ ଅନୁପ୍ରବେଶ କରିଛନ୍ତି, ସଂଖ୍ୟାଧିକ ବରିଷ୍ଠ ମାର୍ଗନିଦର୍ଶକମାନେ ପ୍ରବେଶ କରିଛନ୍ତି, ସେମାନଙ୍କ ଜୀବନର କିୟଦଂଶ ମଧ୍ୟ ଆପେଆପେ ପ୍ରତିଫଳିତ ହୋଇଯାଇଛି ମୋ ଜାଣତରେ, ବେଳେବେଳେ ଅଜାଣତରେ । ନାଟକ ସମ୍ପର୍କିତ ଘଟଣା ଅଧିକନ୍ତୁ ବିସ୍ତାରିତ ହୋଇଛି ଏହି ଆଲେଖ୍ୟରେ । ଯେହେତୁ ନାଟ୍ୟମଞ୍ଚରେ ପଚାଶବର୍ଷରୁ ଅଧିକ କାଳ ଅତିବାହିତ ହୋଇଗଲାଣି, ତେଣୁ, ସମ୍ବଲପୁର ସହରର ରଙ୍ଗମଞ୍ଚର ଚିତ୍ର ଏହି ଆଲେଖ୍ୟର ମୁଖ୍ୟ ଉପାଦାନ ପାଲଟି ଯାଇଛି ।

ପୁସ୍ତକଟି ଆଜି ପାଠକମାନଙ୍କ ହାତକୁ ଆସିଛି । ଏହା ମୋ ପାଇଁ ଖୁସି ଓ ଗର୍ବର ବିଷୟ । ପୁସ୍ତକର ରୂପରେଖ ଗ୍ରହଣ କରିବାରେ ବନ୍ଧୁ ଶତ୍ରୁଘ୍ନଲାଲ ସାହାଙ୍କ ସହଯୋଗ ଏବଂ ସଦିଚ୍ଛା ଊଣା ଅଧିକେ ଦାୟୀ । ଏପରି ବନ୍ଧୁ ଜଣେ ପାଖରେ ଥିଲେ, ଗଡ଼ ଜୟ କରିବା ପାଇଁ ବିଶେଷ ସମୟ ଲାଗେନାହିଁ ।

ପୁଅ ଡ. ଶ୍ରୀବତ୍ସ ନାୟକ (ପଞ୍ଚମ), ଝିଅ ଶ୍ରୀରୂପା ନାୟକ (ପୂନମ୍), ଏ ଦୁହେଁ ମୋର ବାମ ଓ ଡାହାଣ ହସ୍ତ, ଯେତେବେଳେ ଯାହା ଆବଶ୍ୟକ କରେ, ଏମାନେ ଅନାୟାସରେ ହାତରେ ଯାଚିଦେଉଥିଲେ ସମ୍ବଳ, ସେ କଲମ ହେଉ ଅବା ବଲମ । ସହଧର୍ମିଣୀ ଶ୍ରୀମତୀ ଉମାରାଣୀ ନାୟକଙ୍କ ନୀରବ ସମର୍ଥନ ମୋ ପାଇଁ ଥିଲା ଆଶାର ଆକାଶ ।

ଡ. ଗୋବିନ୍ଦ ମହାରଣା, ଡ. ଗୌରୀଦାସ ପ୍ରଧାନ, ଡ. ସିଦ୍ଧାର୍ଥ ପଣ୍ଡା. ଡ. ପ୍ରଦୀପକୁମାର ପଣ୍ଡା ଆଦି ସହଯୋଗୀ ବନ୍ଧୁବର୍ଗଙ୍କ ଶୁଭେଚ୍ଛା ସଦା ସ୍ମରଣୀୟ ।

ଅକ୍ଷରସଜ୍ଜାରେ ବାଲଗୋପାଳ ପଣ୍ଡା ଏବଂ ମୁଦ୍ରଣରେ ଗୌରବ କାଡିଆଙ୍କ ସମୟୋପଯୋଗୀ ସହଯୋଗ ପାଇଁ ଏହି ପୁସ୍ତକ ଆଖି ମେଲିବାରେ ସମର୍ଥ ହେଲା ।

ମୋ ସାଂସ୍କୃତିକ ଜୀବନର କେବଳ ସାହିତ୍ୟିକ ରୂପରେଖ ଦିଆଯାଇଛି, ମିଥ୍ୟା ଅବା ଅତିରଞ୍ଜନକୁ ବିଲ୍‌କୁଲ୍ ପ୍ରଶ୍ରୟ ଦେଇନାହିଁ । ଏହା ହିଁ ଲେଖକଭାବରେ ମୋର ସଙ୍କଳ୍ପ ।

– ଡ. ଦ୍ୱାରିକାନାଥ ନାୟକ

ଜୀବନର ଆରମ୍ଭ ଯେଉଁଠୁ, ଶେଷ ମଧ୍ୟ ସେଇଠି ବୋଲି ସମସ୍ତେ କହନ୍ତି । ହେଲେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦୂରତା, କେତେ ତାକୁ ମାପିବା ଯନ୍ତ୍ର ଏ ଯାଏଁ ଆବିଷ୍କାର ହୋଇ ନାହିଁ । ଯେବେ ହେବ, ଏହି ମୂଲ୍ୟବାନ ଜୀବନ ନିଜନିଜ ରିମୋର୍ଟ ଦ୍ୱାରା ଗତିଶୀଳ ହେବ, ଚାହିଁଲେ ଶିଥୀଳ ମଧ୍ୟ କରିହେବ । ବଞ୍ଚୁଥିବା କାଳତକ କାହାର କେମିତି ବିତିଲା, ଚାହିଁବା ଭାବବସ୍ତୁ ମିଳିଲା ନା ନାହିଁ, ଅଭିଳାଷ ପୂରା ହେଲା ନା ଅପୂରଣୀୟ ରହିଗଲା, ଜୀଇଁବାର ଗତିପଥ ସରଳରେଖା ସହ ସମତାଳରେ ଯାତ୍ରା କଲା, ନା ଅଙ୍କାବଙ୍କା ନଈ ପରି ସର୍ପିଳ ହୋଇଗଲା, ସାଥୀ ସହୋଦର, ପରିବାରବର୍ଗଙ୍କ ସହ ସମଗତିରେ ଗଲା ନା ନିଃସଙ୍ଗ ମଲାଜହ୍ନ ପରି ଏକାଏକା ଭାସି ଚାଲିଲା ମେଘର ଆଢୁଆଳରେ, ଗତାନୁଗତିକ ରୂପରେଖରେ ସଜେଇ ହୋଇଗଲା ନା ଭିନ୍ନସ୍ୱାଦର ଐକାନ୍ତିକ ଭାବଧାରାରେ ମଜ୍ଜି ହୋଇଗଲା, ତାର ହିସାବ ନିକାଶ, ସେମାନେ ହିଁ କରିପାରନ୍ତି, ଯେଉଁମାନେ ଚିନ୍ତା ଓ ଚେତନାରେ ନିର୍ଣ୍ଣୟ ଓ ନିଷ୍ପତ୍ତିରେ ଗଠନ ଓ ଗଢ଼ଣରେ ଉଚ୍ଚାରଣ ଓ ଉତ୍ତରଣରେ ଭାବଭଙ୍ଗୀ ଓ ପ୍ରକାଶଭଙ୍ଗୀରେ ସୃଜନଶୀଳତାକୁ ଅଗ୍ରଭୂମିର ମାନ୍ୟତା ପ୍ରଦାନ କରିଥାନ୍ତି । ଭାଷାରେ ହେଉ ଅବା ତୂଳୀକାରେ, ପାଷାଣ ଛାତିରେ ଅବା ମୃଣ୍ମୟ କଳାରେ, ସାହିତ୍ୟରେ ଅବା ସାଙ୍ଗୀତିକ ଛନ୍ଦରେ ସେମାନେ ବୁଣି ଦେଇପାରନ୍ତି ଜୀବନର ପ୍ରତିଲିପି ।

ମୋ ଜୀବନଯାତ୍ରା, ସେମିତି କୌଣସି ଜଣେ ମହାପୁରୁଷ, ସିଦ୍ଧପୁରୁଷଙ୍କ ଭଳି ଗଢ଼ି ହୋଇପାରିନାହିଁ, ଯେ ମୋ ଆତ୍ମକାହାଣୀ ପାଠକରି ପାଠକ ଅଭିଭୂତ ହୋଇଯିବ ଏବଂ ତାକୁ ଅନୁସରଣ କରି ମହାତ୍ମା ହେବାର ଉଚ୍ଚାଭିଳାଷ ରଖିବ । ମୋ ଜୀବନ ସେମିତି କୌଣସି କ୍ଷେତ୍ରରେ ସେତିକି ଊର୍ଦ୍ଧ୍ୱସ୍ତରକୁ ଯାଇପାରି ନାହିଁ ଯେ ଅନ୍ୟ ପାଇଁ ଏକ ରୋଲ୍‌ମୋଡେଲ୍ ହୋଇପାରିବି । ଜୀବନର ସଫଳତା ଓ ବିଫଳତାର ମାପଦଣ୍ଡକୁ ବେଖାତିର କରି, ସବୁ ବାଧାବିଘ୍ନକୁ ସ୍ୱକୀୟ ବୌଦ୍ଧିକ ଶକ୍ତିର ପ୍ରୟୋଗରେ ଅତିକ୍ରମ କରି କେବଳ ଆଗକୁ ଆଗକୁ ଧାଇଁଯିବାରେ ହିଁ ଯେଉଁ ଆନନ୍ଦର ସ୍ୱାଦ ଟିକକ ପାଇଛି, ଲୁହଲହୁର ବିନିମୟରେ ଟନ୍‌ଟନ୍ ଶୂନ୍ୟତା ଲାଭ କରିଛି, ଦେଇଛି କେତେ ଆଉ ପାଇଛି କେତେ, ଗଣିତର ନିର୍ଣ୍ଣୟ ଉତ୍ତରକୁ କାହିଁ କେବେଠାରୁ ବାଟରେ ହଜେଇ ଦେଇଛି ଆଖି ମେଲା କଲେ ପୃଥିବୀଟା ମୋର, ମୁଜି ଦେଲେ ଅମୃତ ଅନ୍ଧାର, କର୍ଣ୍ଣ ଖୋଲିଲେ

ରାଜକୀୟ, ଗଳା ଚିପିଦେଲେ ରାସ୍ତାକଡ଼ର କାଙ୍ଗାଳ, ମଞ୍ଚରେ ଥିଲେ ନାୟକ, ଫୁଟ୍‌ପାଥକୁ ଉତୁରିଲେ ଦାଣ୍ଡର ଭିକାରୀ, ପରିବାର ଭିତରେ ଥିଲେ ସମ୍ପୂର୍ଣ୍ଣ ପାରିବାରିକ, ଦାଣ୍ଡର କବାଟ ଖୋଲିଲେ ଏକାକୀ ଗଜାରୋହୀ ! ! ଏମିତି ବୈଚିତ୍ର୍ୟମୟ ଜୀବନ ଆଦର୍ଶାପ୍ଲୁତ କେବେ ହୋଇପାରିବ ନାହିଁ ସିନା, ଆତ୍ମ ବିନୋଦନ ପାଇଁ, ରସ ଆସ୍ୱାଦନ ପାଇଁ, ଦୈନିକ ଖବର କାଗଜ ପରି କ୍ଷଣିକ ଆନନ୍ଦ ଦେବାରେ କିନ୍ତୁ ଆଦୌ କୁଣ୍ଠାବୋଧ କରିବ ନାହିଁ ।

ଅଧ୍ୟାପକ ଜନାର୍ଦ୍ଦନ ପାଣିଗ୍ରାହୀଙ୍କ ଭଳି କେତେଜଣ ହୃଦୟଗ୍ରାହୀ ବନ୍ଧୁ କେଇ ବର୍ଷ ତଳେ ମୋ ଭିତରେ କଣ ଦେଖିଲେ କେଜାଣି, କହିଥିଲେ, 'ଦାଦା ! ତମର ଆତ୍ମଜୀବନୀଟା ଲେଖିପକ, ବଢ଼ିଆ ହେବ ! !' ଅର୍ଥାତ୍, ମୋ ଜୀବନଯାତ୍ରାରେ ଏମିତି ଘଟଣାମାନ ଘଟିଯାଇଛି, ଯାହାର ଏକ ଜୀବନବୋଧ ରହିଛି, ସାହିତ୍ୟିକ ମୂଲ୍ୟ ରହିଛି, ଯାହା ମୋଠାରୁ ମୋ ବନ୍ଧୁବର୍ଗ ଅଧିକ ଜାଣିଛନ୍ତି । ମୁଁ ମଧ, ସେମିତି ଏକ ନିରୋଳା ମୁହୂର୍ତ୍ତକୁ ଅପେକ୍ଷା କରିଥିଲି, ଅତୀତକୁ ପୁଣିଥରେ ପ୍ରେମିକା ଭଳି ଭଲପାଇବି, ତୋଳିଆଣିବି ମୋ ଅନ୍ତଃସ୍ଥଳକୁ ଭାଷାରେ, ଶବ୍ଦରେ, ଅଳଙ୍କୃତ ପଦାବଳୀରେ, ରକ୍ତର ରଙ୍ଗରେ ସଜେଇଦେବି ଜୀବନର ରସାଳ କାଳଖଣ୍ଡିକୁ, ନିରସ ନିୟତିସର୍ପର ଦଂଶନକୁ, ମୁହୂର୍ତ୍ତ ମୁହୂର୍ତ୍ତର ଜୀବନାନୁଭୂତିକୁ ବଖାଣିଦେବି ପ୍ରିୟ ପାଠକମାନଙ୍କ ନିକଟରେ । ଆଜି ଏକାନ୍ତବାସର ନିଃସଙ୍ଗବେଳାରେ ସେ ସୁଯୋଗ ପାଇଛି, ପାଣ୍ଡୋରା ବାକ୍ସର ତାଲା ଭାଙ୍ଗି ଖୋଲିଦେବି ତାକୁ ସର୍ବସମ୍ମୁଖରେ, ସେମାନେ ହିଁ ଜାଣିବେ, ସେ ଜୀବନୀ ବାକ୍ସରେ ଅନ୍ଧାରୀ ଶୂନ୍ୟତା ଅଛି ନା ଅଛି ରଙ୍ଗୀନ ପ୍ରଜାପତିର ଚିତ୍ରପଟ ! ! !



ଏବେ, ଏଇ ମୁହୂର୍ତ୍ତରେ, ଏଇ ଧାଡ଼ି ଲେଖିଲାବେଳେ ଯେମିତି ମଧ ଆଷାଢ଼ରେ ଅପରାହ୍ନର ମେଘଭର୍ତ୍ତି ଆକାଶ, ତୁହାତୁହା ବର୍ଷା ଜଳରେ ସିକ୍ତଧରଣୀ, ଠିକ୍ ସେଭଳି ମୋ ଜନ୍ମଲଗ୍ନ ବି ଥିଲା କୁଆଡ଼େ ଅନବରତ ବର୍ଷଣମୁଖର ଭାଦ୍ରବର ପୂର୍ବାହ୍ନ, କୃଷପକ୍ଷ ଅଷ୍ଟମୀ ତିଥିର ଶେଷପ୍ରହର, ନବମୀର ପ୍ରଥମ ପ୍ରହରର ଝୁଲ୍‌ପୁଲ୍ ବେଳାରେ, ଜନ୍ମାଷ୍ଟମୀ ଏବଂ ନନ୍ଦୋତ୍ସବର ମଧବର୍ତ୍ତୀ ସମୟଖଣ୍ଡ, ବସୁଦେବ, ଟୋକେଇରେ ସଦ୍ୟଜନ୍ମିତ କୃଷ୍ଣଙ୍କୁ ମଥୁରାରୁ ନେଇ ଉହ୍ଲଳ, ଉହ୍ଲଳ ଯମୁନାର ଆରପାରି ଗୋପପୁରକୁ ଯାଇ ଯଶୋଦାଙ୍କ କୋଳରେ ଥୋଇ, ବିଜୁଳୀ କନ୍ୟାକୁ ସାଥିରେ ଆଣି ଦେବକୀଙ୍କ ପାଖରେ ରଖିଦେବାର ଅମୃତଲଗ୍ନରେ ଭୂମିଷ୍ଠ ହେଲି ସମ୍ବଲପୁର ହାଟପଡ଼ାରେ ଥିବା ମାମୁଁଙ୍କ ତିନିତାଲା କୋଠାର ଦ୍ୱିତୀୟ ମହଲାର ମଝିକୋଠରୀରେ ।

ଏବେ ସେ ଘର ଅଛି, ହେଲେ ସେ ଘର ଆଉ ମାମୁଁ ଘର ହୋଇନାହିଁ, ମକଦ୍ଦମାର ପଶାକାଠିରେ ସମୂଳେ ପରାଜିତ ମୋ ମାମୁଁ ଓ ତାଙ୍କ ପରିବାର ବର୍ଗ, ମାଇଁ ଓ ତାଙ୍କ ଛୁଆପିଲା, ଯେଉଁମାନେ ସମ୍ପ୍ରତି ଧନକଉଡ଼ାର ବାସିନ୍ଦା । କାହାଣୀଟି ଆଜି ଯେ ରାଜେନ୍ଦ୍ରାସନେ, କାଲି ସେ ଫକୀର ଭଳି ସମୟର ପ୍ରବାହରେ ସମସ୍ତଙ୍କ ଜୀବନରେ ଅମାବାସ୍ୟର ଅନ୍ଧକାର ଘୋଟିଗଲା, ଉଧେଇ ପାରିଲେନି କେହି, ଏକମାତ୍ର ମାମୁଁଙ୍କ ବଡ଼ଝିଅ, ଯେ ମୋ ଜନ୍ମଦିନଠାରୁ ଦୁଇତିନି ମାସ ବଡ଼ ହେବେ, ତାଙ୍କ ସ୍ୱାର୍ଥାଞ୍ଜଳୀ ଯୋଗୁଁ ଅସୀମ ତ୍ୟାଗ ଓ ମାଁ ସହ ଅନ୍ୟ ଭାଇଭଉଣୀଙ୍କୁ ସଙ୍ଖୋଳିବା ଯୋଗୁଁ ପରିବାରଟି କିଛି ମାତ୍ରାରେ ଟିକେଇଗଲେ । କହିବାକୁ ଗଲେ ଉଜୁଡ଼ି ଯାଇଥିବା ଜୀବନସଂସାରକୁ ସଜାଡ଼ି ପାରିଲେ । ଏଇ ଦୁଇବର୍ଷ ହେଲା ମାଇଁ ବି ସ୍ୱର୍ଗପୁରର ବାସିନ୍ଦା ହୋଇଗଲେ ।

ଏତେ ସବୁ ଘଟଣା ଭିତରେ କିନ୍ତୁ, ମୁଁ ମୋର ଜନ୍ମସ୍ଥାନକୁ ହରେଇଲି ଚିରକାଳ ପାଇଁ, ଚାହିଁଲେ ବି ଆଉ ଡୁଙ୍କି ଯାଇପାରିବିନାହିଁ ସେଇ ନିର୍ଦ୍ଦିଷ୍ଟ ସ୍ଥଳୀକୁ, ଯେଉଁଠି ମାଁ ଗର୍ଭରୁ ଆସି ସର୍ବପ୍ରଥମେ ଦୁନିଆର ଆଲୋକ ଦେଖିଲି, ମୋ କାନ୍ଦଣାରେ କୋଠରିଟି ମୁଖରିତ ହେଲାବେଳେ, ମାଁଙ୍କ ସହ, ବଡ଼ଖାବା', ବଡ଼ଖା ମାଁ, ଅଜା-ଆଈ, ମାମୁଁ-ମାଇଁ, ବାପା-ମାଁ, ଉପରିସ୍ଥ ଦୁଇ ନାନୀ ଓ ଜଣେ ବଡ଼ଭାଇଙ୍କ ଓଠରେ ଫୁଟି ଉଠିଥିଲା ପୁଅଜନ୍ମ ହେବାର ହୃଦୟଖୋଲା ହସ । ତିନି ମାସ ଆଗରୁ ସେହି ଘରେ ବିବାହର ବାର ବର୍ଷ ପରେ ମାଇଁଙ୍କ ଗର୍ଭରୁ ଜାତ କନ୍ୟା ସନ୍ତାନ ଏବଂ ତିନି ମାସର ଅନ୍ତରାଳରେ ମାଇଁଙ୍କ ବୋହୂମାନେ ମୋ ମାଁଙ୍କ ଗର୍ଭରୁ ଜନ୍ମିତ ଚତୁର୍ଥସନ୍ତାନ ଭାବରେ ମୋର ଆବିର୍ଭାବ, ମାଁଙ୍କ କହିବାନୁସାରେ ପରିବେଶକୁ ଅସନ୍ତୁଳିତ କରି ପକେଇଥିଲା । ଦୃଶ୍ୟସଜ୍ଜାଟା ଯେହେତୁ ମାତୁଳଙ୍କ ଅଟ୍ଟାଳିକା, ବାରବର୍ଷର ଅନ୍ତରାଳରେ ମାଇଁ ଜନ୍ମ ଦେଇଥିବା କନ୍ୟା ସ୍ୱାଭାବିକ ଭାବରେ ସମସ୍ତଙ୍କ ଆକର୍ଷଣର କେନ୍ଦ୍ରବିନ୍ଦୁ ପାଲଟିଗଲା, ଆଉ ସେଇଠୁ ଆରମ୍ଭ ହେଲା ଅବହେଳିତ ପୁତ୍ରସନ୍ତାନର ସଂଘର୍ଷର ପଟ୍ଟଭୂମି । ସେହି ପଟ୍ଟଭୂମିର ଅନ୍ତରାଳରେ ଜନ୍ମ ନେଲା ମାମୁଁ ପର ଖାନ୍ଦାନୀ, ବିଳାସମୟ ସଂସାରର ଉଜୁଡ଼ା କାହାଣୀ !

ଜନ୍ମାଷ୍ଟମୀ, ନନ୍ଦୋତ୍ସବ ତିଥିରେ ଉଭା ହେଲି ବୋଲି ଅଜାଆଈ, ଶ୍ରଦ୍ଧାରେ ନାମକରଣ କରିଦେଲେ କୃଷ୍ଣଙ୍କ ନାମରେ ଦ୍ୱାରିକାନାଥ ବୋଲି, ହେଲେ ବାପା ଘର ଲୋକେ ଅଡ଼ି ବସିଥିଲେ । ଏ ସନ୍ତାନର ନାମ ସାରଙ୍ଗଧର ଦିଆଯାଉ । ଉଭୟ ପରିବାରକୁ ତୁଷ୍ଟ କଲାଭଳି ଶେଷରେ ନାମକରଣବେଳେ ମୋ ନାଁ ରଖାଗଲା

ଦ୍ୱାରିକାନାଥ ସାରଙ୍ଗଧର ବୋଲି । ମୋ ବଡ଼ ଭାଇ ଯେ ମୋଠୁଁ ତିନିବର୍ଷ ବଡ଼, ତାଙ୍କ ବେଳେ ମଧ୍ୟ ଏପରି ଦୋମୁହାଁ ପରିସ୍ଥିତି ହୋଇଥିଲା । ତେଣୁ ତାଙ୍କ ନାମ ରଖାଗଲା ମୁରଲୀଧର ପ୍ରେମନାଥ । ଦାଦାଙ୍କୁ ଭଲ ଲାଗିଲା ବୋଲି ସେ ଏବେବି ଏମ.ପି. ନାୟକ ଭାବରେ ପରିଚିତ, ମୋତେ ଭଲ ଲାଗିଲା ନାହିଁ ବୋଲି ମୁଁ ମୋ ନାଁରୁ ସାରଙ୍ଗଧରକୁ ସମ୍ପୂର୍ଣ୍ଣ ଏଡ଼ାଇଦେଲି । ସମ୍ବଲପୁର ସ୍ଥିତ ମାମୁଁ ଘରେ ରହୁଥିଲେ ମାମୁଁମାଇଁଙ୍କ ବ୍ୟତିତ ମାଁଙ୍କ ବାପା ସୂର୍ଯ୍ୟଭାନୁ ବିଶ୍ୱାଳ, ମାଁ ମହରଗୀ, ମାଁଙ୍କ ବାପାଙ୍କ ବଡ଼ଭାଇ ମିତ୍ରଭାନୁ ବିଶ୍ୱାଳ ଓ ତାଙ୍କ ସ୍ତ୍ରୀ । ମିତ୍ରଭାନୁ ବିଶ୍ୱାଳ ନିଃସନ୍ତାନ ଥିଲେ, ବୈଷ୍ଣବୀ ଥିଲେ । ତେଣୁ ସେଇଘରେ ଥିବା ସୁନ୍ଦର ମାହାପୁରୁ କୋଠରିରେ ରାଧାକୃଷ୍ଣ ଯୁଗଳମୂର୍ତ୍ତୀ ପ୍ରତ୍ୟହ ଆଡ଼ମ୍ବରରେ ପୂଜା ପାଉଥିଲେ । ମିତ୍ରଭାନୁ ଅଜା, ଯା'ଙ୍କୁ ଆମେ ସମ୍ବଲପୁର ବଡ଼ଖାବା' ବୋଲି ସମ୍ବୋଧନ କରୁଥିଲୁ, ସେ ଥିଲେ ପୂଝାରୀ । ବଡ଼ କଡ଼ା ମିଜାଜର ଲୋକ ଥିଲେ ସେ, କବିରାଜୀ ବିଦ୍ୟାରେ ପାରଙ୍ଗମ । ଡ. ଜନାର୍ଦ୍ଦନ ପୂଜାରୀଙ୍କ ସହ ତାଙ୍କ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଥିଲା । କିଛିକାଳ ହାଟପଡ଼ାର ସତ୍ୟବାଦୀ ଗୁଡ଼ିର ପୁରୋହିତି ଦାୟିତ୍ୱ ମଧ୍ୟ ବହନ କରିଥିଲେ । ତାଙ୍କ ଅନ୍ତେ ମାମୁଁ ରାହାସବିହାରୀ ପୂଝାରୀ ସେଇ ଦାୟିତ୍ୱ ନିର୍ବାହ କରିଥିଲେ । ମୋର ମନେ ଅଛି, ଆଳତୀବେଳେ ମୁଁ ସେଇ ମନ୍ଦିରରେ ଘଣ୍ଟ ପିଟୁଥିଲି, ମୋର ତାଳଜ୍ଞାନ ବୋଧହୁଏ ସେଇ ଘଣ୍ଟାପିଟାରୁ ଶୁଭାରମ୍ଭ ହୋଇଥିଲା ।

ମାମୁଁ ଘର ଗାଁ ସୁଦୂର ଛତିଶଗଡ଼ର ସାରଙ୍ଗଗଡ଼ ଜିଲ୍ଲାର ନଦୀଗାଁ, ମହାନଦୀକୁ ଲାଗି ଅବସ୍ଥିତ ହୋଇଥିବାରୁ ବୋଧହୁଏ ଗାଁର ନାଁ ନଦୀଗାଁ ! ମାମୁଁ ଘର ବାଡ଼ିପଟକୁ ଲାଗି ବହିଯାଉଛି ମହାନଦୀ । ଗଭୀରରୁ ଗଭୀରତମ ସେଠି ମହାନଦୀର ଗର୍ଭସ୍ଥଳ । ଖୁବ୍ ଓସାରିଆ ତାର ଛାତି, ପାଳଛପରଛୁଆଁ ମାମୁଁ ଘର । ଏବେ ବି ସେମିତି ଅଛି ବାସ୍ନାହୀନ ମୁରୁଝା ଗୋଲାପ ବୃନ୍ତ ଭଳି ଏଇ ନଦୀଗାଁ, ଗାଁଟା ସାରା ବିଶ୍ୱାଳବଂଶର ଲୋକେ ଏବେ ବି ରହୁଛନ୍ତି । ସମସ୍ତେ ଲାଗରଲସର ଗୋଟିଏ ପରିବାର । ନାଟ୍ୟକାର ମଙ୍ଗଳୁଚରଣ ବିଶ୍ୱାଳ ମଧ୍ୟ ଏମାନଙ୍କ ବଂଶର । ସାଧନା ଓ ଅଶାନ୍ତ ଗ୍ରହର ପ୍ରଯୋଜକ, ଏହି ଗାଁର ଜୋଇଁ ତୋଫାନ ତ୍ରିପାଠୀ । ଆମେ ସବୁ ତାଙ୍କ ଭଣଜା ଲାଗିବୁ, ତେଣୁ ଏବେ ବି ସେଠିକୁ ଗଲେ, ଭଣଜା ଆଦର ମିଳେ । ମୋ ଅଜା, ମାଁଙ୍କ ବାପା, ଖଣ୍ଡୁଆଳ ଗାଁର ଜୋଇଁ, ମାନେ ସେ ତାଙ୍କ ସମୟରେ ଖଣ୍ଡୁଆଳ ଗାଁକୁ ବର ବେଶରେ ଆସି ଆଈଙ୍କୁ ସାଙ୍ଗରେ ନେଇ ସଂସାର ଗଢ଼ିଥିଲେ । ତାଙ୍କ ଅଳିଅଳୀ ଝିଅ, ମାନେ ମୋ ମା'ଙ୍କ ସହ ବୈବାହିକ ବନ୍ଧନରେ ଯୋଡ଼ି ହୋଇଥିଲେ । ମୋ ବାପା ବାହାମ,



ପଣ୍ଡୁପାଲି, ସହଁସିଆ ପଡ଼ାର ନାୟକ ବଂଶର ପୁରୁଷୋତ୍ତମ ନାୟକଙ୍କ ଦ୍ୱିତୀୟ ପୁତ୍ର ଆଦିକନ୍ଦ ନାୟକଙ୍କ ସହ ପୁତ୍ରମାନଙ୍କ ପରିଚୟ ଜନ୍ମଜନ୍ମାନ୍ତର ଯାଏଁ ଅତୁଟ ରହିଥାଏ । ମୂଳକୁ ଛାଡ଼ି ବୃକ୍ଷର ସ୍ଥିତି ଯେଉଳି ଭିତ୍ତିହୀନ, ବାପାମାଁଙ୍କୁ ଛାଡ଼ି ପୁତ୍ରପୌତ୍ରାଦୀଙ୍କ ପରିଚୟ ଠିକ୍ ସେଭଳି ଅନ୍ତଃସାର ଶୂନ୍ୟ । ପୂର୍ବପିଢ଼ିଙ୍କ ପ୍ରତି ସମ୍ମାନବୋଧ, ପରବର୍ତ୍ତୀ ପିଢ଼ିର ସାମାଜିକ ସ୍ଥିତିକୁ ଦୃଢ଼ କରେ, ଆତ୍ମସମ୍ମାନକୁ ପୁଷ୍ଟ କରେ ।



ପରିବାର କହିଲେ, ଆମେ ଭାଉଭଉଣୀ ମିଶି ଛ' ଜଣ । ମୋ ଉପରେ ତିନିଜଣ, ତଳେଦ ଦୁଇ ଜଣ । ସବା ଉପର ଦୁଇ ଜଣ ନାନୀ ବା ବଡ଼ ଭଉଣୀ ରତ୍ନପ୍ରଭା, ସ୍ୱର୍ଣ୍ଣପ୍ରଭା ଏବଂ ଦାଦା ମୁରଲୀଧର ପ୍ରେମନାଥ, ଏହି ଅଗ୍ରଜ ତିନି ଜଣଙ୍କ ଜନ୍ମ ବି ମାମୁଁ ଘରେ । ହେଲେ ନଦୀଗାଁର ମାମୁଁ ଘର, ଯେଉଁଠୁ କୌଣସି କାରଣରୁ ହେଉ, ଚାଷଜମି ବିକ୍ରୀ କରି ସମ୍ବଲପୁରର ହାଟପଡ଼ା ଓରଫ ମାରୱାଡ଼ିପଡ଼ାରେ ତିନିତାଲା କୋଠା ନିର୍ମାଣ କରି ସପରିବାର ଉଠି ଆସିଲେ ଅଜାଆଇ, ମାମୁଁମାଇଁ, ବଡ଼ଅଜା, ବଡ଼ଆଇ, ତାଙ୍କ ସହ କୁଳଦେବ ଶ୍ରୀକୃଷ୍ଣ, ସମ୍ବଲପୁରକୁ ଆସିଗଲା ପରେ ଆମ ପରିବାରର ନଦୀଗାଁ ଯିବାଆସିବା ଏକ ରକମ ବନ୍ଦ ହୋଇଗଲା । ସମ୍ବଲପୁର ହିଁ ପାଲଟିଗଲା, ମାମୁଁ ଘର, ନଦୀଗାଁରେ ଘର ଥିଲା ମହାନଦୀର କୂଳେକୂଳେ, ସମ୍ବଲପୁରରେ ମଧ୍ୟ ଠିକ୍ ମହାନଦୀର ଛାତିକୁ ଲାଗି । ଛାତ ଉପରକୁ ଗଲେ ବେଶ୍ ଦୃଷ୍ଟିଗୋଚର ହୁଏ ତାର ସୁନ୍ଦର ପ୍ରବାହମାନ୍ ସ୍ରୋତସ୍ୱତୀ ସୌନ୍ଦର୍ଯ୍ୟ, ଗଭୀର ରାତିରେ ଶୁଣିବାକୁ ମିଳେ ତାର ସଂଗୀତିକ କଳକଳ ନାଦ ।

ଆଉ ମୋ ତଳେ କୁନି ଭଉଣୀ, ଜ୍ୟୋତ୍ସ୍ନାପ୍ରଭା, ଯେ ଏବେ ବି ଆଦରରେ ବୁଇ ବୋଲି ସମ୍ବୋଧିତା ହୁଏ ଭାଇଭଉଣୀଙ୍କ ଦ୍ୱାରା, ସବା ତଳେ, ବୁଇଠୁ ତିନି ବର୍ଷ ସାନ ସମସ୍ତଙ୍କ ଗେହ୍ଲା ବ୍ରଜେନ୍ଦ୍ର । ଯାହାର ଡାକ ନାଁ ବାବୁ । ମୋ ଜନ୍ମଭୂମି ସମ୍ବଲପୁର ହେଲେ, ଜ୍ୟୋତ୍ସ୍ନାପ୍ରଭାର ଅନୁଗୋଳରେ, ଯେଉଁଠି ବାପା ୧୯୪୯ ରୁ ୧୯୬୧, ପ୍ରାୟ ତେର ବର୍ଷ ବେସିକ୍ ସ୍କୁଲର ଅର୍ଗନାଇଜର୍ ଭାବରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଅଧିନରେ ଚାକିରି କରିଥିଲେ । ସେଠି ଅମଲାପଡ଼ାରେ ଥିବା ପାଳଛୁଆଁ କୋଠରିରେ ଜ୍ୟୋତ୍ସ୍ନାପ୍ରଭାର ଜନ୍ମ । ପରେ ୧୯୬୧ ମସିହାରେ ବାପାଙ୍କ ବଦଳି ହୁଏ ସୁନ୍ଦରଗଡ଼ ସ୍ଥିତ ଭବାନୀଶଙ୍କର ହାଇସ୍କୁଲର ପ୍ରଧାନଶିକ୍ଷକ ଭାବରେ । ମୋର ଝାପ୍‌ସା ଝାପ୍‌ସା ମନେ ଅଛି, ଅନୁଗୋଳରୁ ସମ୍ବଲପୁର ପର୍ଯ୍ୟନ୍ତ ଆମେ ବାପାଙ୍କ ସହ ସପରିବାର ଘରର ସମସ୍ତ ଆସବାବପତ୍ର ସହ ଗୋଟିଏ ଲରି ମଟରରେ ଲଦା ହୋଇ ଆସିଥିଲୁ । ସେ ସମୟର ସମ୍ବଲପୁର କଟକର ମୁରୁମ୍ ରାସ୍ତାରେ ଏକ ଶହ ମାଇଲ ଯାତ୍ରା

କରି ସମ୍ବଲପୁର ପହଞ୍ଚିଥିଲୁ । ବାପା ଆମକୁ ମାମୁଁ ଘରେ ଛାଡ଼ି ସେହି ଲରିମଟରରେ ଜିନିଷପତ୍ର ସହ ସୁନ୍ଦରଗଡ଼ ଯାତ୍ରା କରିଥିଲେ । ସୁନ୍ଦରଗଡ଼ରେ ତିନି ବର୍ଷ ରହଣି ବେଳେ, ସୁନ୍ଦରଗଡ଼ ରାଜବାଟିକୁ ଲାଗି ରାସ୍ତାର ଏପାଖରେ ପ୍ରଧାନଶିକ୍ଷକଙ୍କ ସରକାରୀ କ୍ୱାଟରରେ ବ୍ରଜେନ୍ଦ୍ରର ଜନ୍ମ । ବାବୁ ହେଲା ବେଳକୁ ସବୁଠୁ ବଡ଼ନାନୀଙ୍କର ବାହାଘର ଠିକ୍ ହୋଇସାରିଥିଲା । ସବୁଠୁ ସାନ ବୋଲି ସମସ୍ତଙ୍କ ସ୍ନେହ, ଆଦର ପ୍ରାପ୍ତ ହୋଇଗଲା ବାବୁକୁ । କହିବା ବାହୁଲ୍ୟ ସମ୍ବଲପୁରରେ ଛ' ଭାଇଭଉଣୀଙ୍କ ମଧ୍ୟରେ ମୋର ହିଁ ସୌଭାଗ୍ୟ ଥିଲା ସମଲେଇ ମାଟିରେ ଭୂମିଷ୍ଠ ହେବାରେ, ଅବଶ୍ୟ ସମୟର ଖେଳରେ ମୋତେ ଛାଡ଼ି ମୋଠୁ ବାକିମାନେ ଅଧିକ ସୌଭାଗ୍ୟଶାଳୀ ପ୍ରମାଣିତ ହେଲେ ବୋଲି ମୁଁ ଭାବେ, ତଥାପି ସମ୍ବଲପୁରର ସମ୍ବଳଭୂମିକୁ ମୋର କୋଟିକୋଟି ପ୍ରଣାମ, ମୋତେ ଏ ଯାଏଁ ବଞ୍ଚେଇ ରଖିଛି ତାର ସେବା କରିବା ପାଇଁ ।

ମୋର ଜନ୍ମଲଗ୍ନ, ମୋ ପାଇଁ କେତେ ଶୁଭଙ୍କର ହେଲା, ସେ କଥା କହି ନ ପାରିଲେ ବି, ମୋର ଅନୁଭବରେ ମୁଁ ଜୀବନକୁ ଭରପୂର ଉପଭୋଗ କରୁଛି । ପ୍ରତିଟି ମୁହୂର୍ତ୍ତ ମୋ ପାଇଁ ଜୀବନଟା ମନୋରଞ୍ଜନର ଏକ ମହାନାଟକ ବୋଲି, ବାସ୍ତବ ଏବଂ କଳ୍ପନା ଭିତରେ ସେମିତି କୌଣସି ସୀମାରେଖା ଅଛିବୋଲି ଏ ବୟସରେ ବି ମୁଁ ଜାଣି ପାରୁନାହିଁ । ଦୁଃଖରେ କାନ୍ଦିଲେ ବି ଆମୋଦଦାୟକ, ସୁଖରେ ହସିଲେ ବି ମନୋରଞ୍ଜକ, କାରଣ ମୁଁ ଯାହା ପାଇବା ପାଇଁ କଳ୍ପନାରେ ଇଚ୍ଛା କରିଛି, ସେସବୁ ପ୍ରାୟତଃ ପାଇସାରିଛି । ଏଥିପାଇଁ ଲାଭ ଯେତେ, କ୍ଷତି ସେତେ, ଏଭଳି କିଛି ମାନସିକତାର ସରଳରେଖା ଦେଇ ଗତିକରୁଛି ।

ଭୂମିଷ୍ଠ ହେବାପରେ ମାଁ ମୋର ତିନି ପୁଅଝିଅଙ୍କ ସହ ମୋର ପାରୁପର୍ଯ୍ୟନ୍ତ ସଂଖାଳୁଥିଲା ମାମୁଁ ଘରର ଏକମାତ୍ର ନିବୁଜ କୋଠରିରେ, ବିସ୍ଥାପିତଙ୍କ ଭଳି ଉପର ତିନିଭାଇ ଭଉଣୀଙ୍କର ଜୀବନକୁ ବୁଝିବାର ବୟସ ହୋଇ ନଥାଏ ବୋଲି, ଦୁଃଖ ଓ ସୁଖ ଭିତରର ତଫାତ୍ ଜାଣି ପାରୁ ନଥିଲେ, ନାଚିଖେଳି ବିତଉଥିଲେ ସମୟ, ହେଲେ ବିନା ପାରିବାରିକ ଆତ୍ମୀୟ ସମର୍ଥନରେ ଚାରିଜଣଙ୍କୁ ମାଁ କିଭଳି ସମ୍ଭାଳୁଥିବେ, ଆଜି ଆମେ ସମସ୍ତେ ଅଜାଆଇ ହେଲା ପରେ ଭଲ ଭାବେ ବୁଝିପାରୁଛୁ । ବାପା ପରିବାରର ପ୍ରଶାସନ ବ୍ୟତିତ ଆଉ କିଛି ବୁଝି ପାରୁନଥିଲେ । କହିବାକୁ ଗଲେ, ସେ ଥିଲେ ଜଣେ ଚାକିରି ସର୍ବସ୍ୱ ନୈତିକଚରିତ୍ର । ତେଣୁ ମାଁ ହିଁ ଆମ୍ଭମାନଙ୍କୁ ମଣିଷ କରିବାର ଦାୟିତ୍ୱ ନିଜେ ହିଁ ବହନ କରିଥିଲେ, ଶେଷ ଜୀବନବିନ୍ଦୁ ଥିବାଯାଏଁ ଉତ୍କଣ୍ଠା, ଦ୍ୱନ୍ଦ, ଉଦ୍‌ବିଗ୍ନତା ନଥିଲେ, ନାଟକର ଯେଭଳି ରସକ୍ଷୁର୍ଣ୍ଣ ହୋଇଥାଏ, ଏକନିବିଷ୍ଟ ହୋଇ

ଗତି କରୁଥିବା ଜୀବନରେ ପ୍ରଥମ ସଂଘର୍ଷର ଦୃଶ୍ୟ ଉନ୍ମୋଚିତ ହେଲା ସେତେବେଳେ, ଯେତେବେଳେ ମାତ୍ର ଚଉଦଦିନର ଶିଶୁର ଶରୀରରେ ପାହାଚଉପର ଚାରିଫୁଟିଆ ଥାନରେ ତେଲ ମଖାଇବା ବେଳେ ସ୍ୱଳ୍ପସ୍ଥାନ ଯୋଗୁଁ ମାଁ ଗୋଡ଼ସନ୍ଧିରୁ ପିଚ୍ଛୁଳି ଯାଇ ତା ତଳକୁ ତେରଚଉଦଟି ପାହାଚକୁ ଗଡ଼ିଯାଇଥିଲି ମୁଁ । ଦୌଡ଼ି ଆସିଥିବେ ସମସ୍ତେ । ଶିଶୁଟିକୁ କୋଳେଇ ନେଇଥିବେ, ମାଁଙ୍କୁ ତାର ଅବହେଳାଗତ କାର୍ଯ୍ୟ ପାଇଁ ବହେ ଗାଳି ଦେଇଥିବେ, ମାଁଙ୍କ ଯୋଗୁଁ ହିଁ ଶିଶୁଟିର ଏଭଳି ଅବସ୍ଥା ହେଲା ବୋଲି କେତେ ଅଭିଯୋଗ କରିଥିବେ ! ! ହେଲେ କେହି ମାଁଙ୍କୁ ଶିଶୁଟିର ଦୈନନ୍ଦିନ ଯତ୍ନ ପାଇଁ ଭଲ ଜାଗାଟିଏ ଦେବାର ବଦାନ୍ୟତା ଦେଖାଇ ନଥିଲେ । ନ ଦେବାରୁ ସିନା ମାଁ ମୋର ଏତିକି ବଡ଼ ତିନିତାଲାର ଅଟ୍ଟାଳିକାରେ ଜାଗା ଟିକିଏ ନ ପାଇବାରୁ ଶେଷକୁ ଯିବାଆସିବା କରୁଥିବା ପାହାଚଉପର ଥାନକୁ ମନକଲେ ମୋତେ ତେଲମଖାଇବା ପାଇଁ ! ! ମାଁର ସେତ ଖାଲି ମାଁବାପ ଘର ନୁହେଁ, ତାଙ୍କ ବୋହୂଙ୍କ ମଧ ଘର, ମାଁଠାରୁ ଏକମାତ୍ର ବୋହୂ ଭାବରେ ତାଙ୍କ ପତିଆରା ବେଶି । ପୁଣି ତାଙ୍କ କୋଳ ବି ତ ଭରିଛି ବାର ବର୍ଷର ବୈବାହିକ ଜୀବନ ପରେ । ତେଣୁ, ନଣନ୍ଦଙ୍କ କୋଳର ଚତୁର୍ଥ ଗର୍ଭର ସନ୍ତାନକୁ ପଚାରୁଛି କିଏ ? ମାଁ ବୋଧହୁଏ ସବୁ ବୁଝୁଥିଲେ, ଚାରିଗୋଟି ସନ୍ତାନର ଜନନୀ ହୋଇସାରିଥିବାରୁ, ମାଁ ଘରର ସୀମିତ ଅଧିକାର ସମ୍ପର୍କରେ ଜ୍ଞାତ ଥିଲେ, ତେଣୁ କାହାକୁ କିଛି ନ କହି, କାହାର ପତିଆରାରେ ଆଞ୍ଚ ନ ଆଣି ପାଇକରି ନେଇଯାଇଥିବ ମୋ ଚଉଦ ଦିନର ଶରୀରକୁ ଉପରପାହାଚର ପିଣ୍ଡାକୁ, ତେଲମଖାଇ, ରଗଡ଼ିଘଷି ସବଳ ସୁଗଠିତ କରିବା ପାଇଁ ।

ଅବଶ୍ୟ, ଟିକିଏ ବି ରକ୍ତ ନିଗିଡ଼ି ନଥିଲା, କିନ୍ତୁ ଦି ଦିନ ପରେ କାନ୍ଧ ଓ ବାମ ହାତର ଯୋଡ଼ା ଅଞ୍ଚଳଟି ଅସମ୍ଭବ ଭାବରେ ଫୁଲିବାର ଦେଖାଗଲା । ଚଉଦ ଦିନର ଶିଶୁର ଉପଚାର କିଭଳି କରାଯିବ, ଘରେ କବିରାଜ ବଡ଼ବାପା ଥାଉଁଥାଉଁ କାହାରି ମୁଣ୍ଡ କାମ କଲାନାହିଁ । ଶିଶୁର ଯନ୍ତ୍ରଣାଜନିତ କାନ୍ଦଣାରେ ତ୍ରିତଳ ପ୍ରସାଦରେ କମ୍ପନ ସୃଷ୍ଟି ହେଲା ।

କୁହାଯାଏ, ବିପତ୍ତି ଆସିଲେ ସାଙ୍ଗସାଥୀ ଧରିକି ଆସେ, ମୋ ହାତର ବେଦନା ଉପଶମ ନ ହେଉଣୁ ମାଁଙ୍କୁ ଟାଇଫଏଡ୍ ଜ୍ୱର ଆକ୍ରାନ୍ତ କଲା । ଗୋଟିଏ ପଟେ ମାତ୍ର ମାସିକିଆ ଶିଶୁର ବେଦନାଜର୍ଜ୍ଜରିତ କ୍ରନ୍ଦନ, ଅନ୍ୟ ପଟେ ତା' ମାଁଙ୍କ ଅସୁସ୍ଥ ଶରୀର, ଜଣେ ଦୁଗ୍ଧ ପୋଷ୍ୟ ସନ୍ତାନ, ଆଉ ଜଣେ ଉଦାର ହୃଦୟା ଜ୍ୱରାକ୍ରାନ୍ତ ଜନନୀ, ଜଣେ ଭବିତବ୍ୟ, ଆଉ ଜଣେ ବର୍ତ୍ତମାନ ସର୍ବସ୍ୱ ! ! ବିଚାର କରନ୍ତୁ ତ, କିଭଳିଆ ଘଟିଥିବ ପରବର୍ତ୍ତୀ ଦୃଶ୍ୟମାନ, କେତେ ନାଟକୀୟ ହୋଇନଥିବ ! ! !



ଏମିତି ଏମିତି ଗଡ଼ିଗଲା କିଛିଦିନ, କିଛି ଉତ୍ତେଜକ ରାତି, ଆଶ୍ୱିନର ତୋଫା ଜହ୍ନ, ମାଆଙ୍କ ଆବାହନୀର ସପ୍ତସତୀ ଶ୍ଳୋକର ମାଧୂର୍ଯ୍ୟ ଅତିକ୍ରାନ୍ତହୋଇ ମାଆ ଧରାଭୂଇଁରୁ ସସନ୍ମାନେ ବିଦାୟ ବି ନେଇଗଲେ, କାର୍ତ୍ତିକର କାକର ମିଶା ଘାସ ଗାଲିଚାରେ ରାଧାକୃଷ୍ଣଙ୍କର ରାସର ସମାଗମରେ ସମସ୍ତେ ମସ୍‌ଗୁଲ୍ । ସେହି ସମୟରେ ମାଁ ଶିଶୁ ଦୁହେଁ ଅସୁସ୍ଥତାର ଚରମ ସୀମା ଛୁଇଁବେଛୁଇଁବେ ହେଉଛନ୍ତି । ବଡ଼ ଅଜାଙ୍କର ପରମବନ୍ଧୁ, ଯାହାଙ୍କୁ ଆମେ ଡାକ୍ତରବାପା ବୋଲି ଜାଣୁ, ଡ. ଜନାର୍ଦ୍ଦନ ପୂଜାରୀ, ସେ ଦେବଦୂତ ଭାବରେ ଆସି ମୋର ବେଲୁନ୍‌ପରି ଫୁଲିଥିବା ଅଞ୍ଚଳରେ କପା ସହ ଏକ ଔଷଧୀୟ ତେଲ ଲଗାଇଦେଲେ ଏବଂ ବାରବାର ଏହାକୁ ଦେଉଥାଅ ବୋଲି ନିର୍ଦ୍ଦେଶ ଦେଲେ । ଆଶ୍ଚର୍ଯ୍ୟର କଥା, ଦୁଇ ଦିନ ଭିତରେ ପାଚିଯାଇଥିବା ଜାଗାଟି ଫାଟିଯାଇ ସେଥିରୁ ପ୍ରଚଣ୍ଡ ପୂଜ ସହ ମଇଳା ରକ୍ତ ବାହାରିଗଲା । ଶିଶୁର ଯନ୍ତ୍ରଣା ପ୍ରାୟ ଉପଶମ ହୋଇଗଲା । ତା ସହ ଲଗାୟତ କ୍ରନ୍ଦନର ପୂର୍ଣ୍ଣଚ୍ଛେଦ ପଡ଼ିଲା । ସମସ୍ତେ କିଛିଟା ଆଶ୍ୱସ୍ତ ହେଲେ । ବାକି ରହିଲା ମାଁଙ୍କର ଖଇଫୁଟା ଟାଇଫଏଡ୍ ଜ୍ୱର ଏବଂ ତାର ଉପଚାର ଚିନ୍ତା । ଶିଶୁଟି ଉପରୁ ଧ୍ୟାନ ହଟିଯାଇ ସ୍ୱାଭାବିକ ଭାବରେ ମାଁଙ୍କ ନିକଟରେ କେନ୍ଦ୍ରିଭୂତ ହେଲା ।

ମୋର ବାମ ହାତର ସମସ୍ୟାର ଅନ୍ତଘଟିଲା ବୋଲି ସମସ୍ତେ ଆଶ୍ୱସ୍ତିର ନିଃଶ୍ୱାସ ମାରିଲେ । ତେବେ ସେ ଥିଲା ସାମୟିକ । କେହି ଜାଣିପାରିନଥିଲେ, ଯେ ସାରାଜୀବନ ଏଇ ଶିଶୁସନ୍ତାନଟି କେବେ ଉପରକୁ ବାମ ହାତ ଟେକି ପାରିବନାହିଁ । ଗୋଟିଏ ପଙ୍ଗୁଜୀବନକୁ ପାଥେୟ କରି ସାରାଜୀବନ କଷ୍ଟ ପାଇବ !! ସେ ସମୟରେ ସମ୍ବଲପୁର କଣ, ସାରା ଓଡ଼ିଶାର ଚିକିତ୍ସାକ୍ଷେତ୍ର ସେତେଟା ବିକାଶଲାଭ କରି ନଥିଲା । ଦୁଇ ମାସର ଶିଶୁକୁ ଅସ୍ତ୍ରୋପଚାର କରି କିଭଳି ଠିକ୍ କରାଯିବ, ତାହାର କୌଣସି ଉପାୟ ନଥିଲା । ଡ. ପୂଜାରୀଙ୍କ ଯୋଗୁଁ ଶିଶୁଟି ସାମୟିକ ଭାବରେ ଯନ୍ତ୍ରଣାମୁକ୍ତ ସିନା ହୋଇଗଲା, ହେଲେ ଉପଯୁକ୍ତ ପରୀକ୍ଷଣର ଅଭାବ ଯୋଗୁଁ ସାରାଜୀବନ ସେ ସେହି କଷ୍ଟକୁ ହିଁ ଆପଣାର କରି ବଞ୍ଚିଲା । ବାମ ହାତର ସମସ୍ୟା ଯୋଗୁଁ ମୁଁ କେବେ ବି କୌଣସି ସ୍କୁଲରେ ସମ୍ପୂର୍ଣ୍ଣ ଭାବରେ ଡ୍ରିଲ୍ କ୍ଲାସ୍‌ରେ ଯୋଗ ଦେଇପାରିନଥିଲି । ଆଗ୍ରହ ଥିଲେ ବି କେବେ ଏନ୍‌ସିସିର କ୍ୟାଡେଟ୍ ହୋଇପାରିଲି ନାହିଁ । କ୍ରୀଡ଼ା ପ୍ରତିଯୋଗିତାରେ ଅଂଶଗ୍ରହଣ କରିପାରିଲି ନାହିଁ, ସୁନ୍ଦରଗଡ଼ରେ ଅମାନିଆ ହୋଇ ଫୁଟବଲ୍ ଖେଳିଲି ବଡ଼ମାନଙ୍କ ସହ । ଟୁନୁ ବହିଦାରଙ୍କ ଭଳି ରାଜ୍ୟସ୍ତରୀୟ ଖେଳାଳୀମାନଙ୍କ ସହ ହାଇସ୍କୁଲ ପଢ଼ିଆରେ, ପୁଣି ହାତ ଭାଙ୍ଗିଲା, ସ୍କୁଲ, କଲେଜର କ୍ରୀଡ଼ା ପ୍ରତିଯୋଗିତାରେ ଅନୁପସ୍ଥିତ ରହିଥିବା ମୋ ଭଳି ଖେଳପଣ ରଖିଥିବା ପିଲାଟି ଜ୍ୟୋତିବିହାରର ପ୍ରଥମ କ୍ରୀଡ଼ା ପ୍ରତିଯୋଗିତାରେ ମଶାଲ୍ ଧରି

ଅନ୍ୟମାନଙ୍କ ସହ ସମଲେଇ ମନ୍ଦିରରୁ ବିଶ୍ୱବିଦ୍ୟାଳୟର ଖେଳପଡ଼ିଆକୁ ଯାତ୍ରା କରିଥିଲା । ସେହିଦିନ ହିଁ ପନ୍ଦରଶହ ଓ ପଚିଶଶହ ମିଟର ଦୌଡ଼ରେ ଅଂଶଗ୍ରହଣ କରି ପୁରସ୍କୃତ ହୋଇଥିଲା । ପିଛି ପଢ଼ିବା ଦୁଇ ବର୍ଷଯାକ କେବଳ ଆତ୍ମତୃପ୍ତି ପାଇଁ କ୍ରୀଡ଼ାରେ ମିଶିଥିଲି । ନିଜ ବିଭାଗକୁ ଚମ୍ପିୟାନ କରିବାରେ ସହଯୋଗ କରିଥିଲି । ସମଗ୍ର ଛାତ୍ରଜୀବନରେ ସେଇ ଦୁଇବର୍ଷର ଚାରୋଟି ସାର୍ଟିଫିକେଟ ଏ ଯାଏଁ ମୋ ଫାଇଲରେ ପଡ଼ିଛି । ବେଳେବେଳେ ତାକୁ ବାହାର କରି ଦେଖେ ଓ ନିଜର ଅଥର୍ବ ଶରୀରରେ ସୁଦ୍ଧା କ୍ରୀଡ଼ା କ୍ଷେତ୍ରରେ ପାରଙ୍ଗମତା ଦେଖାଇପାରିଛି ବୋଲି ଗର୍ବ ଅନୁଭବ କରେଁ ।

ସମ୍ବଲପୁରରେ ମାଁଙ୍କ ସ୍ୱାସ୍ଥ୍ୟ କ୍ରମଶଃ ଖରାପ ଆଡକୁ ଗତି କରିବାରୁ ବାପା ଆସି ପରିସ୍ଥିତିର ଗାମ୍ଭୀର୍ଯ୍ୟକୁ ଉପଲବ୍ଧି କରି ମାଁଙ୍କୁ କଟକ ନେଇଗଲେ ଚିକିତ୍ସା ପାଇଁ, ତିନି ମାସର ଦୁର୍ବଳ ଶିଶୁପୁତ୍ରକୁ ସାଙ୍ଗରେ ଧରି ବାପା ମାଁ ଡାକ୍ତରଖାନାରେ ଟାଇଫଏଡ୍ ଆକ୍ରାନ୍ତ, ସଂକ୍ରମଣ ଭୟରେ ମୋତେ ତାଙ୍କଠାରୁ ଦୂରେଇ ରଖାଯାଉଥିଲା । ସ୍ତନ୍ୟପାନ ଥିଲା ଏକମାତ୍ର ଖାଦ୍ୟ, ମାଙ୍କଠୁ ଦୂରରେ ରଖିଲେ ମୁଁ କଣଖାଇ ବଞ୍ଚିବି, ଏ ଚିନ୍ତା ବାପାଙ୍କୁ ଘାରିଲା ।

ଈଶ୍ୱର ବୋଲି ଜଣେ କେହି ଅଦୃଶ୍ୟ ଭାବରେ କେଉଁଠି ଗୋଟାଏ ଅଛନ୍ତି । ଆମେ ମାନୁ ବା ନମାନୁ, ଯେ ତାଙ୍କୁ ମନ ଦେଇ ବିପଦ ବେଳେ ଖୋଜେ, ସେ କୌଣସି ନା କୌଣସି ରୂପରେ ତାଙ୍କ ଦାୟିତ୍ୱ ନିର୍ବାହ କରି ଚାଲିଯାନ୍ତି ସମସ୍ତଙ୍କ ଅଜାଣତରେ । ବାପା ମାହାପୁରୁ ପୂଜାକୁ ନେଇ ବେଶି ସମୟ ଦେଉ ନଥିଲେ, ହେଲେ ଈଶ୍ୱରଙ୍କ ପ୍ରତି ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ଟିଭିରେ ରଥଯାତ୍ରା ଦେଖି ଜଗନ୍ନାଥଙ୍କୁ ଦର୍ଶନକରି କାନ୍ଦିପକାଉଥିଲେ । ରେଭେନ୍ସା କଲେଜରେ ପଢୁଥିବାବେଳେ ବିଚିତ୍ରାନନ୍ଦ କର ଥିଲେ ତାଙ୍କ ସହପାଠୀ । ଖୁବ୍ ଅନ୍ତରଙ୍ଗ ଥିଲେ ଦୁହେଁ । ଆମ କଟକଯାତ୍ରାର କେଇଦିନ ପୂର୍ବରୁ ତାଙ୍କ ପୁତ୍ର ସନ୍ତାନଟିଏ ଜନ୍ମ ହୋଇଥିଲା । ଏ କଥା ବାପାଙ୍କୁ ଅଜଣା ଥିଲା । ଯେହେତୁ ତାଙ୍କ ଘରେ ଏକ କୋଠରିରେ ଆମେ ରହୁଥିଲୁ, ଶ୍ରୀ କର, ପରବର୍ତ୍ତୀ ସମୟରେ ଯେ ମାତୃଭୂମି ଖବରକାଗଜର ସମ୍ପାଦନା ଦାୟିତ୍ୱରେ ରହିଲେ, ତାଙ୍କ ମହିୟସୀ ସ୍ତ୍ରୀ ସ୍ୱତଃପ୍ରବୃତ୍ତ ଭାବରେ, ପରିସ୍ଥିତିର ଆହ୍ୱାନରେ ମୋତେ ତାଙ୍କ କୋଳକୁ ଟାଣିନେଲେ ଦୁଗ୍ଧପାନ କରାଇଥିଲେ ମାସାଧିକକାଳ, ମାଁ ଭଲ ହୋଇ ସମ୍ବଲପୁର ଫେରିବା ପର୍ଯ୍ୟନ୍ତ । ସେ ତ ଦୁଗ୍ଧ ନଥିଲା, ମୋ ପାଇଁ ଥିଲା ଅମୃତଧାରା, ଯା' ପାଇଁ ଆଜି ମୁଁ ହୃଷ୍ଟପୁଷ୍ଟ ଜୀବନଯାପନ କରି ପଞ୍ଚଷଠୀ ବର୍ଷ ପର୍ଯ୍ୟନ୍ତ ଏ ସୁନ୍ଦର ପୃଥିବୀକୁ ଚର୍ମଚକ୍ଷୁରେ ଦେଖିପାରିଲି, ଜୀବନକୁ ଭୋଗ କରିପାରିଲି ।

ଭଲ ହୋଇ ପୁନରାୟ ମୋ କୈଶୋର ଅନୁଗୋଳର ସବୁଜ ପରିବେଶରେ ଖେଳିଲା, ବୁଲିଲା, ବାପାଙ୍କ କାନ୍ଧରେ ବସି ବିଶ୍ୱକର୍ମା ପୂଜାର, ଲକ୍ଷ୍ମୀ ପୂଜାର ମଜାଲୁଟିଲା, ସାଇକଲର ସାମ୍ନାନଳୀରେ ଗାମୁଛାଗୁଡ଼ାଇ, ତା ଉପରେ ବସି ବାପାଙ୍କ ସହ ତାଳଚେର ଗଲା ବିଶ୍ୱକର୍ମା ପୂଜା ଓ ବିସର୍ଜନ ଶୋଭାଯାତ୍ରା ଦର୍ଶନକରି । ଆମ ଭଡ଼ାଘର ଥିଲା ଅନୁଗୋଳର ଅମଲାପଡ଼ାରେ । ସେ କାଳରେ ପାଳଛୁଆଁ ପର, ବାଡ଼ିପଟେ ପିଜୁଳୀ, ଆତ, ବରକୋଳି ଗଛର ଅରଣ୍ୟ, ଅଦୂରେ ଆମ୍ବ, କେନ୍ଦୁ, ଜାମୁକୋଳି ଗଛର ବୁରେଇ । ଆଷାଢ଼ିଆ ଝଡ଼ ହେଲେ ଲଙ୍ଗଳାବୁଡୁଲା ହୋଇ ଧାଇଁଯାଉ କେନ୍ଦୁ ଗୋଟାଇବାପାଇଁ । ବାପା ସାଇକଲରେ ଦିନ ଦଶଟାରେ ଅଫିସ ବାହାରିଲେ ମୁଁ ଲଙ୍ଗଳା ଅବସ୍ଥାରେ ସାଇକଲ କେରିଅର ଧରି ତାଙ୍କ ସାଙ୍ଗରେ ଦୌଡ଼ିଯାଉଥିଲି ବସ୍‌ଷ୍ଟେଣ୍ଡ ଯାଏ । ସେଠି ଥିବା ରସାନନ୍ଦ ଗୁଡ଼ିଆ ଦୋକାନରୁ ଅଣିକିଆ ରସଗୋଲାଟିଏ ନପାଇବା ପର୍ଯ୍ୟନ୍ତ ।

ଛୋଟରୁ ଜୁଆନ୍ ହେବା ଯାଏଁ ବଡ଼ କଷ୍ଟରେ, ଶାରୀରିକ ଅସୁସ୍ଥତାରେ ଜୀବନ କାଟିଥିବାରୁ ମାଁ ମୋତେ ଦୁଃଖୀଧନ ବୋଲି ଡାକୁଥିଲା । ମୁଁ ତାଙ୍କୁ ପ୍ରକୃତରେ ମୋ ଅଜାଣତରେ ବହୁ କଷ୍ଟ ଦେଇଛି, ମୋ ପାଇଁ ସେ ବହୁ କଷ୍ଟ ପାଇଛି, ଏ ବୟସରେ ମାଁଙ୍କ ଅବର୍ତ୍ତମାନରେ ମୁଁ ବେଳେବେଳେ ଭାବେ, ମୁଁ ଆଜନ୍ମ ଦୁଃଖୀ ହୋଇ ରହିଗଲି, ଧନ ତ ହାତଧରା ହେଲା ନାହିଁ, ମାଁ ସହ ନିଜ ପରିବାରବର୍ଗଙ୍କୁ କେବେ ଧନରେ ତୃପ୍ତ ଧନରେ ତୃପ୍ତ କରିପାରିଲି ନାହିଁ । ଯାହା ପାରିଛି, ଯାହା କରିଛି, ପ୍ରଚଣ୍ଡ ମନୋବଳର ସହାୟତାରେ, ନିଜେ ଜୀଇଁବା ଏବଂ ତା ସହ ପରିବାରର, ବନ୍ଧୁ ବର୍ଗଙ୍କୁ ଖୁସିରେ ଜୀଇଁବାର ପ୍ରୋତ୍ସାହନ ଦେବାରେ ।

ଥଟ୍ଟାରେ ଥରେ ଥରେ ବନ୍ଧୁମାନଙ୍କୁ କଥାପଡିଲେ କହେ, ମୋ ମୁହଁରୁ ଶୁଦ୍ଧ ଓଡ଼ିଆ ଓ ସମ୍ବଲପୁରୀ ଭାଷା ଉଚ୍ଚାରିତ ହୁଏ ଏଇଥିପାଇଁ ଯେ ମୁଁ ଉଭୟ ସମ୍ବଲପୁରୀ ମାଁ ଓ କଟକୀ ମାଁଙ୍କ ଅମୃତ ପାନ କରି ବଡ଼ ହୋଇଛି କହିଲେ ଭୁଲ୍ ହେବ ନାହିଁ ।

ଏ ସମାଜରେ ଯଦି ଏ ଯାଏଁ ମୋର କିଛି ପରିଚିତ ଅଛି, ତାହା ସଂସ୍କୃତି ସହ ନିବିଡ଼ ଭାବରେ ଜଡ଼ିତ, ତାହା ମୋଠାରୁ ମୋ ବନ୍ଧୁମାନେ ଅଧିକ ଜଣେଇ ପାରିବେ । ମୋତେ ଜଣାପଡ଼େ, ସଂସ୍କୃତି ପାଇଁ କିଛି କରିବା ପାଇଁ ବୋଧହୁଏ ମୋର ଜନ୍ମ । ଆଞ୍ଚଳିକ ସଂସ୍କୃତିର ଜୟଯାତ୍ରା, ଆନ୍ତର୍ଜାତିକ ସ୍ତର ପର୍ଯ୍ୟନ୍ତ ପ୍ରସାରିତ ହେଉ, ଏ ସଂକଳ୍ପ ନେଇ ଆଜି ଯାଏଁ ମୋର ଅଦମ୍ୟ ପ୍ରଚେଷ୍ଟା ଜାରି ରହିଛି ।



ବାପା ପ୍ରାୟ ତେରବର୍ଷ ଧରି ଅନୁଗୋଳରେ ବେସିକ୍ ସ୍କୁଲ ଅର୍ଗନାଇଜର୍ ପଦବୀରେ ଅଧିଷ୍ଠିତ ଥିଲେ । ତା ପୂର୍ବରୁ ବରଗଡ଼, ଅତାବିରା, ଝାରସୁଗୁଡ଼ା ଓ ନୂଆପଡ଼ାରେ ସ୍କୁଲ ସବ୍‌ଇନ୍ସପେକ୍ଟର ପଦବୀରେ ସ୍ୱାଧୀନତାପୂର୍ବରୁ କାର୍ଯ୍ୟକାଳ ଆରମ୍ଭ କରି ନୂଆପଡ଼ାରେ ୧୯୪୯ ଯାଏଁ କାର୍ଯ୍ୟ ସମାପ୍ତି କରିବା ପରେ ପଦୋନ୍ନତି ପାଇ ଅନୁଗୋଳକୁ ଆସିଲେ । ଏହି ସମୟ ମଧ୍ୟରେ ସେ ୱାର୍ଦ୍ଧାଠାରେ ଗାନ୍ଧୀ ଆଶ୍ରମ ଦ୍ୱାରା ଆୟୋଜିତ ତାଲିମ୍ ଗ୍ରହଣକରିବା ପରେ ସେ ଏହି ପଦୋନ୍ନତିପ୍ରାପ୍ତ ହୋଇଥିଲେ । ଏହି ତେରବର୍ଷର କାର୍ଯ୍ୟକାଳ ଭିତରେ ମୁଁ ପ୍ରାୟ ପାଞ୍ଚ ଛ' ବର୍ଷର ଜୀବନ ବିତେଇଛି ।

ସେତେବେଳର ଅନୁଗୋଳ ସହର, ସବୁଜିମାରେ ପରିପୂର୍ଣ୍ଣ, ଯେଉଁ ପଟେ ଆଖି ବୁଲାଇଲେ, ଖାଲି ଗଛ ହିଁ ଗଛ, ନାନା ରକମର ଫଳ ବଗିଚା, ଏପରି କି ଗୋଟିଏ ପଡ଼ାର ନାଁ ମଧ୍ୟ ଥିଲା କମଳାବଗିଚା ପଡ଼ା । ଆମ୍ବ, କେନ୍ଦୁ, ଜାମ୍ବୁ, କାଜୁ, ପିଜୁଳୀ, ଆତ ବା ବଢ଼ିଆଳ, କଦଳୀ ଗଛରେ ଭର୍ତ୍ତି ଅନୁଗୋଳ ସହର । ସବୁ ଘର ପଛପଟେ ନିଶ୍ଚୟ ଥିଲା ବାଡ଼ିବଗିଚା । ପନିପରିବା ଓ ଫଳଗଛମାନ ସେହି ବଗିଚାର ସୌନ୍ଦର୍ଯ୍ୟବୃଦ୍ଧି କରୁଥିଲା । ସବୁ ଘର ସାମ୍ନା ସାଜୁଥିଲା ଧାନଖଳା, ପାଳଗଦାମାନ ଘରର ତୋରଣ ପରି ମନେହେଉଥିଲା । ଏ ପାଳଗଦା କଥା ବଖାଣିଲା ବେଳକୁ, ଘଟଣାଟିଏ ମନେ ପଡ଼ିଯାଉଛି । ଅମଲା ପଡ଼ାର ଆମ ଭଡ଼ାଘରର ଅନତି ଦୂରରେ ସହରର ମଧ୍ୟ ଭାଗରେ ଥିଲା ଅନୁଗୋଳର ଜନୈକ ବରିଷ୍ଠ ନାଗରିକ ବସନ୍ତ ପଟ୍ଟନାୟକଙ୍କ ଦୋତାଲା କୋଠା । ତାଙ୍କ ଘର ଡାହାଣ ଦିଗକୁ ଏମିତି ପାଳଗୁର୍ଡା ଦୁଇ ତିନି ଜାଗାରେ ସଜା ଯାଇଥିଲା । ତାଙ୍କ ବଡ଼ପୁଅ ବାବୁ, ମୋ ବଡ଼ ଭାଇଙ୍କ ସାଙ୍ଗ, ସାନ ପୁଅ ଶିବୁ ମୋ ସାଙ୍ଗ । ଆମ ବୟସ ଚାରିପାଞ୍ଚ ହେବ । ସମୟଥିଲା ଦୋଳ ପୂର୍ଣ୍ଣିମାର ପୂର୍ବସନ୍ଧ୍ୟା, ଯେଉଁ ରାତିରେ କାଠଜାଳି ହୋଲିପୋଡ଼ା ଆୟୋଜନ କରାଯାଏ । କଞ୍ଚାବୟସ, ଜୀବନର ମୂଲ୍ୟ କଣ, ସେ ବୟସରେ ଅବୁଝା ଥିଲା । ଶିବୁ ଓ ମୁଁ କଥା ହେଲୁ, ଆମେ ବି ହୋଲିପୋଡ଼ା ଖେଳିବା । ମୋର ନଜର ଗଲା ତାଙ୍କ ଘର ପାଳଗୁର୍ଡା ଦିଗକୁ । ଶିବୁକୁ ପ୍ରସ୍ତାବ ଦେଲି, ଏହି ପାଳରେ ନିଆଁ ଲଗାଇଲେ ବହୁତ ମଜା ହେବ । ସେ ବି ହଁ ମାରିଲା । ମୁଁ ଦୌଡ଼ିଗଲି ଆମ ଘରକୁ, ରନ୍ଧାଘରୁ ଲୁଚିଲୁଚି ଦିଆସିଲିଟା ଆଣିଆସିଲି କାହାକୁ ନ ଜଣେଇ । ଦୌଡ଼ିଗଲି ଶିବୁ ଘରକୁ, ସେ ମୋତେ ଅପେକ୍ଷା କରିଥାଏ । ଦିଜଣଯାକ ପାଳଗଦା ପାଖକୁ ଗଲୁ, ମୁଁ ହିଁ ଦିଆସିଲି ମାରି ଜଳନ୍ତା କାଠିକୁ ଫିଙ୍ଗିଦେଲି ପାଳଗଦା ଆଡ଼କୁ । ନିଆଁ ଯେତେବେଳେ ହୁ ହୁ ହୋଇ ଜଳିବାକୁ ଲାଗିଲା, ଆମେ ଯେ ଯାହା ଘରକୁ ଦୌଡ଼ି ପଳେଇଗଲୁ । ତାପରେ କଣ ଘଟିଲା, ଆଜି ସେ



ଘଟଣାର ଷାଠିଏ ବର୍ଷ ପରେ ମଧ୍ୟ ମୁଁ ଜାଣିପାରିଲି ନାହିଁ ଓ ଜାଣିବାକୁ ଇଚ୍ଛା ମଧ୍ୟ କରି ନାହିଁ ।

ବହୁବର୍ଷ ପରେ ବାବୁ ଓ ଶିବୁ ସପରିବାର ଆମ ଘରକୁ ଆସିଥିଲେ । ଦୁର୍ଭାଗ୍ୟର କଥା, ମୁଁ ସେଦିନ ଚିଟିଣ୍ଡା ଯାଇଥିଲି କଲେଜକୁ । ଘରକୁ ଆସି ଶୁଣିଲି, ସମସ୍ତେ ଏହି ପାଳପୋଡ଼ା ଘଟଣା ଉପରେ ଆଲୋଚନା କରି ପୁରୁଣା ସ୍ମୃତିକୁ ପୁଣି ଉଜ୍ଜିବୀତକରିବାର ଚେଷ୍ଟା କରିଥିଲେ । ଜାଣିଲି, ଶିବୁ ଜଣେ ମିଲିଟାରୀ ଅଫିସର୍ ଭାବରେ ସୀମାନ୍ତ ଅଞ୍ଚଳରେ କାର୍ଯ୍ୟରତ ।

ତେରବର୍ଷର ଚାକିରି ଓ ରହଣି କାଳରେ ବାପା ଜଣେ ସଚ୍ଚୋଟ ଅଫିସର୍ ଭାବରେ ଖ୍ୟାତିଅର୍ଜନ କରିଥିଲେ ଅନୁଗୋଳ ସହରରେ । ଶିକ୍ଷାବିତ୍ ଶତ୍ରୁଘ୍ନ ନାଥ, କବି ରାଧାମୋହନ ଗଡ଼ନାୟକ, ସମାଜସେବୀ ବାଳକୃଷ୍ଣ ପଟ୍ଟନାୟକ, ସଚେତନ ନାଗରିକ ବସନ୍ତ ପଟ୍ଟାନୟକ ଆଦିଙ୍କ ସଂସ୍ପର୍ଶରେ ଆସି ସେମାନଙ୍କ ସାନ୍ନିଧ୍ୟ ଲାଭ କରିଥିଲେ । ମୁଁ ଅନୁଗୋଳର ଗୋଟାଏ ବେସିକ୍ ସ୍କୁଲର କିଛି ମାସ ଅଣଆନୁଷ୍ଠାନିକ ଶିକ୍ଷା ଗ୍ରହଣ କରିଥିଲି । ଅରଟରେ ସୂତା କାଟିବା, ବାଡ଼ିବଗିଚା କାମରେ ତାଲିମ ନେବା, ନିଜ ଲୁଗା ନିଜେ ସଫା କରିବା ଆଦି ଶିକ୍ଷାରେ ମୋ ପାଠକାର୍ଯ୍ୟର ଶୁଭାରମ୍ଭ ହୋଇଥିଲା । ତା ସହ ଗୁରୁକୁଳ ଆଶ୍ରମ ଭଳି ଅନୁଗୋଳ ସହରର ସବୁଠାରୁ ଲୋକପ୍ରିୟ ଘରୋଇ ଶିକ୍ଷକ, ଯେ ନରନନା ନାମରେ ପରିଚିତ ଥିଲେ, ତାଙ୍କଠାରୁ ତୃତୀୟଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଲି । ଖୁବ୍ ସ୍ନେହୀ, ଆଦର୍ଶ ଶିକ୍ଷକ ଜଣେ । ଏବେ ବି ତାଙ୍କ ଗେରୁଆ ଗାମୁଛା ପିନ୍ଧା ସରଳ, ନିରପକ୍ଷ ଚେହେରା ମୋର ଝାପ୍‌ସା ଝାପ୍‌ସା ମନେ ଅଛି । ଏକରୁ ଶହେ ସଂଖ୍ୟା, ପଚିଶ୍‌କ' ପଣିକିଆ, ବର୍ଣ୍ଣବୋଧରୁ ଓଡ଼ିଆ ଲିପି, ସ୍ୱରବର୍ଣ୍ଣ, ବ୍ୟଞ୍ଜନବର୍ଣ୍ଣ, ଛୋଟ ପିଲାଙ୍କ ଗୀତିକା ଆଦି ଅନୁଷ୍ଠାନିକଭାବରେ ସ୍କୁଲଯିବା ପୂର୍ବରୁ ହିଁ ମୁଁ ନରନନାଙ୍କଠାରୁ ପଢ଼ିସାରିଥିଲି ।

ଅମଲାପଡ଼ା ପୂର୍ବରୁ ଆମେ ହେମସରପଡ଼ାର ଆଉ ଗୋଟାଏ ଭଡ଼ାରେ ରହୁଥିଲୁ । ଦି' ବଖରା ଘର, ଦୁଆର ଓ ରନ୍ଧାଘର ବ୍ୟତିତ ଘରକୁ ଘେରିରହିଥିଲା ଜଙ୍ଗଲ । ଆଖପାଖରେ ଆଉ ଘର ହିଁ ନଥିଲା । ସେତେବେଳକୁ ମୋ ତଳ ଭଉଣୀର ଜନ୍ମ ହୋଇ ନଥାଏ । ବାପାଙ୍କ ଟୁରିଙ୍ଗ ଚାକିରି । ରାଜ୍ୟର ଅଧେ ଜିଲ୍ଲାରେ ଥିବା ବେସିକ୍ ସ୍କୁଲମାନ ତାଙ୍କ ଅଧୀନରେ । ଟୁର୍ ଯାଆନ୍ତି, କେବେ ଫେରନ୍ତି, କେବେ ନାହିଁ । ଏମିତି ଥରକର ଘଟଣା, ବାପା ନଥାନ୍ତି, ମା ସହ ଚାରି ପୁଅଝିଅଙ୍କ ସାଙ୍ଗରେ ଘର ମଝି ଦୁଆରରେ ଖଟ ପକାଇ ଖାଇବା ପରେ ଘନ ନିଦ୍ରାରେ ଶୋଇପଡ଼ିଥିଲୁ ।

ଖରାଦିନ, ମାଁଙ୍କ ଆଖିରେ କିନ୍ତୁ ନିଦ ଆସିନଥାଏ । ମଧ୍ୟରାତ୍ରି ବେଳକୁ ସେ ଶୁଣିବାକୁ ପାଇଲେ, ଦୁଆରପଟ କବାଟକୁ କିଏ ଜଣେ ପିଟୁଛି । ସାଙ୍ଗରେ ଆଉ ଜଣେ ଥିବା ସେ ତାଙ୍କ କଥାବାର୍ତ୍ତାରୁ ଜାଣି ପାରିଥିଲେ । ମାଁ ନିଶ୍ଚିତ ହୋଇଗଲେ, ସେମାନେ ଚୋର । ଉପସ୍ଥିତ ବୁଦ୍ଧି ଖଟେଇ ସେ ପ୍ରଥମେ ଆମସମସ୍ତଙ୍କୁ ଖଟରୁ ଉଠେଇ ଘରଭିତରକୁ ନେଇଗଲେ । ଲଣ୍ଠନ ଦୁଇଟା ଜାଳିପକେଇଲେ ଓ ଶେଷରେ ବାକ୍ସରୁ ହାରମୋନିଅମ୍ କାଢ଼ି ବଡ଼ ପାଟିରେ ଗୀତ ଗାଇବା ଆରମ୍ଭ କଲେ, ଆମକୁ ପାଳିଆ ଧରିବା ପାଇଁ କହିଲେ । ରାତିସାରା ଆମେ ମାଁ ସହ ଅସରନ୍ତି ଗୀତ ଗାଇଥିଲୁ । ଆମେ ଚେଇଁଥିବା ଜାଣି ଚୋରମାନେ ଆଉ କବାଟ ପିଟିବାକୁ ସାହାସ କରି ନପାରି ପଳେଇଯାଇଥିଲେ । ଖୁବ୍ ସାହସୀ ମହିଳା ଥିଲେ ମାଁ । ବାପାଙ୍କ ଅନୁପସ୍ଥିତିରେ ସେ ହିଁ ଘରକୁ ଗୋଟାମୋଟା ସମ୍ଭାଳି ନେଉଥିଲେ । ତା ସହ ଭଲ ଗୀତ ମଧ୍ୟ ଗାଉଥିଲେ । ନିଜେ ହାରମୋନିୟମ୍ ଧରି ବଜାଇ ସୁରରେ ହିନ୍ଦୀ, ଓଡ଼ିଆ ଭଜନ, ସୁଗମ ଗୀତ ଗାଇ ଆମକୁ ଶୁଣାଉଥିଲେ ।

ଏ ଗାୟନକଳା ସେ ତାଙ୍କ ବାପାଙ୍କଠାରୁ ପାଇଥିଲେ । ମୋ ଅଜା ମଧ୍ୟ ସଂଗୀତ କଳାରେ, ବିଶେଷତଃ ଶାସ୍ତ୍ରୀୟ ସଂଗୀତ ପ୍ରତି ତାଙ୍କର ଖୁବ୍ ଦୁର୍ବଳତା ଥିଲା । ମୁଁ ତାଙ୍କ କଣ୍ଠରୁ ଗୀତ ଶୁଣିଛି, ମାଁଙ୍କ ଗୀତରୁ ଅନୁପ୍ରାଣିତ ହୋଇଛି । କେବଳ ମୁଁ ନୁହେଁ, ଆମେ ତିନି ଭାଇ ସଂଗୀତକୁ ଖୁବ୍ ଭଲପାଉଁ । ପରବର୍ତ୍ତୀ ଜୀବନରେ ମୁଁ ଓ ମୋ ଭାଇ ବ୍ରଜେନ୍ଦ୍ର ନାୟକ ସଂଗୀତକୁ ନେଇ ଅନେକ ପରୀକ୍ଷା ନିରୀକ୍ଷା କରୁଛୁଁ । ବ୍ରଜେନ୍ଦ୍ର ତ ଏବେ ବି ସଂଗୀତରେ ମଜ୍ଜି ରହିଛି ।

ଅମଲାପଡ଼ାରେ ରହିବା ବେଳେ ତଳ ଭଉଣୀ ଜ୍ୟୋସ୍ନାପ୍ରଭାର ଜନ୍ମ ହେଲା । ସେହି ଘରେ ବଡ଼ ବାଡ଼ିପଟ ଥିଲା । ପିଜୁଳୀ, କଦଳୀ, ଆତ ଆଦି ଗଛରେ ଭର୍ତ୍ତି । ବର୍ଷା ଦିନେ ହାତରେ ମାଟି କୋଡ଼ିଦେଲେ ଗେଛା ଗେଛା ଛତୁ । ମାଁ ସେଇଠି ପୁଅଜୀଉଁତିଆ ଓଷା କରୁଥିବା କଥା ମୋର ମନେ ଅଛି । କାରଣ, ଗାତଖୋଳି ମଣ୍ଡଳୀ ତିଆରି କାମରେ ମୁଁ ମାଁଙ୍କୁ ସାହାଯ୍ୟ କରିବା ମୋର ସ୍ପଷ୍ଟ ମନେଅଛି । ମଜାର କଥା, ଆଜିଯାଏଁ ପୁଓଜୀଉଁତିଆ ଆସିଲେ ସେହି ଗାତ ଖୋଳିବା, ଆମ୍ବପତ୍ର ତୋରଣ ଦେବା, ଚାନ୍ଦୁଆ ବାନ୍ଧିବା କାମ ମୁଁ ହିଁ କରୁଛି, ଯେହେତୁ ତିନି ଭାଇରେ ମୁଁ ହିଁ ଭଗବାନଙ୍କ କୃପାରୁ ପୁଅଟିଏ ପାଇଛି । ଯଦିଚ, ଆମ ଘରର ଝିଅଝିଆରୀମାନେ ମଧ୍ୟ କୌଣସି ଗୁଣରେ କମ୍ ନୁହନ୍ତି । ତା'ସହ କାର୍ତ୍ତିକ ପୂର୍ଣ୍ଣିମା ଆସିଲେ ମାଁ ମୋତେ ହିଁ କହେ କଦଳୀଗଛ କାଟି ତାକୁ ଛୋଟଛୋଟ ଡଙ୍ଗା ତିଆରିବାକୁ ଓ ସାଙ୍ଗରେ ପୋଖରୀ ତୁଠକୁ

ସାଙ୍ଗରେ ନିଏ । ପୂଜାପାର୍ବଣ ସହ ଜଡ଼ିତ ରହୁଥିବାରୁ ସଂସ୍କୃତି ପ୍ରତି ଏକ ଅହେତୁକ ଆକର୍ଷଣ ରହିଆସିଥିଲା ପିଲାଟି ବେଳୁ । ପରବର୍ତ୍ତୀ କାଳରେ ସଂସ୍କୃତି ପ୍ରତି ଆକୃଷ୍ଟ ହୋଇ ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରତି ପ୍ରତିବଦ୍ଧତା ସୃଷ୍ଟି ହେଲା ।



ଅନୁଗୋଳରେ ମୋ ଜୀବନ ଥିଲା ସମ୍ପୂର୍ଣ୍ଣ ଶୈଶବ ଓ ଆଉ ଅଧେ କୈଶୋରର, ଚଳଚଞ୍ଚଳ ମନ, ଖେଳ ଓ ପାରିବାରିକ ସୋହାଗର କାଳ, ଜୀବନକୁ ଚିହ୍ନିବା ଓ ଶିକ୍ଷାର ପ୍ରାଥମିକ ସ୍ପର୍ଶର ସମୟ, ଦେହ ଓ ମନ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ଥିବା ବାଚାଳତା ।

ପୁଣି ସ୍ୱାସ୍ଥ୍ୟଗତ ଅବନତି, ଏ ଦୁଃଖୀଧନ ମାଁବାପାଙ୍କୁ କେତେଯେ କଷ୍ଟ ଦେଇଛି, ତାର ଇୟତ୍ତା ନଥିଲା । ଜଙ୍ଘସନ୍ଧିରେ ଏକ ବଥପରି କିଛି ବାହାରିଲା ଯେ ଛ'ସାତ ଦିନ ଯାଏଁ ବଢ଼ିବଢ଼ି ପାଚିଗଲା ସିନା, ଛାଡ଼ିଲା ନାହିଁ । ଏମିତି ଏକ ସମୟ ଆସିଲା, ମୁଁ ଆଉ ଚାଲି ପାରିଲି ନାହିଁ । ଡାକ୍ତର ଦେଖାହେଲା, ଔଷଧାଦି ଉପଚାର କରାହେଲା ସିନା, କମିବା ନାଁ ଧରିଲାନାହିଁ । ଆଉ ଥରେ ଡାକ୍ତର ଦେଖାଇଲା ବେଳକୁ, ସେ ପରୀକ୍ଷା ନିରୀକ୍ଷା କରି କହିଲେ, ପିଲାଟିର ଅପରେସନ୍ ଆବଶ୍ୟକ, ଅପରେସନ୍ ପରେ ବି ପିଲାଟିର ଗୋଡ଼ଟି ଆଉ କର୍ମକ୍ଷମ ହେବ ନା ନାହିଁ, ସନ୍ଦେହ ! ହୁଏତ, ଛୋଟା ବି ହୋଇଯାଇପାରେ । ଯା'କୁ, କଟକ ବଡ଼ ଡାକ୍ତରଖାନା ନେଇଯାଆନ୍ତୁ, ଏଭଳିଆ ଅପରେସନର୍ ସୁବିଧା ଏଠି ନାହିଁ । ଏକଥା ଶୁଣିବା ପରେ ଉଭୟ ବାପା-ମାଁଙ୍କ ଚିନ୍ତା ବଢ଼ିଗଲା । ପରଦିନ ସକାଳୁ କଟକ ଯିବାର ସବୁବ୍ୟବସ୍ଥା କରାଗଲା । ମାଁଙ୍କୁ ସେ ରାତି ନିଦ ହେଲାନି, ଯନ୍ତ୍ରଣାରେ ପିଲାଟି ରାତିସାରା ଛଟପଟ । ମାଁ ମହାପୁରୁ କୁଠିରେ ଈଶ୍ୱରଙ୍କ ନିକଟରେ ଅଖଣ୍ଡ ଦୀପଟିଏ ଜାଳି ମୋତେ କୋଳରେ ଧରି ବସି ରହିଲେ । ମାଁ ନିଶ୍ଚୟ ନୀରବ ପ୍ରାର୍ଥନା କରୁଥିବ, କହୁଥିବ, ହେ ପ୍ରଭୁ ! ମୋ ଦୁଃଖୀଧନକୁ ବଞ୍ଚେଇ ଦିଅ ପ୍ରଭୁ, ବଡ଼ କଷ୍ଟ ପାଇଲାଣି । ମୋ ଅନ୍ତରର ଡାକ ତୁମେ ନିଶ୍ଚୟ ଶୁଣିବ ପ୍ରଭୁ, ତୁମେ ଯାହା ମାଗିବ, ଦେବି, ହେଲେ ମୋ ପୁଅଟିକୁ ଭଲ କରିଦିଅ ପ୍ରଭୁ ! ଏଭଳି ପ୍ରାର୍ଥନାର ନୀରବ ସ୍ୱର ସାରା କୋଠରିରେ ଗୁଞ୍ଜରିତ ହେଲାବେଳକୁ ମାଁ ଆଖିର କେଇଟୋପା ଲୁହ ମୋ ଦେହରେ ଝରିଯାଇଥିବ । ଭୋ' କାନ୍ଦ ସିନା କାନ୍ଦିପାରିଲା ନାହିଁ, କାଳେ ବାକି ଛୁଆମାନେ ନିଦରୁ ଚେଇଁଉଠିବେ, ଓଃ ! ମାଁମାନେ କେତେ ପରାଧୀନ ସତେ, ବହେ କାନ୍ଦିବା ପାଇଁ ଇଚ୍ଛା ହେଲେ ସୁଦ୍ଧା କାନ୍ଦି ପାରନ୍ତି ନାହିଁ ଏମାନେ, କେତେ ସହନଶୀଳତା ଭର୍ତ୍ତିରହିଛି ଏମାନଙ୍କ ଦେହରେ ।

ମାଁଙ୍କ ବହୁମୂଲ୍ୟ କେଇବୁନ୍ଦା ଲୁହ ଶେଷକୁ ସକାରାତ୍ମକ ଫଳ ଆଣିଦେଲା । ବଡ଼ି ପହରୁ ମୋତେ ପରିଶ୍ରା ଲାଗିବାରୁ ମାଁ ଟେକି ନେଲେ ନାଳନିକଟରେ ଠିଆ କରେଇଦେଲେ, ମୋ ହାତକୁ ଜାଉ୍ତୁଡ଼ି ଧରିଥାଏ, କାଳେ ପଡ଼ିଯିବ ବୋଲି । ସେ ଦେଖିଲା, ପରିଶ୍ରା ସହ ମେଞ୍ଚାମେଞ୍ଚା ପୂଜ, ମଇଳାରକ୍ତ ମଧ୍ୟ ନିଗିଡ଼ିଗଲା, ବହିଗଲା ନାଳରେ । ପରେ ପରେ ମାଁ ଦେଖିଲା, ମୁଁ ଭଲ ଭାବରେ ଚାଲି ପାରୁଛି, ମୋର ବେଦନାଜର୍ଜରିତ କଷ୍ଟ ମଧ୍ୟ କୁଆଡ଼େ ଉଡ଼ିଗଲା, ମୋର ଭଲହେବାର ଦେଖି ସେ ତତ୍‌କ୍ଷଣାତ୍ ବାପାଙ୍କ ନିକଟକୁ ଯାଇ ତାଙ୍କୁ ଦେଖେଇ କହିଲା, ଦେଖ, ଦ୍ୱାରିକା ଭଲ ହୋଇଗଲା, ମାଁର କଣ୍ଠସ୍ୱର ଶୁଣି ଦୁଇ ନାନୀ, ବଡ଼ଭାଇ ସମସ୍ତେ ଉଠିପଡ଼ିଲେ, ମୋର ଓଠରେ ହସ ଦେଖି ସମସ୍ତେ ଆଶ୍ୱସ୍ତ ହେଲେ, କଟକ ଯିବା କାର୍ଯ୍ୟକ୍ରମ ବନ୍ଦ ହେଲା । ମାଁ କହୁଥିଲେ, ମୋ ଦୁଃଖୀଧନକୁ ଭଗବାନ ଆଉ କଷ୍ଟ ନ ଦିଅନ୍ତୁ !

ଛୋଟ ଏକ ସୁନ୍ଦର ସବୁଜ ସହର ଅନୁଗୋଳରେ ସେ କାଳରେ ପାଳଛୁଆଁ ଏକ ସିନେମା ହଲ୍ ଖୋଲିଲା ଶଙ୍କର ସିନେମା ନାମରେ । ମୋର ମନେ ଅଛି, ଆମ ପୂରା ପରିବାର ସେଇ ଟକିଜ୍‌କୁ ଥରେ ମେଟିନୀ ସୋ ଦେଖିଯାଇଥିଲୁ । ସେତେବେଳେ ଏକ ରୁଷୀୟ ସିନେମାର ଡବିଂ ହିନ୍ଦୀ ଚଳଚ୍ଚିତ୍ର 'ପରଦେଶୀ' ଲାଗିଥିଲା । ସେଇ ଆମ ପରିବାରର ତଥା ମୋ ଜୀବନରେ ଦେଖିଥିବା ସର୍ବପ୍ରଥମ ସିନେମା । ଲୋକଟିଏ ଛୋଟ ବେଣ୍ଡବାଜାଟିଏ ବଜେଇବଜେଇ ସିନେମା ଦେଖିଯିବାର ବିଜ୍ଞାପନ କରୁଥିଲା । ଆଉ ଜଣେ ଲୋକ ହାତରେ ଲମ୍ୱାବାଉଁଶରେ ଲଗା ହୋଇଥିବା ପୋଷ୍ଟର ଧରି ବାଜାସହ ବୁଲୁଥାଏ । ଏଇଥିଲା ଅନୁଗୋଳ ସହରରେ ସିନେମା ବିଜ୍ଞାପନ କରିବାର ତରିକା । ଲୋକ ସାଧାରଣ ସେହି ବାଜାଶୁଣି ଦୌଡ଼ି ଯାଉଥିଲେ ପୋଷ୍ଟର ଦେଖିବା ପାଇଁ, କଣ ସିନେମା ପଡ଼ିଛି, ଜାଣିବା ପାଇଁ ।

ମାମୁଁ ଘରେ ଆମିଷ ଚଳୁ ନଥିଲା, କାରଣ ବଡ଼ ଅଜା ଓ ବଡ଼ ଆଈ ବୈଷ୍ଣବୀ ଥିଲେ, ପ୍ରତି ପ୍ରହର ପୂଜା ଘଣ୍ଟଶଙ୍ଖର ନିନାଦ ସମଗ୍ର ଅଟ୍ଟାଳିକାକୁ ଆଧ୍ୟାତ୍ମିକ ରସରେ ବୁଡ଼େଇ ରଖୁଥିଲା, କୃଷ୍ଣନାମରେ ଭୋଳ ହୋଇଯାଉଥିଲେ ସମସ୍ତେ । ସେହି ପ୍ରଭାବ, ଆମ ପରିବାର ଉପରେ ପଡ଼ିଥିଲା, ଆମ ଘରକୁ ମଧ୍ୟ ମାଁଙ୍କ ଯୋଗୁଁ ଆମିଷ ପଶିପାରି ନଥିଲା । ମୋ ସାନ ଅଜା କିନ୍ତୁ ମାଛପ୍ରେମୀ ଥିଲେ । ଆମ ଧନୁପାଲିଘରେ ରହିବାପରେ ଅଜା ଆସିଲେ, ବାଡ଼ି ପଟ ଜାଗାରେ ସ୍ୱତନ୍ତ୍ର ଚୂଲିରେ ନିଜେ ମାଛଭାଜି ଖାଉଥିଲେ । ବାପାମଧ୍ୟ ଟୁର୍ ସମୟରେ ବିଭିନ୍ନ ଅତିଥି ଶାଳାରେ ଖାଦ୍ୟ ସହ ମାଛ ଖାଇବାକୁ ଭଲ ପାଉଥିଲେ । ତେଣୁ, ବାପା ଖଟରେ ପଡ଼ିଥିବା ବେଳେ ଆମେ ତାଙ୍କପାଇଁ ଦୋକାନରୁ

ମାଛଭଜା ଆଣି ଖାଇବାକୁ ଦେଉଥିଲୁ । ମାଁ ବଞ୍ଚିଥିବା ଯାଏଁ ଏହି ନିରାମିଷ ପରମ୍ପରା ଆମଘରେ ଚାଲିଥିଲା । ତେବେ, ଆମ ଘରକୁ ଆସିଥିବା ବୋହୂ, ଆମ ଛୁଆମାନଙ୍କ ତାଙ୍କ ମାମୁଁଘରପାଣି ଆଣିଥିବାରୁ ସେ ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖାଯାଇ ପାରିଲା ନାହିଁ । ଏବେ ଘରକୁ ଆସୁଛି, ଘରେ ରନ୍ଧାଖିଆ ସବୁ ଚାଲିଲାଣି । ଅବଶ୍ୟ, ଆମେ ଛ' ଭାଇଭଉଣୀ ଏଯାଏଁ ଆମିଷପ୍ରତି ଆକୃଷ୍ଟ ହୋଇ ନାହୁଁ, ଆଉ ଏ ଜୀବନରେ ହେବାର ବି ନାହିଁ, କେବଳ ମାଁଙ୍କ ପ୍ରତି ଥିବା ସମ୍ମାନ ବୋଧପାଇଁ ।

ଅନୁଗୋଳର ତେର ବର୍ଷ ଚାକିରି ପରେ ବାପାଙ୍କ ବଦଳି ହେଲା ସୁନ୍ଦରଗଡ଼ ସ୍ଥିତ ଭବାନୀଶଙ୍କର ହାଇସ୍କୁଲର ପ୍ରଧାନଶିକ୍ଷକ ଭାବରେ । କୌତୁହଳର କଥା, ବାପାଙ୍କ ବଡ଼ଭାଇ, ଆମ ବଡ଼ଅଜା, ଯାହାଙ୍କୁ ଆମେ ଭକ୍ତିର ସହ ସୁନ୍ଦରଗଡ଼ ବଡ଼ଖା ବା' ବୋଲି ସମ୍ବୋଧନ କରୁଥିଲୁ, ସେ ଥିଲେ ପ୍ରଧାନ ଶିକ୍ଷକ, ସେଇଠି ହି ଅବସର ଗ୍ରହଣ କରିଥିଲେ, ସୁନ୍ଦରଗଡ଼ରେ ଘର କରି ରହିଗଲେ । ନାମ ତାଙ୍କର ହୃଷିକେଶ ନାୟକ । ପରେ ଅବଶ୍ୟ, ସେଇ ଘରକୁ ବିକ୍ରି କରି ସମ୍ବଲପୁରର ଏନ୍‌ଗୁହା ଲେନ୍‌ରେ ତିଆରିଥିବା ନୂଆଁ ଘରକୁ ଉଠିଆସିଲେ ସପରିବାର ।

୧୯୬୧ରେ ବାପା ଯୋଗଦେଲେ ପ୍ରଧାନ ଶିକ୍ଷକଭାବରେ ସୁନ୍ଦରଗଡ଼ର ସୁନ୍ଦର ପରିବେଶରେ । ସେଇ ହାଇସ୍କୁଲ ପ୍ରାଙ୍ଗଣଭିତରେ ହିଁ ଥିଲା ଆମ କ୍ୱାଟର, ତାକୁ ଲାଗି ଆଉ ଗୋଟାଏ କ୍ୱାଟରରେ ରହୁଥିଲେ କସ୍ତୁରୀ ବାବୁ, ସେହି ହାଇସ୍କୁଲର ଅନ୍ୟ ଜଣେ ସହକାରୀ ଶିକ୍ଷକ । ସେ ସରକାରୀ ଘର ମଝିଦୁଆରରେ ଥିଲା ଏକ ବଡ଼ ବରକୋଳି ଗଛ । ସାମ୍ନା ବାରଣ୍ଡାରେ ତାରଜାଲିର ଜାଫ୍ରି । ଆମ ପରିବାରର ସର୍ବକନିଷ୍ଠା ସଦସ୍ୟା ବୁଇ ଓରଫ ଜ୍ୟୋସ୍ନାପ୍ରଭା, ବର୍ଷେ ଦେଢ଼ବର୍ଷର କୁନି ସୁନ୍ଦରୀ ଝିଅ । ତାକୁ ଦେଖିଦେଲେ ପେଟ ପୂରିଯାଉଥିଲା । ଦିଗ ବୋଲି ପିଅନ୍, ତାର ଯଥେଷ୍ଟ ଯତ୍ନ ନେଉଥିଲା ।

ସୁନ୍ଦରଗଡ଼, ସେ ସମୟରେ ଥିଲା ଛୋଟ, ଅଥଚ ସୁନ୍ଦର । ଘେରାଏ ବୁଲି ଆସିଲେ ସରିଯାଉଥିଲା ତାର ସୀମା । ରାଜବାଟୀକୁ ଲାଗି ସର୍ପିଳ ଗତିରେ ବହିଯାଉଥିଲା ଇବ୍ ନଦୀ, ଶାନ୍ତ, ଶୀତଳ, ପାଖରେ ଥିବା ଟାଙ୍ଗରପାହାଡ଼କୁ ଚୁମି ସହରଛାଡ଼ି ଗ୍ରାମାଞ୍ଚଳକୁ ନରବ୍ଦି ଯାଉଥିଲା । ସୁନ୍ଦରଗଡ଼ ରାଜବାଟୀକୁ ଲାଗି ଇବ୍ ବହିଯାଇ ତାର ଠିକଣା ଖୋଜୁଥିଲା । ରାସ୍ତା ପାରି ହୋଇ ରାଜାଘର ପାଚେରୀଭିତରେ ପ୍ରଥମେ ଜଗନ୍ନାଥ ମନ୍ଦିର, ପରେ ପରେ ମାଁ ମାଣିକେଶ୍ୱରୀ ମନ୍ଦିର, ତାପରେ ଇବ୍ ନଦୀକୁ ଲାଗି ଗାଧୋଇବାଘାଟ ।

ଏଇ ସୁନ୍ଦରଗଡ଼, ଯେଉଁ ପବିତ୍ରମାଟିରେ ଆରମ୍ଭ ହେଲା ମୋର ଆନୁଷ୍ଠାନିକ ଶିକ୍ଷା, ଚତୁର୍ଥ ଶ୍ରେଣୀରେ ନାମ ଲେଖାଗଲା ହାଇସ୍କୁଲ ସାମ୍ନାରେ ଥିବା ନିମ୍ନପ୍ରାଥମିକ ବିଦ୍ୟାଳୟରେ । ଅନୁଗୋଳରେ ନରନନାଙ୍କଠାରେ ଘରୋଇ ଭାବରେ ତୃତୀୟ ଶ୍ରେଣୀ ପାଠ୍ୟକ୍ରମ ଶେଷ କରିଥିବାରୁ ଶିକ୍ଷାବର୍ଷର ଫେବୃଆରୀ ମାସରେ ହିଁ ନାମ ଲେଖାଗଲା ଚତୁର୍ଥ ଶ୍ରେଣୀରେ । ପ୍ରଥମ କରି ବିଜୁଳୀବତୀ ଥିବା ଘରେ ଆମେ ରହିଲୁ, ପ୍ରଥମକରି ସମଗ୍ର ପରିବାର ପାଇଁ ଗୋଟିଏ ଉଷା ଟେବୁଲ୍ ଫେନ୍ କିଣାଗଲା, ପ୍ରଥମ କରି ଫିଲିପ୍ସ ରେଡିଓ କିଣାହେଲା, ରେଡ଼ିଓରୁ ନାନା କାର୍ଯ୍ୟକ୍ରମ ସହ ହିନ୍ଦୀ ଓ ଓଡ଼ିଆ ଚଳଚ୍ଚିତ୍ର ଗୀତର ଲହର ଶୁଭିଲା ଘରେ, ମୁକେଶ, ମହମ୍ମଦ ରଫି, ଲତା ମଙ୍ଗେସ୍କର, ଆଶା ଭୋସଲମାନେ, ଶଙ୍କର ଜୟକିଶନ, ଲକ୍ଷ୍ମୀକାନ୍ତ ପ୍ୟାରେଲାଲ, କଲ୍ୟାଣଜୀ ଆନନ୍ଦଜୀମାନେ ଆମର ଅତିପରିଚିତ ହୋଇଗଲେ । ଭିତରଦୁନିଆ ସହ ବାହାରିଦୁନିଆ ମିଶି ଏକାକାର ହୋଇଗଲେ । ଧିରେ ଧିରେ, ଲୁଡୁ, କେରମ୍ ସହ କବାଡ଼ି, ଫୁଟ୍‌ବଲ୍ ଆଦି ଖେଳମାନେ ଅନ୍ତରଙ୍ଗ ବନ୍ଧୁ ଭଳି ସାଉଁଟି ନେଲେ ମୋତେ । ଶିକ୍ଷା, ସଂସ୍କୃତି ସହ ପ୍ରଥମଥର ପାଇଁ ସମ୍ବନ୍ଧିତ ହେଲି ସୁନ୍ଦରଗଡ଼ର ସୁନ୍ଦର ମାଟିରେ । ଏଠାରେ ହିଁ ଭିତ୍ତି ପଡ଼ିଲା ଜୀବନର ସାଂସ୍କୃତିକ ମହାନୁଭବର, ସୁନ୍ଦର ଜୀବନଟିଏ ଗଢ଼ିବାର ସ୍ୱପ୍ନିଳ ଭବିଷ୍ୟତର ।



ଆଜି ପିତୃ ଦିବସ, ବାପା ଆମ ପରିବାରର ପଥପ୍ରଦର୍ଶକ, ଆଭ୍ୟନ୍ତରୀଣ ପ୍ରଶାସକ, ଏକମାତ୍ର ଅର୍ଥଅର୍ଜନକାରୀ ସଦସ୍ୟ, ଘରର ମୂରବୀ, ମୂଲ୍ୟବୋଧ ଭିତ୍ତିକ ଶିକ୍ଷାର ପ୍ରବର୍ତ୍ତକ ଏବଂ ପୁଅଝିଅମାନଙ୍କର ମନତୁଷ୍ଟି କରିବାର ସୂତ୍ରଧାର । କାନ୍ଧରେ ବସାଇ ଅନୁଗୋଳର ପ୍ରସିଦ୍ଧ ଲକ୍ଷ୍ମୀପୂଜା ପାଦରେ ଚାଲିଚାଲି ବୁଲାଇବା, ସାଇକଲରେ ବସାଇ ସୁଦୂର ତାଳଚେରକୁ ବିଶ୍ୱକର୍ମା ଶୋଭାଯାତ୍ରା ଦେଖାଇନେବା, ଅଫିସ୍ ଯିବାବେଳେ ମୋର ଅଝଟପଣକୁ ଶାନ୍ତକରିବା ପାଇଁ ରସାନନ୍ଦ ସାହୁ ଗୁଡ଼ିଆଦୋକାନରୁ ରସଗୋଲାଟିଏ କିଣି ମୋ ପାଟିରେ ପୂରେଇଦେବାଠାରୁ ଆରମ୍ଭକରି ପିଏଚ୍‌ଡି ଡିଗ୍ରୀ ପାଇଁ ମୋଦ୍ୱାରା ଲିଖିତ ନିବନ୍ଧର ବର୍ଣ୍ଣାଶୁଦ୍ଧି ନିରୀକ୍ଷଣ କରିବା, ଚାକିରିରେ ଥିଲେ ବି ଅଭାବ ସମୟରେ ଅର୍ଥ ପ୍ରଦାନ କରିବା ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ବାପା ହିଁ ଥିଲେ ମୋତେ ଘେରିଥିବା ସହଭାଗିତାର ଛାୟା, ବିଶାଳ ଆକାଶର ଛାତିରେ ମୁଁ ଯେମିତି ଏକ ଜୁଳୁଜୁଳିଆ ପୋକ । ବାପା ଚାହୁଁଥିଲେ ମୁଁ ଓକିଲାତି କରେଁ, ଯେଉଁଟା ମୋର ବିଲକୁଲ୍ ନାପସନ୍ଦ ଥିଲା । ପରେ ସେ ଇଚ୍ଛା କରିଥିଲେ, ମୁଁ ବିଇଡିକରି ଶିକ୍ଷକ ହୁଏଁ,

ତେଣୁ ଏମ୍.ଏ. କରିବା ତାଙ୍କ ଇଚ୍ଛା ନଥିଲା । ମୋର କିନ୍ତୁ ବିଇଡ଼ି କରିବା ପସନ୍ଦ ନଥିଲା । ମୁଁ ଉପାଧ୍ୟୁତ୍ତର ପାଠ ପଢ଼ିବି ଓଡ଼ିଆରେ, ପରେ ଅଧ୍ୟାପକ ହେବାର ମନୋବାଞ୍ଛା ଥିବା ଜଣାଇବାରୁ ବାପା ମୋର ଅଧ୍ୟୟନର ଗଭୀରତା ଉପରେ ସନ୍ଦେହ ବ୍ୟକ୍ତ କରିଥିଲେ ଏବଂ ମନା କରିଦେଇଥିଲେ । ମୁଁ ପରେ କାନ୍ଦକାନ୍ଦ ହୋଇ ମାଁ ନିକଟରେ ମୋ ଅନ୍ତରର କଥା ସ୍ପଷ୍ଟ ଜଣାଇଥିଲି । ବାପା, ମାଁ ଥିଲେ ପ୍ରତି ପରିବାର ପରି ହାଇପାୱାର କମିଟୀ । ମୋ ଦରଖାସ୍ତ ଶେଷରେ ମଞ୍ଜୁର ହେଲା, ମୁଁ ଜ୍ୟୋତିବିହାର ଓଡ଼ିଆ ଉପାଧ୍ୟୁତ୍ତର ବିଭାଗରେ ନାଁ ଲେଖାଇଲି । ମୋର ଏମ.ଏ. ପଢ଼ିବାରେ ମନୋନିବେଶ କରିବା ଦେଖି ବାପା ଖୁସି ହୋଇଥିଲେ । ପରେ ୧୯୯୪ରେ ଡକ୍ଟରେଟ୍ ଉପାଧି ପ୍ରାପ୍ତି ପରେ ମୋର ଜ୍ଞାନଗାରିମା ଉପରେ ତାଙ୍କର ଯେଉଁ ସନ୍ଦେହ ଥିଲା, ତାହା ଦୂରିଭୂତ ହୋଇଗଲା । ଜଣେ ଶିକ୍ଷାନବିଶ୍ ଭାବରେ ବାପାଙ୍କ ଖ୍ୟାତିକୁ ଆମେ କେହି ଟପିପାରିନାହୁଁ, ଆଜି ଅବସର ନେଲାପରେ ବି ତାହା ମର୍ମେମର୍ମେ ଅନୁଭବ କରୁଛି ।

ଅନୁଗୋଳ ଥିଲା ମୋର ଶିକ୍ଷାକ୍ଷେତ୍ରର ଭିତ୍ତିଭୂମି, ସୁନ୍ଦରଗଡ଼ର ଆଧୁନିକ ପରିବେଶ ଏବଂ ପରିବର୍ତ୍ତିତ ଜୀବନଶୈଳୀରେ ମୁଁ ଭିନ୍ନ ଏକ ସାଂସ୍କୃତିକ ଜୀବନର ପରିଚୟ ପାଇଲ । ଚତୁର୍ଥ ଶ୍ରେଣୀରୁ ଷଷ୍ଠ ଶ୍ରେଣୀର ଷାଣ୍ମାସିକ ପରୀକ୍ଷା ପର୍ଯ୍ୟନ୍ତ ଆନୁଷ୍ଠାନିକ ଶିକ୍ଷା ଗ୍ରହଣ କରିଥିଲି ଦୁଇଟି ଶିକ୍ଷାନୁଷ୍ଠାନରୁ, ପ୍ରଥମଟି ହେଲା ସୁନ୍ଦରଗଡ଼ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଏବଂ ଅନ୍ୟଟି ଭବାନୀଶଙ୍କର ହାଇସ୍କୁଲ, ଯେଉଁଠି ବାପା ପ୍ରଧାନଶିକ୍ଷକ ଭାବରେ କର୍ମରତ ଥିଲେ ।

ଆମେ ଏଭଳି ଏକ ସମୟ ସୁନ୍ଦରଗଡ଼ରେ ଅତିବାହିତ କରିଥିଲୁ, ଯେତେବେଳେ ବାପାଙ୍କ ତଳ ଦୁଇ ଭାଇ, ମାନେ ମୋର କାକା ଦୁଇଜଣ ସେହିଠାରେ ହିଁ ଚାକିରି କରୁଥିଲେ । ବାପାଙ୍କ ତଳଭାଇ ସଦାନନ୍ଦ ନାୟକ ସେଇ ସ୍କୁଲରେ ସହକାରୀ ଶିକ୍ଷକ ଥିଲେ ଓ ସାନକାକା ଅଚ୍ୟୁତାନନ୍ଦ ନାୟକ, ପ୍ରଶାସନିକ ପଦବୀରେ ଅଧିଷ୍ଠିତ ଥିଲେ । ବାପାଙ୍କ ବଡ଼ଭାଇ, ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ହୃଷିକେଶ ନାୟକ ମଧ୍ୟ ସୁନ୍ଦରଗଡ଼ର ନିଜ ବାସଗୃହରେ ସପରିବାର ରହୁଥିଲେ । କିଛି ଗୋଟାଏ ପାରିବାରିକ ଘଟଣା ଘଟିଲେ, ଚାରି ପରିବାର ଏକତ୍ର ଯୁଟୁଥିଲେ । ସବୁ ଭାଇଭଉଣୀମାନେ ଭେଟଘାଟପଡ଼ି ଆନନ୍ଦ ଅନୁଭବ କରୁଥିଲେ ।

ହାଇସ୍କୁଲର ଡ୍ରଇଂଶିକ୍ଷକ ଥିଲେ ସୁରେଶଚନ୍ଦ୍ର ମିଶ୍ର । ଖୁବ୍ ପ୍ରତିଭାସମ୍ପନ୍ନ ଶିକ୍ଷକ । ସରସ୍ୱତୀ ପୂଜା କିମ୍ବା ଗଣେଶ ପୂଜା ଆସିଲେ ସୁରେଶମାଷ୍ଟ୍ରେ ନିଜେ ତାଙ୍କଘରେ ମୃଣ୍ମୟ ମୂର୍ତ୍ତି ତିଆରିକରୁଥିଲେ ହାଇସ୍କୁଲ ପାଇଁ । ମୁଁ ପ୍ରଧାନଶିକ୍ଷକଙ୍କ ପୁଅ ହୋଇଥିବାରୁ



ତାଙ୍କ ଘରକୁ ଅବାଧ ଭାବରେ ଯା'ଆସ କରୁଥିଲି, ବିଶେଷକରି ଏଭଳି ମୂର୍ତ୍ତି ତିଆରି କରିବା ସମୟରେ । ଏକାଏକା ଯାଏ, ପୁଆଳବାନ୍ଧି ମେରୁଦଣ୍ଡ ଗଢ଼ିବାଠାରୁ ମାଟିଲେପନ, ଓଦାକପଡ଼ା ପ୍ରଲେପ ଦେବା, ଶୁଖାଇବା, ଦେହସହ ମୁଣ୍ଡକୁ ଯୋଡ଼ିବା, ସମଗ୍ର ମୂର୍ତ୍ତିକୁ ପାଲିସ୍ କରିବା, ଶୁଖିଗଲେ ଧଳାରଙ୍ଗର ପ୍ରାଥମିକ ପରସ୍ତ ରଙ୍ଗ ଲଗାଇବା, ପରେ ପୂଜା ଦି'ଦିନ ଥିବ ରଙ୍ଗକରିବା ମୂଳ ହେବ । ଶେଷରେ ପୂଜାଦିନ ପ୍ରଥମ ପ୍ରହରରେ ଆଖିଡୋଳାକୁ ଜୀବନ୍ତକରିବା ଆଦି ପ୍ରତ୍ୟେକ ପର୍ଯ୍ୟାୟକୁ ମୁଁ ସୂକ୍ଷ୍ମ ଦୃଷ୍ଟିରେ ନିରୀକ୍ଷଣ କରୁଥିଲି, ଗୋଟେ ପ୍ରକାର ସୁରେଶ ଆଜ୍ଞାଙ୍କଠାରୁ ଶିଖି ପକାଇଥିଲି । ମୂର୍ତ୍ତିଗଠନରେ ଏତେ କମ୍ ବୟସରୁ ମୋର ଆଗ୍ରହ ଦେଖି ସୁରେଶ ଆଜ୍ଞା ମୋତେ ଖୁବ୍ ଉତ୍ସାହ ପ୍ରଦାନ କରିଥିଲେ । ଚିତ୍ରକଳା ପ୍ରତି ମୋର ଆଗ୍ରହ ସେଇଠୁ ଆରମ୍ଭ ହେଲା ।

ଘରକୁ ରେଡ଼ିଓ ଆସିଲା ପ୍ରଥମକରି । ସମ୍ବାଦ ଅପେକ୍ଷା ଗୀତ ଶୁଣିବାପାଇଁ ବେଶି ଇଚ୍ଛା ହେଉଥାଏ । ବଡ଼ ତିନି ଜଣ ତାଙ୍କ ପାଠପଢ଼ାରେ ବ୍ୟସ୍ତ ଥିବାବେଳେ ମୁଁ ରେଡ଼ିଓ ପାଖରେ କାନ ଗୁଞ୍ଜିଥାଏ । ହିନ୍ଦୀ ଭାଷା ସହ ପରିଚିତ ହେଲି ଚଳଚ୍ଚିତ୍ର ସଂଗୀତରୁ । ଓଡ଼ିଆ ଭାଷାରେ ବି ସିନେମା ଅଛି, ଜାଣିଲି ରେଡ଼ିଓ ଗୀତରୁ । ଅକ୍ଷୟ ମହାନ୍ତିଙ୍କ ନିଅ ନିଅ ନିଅ ବାବୁ ଆଖି ରଂଜନ, ଆଖିଥିଲାବାଲା ଏବେ ଶୁଣ ଶୁଣ ଶୁଣ, ନାଁ ମୋର ହସବାଲା, କେତେ ଜାତି ହସରେ ପୂରିଛି ମୋ ହସଡାଲା ଆଦି ଗୀତଗୁଡ଼ିକରୁ ତାଙ୍କ ପରିଚୟ ପାଇଲି, ପ୍ରଭାବିତ ହେଲି, ବାଳକୃଷ୍ଣ ଦାସଙ୍କୁ ଜାଣିଲି କିଶୋରୀ, ବଧୂ ବେଶେ ଯାଏ ଶାଶୁଘର ଗୀତରୁ, ରେଡ଼ିଓ ଗୀତ ଶୁଣି ମାଁ ଓ ନାନୀମାନଙ୍କ ଆଖି ଛଳଛଳ ହେଉଥିବା ଦେଖି ମୁଁ ଚକିତ ହେଉଥାଏଁ, ବିନାକା ଗୀତମାଲା ଶୁଣି ହିନ୍ଦୀ ସିନେମାର ଗୀତପ୍ରତି ପ୍ରଚଣ୍ଡ ଦୁର୍ବଳତା ସୃଷ୍ଟି ହେଲା । ରେଡିଓର ବାକି କାର୍ଯ୍ୟକ୍ରମ ଅପେକ୍ଷା ସଂଗୀତ କାର୍ଯ୍ୟକ୍ରମ ପ୍ରତି ଅହେତୁକ ଉତ୍ସାହ ଜନ୍ମିଲା ମୋ ଭିତରେ । ସଂଗମ୍ ଚଳଚ୍ଚିତ୍ରର ରାଜ କପୁର, ରାଜେନ୍ଦ୍ର କୁମାରଙ୍କୁ ଛାଡ଼ି ମୁକେଶ, ଲତା ଓ ଶଙ୍କର ଜୈକିଷନ ଆଦି ସାଂଗୀତିକ ଚରିତ୍ର ଆଡ଼କୁ ମନ ଢଳିବାରେ ଲାଗିଲା । ପରେ ରେଡ଼ିଓ ସହ ତାଳମିଳାଇ ପଢ଼ାଟେବୁଲ୍‌କୁ ବଜାଇବା ଆରମ୍ଭ କଲି । ନିଜକୁ ନିଜେ ପରୀକ୍ଷା କରୁଥାଏଁ, ମୁଁ ସଠିକ୍ ବଜାଇପାରୁଛି ନା ନାହିଁ ।। ଗୀତସହ ତାଳମିଶାଇ ମୋର ଟେବୁଲ୍ ବଜାଇବା ଶୈଳୀ ଦେଖି ବଡ଼ଭାଇ ଚକିତ ହୋଇଯାଉଥିଲେ, ମାଁ ପଢ଼ାପଢ଼ିରେ ମନ ଦେ, ବୋଲି କୋମଳ ଗାଳି ଦେଉଥିଲେ । ବାପା ଗାଳି କରିବେ ବୋଲି ତାଙ୍କ ଉପସ୍ଥିତିରେ କେବେ ଟେବୁଲ ପିଟିବା ସତ୍‌ସାହସ କରୁନଥିଲି । ଏଥିଲା ସଂଗୀତକଳା ପ୍ରତି ଆଗ୍ରହଥିବାର ପ୍ରଥମ ଖଡ଼ିଛୁଆଁ ।



ସେ ସମୟରେ ଫୁଟ୍‌ବଲ୍ ଖେଳରେ ସୁନ୍ଦରଗଡ଼ର ଖୁବ୍ ଖ୍ୟାତି ଥିଲା । ବହୁ ସିନିୟର୍ ଖେଳାଳୀମାନେ ଆସି ହାଇସ୍କୁଲ ପଡ଼ିଆରେ ଅଭ୍ୟାସ କରୁଥିଲେ । ସେମାନଙ୍କ ଭିତରୁ ଟୁନୁ ବହିଦାର, ଖଡିଁଧାରୀ ନାଏକ୍ ଆଦିଙ୍କ ନାମ ମୋର ମନେ ଅଛି । ଟୁନୁବାବୁ, ସେତେବେଳେ ଦେବାନନ୍ଦ ନାମରେ ପରିଚିତ ଥିଲେ, କାରଣ ସେ ଦେବାନନ୍ଦଙ୍କ ଭଳି ଟେରିକଟ୍ ହେୟାର ଷ୍ଟାଇଲରେ ବାଳ କୁଣ୍ଡାଉଥିଲେ । ମୁଁ ପଞ୍ଚମ, ଷଷ୍ଠ ଶ୍ରେଣୀର ଛାତ୍ର, ତାଙ୍କ ସହ ଫୁଟବଲ୍ ଖେଳେ, ପୁଣି ଗୋଲ୍‌କିପର୍ । ଟୁନୁ ବହିଦାରଙ୍କ ହାର୍ଡସଟ୍‌କୁ ମଧ୍ୟ ଅକ୍ଲେଶରେ ଧରିପାରୁଥିବା ଦେଖି ସମସ୍ତେ ବାହାବାହା କରୁଥିଲେ । ଏମିତି ଖେଳିବା ବାହାଦୂରୀ ଦେଖାଇ ଥରେ ବାମହାତ ପୁଣି ଭାଙ୍ଗିଲା, ବେଣ୍ଡେଜ୍ ଲାଗିଲା । ସବୁ ବୟସରେ ଏ ଡାକ୍ତରଖାନା ମୋ ପିଛା ଛାଡୁନଥିଲା । ସେଇଥିପାଇଁ ବୋଧହୁଏ ଭଗବାନ୍ ପୁଅକୁ ଡାକ୍ତର କଲେ, ଆଉ ଡାକ୍ତରଖାନା ନ'ଯିବାର ବାଟ ଦେଖାଇଦେଲେ ।

ଫୁଟ୍‌ବଲ୍ ପ୍ରତି ଆଗ୍ରହ ଧନୁପାଲି ଆସିବାପରେ ବି ଜାରି ରହିଥିଲା । ବାପା, ରେଭେନ୍ସା କଲେଜରେ ପଢ଼ିବାବେଳେ ଫୁଟ୍‌ବଲ୍, ହକି ଆଦି ଖେଳୁଥିଲେ । ବାପାଙ୍କ ହାତଲେଖା କିଛି ଅନୁଭୂତିର କାଗଜ, ତାଙ୍କ ଅନ୍ତେ ତାଙ୍କ ନିଜ ବାକ୍ସରୁ ମିଳିଥିଲା । ଫୁଟ୍‌ବଲ୍‌କୁ ନେଇ ସେଥିରେ ଏକ ରୋଚକ କଥା ଉଲ୍ଲେଖ ଥିଲା । ଥରେ ରେଭେନ୍ସା କଲେଜର ଇଷ୍ଟ ଛାତ୍ରାବାସ ଓ ପଶ୍ଚିମ ଛାତ୍ରାବାସ ମଧ୍ୟରେ ଫୁଟ୍‌ବଲ୍ ପ୍ରତିଯୋଗିତା ଆୟୋଜିତ ହୋଇଥିଲା । ପଶ୍ଚିମ ଛାତ୍ରାବାସରେ ପ୍ରାୟ ପଶ୍ଚିମ ଓଡ଼ିଶାର ଛାତ୍ରମାନେ ରହୁଥିଲେ । ପୂର୍ବର କେପ୍‌ଟେନ୍ ଥିଲେ ବିଜୁ ପଟ୍ଟନାୟକ ଆଉ ପଶ୍ଚିମର ଶ୍ରଦ୍ଧାକର ସୂପକାର । ବାପା ପଶ୍ଚିମ ଛାତ୍ରାବାସ ତରଫରୁ ବେକ୍‌ପୋଷ୍ଟରେ ଖେଳୁଥିଲେ । ଖେଳ ଚାଲୁଥିବା ସମୟରେ ପୂର୍ବ ଛାତ୍ରାବାସ ଦଳର ଜଣେ ଖେଳାଳୀ ବାପାଙ୍କୁ ଫାଉଲ୍‌ମାରି ତଳେ ପକାଇଦେଲା । ସାଙ୍ଗେ ସାଙ୍ଗେ ବିଜୁବାବୁ ଆସି ଫାଉଲ୍‌ମାରିଥିବା ଖେଳାଳୀକୁ ଜୋର୍ ଏକ ମୁଥମାରି ପ୍ରଚଣ୍ଡ ଗାଳିଗୁଲଜ କଲେ ଓ ବାପାଙ୍କୁ କ୍ଷମା ପ୍ରାର୍ଥନା କରିବା ପାଇଁ କହିଲେ । ସେ ବାପାଙ୍କୁ କ୍ଷମା ମାଗିବାପରେ ଯାଇ ପୁଣି ଖେଳ ଜାରିରହିଥିଲା । ସୁନ୍ଦରଗଡ଼ରେ ବାପା ହକି ଖେଳୁଥିବା ମୁଁ ଦେଖିଛି । ତେଣୁ ଖେଳ ପ୍ରତି ଆଗ୍ରହ ସୃଷ୍ଟି ହେବା ସ୍ୱାଭାବିକ ।

କଳାପ୍ରତି, ଖେଳପ୍ରତି, ସଂଗୀତ ପ୍ରତି ପ୍ରଚୁର ଦୁର୍ବଳତା ଥିବା ଏହି ବୟସରୁ ହିଁ ଜାଣିପାରିଥିଲି । ସୁନ୍ଦରଗଡ଼ର ଅନୁଭୂତି ସମ୍ପନ୍ନ ସୁନ୍ଦର ସୁନ୍ଦର କଥାମାନ ଅଛି, ଘଟିଯାଇଛି ଯାହା କାଳର ପ୍ରବାହରେ, ମୂର୍ତ୍ତିର ମେରୁ ଗଢ଼ିବା ପରି ମୋ କଳାଜୀବନର କଙ୍କାଳଟା

ଗଢ଼ିହେଉଥିଲା ସ୍ୱତସ୍ଫୂର୍ତ୍ତ ଗତିରେ, ନଈର ସାଙ୍ଗୀତିକ ଗତିପରି । ମୋ ଅଜାଣତରେ ମୋ ଭିତରେ କେହିଜଣେ ପଥପ୍ରଦର୍ଶନ କରୁଥିଲା ଯେମିତି, ଭବିଷ୍ୟତରେ ତୁ ଆଉ କିଛି ହ' ବା ନ ହ', କଳାକାରଟିଏ ନିଶ୍ଚୟ ହେବୁ, ଏଭଳି ସଙ୍କଳନର ନୀତିବାଣୀରେ ମୋତେ ମୋହିତ କରୁଥିଲା ଯେମିତି । ମୁଁ ବି ଶତ ନାଲି ଆଖିକୁ ଭ୍ରୂକ୍ଷେପ ନକରି ସେଇ ପଥର ଏକାକୀ ଅଶ୍ୱାରୋହୀ ପାଲଟିଗଲି ।



ଆଜିର ସୁନ୍ଦରଗଡ଼ର ଚାକଚକ୍ୟ ରୂପ ଦେଖିଲାବେଳେ ମୋର ମନେପଡ଼ିଯାଉଛି, ବାଷଠୀତେଷଠୀରେ ସୁନ୍ଦରଗଡ଼ ସହରରେ ଘଟିଥିବା ଭୟାବହ ସାମ୍ପ୍ରଦାୟିକ ଗଣ୍ଡଗୋଳର କଥା । ସୁନ୍ଦରଗଡ଼ର ଶାନ୍ତ, କୋମଳ ବକ୍ଷରେ ବହିଲା ରକ୍ତର ନଦୀ । ବାପା ଆମକୁ ଘର ଭିତରେ ହିଁ ରହିବା ପାଇଁ କହିଥିବାରୁ ସାମ୍ନାରେ ସ୍ୱଚକ୍ଷୁରେ ନ ଦେଖିଲେ ବି ଆମ ସାମ୍ନାରେ ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ଲୋକମାନଙ୍କ ଦ୍ୱାରା ବୁହାଚାଲିଥିଲା । ଲୁଣବସ୍ତାଠାରୁ ରେଡିଓ, ଫେନ୍, ଥାନଥାନ ଲୁଗା ଯାଏଁ ସବୁ ଲୁଟ୍ ହେଉଥିଲା । ଦୋକାନବଜାର ଜଳାପୋଡ଼ାର ଧୂମ୍ରକୁଣ୍ଡଳୀ ସାରାସହରକୁ ଢାଙ୍କି ପକେଇଥାଏ । ହଣାକଟାର ଆର୍ତ୍ତଚିତ୍କାରରେ ପ୍ରକମ୍ପିତ ହୋଇପଡୁଥିଲା ସାରା ସହର ।

ଏସବୁ ମୋ ମନ ଭିତରେ ଏତେ ରେଖାପାତ ସୃଷ୍ଟିକରିଛି, ଯାହା ଏ ଯାଏଁ ଅଭୁଲା ହୋଇ ରହିଛି ।

ମୋ କୈଶୋର ଯେହେତୁ ବିଦ୍ୟାଳୟ ପରିସରଭିତରେ କଟୁଥିଲା, ମୋ ସାଙ୍ଗ, ଯେଉଁମାନଙ୍କ ସାଙ୍ଗରେ ମୁଁ ବାଟି, ଭଉଁରା, ରେସ୍‌ଟିପ୍ ଆଦି ଖେଳୁଥିଲି, ସେମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ପିଅନ ବା ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ପିଲାମାନେ । ସ୍କୁଲ ପାଚେରୀ ବାହାରକୁ ଯାଇ ଖେଳିବା ପ୍ରାୟତଃ ମନାଥିଲା । ପଞ୍ଚମ, ଷଷ୍ଠ ଶ୍ରେଣୀ ବେଳକୁ ପିଲ୍‌ପିଲି ଓରଫ୍ ନଟବରଲାଲ ଅଗ୍ରୱାଲ, କାମିନୀ ପୁରୋହିତ, ରଜନୀ ପୁରୋହିତ, ବିଶ୍ୱରଂଜନ ମିଶ୍ର ଆଦି ବନ୍ଧୁମାନଙ୍କ ସହ ମୋର ସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ଏମାନଙ୍କ ଭିତରୁ ପିଲ୍‌ପିଲି ସହ ଘନିଷ୍ଠତା ବେଶି ଥିଲା । ବେଳ ପାଇଲେ ସେ ତାଙ୍କର ତିନିଚକିଆ ଛୋଟ ସାଇକଲ ଧରି ଆମ ଘରକୁ ଚାଲି ଆସୁଥିଲେ । ଆମେ ଦୁହେଁ ଚାଲି ଯାଉଥିଲୁ ବସ୍‌ଷ୍ଟେଣ୍ଡ ରାସ୍ତାକୁ, ଯାହାର ଉଭୟପଟରେ ଶୋଭା ପାଉଥିଲା ଦୁଇଟି ସୁଶୋଭିତ ପୋଖରୀ, ତା' ହୁଡ଼ାରେ ଧାଡ଼ି ବାନ୍ଧିଥିବା ଖଜୁରୀ ଗଛ । ସେଇଠୁ ଶହେ ଦେଢ଼ଶହ ମିଟର ଚାଲିଗଲେ ପହଞ୍ଚିଯାଏ ବସ୍‌ଷ୍ଟେଣ୍ଡ । ତିନିଚକିଆ ସାଇକଲ୍ ହିଁ ଥିଲା ଖେଳର ଏକମାତ୍ର ମାଧ୍ୟମ ।

କେତେକେତେବେଳେ ସାଙ୍ଗମାନେ ଚାଲିଯାଉଥିଲୁ ଅଦୂରରେ ଥିବା ଟାଙ୍ଗରା ପାହାଡ଼ର ଟିପିକୁ, ସେଠି ରେସ୍‌ଟିପ୍ ଖେଳୁଥିଲୁ । ସ୍କୁଲ ପ୍ରାଙ୍ଗଣରେ ରବର୍ ଫୁଟ୍‌ବଲ୍, ବାଟି ଓ ନଟୁ ବା ଭଉଁରା ଖେଳୁଥିଲୁ । କୌଣସି ଖେଳରେ ହାରିବା ମୋ ଜାତକରେ ନଥିଲା । ଆମ ଘରକୁ ଲାଗି କ୍ୱାର୍ଟର୍‌ରେ ସହକାରୀ ଶିକ୍ଷକ କସ୍ତୁରୀବାବୁ ରହୁଥିଲେ, କସ୍ତୁରୀଚରଣ ଦାସ, ସେ ଜଣେ ପୋଖତ କେରମ୍ ଖେଳାଳୀ ଥିଲେ । ମୁଁ ତାଙ୍କ ଘରକୁ ଯାଇ କେରମ୍ ଖେଳୁଥିଲି । ବହୁ ସମୟରେ ମୁଁ କସ୍ତୁରୀବାବୁଙ୍କୁ ମଧ୍ୟ ହରାଉଥିଲି ଏବଂ ଗର୍ବ ଅନୁଭବ କରୁଥିଲି । ଅଗଷ୍ଟ ପନ୍ଦର ବା ଜାନୁଆରୀ ଛବିଶ୍ ଆସିଲେ ସ୍କୁଲ ପ୍ରାଙ୍ଗଣରେ ଏନ.ସି.ସି. କେଡେଟ୍‌ମାନଙ୍କ ଅଭ୍ୟାସ ଘଣ୍ଟାଘଣ୍ଟା ବସି ଦେଖୁଥିଲି । ଖୁବ୍ ଭଲ ଲାଗୁଥିଲା ସେ ପେରେଡ୍‌ର ଦୃଶ୍ୟ । ମୋ ଭିତରେ ଦେଶଭକ୍ତିର ଭାବ ଉଦ୍ରେକ ହେଉଥିଲା । ସ୍କୁଲରେ ଏନ୍.ସି.ସି. ନାଭାଲ୍ ଉଇଙ୍ଗ୍ ଥିଲା । ଭଞ୍ଜସାର୍ ବୋଲି ଜଣେ ଶିକ୍ଷକ ସେଇ ଦାୟିତ୍ୱରେ ଥିଲେ । ଗୋରା ତକ୍‌ତକ୍ ଡେଙ୍ଗା ମଣିଷ, ଧଳା ନାଭାଲ୍ ଡ୍ରେସ୍‌ରେ ଥିଲେ ଦୃପ୍ତ ଭାରତୀୟ ସୈନିକ ଭଳି ଦିଶୁଥିଲେ । ଖୁବ୍ ଶୃଙ୍ଖଳାର ସହ ସେ ସମସ୍ତ କାର୍ଯ୍ୟକୁ ପରିଚାଳନା କରୁଥିଲେ ।

୧୯୬୨-୬୩ ବେଳର କଥା, ଚୀନ୍ ଭାରତ ଯୁଦ୍ଧ ଘମାଘୋଟ୍ ଚାଲିଥିଲା । ଚୀନ୍ ପ୍ରଧାନମନ୍ତ୍ରୀ ଚାଓ ଏନ୍ ଲାଏ ବିରୁଦ୍ଧରେ ସମଗ୍ର ଭାରତୀୟମାନଙ୍କ ଭିତରେ ପ୍ରଚଣ୍ଡ ଘୃଣାଭାବ ସୃଷ୍ଟି ହୋଇଥିଲା । ମୋର କୈଶୋର ବୟସରେ ବି ତା' ନାମ ଶୁଣିଲେ କ୍ରୋଧରେ ଜଳିପୋଡ଼ି ଯାଉଥିଲି ମୁଁ । ରେଡ଼ିଓରେ ବାରମ୍ବାର ଦେଶାତ୍ମବୋଧକ ଗୀତମାନ ପ୍ରସାରିତ ହେଉଥିଲା । ସେସବୁ ଶୁଣିଶୁଣି ଦେଶପ୍ରତି ତ୍ୟାଗ ମନୋଭାବ ଜନ୍ମୁଥିଲା । ନେହେରୁଙ୍କ ଆହ୍ୱାନରେ ସମଗ୍ର ଭାରତବାସୀ ଅର୍ଥସହ ସୁନାଗହଣା ଆଦି ଦେଶପାଇଁ ଅକ୍ଳେଶରେ ଦାନକରୁଥିବା ସମ୍ବାଦ ଆମ ପରିବାରକୁ ଉଦ୍‌ବେଳିତ କରୁଥିଲା । ବାପା, ଏ ବାବଦରେ ଖୁବ୍ ଚିନ୍ତିତ ତଥା ଭାବବିହ୍ୱଳ ଜଣାପଡୁଥିଲେ । ଶିକ୍ଷକମାନଙ୍କ ସହ ଏ ସମ୍ବନ୍ଧରେ ବାରମ୍ବାର ଆଲୋଚନା କରୁଥିଲେ । ମୁଁ ସେଇ ବୟସରେ ବି ବାପାଙ୍କ ଦେଶପ୍ରେମ ମନୋଭାବର ସୂଚନା ପାଇଥିଲି । ଯେ ପରାଧୀନ ଭାରତର ଅନ୍ଧାରୀ ରାଜତ୍ୱକୁ ମର୍ମେମର୍ମେ ଅନୁଭବ କରିଥିଲେ, ଓ୍ୱାର୍ଦ୍ଧାଠାରେ ତାଲିମ୍ ଗ୍ରହଣ କରିଥିଲେ । ବିନୋବା ଭାବେଙ୍କ ଭୂଦାନ ଆନ୍ଦୋଳନରେ ଜଡ଼ିତ ଥିଲେ । ସେ ବା କେମିତି ନିଜ ଦେଶ ପ୍ରତି ଶତ୍ରୁର ଆକ୍ରମଣକୁ ବରଦାସ୍ତ କରିପାରିଥାନ୍ତେ । କ୍ରମଶଃ ଯୁଦ୍ଧର ଅବସାନ ଘଟିଲା । କିଏ ଜିତିଲା, କିଏ ହାରିଲା, ସେ ଜ୍ଞାନ ମୋର ନଥିଲା । ତେବେ ୧୯୬୩ ମସିହାର ଏକ ନୀରବ ମଧ୍ୟାହ୍ନରେ ରେଡ଼ିଓରୁ ପ୍ରଧାନମନ୍ତ୍ରୀ



ଜବାହାରଲାଲ ନେହେରୁ ଆଉ ଇହ ଜଗତରେ ନାହାନ୍ତି ବୋଲି ସମ୍ବାଦଟିଏ ଯତିନ ଦାସଙ୍କ କଣ୍ଠରେ ଯେତେବେଳେ ପ୍ରସାରିତ ହେଲା, ସେତେବେଳେ ବାପା ଘରେ ନଥିଲେ। ମୁଁ ଓ ଆମ ପରିବାରର ସମସ୍ତେ ଜାଣିସାରିଥିଲୁ। ବାପା ଯେତେବେଳେ ଘରକୁ ଆସିଲେ, ସର୍ବ ପ୍ରଥମେ ମୁଁ ତାଙ୍କ ପାଖକୁ ଦୌଡ଼ିଯାଇ ଖବରଟା ଶୁଣେଇଦେଲି। ପ୍ରଥମେ ସେ ବିଶ୍ୱାସ କରୁନଥିଲେ, ଯେହେତୁ ମୁଁ ଜଣେ ନାବାଳକ ଥିଲି। ତେବେ ପରେ ରେଡ଼ିଓରୁ ସେ ସମ୍ବାଦର ସତ୍ୟତାକୁ ଅନୁଭବ କଲେ। ବସିପଡ଼ି ଏଭଳି କାନ୍ଦିବାରେ ଲାଗିଲେ, ଯେଭଳି ଘରର ଜଣଙ୍କର ନିଧନ ହୋଇଥିଲା। ନେହେରୁଙ୍କ ଶବଶୋଭାଯାତ୍ରାର ଧାରା ବିବରଣୀ ରେଡ଼ିଓରୁ ଶୁଣି ବାରବାର ଆଖି ଭିଜାଉଥିଲେ ବାପା।

ବାପା ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ ସ୍ୱଭାବର ଲୋକ। ଥରେ ସୁନ୍ଦରଗଡ଼ ଖେଳପଡ଼ିଆରେ, ଏବେ ଯେଉଁଠି ଷ୍ଟେଡିୟମ ଅଛି, ସେଠାରେ ହାଇସ୍କୁଲ ଓ ସୁନ୍ଦରଗଡ଼ କଲେଜ୍ ମଧ୍ୟରେ ଫୁଟବଲ୍ ଖେଳ ଚାଲୁଥିଲା। ଡ. କେ.ଏସ୍.ଆର୍. ମୂର୍ତ୍ତି ଥିଲେ କଲେଜର ଅଧ୍ୟକ୍ଷ। କୌଣସି କାରଣରୁ ଖେଳମଝିରେ ବିଶୃଙ୍ଖଳା ସୃଷ୍ଟିହେଲା। ବାପା ସାଙ୍ଗେସାଙ୍ଗେ ଖେଳ ପଡ଼ିଆରୁ ସ୍କୁଲ ଖେଳାଳୀମାନଙ୍କୁ ସ୍କୁଲ ଫେରିଯିବାର ଆଦେଶ ଦେଇ ନିଜେ ପଡ଼ିଆରୁ ଫେରିଆସିଥିଲେ। ପ୍ରଦର୍ଶନୀ ଫୁଟବଲ୍ ମେଚ୍‌ରେ ବାପା ମୋଟର୍ ହର୍ଣ୍ଣ ଧରି ରେଫରୀର ଭୂମିକାରେ ପଡ଼ିଆକୁ ଓହ୍ଲାଇ ଥିବାର ମୁଁ ଦେଖିଛି। କିଏ ଫାଉଲ୍ ଖେଳିଲେ ହର୍ଣ୍ଣବଜାଇ ଖେଳ ରୋକୁଥିଲେ। ଥରେ ଥରେ ନିଜେ ବଲ୍ ନେଇ ଗୋଲପୋଷ୍ଟ ଆଡ଼କୁ ମାରି ଦେଉଥିଲେ।

ମାଁ, ଖୁବ୍ ଚଳଚ୍ଚିତ୍ର ପ୍ରିୟ ଥିଲେ। ସୁନ୍ଦରଗଡ଼ର ଶେଖର ସିନେମା ହଲ୍ ଆମ ଘରୁ ଖୁବ୍ ପାଖରେ ଥିଲା। ଆମ ଘରୁ ପୋଖରୀ ଟିଏ ହିଡ଼ରେ ହିଡ଼ରେ ପାରି ହୋଇଗଲେ ସିନେମା ହଲ୍ ଅଞ୍ଚଳ ଆସିଯାଉଥିଲା। ରବିବାର ଆସିଗଲେ, ମାଁ ଆମର ଛୁଆମାନଙ୍କୁ ଧରି ଚାଲିଚାଲି ଛୁଟି ଯାଉଥିଲେ ସିନେମା, ମେଟିନୀ ସୋ ଦେଖିବାକୁ। ମାଁଙ୍କର ପ୍ରିୟ ଥିଲା ପୌରାଣିକ ସିନେମା। ସୁନ୍ଦରଗଡ଼ ଶେଖର ସିନେମାରେ ଆମେ ନାଗିନ୍, ନାଗପଞ୍ଚମୀ, ନାଗ ଚତୁର୍ଥୀ, ଜିସ୍ ଦେଶ୍ ମେ ଗଙ୍ଗା ବହତି ହୈ, ଜିନ୍ଦେଗୀ, ସାଞ୍ଜ ଔର ସବେରା ଆଦି ଚଳଚ୍ଚିତ୍ର ଦେଖିଛୁଁ, ପ୍ରଭାବିତ ହୋଇଛୁ।

ସିନେମା ସହ ତାର ସଂଗୀତ, ରାଜ କପୁର, ରାଜେନ୍ଦ୍ର କୁମାର, ପଦ୍ମିନୀ, ପ୍ରାଣ୍, ନିରୂପା ରାୟ, ଦୁର୍ଗା ଖୋଟେ ଭଳି ଅଭିନେତା ଅଭିନେତ୍ରୀମାନଙ୍କ ସହ, ସେଥିରେ ଥିବା ଗୀତମାନଙ୍କର ସହ ସମ୍ପର୍କ ପ୍ରତିଷ୍ଠିତ ହେଲା, ମୋତେ ଅନନ୍ତଃ ଖୁବ୍ ପ୍ରଭାବିତ କଲା।

ଆମ ଘର ପାଖରେ ରାଜବାଟୀ ପ୍ରାଙ୍ଗଣରେ ଜଗନ୍ନାଥ ମନ୍ଦିର ଅଛି । ସେଠାରେ ରଥଯାତ୍ରା ଖୁବ୍ ଭଲ ହେଉଥିଲା । ଭିଡ଼ ବି ହେଉଥିଲା ପ୍ରବଳ । ମୁଁ ମାଙ୍କଠୁ ଯେତିକି ପଇସା ରଥ ପାଇଁ ବକ୍ସିସ୍ ପାଉଥିଲି, ତାକୁ ଖର୍ଚ୍ଚକରି ମୋ ଭଉଣୀ ଜ୍ୟୋସ୍ନା ଓ ଭାଇ ବ୍ରଜେନ୍ଦ୍ର ପାଇଁ ଖୁବ୍ ଖେଳନା କିଣିଦେଉଥିଲି । ଆମ ଘରେ ଦୁଇଟି ଛୋଟ ଟିଣବାକ୍ସ ଥିଲା । ମୁଁ ସେଥିରେ ବାବୁ ଓ ବୁଇ ବୋଲି ରଙ୍ଗରେ ଲେଖିଦେଇ ଖେଳନାମାନ ସେଥିରେ ସାଇତି ରଖିଦେଉଥିଲି । ଏବେ ବି ସେ ବାକ୍ସ ଦୁଇଟି ଘରର କେଉଁ ସନ୍ଧିରେ ମୁହଁ ଲୁଚାଇ ପଡ଼ିଥିବେ । ଭାଇଭଉଣୀଙ୍କ ସହ ସମ୍ପର୍କ କେତେ ସ୍ନେହାସିକ୍ତ ଥିଲା ସତେ, ଆଜି ବି ଅବଶ୍ୟ ଠିକ୍ ସେହି ପରିମାଣରେ ଅତୁଟ ରହିଛି, ପରିବେଶର କେବଳ ପରିବର୍ତ୍ତନ ହୋଇଛି ।

ସୁନ୍ଦରଗଡ଼ ଶିଖାଇଛି ସମ୍ପର୍କର ପବିତ୍ରତା, ଦେଶଭକ୍ତିର ମୂଲ୍ୟବୋଧ, ପାରିବାରିକ ସମ୍ବନ୍ଧର ସନ୍ନିକଟତା, ଜୀବନରେ ସଂଗୀତ, ବାଦ୍ୟ, ନୃତ୍ୟର ମହନୀୟତାର, ଖେଳୁଆଡ ମନୋଭାବ ଏମିତି ଆହୁରି ଅନେକ । ଅନେକ ବର୍ଷ ପରେ ବିଂଶଶତକର ଶେଷ ବିନ୍ଦୁରେ, ଥରେ ସୁନ୍ଦରଗଡ଼ଯିବାର ସୌଭାଗ୍ୟ ପାଇଥିଲି । ଜାଣିବାକୁ ପାଇଲି, ଭୂତଳ କୋଇଲା ଜିଲ୍ଲାର ଅର୍ଥନୀତିକୁ ବଳିଷ୍ଠ କରିଛି, ସଂଖ୍ୟାଧିକ କୋଠାବାଡ଼ିରେ ସଜ୍ଜିତ ହୋଇ ତାର ନବକଳେବର ଘଟିଛି ।



ଅତୀତର ଘଟଣାସବୁକୁ ପାଠକମାନଙ୍କ ନିକଟରେ ବାଣ୍ଟିଦେବାରେ ଯେଉଁ ଆନନ୍ଦ, ତାହା ଅବର୍ଣ୍ଣନୀୟ । କେତେକେତେ ବର୍ଷତଳୁ ଅନ୍ତରାତ୍ମାରେ ଲୁପ୍ତାବସ୍ଥାରେ ଥିବା ଅକଥନୀୟ କଥାମାନ, ଘଟଣାମାନ, କୋହଭର୍ତ୍ତି ନିଃଶବ୍ଦ ପ୍ରତିଧ୍ୱନିମାନ, ଆନନ୍ଦଭରା ଓଠଉଛୁଳା ହସପସରାମାନ, ଉତ୍ତେଜକ ମୁହୂର୍ତ୍ତମାନ ଆଜି ପର୍ବତ ଶିଖରୁ ପ୍ରପାତପତନ ଭଳି ଉଜାଡ଼ିହୋଇଯାଉଛି ଅକ୍ଷରେଅକ୍ଷରେ, ଆଉ ତାର ବିରାଟ ଛାତି ଉପରେ ଇନ୍ଦ୍ରଧନୁ ସମ ପ୍ରତିଫଳିତ ହୋଇଯାଉଛି ମୋ ଜୀବନର ପ୍ରତିଲିପି ।।

ସୁନ୍ଦରଗଡ଼ରେ ମୋର ସାଂସ୍କୃତିକ ଜୀବନର ଛାଞ୍ଚଟିଏ ଗଢ଼ିହୋଇଥିଲା, ମାନସର କେଉଁ ଏକ ନିଭୃତ ଅନୁକୋଣରେ ସୁପ୍ତ ବାସନାଟିଏ ଉଙ୍କିମାରୁଥାଏ ସୃଜନଶୀଳ ପ୍ରବୃତ୍ତିଟିଏ, ସ୍ୱପ୍ନଗୁଡ଼ିକ ବିଞ୍ଛି ହୋଇଯାଉଥାଏ ତାରାଭର୍ତ୍ତି ରାତିମାନଙ୍କରେ, ସୁନ୍ଦରଗଡ଼ର ଗୋଡ଼ିମାଟିରେ ବି ମୋତେ ଦେଖାଯାଉଥିଲା କୋଣାର୍କର କାରୁକାର୍ଯ୍ୟଭରା ସ୍ଥପତି, ଇବ୍‌ନଦୀର ଶବ୍ଦହୀନ ପ୍ରବାହରେ ମୁଁ ଶୁଣିପାରୁଥିଲି ସାଂସ୍କୃତିକ ଜୀବନୋତ୍ସବର ପ୍ରାରମ୍ଭିକ ସମବେତ କଲ୍ଲୋଳିତ ସଂଗୀତର ଝଙ୍କାର,

ନଦୀକୂଳ ଛୁଇଁ ଇତିହାସର ସାକ୍ଷୀ ଭାବରେ ଦଣ୍ଡାୟମାନ ହୋଇଥିବା ଟାଙ୍ଗରା ପାହାଡ଼ ଟିପିରେ ଛିଡ଼ା ହୋଇ ମୁଁ ଦେଖିପାରୁଥିଲି କରମାନାଚର ଉତ୍ତୁଙ୍ଗ ସମ୍ମିଳିତ ନୃତ୍ୟ, ଶୁଣିପାରୁଥିଲି ସୁଦୂର ପୋଢ଼ବାଡ଼ି ଗାଁର ଆମ୍ବ ବୁରେଇର ଛାୟାନ୍ଧକାରରେ ଷୋହଳ ଦେବୀଦେବତାଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣ ସମର୍ପିଦେଇ ଢୋଲବାଦ୍ୟର ତାଳେ ତାଳେ ଡାଲଖାଇଗୀତରେ ମସ୍‌ଗୁଲ୍‌ଥିବା ଗୁରୁବାରୀ ମିର୍ଦ୍ଧାର ସୁଲଳିତ ସଙ୍ଗୀତ, ଆଉ ବି ମନଦର୍ପଣରେ ପ୍ରତିଫଳିତ ହୋଇ ଯାଉଥିଲା ମାଁ ମାଣିକେଶ୍ୱରୀଙ୍କ ମନ୍ଦିର ଲେଉଟାଣି ଛତର୍‌ଯାତ୍ରାରେ ବୀରଦର୍ପରେ ନୃତ୍ୟରତ ଘୁମୁରା ଶିଳ୍ପୀମାନଙ୍କ ରାଜକୀୟ ଠାଣି, ସୁଦୂର ବୌଦ ସୋନପୁରର କଳା ରସ୍‌ରସ୍ ମାଟିରେ ଗଢ଼ୁଥିବା ଧୂଳିଦଣ୍ଡର ଭଗତାମାନଙ୍କୁ । ଏତେ ସ୍ୱପ୍ନକୁ ରାତି କାହିଁ ?

ସୁନ୍ଦରଗଡ଼ରେ ମୋ ବଡ଼ନାନୀଙ୍କ ବାହାଘର ଆୟୋଜିତ ହୋଇଥିଲା । ବାହାଘର ପନ୍ଦର ଦିନ ଆଗରୁ ମୋ ବଡ଼ଖା ବାପା, ସୂର୍ଯ୍ୟଭାନୁ ବିଶ୍ୱାଲ ଆସି ସଜବାଜରେ ଲାଗିପଡ଼ିଲେ । ହାଇସ୍କୁଲ ପରିସରରେ ହିଁ ବାହାଘର ବେଦୀ, ଭୋଜି ସବୁ ସଜ୍ଜିତ ହୋଇଥିଲା । ଅଜା ନିଜେ ବିଭିନ୍ନ ରଙ୍ଗର ଜରିକାଗଜ, ତାମଡ଼ା, ଆଦି ଆଣି କାଗଜର ଅସଂଖ୍ୟ ରକମରକମ ଫୁଲମାନ ତିଆରି କଲେ । ଛୋଟଛୋଟ ବାଉଁଶ କାଠିରେ ତାକୁ ଅଠାରେ ଲଗେଇଲେ ଏବଂ ଶେଷରେ ବଡ଼ ମୁଣ୍ଡେଉଚ୍ଚ ବାଉଁଶବାଡ଼ିର ଉପର ଫୁଟେ ଦୁଇ ଫୁଟ ଅଞ୍ଚଳରେ ପାଳ ବାନ୍ଧିଦେଲେ, ସେଇ କାଠିଫୁଲମାନ ଗେଞ୍ଜି ଦେଲେ, ଗୋଟିଏ ବାଉଁଶରେ ଆଠଦଶଟା ଲେଖାଏଁ । ଅଜାଙ୍କୁ ପଚାରି ବୁଝିଲି, ସେ ସବୁ ବରଯାତ୍ରୀ ଶୋଭାଯାତ୍ରାରେ ଲୋକ ଧରିବେ, ଦୁଇ ଧାଡ଼ିରେ ବରଯାତ୍ରୀଙ୍କ ଶୋଭାବର୍ଦ୍ଧନ ପାଇଁ, ଏବେ ଯେମିତି ଜେନେରେଟର୍ ଲାଇଟ୍ ଧରାଯାଉଛି, ଠିକ୍ ସେମିତି । ବଡ଼ନାନୀ ମେଟ୍ରିକ୍ ପାସ୍ କଲେ ପରେପରେ ବାହା ହୋଇଗଲେ, ଦେବଗଡ଼ରୁ ଜୋଇଁ ଆସିଥିଲେ, ହସ୍ତବନ୍ଧନରେ ଯୋଡ଼ିହୋଇ ନାନୀକୁ ନେଇଗଲେ ନୂଆଁସଂସାର ତିଆରିବା ପାଇଁ । ଗଇଁ ପୂର୍ଣ୍ଣଚନ୍ଦ୍ର ପାଣି, ଅବସରପ୍ରାପ୍ତ ସହକାରୀ ଇଞ୍ଜିନିୟର, ଏକଦା ସମ୍ବଲପୁର ଜିଲ୍ଲା ଫୁଟବଲ୍ ଦଳର ମନୋନୀତ ପୋଖତ ଖେଳାଳୀ । ଏବେ ନାନୀ ପୁଅବୋହୂ, ନାତିମାନଙ୍କ ସହ ବାଙ୍ଗାଲୋରରେ ରହୁଛି ଜୀବନର ବାକିତକ ସମୟକୁ ଖର୍ଚ୍ଚ କରି ଆନନ୍ଦ ସାଉଁଟିବା ପାଇଁ । ଆଉ ଗଇଁ ଅଣ୍ଟା ଅପରେସନ୍ ପରେ ଚାରିଗୋଡ଼ିଆ ଆଶାବାଡ଼ିର ସହାୟତାରେ ଅତୀତର ସୁନେଲି ଦୃଶ୍ୟସବୁକୁ ନିରେଖି ଦେଖୁଛନ୍ତି ।

ଏ ଦୁଃଖୀଧନ ଥରେ କିଶୋରସାଙ୍ଗମାନଙ୍କ ସହ ଘର ସମ୍ମୁଖରେ ରେସ୍‌ଟିପ୍ ଖେଳୁଥିଲା । ଆମ କ୍ୱାଟର୍ ସାମ୍ନାରେ ଥିଲା ଉଜୁଡ଼ି ଯାଇଥିବା ଇ.ଟି. ସ୍କୁଲର ଭଙ୍ଗାଦଦରା କୋଠା । ଧାଡ଼ିଧାଡ଼ି ହୋଇ ଲମ୍ବିଥିଲା ଚାରି ପାଞ୍ଚୋଟି କୋଠରି । ଏମିତି ଖେଳୁଥିବା ବେଳେ ମୁଁ ଏକ କୋଠରିରେ ଲୁଚିଯାଇଥିଲି, ଯେଉଁଠି ଛାତରୁ ଓହଳି ପଡ଼ିଥିଲା ବିଦ୍ୟୁତ୍ ତାର, ତାର ଶେଷ ଭାଗଟିଥିଲା ସମ୍ପୂର୍ଣ୍ଣ ମୁକୁଳା । ଲୁଚିବା ଭିତରେ ମୋ ନଜର ପଡ଼ିଲା ସେ ତାର ଉପରେ, ତମ୍ବାତାର, ଚିକ୍‌ଚିକ୍ କରୁଛି । ଅଧମ କି ଜାଣେ ବିଦ୍ୟୁତ୍ ତାର କହିଲେ କଣ, ତାକୁ ଛୁଇଁଲେ କଣ ହୁଏ । ଦେଖୁଦେଖୁ ସେ ତାରକୁ ଜାବୁଡ଼ି ଧରିବା ମାତ୍ରେ ଏମିତି ଝଟକା ମାଇଲା, ମୋତେ କିଛି ଦୂରକୁ ଫିଙ୍ଗିଦେଲା । ଜୋର୍ ପାଟିକରି ମୁଁ ଛିଟିକି ପଡ଼ିଲି । ମୋ ପାଟି ଶୁଣି ସମସ୍ତେ ଦୌଡ଼ି ଆସି ଘରକୁ ନେଇଗଲେ । ମାଁଙ୍କଠୁ ଗାଳି ଖାଇଲି, ମାତ୍ର ଭୟରେ ବାପାଙ୍କୁ ଏ ବିଷୟରେ କେହି ଜଣେଇ ନଥିଲେ । ସମସ୍ତେ କହିଲେ, ଫିଙ୍ଗି ଦେଲା ବୋଲି ବଞ୍ଚିଗଲୁ, ନ ହେଲେ.... ।

ଆମ ଘରକୁ ଲାଗି ସ୍କୁଲ ପାଚେରୀ, ରାସ୍ତାକୁ ଯିବା ପାଇଁ କବାଟଟିଏ ଥିଲା, କବାଟ ଖୋଲିଲେ ରାସ୍ତା, ବଜାରକୁ ରାଜବାଟିକୁ, ଇବ୍ ନଦୀକୁ, ସିନେମା ହଲ୍‌କୁ । ରାସ୍ତା ଆରପାରି ଗୁଡ଼ିଆହୋଟେଲ, ଅଣିଟିଏ ଦେଲେ, ପେଡ଼ାଟିଏ ମିଳେ । ତମ୍ବା ପଇସା, ଅଣି, କଣା ପଇସାର ସେ ଥିଲା ଅନ୍ତିମ କାଳ । ତା'ସହ ପାରି ହୋଇଗଲା ଅଣା, ଷୋହଳ ଅଣାରେ ଏକ ଟଙ୍କାର ହିସାବ । ଆସିଲା ଶହେ ପଇସାରେ ଟଙ୍କାଏ ।

ଜଙ୍ଗଲଜାଗା, ଯେଉଁଠି ଯେତେବେଳେ ବି ସରୀସୃପମାନଙ୍କ ଯାତାୟାତ ଅବାଧରେ ଚାଲିଥିଲା । ଥରେ ମାଁଙ୍କ ନଜର ପଡ଼ିଲା ଦୁଆରରେ ଥିବା ବିରାଟ ବରକୋଳି ଗଛ ଉପରେ ମସ୍ତ ବଡ଼ ସାପ, ମୁଣ୍ଡ ଟୁଙ୍ଗାରୁଛି । ଛୁଆପିଲା ଘର, କେତେବେଳେ କେଉଁ କଥା । ବାପା ଏକଥା ଜାଣି ବାରା, ସ୍କୁଲର ଜଣେ ପିଅନ, ଆଦିବାସୀ ହଟ୍ଟାକଟ୍ଟା ଲୋକ, ତାକୁ ଖବର ଦିଆଗଲା । ସେ ଆସିଲା ଧନୁଶର ଧରି । ଆମ ସମସ୍ତଙ୍କ ମନରେ ଉତ୍କଣ୍ଠା, ପାଖ କ୍ୱାଟରରୁ କଣ୍ଡୁରୀବାବୁ ଓ ତାଙ୍କ ସ୍ତ୍ରୀ ମଧ୍ୟ ଘଟଣା ଦେଖିବାପାଇଁ ଚାଲିଆସିଲେ । ଧନୁଶର ମାରି ସାପଶିକାର କରିବା ବାରା, ଆମ ପାଇଁ ଥିଲା ଅବିଶ୍ୱାସର କଥା କିନ୍ତୁ, ବାରା ଯେତେବେଳେ ଗୋଟିଏ ହିଁ ଶର ନିକ୍ଷେପରେ ସାପଟି ମେଲାଦୁଆରେ ପଡ଼ି ମରିଗଲା ଆମେ ତାର ପ୍ରତିଭା ବାବଦରେ ଅବଗତ ହେଲୁଁ । ଅବଶ୍ୟ ତାହା ଥିଲା ଏକ ଢମଣା, ତଥାପି ବାରାର ସୂକ୍ଷ୍ମ ଦୃଷ୍ଟିର ସମସ୍ତେ ପ୍ରଶଂସା କଲେ ।

ଭାରତ ଚୀନ୍ ଯୁଦ୍ଧର ଅବସାନ ଘଟିଥିଲା, ପ୍ରଧାନମନ୍ତ୍ରୀ ନେହେରୁଙ୍କ ତିରୋଧାନ ପରେ ଗୁଲଜାରୀଲାଲ୍ ନନ୍ଦା ନୂତନ ପ୍ରଧାନମନ୍ତ୍ରୀ ଚୟନ ପୂର୍ବରୁ ଭାରପ୍ରାପ୍ତ ପ୍ରଧାନମନ୍ତ୍ରୀ ଭାବରେ ଦାୟିତ୍ୱଗ୍ରହଣ କଲେ, ପରେପରେ ଲାଲ ବାହାଦୂର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ଭାବରେ ଶପଥଗ୍ରହଣ କଲେ । ଦେଶର ଚତୁର୍ଦ୍ଦିଗରେ ଚର୍ଚ୍ଚା ହେଲା ଜଣେ ପ୍ରକୃତ ଭାରତୀୟ ଏବେ ଦେଶର ନେତୃତ୍ୱ ନେଲେ ।

ଠିକ୍ ସେଇସମୟରେ ବାପାଙ୍କ ବଦଳି ହେଲା ସୁଦୂର କଳାହାଣ୍ଡିକୁ, ଭବାନୀପାଟଣାର ବ୍ରଜମୋହନ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ । ସୁନ୍ଦରଗଡ଼ର ଜୀବନପୃଷ୍ଠା ଧୀରେଧୀରେ ଓଲଟିଗଲା ମୃଦୁ ମଳୟର ମଧୁର ସ୍ପର୍ଶରେ । ଏବେ ବଦଳି ହେଲେ, ଚିନ୍ତା ମାଡ଼ିବସୁଛି, ହେଲେ ସେ ସମୟରେ ବିନାଦ୍ୱିଧାରେ ରିଲିଭ୍ ହୋଇ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ଯାଇ ଯୋଗଦେଉଥିଲେ । ବରଗଡ଼, ଅତାବିରା, ଝାରସୁଗୁଡ଼ା, ପୁଣି ନୂଆପଡ଼ା, ସେଠାରୁ ଅନୁଗୋଳ, ସୁନ୍ଦରଗଡ଼ ଏବଂ ୧୯୬୩ରେ ଭବାନୀପାଟଣା, ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି ।

ସୁନ୍ଦରଗଡ଼ରୁ ଆସବାବପତ୍ର, ଗାଈଗୋରୁ ସହ ପାଞ୍ଚ ଭାଇଭଉଣୀ ଲଦା ହୋଇ ଟ୍ରକ୍‌ରେ ଚାଲିଲୁ ବଣଜଙ୍ଗଲଭରା କଳାର ହାଣ୍ଡିକୁ ବାପାଙ୍କ ସହ । ବରଗଡ଼ର ସଂଚାର ମୃଦଙ୍ଗର ବାଜଣା ପାରିହୋଇ, ବରପାଲିର ମଧୁମୟ ସଂଗୀତର ଲାଳିତ୍ୟ ଶୁଣିଶୁଣି, ବଲାଙ୍ଗିରର ଧନୁର୍ଦ୍ଧରା ଡକା ନୃତ୍ୟର ଆକର୍ଷଣୀୟ ମୁଦ୍ରା ପାରି ହୋଇ ନାଟ୍ୟକାର ପ୍ରଫୁଲ୍ଲ ରଥଙ୍କ ପବିତ୍ର ମାଟିକୁ, ମଧୁର ଭୁବନ ଭବାନୀପାଟଣାକୁ ।



ଏଇ ସେହି ସବୁଜସୁନ୍ଦର ଭବାନୀପାଟଣା, ଯେଉଁଠାରେ ମୋ ଶିକ୍ଷାବର୍ଷ ଆରମ୍ଭିଥିଲା ଷଷ୍ଠ ଶ୍ରେଣୀର ଷାଣ୍ମାସିକ ପରୀକ୍ଷା ପରେ । ବ୍ରଜମୋହନ ହାଇସ୍କୁଲର ପ୍ରାଙ୍ଗଣ, ତାକୁ ଲାଗି ପ୍ରାଚୀର ବାହାରେ ଥିବା ପ୍ରଧାନ ଶିକ୍ଷକଙ୍କ ନିବାସ, ନିବାସ ସାମ୍ନାରେ ଥିବା ବିସ୍ତିର୍ଣ୍ଣ ସବୁଜ ଘାସର ଗାଲିଚା, ପ୍ରାଚୀରକୁ ଲାଗି ବିରାଟ ବିରାଟ ବୃକ୍ଷ, ଏସବୁ ଥିଲା ମୋର କୈଶୋରର କ୍ରୀଡ଼ା କ୍ଷେତ୍ର । ଗତାନୁଗତିକ ଧାରା ଭଳି ସେଠିକାର ପିଅନମାନଙ୍କର ପୁଅମାନଙ୍କ ସହ ନଟ୍ଟୁ, ରେସ୍‌ଟିପ୍, କବାଡ଼ି ଓ ଫୁଟବଲ୍ ଖେଳରେ ମସ୍‌ଗୁଲ୍ ଥିଲା ମୋର କୈଶୋର ।

ଭବାନୀପାଟଣା ସହରର ସୀମାନ୍ତରେ ଥିବା ବ୍ରଜମୋହନ ହାଇସ୍କୁଲ ପ୍ରାଚୀର ବାହାରେ ଏକ ମସ୍ତବଡ଼ ଛକ, ଡାହାଣ ଆଡ଼କୁ ଲମ୍ବିଯାଇଛି ଘୋଡ଼ାନାଳ ଦେଇ

ଭବାନୀପାଟଣା ସହରକୁ । ଛକକୁଲାଗି ବଡ଼ ଟେନିସ୍ ପଡ଼ିଆ, ତାକୁଲାଗି ଡ୍ରଇଂଶିକ୍ଷକ ହେମନ୍ତ ପତି ସାର୍‌ଙ୍କ ଭଡ଼ାଘର । ପତିସାର୍‌ଙ୍କ ଘର ବାସ୍ତବରେ ସମ୍ବଲପୁର ସହରର ଖ୍ରୀଷ୍ଟିୟାନ ପଡ଼ାରେ, ତେବେ ସେ ଜୀବିକା ପାଇଁ ଭବାନୀପାଟଣାକୁ ଆପଣେଇ ନେଇଥିଲେ କାଳ କାଳାନ୍ତର ଯାଏଁ । ତାଙ୍କ ଘର ପଛପଟକୁ ଅନ୍ୟ ଏକ ରାଜରାସ୍ତା ଦୌଡ଼ି ଯାଇଛି ଜୁନାଗଡ଼, ଧର୍ମଗଡ଼ ଆଡ଼କୁ । ତାକୁ ଲାଗି ସବୁଜ ପ୍ରକୃତିର ସୁନ୍ଦର ଏକ ନିଦର୍ଶନ ଡଙ୍ଗରା ପାହାଡ଼ ଆଉ ତାର ପାଦତଳେ ଶୋଭାପାଉଛି ଏକ ପୂରାତନ ମାଁ କାଳୀଙ୍କ ମନ୍ଦିର । ଦେଖିବା ତ ଦୂରେ ଥାଉ, ଏହି ମନ୍ଦିରର ନାଁ ଶୁଣିଲା କ୍ଷଣି ଛାତିରେ ଛନକା ପଶେ, ଏବେବି ଭୟରେ ମନ ଆନ୍ଦୋଳିତ ହୁଏ । ତାର କାରଣ ହେଲା, ସେ ସମୟରେ ଘଟିଥିବା ଏକ ଲୋମହର୍ଷଣକାରୀ ହତ୍ୟାକାଣ୍ଡ । ଏମିତି ଏକ ନିର୍ମଳ ପୂର୍ବାହ୍ନରେ ଜୁନାଗଡ଼ ହାଇସ୍କୁଲ ସଂସ୍କୃତ ଶିକ୍ଷକ ଏବଂ ତାଙ୍କ ପୁଅ ସେଇ ମନ୍ଦିରକୁ ଦର୍ଶନ ପାଇଁ ଆସିଥିଲେ । ବଳୀ ଉଦ୍ଦେଶ୍ୟରେ ଘାତକ ମନ୍ଦିର ପରିସରରେ ଛପି ରହିଥିଲା । ସେମାନେ ଆସିବା ମାତ୍ରେ ଘାତକର ଫାର୍ଶା ଚୋଟରେ ଶିକ୍ଷକଙ୍କ ପୁଅ ସେଇଠି ଟଳିପଡ଼ିଲା, ମୁଣ୍ଡଗଣ୍ଡି ଅଲଗା ହୋଇଗଲା । ସାଙ୍ଗେସାଙ୍ଗେ ଏଇ ଘଟଣା ବିଦ୍ୟୁତ୍‌ବେଗରେ ପ୍ରଘଟ ହୋଇଗଲା । ବାପାଙ୍କ ନିର୍ଦ୍ଦେଶରେ ହାଇସ୍କୁଲର ମୁଖ୍ୟ ଦ୍ୱାରକୁ ବନ୍ଦ କରିଦିଆଗଲା, ଯେମିତି କୌଣସି ଛାତ୍ର ପ୍ରାଚୀର ବାହାରକୁ ଯାଇନପାରନ୍ତି । ଅଳ୍ପ କିଛି ମୁହୂର୍ତ୍ତରେ ପୋଲିସ ଘାତକକୁ ନିଜ କବ୍‌ଜାକୁ ନେଇଗଲା । ଗାନ୍ଧୀ ଛକରେ ଥିବା ଥାନା ସମ୍ମୁଖରେ ଥିବା ଏକ ବଡ଼ ତେନ୍ତୁଳିଗଛରେ ପୋଲିସ ତାକୁ ବାନ୍ଧି ପକେଇଲା । ଘାତକଟି ପ୍ରଥମେ ଉପସ୍ଥିତ ଲୋକଙ୍କ ଶିକାର ହୋଇ ଉତ୍ତମମଧ୍ୟମ ପାଇଲାପରେ ହାଜତକୁ ନିଆଯାଇଥିଲା । ଏହି ଘଟଣାଟି ଶୁଣିଲା ବେଳଠୁଁ ବହୁ ବର୍ଷ ଧରି ମୁଁ କେବଳ ଚେତନାରେ ନୁହେଁ, ସ୍ୱପ୍ନରେ ମଧ୍ୟ ଆତଙ୍କିତ ହୋଇପଡୁଥିଲି ।

ଗାନ୍ଧୀଛକ, ସେ ସମୟରେ ସହରର କେନ୍ଦ୍ରସ୍ଥଳରେ ଥିଲା, ସହର ପରିବର୍ଦ୍ଧନ ପରେ ଏଇ ଛକ ପୂର୍ବର ଶିରୀ ହରାଇଦେଲା ଭଳି ମନେ ହେଉଛି । ସର୍ବମୋଟ ଛ' ସାତୋଟି ରାସ୍ତାକୁ ସଂଯୋଗ କରୁଥିବା ଏଇ ଗାନ୍ଧୀ ଛକ ଅନେକ ଐତିହାସିକ ଘଟଣାବଳୀର ମୂକସାକ୍ଷୀ । ହାଇସ୍କୁଲ, ଦୈନିକ ବଜାର, ରାଜବାଟୀ ଓ ମାଣିକେଶ୍ୱରୀ ମନ୍ଦିର, ରାଜବାଟୀ ସମ୍ମୁଖରେ ଥିବା ଷ୍ଟେଚ୍ୟୁଛକ, କଲେଜ ରୋଡ, ମହାବୀର ପଡ଼ା ଏମିତି ସହରର ଅନେକ ଗୁରୁତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକର କେନ୍ଦ୍ରସ୍ଥଳୀ ଗାନ୍ଧୀଛକ । ଜଗଦୀଶ ବୋଲି ବେଢ଼ା ପିଲାଟିଏର ଚଳଚଞ୍ଚଳ ଉପସ୍ଥିତି ହିଁ ଏଇ ଛକର ପରିଚିତି । ମଧ୍ୟଭାଗରେ ବିରାଟ ପିପ୍ପଳ ଗଛ, ତା ପାଦରେ ସୁନ୍ଦର ଶୋଭିତ ଏକ ମଣ୍ଡପ, ତା ସାମ୍ନାକୁ ଅଦୂରରେ

ଦୁର୍ଗା ମଣ୍ଡପ । ଏକଦା ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ନିର୍ବାଚନୀ ସଭାରେ ପ୍ରଚଣ୍ଡ ପଥର ମାଡ଼ ହୋଇ ସଭାଭଣ୍ଡୁର ହୋଇଥିଲା ଏଇ ଛକରେ । ମାଇଲ୍ ମାଇଲ୍ ବ୍ୟାପୀ ଲୋକଙ୍କ ଶୋଭାଯାତ୍ରାରେ ଆସି ଏଇ ଛକରେ ଉଦ୍‌ବୋଧନ ଦେଇଥିଲେ ତତ୍‌କାଳୀନ ଲୋକସଭା ସଦସ୍ୟ ରାଜା ପ୍ରତାପକେଶରୀ ଦେଓ । ଏଠାରେ ହିଁ ଜୀବନରେ ପ୍ରଥମେ ଦେଖିଥିଲି ଉଡ଼ାଜାହାଜ, ଯାହାର ଦ୍ୱାରମୁହଁରୁ ସହରର ଛାତିରେ ବୃଷ୍ଟି ହେଉଥିଲା ଯୋଡ଼ିବଳଦ ଚିହ୍ନର ପ୍ରଚାର ପତ୍ର । ଏଇ ଛକର ମଣ୍ଡପରୁ ଶୁଣିଥିଲି ଭବାନୀପାଟଣାର ପୂର୍ବତନ ପୌର ଚେୟାରମ୍ୟାନ ଅସରଫ ଅଲ୍ଲି ଖାନ୍‌ଙ୍କ ଅଗ୍ନିବର୍ଷୀ ଅଭିଭାଷଣ, ଦୟାନିଧି ନାୟକଙ୍କ ସରଳ, ଉଦାର, ସୁବୋଧ ଶବ୍ଦର ନିବେଦନବାଣୀ । ବହୁ ବର୍ଷ ପରେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗ ଦେବାପାଇଁ ଭବାନୀପାଟଣା ଯାଇଥିଲି, ଏଇ ଛକକୁ ଯାଇ ଜାଣିଲି, ଜଗଦୀଶ କେବଳ ଲୋକଙ୍କ ସ୍ମୃତିରେ ବଞ୍ଚିଛି । ପିପ୍ପଳ ଗଛ ବି ନଥିଲା, ତା ସ୍ଥାନରେ ଥିଲା ମଣିଷ ତିଆରି ସିମେଣ୍ଟ ଓ ପଥରର ଜଡ଼ ଅବୟବ ।

ହାଇସ୍କୁଲ ସାମ୍ନା ରାସ୍ତା ହିଁ ଦୁର୍ଗା ଦଶମୀରେ ପାଲଟିଯାଉଥିଲା ମାଁ ମାଣିକେଶ୍ୱରୀଙ୍କ ମନ୍ଦିର ଲେଉଟାଣୀ ପର୍ବ ଛତରଯାତ୍ରାର ମୁଖ୍ୟ ପଥ । ପ୍ରାୟ ତିନି କିଲୋମିଟର ବ୍ୟାପି ଏହି ଯାତ୍ରା ଯେତିକି ଉତ୍ସବମୁଖର, ସେତିକି ଭୟାତୁର । ଭୟାତୁର ଏଇଥି ପାଇଁ ଯେ ମୁଁ ଯେଉଁ ବୟସରେ ଏହି ଯାତ୍ରାର ରକ୍ତିମ ଦୃଶ୍ୟସବୁ ଦେଖିଛି, ସେତିକିବେଳର ଅନୁଭବ ସାରା ଜୀବନ ପାଇଁ ଏହି ଯାତ୍ରା ଭୟ ଉଦ୍ରେକକାରୀ ଭାବରେ ହିଁ ରହିଯାଇଛି । କେବଳ ସେତିକି ନୁହେଁ, ମୁଁ ଥିବାବେଳ ଯାତ୍ରାର ଭୟାନକ ଦୃଶ୍ୟସବୁ ଏବେ ବି ତେଜିୟାନ ହୋଇଛି ମାନସପଟରେ । ସତଷଠୀ ହେଉ ଅବା ଅଢଷଠୀ ସାଲ୍ ହେଉ, ଛତର ଯାତ୍ରାର ପବିତ୍ର ଲଗ୍ନରେ ଅଗଣିତ ଭକ୍ତ ଅପେକ୍ଷା କରିଥିଲେ ମାଁଙ୍କ ଦର୍ଶନ ପାଇଁ । ସ୍କୁଲ ସାମ୍ନା ପ୍ରାଚୀରକୁ ଲାଗି ସମବେତ ଭକ୍ତମାନଙ୍କ ସମାବେଶ, କାହା ପାଖରେ ଛେଳି, ଆଉ କାହା ପାଖରେ ମେଣ୍ଢା, କୁକୁଡ଼ା, ଏପରି କି ପୋଢ଼ ମଧ୍ୟ । ଆମକୁ ବାହାରକୁ ବାହାରିବା ମନା ଥାଏ । ଘର ଭିତରେ ଥାଇ ଝରକା ଖୋଲି ସ୍ପଷ୍ଟ ଦେଖାଯାଉଥିଲା ଛକର ଘଟଣାସମୂହ । ସମସ୍ତଙ୍କ ଅଭିଳାଷ ପୂରଣ କରିବା ପାଇଁ ଭୋଗରାଗ ଧରି ମାଁଙ୍କ ଆସିବାବାଟକୁ ସମସ୍ତଙ୍କ ନିଘା । କିଛିକାଳ ଅନ୍ତରାଳ ପରେ ଘନଘନ ଗର୍ଜନ କରି ଶୁଣାଗଲା ଘୁମୁରା ବାଦ୍ୟର ଉନ୍ମାଦ ବାଦ୍ୟରୋଳ । ଛତର ଉଢ଼ାଳରେ ବିଜେ କରୁଛନ୍ତି ମାଁ ମାଣିକେଶ୍ୱରୀ । ସମ୍ମୁଖରେ ଘୁମୁରା ବାଦ୍ୟର, ନୃତ୍ୟର ବିଜୟଦର୍ପୀ ଉଲ୍ଲାସ, ଘଣ୍ଟ, ଶଙ୍ଖର ବାଦ୍ୟରୋଳରେ ପ୍ରକମ୍ପିତ ମେଦିନୀ, ଚତୁର୍ଦ୍ଦିଗ ଝୁଣାଧୂଆଁର ଚହଟ, ମାଁଙ୍କ ଜୟଜୟକାରରେ ନିନାଦିତ ଭବାନୀପାଟଣାର ଉର୍ବର, ଉଦାର ଆକାଶ । ଘରେ ଥାଇ,

ଝରକା ରେଲିଂ ବାଟରେ ଦେଖିବାକୁ ପାଇଲି, ଫାର୍ଶାର ଗୋଟିଏ ଚୋଟରେ ପୋଢ଼ର ମୁଣ୍ଡଗଣ୍ଡି ଅଲଗା ହୋଇଗଲା, କିଛି କାଳର ନୀରବତା ହଠାତ୍ କୋଳାହଳମୟ ପାଲଟିଯାଉଥିଲା ଇଲାକାଟି । ଗୋଟିଏ ପରେ ଗୋଟିଏ ଛକ୍‌ଛାକ୍ ଫାର୍ଶା ଚୋଟରେ ବଳି ପଡ଼ିଲେ ପ୍ରାଣୀମାନେ, ପକ୍ଷୀମାନେ । ରକ୍ତ ରକ୍ତରେ ତିନ୍ତିଗଲା ମାଁଙ୍କ ମନ୍ଦିର ଯାଏଁ ଲମ୍ବିଯାଇଥିବା ରାସ୍ତା । ଯେ ଭଲ କାଟିଲା, ତାକୁ ନିମନ୍ତ୍ରଣ ଆସିଲା ଫାର୍ଶାଚୋଟ ପାଇଁ । ଏମିତି କାଟୁକାଟୁ ଜଣେ ଘାତକ ପାଞ୍ଚ ଛ'ଟି କାଟିଲା ପରେ ପାଗଳପ୍ରାୟ ହୋଇ ଲୋକଙ୍କୁ ଫାର୍ଶାଧରି ଗୋଡ଼େଇଲା । ତା' ଫାର୍ଶା ଚୋଟରେ କିଛି ଭକ୍ତ ଆହତ ହେଲେ । ସଙ୍ଗେ ସଙ୍ଗେ ଜନୈକ ପୋଲିସ୍ ସର୍ଜେଣ୍ଟ ତାକୁ ରୋକିଲାବେଳେ ସେ ବି ଆହତ ହେଲେ । ଶେଷକୁ ତାକୁ କବ୍‌ଜାକୁ ଆଣି ବନ୍ଧାଯାଇ ହାଜତକୁ ନିଆଗଲା । ଆଖିଆଗରେ ଘଟିଥିବା ଏହି ଘଟଣାଗୁଡ଼ିକ ପାଇଁ ହିଁ ଛତରଯାତ୍ରା ବ୍ୟକ୍ତିଗତ ଭାବରେ ଭୟାନକ ହୋଇ ଆଜିଯାଏଁ ରହିଯାଇଛି ।

ଭବାନୀପାଟଣା, ମୋ ପାଇଁ ମୋ ସାଂସ୍କୃତିକ ଜୀବନର ମୂଳଦୁଆ ପଡ଼ିଥିବା ପବିତ୍ର ମାଟି । ମୋର ସାହିତ୍ୟ, ସଂସ୍କୃତି ତଥା ମଣିଷଗଢ଼ା ପାହାଚର ପ୍ରଥମ ଶାଶ୍ୱତ ଭିତ୍ତି । ମାତ୍ର ତିନିବର୍ଷର ରହଣି, ସାରାଜୀବନକୁ ମହକିତ କରିଦେଲା, ଶିକ୍ଷା, ନାଟକ, ସଂଗୀତ, ବାଗ୍ମିତା, ସାହିତ୍ୟ, ସବୁ କ୍ଷେତ୍ର ସହ ପରିଚିତ କରାଇଦେଲା, ଆଲୋକବର୍ତ୍ତିକା ଭାବରେ ପରବର୍ତ୍ତୀ ଜୀବନର ପାଥେୟ ପାଲଟିଗଲା ଭବାନୀପାଟଣା । ଆଜି ମୋର ପରିଚୟ । ଯାହା ମତେ ମୋ ସହିଛୁ ଯେଭଳି ଚିହ୍ନନ୍ତି, ତାର ଅର୍ଦ୍ଧେକ ଶ୍ରେୟ ଯିବ ଭବାନୀପାଟନାକୁ ।



ସୁନ୍ଦରଗଡ଼ର ଭବାନୀଶଙ୍କର ହାଇସ୍କୁଲରେ ମାତ୍ର ଛ'ମାସ ପଢ଼ିଥିବାରୁ ସେଠାରେ ଶିକ୍ଷକମାନଙ୍କ ସହ ସେତେଟା ଘନିଷ୍ଠତା ନଥିଲା, କେତେଜଣଙ୍କୁ ଛାଡ଼ିଦେଲେ । ତେବେ ଭବାନୀପାଟଣାର ବ୍ରଜମୋହନ ହାଇସ୍କୁଲର ଶିକ୍ଷକମାନଙ୍କ ସହ, କେତେକ ସହପାଠୀମାନଙ୍କ ସହ ସମ୍ପର୍କ ଖୁବ୍ ନିବିଡ଼ ଥିଲା । ଲମ୍ବୋଦର ପଟ୍ଟନାୟକ, ସଚ୍ଚି ପଟ୍ଟନାୟକ, ଭବାନୀଶଙ୍କର ପଣ୍ଡା, ହେମନ୍ତ ପତିଙ୍କ ଭଳି ଶିକ୍ଷକମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲି । ଲମ୍ବୋଦର ବାବୁ ଆମ ଅଷ୍ଟମ ଶ୍ରେଣୀର କ୍ଲାସ ଟିଚର୍ ଥିଲେ, ସଚ୍ଚିବାବୁ ଗଣିତ ଶିକ୍ଷକ ହେବା ସଙ୍ଗେ ସଙ୍ଗେ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀର ଦାୟିତ୍ୱ ସମ୍ପନ୍ନ ଅଫିସର ଥିଲେ । ଏହି ହାଇସ୍କୁଲରେ ଏନସିସିର ବାୟୁସେନାର ପ୍ରଭାଗ ଥିଲା । ହାଇସ୍କୁଲ ପଡିଆରେ ପେରେଡ୍ ତାଲିମ୍ ଦିଆଯାଉଥିଲା । ମୋର ବଡ଼ଭାଇ ମଧ୍ୟ ଏଥିରେ

ଅଂଶଗ୍ରହଣ କରୁଥିଲେ । ମୁଁ ଗୋଟାଏ କୋଣରେ ଠିଆ ହୋଇ ପେରେଡ୍ ଦେଖୁଥିଲି, ମୋର ବାମ ହାତ ପାଇଁ ସେଥିରେ ଯୋଗ ଦେଇ ପାରୁନଥିବାରୁ ଅବଶୋଷ ଅନୁଭବ କରୁଥିଲି । ଇଚ୍ଛା ଥିଲେ ବି ଅକ୍ଷମତା ଯୋଗୁଁ କ୍ଷୁବ୍ଧ ଥିଲି । ଅଗଷ୍ଟ ପନ୍ଦରର ଶୁଭ ମୁହୂର୍ତ୍ତ ହେଉ ଅବା ଗଣତନ୍ତ୍ର ଦିବସ ହେଉ, ସଚ୍ଚି ବାବୁଙ୍କ ନେତୃତ୍ୱରେ ଏଭଳି ପେରେଡ୍ ହାଇସ୍କୁଲ ପଡ଼ିଆରେ ଆୟୋଜିତ ହୁଏ ଓ ମୁଁ ସେସବୁ ଅବଲୋକନ କରି ନିଜ ଭିତରେ ଦେଶଭକ୍ତି ଭାବନା ଜାଗ୍ରତ କରାଏ ।

ଏଭଳି ଏକ ସ୍ୱାଧୀନତା ଦିବସରେ ଜୟନ୍ତଦାଦା ମୋ ହାତଧରି ଟାଣିନେଇଗଲେ ଭବାନୀପାଟଣା ଖ୍ୟାତନାମା ଅନୁଷ୍ଠାନ ମହାବୀର ସାଂସ୍କୃତିକ ଅନୁଷ୍ଠାନକୁ, ଯେଉଁଠି ଜାତୀୟ ସଂଗୀତ ଗାନ ପ୍ରତିଯୋଗିତା ଆୟୋଜିତ ହେଉଥିଲା । ରେଡିଓ ଶୁଣିଶୁଣି ସୁରଜ୍ଞାନ କିଛି ଦଖଲକୁ ଆସିଥିଲା, ଭାରତ ଚୀନ୍ ଯୁଦ୍ଧ ସମୟରେ ଦେଶଭକ୍ତିର ଆକର୍ଷଣରେ 'ଜନ-ଗଣ-ମନ'କୁ ଆମୂଳଚୂଳ କଣ୍ଠସ୍ଥ କରିଥିଲି । ଟେବୁଲ୍ ପିଟିବା ଭିତରେ କିଛିତାଳ ଜ୍ଞାନ ଅକ୍ତିଆରକୁ ଆଣିଥିଲି । ତେଣୁ ନିର୍ଭୟରେ ମାଇକ୍ ସାମ୍ନାରେ ଯେତେବେଳେ ଗୀତଟିକୁ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଗାଇଦେଲି, ସମସ୍ତେ ପ୍ରଶଂସା କଲେ । ପୁରସ୍କାର ବିରତଣିବେଳେ ଯେତେବେଳେ ପ୍ରଥମ ପୁରସ୍କାର ପାଇଁ ମୋ ନାଁଟି ଉଚ୍ଚାରିତ ହେଲା, ମୋ ଖୁସିର ସୀମା ରହିଲା ନାହିଁ । ଛୋଟ କପ୍‌ଟିଏ ପୁରସ୍କାର ବାବଦକୁ ପାଇଥିଲି, ଯାହା ମୋ ଜୀବନର ସର୍ବପ୍ରଥମ ପୁରସ୍କାର । କପ୍‌ଟି ଛୋଟ ହୋଇଥିଲେ ବି ତା ପରଠୁଁ ମୋତେ ଦେଖାଗଲା ଏକ ସ୍ୱପ୍ନିଳ ସାଂସ୍କୃତିକ ପର୍ବତ, ଯାହାର ଶିଖରକୁ ମୋତେ ଯିବାକୁ ଅଛି, ସେଭଳି ଏକ ସଂକଳ୍ପ ମୋ ଅନ୍ତସ୍ଥଳକୁ ରୋମାଞ୍ଚିତ କରିବାକୁ ଲାଗିଲା ।

ସେଇ ସ୍ୱାଧୀନତା ଦିବସରେ ସନ୍ଧ୍ୟାରେ ସ୍କୁଲର ବାର୍ଷିକ ଉତ୍ସବ ଆୟୋଜିତ ହେବାର ଥାଏ । ସ୍କୁଲର ବାମପଟକୁ ଥିବା ନୂତନ ଭାବରେ ନିର୍ମିତ ମଣ୍ଡପ ସଜ୍ଜିତ ହୋଇଥାଏ କାର୍ଯ୍ୟକ୍ରମ ପାଇଁ । ପରଦା ପଛପଟକୁ ତବଲା ରଖାଯାଇଥାଏ । ଆମ ଘର ତା' ପାଖରେ ଥିବାରୁ ବାରମ୍ବାର ମଞ୍ଚପାଖକୁ ଆସି ମୁଁ ଉତ୍ସବ ଆୟୋଜନର ମଜାଲୁଟୁଥାଏ । ଠିକ୍ ସନ୍ଧ୍ୟାବେଳକୁ ମାଇକ୍‌ରେ ବାଜିଲା ଲତା ମଙ୍ଗେସ୍କର ଗାଇଥିବା ଦେଶାତ୍ମବୋଧକ ସଂଗୀତ, ଏ ମେରେ ବତନ୍‌କେ ଲୋଗୋଁ, ଗୀତଟି । ଗୀତ ବାଜିଲା କ୍ଷଣି ଦୌଡ଼ିଗଲି ମଞ୍ଚ ପାଖକୁ । ଆଖପାଖରେ କେହି ନଥିଲେ । ନିଜେ ନିଜେ ଯାଇ ତବଲା ପାଖରେ ବସିପଡି ମାଇକ୍‌ର ଗୀତ ସହ ବଜାଇବାକୁ ଲାଗିଲି । ହେଡମାଷ୍ଟରଙ୍କ ପୁଅ ହୋଇଥିବାରୁ ନିର୍ଭୟରେ ତବଲା ବଜାଇବାକୁ ଲାଗିଲି । ଅନୁଭବ କଲି, ମୁଁ ଗୀତ ସହ ତାଳ ଦେଇ

ସଠିକ୍ ବଜାଇପାରୁଛି । ଜୀବନରେ ସର୍ବ ପ୍ରଥମ ପାଇଁ କୌଣସି ବାଦ୍ୟଯନ୍ତ୍ରରେ ହାତ ଦେଇଥିଲି, ବଜେଇପାରିବାର ସେ ଅପୂର୍ବ ଶିହରଣ ପାଇଁ ଏବେ ମୋ ପାଖରେ ଭାଷା ନାହିଁ । ଟେବୁଲ୍ ପିଟିବାରୁ ତବଲା ଶିଖିବା ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ଜୁଟେ । ଏମିତି ବଜଉଥାଏ, ପାଖକୁ ଚାଲି ଆସିଲେ ହରିହର ଡାକୁଆ ଦାଦା । ମୋତେ କହିଲେ, ଭଲ ବଜଉଛ, ଘରକୁ ଆସିବ, ଶିଖେଇ ଦେବି । ତାଙ୍କ ଉତ୍ସାହବାଣୀ ଶୁଣି ମୁଁ ଖୁସି ହେବା ସଙ୍ଗେ ଅନୁଭବ କଲି ଏକ ସୁନ୍ଦର ସଂଗୀତିକ ଜୀବନର । ହରିହର ଡାକୁଆ, ଯେ ପରେ ସର୍ଦ୍ଦାର କ୍ରିପାଲ ସିଂ ନାମରେ ପରିଚିତ ହେଲେ, ସେ ମୋ ବଡ଼ଭାଇଙ୍କ ସହପାଠୀ, ସେହି କାର୍ଯ୍ୟକ୍ରମର ପ୍ରାରମ୍ଭିକ ସଂଗୀତରେ ତବଲା ବଜେଇବାର ଥାଏ । ରାତି ହେଲା, ଉତ୍ସବ ଆରମ୍ଭ ହେଲା, ପ୍ରାରମ୍ଭିକ ସଂଗୀତରେ ଡାକୁଆ ଦାଦାଙ୍କ ତବଲା ବାଦନ ଦେଖିଲି, ଚମତ୍କାର ସେ ହାତ ! ସଭା ସରିଲା ।

ମନୋରଞ୍ଜନ କାର୍ଯ୍ୟକ୍ରମରେ ମଞ୍ଚସ୍ଥ ହେଲା ନାଟକ ପିଲିସଜ, ମୋ ଜୀବନରେ ଦେଖିଥିବା ସର୍ବପ୍ରଥମ ନାଟକ, ଯେଉଁଥିରେ ଜୟନ୍ତଦାଦା, ଓରଫ ଜୟନ୍ତ ବେହେରା ଏକ ବୟସ୍କ ଚରିତ୍ରରେ ଅଭିନୟ କରିଥିଲେ । ମୁହଁରେ କଳା ବୋଳି ହୋଇ ଦାଢ଼ିର ରୂପରେ ସଜ୍ଜିତ ହୋଇଥିଲେ । ନାଟ୍ୟକଳା ସହ ପରିଚିତ ହେଲି ଏହି ନାଟକରୁ, ମଞ୍ଚସଜ୍ଜା, ସଂଳାପ ଉଚ୍ଚାରଣ, ଅଭିନୟ ମାଧ୍ୟମରେ ଗୋଟିଏ କାହାଣୀକୁ ଦର୍ଶକମାନଙ୍କ ଆଗରେ ଉପସ୍ଥାପନା କରିବା ଶୈଳୀ, ଆଲୋକ ଓ ଅନ୍ଧାରର ଖେଳ, ଦର୍ଶକଙ୍କ ତାଳିପିଟା ସହ ସମ୍ପର୍କ ପ୍ରତିଷ୍ଠା, ମୋ ଅନ୍ତସ୍ଥଳକୁ ରୋମାଞ୍ଚିତ କଲା । ନାଟକକୁ ପାଥେୟ କରି ଜୀବନର ପାହାଚପରେ ପାହାଚ ଅତିକ୍ରମ କରିବାର ଏକ ଦୁର୍ବାର ଅଭିଳାଷଟାଏ ଜନ୍ମନେଲା ।

ଏଇମିତି ଭବାନୀପାଟଣା, ମୋ ସାଂସ୍କୃତିକ ଜୀବନର ଖଡିଛୁଆଁର ପବିତ୍ର ପୀଠ ପାଲଟିଗଲା, ମୋ ସାଂଗୀତିକ ଜୀବନର ମାଙ୍ଗଳିକ ଧ୍ୱନି ପାଲଟିଗଲା, ବିସ୍ମିଲ୍ଲା ଖାନ୍ଙ୍କର ସହନାଇରେ ମଙ୍ଗଳ ଧ୍ୱନି ପରି ଭବାନୀପାଟଣା ମୋତେ ଏକ ନୂତନ ସୃଜନଶୀଳ ଜୀବନର ଆଲୋକବର୍ତ୍ତିକା ଭାବରେ ଜଣାଗଲା, ଏକ ଦିଗରେ ଦେଶପ୍ରେମ, ଅନ୍ୟକ୍ଷେତ୍ରରେ ସଂସ୍କୃତିପ୍ରେମ ମୋ ସାରାଜୀବନକୁ ଆଚ୍ଛାଦିତ କରିପକାଇଲା, ମାଁ ମାଣିକେଶ୍ୱରୀଙ୍କ ମଣିମୁକ୍ତାଭରା ଭବାନୀପାଟଣା ମୋ ପାଇଁ କଳାମାଣିକର ଶାଶ୍ୱତଭୂମିରେ ରୂପାନ୍ତରିତ ହୋଇଗଲା, ଏ କିଶୋର ବୟସର ବାଳକ ହୃଦୟରେ କଳାର ପୁଟ ଦେଇ ତାକୁ କଳା ବିହ୍ୱଳ କରିପକାଇଲା ! ! !





ଆମ ଘର ସାମନାରେ ଥିବା ରାସ୍ତା ସେପାରି ଟେନିସ୍ ପଡ଼ିଆକୁ ଲାଗି ଥିଲା ଡ୍ରଇଂ ଶିକ୍ଷକ ହେମନ୍ତ ପତିସାର୍‌ଙ୍କ ଘର । ରବିବାର ହେଉ କି ସ୍କୁଲ ଛୁଟିପରେ ହେଉ, ମୁଁ ଦୌଡ଼ିଯାଉଥିଲି ଡ୍ରଇଂଖାତା, ପେନ୍‌ସିଲ୍ ଧରି ତାଙ୍କ ଘରକୁ । ସେ ମୋତେ ମାଛ, ନୌକା, ଆତ, ଆମ୍ବ କେମିତି କଟାହୁଏ, ଶିଖାଇଦେଉଥିଲେ । ଖୁବ୍ ଭଲ ଲୋକ । କଥାବାର୍ତ୍ତାରେ ମଧୁରତା ଓ ଆତ୍ମୀୟତା ଭରି ରହିଥିଲା । ସମ୍ବଲପୁର ଖ୍ରୀଷ୍ଟିୟାନ୍ ପଡ଼ାର ମୂଳ ବାସିନ୍ଦା ହେଲେ ବି ଚାକିରୀ ପାଇଁ ଭବାନୀପାଟଣାକୁ ଆପଣେଇ ନେଇଥିଲେ ନିଜର କର୍ମ ଓ ଧର୍ମ କ୍ଷେତ୍ର ଭାବରେ ଆଜୀବନ । ମାଟିର ମହକ ଓ ସ୍ଥାନୀୟ ଲୋକଙ୍କ ଆତ୍ମିୟତା ଯୋଗୁଁ ସେ ଭବାନୀପାଟଣା ଛାଡ଼ି ପାରି ନଥିଲେ । ଆଜି ଗୁରୁପୂର୍ଣ୍ଣିମା ଅବସରରେ ତାଙ୍କୁ କୋଟି ପ୍ରଣାମ ।

ସ୍କୁଲସାମନା ରାସ୍ତା ସହର ପଟକୁ ଗଲାବେଳେ ମଝିରୁ ଦୁଇ ଭାଗ ହୋଇଯାଇଛି । ଡାହାଣ ପଟ ଲମ୍ବିଯାଇଛି ମାଁ ମାଣିକେଶ୍ୱରୀ ମନ୍ଦିରକୁ, ଅନ୍ୟଟି ଗାନ୍ଧି ଛକକୁ । ସେଇ ତିନିକୋଣିଆ ଜାଗାରେ ଥିଲା ଏକ ପେଣ୍ଟିଂ ଦୋକାନ, ନାଁ ଥିଲା ରାଜ୍ ସାଇନ୍ ସାର୍ଭିସ୍ । କୋଡିଏ, ଏକୋଇଶ ବର୍ଷର ପଠାଣ ପିଲାଟିଏ ଥିଲା ତାର କାରିଗର, ଚିତ୍ରଶିଳ୍ପୀ, ମାଲିକ ସବୁକିଛି । ମୁଁ ଗାନ୍ଧୀଛକକୁ କୌଣସି କାମରେ ଯିବାବେଳେ ସେଇ ଦୋକାନ ପାଖରେ ମୋ ପାଦଦୁଇଟା ଥମିଯାଏ, ସେଠାରେ ଠିଆ ହୋଇ ମୁଁ ସେ ଚିତ୍ରଶିଳ୍ପୀ ଆଙ୍କୁଥିବା ଚିତ୍ର, ତୂଳିକାରେ ଲେଖୁଥିବା ବିଭିନ୍ନ ଡିଜାଇନ୍‌ର ଅକ୍ଷର ସବୁକୁ ନିରେଖି ଦେଖେ । ମୋର ଆଗ୍ରହଦେଖି ସେ ମୋତେ ପାଖକୁ ଡାକି ମୋର ପରିଚୟ ଓ ଉତ୍ସାହ ବାବଦରେ ଜାଣିବାକୁ ପାଇଲା । ଏମିତି ଯିବାଆସିବା ଭିତରେ ଏକପ୍ରକାର ଘନିଷ୍ଠତା ଜନ୍ମିଗଲା କିଛିଦିନ ମଧ୍ୟରେ । ମୁଁ ତାଙ୍କଠାରୁ କନା ଓ ଟିଣରେ କିପରି ରଙ୍ଗ କରାଯାଏ, ରଙ୍ଗ କେମିତି ତିଆରିକରାଯାଏ ସବୁ ଶିଖିପକାଇଲି । ବେଳେବେଳେ ସେ ମୋତେ ତାଙ୍କ ତୂଳୀଧରାଇ ଛକକୁ ଚା' ଉଦ୍ଦେଶ୍ୟରେ ଚାଲିଯାଉଥିଲେ ପୂର୍ଣ୍ଣ ବିଶ୍ୱାସରେ । ଏଇ କିଛିବର୍ଷ ତଳେ ଯେତେବେଳେ ମୁଁ ଭବାନୀପାଟଣା ଯାଇଥିଲି, ଦେଖିଲି, ସେ ଦୋକାନଟି ଆଉ ନଥିଲା । ମନେମନେ ସ୍ମୃତି ପୃଷ୍ଠକୁ ଆସିଗଲା ରାଜାଙ୍କ ହସହସ ମୁହଁ ।

ଧନୁପାଲି ଗାଇଡ୍‌କ୍ଲବ୍ ତରଫରୁ ଏକସ୍ତରୀ-ବାସ୍ତରୀ ସାଲ୍‌ରେ ଅମାବାସ୍ୟାର ଅନ୍ଧାର ଓ ଯନ୍ତ୍ରଣାର ସ୍ୱର ନାଟକ ଅଭିନୀତ ହେଲା, ତାର ବିଜ୍ଞାପନ ପାଇଁ ପୋଷ୍ଟର ଓ କାଗଜର ହୋର୍ଡିଂ ମୁଁ ନିଜେ ଆଙ୍କୁଥିଲି, ଯେଉଁଥିରେ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ରାକା ଚରିତ୍ରର ରୂପ ଓ ପଞ୍ଚାନନ ମିଶ୍ରଙ୍କ ଡାକ୍ତରୀ ରୂପକୁ ଅବିକଳ ଆଙ୍କିପାରୁଥିଲି । ବନ୍ଧୁବର୍ଗ

ମୋର ଚିତ୍ରାଙ୍କନ ପ୍ରତିଭାରେ ଚକିତ ହୋଇପଡୁଥିଲେ । ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଏ ବିଦ୍ୟାର ଅନ୍ତରାଳରେ ଥିବା ରହସ୍ୟକୁ ଜାଣିବାର ଉତ୍ସୁକତା ଦେଖାଉଥିଲେ । କେମିତି ବା କହିଥାନ୍ତି, ଏହା ହେମନ୍ତସାର୍ ଓ ରାଜ୍ ସାଇନ୍ ସାର୍ଭିସ୍‌ର କମାଲ୍ ବୋଲି ।।

ପଞ୍ଚଷଠୀ ମସିହାର କଥା, ଭାରତ ପାକିସ୍ତାନ ମଧ୍ୟରେ ଲାଗିଥାଏ ଘମାଘୋଟ ଯୁଦ୍ଧ, ରେଡ଼ିଓରେ ଲହରୀ ଛୁଟୁଥାଏ ଦେଶାତ୍ମବୋଧକ ସଂଗୀତ, ଅକ୍ଷୟ ମହାନ୍ତି, ପ୍ରଣବ ପଟ୍ଟନାୟକ, ସିକନ୍ଦର ଆଲାମ୍‌ଙ୍କ ଦୃପ୍ତ କଣ୍ଠ ସ୍ୱରରେ, ସମରବାଦ୍ୟରେ ମୁଖରିତ ସମଗ୍ର ଭାରତ ବର୍ଷ, ଜୟ ଜବାନ୍ ଜୟ କିଶାନ୍ ସ୍ଲୋଗାନ୍ ନିନାଦିତ ହେଉଥାଏ କାଶ୍ମୀରଠାରୁ କନ୍ୟାକୁମାରୀ ଯାଏଁ । ହକିକତ୍ ଚଳଚ୍ଚିତ୍ରରେ ମହମ୍ମଦ ରଫି ଗାଇଥିବା, କର୍ ଚଲେ ହମ୍ ଫିଦା ଗୀତ ଶୁଣିଲେ ଆଖି ଭିଜିଯାଉଥିଲା ଲୁହରେ । ପ୍ରଧାନମନ୍ତ୍ରୀ ଲାଲ ବାହାଦୂର ଶାସ୍ତ୍ରୀଜୀଙ୍କ ଆହ୍ୱାନରେ ସମସ୍ତ ଭାରତବାସୀ ନିଜ ତନୁ-ମନ-ଧନ ଅକୁଣ୍ଠିତ ଚିତ୍ତରେ ଢାଳିଦେଉଥିଲେ ଦେଶମାତୃକାର ସେବାରେ । ରେଡ଼ିଓ ହିଁ ଥିଲା ଏକମାତ୍ର ମାଧ୍ୟମ, ଯୁଦ୍ଧର ଖବର ଜାଣିବାରେ । ମୁଁ ଓ ବାପା ବିଶେଷକରି ଏହି ଘଟଣା ସହ ମାନସିକ ସ୍ତରରେ ସମ୍ପୃକ୍ତ ଥିଲୁ । କେଉଁ ଦେଶର କେତେ ଟ୍ୟାଙ୍କ ବିଧ୍ୱସ୍ତ ହେଲା, କେତେ ସୈନ୍ୟ ଶହୀଦ ହେଲେ, ଭାରତ ଆଗକୁ କେତେ ବଢ଼ିଲା, ଏମିତି ବାତାବରଣରେ ମୁହୂର୍ତ୍ତ ସବୁ ଅତିବାହିତ ହେଉଥିଲା । ରେଡ଼ିଓରେ ସମର ବାଦ୍ୟର କ୍ରମାଗତ ଝଙ୍କାର ଶୁଣି ମନ ଉତ୍କଣ୍ଠାରେ ଭରି ଯାଉଥିଲା । ଦେଶପ୍ରେମର ବିହ୍ୱଳତାରେ ମୋର କୈଶୋର ହୃଦୟ ଉଦ୍‌ବେଳିତ ହୋଇପଡୁଥିଲା ।

ଅସ୍ତ୍ର ନ ହେଲା ନାହିଁ, କଲମ ତ ପାଖରେ ଅଛି । ସପ୍ତମ ଶ୍ରେଣୀର ଛାତ୍ର ମୁଁ, କଅଁଳ ବୟସରେ ଦେଶଭକ୍ତିର ପରାକାଷ୍ଠା ପ୍ରଦର୍ଶନ ପାଇଁ ଘରର ସମସ୍ତଙ୍କ ଅଜାଣତରେ ନାଟକଟାଏ ଲେଖିପକାଇଲି, ଯାହାର ବିଷୟବସ୍ତୁ ଭାରତ ପାକିସ୍ଥାନ ଯୁଦ୍ଧ ଉପରେ ଆଧାରିତ ଥିଲା । ନାୟକ ଓ ସହନାୟକ, ଦୁଇ ଚରିତ୍ର ଥିଲେ ଭାରତୀୟ ସେନାବାହିନୀର ଯୋଦ୍ଧା । ଏଇଠୁ ଆରମ୍ଭ ହେଲା ମୋ ନାଟୁଆ ଜୀବନ, ଜଣେ ନାଟ୍ୟକାର ଭାବରେ । ଶୀର୍ଷକ ନଥିବା ଏଇ ନାଟକଟି ଯେତେବେଳେ ଧନୁପାଲିର ନୂତନ ଭାବରେ ମେଳି କରିଥିବା ବନ୍ଧୁମାନଙ୍କ ଆଗରେ ପଢ଼ି ଶୁଣାଇଲି, ସମସ୍ତଙ୍କୁ ଆକର୍ଷିତ କଲା । ସାହିତ୍ୟ ପ୍ରତି ରୁଚି ରଖୁଥିବା ବନ୍ଧୁ ତଥା ସହପାଠୀ ପ୍ରମୋଦ ତ୍ରିପାଠୀ ନାଟକର ନାଁଦେଲେ 'ବିଜୟଟୀକା' । ସବୁ ବନ୍ଧୁବର୍ଗଙ୍କ ଆଗ୍ରହରେ ନାଟକଟିର ରିହାର୍ସେଲ୍ ଆରମ୍ଭ ହେଲା କଦଳୀମୁଣ୍ଡା ଗ୍ରାମର ଗୌନ୍ତିଆ ରାମପାଦୁକା ବେହେରାଙ୍କ ଧନୁପାଲି ବାସଭାବନରେ । ତାଙ୍କ ତିନିପୁଅ, ଅଗ୍ରଜ ସୁବୋଧ, ଅଶୋକ

ଓ ସହପାଠୀ ପ୍ରଦୀପ ଏଥିରେ ବିଭିନ୍ନ ଚରିତ୍ରରେ ଅଭିନୟ କଲେ । ବନ୍ଧୁ ପ୍ରମୋଦ ମଧ୍ୟ ଏକ ଛୋଟ ଭୂମିକାରେ ଅଭିନୟ କରିଥିଲେ । ନାଟକଟି ଅଭିନୀତ ହେଲା ପଟାଖଟପକା ଏକ ଅସ୍ଥାୟୀ ମଣ୍ଡପରେ, ଠିକ୍ ବନ୍ଧୁ ଯୁଗଳ ମହାପାତ୍ରଙ୍କ ଘର ସାମନାରେ । ଯୁଗଳ ଅଭିନୟ କଲେ ନାଟକର ନାୟକ ଚରିତ୍ରରେ । ଏ ନାଟକର ମଞ୍ଚାୟନର କଥା ବଖାଣିବି ଆଉ ଏକ ଭାଗରେ, ମୁଁ ତ ଏବେ ଭବାନୀପାଟଣାରେ ଅଛି । ଭବାନୀପାଟଣା ଏତେ ଶୀଘ୍ର ଛାଡୁଛି କେଉଁଠି ! !

ହେଲେ ଗୋଟିଏ କଥା ଲେଖିବାର ଲୋଭ ସମ୍ବରଣ କରିପାରୁ ନାହିଁ । ଯୁଗଳ ଯେତେବେଳେ ଓଡ଼ିଶାର ମୁଖ୍ୟସଚିବ ଭାବରେ ନିଯୁକ୍ତି ପାଇଲେ, ଦୈନିକ ଧରିତ୍ରୀର ସମ୍ବଲପୁର ମୁଖ୍ୟ ଭାଇ ଶିବ ନନ୍ଦ ବାଲ୍ୟବନ୍ଧୁ ଭାବରେ ମୋର ପ୍ରତିକ୍ରିୟା ଜାଣିବାକୁ ଚାହିଁଲେ । ମୁଁ କହିଥିଲି, ଯୁଗଳ ମୋ ପ୍ରଥମ ନାଟକର ନାୟକ ।

ନାଟ୍ୟକଳାର ପ୍ରଥମ ସ୍ୱାଦ ନାଟ୍ୟକାର ଭାବରେ ଚାଖୁଚାଖୁ ଏବେ ତାହା ଅର୍ଦ୍ଧଶତାବ୍ଦୀର ଇତିହାସ ପାଲଟିଗଲାଣି । ଓଡ଼ିଶାର ଶ୍ରେଷ୍ଠ ନାଟ୍ୟକାର ଭାବରେ ପରିଚିତ ଥିବା ବନ୍ଧୁ ସ୍ୱର୍ଗତ ପ୍ରମୋଦ ତ୍ରିପାଠୀ ଏକଦା ଅଭିନୟରୁ ହିଁ ନାଟ୍ୟଜୀବନର ଆରମ୍ଭିଥିଲେ, ଏକଥା ଆଜି କିଏ ବିଶ୍ୱାସ କରିବ ! !



**ଭ**ବାନୀପାଟଣାର କଥାସବୁ ସ୍ମୃତିପୃଷ୍ଠକୁ ଆସିଲେ ତାର ଭାବନାର ସ୍ରୋତ ସମଗ୍ର ଶରୀରକୁ ଆପ୍ଲୁତ କରିପକାଏ । କଳାହାଣ୍ଡି, କଳାର ଗନ୍ତାଘର, ଯେମିତି ଗୋଡ଼ିମାଟି, ଡଙ୍ଗର ଖମନ, ନଦୀ ଝରଣା, ଅଣୁଅଣୁରେ ଭରିଛି କଳାଭାସ୍କର୍ଯ୍ୟର ପୁଟ । କଳାରେ ଯେମିତି, ସାହିତ୍ୟରେ ବି ଠିକ୍ ସେମିତି ଉତ୍ତୁଙ୍ଗ, ନୃତ୍ୟରେ ଘୁମୁରା ଛଳଛଳ, ବଜାଶାଲିଆ ଢୋଲର ବଜନିଆ ତାଳରେ ଉତ୍‌ଫୁଲ୍ଲିତ ନର୍ତ୍ତକୀ ନର୍ତ୍ତକ, ଟହଲିଆର ଟହଲରେ ଟହଲିଯାଉଥିବା ଦେଖଣାହାରୀ, ସ୍ୱର୍ଣ୍ଣ ଚମ୍ପା, ପଳାତକ, ଆଜି ଓ କାଲି, ଚାରିଛକର ନାଟ୍ୟକାର ନାଟ୍ୟରଶ୍ମି ପ୍ରଫୁଲ୍ଲ ରଥଙ୍କ ନାଟୁଆ ସ୍ପର୍ଶରେ ପ୍ରତିଟି ନାଟ୍ୟଶିଳ୍ପୀଙ୍କ ଦେହରେ ଅଭିନୟ ଯାଦୁଗରୀର ପୁଲକ, ଭୁବନେଶ୍ୱର ବେହେରା, ପର୍ଶୁରାମ ମୁଣ୍ଡଙ୍କ ଭଳି ମହାମନିଷୀଙ୍କ ଆଦର୍ଶରେ ଅନୁପ୍ରାଣିତ ବର୍ତ୍ତମାନ ଓ ଭବିଷ୍ୟତର ନୂତନ ପିଢ଼ି । ମାଁ ମାଣିକେଶ୍ୱରୀଙ୍କ ଏଇ ପବିତ୍ର ପୀଠର ଛତ୍ରେ ଛତ୍ରେ କଳାର ମାଣିକ୍ୟ ଉଦ୍‌ଭାସିତ ହୁଏ । ଏଇ ମାଟିରେ ପାଦ ପକାଇଲେ ହିଁ ଦେହ ଓ ମନ ଶିହରିତ ହୋଇଯାଏ, ଯାହାର କେନ୍ଦ୍ରସ୍ଥଳୀ ହେଲା ଭବାନୀପାଟଣା ! !

ହଁ, ଏବେ ଆମେ ଯିବା ସେ ସମୟର ଭବାନୀପାଟଣାକୁ, ଯାହାର ମୂଳବିନ୍ଦୁ ଥିଲା ଗାନ୍ଧି ଛକ । ଏହି ଛକର ବାମପଟକୁ ଦୁଇଟି ଛୋଟରାସ୍ତା ସର୍ପିଳ ଗତିରେ ଲମ୍ବିଯାଇ ପୁନରାୟ ନୂତନ ଏକ ସରଳରେଖା ସଦୃଶ ରାସ୍ତା ଉଭୟଙ୍କୁ ଯୋଡ଼ି ଦେଇଛି ଶଙ୍କୁ ଭାବରେ । ଏଭଳି ଏକ ତିନିକୋଣିଆ ଛକରେ ରହିଛି ଓଡ଼ିଶାର ଏକ ପୂରାତନ ସାଂସ୍କୃତିକ ଅନୁଷ୍ଠାନ, ଯାହାର ଆବିର୍ଭାବ ସତୁରୀ ଦଶକର ମଧ୍ୟଭାଗରେ ହୋଇ ଆଜି ସମଗ୍ର ଓଡ଼ିଶାର ଶ୍ରେଷ୍ଠତମ ଅନୁଷ୍ଠାନର ମର୍ଯ୍ୟାଦା ପ୍ରାପ୍ତି ହୋଇଛି । ମହାବୀରପଡ଼ାରେ ଥିବା ମହାବୀର ସାଂସ୍କୃତିକ ଅନୁଷ୍ଠାନ ବିଗତ ପଚାଶ ବର୍ଷ ମଧ୍ୟରେ ଶହଶହ କଳାକାର, ସାହିତ୍ୟିକ, ନୃତ୍ୟଶିଳ୍ପୀ, ନାଟ୍ୟଶିଳ୍ପୀ, ବାଦ୍ୟକାର ଜନ୍ମ ଦେଇପାରିଛି । ସେହି ଅଗଣିତଙ୍କ ମଧ୍ୟରେ ଜଣେ ମୁଁ, ଏହି ଖୋଲା ହୃଦୟରେ ସ୍ୱୀକାର କରିବାରେ ମୋର ତିଳେହେଲେ କୁଣ୍ଠାବୋଧ ନାହିଁ । ଏହି ଅନୁଷ୍ଠାନର ପ୍ରତିଷ୍ଠାତା ସଂଗଠକ ଜୟନ୍ତ ବେହେରା ମୋତେ ଟାଣି ନେଉଥିଲେ ଅନୁଷ୍ଠାନର ପବିତ୍ର ପୀଠକୁ, ବକ୍ତୃତା ପ୍ରତିଯୋଗିତା, କବିତା ପାଠୋତ୍ସବରେ ଅଂଶଗ୍ରହଣ କରିବା ପାଇଁ ।

ସରସ୍ୱତୀ ପୂଜା ବେଳେ ଏଠାରେ ବକ୍ତୃତା ପ୍ରତିଯୋଗିତା ହୋଇଥିଲା । ମୁଁ ଓ ମୋ ଘନିଷ୍ଠ ବନ୍ଧୁ ବିରୂପାକ୍ଷ ବୈଠାରୁ ଯୋଗ ଦେଉଥିଲୁଁ । କେବେ ମୁଁ ପ୍ରଥମ ହେଲେ ସେ ଦ୍ୱିତୀୟ, କେବେ ସେ ପ୍ରଥମ ହେଲେ ମୁଁ ଦ୍ୱିତୀୟ । ଉଭୟ ପୁରସ୍କୃତ ହେଲେ ଭାରି ଆନନ୍ଦିତ ହେଉଥିଲୁଁ । ବିରୂପାକ୍ଷ ଭଲ କବିତା ଲେଖୁଥିଲେ, ତାଙ୍କୁ ଅନୁସରଣ କରି ମୁଁ ବି କିଛି କିଛି ଅସଫଳ କବିତାଲେଖି ତାଙ୍କସହ ଏହି ଅନୁଷ୍ଠାନକୁ ଆସି କବିତାପାଠୋତ୍ସବରେ ଯୋଗ ଦେଉଥିଲି । ଏହି ଅନୁଷ୍ଠାନ କେବଳ ଇଟା ସିମେଣ୍ଟରେ ତିଆରି କୋଠରୀ ନୁହେଁ, ବରଂ ସୃଜନଶୀଳ ପ୍ରତିଭାକୁ ଲୋକଲୋଚନକୁ ଆଣିବାର ଏକ କଳାକାର ତିଆରି କାରଖାନା । ସେତେବେଳେ ଛୋଟ ଏକ କୋଠରୀ ଥିଲା, ଏବେ ବିରାଟ ଏକ ମଞ୍ଚ ସହ ସଭାଗୃହ ଭଳି ଘରମାନ ତିଆରି ହେଲାଣି । ଘୁମୁରା ଏକାଡେମୀ, ତାହାର ଏକ ଶାଖା ଅନୁଷ୍ଠାନ ମଧ୍ୟ ଏଇଠି କାର୍ଯ୍ୟ କରୁଛି । ଘୁମୁରା ନୃତ୍ୟକୁ ଆନ୍ତର୍ଜାତିକ ମାନ୍ୟତା ଦେବାରେ ଏହି ଅନୁଷ୍ଠାନର ଅବଦାନ ଅତୁଳନୀୟ । ଘୁମୁରା ନୃତ୍ୟକୁ ମଞ୍ଚାଭିମୁଖୀ କରି ତାର ଲୋପ୍ରିୟତା ବୃଦ୍ଧି କରିବାରେ ମହାବୀର ସାଂସ୍କୃତିକ ଅନୁଷ୍ଠାନର କର୍ତ୍ତବ୍ୟନିଷ୍ଠାକୁ ଯେତିକି ପ୍ରଶଂସା କରାଯିବ, କମ୍ ହେବ । ଏହି ସମସ୍ତ କାର୍ଯ୍ୟାବଳୀ ଜୟନ୍ତ ବେହେରାଙ୍କ ସଫଳ ନେତୃତ୍ୱ ଅଧିକାଂଶ ମାତ୍ରାରେ ଦାୟୀ । ନିଜ ସମଗ୍ର ଜୀବନ ଅନୁଷ୍ଠାନର ବିକାଶରେ ନିସ୍ୱାର୍ଥପର ଭାବରେ ଉପଯୋଗ କରିଦେଇଛନ୍ତି ଜୟନ୍ତ ଦାଦା । ଘରଠାରୁ ବେଶି ସମୟ ଅତିବାହିତ କରିଥାନ୍ତି ଏହି ଅନୁଷ୍ଠାନର ଅଫିସ୍ ଗୃହରେ ।

ଏହି ଅନୁଷ୍ଠାନର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ ରାହାସ ବିହାରୀ ବେହେରା, କଳାହାଣ୍ଡିର ସାହିତ୍ୟ କ୍ଷେତ୍ରରେ ଏକ ଅଗ୍ରଣୀ ନାମ । ଗାନ୍ଧିଛକର ବାମପଟକୁ ଥାଉ ଗୋଟିଏ ରାସ୍ତା ସେତେବେଳେ ଶ୍ରୀଯୁକ୍ତ ବେହେରାଙ୍କ ବାସସ୍ଥାନକୁ । ମୁଁ ବଡ଼ ଉତ୍ସୁକତାର ସହ ସେହି ଘର ସାମନାକୁ ଏଇଥିପାଇଁ ଯାଉଥିଲି ଯେ, ସେ ଘର ଉପରେ ଗୋଟାଏ ବିଜ୍ଞାପନ ବୋର୍ଡ ଟଙ୍ଗା ହୋଇଥିଲା, ସେଠି ଲେଖା ହୋଇଥିଲା ଅଖିଳ ପ୍ରେସ୍, ମାସିକ ସାହିତ୍ୟ ପତ୍ରିକା ସାଗରର କାର୍ଯ୍ୟାଳୟ । ତାଙ୍କ ସମ୍ପାଦନାରେ ସେତେବେଳେ ପ୍ରକାଶ ପାଉଥିଲା 'ସାଗର' ପତ୍ରିକା, ସେ ଥିଲେ ଅଖିଳ ପ୍ରେସର ସର୍ବେସର୍ବା । ଏକାଏକା ନାମଫଳକକୁ ଦେଖି ଚାଲିଆସେ, ଭାବନାରେ ଥାଏ ସାହିତ୍ୟ ପତ୍ରିକା କେମିତି ଦିଶେ, ଭିତରେ କଣ ସବୁ ଛପାହୁଏ । ସେହି ପ୍ରେସ୍ ପାଖକୁ ମୋର ଯିବା ଆସିବା ବାବଦରେ ହୁଏ ତ ବେହେରା ବାବୁ କିଛି ଜାଣିପାରୁନଥିଲେ, ହେଲେ ମହାବୀର ସାଂସ୍କୃତିକ ଅନୁଷ୍ଠାନର ସୁବର୍ଣ୍ଣ ଜୟନ୍ତୀ ଅବସରରେ ଜଣେ ବକ୍ତା ଭାବରେ ଯାଇଥିବା ବେଳେ ସେ ସଭାପତିତ୍ୱ କରୁଥିଲେ । ମୁଁ ମୋର ପରିଚୟ ଦେବାରୁ ସେ ଅତିସ୍ନେହରେ ତାଙ୍କ କାନାଡ଼ା ଗସ୍ତ ସମ୍ପର୍କିତ ଭ୍ରମଣ କାହାଣୀ ପୁସ୍ତକ 'ଅନନ୍ୟ ସୃଷ୍ଟି କାନାଡ଼ା'ଟି ମୋତେ ଉପହାର ସ୍ୱରୂପ ଦେଇଥିଲେ । ସେ ବହିଟିକୁ ସ୍ପର୍ଶ କରିବା ମାତ୍ରେ ମୋର ତାଙ୍କ ଘର ସାମନାକୁ ଏକ ଅଜ୍ଞାତ ବାଳକ ଭାବରେ ଯିବା ଘଟଣାସବୁ ମନେ ପଡ଼ିଗଲା ।

ପାଞ୍ଚପାଖୁଡ଼ା, ଗିରିଝର ଆଦି ସାହିତ୍ୟ ପତ୍ରିକା ପ୍ରକାଶନ କରି ଏହି ଅନୁଷ୍ଠାନ କଳାହାଣ୍ଡିର ସାହିତ୍ୟ କ୍ଷେତ୍ରକୁ ପୁଷ୍ଟ କରିଥିଲା । ସତ୍ୟ ସିଂ, ଲଳିତ କାନୁନ୍‌ଗୋ ଆଦିଙ୍କ ସହଯୋଗରେ ଏହିସବୁ ଉଦ୍ୟମ ସଫଳ ହେଉଥିଲା ।

ଭବାନୀପାଟଣାର ରହଣି ବେଳେ ମୋ ବ୍ରତଘର ଅନୁଷ୍ଠିତ ହୋଇଥିଲା ଆମ କ୍ୱାଟର୍ ସାମନାରେ ଥିବା ସିଟି ସ୍କୁଲରେ । ସ୍କୁଲର ସଂସ୍କୃତ ଶିକ୍ଷକ ପୂଜ୍ୟ ପ୍ରଭାକର ଶତପଥୀଙ୍କ ପୌରୋହିତ୍ୟରେ ଏହି ବ୍ରତଘରଟି ଧୁମ୍‌ଧାମ୍‌ରେ ଭୋଜିଭାତ ସହ ଆୟୋଜିତ ହୋଇଥିଲା । ଶତପଥୀ ସାର୍ ବିଭିନ୍ନ ବକ୍ତୃତା ପ୍ରତିଯୋଗିତା ବେଳେ ମୋତେ ଦିଗଦର୍ଶନ ଦେଉଥିଲେ । ଅନର୍ଗଳ ସଂସ୍କୃତ ଶ୍ଳୋକ ଆବୃତ୍ତିକରି ପରିବେଶକୁ ଆଧ୍ୟାତ୍ମିକ ରସରେ ଭିଜାଇଦେବାରେ ପ୍ରଚଣ୍ଡ ଦଖଲ ଥିଲା ତାଙ୍କର । ମୋତେ ଖୁବ୍ ଭଲ ପାଉଥିଲେ, ତାଙ୍କ ଘରକୁ ବି ମୋର ଯିବାଆସିବା ଲାଗିଥିଲା । ମୁଁ ଭବାନୀପାଟଣା ଛାଡ଼ିବାର ବହୁବର୍ଷ ପରେ ଜାଣିବାକୁ ପାଇଲି ନାଟ୍ୟକାର ଉମେଶ ଶତପଥୀ ହେଉଛନ୍ତି ତାଙ୍କ ପୁଅ । ଅନେକ ନାଟକର ରଚୟିତା, ନିର୍ଦ୍ଦେଶକ ଭାବରେ ସେ ସୁନାମ ଅର୍ଜନ କରିଛନ୍ତି । ନିକଟରେ ନାଟକ ସମ୍ପର୍କିତ ନିବନ୍ଧ ରଚନାକରି ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍‌ଡି ଡିଗ୍ରୀ

ହାସଲ କରିଛନ୍ତି । ସଂସ୍କୃତ ସାର୍ ଆଉ ନାହାନ୍ତି, ବହୁବର୍ଷ ପରେ ଉମେଶବାବୁଙ୍କ ସହ ତାଙ୍କ ଘରକୁ ଯାଇ ସହଧର୍ମିଣୀଙ୍କ ସହ ଭେଟ ହେଲି, ଆପେଆପେ ମୁଣ୍ଡ ନଇଁଗଲା, ମୋ ମାଁଙ୍କୁ ଦେଖିଲାଭଳି ଲାଗିଲା, ଆଖିରେ ଆଖିଏ ଲୁହ ଜମାଟ ବାନ୍ଧିଗଲା, ନିଜ ଘରକୁ ଅନେକ ଯୁଗପରେ ଫେରିଲାଭଳି ଅନୁଭୂତ ହେଲା ।

ଭାରତ ପାକିସ୍ତାନ ଯୁଦ୍ଧର ପରିଣତି ତାସ୍‌କେଣ୍ଟ ଚୁକ୍ତିରେ ସମାପ୍ତି ଘୋଷିତ ହେଲା । ହେଲେ ପରେପରେ ସମଗ୍ର ଭାରତବର୍ଷ ପାଇଁ ଏକ ଦୁଃଖଦ ଘଟଣାଟିଏ ଘଟିଗଲା, ଯାହା ଏ ଯାଏଁ ରହସ୍ୟ ହୋଇ ରହିଯାଇଛି । ବାହାରେ ଯାହା ବି ଘଟେ, ମୁଁ ଆସି ଘରେ ପ୍ରଘଟ କରୁଥିବାରୁ ମାଁ ମୋତେ ସମ୍ବାଦଦାତା ବୋଲି ଥଟ୍ଟାରେ ଚିଡ଼ଉଥିଲେ । ବାହାରେ ଶୁଣିଲି, ଭାରତର ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କ ଦେହାନ୍ତ ଘଟିଯାଇଛି । ତତ୍‌କ୍ଷଣାତ୍ ଘରକୁ ଦୌଡ଼ିଯାଇ ବାପାଙ୍କୁ ଏଇ ସମ୍ବାଦଟି ଦେଲାପରେ ବାପା ଖୁବ୍ ରାଗିଗଲେ, ଅଜସ୍ର ଗାଳି ଦେଲେ, ମିଛ କହୁଛୁ ବୋଲି ମୁହଁ ବନ୍ଦ କରିବାକୁ ସତର୍କ କରିଦେଲେ । ହେଲେ କିଛି ସମୟ ପରେ ରେଡ଼ିଓ ଯେତେବେଳେ ସେଇ ସମ୍ବାଦକୁ ବାରମ୍ବାର ପ୍ରସାର କଲା, ବାପା ନୀରବରେ କାନ୍ଦିବାକୁ ଆରମ୍ଭ କଲେ, ତାଙ୍କ ସହ ଆମେ ଭାଇଭଉଣୀମାନେ ମଧ୍ୟ, ଯେଭଳି ଘରର ଜଣେ କେହି ଆମକୁ ଅନାଥ କରି ଛାଡ଼ି ଚାଲିଗଲେ । ଆମ ପରିବାର ପରି ସମଗ୍ର ଭାରତବର୍ଷର ଦେଶପ୍ରେମୀଙ୍କ ଲୁହରେ ଭିଜିଗଲା । ସ୍ୱଳ୍ପକାଳର ପ୍ରଧାନମନ୍ତ୍ରୀତ୍ୱ ଭିତରେ ସେ ପ୍ରତିଟି ଭାରତୀୟଙ୍କ ହୃଦୟରେ ସ୍ଥାନିତ ହୋଇଗଲେ ।

ଭୁପିନ୍ଦର ସିଂ, ଜୟନ୍ତ ବେହେରା, ଭକ୍ତ ପ୍ରସାଦ ମିଶ୍ର, ରଜନୀକାନ୍ତ ବେହେରା ଆଦି ଛାତ୍ରମାନେ ବାପାଙ୍କ ନିକଟରେ ଆମ ଘରେ ପାଠ ପଢ଼ିବାକୁ ଆସୁଥିଲେ । ତାଙ୍କ ସହ ବଡ଼ଭାଇ ମୁରଲୀଧର ପ୍ରେମନାଥ ନାୟକ ମଧ୍ୟ ବସୁଥିଲେ । ବାପାଙ୍କ ଇଂରାଜୀ, ସଂସ୍କୃତ ଓ ଇତିହାସ ଜ୍ଞାନ ଥିଲା ପ୍ରଚୁର । ବଡ଼ଭାଇ ବାପାଙ୍କ ପାଣି ଆଣି ଇଂରାଜୀର ଜଣେ ଦକ୍ଷ ଅଧ୍ୟାପକ ଭାବରେ ଲୋକପ୍ରିୟତା ହାସଲ କରିଛନ୍ତି । ରଜନୀ ବେହେରା, ଭୁପିନ୍ଦର ସିଂ, ପଦ୍ମନାଭ ମୁଣ୍ଡ, ଯୁଧିଷ୍ଠିର ସାହୁ ଆଦି ଥିଲେ ତାଙ୍କ ସହପାଠୀ । ବିରୂପାକ୍ଷ ବୈଠାରୁ, ପ୍ରଶାନ୍ତ ମୁଣ୍ଡ, ଓମପ୍ରକାଶ ଜୈନ ଆଦି ଥିଲେ ମୋର ଅନ୍ତରଙ୍ଗ ବନ୍ଧୁ । ଜୟନ୍ତ ବେହେରା, ହରିହର ଡାକୁଆ, ଯୁଧିଷ୍ଠିର ସାହୁ, ବଦ୍ରିନାରାୟଣ ମହାପାତ୍ର ଆଦି ଥିଲେ ମୋର ଆଦର୍ଶ ।

ଏ ସବୁ ସ୍ମୃତିଚିତ୍ରମାନ ମୋବାଇଲର ପରଦାରେ ରୂପ ଦେବାବେଳେ ମୁଁ ଭବାନୀପାଟଣାରେ ଅଛିଅଛି ଭଳି ଲାଗୁଛି । । ଲେଖିସାରିବା ପରେ ଯେତେବେଳେ ମୁଁ

ମୋତେ ଆବିଷ୍କାର କରୁଛି ନିଜ କୋଠରୀରେ, ଇଛା ହେଉଛି ଏବେ ଉଡ଼ିଯାଆନ୍ତି କି ଭବାନୀପାଟନାକୁ ! ! ଉକ୍ଳୋଲା ଡେଇଁ, ପାଷ୍ଟିଗୁଡ଼ି ପାର୍ ହୋଇ, କଲେଜ ରାସ୍ତା ଛୁଇଁ ଷ୍ଟେଚ୍ୟୁ ଛକକୁ ପହଞ୍ଚିଯାଆନ୍ତି କି ! ! ! ପରମେଶ୍ୱରଙ୍କୁ, ସତ୍ୟ ସିଂଙ୍କୁ, ଜୟନ୍ତ ଦାଦାଙ୍କୁ, ପ୍ରଦୀପ ମାଝିଙ୍କୁ ଭେଟନ୍ତି କି, କୋଳେଇ ନିଅନ୍ତି କି ବିରୂପାକ୍ଷଙ୍କୁ, ଓମ୍ ପ୍ରକାଶଙ୍କୁ ! ! ଛାତିର ଧୁକ୍‌ଧୁକିରେ ଅନୁଭବନ୍ତି ଭବାନୀପାଟଣା ମାଟିର ମହକକୁ ! ! !



ଭବାନୀପାଟଣାରେ ନାଟକ ସହ ସମ୍ପର୍କ ଆରମ୍ଭ ହାଇସ୍କୁଲର 'ପିଲିସଙ୍ଗ' ନାଟକରୁ । ପରେ ପରେ ଷ୍ଟେଚ୍ୟୁଛକରୁ କଲେଜ ଯିବା ରାସ୍ତାକଡ଼ରେ, ଏବେ ଯେଉଁଠି ଟାଉନ୍‌ହଲ୍ ଅଛି, ସେଠାରେ ଅସ୍ଥାୟୀ ରଙ୍ଗମଞ୍ଚରେ ପ୍ରଫୁଲ୍ଲ ରଥଙ୍କ ରଚିତ, ନିର୍ଦ୍ଦେଶିତ ଦୁଇଟି ନାଟକ ଦେଖିବାର ସୌଭାଗ୍ୟ ଅର୍ଜନ କରିଥିଲେ । ସେଗୁଡ଼ିକ ହେଲା 'ଆଜି ଓ କାଲି' ଏବଂ 'କାହାର ଛାଇ' । ଆଜି ଓ କାଲି ନାଟକର ଦୁଇତିନୋଟି ଚରିତ୍ରମୁହଁରେ କଳାହାଣ୍ଡିର ଆଞ୍ଚଳିକ ଭାଷାର ସଂଳାପ ସଂଯୋଜିତ ହୋଇଥିଲା । ଏ ଦୁଇଟିଯାକ ନାଟକ ସେକାଳର ସମସାମୟିକ ସାମାଜିକ ସମସ୍ୟା ଉପରେ ଆଧାରିତ ଥିଲା । ଏଥି ସହ ଏଗୁଡ଼ିକ ରହସ୍ୟାତ୍ମକ ମନୋରଞ୍ଜନଧର୍ମୀ ନାଟକ । ବଦ୍ରିନାରାୟଣ ମହାପାତ୍ର ମହାଶୟ ଭବାନୀପାଟଣା ସହରର ଜନୈକ ବରିଷ୍ଠ ତଥା ଦକ୍ଷ ଅଭିନେତା, ସେ ଏହି ଦୁଇଟିଯାକ ନାଟକର ମୁଖ୍ୟ ଚରିତ୍ରରେ ଅଭିନୟ କରିଥିଲେ । କିଶୋରାବସ୍ଥାରେ ଦେଖିଥିବାରୁ ନାଟକର କେତୋଟି ଦୃଶ୍ୟ ଛାଡ଼ି ଦେଲେ ବିଶେଷ କିଛି ମନେ ନାହିଁ । ଡେଷ୍ଟରୀ ମସିହାରେ ଭବାନୀପାଟଣାରେ ଆୟୋଜିତ ହୋଇଥିଲା ଓଡ଼ିଶା ଯୁବ ଲେଖକ ସମ୍ମେଳନର ବାର୍ଷିକ ଅଧିବେଶନ । ମୁଁ ଓ ବନ୍ଧୁ ପ୍ରମୋଦ ତ୍ରିପାଠୀ, ତାଙ୍କ ଦାଦା ପ୍ରଫୁଲ୍ଲ ତ୍ରିପାଠୀ ଓ ଅଭୟ ପାଢ଼ୀଙ୍କ ସହ ଏକ ଧଳା ଏମ୍ବାସଡର୍ କାର୍‌ରେ ଭବାନୀପାଟଣା ଆସିଥିଲୁ । ସେହି ଅବସରରେ ପ୍ରଫୁଲ୍ଲ ରଥ ଏବଂ ତାଙ୍କ ନାଟ୍ୟଦଳ ସେଇ ଷ୍ଟେଚ୍ୟୁଛକର ଏକ ପାର୍ଶ୍ୱରେ ତାଙ୍କ ରଚିତ ଓ ନିର୍ଦ୍ଦେଶିତ ନାଟକ 'ଚାରିଛକ'କୁ ଷ୍ଟ୍ରିଟ୍ ପ୍ଲେ ଭଳି ଅଭିନୀତ କରିଥିଲେ । ଏଥିରେ ସ୍ୱୟଂ ପ୍ରଫୁଲ୍ଲ ବାବୁ ଏକ ହାସ୍ୟରସର ଚରିତ୍ରରେ ଅଭିନୟ କରିଥିଲେ । ତାଙ୍କ ଅଭିନୟ ଦେଖି ଦେଖଣାହାରୀ ହସିହସି ବେଦମ୍ ହୋଇଯାଇଥିବାର ମୋର ମନେ ଅଛି ।

ନାଟ୍ୟରଶ୍ମି ପ୍ରଫୁଲ୍ଲ କୁମାର ରଥ, ଭବାନୀପାଟଣା ନାଟ୍ୟକ୍ଷେତ୍ରରେ ଜନୈକ ଉଜ୍ଜ୍ୱଳ ତାରକା । ଅନେକ ସଫଳ ନାଟକର ରଚୟିତା ଭାବରେ ସେ ସମଗ୍ର ଓଡ଼ିଶାରେ ପରିଚିତ । ପଳାତକ, ସ୍ୱର୍ଣ୍ଣ ଚମ୍ପା, ଆଜି ଓ କାଲି, ଶବ ପଡ଼ିଛି, କାହାର ଛାଇ, ପି ଡବ୍ଲୁ ଡି, ମୋର

ବା ଦୋଷ କଣ, ଶୂନ୍ୟ ଆକାଶ ଆମର ଆଖି ଆଦି ମନୋରଞ୍ଜନଧର୍ମୀ, ସାମାଜିକ ଚେତନାର ବାର୍ତ୍ତା ବହନକରୁଥିବା ନାଟକମାନ ସମଗ୍ର ଓଡ଼ିଶାରେ ଲୋକପ୍ରିୟତା ହାସଲ କରିଥିଲା । ବାସ୍ତରୀ, ତେସ୍ତରୀ ମସିହାରେ ଗଙ୍ଗାଧର ମେହେର ମହାବିଦ୍ୟାଳୟର ବାର୍ଷିକ ନାଟକ ଉତ୍ସବରେ ରବି ନାରାୟଣ ବହିଦାର ସମ୍ପାଦକ ଥିବାବେଳେ ପ୍ରଫୁଲ୍ଲ ରଥଙ୍କ ରଚିତ ମୋର ବା ଦୋଷ କଣ ନାଟକ ସଫଳତାର ସହ ମଞ୍ଚସ୍ଥ ହୋଇଥିଲା । କଲେଜ ପ୍ରାଙ୍ଗଣ ଭିତରେ ଥିବା ପ୍ରଜାପତି ସ୍ୱରୂପର ତିନୋଟିଯାକ ମଞ୍ଚକୁ ଗୋଟିଏ କରି ଏକ ପାର୍କର ଦୃଶ୍ୟସଜ୍ଜା ଦେଖି ମୁଖ୍ୟ ଅତିଥି ଭାବରେ ଆସିଥିବା ପ୍ରଫୁଲ୍ଲ ବାବୁ ତାଙ୍କ ଜୀବନରେ ଏଭଳି ଦୃଶ୍ୟସଜ୍ଜା ଓ ମଞ୍ଚଶିଳ୍ପ ଦେଖି ନଥିବା ମତ ପ୍ରଦାନ କରିଥିଲେ । ପ୍ରଫୁଲ୍ଲ ବାବୁ ଥିଲେ ଶତପ୍ରତିଶତ ଜଣେ ଖାସ୍‌ନାଟୁଆ । ଭବାନୀପାଟଣା ଭଳି ଉପାନ୍ତ ଅଞ୍ଚଳରେ ରହି ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ପାଇଁ ନାଟକ ଲେଖୁଥିବା ନାଟ୍ୟକାରଙ୍କୁ ଯେଉଁ ସମ୍ବୋଧନରେ ପ୍ରଶଂସା କଲେ ମଧ୍ୟ ଉଣା ହୋଇଯିବ । ମହାବୀର ସାଂସ୍କୃତିକ ଅନୁଷ୍ଠାନ ଯଥାର୍ଥରେ ତାଙ୍କ ନାମ ପ୍ରତିବର୍ଷ ଯୁବନାଟ୍ୟକାରମାନଙ୍କୁ ସମ୍ମାନିତ କରିଆସୁଛି । ମୁଁ ମଧ୍ୟ କିଛି ବର୍ଷ ଏହି ମନୋନୟନ କମିଟୀର ସଦସ୍ୟ ଭାବରେ କାମ କରିଛି । ସୁଖର କଥା, ପ୍ରଫୁଲ୍ଲ ବାବୁଙ୍କ ସୁପୁତ୍ର ପ୍ରବୋଧ ରଥ ସମ୍ପ୍ରତି ଓଡ଼ିଶା ସଂଗୀତ ନାଟକ ଏକାଡେମୀର ସଚିବଭାବରେ କାର୍ଯ୍ୟରତ ।

ଆମେ ଥିବାବେଳେ ହାଇସ୍କୁଲରେ ମଧ୍ୟ ବାର୍ଷିକ ନାଟକ ଆୟୋଜିତ ହେଉଥିଲା ଜାକଜମକରେ । ବାପା ନିଜେ ଜଣେ ଅଭିନେତା ହୋଇଥିବାରୁ ସେ ଛାତ୍ରମାନଙ୍କ ନାଟ୍ୟପ୍ରତିଭାକୁ ପ୍ରୋତ୍ସାହିତ କରୁଥିଲେ । ବାପା କହୁଥିଲେ, ସେ ରେଭେନ୍ସା କଲେଜର ଛାତ୍ର ଥିବାବେଳେ ନାଟକ କରୁଥିଲେ, ବିଶେଷତଃ ହାସ୍ୟରସାତ୍ମକ ଚରିତ୍ରରେ । ରାଜକିଶୋର ରାୟ ତାଙ୍କ ନାୟିକାଭୂମିକାରେ ଅଭିନୟକରୁଥିବା କଥା ବାପାଙ୍କ କଣ୍ଠରୁ ଶୁଣି ମୁଁ ଗର୍ବ ଅନୁଭବ କରୁଥିଲି । 'ସମାଧି' ଓ 'ଭୁଲି ହୁଏନା', 'ବକ୍ସି ଜଗବନ୍ଧୁ' ଭଳି ନାଟକଗୁଡ଼ିକ ହାଇସ୍କୁଲର ଅସ୍ଥାୟୀ ମଣ୍ଡପରେ ମଞ୍ଚସ୍ଥ ହୋଇଥିଲା । ମୁଁ ଆମୂଳଚୂଳ ଏହି ତିନୋଟିଯାକ ନାଟକ ଦେଖିଛି, ନାଟକପରେ ଦଳଗତ ଫଟୋରେ ମଧ୍ୟ ନିଜକୁ ସ୍ଥାନିତ କରିଥିଲି । ନାଟକ ବାବଦରେ ବିଶେଷ କିଛି ସ୍ମରଣରେ ନଥିଲେ ବି ଏଥିରେ ନାରୀ ଚରିତ୍ରରେ ଅଭିନୟ କରୁଥିବା ଦୁଇଜଣ ଅଭିନେତା ଯୁଧିଷ୍ଠିର ସାହୁ ଓ ଗୋପାଳ ବୈଠାରୁଙ୍କ ସ୍ୱାଭାବିକ ନାରୀସୁଲଭ ଅଭିନୟ ନାଟକଗୁଡ଼ିକର ସଫଳତା ପାଇଁ ଦାୟୀ ବୋଲି କହିଲେ ଭୁଲ ହେବନାହିଁ । ଦେଖିବାକୁ ଯେମିତି, ଅଭିନୟ ମଧ୍ୟ ସେଭଳି ଯୋର୍‌ଦାର୍ । ଗୋପାଳ ବୈଠାରୁ, ମୋର ଅନ୍ତରଙ୍ଗ ବିରୂପାକ୍ଷଙ୍କ ବଡ଼ଭାଇ, ସେବେଳର ଜଣେ ପୋଖତ ଅଭିନେତା

ଓ ଫୁଟ୍‌ବଲ୍ ଖେଳାଳୀ । ବକ୍ସି ଜଗବନ୍ଧୁ ନାଟକରେ ଜୟନ୍ତ ଦାଦା ବ୍ରିଟିଶ କେପ୍‌ଟେନ୍ ଭୂମିକାରେ ଚମତ୍କାର ଅଭିନୟ କରିଥିଲେ । ତେଷ୍ଠରୀ ସାଲରେ ଯେତେବେଳେ ଭବାନୀପାଟଣା ଯାଇଥିଲି, ଯୁଧିଷ୍ଠିର ଦାଦା ଗୋଟାଏ ଗୁଡ଼ିଆ ଦୋକାନ କରିଥିଲେ । ପରେ ୨୦୦୯-୧୦ରେ ଗଲାବେଳେ ଦେଖିଲି ସେଠାରେ ମସ୍ତବଡ଼ କୋଠାଘର ଠିଆ ହୋଇଛି । ଦାଦାଙ୍କ ବିକାଶକୁ ଚର୍ମ ଚକ୍ଷୁରେ ଦେଖି ଖୁବ୍ ଖୁସିହୋଇଥିଲି । ଗତବର୍ଷ ଦୈନିକ ସମ୍ବାଦର ଜୁଗାର୍ ସମ୍ମାନ ଗ୍ରହଣ କରିବା ଅବସରରେ ସେ ନିଜେ ମୋ ପାଖକୁ ଆସିଥିଲେ । ତାଙ୍କୁ ଦେଖି ଆପେ ଆପେ ପାଦ ଛୁଇଁ ମୁଣ୍ଡିଆମାରିପକେଇଲି, ଏଇଥିପାଇଁ ଯେ ସେ ଥିଲେ ମୋର ଜଣେ ପ୍ରେରଣାର ଉତ୍ସ ।

ସୋହନଲାଲ ଅଗ୍ରୱାଲା, ଭବାନୀପାଟଣାର ଅନ୍ୟତମ ଲୋକପ୍ରିୟ ନାଟ୍ୟକାର । ସେ ପ୍ରାୟତଃ ଡିଟେକ୍ଟିଭ୍ ଓଡ଼ିଆ ନାଟକ ରଚନା କରୁଥିଲେ । ସେଇ ନାଟକମାନ ମଧ୍ୟ ମୁଁ ଦେଖିଛି, କିନ୍ତୁ କେଉଁ ଅବସରରେ, କେଉଁ ମଞ୍ଚରେ ଅଭିନୀତ ହୋଇଥିଲା, ମୋର ସ୍ମୃତିରେ ନାହିଁ । ମୋର ନାଟକ ପ୍ରତି ଆକର୍ଷିତହେବାରେ ସୋହନବାବୁଙ୍କ ଅଦୃଶ୍ୟ ପ୍ରୋତ୍ସାହନ ଜଡ଼ିତ । ଜଣେ ଅମାୟିକ, ସରଳ, ମିଷ୍ଟଭାଷୀ ଭଦ୍ରମଣିଷ ଭାବରେ ସେ ମୋ ଅନ୍ତଃସ୍ଥଳରେ ଏବେ ବି ପୂଜିତ । ଜଣେ ମାରୱାଡି ସମ୍ପ୍ରଦାୟର ବ୍ୟକ୍ତି ହୋଇଥିଲେ ହେଁ ଓଡ଼ିଆ ଭାଷାରେ ତାଙ୍କ ଯଥେଷ୍ଟ ଦଖଲ ଥିଲା । ଗତ ୨୦୦୯-୧୦ ମସିହାରେ ଧନୁପାଲିର ମଞ୍ଚନାୟକ ଅନୁଷ୍ଠାନ ତରଫରୁ ଭବାନୀପାଟଣା ଟାଉନ୍ ହଲ୍ ମଞ୍ଚରେ ମୋ ରଚିତ ସମ୍ବଲପୁରୀ ନାଟକ 'ତମେ ଅଛ ବଲି' ନାଟକଟି ସଫଳତାର ସହ ଅଭିନୀତ ହେବାପରେ ସୋହନବାବୁ ସାଙ୍ଗେସାଙ୍ଗେ ଆସି ମୋତେ କୁଣ୍ଢେଇ ପକେଇ ଅଭିନନ୍ଦନ ଜଣାଇଥିଲେ । ତାଙ୍କ ସହ ଆହୁରି ଅନେକ ଶୁଭେଚ୍ଛୁ ମଧ୍ୟ ପ୍ରଶଂସାରେ ମୋତେ ବୁଡେଇ ଦେଇଥିଲେ । ପରମେଶ୍ୱରଙ୍କ ମତରେ ଲୋକେ ଏବେ ବି ସେ ନାଟକକୁ ମନେରଖିଛନ୍ତି । ଯେଉଁମାନଙ୍କ ଅନୁପ୍ରେରଣାରେ ମୁଁ ନାଟକ ଆଡକୁ ଆକର୍ଷିତ ହୋଇଥିଲି, ସେମାନେ ଆସି ଏତେ ବର୍ଷ ପରେ ମୋ ନାଟକ ଦେଖି ଆନନ୍ଦିତ ଓ ଉତ୍‌ଫୁଲ୍ଲିତ ଜାଣି ଖୁସି ହେବା ସ୍ୱାଭାବିକ, ହେଲେ ମୋର ଅନୁଭବରେ ଥିଲା, ଏଇଟା ସେଇ ସ୍ଥାନ, ଯେଉଁଠି ଚାଳିଶ ପଚାଶ ବର୍ଷ ତଳେ ନାଟ୍ୟରଶ୍ମି ପ୍ରଫୁଲ୍ଲ ରଥଙ୍କ ନାଟକଦେଖି ବିମୋହିତ ହୋଇଥିଲି । କଳାହାଣ୍ଡି କଳାକାର ସଂଘର ସଂଗଠକ ପ୍ରବୋଧ ରଥ ମୋଠାରୁ ଏକ ସଫଳ ନାଟକ ପାଇ ଖୁସି ବ୍ୟକ୍ତି କରି ପୁଣି ପରବର୍ତ୍ତୀବର୍ଷ ପାଇଁ ଡାକିଲେ । ପରବର୍ଷ ମଧ୍ୟ ମୋ ରଚିତ ଏକକଚରିତ୍ର ବିଶିଷ୍ଟ ନାଟକ 'କେତେ ଦୂରେ ମୋର୍ ଆକାଶ' ନାଟକଟି ମଞ୍ଚସ୍ଥ ହେଲା ଓ ପୁରସ୍କୃତ ହେଲା । ପରେ ଜାଣିଲି, ବଦ୍ରିନାରାୟଣ ମହାପାତ୍ର, ସୋହନବାବୁ ସେହି

ପ୍ରତିଯୋଗିତାରେ ବିଚାରକ ଥିଲେ । ପୁରସ୍କାର ବଡ଼କଥା ନୁହେଁ, ପଚାଶ ବର୍ଷ ପୂର୍ବେ ଯେଉଁ ଚରିତ୍ରମାନଙ୍କ ପ୍ରେରଣାରେ ନାଟ୍ୟକଳାକୁ ଜୀବନର ଅଂଶବିଶେଷ ଭାବରେ ପାଥେୟ କରିଥିଲି, ମନେ ହେଉଥିଲା, ମୋର କଳାକୃତିର ପରୀକ୍ଷା ଦେଇ ଆସିଛି ଯେମିତି ସେମାନଙ୍କ ସମ୍ମୁଖରେ । ଏଭଳି ସୌଭାଗ୍ୟ, ଖୁବ୍ କମ୍ କଳାକାରମାନଙ୍କ ଭାଗ୍ୟରେ ଯୋଟେ ।।

ଆସନ୍ତୁ, ପୁଣି ଆପଣଙ୍କୁ ମୁଁ ନେଇଯାଉଛି ସ୍କୁଲରୁ ମାଣିକେଶ୍ୱରୀ ମନ୍ଦିର ଆଡ଼କୁ ଯାଇଥିବା ରାସ୍ତାକୁ, ଠିକ୍ ରାଜ୍ ସାଇନ୍ ସାର୍ଭିସ୍ ଦୋକାନର ପଛପଟକୁ, ରାସ୍ତା ବାମପଟକୁ ଏକ କୁଡ଼ିଆ ଘର ଥିଲା, ଘରର ବାହାର ଗୃହଟି ଦୁଇ ଭାବରେ ବିଭକ୍ତହୋଇ ଗୋଟିଏ ଘରଭିତରକୁ ଏବଂ ଅନ୍ୟଟି ଥାନାର ହାଜତ୍ କୋଠୀ ଭଳି ଅତି ଛୋଟ ଘରଟିଏ, ଦରଜାଟି କାଠର ରେଲିଂରେ ତିଆରି । ମୁଁ ଯେତେବେଳେ ବି ସେଇ ରାସ୍ତାରେ ଯାଏ, ଦେଖେ ଯୁବକଟିଏ ସବୁବେଳେ ସେଠି ବସିଥାଏ, ମନକୁ ମନ କଣ ସବୁ କଥା କହୁଥାଏ, ତାର ହାତ ଓ ଗୋଡ଼କୁ ଲୁହାକଡ଼ି ଦ୍ୱାରା ବାନ୍ଧି ଦିଆଯାଇଥିଲା । ତାକୁ ଦେଖିଲେ ମୁଁ ଭୟଭୀତ ହୋଇପଡୁଥିଲି । ମୋର କିଶୋର ବୟସରେ ଡରମାଡ଼ିବା ସ୍ୱାଭାବିକ, ହେଲେ ମନ ଭିତରେ ଉଙ୍କିମାରୁଥିଲା ଅଜସ୍ର ପ୍ରଶ୍ନ । ଏହାକୁ କାହିଁକି ବନ୍ଧା ଯାଇଛି, ଯାର ଦୋଷ କଣ, ମୁହଁରେ ଦାଢ଼ି, ବୟସ ଅଧିକ ନ ହେଲେ ବି ଶୁଖିଲା ଶୁଖିଲା ଦେହ, ଶୀର୍ଣ୍ଣ ଶରୀର, ବଡ଼ବଡ଼ ଆଖିଡୋଳା, ଏକ ମିନିଟ୍‌ରୁ ଅଧିକ ସମୟ ଦେଖି ହେଉ ନଥିଲା ତାକ, କାଳେ ଆକ୍ରମଣ କରିବ, ଦରଜା ଭାଙ୍ଗି ମୋତେ ରକ୍ତାକ୍ତ କରି ପକେଇବ ।। ଖୁବ୍ ପ୍ରଭାବିତ ହୋଇଥିଲି ଏହି ଚରିତ୍ରକୁ ଦେଖି, ବାରମ୍ବାର ଯାଉଥିଲି, ତାକୁ ଡୁଙ୍ଗି ଚାଲିଆସୁଥିଲି ।

ଅନେକ ବର୍ଷ ପରେ ପ୍ରାୟ ପଇଁତିରିଶ, ଛତିଶ୍ ବର୍ଷ ପରେ, ସମ୍ବଲପୁରର ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦ ପାଇଁ ନାଟକଟିଏ ଏଲ୍ଲାହାବାଦ ନାଟକ ପ୍ରତିଯୋଗିତାରେ ଯୋଗ ଦେବା ପାଇଁ ଆବଶ୍ୟକ ଥିଲା । ପୂର୍ବରୁ ଏହି ଅନୁଷ୍ଠାନ ପାଇଁ ମଙ୍ଗଳୁଚରଣ ବିଶ୍ୱାଳ ଦୁଇଟି ନାଟକ ଲେଖିଥିଲେ, 'ଉଡଲା ପତର୍ ବୁଡଲା ଡଙ୍ଗା' ଓ 'ଭୁତିଆର୍ ହଥିଆର୍' । ଦୁଇଟି ଯାକ ନାଟକ ସାରା ଓଡ଼ିଶାର ବିଭିନ୍ନ ସ୍ଥାନରେ ଅଭିନୀତ ହୋଇ ପ୍ରଶଂସିତ ହୋଇଥିଲା । ତେବେ, ଏହ୍ଲାହାବାଦକୁ ଯାଇଥିବା ଉଡଲା ପତର୍ ବୁଡଲା ଡଙ୍ଗାରେ କୁନ୍ଦୀ ଚରିତ୍ରରେ ଚମତ୍କାର ଅଭିନୟ କରିଥିବା ଅଭିନେତ୍ରୀ ଅଞ୍ଜଳୀ ମେହେର, (ମହତ୍ତମ) ପୁରସ୍କୃତ ନ ହେବାରୁ ନିର୍ଦ୍ଦେଶକଭାବରେ ମୋ ମନରେ କ୍ଷୋଭ ସୃଷ୍ଟି ହୋଇଥିଲା । ମୁଁ ଅଞ୍ଜଳୀଙ୍କୁ କଥା

ଦେଇଥିଲି ପରବର୍ଷକୁ ଅପେକ୍ଷା କରିବା ପାଇଁ । ସେ ବର୍ଷ ସମୟ ଉପନୀତ ହେବାରୁ ମୁଁ ମଙ୍ଗଲୁ ବାବୁଙ୍କ ବାରଦୁମରି ବାସଗୃହକୁ ଯାଇ ନୂଆ ନାଟକର ବିଷୟବସ୍ତୁ, ଚରିତ୍ର ବାବଦରେ ଆଲୋଚନାକରି ନାଟକର କାହାଣୀ ସହ ଜଡ଼ିତ ଚରିତ୍ର ବାବଦରେ ସୂଚନା ଦେଲି । ସେଇ ଚରିତ୍ରମାନଙ୍କ ଭିତରେ ଥିଲା ଗୋଟିଏ ଚରିତ୍ର, ଯାହାର ମୂଳ ଉତ୍ସ ଥିଲା ଭବାନୀପାଟନାରେ ଯାହାକୁ ଦେଖି ମୁଁ ଭୟଭିତ ହୋଇପଡିଥିଲି, ଏହି ହାତଗୋଡ଼ରେ କଡ଼ି ପଡିଥିବା ଏଇ ପାଗଳପ୍ରାୟ ଶେଥା ଯୁବକଟିର । ନାଟକଟି ହେଲା ଦଦରା ଦର୍ପନ୍ । ସ୍ୱର୍ଗ ଦେବେଶ୍ୱର ମିଶ୍ର ଚମତ୍କାର ଅଭିନୟ କରିଥିଲେ, ଶତ ପ୍ରତିଶତ ନ୍ୟାୟ ପ୍ରଦାନକରିଥିଲେ ଏହି ଚରିତ୍ରକୁ । ସେଇ ଯୁବକଟିର ସତୀସାବିତ୍ରୀ ଭଳି ସ୍ତ୍ରୀ ଭୂମିକାରେ ଅଭିନୟ କରି ଅଞ୍ଜଳୀ ଏହ୍ଲାହାବାଦଠାରେ ସର୍ବଭାରତୀୟ କ୍ଷେତ୍ରରେ ଶ୍ରେଷ୍ଠ ଅଭିନେତ୍ରୀ ଭାବରେ ପୁରସ୍କୃତା ହୋଇଥିଲେ । ଏମିତି ସକାରାତ୍ମକ ମନୋଭାବ ନେଇ କାର୍ଯ୍ୟ କଲେ ସଫଳତା ଅବଶ୍ୟ ଆସେ ।

ଭବାନୀପାଟଣା ସହ ଏମିତି ଆନ୍ତରିକ ସମ୍ପର୍କ ଯୋଡ଼ି ହୋଇଯାଇଛି, ମୁଁ ଏବେ ବି ଯାହା ଚାହିଁଛି, ମିଳିଯାଇଛି । ନାଟ୍ୟକାର ଘର ଭିତରେ ରହି ପୋଥି ପଢ଼ି ନାଟକ ଲେଖି ନଥାଏ, ସେ ପ୍ରତିଟି ମୁହୂର୍ତ୍ତରେ ସମାଜକୁ ତୃତୀୟ ନୟନରେ ପଢୁଥାଏ, ଏ ସମାଜରେ ଘଟୁଥିବା ଚଳଚଞ୍ଚଳ ପ୍ରାୟ ଘଟଣାସବୁ ନାଟ୍ୟକାରର ମାନସିକ ଖାଦ୍ୟ । ଲେଖନୀର ଆହ୍ୱାନରେ ଯେତେବେଳେ ଯାହା ବି ତାକୁ ଆବଶ୍ୟକ ପଡେ, ସେ ସାଉଁଟି ଆଣେ ମସ୍ତିଷ୍କର ସାଇତାଧନରୁ, ଅକ୍ଷରେଅକ୍ଷରେ ଓତାରି ଦିଏ ସଂଳାପର ପୁଟ ଦେଇ, ଭାବର ଅଳଙ୍କାରରେ ନାଟକର ସର୍ବାଙ୍ଗ ସଜେଇଦିଏ, ଅଙ୍ଗେନିଭାଇଥିବା ଅନୁଭୂତି ସବୁକୁ ଚିତ୍ରେଇଦିଏ ନିଜ ଅପୂର୍ବଶୈଳୀରେ, ଭବାନୀପାଟଣାର ଏଇ ନାମକୁ ମାତ୍ର ଚରିତ୍ରଟି କେବଳ ଏକ ଉଦାହରଣ ମାତ୍ର ।



**ଜୀ**ବନନଈର ପ୍ରବାହରେ ଧିରେ ଧିରେ କିଶୋର ଚିନ୍ତନର ଅମାର୍ଜିତ ଢେଉସବୁ ଘଟଣାବହୁଳ ପଥର ଶିଖରମାନ ଛୁଇଁ ଛୁଇଁ ସମୟ ସହ ତାଳଦେଇ କୁଆଡ଼େ କୁଆଡ଼େ ହଜିବାରେ ଲାଗିଲା । ମୁଁ ଓ ମୋ ପରିବାର ବର୍ଗର ଭବାନୀପାଟଣାରେ ବିତାଇଥିବା ତିନିବର୍ଷର ସମୟ ଅବଧି ମଧରେ ଅଗଣିତ ବନ୍ଧୁ ଅର୍ଜିଥିଲୁଁ, ଆମ ଚଳନ୍ତି ଜୀବନରେ ସେମାନଙ୍କ ଭୂମିକା ସାମୟିକ ହେଲେ ବି ସ୍ମୃତିର ଫଳକରେ ଦୀର୍ଘକାଳ ପାଇଁ ସେଇ ଚରିତ୍ରମାନଙ୍କ ନାମ ଖୋଦିତ ହୋଇ ରହିଯାଇଛି । ଯେବେ ବି ଆମ ଭାଇଭଉଣୀମାନଙ୍କ ଚର୍ଚ୍ଚାରେ ଭବାନୀପାଟଣା ଦୌଡ଼ିଆସେ, ସେଇ ଚରିତ୍ରମାନେ ଆମ

ଅଜାଣତରେ ଚଳପ୍ରଚଳ କରିଥାନ୍ତି ଭାବଭୂମିରେ, ଆମ କର୍ଣ୍ଣକୁହଳରେ ଫୁସ୍‌ଫୁସ୍ କରି ତାଙ୍କ ଉପସ୍ଥିତି ଜାହିର୍ କରିଥାନ୍ତି । ଆମେ ବି ଭାବଚକ୍ଷୁରେ ତାଙ୍କ ଅଶରୀରୀ ଉପସ୍ଥାନକୁ ଉପଲବ୍ଧି କରୁଁ । ଅର୍ଦ୍ଧଶତାବ୍ଦୀର କାଳ ଅତିବାହିତ ହୋଇଗଲା ପରେ ମଧ୍ୟ ଆମ ସ୍ମୃତିର ଆଲ୍‌ବମ୍‌ରେ ସେମାନଙ୍କ ଆଲୋକଚିତ୍ର ଉଜ୍ଜୀବୀତ ହୋଇରହିଛି ।

ଅନୁଗୋଳର ବସନ୍ତ ପଟ୍ଟନାୟକଙ୍କ ପରିବାର ପରି ଭବାନୀପାଟଣାର ବନମାଳୀ ମୁଣ୍ଡଙ୍କ ପରିବାରର ପ୍ରତ୍ୟେକ ସଦସ୍ୟ ଆମସହିତ ଅନ୍ତରଙ୍ଗ ସମ୍ପର୍କରେ ଯୋଡ଼ି ହୋଇଯାଇଥିଲେ । ବନମାଳୀ ମୁଣ୍ଡ, ଭବାନୀପାଟଣା ସହରର ଜନୈକ ପ୍ରତିଷ୍ଠିତ ଓକିଲ, ଭଦ୍ର ଓ ମଧୁର ବ୍ୟବହାର ପାଇଁ ସର୍ବତ୍ର ପରିଚିତ ଥିଲେ । ବାପାଙ୍କ ଘନିଷ୍ଠ ବନ୍ଧୁ ଥିଲେ, ତାଙ୍କ ଘରକୁ ପ୍ରାୟ ଆମର ଯିବାଆସିବା ଚାଲିଥାଏ । ତିନିପୁଅ, ବଡ଼ପୁଅଙ୍କ ଏକ ଫଟୋଷ୍ଟୁଡିଓ ଥିଲା ଗାନ୍ଧିଛକରୁ ମାଣିକେଶ୍ୱରୀ ମନ୍ଦିର ଯିବା ରାସ୍ତାରେ । ମଝିଆ ପୁଅ ପଦ୍ମନାଭ ମୁଣ୍ଡ ମୋ ବଡ଼ଭାଇଙ୍କ ଅନ୍ତରଙ୍ଗ ବନ୍ଧୁ ଓ ସହପାଠୀ ମଧ୍ୟ ଥିଲେ । ସେ ବାପାଙ୍କ ନିକଟକୁ ଅଧ୍ୟାପନା ଉଦ୍ଦେଶ୍ୟରେ ପ୍ରାୟ ଆସୁଥିଲେ । ପରେ ବିଚାର ବିଭାଗୀୟ ନିଯୁକ୍ତି ପ୍ରାପ୍ତ ହୋଇଥିଲେ । ବାପାଙ୍କ ଶ୍ରାଦ୍ଧ ବେଳକୁ ସେ ଧନୁପାଲି ଆସି ଯୋଗଦେଇଥିଲେ । ସବା ସାନପୁଅ ପ୍ରଶାନ୍ତ ଥିଲେ ମୋର ସହପାଠୀ ଓ ସାଙ୍ଗ । ପାଠ ପରେ ସେ ମଧ୍ୟ ଏକ ଫଟୋଷ୍ଟୁଡିଓ କରିଥିଲେ । କିଛିବର୍ଷ ତଳେ ମୋର ଭବାନୀପାଟଣା ଗସ୍ତବେଳେ ସେ ମୋତେ ତାଙ୍କ ଘରକୁ ମଧ୍ୟାହ୍ନ ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ବହୁବର୍ଷ ତଳ କଥାସବୁ ଚର୍ଚ୍ଚାକୁ ଦଲକାଏ ପବନ ଭଳି ଆସିଗଲା । ତାଙ୍କ ସ୍ତ୍ରୀ କେତେ ସରାଗରେ ସ୍ୱାଦିଷ୍ଟ ଖାଦ୍ୟ ସବୁ ତିଆରି କରିଥିଲେ ମୋ ପାଇଁ । ଘଟଣା ଚକ୍ରରେ ଦୁଇଭାଇଯାକ ଅକାଳରେ ଆଖି ମୁଜି ଦେଲେ କାହାକୁ କିଛି ନ ଜଣାଇ । ନାଟକ ଉଦ୍ଦେଶ୍ୟରେ ଭବାନୀପାଟଣା ଯିବା ଅବସରରେ ପ୍ରଶାନ୍ତଙ୍କ ଷ୍ଟୁଡିଓକୁ ଯେତେବେଳେ ଗଲି, ଦେଖିଲି ତାଙ୍କ ପୁଅ ସେ ଷ୍ଟୁଡିଓକୁ ଚଳଉଛନ୍ତି । ପରିଚୟ ସହ ସାନ୍ତ୍ୱନା ବି ଦେଲାବେଳେ ମୋ ଆଖି ଛଳଛଳ ହୋଇଯାଉଥାଏ । ଉଭୟ ପଦ୍ମନାଭ ମୁଣ୍ଡ ଓ ପ୍ରଶାନ୍ତ ମୁଣ୍ଡଙ୍କ ତିରୋଧାନ ଆମ ପରିବାର ପାଇଁ ଦୁଃଖଦ ଘଟଣାଥିଲା ।

ବନମାଳୀ ମୁଣ୍ଡଙ୍କ ସ୍ତ୍ରୀ ଜଣେ ଖାସ୍ କଳାହାଣ୍ଡିଆ ମହିଳା ଥିଲେ । ତାଙ୍କ ବେଶଭୂଷା, ପରିଧେୟ, ଚାଲିଚଳଣ ତଥା କଥାବାର୍ତ୍ତାର ଛଟାରେ ତାହା ସ୍ପଷ୍ଟ ହେଉଥିଲା । ପୁରାତନ ମହିଳାଙ୍କ ପରି ଖଡ୍ଡୁ, ପଇଁରୀ, କଟ୍ରିଆ, ବନ୍ଦରିଆ, ଗୁନା, ଗୁନ୍‌ଚି ଆଦି ଅଳଙ୍କାରରେ ଆଭୂଷିତା ପ୍ରଶାନ୍ତଙ୍କ ମାଁ, ମୁଁ ତାଙ୍କ ଘରକୁ ପଶିବା ମାତ୍ରେ ପ୍ରଶାନ୍ତକୁ ପାଟିକରି ଡାକୁଥିଲେ, ଏ ପର୍‌ଶାନ୍ତ, ବତକ୍ ତେନା ଆନ୍ନୁ, ତର୍ ସାଙ୍ଗ

ଆଏଲାନ ! ! ଢଲିଆ ଖୁସା, ଖୁସାର୍ ଉପ୍ରେ ଖିର୍‌ପିନି, ମୁଁ ତାଙ୍କୁ ଦେଖିଲା ମାତ୍ରେ ମୋ ବଡ଼ଖା ମାଁ, ମାନେ ମାଁଙ୍କ ମାଁଙ୍କୁ ମନେ ପଡ଼ିଯାଉଥିଲା । ସେ ବି ଠିକ୍ ପ୍ରଶାନ୍ତଙ୍କ ମାଁ ପରି ଖାଣ୍ଟି ସମ୍ବଲପୁରିଆ ମହିଳା, ରୂପା ଓ ସୁନା କେଉଁ ଅଳଙ୍କାର ସେ ପିନ୍ଧୁ ନଥିଲେ ! ! ଖଣ୍ଡୁଆଳ ଗାଁର ଝିଅ, ସୁଦୂର ଛତିଶଗଡ଼ର ନଦୀଗାଁରୁ ବରଯାତ୍ରୀ ସହ ଆସି ବଡ଼ଖାମାଁଙ୍କୁ ବାହା ହୋଇଥିଲେ ମୋର ମାଁଙ୍କ ବାପା । ନାଁ ଥିଲା ମହରଗୀ, ଖଣ୍ଡୁଆଳ ଗ୍ରାମର ପ୍ରତିଷ୍ଠିତ ପତିବଂଶର ଝିଅ । ଆମେ ଅନୁଗୋଳରେ ଥିବାବେଳେ ଅବୟସରେ ତାଙ୍କ ଦେହାନ୍ତ ଘଟିଥିଲା । ପ୍ରଶାନ୍ତଙ୍କ ଘରକୁ ମୁଁ ମୋ ମାଁଙ୍କ ସହ ବୁଲିବା ଉଦ୍ଦେଶ୍ୟରେ ପ୍ରାୟ ଯାଉଥିଲୁ । ଏଭଳି ଯିବାଆସିବା ଭିତରେ ଦୁହିଙ୍କ ମଧରେ ଘନିଷ୍ଠସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ଖାଣ୍ଟି କଳାହାଣ୍ଡିଆ ଭାଷାର ଶବ୍ଦମାନ ତାଙ୍କ ମଧୁର କଣ୍ଠରେ ଉଚ୍ଚାରିତ ହେବାବେଳେ ମଧୁରତମ ହୋଇପଡୁଥିଲା ଧ୍ୱନିତରଙ୍ଗ । ସ୍ନେହୀ, ମାତୃଭାବବତ୍ସଳ ଥିଲା ତାଙ୍କ ପ୍ରକୃତି ଓ ପ୍ରବୃତ୍ତି । ଆଜି ଏଇ ଚରିତ୍ରମାନେ କେହି ଆଉ ଇହଧାମରେ ନାହାନ୍ତି, ଆମେ କିନ୍ତୁ ସାଇତି ରଖିଛୁ ଆମ ସ୍ମୃତି ପେଟିକାରେ ।

ବିରୂପାକ୍ଷ ବୈଠାରୁଙ୍କ ସହ ମୋର ବନ୍ଧୁତ୍ୱ ଆଜି ବି ଅତୁଟ ରହିଛି । ସାହିତ୍ୟ ଓ ସୃଜନଶୀଳତାର ଡୋରିରେ ଆମ ସମ୍ପର୍କ ଅନୁବନ୍ଧିତ ହୋଇଥିଲା । ଅନେକ ବର୍ଷ ପରେ ତାଙ୍କ ସହ ଦେଖା ହେଲା ପରେ ତାଙ୍କଠାରୁ ଜାଣିଲି, ସେ ରାଜ୍ୟ ସରକାରଙ୍କ ବିଦ୍ୟୁତ୍ ବିଭାଗରେ ଚାକିରୀ କରି ନିକଟରେ ଅବସର ଗ୍ରହଣ କରିଛନ୍ତି । ଜୀବନ ଜଞ୍ଜାଳର କଷଣ ଭିତରେ ତାଙ୍କ କବିପ୍ରତିଭାର ସଠିକ୍ ବିକାଶ ହୋଇପାରି ନଥିବା ଜାଣି ମୁଁ ଦୁଃଖିତ ହୋଇଥିଲି । ଗତବର୍ଷ ଭବାନୀପାଟଣାରେ ଜୁଗାର୍ ସମ୍ମାନ ଗ୍ରହଣ ଅବସରରେ ସେ ଆସିଥିଲେ, ତାଙ୍କ ଉପସ୍ଥିତି ମୋର ଉଲ୍ଲାସକୁ ଦ୍ୱିଗୁଣିତ କରିଥିଲା । ଆମେ ଦୁହେଁ ଏକତ୍ର କେତେଗୁଡ଼ିଏ ବକ୍ତୃତା ପ୍ରତିଯୋଗିତା ଓ କବିତା ପାଠୋତ୍ସବରେ ଯୋଗ ଦେଉଥିଲୁଁ ।

ଆଉ ଜଣେ ବନ୍ଧୁ ଓମ୍ ପ୍ରକାଶ ଜୈନ୍‌ଙ୍କ ସହ ମୋର ବନ୍ଧୁତା ନିବିଡ଼ ଥିଲା । ଏବେ ସେ ଦୈନିକ ବଜାର ପାଖରେ ଏକ ସୁନା ଅଳଙ୍କାର ଦୋକାନ କରିଛନ୍ତି । ମୁଁ ଯେବେ ବି ଭବାନୀପାଟଣା ଯାଏ, ତାଙ୍କୁ ନିଶ୍ଚୟ ଦେଖାକରେ ।

ରୁଦ୍ର ପ୍ରସାଦ ସାହୁ, ସହରର ଜଣେ ପୋଖତ ସଂଗୀତକାର । ହିନ୍ଦୁସ୍ତାନୀ ଶାସ୍ତ୍ରୀୟ ସଂଗୀତ ଉପରେ ତାଙ୍କର ଗଭୀର ଜ୍ଞାନ ଥିଲା । ମହାବୀର ସାଂସ୍କୃତିକ ଅନୁଷ୍ଠାନର ଗର୍ଭସଂଗୀତକୁ ସେ ସ୍ୱର ଦେଇଥିଲେ । ମଞ୍ଚରେ ତାଙ୍କ ସଂଗୀତ ପରିଚାଳନା ଦେଖିଛି, ଅନୁପ୍ରାଣିତ ହୋଇଛି ।

ଜୟନ୍ତ ବେହେରା, ଆମ ପରିବାରର ଜଣେ ସଦସ୍ୟ ଭାବରେ ଏଯାଏଁ ଅଛନ୍ତି । ତାଙ୍କ ସାଙ୍ଗଠାନିକ ଦକ୍ଷତାରେ ମୁଁ ପ୍ରଭାବିତ ହୋଇଛି । ଭବାନୀପାଟଣାରେ ବିଭିନ୍ନ ବର୍ଷରେ ଆୟୋଜିତ ଓଡ଼ିଆ ଯୁବ ଲେଖକ ସମ୍ମେଳନ, ନିଖିଳ ଓଡ଼ିଶା ଲୋକନୃତ୍ୟ ଓ ଆଦିବାସୀ ନୃତ୍ୟ ସମ୍ମେଳନ, କେନ୍ଦ୍ର ସାହିତ୍ୟ ଏକାଡେମୀ ପରିଚାଳିତ ଆଦିବାସୀ ଭାଷା ଓ ସାହିତ୍ୟ ସେମିନାର, ମହାବୀର ସାଂସ୍କୃତିକ ଅନୁଷ୍ଠାନର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଆଦିର ସଫଳତା ଜୟନ୍ତ ଦାଦାଙ୍କ ଦୃଢ଼ ସାଙ୍ଗଠନିକ ନେତୃତ୍ୱର ପ୍ରମାଣ ପ୍ରଦାନ କରେ । ତାଙ୍କ ପ୍ରତ୍ୟେକ କାର୍ଯ୍ୟକ୍ରମରେ ମୁଁ ତାଙ୍କ ଦ୍ୱାରା ନିମନ୍ତ୍ରିତ ହୋଇଛି ଓ ନିଶ୍ଚୟ ଯୋଗ ଦେଇଛି । ସତ୍ୟନାରାୟଣ ସିଂ, ସୁଶାନ୍ତ ସିଂ, ବିରଞ୍ଚି ପଣ୍ଡା, ପରମେଶ୍ୱର ମୁଣ୍ଡ, ବିରଞ୍ଚି ମୁଣ୍ଡ, ପ୍ରଦୀପ ଡି. ମାଝିଙ୍କ ସହ ଆହୁରି ଅନେକ ବନ୍ଧୁବର୍ଗ ମୋ ଉପସ୍ଥିତିରେ ଖୁସି ଜାହିର୍ କରିଥାନ୍ତି ।

ଯେଉଁଠି ମୁଁ ନାଟକର ପ୍ରଥମ ସ୍ୱାଦ ଚାଖିଛି, ଦୀର୍ଘବର୍ଷ ପରେ ତିନୋଟି ନାଟକ ମଞ୍ଚସ୍ଥ କରି ଆନନ୍ଦିତ ହୋଇଛି । ଯେଉଁ ମଞ୍ଚରେ ବକ୍ତୃତା ପ୍ରଦାନ କରି, ଜାତୀୟ ସଂଗୀତ ଗାନ କରି ଜୀବନର ପ୍ରଥମ ପୁରସ୍କାର ପାଇଥିଲି, ସେହି ଅନୁଷ୍ଠାନର ସୁବର୍ଣ୍ଣ ଜୟନ୍ତୀ ବେଳେ ମୁଖ୍ୟବକ୍ତା ଭାବରେ ଯୋଗ ଦେବାର ସୌଭାଗ୍ୟ ଅର୍ଜନ କରିଛି ।

ମୋ ମଝିନାନୀ କଳାହାଣ୍ଡି କଲେଜର ଛାତ୍ରୀ ଥିଲେ, ବିଷ୍ଣୁପ୍ରିୟା ନାଁରେ ତାଙ୍କ ଜଣେ ସାଙ୍ଗ ଗୀତ ଖୁବ୍ ଭଲ ଗାଉଥିଲେ । ପି. ସୁଶୀଲା ନାମରେ ତାଙ୍କର ଆଉ ଜଣେ ସହପାଠିନୀ ସାଙ୍ଗ ଥିଲେ, ସେ ପ୍ରାୟ ଆମ ଘରକୁ ଯା'ଆସ କରୁଥିଲେ । ବେଳେବେଳେ ତାଙ୍କ ଘରୁ ହାତ ତିଆରି ମହି, ଚଲା, ଇଡଲି, ଦୋସା ଆଦି ଆଣି ଆମକୁ ଦେଉଥିଲେ । ଆମେ ଥିବାବେଳେ ଭବାନୀପାଟଣାରେ ତେଲୁଗୁ ଭାଷାଭାଷୀ ଲୋକଙ୍କ ପ୍ରଚୁର ପ୍ରଭାବ ଥିଲା । ତେଣୁ ଦୈନନ୍ଦିନ ଖାଦ୍ୟପେୟରେ ମଧ୍ୟ ଦକ୍ଷିଣ ଭାରତୀୟ ଛାପ ନିଶ୍ଚୟ ପଡୁଥିଲା । ଆମେ ବି ମହି, ଚଲା, ଇଡଲି, ବରା ସହ ଅଭ୍ୟସ୍ତ ହୋଇ ପଡିଥିଲୁ । ବାପାଙ୍କ ବଦଳି ହେବା ପରେ ନାନୀଙ୍କ ସାଙ୍ଗ ପି. ସୁଶୀଲା ତାଙ୍କ ଏକ କାଠ ଆଲମାରୀ ଉପହାର ସ୍ୱରୂପ ଦେଇଥିଲେ, ଯାହା ଏ ଯାଏଁ ଆମ ଘରର ଶୋଭାବର୍ଦ୍ଧନ କରୁଛି ।

ଆମ କ୍ୱାଟର୍ ସାମନାର ବିସ୍ତିର୍ଣ୍ଣ ପଡ଼ିଆରେ ପନିପରିବା ଚାଷ କରିବା ଆମର ଅଭ୍ୟାସ ପାଲଟିଯାଇଥିଲା । କୋବି, ବାଇଗଣ, ଟାମାଟୋ, ସାଗ ଆଦି ନିଜ ହାତରେ ଖଟି ଉତ୍ପାଦନକରିବା, ଭବାନୀପାଟଣାର ଅବଦାନ କହିଲେ ଭୁଲ୍ ହେବ ନାହିଁ । ବଲ ନାମରେ ଥିବା ପିଅନ୍‌ଠାରୁ ଟେଣ୍ଡାରେ କେମିତି କୂଅରୁ ପାଣି ଟଣାହୁଏ, କାଠଡଙ୍ଗାରେ ଢାଳି ବଗିଚାରେ ପାଣି ବ୍ୟବସ୍ଥିତ କରାଯାଏ, ମାଟିରେ ଛୋଟଛୋଟ ନାଳକରି

ପ୍ରତ୍ୟେକ ଗଛକୁ କେମିତି ପାଣି ଦିଆଯାଏ, ସବୁ ତାଲିମ୍ ନେଇଯାଇଥିଲୁ । ସେହି ଅଭ୍ୟାସ ପାଇଁ ଏବେ ବି ଆମେ ତିନିଭାଇ ଧନୁପାଲିରେ ଛୋଟଛୋଟ ବଗିଚା କରି ଫୁଲଫଳ ଚାଷ କରିବାରେ ସମର୍ଥ ହେଉଛୁ ।

ଭବାନୀପାଟଣାର ମାତ୍ର ତିନି ବର୍ଷର ରହଣି ଆଗାମୀ ତିରିଶ ବର୍ଷ ଜୀବନ ଯୁଦ୍ଧର କୁରୁକ୍ଷେତ୍ରକୁ ଓହ୍ଲାଇବାରେ ଯଥେଷ୍ଟ ଖୋରାକ ଯୋଗେଇଛି, ଏଥିରେ ଦ୍ୱିରୁକ୍ତି ନାହିଁ । ମୋର ଅଷ୍ଟମ ଶ୍ରେଣୀ ବାର୍ଷିକ ପରୀକ୍ଷା ପରେ, ଦାଦାଙ୍କ ମେଟ୍ରିକ୍ୟୁଲେସନ୍ ପରେ ବାପାଙ୍କ ବଦଳି ଆଦେଶ ଆସିଲା ପ୍ରମୋଶନ୍‌ରେ । ବଦଳିହେଲା ସମ୍ବଲପୁର, ସୁନ୍ଦରଗଡ଼ ସର୍କଲ୍ ଶିକ୍ଷାନବୀଶ ଭାବରେ, ଯାହାର ଅଫିସ ଥିଲା ସୁନ୍ଦରଗଡ଼ରେ । କହିବା ବାହୁଲ୍ୟ, ସମ୍ବଲପୁର ଜିଲ୍ଲାର ସ୍କୁଲର ପ୍ରଧାନଶିକ୍ଷକ ବିଶିଷ୍ଟ ଶିକ୍ଷାବିତ ମନମୋହନ ପଟ୍ଟନାୟକଙ୍କୁ ବଦଳି ହେଲା ବଲାଙ୍ଗିର, କଳାହାଣ୍ଡି ସର୍କଲକୁ । ମାନସିକ ସ୍ତରରେ ଆମେ ପ୍ରସ୍ତୁତ ହୋଇଗଲୁ ଭବାନୀପାଟଣା ଛାଡ଼ିବାପାଇଁ । ହେଲେ କଳାହାଣ୍ଡି ମାଟି ଛାଡ଼ିବା ଏତେ ସହଜ ନଥିଲା । ଯେଉଁ ମାଟି ମୋତେ କାମୁଡ଼ି ଧରିଥିଲା, ସେଠୁ ମାୟାମମତା ଛଡ଼ାଇ ଆସିବା ପାଇଁ ମୋର ତିଳେ ବି ଇଚ୍ଛା ନଥିଲା ।

ତେବେ ସମୟର ଆହ୍ୱାନ ଥିଲା ଭିନ୍ନ, କେହି ଜଣେ ହାତଠାରି ଡାକୁଥିଲା, ଆ, ଚାଲିଆ, ତୋ ମାଟି ମାଁ ତୋତେ ତା' କୋଳକୁ ଡାକୁଛି, ଆ ! ! !



**ଦ**କ୍ଷିଣରୁ ପଶ୍ଚିମକୁ ଯାତ୍ରା, ବାପାଙ୍କ ବଦଳିପରେ ଭବାନୀପାଟଣାରୁ ପଶ୍ଚିମସୂର୍ଯ୍ୟ ସମ୍ବଲପୁରକୁ ଯାତ୍ରା, ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ସ୍ପର୍ଶରେ ପୁଲକିତ ମନନେଇ ଘର ଆସବାବପତ୍ର ସହ ପାଞ୍ଚ ଭାଇଭଉଣୀଙ୍କ ମେଳରେ ବାପା ମାଁ ମାଲବୁହା ଟ୍ରକ୍ କେବିନ୍‌ର ଅନ୍ଧାରୁଆ ଗର୍ଭଗୃହରେ କେଞ୍ଚାକେଞ୍ଚି ଲଦାଲଦି ହୋଇ ଚାଲିଲା ଘୋଡ଼ାନାଳ ପାରି ହୋଇ, ତିନି କୋଣିଆ ଛକର କୁଟୀରରେ ବନ୍ଧାପଡ଼ିଥିବା ମାନସିକ ସ୍ତରର ଭିନ୍ନକ୍ଷମ ଦାଢ଼ିରଖା ଯୁବକର ଗୋଲ୍ ଗୋଲ୍ ଭୟାନକ ଆଖି ଡୋଳାର ଚାହାଣୀକୁ ଆଡ଼େଇ, ମାଁ ମାଣିକେଶ୍ୱରୀଙ୍କ ପାଦତଳେ ମୁଣ୍ଡିଆ ମାରି, ମୋର ପ୍ରିୟ ଷ୍ଟେଚ୍ୟୁ ଛକର ମହାରାଜାଙ୍କ ମୂର୍ତ୍ତିକୁ ସଲାମ୍ କରି, ନାଟ୍ୟଭୂମି ପବିତ୍ର ଟାଉନ୍‌ହଲ୍ ପଢ଼ିଆର ଚରଣ ସ୍ପର୍ଶକରି କଲେଜ୍ ରାସ୍ତାଆଡ଼କୁ ମାଡ଼ି ଚାଲିଲା ନୂତନ ଏକ ସମ୍ଭାବନା ନେଇ । ମାଲଗାଡ଼ିର ପଛପଟ ଡାଲାରେ ରଖାଯାଇଛି ଯାଯାବରୀୟ ଗୃହ ସମ୍ପତ୍ତି, ଖଟ ପଲଙ୍କର ଛିଣ୍ଡାଛିଣ୍ଡି ଅବୟବ, ପୁଆହିଟା ଗୁନ୍ଥୁଆଖଟର ସଂଖ୍ୟାଧିକ ସବାସନାବସ୍ଥା, କାଠବାକ୍ସ, ଟିଣ ବାକ୍ସ, ଚମଡ଼ା

ସୁଟ୍‌କେଶ, ଶେଜତକିଆ, ନୂଆପୁରୁଣା କନ୍ଥାଗୁଡ଼ିକର ମୁଟୁରା, ପି. ସୁଶୀଳା ଉପହାର ଦେଇଥିବା କାଠ ଆଲମିରା, ସୁନ୍ଦରଗଡ଼ରେ କିଣାଯାଇଥିବା ପୁଅଝିଅ, ବାପାମାଁ ସାତପ୍ରାଣୀଙ୍କୁ ସୁଖନିଦ୍ରା ଯୋଗାଉଥିବା ଏକମାତ୍ର ଉଷା ଟେବୁଲ୍ ଫେନ୍, ମୋର ପ୍ରିୟ ଫିଲିପ୍ସ ରେଡିଓ ପରି ବ୍ୟବହାର୍ଯ୍ୟସାମଗ୍ରୀ ଏବଂ ଆମ ପରିବାରର ସବୁଠାରୁ ବଡ଼ ମୂଲ୍ୟବାନ୍ ଗାଈ, ନାଁ ତାର ଚିଲୁ, ଯାହାକୁ କୈଶୋରାବସ୍ଥାରେ ସୁନ୍ଦରଗଡ଼ରୁ ଅଣାଯାଇଥିଲା, ଏବେ ଯୌବନ ପ୍ରାପ୍ତ ହୋଇ ଆମ ସହ ଚାଲିଛି ଆମ ଗନ୍ତବ୍ୟସ୍ଥଳକୁ । ଏଥି ସହ ଆମେ ସମସ୍ତେ ଭବାନୀପାଟଣାର ସ୍ମୃତିକୁ ମଧ୍ୟ ଅତି ସରାଗରେ ଆମ ସାଇତା କରାଟରେ ସଞ୍ଚି ଯାଇଥିଲୁ ।

ଛାଇଛାଇ ନିଦରେ ତେଲ ନଦୀର କଳକଳ ଧ୍ୱନୀ, ଜୀରା ନଦିର ନିଃଶବ୍ଦ ଗତି ଓ ମହାନଦୀର ପ୍ରବାହକୁ ରୁନ୍ଧି ରଖିଥିବା, ବିଶ୍ୱର ବୃହତ୍ତମ ମାଟିବନ୍ଧ ହୀରାକୁଦର ଦୁଇ ସୀମାକୁ ଜଗି ରହିଥିବା ଜବାହାର ଓ ଗାନ୍ଧି ମୀନାରର ସୁନ୍ଦରିମା କେତେବେଳେ ଅତିକ୍ରାନ୍ତ ହୋଇଗଲା ଓ ଅଇଁଠାପାଲି ଦେଇ ଧନୁପାଲି ଛକର ଡାହାଣ ଦିଗକୁ ଲମ୍ବିଯାଇଥିବା ରାସ୍ତା ଛୁଇଁ ଆମ ଘର, ଶାନ୍ତି ଭବନ ସାମ୍ନାକୁ ପହଞ୍ଚିଗଲା, ଜଣାପଡିଲାନି । ଏଇ ଜବାଘର ଜଡ଼ିତ, ଖପରାଛୁଆଁ ଘରକୁ ମୁଁ ଯା ପୂର୍ବରୁ କେବେ ଦେଖି ନଥିଲି, ଏଠାରେ ଆମ ଘରଟିଏ ମୁଣ୍ଡ ଗୁଞ୍ଜିବାକୁ ଅଛି, ଏ ତଥ୍ୟ ମଧ୍ୟ ଜାଣି ନଥିଲି । ଏ ଘର, ଏ ଡିହ, କେବେ ସବୁ କ୍ରୟ କରାଗଲା, ସେହି ଜ୍ଞାନ ମଧ୍ୟ ମୋର ନଥିଲା । ତଥାପି, ମାଁ ଚିହ୍ନାଇଦେଲେ, ଏ ଉଠ, ଆମ ଘର ଆସିଗଲା । ସମ୍ବଲପୁର କହିଲେ ମୁଁ ଜାଣିଥିଲି ମାରଓ୍ୱାଡି ପଡାରେ ଥିବା ମାମୁଁ ଘରର ତିନିତାଲା କୋଠା, ଯେଉଁଠି ଛାତ ଉପରକୁ ଚଢ଼ିଗଲେ ଦିଶେ ମହାନଦୀର ସଦୃଶ୍ୟ ପ୍ରବାହ, ଯେଉଁ ମାମୁଁ ଘରେ ଶୋଭାପାଉଥିଲେ ଆମ ଇଷ୍ଟଦେବ ଶ୍ରୀକୃଷ୍ଣଙ୍କ କାହ୍ନାରୂପର ପ୍ରତିମୂର୍ତ୍ତି, ଯେଉଁ ପଡ଼ାରେ ମାମୁଁ ପୁରୋହିତୀ କରୁଥିଲେ ସତ୍ୟବାଦୀ ଗୁଡ଼ିରେ, ଯେଉଁ ପଡ଼ାରେ ଅନୁଗୁଳିଆ ବୟସ୍କା ମହିଳା ଜଣେ ମୁଣ୍ଡ ଉପରେ ଭୁଗାଟିଏ ବୋହି ବିକୁଥିଲା ଗୁଡବରା, ତାର ବିଜ୍ଞାପନର ସ୍ଲୋଗାନ୍ ଏବେ ବି ମନେ ଅଛି, ଏଏଏଏଏ ଗୁଡବରା କିଣ, ଅଣାକୁ ଆସ୍‌ଟା, ଅଣାକୁ ଆସ୍‌ଟା । । ଯେଉଁ ପଡ଼ାର ବଡ଼ ସଡ଼କକୁ ଆସିଲେ ପ୍ରଥମେ ପଡ଼େ ସାଧନା ବସ୍ତ୍ରାଳୟ, ଯେଉଁଠି ଗୋରା ତକତକ ଉଁଚାପୁରା ମାଲିକ ବସୁଥିଲେ ରାଜକୀୟ ଶୈଳୀରେ । ହେଲେ ଧନୁପାଲି ବୋଲି ଥାନଟିଏ ଅଛି ସହରର ଉପାନ୍ତରେ, ସେଠି ପୁଣି ଆମ ନିଜର ଗୋଟେ ରହିବାଭଳି ଘର ଅଛି, ଏ ଧାରଣା କେବେ ନଥିଲା ।

ସ୍ୱର୍ଣ୍ଣନାନୀ ଆସିଥିଲେ ବି.ଏ. ପ୍ରଥମ ବର୍ଷ ପରୀକ୍ଷା ଦେଇ କଳାହାଣ୍ଡି

କଲେଜରେ, ଦାଦା ଆସିଥିଲେ ମେଟ୍ରିକ୍ୟୁଲେସନ୍‌ରେ ପ୍ରଥମ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇ, ମୁଁ ଆସିଥାଏ ଅଷ୍ଟମ ଶ୍ରେଣୀ ପାଶ୍ କରି, ଭଉଣୀ ଜ୍ୟୋତ୍ସ୍ନା ଆସିଥିଲା ଚତୁର୍ଥ ଶ୍ରେଣୀ ପରୀକ୍ଷା ଦେଇ ଆଉ ବାବୁ ଆସିଥିଲା ଧନୁପାଲି ଉପ୍ରା ସ୍କୁଲରେ ପ୍ରଥମ ଶ୍ରେଣୀରେ ନାମ ଲେଖାଇ ଶିକ୍ଷା ଜୀବନ ଆରମ୍ଭିବା ପାଇଁ ।

ଆମ ଧନୁପାଲି ଘର, ପଛକୁ ପଛ ଲାଗିଥାଏ ଦୁଆର, ଗୁହାଳ, ଆଉ ବାଡ଼ି ପଟେ ଧାନ ଚାଷର କିଆରୀ । ଉପର କୋଠରୀ ଭଡ଼ାରେ ଚାଲିଥାଏ, ରହୁଥିଲେ ମ୍ୟୁନିସିପାଲିଟି ହାଇସ୍କୁଲର ଶିକ୍ଷକ ପ୍ରଧାନବାବୁ ଓ ତାଙ୍କ ବଡ଼ ପରିବାର । ଏଇ ପ୍ରଧାନବାବୁ ହେଉଛନ୍ତି ସମ୍ବଲପୁରୀ ଲେଖକ ଭବାନୀ ପ୍ରଧାନଙ୍କ ଶ୍ୱଶୁର । ତଳେ ଥିଲା ଲମ୍ବା କୋଠରୀରେ ମାମୁଁ ଏକ ତେଜରାତି ଦୋକାନ ଦେଇ ଗୁଜୁରାଣ ମେଣ୍ଟାଉଥିଲେ । ଆମେ ସାତ ପ୍ରାଣୀଙ୍କୁ ମାତ୍ର ଦୁଇଟି କୋଠରୀ, ବିଦ୍ୟୁତ୍ ସଂଯୋଗ ହୋଇ ନଥିଲା, ଲାଣ୍ଟିନ୍ ଆଲୁଅର ମିଞ୍ଜିମିଞ୍ଜି ଆଲୁଅରେ ସମ୍ବଲପୁରରେ ଜୀବନ ଆରମ୍ଭ ହେଲା ।

ବାପା ଆମକୁ ଧନୁପାଲିଘରେ ଛାଡ଼ି ସୁନ୍ଦରଗଡ଼ ବାହାରିଗଲେ ସର୍କଲ୍ ଇନ୍ସପେକ୍ଟର ଭାବରେ ଯୋଗ ଦେବା ପାଇଁ । ମାଁଙ୍କ ନେତୃତ୍ୱରେ ଗୃହମାର୍ଜନା ହେଲା, ଗୁହାଳ ଭାଙ୍ଗି ରହିବା ଘର ତିଆରି ହେଲା, ତା ପଛକୁ ଗୁହାଳ ତିଆରି ହେଲା, ଚିଲୁ ସହ ଆଉ ତିନିଟି ଗାଈ ସେଠି ରହିଲେ । ମାମୁଁ ଧିରେଧିରେ ଦୋକାନ ବନ୍ଦ କରିଦେଲେ ଓ ତାଙ୍କ ଘରେ ରହି ଅଜାଙ୍କ ଅନ୍ତେ ସତ୍ୟବାଦୀଗୁଡ଼ିର ପୂଜାକାର୍ଯ୍ୟ ସମ୍ଭାଳିଲେ । ଘର ସମ୍ପୂର୍ଣ୍ଣ ଭାବରେ ଆମ ଅକ୍ତିଆରକୁ ଆସିଲା, ଫର୍ଚ୍ଚା ଲାଗିଲା ଚଳନ୍ତି ଜୀବନ । ନାନୀ ଗଲା ମହିଳା ମହାବିଦ୍ୟାଳୟକୁ, ଦାଦା ଗଲେ ଗଙ୍ଗାଧର ମେହେର ମହାବିଦ୍ୟାଳୟକୁ ପିୟୁରେ ନାମ ଲେଖାଇବା ପାଇଁ, ମୁଁ ଗଲି ଜିଲ୍ଲାସ୍କୁଲକୁ ନବମ ଶ୍ରେଣୀରେ ପାଠ ପଢ଼ିବା ପାଇଁ, ଜ୍ୟୋତ୍ସ୍ନା ଓ ବାବୁ ଆମ ଘର ସାମ୍ନା ଉପ୍ରା ସ୍କୁଲକୁ ।

ମୋ ପାଇଁ ଧନୁପାଲି ଥିଲା ସମ୍ପୂର୍ଣ୍ଣ ଅପରିଚିତ, ଏକ ସହରୀକରଣରେ ସଜ୍ଜିତ ହେବାକୁ ଚାହୁଁ ଥିବା ପଲ୍ଲୀ ଭୂଇଁଟିଏ । ଛକଟି ଯଦିଓ ଓଡ଼ିଶାର ତିନି ପ୍ରମୁଖ ଜିଲ୍ଲାକୁ ଯୋଡୁଥିଲା, ତଥାପି ଆବଶ୍ୟକରୁ ଅଧିକ ସଙ୍କୁଚିତ ଜଣାପଡୁଥିଲା । ସାମ୍ନାସାମ୍ନି କୃଷ୍ଣଚନ୍ଦ୍ର ପଟ୍ଟନାୟକ ଏବଂ ମକରଧ୍ୱଜ ବେହେରାଙ୍କ ଲୋକପ୍ରିୟ ପାନଦୋକାନ । ଏବେ ଯେଉଁଠି ମାଁ ଷ୍ଟୁଡିଓ ଅଛି, ସେଠି ଥିଲା ବିରାଟ ଏକ ତେନ୍ତୁଳି ଗଛ, ଯା'ର ମୂଳେ ମୂଳେ ପୁଷ୍ପୁନି ସକାଳେ ଖାସି କଟା ହୋଇ ଭାଗଭାଗ ବିକ୍ରି ହୁଏ, କଟାଳୀ ଥିଲା ଦିଆଲୀ ନିଜେ । ତାକୁ ଲାଗି ଥିଲା ପୂର୍ଣ୍ଣ ବୁଢ଼ୀର ମୁଢ଼ିବାଦାମ୍ ପସରା । ତା ପାଖକୁ ଗଲେ ଆନନ୍ଦରେ ଜଣେ କମ୍ ଖର୍ଚ୍ଚରେ ମିଳେ ମୁଢ଼ି ଓ ରାଗଚଣାର ଜଳଖିଆ । ଏ ସମସ୍ତ ଚରିତ୍ର ଏବେ

ସ୍ୱର୍ଗବାସୀ । ଦୁର୍ଗା ମଣ୍ଡପକୁ ଲାଗି ଯେଉଁ ବିରାଟ ବରଗଛ ଅଛି, ସେତେବେଳେ ଖାଲି ଗଛଟି ଥିଲା, ତା ଛାଇରେ ଚାଲୁଥିଲା ଗାଁ ଲୋକଙ୍କ ତାସ୍ ଖେଳ, ସେଇ ଚୌତରାରେ ପ୍ରତ୍ୟେକ ବର୍ଷ ଖରାଦିନେ ପାଖପଡ଼ାର ନେତୃତ୍ୱରେ ଆୟୋଜିତ ହେଉଥିଲା ପାଞ୍ଚରାତି ଧରି ଚନ୍ଦନ ଯାତ୍ରା । ଏଥି ପାଇଁ ପାଞ୍ଚରାତି ଧରି ପଶ୍ଚିମ ଓଡ଼ିଶାର ବିଭିନ୍ନକୋଣରୁ ନିମନ୍ତ୍ରିତ ହୋଇ ଆସୁଥିଲେ ସଞ୍ଚାର ବାହକ, ଧନୁପାଲିର ନନ୍ଦଲାଲ, ବର୍ହାଗୁଡ଼ାର ବିପିନ, ଖୁଣ୍ଟିର ବୁଧ ଭାଟ୍, ଗହ୍ଲାରପଙ୍କର ଦୁଇ ମନିଆ, ଶର୍ଧାପାଲିର ଦୁଃଖନାଶନ ଆଦି ଆହୁରି ଅନେକ ସଂଚାରବାହକମାନଙ୍କ ସମ୍ମେଳନ ଘଟୁଥିଲା ଏଇ ସ୍ଥାନରେ । ଚୈତ୍ର ମାସରେ ବିଭିନ୍ନ ଗ୍ରାମରୁ ଆସୁଥିଲେ ଦଣ୍ଡଭୋଗତାମାନେ ଦଳବଳ, ବାଜାଗଜା ସହ, ମାନସିକ କରିଥିବା ଗ୍ରାମବାସୀଙ୍କ ଆତିଥ୍ୟ ଗ୍ରହଣକରି ସାରାରାତି ଦଣ୍ଡନୃତ୍ୟ ପରିବେଷଣ କରୁଥିଲେ ଏଇଠି, ପରେପରେ ପଞ୍ଚସ୍ତରୀ ଛସ୍ତରୀରୁ ଏହି ବରଗଛ ମୂଳେ ମୁକ୍ତ ମଣ୍ଡପ ତିଆରି ହୋଇ ଧନୁପାଲିର ଯୁବକମାନଙ୍କ ଉଦ୍ୟମରେ ଦୁର୍ଗାପୂଜା ଆୟୋଜିତ ହେଲା ଏବଂ ଶେଷରେ ଏହା ସମଗ୍ର ଓଡ଼ିଶାର ଏକ ମର୍ଯ୍ୟାଦାସମ୍ପନ୍ନ ଉତ୍ସବଭାବରେ ବିବେଚିତ ହେଲା ।

ନୂଆଁ ନୂଆଁ ବନ୍ଧୁମହଲରେ ମୁଁ ନିଜକୁ କେବେ ଖାପଛଡ଼ା ଅନୁଭବ କରୁ ନଥିଲି । ଧନୁପାଲିରୁ ଜିଲ୍ଲାସ୍କୁଲକୁ ଯାଉଥିବା ଛାତ୍ରବନ୍ଧୁମାନଙ୍କ ସହ ଧିରେ ଧିରେ ଖୋଲାଖୋଲି ଆଳାପ ହେଲା । ବିଶେଷ କରି ପାଖରେ ରହୁଥିବା ଅଶୋକ ବେହେରା, ସୁବୋଧ ବେହେରା, ପ୍ରଦୀପ ବେହେରା, ଛକରେ ରହୁଥିବା ଯୁଗଳ ମହାପାତ୍ର, ସୁବାଶୀଷ ମିତ୍ର, ବନ୍ଧ ପଡ଼ାରେ ରହୁଥିବା ପ୍ରମୋଦ ତ୍ରିପାଠୀ ଓ ଶାନ୍ତନୁ ହୋତା ଆଦି ସାଙ୍ଗମାନଙ୍କ ସହ ଘନିଷ୍ଠତା ବୃଦ୍ଧି ପାଇବା ପରେ ଦିନେ ସମସ୍ତଙ୍କୁ ଡାକି ଅଶୋକ ବେହେରାଙ୍କ ବାସଗୃହରେ ନାଟକ ପାଇଁ ଚର୍ଚ୍ଚା ହେଲା, ସେଇଠି ମୁଁ ଭବାନୀପାଟଣାରେ ଲେଖିଥିବା ଶୀର୍ଷକବିହୀନ ନାଟକଟିକୁ ପଢ଼ି ସମସ୍ତଙ୍କୁ ଶୁଣାଇଲି । ସମସ୍ତଙ୍କ ମନପସନ୍ଦ ହେଲାରୁ ମାତ୍ର କିଛି ଦିନ ଭିତରେ ଅଶୋକ ଦାଦାଙ୍କ ସେହି ଘରେ ନଡ଼ିଆପିଟା ହୋଇ ନାଟକ ରିହାର୍ସେଲ୍ ଆରମ୍ଭ ହେଲା । ବନ୍ଧୁ ପ୍ରମୋଦ ତ୍ରିପାଠୀଙ୍କ ପ୍ରସ୍ତାବରେ ନାଟକଟିର ନାଁ ଦିଆହେଲା :ବିଜୟଟୀକା ।

ପରେ ପରେ ମୁଁ ଅନୁଭବ କଲି, ସେ ନଡ଼ିଆ ପିଟାର ଶୁଭ ମୁହୂର୍ତ୍ତ ଖାଲି ବିଜୟଟୀକା ନାଟକ ମଞ୍ଚାୟନ ପାଇଁ ନଥିଲା, ଥିଲା ଧନୁପାଲିର ମଥାନରେ ନାଟକ ଇତିହାସର ଦୀର୍ଘ ଜୀବନୀ ରଚନା କରିବାର ଶାଶ୍ୱତ ସୃଜନଶୀଳତାର ବିଜୟଟୀକା ।।।



ଧନୁପାଲି, ଏକ ଗୌଡ଼ ଗାଁ ଭାବରେ ପରିଚିତ ଥିଲା, ଧେନୁପାଲିରୁ ଅପଭ୍ରଂଶ ହୋଇ ଆଜି ଧନୁପାଲି ନାମରେ ଖ୍ୟାତ ହୋଇଛି । ଷାଠିଏ ମସିହାରେ ଆମ ପରିବାର ଧନୁପାଲିର ଆମ ନିଜଘରକୁ ଆସିବା ସମୟରେ ଏହାର ଲୋକସଂଖ୍ୟା ନ୍ୟୁନ ଥିଲା, ଗାଁ ଭିତର ଓ ଛକକୁ ବାଦ୍ ଦେଲେ କାଁ ଭାଁ ଘର ତିଆରିକରି ବାହାରସ୍ଥାନରୁ ଲୋକେ ଆସି ବସବାସ କଲେ । ଛକରୁ ଆମ ଘର ଯାଏଁ କଦଲୀମୁଣ୍ଡା ଗୌନ୍ତିଆଙ୍କ ଘର, ତାକୁ ଲାଗି ଅନ୍ୟ ଏକ ଖପରଘର, ଯେଉଁଠି ପୋଷ୍ଟ ଅଫିସ୍ କାମ କରୁଥିଲା, ବେଶ୍, ଆମ ଘର ପାର୍ ହେଲେ ନବରଙ୍ଗଲାଲ୍ ଅଗ୍ରୱାଲଙ୍କ ଧାନକଳ । କହିବା ବାହୁଲ୍ୟ, ଏହି ମିଲ୍‌ର ବଡ଼କୂପର ପାଣି ଆମ ପଡ଼ାସାରା ଲୋକଙ୍କ ପାଇଁ ଏକମାତ୍ର ଭରସା ଥିଲା । ତାପରେ ଭବାନୀ ଫିଲ୍ଡ ପର୍ଯ୍ୟନ୍ତ ଜାଗାରେ ବୁଦାବୁଦା ଜଙ୍ଗଲ, ସାଗରିଆ ମାରୱାଡ଼ିଙ୍କ ବଗିଚା, ଆମ୍ବ, କଣ୍ଟେଇ କୁଇଲି, ଚାର ଆଦି ଗଛରେ ପରିପୂର୍ଣ୍ଣ । ଭବାନୀ ଫିଲ୍ଡ ଥିଲା ଆମ ଖେଳ ପଡ଼ିଆ । ଫୁଟବଲ୍ ଆମ ଧନୁପାଲି ସାଙ୍ଗମାନଙ୍କ ପ୍ରିୟ ଖେଳ ଥିଲା । ସ୍କୁଲରୁ ଆସିଲେ ଚାହା ଭୁଜା ମୁଠେ ଗେଫି ଦେଇ ସିଧା ଦୌଡ଼ି ଆସୁଥିଲୁ ଭବାନୀ ଫିଲ୍ଡକୁ । ଶିଶିର, ଜ୍ଞାନ, ପୁଟୁ, ବନମାଳୀ, ପ୍ରମୋଦ, ଦଶରଥ, ଯୁଗଳ, ସୁବାଶୀଷ, ଅଶୋକ ଦା, ଏମିତି ଆହୁରି ଅନେକ । ଖରା, ବର୍ଷା, କିଛି ମାନୁ ନଥିଲୁ । ବର୍ଷାରେ ଭିଜି ଫୁଟବଲ୍ ଖେଳିବାର ମଜା, ଯେ ଖେଳିଛି, ସେ ଜାଣିଛି । ମୁଁ ଗୋଲ୍‌କିପର୍ ସାଜୁଥିଲି, ଡିଆଁମାରି ବଲ୍ ଧରିବାକୁ ମୋତେ ଖୁବ୍ ଭଲ ଲାଗୁଥିଲା । ଖେଳିବା ବେଳେ ମୁଁ ମୋର ବାମହାତର କଥା ସମ୍ପୂର୍ଣ୍ଣ ପାଶୋରି ଦେଉଥିଲି । ପୁଟିବନ୍ଧ, ନକ୍ସାପାଲି, ଭତ୍ରା ଆଦି ଗାଁମାନଙ୍କ ସହ ମେଚ୍ ଖେଳିଯାଉଥିଲୁ । ଭବାନୀଫିଲ୍ଡ ଆମ କୈଶୋରରୁ ଯୌବନକୁ ଉତ୍ତୀର୍ଣ୍ଣ ହେବାର ଦୃଶ୍ୟସବୁକୁ ତାର ଜଡ଼କେମେରାରେ ଉତ୍ତୋଳିତ କରିରଖିଛି । ସ୍କୁଲସମୟର ଫୁଟବଲ୍ କଲେଜ୍ ବେଳର କ୍ରିକେଟ ଖେଳରେ ରୂପାନ୍ତରିତ ହୋଇପଡିଥିଲା ସମୟସହ ସମତାଳରେ ଗତିକରିବା ପାଇଁ । ଉଲ୍ଲେଖଯୋଗ୍ୟ ଯେ ଭତ୍ରାର ଭବାନୀଶଙ୍କର ମହାପାତ୍ରଙ୍କ ଜାଗା ହୋଇଥିବାରୁ ପଡ଼ିଆର ନାମ ଆପେଆପେ ଭବାନୀଫିଲ୍ଡ ହୋଇଗଲା ।

ପୁଣି ଫେରିଆସିବା ନାଟକକୁ, ବିଜୟଟୀକା, ଭାରତ ପାକିସ୍ତାନର ଯୁଦ୍ଧ ଉପରେ ଆଧାରିତ ଏକ ଦେଶଭକ୍ତିର ନାଟକ । ଅଶୋକ ବେହେରାଙ୍କ ଆଲିଶାନ୍ କୋଠାରେ ନଡ଼ିଆ ପିଟାଯାଇ ରିହାର୍ସାଲ୍ ସିନା ଆରମ୍ଭ ହୋଇଗଲା, ତେବେ ବିନା ନିର୍ଦ୍ଦେଶକରେ ନାଟକ ମଞ୍ଚସ୍ଥ ହେବ କେମିତି ? କାହାକୁ ଡକାଯିବ, ନିର୍ଦ୍ଦେଶନା କ୍ଷେତ୍ରରେ କାହାର ଅଭିଜ୍ଞତା ଅଛି ? ଜଣେ କେହି ପ୍ରସ୍ତାବ ଦେଲେ, ଗାଁ ମୁଣ୍ଡରେ ରହୁଥିବା ଦୁତିୟା ବଢ଼ାଇଙ୍କ ପୁଅ ରାଜେନ୍ଦ୍ର ସାନବଢ଼ଙ୍କ ନାଟକ ବାବଦରେ ଭଲ ଜ୍ଞାନ ଅଛି । କିଛିବର୍ଷ ତଳେ

ଧନୁପାଲିଛକ ଦଶରଥଙ୍କ ଘର ସାମନାରେ ଧର୍ମପଦ ନାମରେ ନାଟକଟିଏ ମଞ୍ଚସ୍ଥ ହୋଇଥିଲା, ସେଥିରେ ରାଜେନ୍ଦ୍ର ସାନବଡ଼ ଅଭିନୟ କରିଥିଲେ । ମୋର ମଧ୍ୟ ମନେ ଥିଲା, ଆମେ ସୁନ୍ଦରଗଡ଼ରେ ଥିବାବେଳେ କୌଣସି କାରଣରୁ ଥରେ ଗୋଟିଏ ରାତି ଧନୁପାଲିରେ କଟେଇଥିଲୁ । ଆଉ ସୌଭାଗ୍ୟବଶତଃ ସେହି ରାତିରେ ଧର୍ମପଦ ନାଟକଟି ଛକରେ ଅଭିନୀତ ହୋଇଥିଲା । କାର୍ଡବୋର୍ଡର କୋଣାର୍କ ଛବିଟିଏ ମଞ୍ଚରେ ସଜ୍ଜିତ ହୋଇଥିଲା । ସମସ୍ତଙ୍କ ସ୍ୱୀକୃତି ପରେ ପରଦିନ ସସମ୍ମାନେ ରାଜେନ୍ଦ୍ରବାବୁଙ୍କୁ ଡକାଗଲା । ତାଙ୍କ ତତ୍ତ୍ୱାବଧାନରେ କିଛି ଦିନ ନାଟ୍ୟାଭ୍ୟାସ ଚାଲିଲା । ଯୁଗଳ ନାୟକ ସାଜିଲେ, ମୁନୁ ଗୁରୁ ତାଙ୍କ ନାୟିକା ସାଜିଲେ । ସୁବୋଧ ବେହେରା ନାୟିକାଙ୍କ ବାପା, ଅଶୋକ ବେହେରା ଡାକ୍ତର, ଶାନ୍ତନୁ ହୋତା ତାଙ୍କ କମ୍ପାଉଣ୍ଡର, ସୁବାଶିଷ ସହନାୟକ ଭୂମିକାରେ ଅଭିନୟ କଲେ । ପ୍ରମୋଦ, ପ୍ରଦୀପ ବେହେରା ସହ ଆଉ କିଛି କଳାକାର ଗୌଣ ଭୂମିକାରେ ମଞ୍ଚକୁ ଓହ୍ଲାଇଲେ । ରାଜେନ୍ଦ୍ର କିଛିଦିନ ଆସିଲେ, ଯୁଦ୍ଧରେ ବନ୍ଧୁକ କିଭଳି ଧରାଯାଏ, ଘୁଷୁରି ଘୁଷୁରି କିଭଳି ଜବାନ୍‌ମାନେ ଭୂଇଁରେ ଯାତାୟତ କରନ୍ତି ବତାଇଲେ । କିଛିଦିନ ପରେ ଆମେ ଅନୁଭବ କଲୁ, ରାଜେନ୍ଦ୍ର ନ ଆସିଲେ ବି ଆମେ ଆମର ନାଟକ ସୁଚାରୁ ଭାବରେ ମଞ୍ଚସ୍ଥ କରିପାରିବୁ ।

ନାଟକ ମଞ୍ଚାୟନ ପାଇଁ ଜାଗା ଠିକ୍ ହେଲା ପ୍ରସନ୍ନ ମହାପାତ୍ରଙ୍କ ଘର ସାମ୍ନା, ମାନେ ତାଙ୍କ ପୁଅ, ଯେ ଏ ନାଟକର ହୀରୋ, ତାଙ୍କ ଘର ଆଗରେ ହିଁ ମଞ୍ଚ ତିଆରିହେବ । ପ୍ରସନ୍ନ ଆଜ୍ଞାଙ୍କ ଅନୁମତି ପାଇବାପରେ ମଞ୍ଚପାଇଁ କାଠ ଖୁଣ୍ଟ ଯୋଗାଡ଼ ଚାଲିଲା । ଇତି ମଧ୍ୟରେ ଅଶୋକଦାଦାଙ୍କ ପରିବାର ଆସି ତାଙ୍କ ଘରେ ରହିବାରୁ ଆମେ ବଡ଼ପଡାରେ ଥିବା ଜମିଦାର କୋଠା, ଯାହା ଅଧା ତିଆରି ହୋଇଥିଲା, କବାଟ ଝରକା ଲାଗି ନଥିଲା, ସେଇଠିକୁ ରିହାର୍ସାଲ ଆଖଡା ନେଇଗଲୁ । ନାଟକ ହେବା ନହେବା କଥା ଉଠିଲା । କେହିକେହି ରିହାର୍ସାଲ୍ କୋଠରୀର କାନ୍ଥରେ ବିଜୟଟୀକା, ଆପୁଆ ବିଚାର ବୋଲି ଚକ୍‌ରେ ଲେଖି ଆମକୁ ବିଦ୍ରୂପ କରିବାରେ ଲାଗିଲେ । ତଥାପି, ସବୁ ବାଧାବିଘ୍ନକୁ ଏଡ଼ାଇ ନାଟକ ମଞ୍ଚାୟନ ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇଗଲା । ରାତିରାତି ନିଜେ ଶାବଳ, ଗଇଁତି ଧରି ଗାତଖୋଳି ମିଳିତ ଉଦ୍ୟମରେ ମଞ୍ଚ ପାଇଁ ସ୍ତମ୍ଭ ଗଡ଼ାଗଲା । ମକରଧ୍ୱଜ ପାନଦୋକାନ, ପଟ୍ଟନାୟକ ପାନଦୋକାନ, ନନ୍ଦୀବାବୁଙ୍କ ହୋଟେଲ୍ ଆଦି ସ୍ଥାନରୁ ପଟାଖଟ ଯୋଗାଡ଼ ହେଲା, ଘରଘର ମଗାଗଲା, ସୁବାଶିଷଙ୍କ ମାଁଙ୍କ ଶାଢ଼ୀଗୁଡ଼ିକୁ ପରଦା ଭାବରେ ସଜାଗଲା, କିଶୋରୀ ତେଜରାତି ଦୋକାନରୁ ତାଳପତ୍ରି ଆଣି ଛାତଛାଉଣି ଦିଆଗଲା, ଭଡ଼ାରେ ଲାଇଟ୍, ମାଇକ୍ ଅଣାଯାଇ ଲଗାଗଲା, ଦୁଇଟି ମାତ୍ର ମାଉଥ୍ ପିସ୍,

ଯୁଦ୍ଧ ପାଇଁ ପରଦା ପଛରେ ଫୁଟାଇବା ପାଇଁ ତାଳଫୋଟକା, ସବୁ ବ୍ୟବସ୍ଥା ହେଲା । ନାଟକ ହେବା ସନ୍ଧ୍ୟାରେ ରେକର୍ଡ ପ୍ଲେୟାର୍ ଯୋଗେ ହିନ୍ଦୀ ସିନେମାର ଗୀତ ବଜାଗଲା, ଛୁଆମାନେ ବସିବା ପାଇଁ ମଞ୍ଚକୁ ଲାଗି ଦରି ପକାଗଲା, ବଡ଼ମାନଙ୍କ ପାଇଁ ବିଭିନ୍ନ ଦୋକାନରୁ ସଂଗୃହିତ କାଠବେଞ୍ଚ ପକାଗଲା ।

ନୂଆକରି ନାଟକ କରୁଥିବାରୁ, ସମସ୍ତଙ୍କ ମନରେ ଉଛୁଳା ଖୁସି, ପ୍ରଥମ କରି ଅଭିନୟ କରୁଥିବାର ନର୍ଭସ୍‌ନେସ୍, ମୁହଁରେ ରଙ୍ଗମାଖିବାର ଶିହରଣ, ଯୁଗଳ, ସୁବାଶିଷ, ସୁବୋଧଦା, ଅଶୋକଦା ମେକ୍‌ଅପ୍ ନେଇ ମଞ୍ଚକୁ ଓହ୍ଲାଇବା ପାଇଁ ପ୍ରସ୍ତୁତ, ମୋ ରଚିତ ନାଟକ ଶେଷରେ ମଞ୍ଚରେ ଅଭିନୀତ ହେବାର ଆନନ୍ଦ କହିଲେ ନସରେ । କୌଣସି ହାଲତ୍‌ରେ ନାଟକଟି ଆରମ୍ଭହେଲା, ଠିକ୍ ଗତିକଲା, ଯୁଦ୍ଧବେଳେ ବାଣ ନ ଫୁଟି ପରେ ଫୁଟିଲା, ଉଇଗ୍ ନଥିବାରୁ ମୁନୁଗୁରୁ, ଯେ ନାୟିକା ସାଜିଥିଲେ, ଓଢ଼ଣି ଖସି ଯିବାରୁ ସାମ୍ନାରେ ବସିଥିବା ପିଲାମାନେ 'ମୁନୁ' 'ମୁନୁ' ବଲି ପାଟି କରିବା, ତାଳ ଫୋଟକାର ଅସମୟ ଫୁଟାଣ ଫଳରେ ନାୟକ ସ୍ଥାନରେ ସହ ନାୟକ ମଞ୍ଚରେ ଟଳିପଡ଼ିବା, କମ୍ପାଉଣ୍ଡର ଶାନ୍ତନୁ ଧରିଥିବା ଖୋଲା କଳାଏଟେଚିରୁ ଚିରାକନା, ଚିରାକୁର୍ତ୍ତାଆଦି ବାହାରିପଡିବା ଭଳି ବହୁ ନୋସ୍ଟାଲଜିକ୍ ଘଟଣା ଭିତରେ ନାଟକଟି ଶେଷ ହେଲା, ନାଟକ ଯାହା ବି ହେଉ, ପିଲାମାନେ ଭଲ ନାଟକଟିଏ କଲେ ବୋଲି ଦେଖିଥିବା ଲୋକମାନେ ଚର୍ଚ୍ଚା କଲେ । ନାଟକ ସରିବା ପରେ ଅନେକ ରାତି ଧରି ନାଟକର ଚର୍ଚ୍ଚା ଚାଲିଲା । ନାଟକ ମଞ୍ଚାୟନ ପରେ କିଛି ଜଳଖିଆ ଖିଆଯାଏ, ସେ ବୟସରେ ଆମ ଜ୍ଞାନରେ ନଥିଲା । ଆମ ଉପଦେଷ୍ଟା ବରୁଣବାବୁ ଆମକୁ ଭୋକ ଲାଗିବା ଦେଖି ତାଙ୍କ ପାନ ଦୋକାନରୁ ଦୁଇ ଚାରି ପେକେଟ୍ ବିସ୍କୁଟ୍ ଧରେଇ କହିଲେ, ନିଅ, ବିସ୍କୁଟ୍ ଖାଅ, ଘରକୁ ଯାଅ, ବେଶି ରାତି ହେଲାଣି । ଏ ନାଟକରେ ସର୍ବମୋଟ ଖର୍ଚ୍ଚଥିଲା ଅଠାନବେ ଟଙ୍କା କେତେ ପଇସା ।

ବିଜୟଟୀକା ଧନୁପାଲିରେ ନାଟକର ବୀଜ ବୁଣିଲା, ଏମିତି ଗଛମାନ କଅଁଳି ଆଜି ଶାଖାପ୍ରଶାଖା ମେଲାଇ ବୃଶାଳ ହେଲାଣି ଯେ, ନାଟ୍ୟ ସମ୍ପର୍କିତ ଆଲୋଚନା ସଭାମାନଙ୍କରେ ଧନୁପାଲି ବିନା ଚର୍ଚ୍ଚା ଅସମ୍ଭବ ହୋଇପଡୁଛି । ସମସ୍ତେ କହୁଛନ୍ତି, ଧନୁପାଲି ନାଟ୍ୟକାରମାନଙ୍କ ଜନ୍ମସ୍ଥଳୀ, ନାଟୁଆମାନଙ୍କ ଚରାଭୂଇଁ । ଏସବୁ ଶୁଣିଲେ, ମୋ ଛାତି କୁଣ୍ଢେମୋଟ ହୋଇଯାଏ ।





**ବି**ଜୟଟୀକା ଆପୁଆ ବିଚାର ନଥିଲା, ଥିଲା ଆଗୁଆ ବିଚାର, ଧନୁପାଲିକୁ ଏକ ସଂସ୍କୃତି ସମ୍ପନ୍ନ ଅଞ୍ଚଳ ଭାବରେ ଗଢ଼ିତୋଳିବା ପାଇଁ, ନାଟ୍ୟକଳାକୁ କେନ୍ଦ୍ରକରି ଏକ ଶୃଙ୍ଖଳିତ ସମାଜ ଗଠନ କରିବାପାଇଁ, ଉତ୍ତମ ତଥା ଦକ୍ଷ କଳାକାର ସୃଷ୍ଟି କରି ସମଗ୍ର ସମ୍ବଲପୁରର ନାଟ୍ୟସଂସ୍କୃତିକୁ ସର୍ବଭାରତୀୟ କ୍ଷେତ୍ରରେ ପ୍ରତିଷ୍ଠିତ କରିବାପାଇଁ, ସଂଖ୍ୟାଧିକ ନାଟ୍ୟକାରଙ୍କ ସମାବେଶରେ ଏକ ନାଟ୍ୟପ୍ରବଣ କ୍ଷେତ୍ର ପ୍ରସ୍ତୁତକରି ନାଟକ ମାଧ୍ୟମରେ ମନୋରଞ୍ଜନ ତଥା ସାମାଜିକ ସଚେତନତାର ବ୍ୟାପକ ମାନସିକତା ଜନ୍ମେଇବା ପାଇଁ।। ଯା ପୂର୍ବରୁ ଧର୍ମପଦ ମୁଣ୍ଡି ମାରିସାରିଥିଲା ନାଟ୍ୟକଳାର ବିରାଟ ସ୍ଥପତିର, ତାର ମଥାନରେ ବିଜୟଟୀକା ଲେପନ କରି ପଥପ୍ରଶସ୍ତ କରିଦେଲା କିଶୋର ବୟସର କୁନିକୁନି ପିଲାମାନଙ୍କ ମାନସ ପ୍ରସ୍ତୁତ ବିଜୟଟୀକା ନାଟକ। ଏଭଳି ଉପୋଦ୍‌ଘାତ କେବଳ ସାହିତ୍ୟିକରସ ବା ପୁଟ ପାଇଁ ନୁହେଁ, ବରଂ ତାହା ପ୍ରମାଣସିଦ୍ଧ ହେଲା ଭବିଷ୍ୟତର ନାଟ୍ୟୋଦ୍ଭାସିତ ରଙ୍ଗୀନ ଦିନମାନଙ୍କରେ। ଏ ମାଟି ଛୁଇଁ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଗଙ୍ଗାଧର ମେହେର ମହାବିଦ୍ୟାଳୟର ନାଟ୍ୟୋତ୍ସବରେ ୧୯୭୪ ମସିହାରେ 'ପୁନଶ୍ଚ ପୃଥିବୀ' ନାଟକରେ ଅଭିନୟ କରି ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହେଲେ ସ୍ୱର୍ଣ୍ଣ ପଦକ ସହ, ପଞ୍ଚାନନ ମିଶ୍ର ଗାଇଡ୍ କ୍ଲବର ପ୍ରଥମ ଅବଦାନ ଅମାବାସ୍ୟର ଅନ୍ଧକାରରୁ ସମ୍ବଲପୁର ସହରରେ ଅଭିନୟର ଶୁଭାରମ୍ଭ କରି ୧୯୮୩ରେ ଏଲ୍ଲାବାଦ ଲଘୁନାଟକ ପ୍ରତିଯୋଗିତାରେ 'ସସେମୀରା' ନାଟକରେ ଅଭିନୟ କରି ସର୍ବଭାରତୀୟ କ୍ଷେତ୍ରରେ ଶ୍ରେଷ୍ଠ ଅଭିନେତା, ତା ପରବର୍ଷ ସମୁଦ୍ର ନାଟକରେ ଅଭିନୟ କରି ଦ୍ୱିତୀୟବାର ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହେଲେ, ଅମାବାସ୍ୟାର ଅନ୍ଧକାର ନାଟକରୁ ନାଟ୍ୟରଚନାର ଅୟମାରମ୍ଭ କରି ପରବର୍ତ୍ତୀ କାଳରେ ରାଉରକେଲା ଲୋକନାଟକ ମହୋତ୍ସବରେ ସର୍ବମୋଟ ଆଠ ଥର ଶ୍ରେଷ୍ଠ ନାଟ୍ୟକାରଭାବେ ପୁରସ୍କୃତ ହୋଇ କଲ୍‌ଚରାଲ୍ ଏକାଡେମୀର ରଜତ ଜୟନ୍ତୀ ସିଲ୍ଡ ପ୍ରାପ୍ତ ହୋଇଥିଲେ। ଏଭଳି ଆହୁରି ଅନେକ ଉଦାହରଣ ଦିଆଯାଇପାରେ ଧନୁପାଲିର ନାଟ୍ୟସଫଳତାକୁ ନେଇ।

ବିଜୟଟୀକା ପରେ ପ୍ରାୟ ସବୁବନ୍ଧୁ ଏକ ବର୍ଷ ପାଇଁ ନିରବ ରହିଲେ ମେଟ୍ରିକ ପରୀକ୍ଷା ପାଇଁ। ୧୯୭୦ ସାଲରେ ପାଠ ପାଇଁ ନାଟକ ବନ୍ଦ ହେଲା। ହେଲେ ବନ୍ଦ ହୋଇପାରି ନଥିଲା ବିଳଗତେ ଉଦ୍ୟମର ସଂଗଠନର ବିନା ନାମକରଣରେ ବିଜୟଟୀକା ଅଭିନୀତ ସିନା ହୋଇଗଲା, ହେଲେ ଏକ ବିଧିବଦ୍ଧ ସଂଗଠନର ଆବଶ୍ୟକତା ସମସ୍ତେ ଅନୁଭବ କଲେ। ଭବିଷ୍ୟତକୁ ଚାହିଁ ଏକ କ୍ଲବ ଗଠନ କରି ସମସ୍ତେ ଏକଜୁଟ୍ ହୋଇ ସାମାଜିକ ତଥା ସାଂସ୍କୃତିକ କାର୍ଯ୍ୟକ୍ରମମାନ କରିବା ପାଇଁ ସେଇ ଏକସ୍ତରୀ ମସିହାରେ



ଧନୁପାଲି ଛକରେ ଏକ ନିରାଡମ୍ବର ଉତ୍ସବରେ ଶୁଭାରମ୍ଭ ହେଲା ଗାଇଡ୍ କ୍ଲବର । ଏବେ ଯେଉଁଠି ତୀର୍ଥର ଜଳଖିଆ ହୋଟେଲ୍ ଅଛି, ଠିକ୍ ତାର ଡାହାଣ ପଟକୁ ବୃନ୍ଦାବନ ବେହେରାଙ୍କ ଘର ସାମ୍ନାରେ ଆୟୋଜିତ ଏହି ସଭାରେ ସଭାପତିତ୍ୱ କରିଥିଲେ ଗୌରାଙ୍ଗ ତ୍ରିପାଠୀ, ଯେ ହେଉଛନ୍ତି ବନ୍ଧୁ ପ୍ରମୋଦ ତ୍ରିପାଠୀଙ୍କ ବାପା, ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରିତ ହୋଇଥିଲେ ସଦ୍ୟନିର୍ବାଚିତ ରେଢ଼ାଖୋଲର ବିଧାନସଭା ସଦସ୍ୟ ଅଭିମନ୍ୟୁ କୁମ୍ଭାର, କ୍ଲବ୍ ସଭାପତି ଭାବରେ ମନୋନୀତ ହେଲେ ଆମ ନାଟ୍ୟପ୍ରତିଭାର ମାର୍ଗନିର୍ଦ୍ଦେଶକ ସତ୍ୟନାରାୟଣ  ତ୍ରିପାଠୀ ।

ମନ ଖୋଜୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା, ଠିକଣା ସମୟରେ ସତ୍ୟନାରାୟଣ ବାବୁ ଆମ ସହ ଜୁଟିଗଲେ, ତାଙ୍କ ଉତ୍ସାହ ପ୍ରଦାରକ ହସ ଛଳଛଳ କଥାରେ ଆମେ ବିହ୍ୱଳ ହୋଇଗଲୁ, ଆମ ଚିନ୍ତାଧାରା ସହ ମେଳ ଖାଇଲା ଭଳି ବ୍ୟକ୍ତିତ୍ୱ ଜଣେ ପାଇଯିବାରୁ କୈଶୋରରୁ ଯୌବନକୁ ଡିଆଁ ମାରିଆସିଥିବା ଆମେସବୁ ବନ୍ଧୁବର୍ଗ ଉଲ୍ଲସିତ ହେଲୁଁ । ସତ୍ୟନାରାୟଣ ବାବୁ ସମ୍ବଲପୁରରେ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ ନୂଆନୂଆଁ ସୋନପୁରରୁ ଆସି ଯୋଗ ଦେଇଥାନ୍ତି । ଜଣେ ଖାସ୍ ନାଟୁଆ, ମେଳାପୀ, ବନ୍ଧୁବତ୍ସଳ, ସ୍ନେହୀ ମଣିଷ । ନାଟକ ପ୍ରତି ଆମ ଆଗ୍ରହ ଦେଖି ସେ ନିଜେ ନିଜେ ଆସି ଆମ ଭିତରେ ସାମିଲ୍ ହୋଇଗଲେ, ପରେ ପରେ ଆମ ନାଟ୍ୟ ନିର୍ଦ୍ଦେଶକ ପାଲଟିଗଲେ, କ୍ଲବ ସଭାପତି ଭାବରେ ଆମ ପଥପ୍ରଦର୍ଶକ ପାଲଟିଗଲେ । ଗାଇଡ୍ କ୍ଲବର ନାମକରଣ ପ୍ରମୋଦର ବାପା କରିଥିଲେ, ସେ ମଧ୍ୟ ଆମକୁ ଯଥେଷ୍ଟ ପ୍ରୋତ୍ସାହନ ଯୋଗାଉଥିଲେ ।

କ୍ଲବ୍ ଉଦ୍‌ଘାଟିତ ହୋଇଗଲା, ପରୀକ୍ଷା ସରି ଫଳ ଅପେକ୍ଷାରେ ସମସ୍ତେ ରହିଗଲୁ । ଖରାଛୁଟିର ବେଳ, ଭବାନୀଫିଲ୍ଡକୁ ଯାଇ ଫୁଟ୍‌ବଲ୍ ଖେଳିଖେଳି ନୟାନ୍ତ । ନାଟକର ସ୍ପୃହା ସମସ୍ତଙ୍କ ମନକୁ ଘାରିଲା । ସତ୍ୟନାରାୟଣ ତ୍ରିପାଠୀଙ୍କ ପ୍ରରୋଚନାରେ ଖରା ଛୁଟିରେ ଏକ ମଞ୍ଚ ନାଟକ କରିବାର ଯୋଜନା ସ୍ଥିର ହେଲା । ଛପାବହି ନୁହେଁ, ଆମେ ନିଜେ ନାଟକ ଲେଖିବା ଓ ସେହି ନାଟକକୁ ମଞ୍ଚରେ ରୂପଦେବା ଭଳି ମନୋବୃତ୍ତିରୁ ଆମ ଭିତରେ ସାହିତ୍ୟ ପ୍ରତି, ତୁଳନାତ୍ମକ ଭାବରେ ପ୍ରମୋଦ ଯେହେତୁ ଅଧିକ ଋଚି ରଖୁଥିଲେ, ତାଙ୍କ ଉପରେ ନ୍ୟସ୍ତହେଲା ନାଟକ ରଚନା କରିବାର ଗୁରୁଦାୟିତ୍ୱ । ମକରଧ୍ୱଜ ପାନଦୋକାନକୁ ଲାଗି ଅନ୍ଧାରିଆ କୋଠରୀରେ ସତ୍ୟନାରାୟଣ ବାବୁ, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ମୁଁ, ଶାନ୍ତନୁ, ମାରୱାଡି ଗୋପାଳ ଓରଫ ରାମଗୋପାଲ ଶର୍ମା, ସୁବାଶୀଷ ଆଦି ବନ୍ଧୁମାନେ ବାରମ୍ବାର ବୈଠକକରି ପ୍ରମୋଦସହ ନାଟକର ବିଷୟବସ୍ତୁ, ଚରିତ୍ର, ନାଟକର ମଞ୍ଚଶିଳ୍ପ ବାବଦରେ ଘନଘନ ଆଲୋଚନା କଲୁ ।

ସମସ୍ତଙ୍କ ପ୍ରସ୍ତାବକୁ ଆଧାରକରି, କଳାକାରମାନଙ୍କ ରଚି ଓ ପ୍ରତିଭାକୁ ଶ୍ରେୟକରି ପ୍ରମୋଦ ଖୁବ୍‌ଶୀଘ୍ର ନାଟକକୁ ରଚନା କଲେ, ଯାହା 'ଅମାବାସ୍ୟାର ଅନ୍ଧକାର' ନାମରେ ନାମିତ ହେଲା । ଧନୁପାଲି ଉପ୍ରା ସ୍କୁଲରେ ବୈଠକ ବସିଲା, ପାଣ୍ଡୁଲିପି ପଢ଼ାଗଲା, ନିର୍ଦ୍ଦେଶନା ଦେବାସହ ଏକ ମୁଖ୍ୟ ଚରିତ୍ରରେ ଅଭିନୟ ପାଇଁ ସତ୍ୟନାରାୟଣ ବାବୁଙ୍କୁ ଅନୁରୋଧ କରାଗଲା, ଆମ ଉପରପିଢ଼ୀର ସହାୟତା ନିଆଯାଇ ମୋର ବଡ଼ଭାଇ, ତାଙ୍କ ବନ୍ଧୁ ସୁବାସ ଆଚାର୍ଯ୍ୟଙ୍କୁ ଆମନ୍ତ୍ରଣ କରାଗଲା, ନିର୍ଦ୍ଦେଶକଙ୍କ ମତାନୁଯାୟୀ କଳାକାରମାନଙ୍କୁ ରୋଲ୍ ବଣ୍ଟାଗଲା, ଦାଦା ନାଟକର ନାୟକ ହେଲେ, ସତ୍ୟନାରାୟଣ ବାବୁଙ୍କ ପ୍ରସ୍ତାବ ଅନୁଯାୟୀ ପଞ୍ଚାନନ ମିଶ୍ରଙ୍କୁ ଏକ ଭଲ ଭୂମିକା ଦିଆଗଲା, ସେ ନୂଆନୂଆ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥାନ୍ତି, ସୋନପୁର ତାଙ୍କ ମୂଳ ନିବାସ, ରହୁଥିଲେ ପୋଷ୍ଟଅଫିସ ନିକଟସ୍ଥ ସୋନପୁର ବଙ୍ଗଳାରେ । ମୋ ସହ ନରେନ୍ଦ୍ର ରାୟଗୁରୁ ମଧ୍ୟ ଅଭିନୟ କଲେ । ନାଟକର ଏକମାତ୍ର ନାରୀ ଭୂମିକା, ଯାହାର ପ୍ରଥମ ଦୃଶ୍ୟର ପ୍ରାରମ୍ଭରେ ହିଁ ହତ୍ୟା ହୋଇଥିଲା, ସେ ଚରିତ୍ରଟିରେ ଅଭିନୟ କଲେ ନରେନ୍ଦ୍ର ରାୟଗୁରୁ, ସେତେବେଳେ ନରେନ୍ଦ୍ର ଘରର ପରିବାର ଆମ ଘର ସାମ୍ନାରେ ଥିବା ହରେଣ୍ ପଣ୍ଡାଙ୍କ ଘରେ ଭଡ଼ା ରହୁଥିଲେ । ତାଙ୍କର ମାଁ ଓ ମୋ ମାଁ ବହୁତ ସାଙ୍ଗ, ଖୁବ୍ ଶୀଘ୍ର ତାଙ୍କ ଦେହାନ୍ତ ଘଟିଥିଲା । ସୁବାସ ଆଚାର୍ଯ୍ୟ ସ୍ମାରକ ଭାବରେ ଦାୟିତ୍ୱ ନିର୍ବାହ କଲେ ।

ସ୍କୁଲରେ ରିହାର୍ସାଲ ଆଗକୁ ମାଡ଼ି ଚାଲିଲା, ଟିକଟ ଛପାଇ ଚାନ୍ଦାଭେଦା କାମ ମଧ୍ୟ ଆଗେଇ ଚାଲିଲା । ନାଟକ ମଞ୍ଚାୟନର ଦିନ ପାଖେଇ ଆସିଲା । ସ୍କୁଲର କାନ୍ଥକୁ ଲାଗି ମଞ୍ଚ ନିର୍ମାଣର ପ୍ରସ୍ତୁତି ଆରମ୍ଭ ହେଲା । ଅଭିନୟ ନକଲେ ବି ବିପିନ ମିଶ୍ର, ଚିତ୍ତ ସାହୁ, ସତ୍ୟ ବେହେରା, ସନତ୍ ତ୍ରିପାଠୀ, ବନମାଳୀ ପୋଢ଼, ଅଲେଖ ଥଷା, ଦଶରଥ ବେରିହା, ତ୍ରିବିକ୍ରମ ତ୍ରିପାଠୀ, ଗୋବିନ୍ଦ ତ୍ରିପାଠୀ, ରାମ ବିଶ୍ୱାଳ, ଲଳିତ ଜେନା ଆଦି ଅନେକ ସଦସ୍ୟ ମନଭରି ସହଯୋଗ କଲେ, ସେତେବେଳେ ସବୁଠାରୁ ବଡ଼ କାମ ଥିଲା, ମଞ୍ଚବନ୍ଧା ଓ ଛାତ ପାଇଁ ଉପରେ ତାଳପତ୍ରି ଛୁଆଁ । ଏ ଦୁଇଟି କାମ ପାଇଁ ଲୋକବଳର ଆବଶ୍ୟକତା ପଡୁଥିଲା । ତାଳପତ୍ରୀ ଉଠାଇବା ପାଇଁ ରାତି ଅନିଦ୍ରା ରହିବାକୁ ପଡୁଥିଲା । କାମ ସରିଗଲେ, ମାମା, ଅର୍ଥାତ୍ ଛକରେ ହୋଟେଲ୍ କରିଥିବା ନିଲାଞ୍ଚଳ ନନ୍ଦୀବାବୁଙ୍କ ଭାଇ ବିଶ୍ୱରୂପ ନନ୍ଦୀ, ଯେ ଆମ ସମସ୍ତଙ୍କର ମାମା, ତାଙ୍କ ନିକଟକୁ ଯାଇ ସକାଳ ଚାରିଟାରେ ମାହାଳିଆ ଚା'ପାନକରି ଘରକୁ ଫେରୁଥିଲୁ । ମାମା ସକାଳୁ ହୋଟେଲ୍ ଖୋଲି ସିଙ୍ଗଡା ପାଇଁ ଆଳୁସିଝା କାମ ମୂଳ କରୁଥିଲେ । ସେ ଜଣେ ବନ୍ଧୁବତ୍ସଳ ବ୍ୟକ୍ତି ଭାବରେ ଆମ ସମସ୍ତଙ୍କ ନିକଟରେ ପରିଚିତ ।

ଅମାବାସ୍ୟାର ଅନ୍ଧକାର ନାଟକ ସଫଳତାର ସହ ମଞ୍ଚସ୍ଥ ହେଲା, ଦର୍ଶକେ ଭୁରି ଭୁରି ପ୍ରଶଂସା କଲେ। ସକାଳୁ ଖାଲି ଧନୁପାଲି ନୁହେଁ, ସାରା ସମ୍ବଲପୁରରେ ଚର୍ଚ୍ଚା ମାଡିଗଲା। ନାଟକର ସଫଳତାରେ ଆମେ ଉନ୍ମାଦ, ପାଦ ମାଟିରେ ପଡୁନଥାଏ, ପ୍ରମୋଦର ଲେଖା, ସତ୍ୟନାରାୟଣ ବାବୁଙ୍କ ନିର୍ଦ୍ଦେଶନା ଓ ପଥପ୍ରଦର୍ଶନ, ପଞ୍ଚାନନ ମିଶ୍ର, ମୁରଲୀଧର ନାୟକ, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଆଦି କଳାକାରଙ୍କ ଅଭିନୟ ଲୋକଙ୍କୁ ଆକର୍ଷିତ କଲା।

ଏ ନାଟକ ଧନୁପାଲି କେବଳ ନୁହେଁ, ସମ୍ବଲପୁରର ନାଟକ କ୍ଷେତ୍ରର ଅମାବାସ୍ୟାର ଅନ୍ଧକାରକୁ ହଟାଇ ନୂତନ ସୂର୍ଯ୍ୟର କିରଣରେ ଆଲୋକିତ କରିବା ଶୁଭାରମ୍ଭ କଲା ବୋଲି ନାଟ୍ୟପ୍ରେମୀମାନେ ଚର୍ଚ୍ଚା କଲେ। ବସ୍ତୁତଃ, ଏହି ନାଟକରୁ ଆରମ୍ଭ ହେଲା ନାଟ୍ୟକାର ସୃଷ୍ଟି ହେବାର ପ୍ରକ୍ରିୟା। ପ୍ରମାଣ ସ୍ୱରୂପ ପରେପରେ ଧନୁପାଲି ପାଲଟିଗଲା ନାଟ୍ୟକାରମାନଙ୍କ ଜନ୍ମଭୂମି। ପ୍ରମୋଦ ତ୍ରିପାଠୀଙ୍କ ସହ ରଣଜିତ୍ ପଟ୍ଟନାୟକ, ପ୍ରସନ୍ନ ସାହୁ, ଶଶୀଭୂଷଣ ଦାସ୍, ବ୍ରଜେନ୍ଦ୍ର ନାୟକ, ପ୍ରଶାନ୍ତ ମାଝି, ସୂର୍ଯ୍ୟ ପାଣିଗ୍ରାହୀ ଏପରି କି ମୁଁ ନିଜେ ମଧ୍ୟ ନାଟକ ରଚନା କରିବା ତାଲିକାରେ ଅନ୍ତର୍ଭୁକ୍ତ ହୋଇଗଲି। ଏଥିସହ ଧନୁପାଲିର ଉଦ୍ୟମରେ ମଙ୍ଗଳୁଚରଣ ବିଶ୍ୱାଳ, ବିନୋଦ ପଶାୟତ ଭଳି କବିମାନେ କବିରୁ ନାଟ୍ୟକାର ଭାବରେ ଖ୍ୟାତ ହୋଇଗଲେ।

ସେଥିଲା ସ୍ୱର୍ଣ୍ଣାଭ କାଳ, ଯାହା ଦୀର୍ଘବର୍ଷ ଧରି ଜାରି ରହିଲା, ଅନେକ କଳାକାର ଗଢ଼ିଦେଲା, ସେମାନଙ୍କ ପ୍ରତିଭାର ବିକାଶ ଘଟିଲା, ଏକ ନବଯୁଗର ବିଜୟବିଗୁଲ୍ ବୀର ଦର୍ପରେ ନିନାଦିତ ହେଲା।



ମୁଁ ଏବଂ ମୋର ଜିଲ୍ଲାସ୍କୁଲର ବନ୍ଧୁଗଣ ୧୯୭୧ ବେଚ୍‌ର ପାସ୍‌ଆଉଟ୍। ଭଲ ବେଚ୍‌ଟିଏ ଥିଲୁ, ସବୁ ସ୍ତରର ପିଲାମାନେ ବିଭିନ୍ନ ସେକ୍ସନ୍‌ରେ ପଢୁଥିଲୁ। ପାନଦୋକାନୀଙ୍କ ପୁଅଠାରୁ ଆରମ୍ଭ କରି ଆମସମୟର ଆରଡିସିଙ୍କ ପୁଅ, ଏସପିଙ୍କ ପୁଅ ପର୍ଯ୍ୟନ୍ତ ସମସ୍ତେ ଏକଯୋଟ୍‌ହୋଇ ବିଭିନ୍ନ ଶିକ୍ଷାଗତ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ସହ ଜଡ଼ିତ ରହୁଥିଲୁ। ଆମ ଇତିହାସ ଶିକ୍ଷକ ଥିଲେ ବିଶିଷ୍ଟ ଐତିହାସିକ ଜଗନ୍ନାଥ ପଟ୍ଟନାୟକ। ସେ ଜଣେ ଛାତ୍ରବତ୍ସଳ ଶିକ୍ଷକ ଥିଲେ। ଛାତ୍ରମାନଙ୍କର ଅନ୍ତର୍ନିହିତ ପ୍ରତିଭାର ବିକାଶ ପାଇଁ ସେ ସଦାଚେଷ୍ଟିତ ଥିଲେ। ତାଙ୍କ ରଚନା ଓ ପରିଚାଳନାରେ ଆମେ ଗୋଟିଏ ଛୋଟ ଶିକ୍ଷଣୀୟ ନାଟକ ଆକାଶବାଣୀ ସମ୍ବଲପୁରର କିଶୋରସଂସାର

କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତ କରିଥିଲୁ, ଯେଉଁଥିରେ ମୁଁ ଏକ ଚରିତ୍ରରେ ଅଭିନୟ କରିଥିଲି । ନାଟକର ନାଁ ଥିଲା 'ଏକୋନାଉଡ୍-୩୦' । ଆକାଶବାଣୀ ସମ୍ବଲପୁର ଷ୍ଟୁଡିଓ ସେତେବେଳେ ବୁକ୍‌ହିଲ୍ ଉପରେ ଏକ ଭଡ଼ାଘରେ ଥିଲା । ସେଥିଲା ମୋ ଜୀବନର ସର୍ବପ୍ରଥମ ବେତାର ନାଟକ ।

ଜିଲ୍ଲାସ୍କୁଲର ଛାତ୍ର ଥିବାବେଳେ ମୁଁ ଭଲ ଢୋଲକ ବଜାଉଥିଲି ଓ ମୋର ବନ୍ଧୁ ପିଥୁନ୍ ମଜୁମ୍‌ଦାର୍ ଭଲ ବେଂଜୋ ବଜାଉଥିଲେ । ଆମେ ଦୁଇଜଣ ଜିଲ୍ଲା ସ୍କୁଲର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲୁ । ଦଶମ ଶ୍ରେଣୀରେ ପଢ଼ିବାବେଳେ ପ୍ରଧାନ ଶିକ୍ଷକଙ୍କ ନିର୍ଦ୍ଦେଶରେ ଏକ ପାଞ୍ଚଜଣିଆ ଛାତ୍ରଦଳ ଶିକ୍ଷକ ରାଧାଚରଣ ମେହେରଙ୍କ ନେତୃତ୍ୱରେ ମହୀଶୂର ରାଜ୍ୟର ଦାଭେନ୍‌ଗିରିକୁ ପନ୍ଦରଦିନିଆ ଜାତୀୟସଂହତି ଶିବିରରେ ଯୋଗଦେଇଥିଲୁ । ଏହିଦଳରେ ସଂଗୀତ କଳାରେ ଜ୍ଞାନଥିବାରୁ ମତେ ଓ ପିଥୁନ୍ ମଜୁମ୍‌ଦାରଙ୍କୁ ମନୋନୀତ କରାଯାଇଥିଲା ଏବଂ ଅନ୍ୟାନ୍ୟ ବକ୍ତୃତା, ପ୍ରବନ୍ଧ ରଚନା ଭଳି ଏକାଡେମିକ୍ କାର୍ଯ୍ୟ ପାଇଁ ଯୁଗଳ ମହାପାତ୍ର, ଅଶୋକ ଦାଶ ଓ ବିଜୟ ଦୋରା ମନୋନୀତ ହେଲେ । ପିଥୁନ୍ ମଜୁମଦାରଙ୍କ କାକାପୁଅ ଭାଇ ହେଉଛନ୍ତି ଆଜିର ଲୋକପ୍ରିୟ ସଂଗୀତ ନିର୍ଦ୍ଦେଶକ ଅଭିଜୀତ୍ ମଜୁମ୍‌ଦାର । ମେହେର ସାରଙ୍କ ନେତୃତ୍ୱରେ ଆମେ ବମ୍ବେ, ପୁନା ବାଟ ଦେଇ ରେଳଯୋଗେ ମହୀଶୂର ରାଜ୍ୟ ପହଞ୍ଚି ସେଠାରୁ ଦାବେନ୍‌ଗିରି ଯାଇଥିଲୁ । ସେଠାରେ ପନ୍ଦରଦିନ କାଳ ରହି ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେଲୁ । ମୋର ସୌଭାଗ୍ୟ, ସେହି ଶିବିରକୁ ଆସିଥିବା ପଞ୍ଜାବ, ଗୁଜୁରାଟ, ଉତ୍ତରପ୍ରଦେଶ, ଜାମ୍ମୁକାଶ୍ମୀର ଆଦି ଅନେକ ରାଜ୍ୟର ଛାତ୍ରବନ୍ଧୁମାନେ ଗୀତନୃତ୍ୟ ପରିବେଷଣ ବେଳେ ବାଦ୍ୟକାର କେହି ନଥିବାରୁ ମୋର ଢୋଲକ ବଜାଇବା ଦେଖି ମୋତେ ତାଙ୍କ ନୃତ୍ୟଗୀତରେ ବଜାଇବାପାଇଁ ଅନୁରୋଧ କରିଥିଲେ । ଖୁବ୍‌ଖୁସିରେ ମୁଁ ଭାଙ୍ଗଡା, ଦାଣ୍ଡିଆ, କବାଲି ଆଦି ଗୀତରେ ତାଙ୍କ ବାଦ୍ୟ ପଞ୍ଜାବୀ ଢୋଲ, ଗୁଜୁରାଟୀ ଢୋଲ, କବାଲୀରେ ଢୋଲକ ଆଦି ବଜାଇ ଖ୍ୟାତି ଅର୍ଜନ କରିଥିଲି । ସବୁଠାରୁ ମଜା କଥା, ଯେଉଁ ଅଞ୍ଚଳର ଗୀତ, ସେହି ଅଞ୍ଚଳର ବେଶପୋଷାକରେ ମୋତେ ସେମାନେ ସଜେଇ ଦେଉଥିଲେ । ମୁଁ ବି ସେସବୁ କଳାକାରମାନଙ୍କଠୁ ତାଙ୍କ ଅଞ୍ଚଳର ଗୀତନୃତ୍ୟ ଶିଖୁଥିଲି ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମ ମାଧ୍ୟମରେ । ଏମାନଙ୍କ ସହ ବଜେଇଲାବେଳେ ମୁଁ ମୋର ସୁନ୍ଦରଗଡ଼ରେ ରେଡ଼ିଓ ଗୀତ ଶୁଣି ଟେବୁଲ୍‌ପିଟିବା ଅଭ୍ୟାସକୁ ମନେମନେ ଧନ୍ୟବାଦ ଦେଉଥିଲି । ସେହି ଶିବିରରେ ଯୋଗ ଦେଇଥିବା ଛାତ୍ରମାନଙ୍କୁ

ପରିଶେଷରେ କର୍ଣ୍ଣାଟକର ବିଭିନ୍ନ ପର୍ଯ୍ୟଟନ ସ୍ଥଳମାନଙ୍କୁ ବସ୍‌ରେ ବୁଲାଗଲା । ବେଲୁର୍, ହାଲେବିଡ, ବାଙ୍ଗାଲୋର, ବୃନ୍ଦାବନ ଗାର୍ଡେନ୍ ଆଦି ବହୁସ୍ଥାନ ଆମେ ବନ୍ଧୁମାନେ ବୁଲି ଖୁବ୍ ଉପଭୋଗ କରିଥିଲୁ । ଆମ ବନ୍ଧୁତା ମଧ୍ୟ ଆହୁରି ନିବିଡ଼ ହେବାକୁ ଲାଗିଲା । ଫେରିବା ରାସ୍ତାରେ ମହୀଶୂର ରାଜାଙ୍କ ପେଲେସ, ବାଙ୍ଗାଲୋର ନଗର, ବମ୍ବେ, ପୁନା ଆଦି ଅଞ୍ଚଳ ବୁଲି ଦେଖିଥିଲୁ । ମେହେର ଆଜ୍ଞାଙ୍କ ଦିଗଦର୍ଶନରେ ଶୃଙ୍ଖଳିତ ଭାବରେ ଏହି ଯାତ୍ରା ସଫଳ ହୋଇଥିଲା । ପ୍ରଧାନ ଶିକ୍ଷକ ଶ୍ରୀ ମୂର୍ତ୍ତୀ ଆମ ଦଳକୁ ଶୁଭେଚ୍ଛା ଜଣେଇଥିଲେ । ରାଧାଚରଣ ମେହେର ଏବେ କାଳିବାଡ଼ି ନିକଟରେ ନିଜଘର ତିଆରି କରି ଅବସରୀଜୀବନ ଅତିବାହିତ କରୁଛନ୍ତି । ବନ୍ଧୁମାନଙ୍କ ମଧ୍ୟରୁ ଯୁଗଳ ଓଡ଼ିଶାର ମୁଖ୍ୟ ସଚିବ ପଦବୀରେ ରହି ଆମ ବେଚ୍‌ର ବନ୍ଧୁମାନଙ୍କ ପାଇଁ ଗୌରବ ଆଣିଛନ୍ତି, ଏବେ ସରକାରୀ ଚାକିରୀରୁ ଅବସର ନେଇ ଏକ ବେସରକାରୀ ପଦବୀରେ ଅଧିଷ୍ଠିତ ହୋଇ ବାଙ୍ଗାଲୋରରେ ରହୁଛନ୍ତି, ଅଶୋକ ଦାସ ସମ୍ବଲପୁରରୁ ଗଲାପରେ କେଉଁଠି କଣ କଲେ, ମତେ ଜଣା ନାହିଁ, ପିଥୁନ୍ ଏବେବି ରେଡ଼ିଓ ଜମାନା ଗଲା ପରେ ବି ଅନ୍ୟାନ୍ୟ ଯନ୍ତ୍ରପାତି ସହ ରେଡିଆ ଟିଭି ଆଦି ମରାମତି କରିବାର ଦୋକାନରେ ବସି ବେପାର କରୁଛନ୍ତି, ବିଜୟ ଦୋରା ଡାକ୍ତର ହୋଇ ସରକାରୀ ଚାକିରୀରୁ ଅବସର ନେଇ ସେବା ଜାରି ରଖିଛନ୍ତି, ଆଉ ଏଇ ଦୁଃଖିଧନ, ଅବସର ନେଲାଣି ଅଧ୍ୟାପକ ପଦବୀରୁ, ସଂଗୀତ, ସାହିତ୍ୟ ଓ ନାଟକର ନିଶାରୁ ଏବେବି ମୁକ୍ତ ହୋଇନାହିଁ । ଆମ ଏକସ୍ତରୀ ବେଚ୍‌ର ଛାତ୍ରବନ୍ଧୁମାନେ ବିଗତ ତିରିଶବର୍ଷ ହେଲା ପ୍ରତ୍ୟେକ ଡିସେମ୍ବର ତୃତୀୟ ରବିବାର ବଣଭୋଜି ମାଧ୍ୟମରେ ସମ୍ମିଳିତ ହେଉଛୁଁ । ଅଶୋକା ଟକିଜ୍ ଲେନ୍‌ର ମହାନ୍ତି ଇଲେକ୍‌ଟ୍ରୋନିକ୍ସର ମାଲିକ ଧର୍ମାନନ୍ଦ ମହାନ୍ତି ଓ ନୂତନ ଟେଣ୍ଟ ହାଉସ୍‌ର ମାଲିକ ଶତ୍ରୁଘ୍ନଲାଲ ସାହା ଏହି ସମାବେଶର ନେତୃତ୍ୱ ନେଉଛନ୍ତି । ଦୁର୍ଭାଗ୍ୟବଶତଃ ଧର୍ମା ଆଉ ଇହ ଜଗତରେ ନାହାନ୍ତି ।

ଏହି ଅନୁଭୂତି ପରେ ଶିଳ୍ପୀ ଅନୁଷ୍ଠାନ ତରଫରୁ ନାଟକ ପ୍ରତିଯୋଗିତାରେ ଅଂଶଗ୍ରହଣ କରିବା ପାଇଁ ଏଲ୍ଲାହାବାଦ ଯାଇଥିବାବେଳେ କେମ୍ପଫାୟାର୍ ବେଳେ ମଧ୍ୟ ଠିକ୍ ସେହିପରି ବିଭିନ୍ନ ଅଞ୍ଚଳରୁ ଆସିଥିବା ନୃତ୍ୟ ଦଳ ସହ ବାଦ୍ୟ ସହ ସହଯୋଗିତା କରିବା ପାଇଁ ପଡ଼ିଲା । କବାଲିରେ ଆଲିଗଡ଼ ବିଶ୍ୱବିଦ୍ୟାଳୟରୁ ଆସିଥିବା ଦଳ, ଅହମ୍ମଦାବାଦ୍‌ରୁ ଆସିଥିବା ଦାଣ୍ଡିଆ, ଲଦାଖ୍‌ରୁ ଆସିଥିବା ନେପାଳୀ ନୃତ୍ୟଦଳ ଭଳି ଆହୁରି ଅନେକଦଳର କାର୍ଯ୍ୟକ୍ରମରେ ମୁଁ ବାଦ୍ୟକାର ଭାବରେ ଯୋଗଦେଇଥିଲି ।

ଏହିବର୍ଷ ଆମସହ ଯାଇଥିବା ମହମ୍ମଦ ସୁଲେମାନ ଦିୱାନା ନିଜ ପ୍ରତିଭାର ସଦୁପଯୋଗ କରି ଶ୍ରେଷ୍ଠ କଳାକାର ଭାବରେ ପୁରସ୍କୃତ ହୋଇଥିଲେ । ଏଠାରେ ଶିଳ୍ପୀ ଅନୁଷ୍ଠାନ ଭବାନୀ ଦାସଙ୍କ ନିର୍ଦ୍ଦେଶନାରେ ଅଭିନୀତ କରିଥିଲା ଶୈଳେଶ ପଟ୍ଟନାୟକଙ୍କ ରଚିତ 'ତୁମେ ଆମେ ନା ସେମାନେ' ନାଟକଟି । ଏଥିରେ ମୁଁ ଅରୁଣ ସେଠଙ୍କ ସହ ପ୍ରଚ୍ଛଦ ସଂଗୀତରେ ସହଯୋଗ କରିଥିଲି ।

ଆମ ପରିବାର ସୁନ୍ଦରଗଡ଼ରେ ଥିବା ବେଳେ ସମ୍ବଲପୁରରେ ଅଶୋକ ଟକିଜ୍ ଉଦ୍‌ଘାଟିତ ହୋଇଥିଲା, ପ୍ରଥମ ସିନେମା ଭାବରେ ଦିଲୀପ କୁମାର ଅଭିନୀତ ଦିଲ୍ ଦିଆ ଦର୍ଦ ଲିୟା ରିଲିଜ୍ ହୋଇଥିଲା । ଏଥିପୂର୍ବରୁ ଗେଇଟୀ ଓ ଲକ୍ଷ୍ମୀ ଟକିଜ୍ ସ୍ଥାପିତ ହୋଇ ସାରିଥିଲା । ସୁନ୍ଦରଗଡ଼ ଭଳି ଭବାନୀପାଟଣାରେ ମଧ୍ୟ ଭାବନୀ ଟକିଜ୍‌ରେ ସିନେମା ଦେଖା ଅଭ୍ୟାସ ଜାରି ରହିଥିଲା । ରାଜକପୁରଙ୍କ ଜିସ୍ ଦେଶ୍‌ମେ ଗଙ୍ଗା ବହତି ହୈ, ଦୋସ୍ତି ଆଦି ସିନେମା ସୁନ୍ଦରଗଡ଼ରେ ଦେଖିଥିବାବେଳେ ସଙ୍ଗମ, ଫୁଲ ଔର ପଥର ସିନେମା ଭବାନୀପାଟଣାରେ ଦେଖିଥିଲୁ । ଅନେକ ସିନେମା ଭିତରେ ଓ୍ୱକ୍ତ ସିନେମାଟି ଆମ ପରିବାରର ସମସ୍ତଙ୍କୁ ପ୍ରଭାବିତ କରିଥିଲା । ଏହି ସିନେମାର ଗୀତ, ଏ ମେରେ ଜେହେରଜବୀ, ତୁଝେ ମାଲୁମ୍ ନେହିଁ ଗୀତଟି ମୋ ବାପାଙ୍କ ମନପସନ୍ଦର ଗୀତ ଥିଲା । ସିନେମାର କଥା ଏଥିପାଇଁ ବଖାଣୁଛି, ଯେହେତୁ, ଆମ ପିଢ଼ିର ପିଲାମାନଙ୍କ ଜୀବନରେ ଚଳଚ୍ଚିତ୍ରର ଏକ ସ୍ୱତନ୍ତ୍ର ଭୂମିକା ରହୁଥିଲା । ଚଳଚ୍ଚିତ୍ରର ଅଭିନୟ, ସଂଗୀତ, ଟେକ୍‌ନିକ୍, ଓଡ଼ିଆ ସିନେମାର ବିକାଶ ସହ ଆମ ସର୍ଜନଶୀଳ ପ୍ରବୃତ୍ତି ଜଡ଼ିତ ଥିଲା । ଏଇ ପ୍ରବୃତ୍ତି ଥିବାରୁ ତ ସବ୍ୟସାଚୀ ମାହାପତ୍ର, ପୃଥ୍ୱୀରାଜ ନାୟକ, ଅପରାଜିତା ପ୍ରିୟଦର୍ଶିନୀ, ରୀତା ଚାନ୍ଦ, ବିଭୂତି ପଟ୍ଟନାୟକ, ଫକୀର ପଟ୍ଟନାୟକ, କ୍ରିଷ୍ଣା ପଟେଲ, ଅଭିଜୀତ୍ ମଜୁମଦାର, ବ୍ରଜେନ୍ଦ୍ର ନାୟକ, ନିର୍ମଳ ନାୟକ ବିଭିନ୍ନମାଧ୍ୟରେ ଚଳଚ୍ଚିତ୍ର ଜଗତକୁ ଆସି ଖ୍ୟାତିଅର୍ଜନ କରିଛନ୍ତି । ତେଣୁ, ସିନେମା ଦେଖିବା ଖାଲି ମନୋରଞ୍ଜନ ପାଇଁ ନ ହୋଇ ସେ ଶିଳ୍ପ ସହ ଯୋଡ଼ିହୋଇ ନିଜ ଅଭିଳାଷ ପୂରଣକରିବାର ଉଦ୍ଦେଶ୍ୟ ମଧ୍ୟ ଜଡ଼ିତ ଥିଲା ।

ଏଭଳି ରାସ୍ତାରେ ମୁଁ ମଧ୍ୟ ପଡ଼ିଥିଲି, ହେଲେ ବିଫଳ ମନୋରଥ ହୋଇ ସେଥିରୁ ନିଜକୁ ଦୂରେଇ ରଖି ମଞ୍ଚ ସହ ଯୋଡ଼ିରହିଲି । 'ଅଶାନ୍ତ ଗ୍ରହ' ସିନେମା ନିର୍ମାଣ ବେଳେ ଏକମାସ ଧରି ପ୍ରଯୋଜନା କ୍ଷେତ୍ରରେ ଜଡ଼ିତ ଥିଲି, ଶରତ ପୂଜାରୀଙ୍କ ଭଳି କିମ୍ବଦନ୍ତୀ କଳାକାରଙ୍କ ସହ କାମ କରିବାର ସୌଭାଗ୍ୟ ପ୍ରାପ୍ତ ହୋଇଛି, ଶିଳ୍ପୀର 'ଅସ୍ତରାଗ'ରେ ମଧ୍ୟ ପନ୍ଦର ଦିନ ପ୍ରଯୋଜନା କାର୍ଯ୍ୟରେ ସହଯୋଗ କରିଥିଲି । ତେବେ

ସିନେମାର ରାସ୍ତା ବଡ଼ ପିଚ୍ଛିଳ, ମୋ ଭଳି ସାଧାରଣ ଲୋକପାଇଁ ସେଠି ପାଦ ପକାଇବା ଅସମ୍ଭବ ବୋଧ ହେବାରୁ ସେଥିରୁ ବିରତ ହେଲି ଏବଂ ନାଟକ ସହ ସମ୍ପର୍କକୁ ଆହୁରି ଶକ୍ତକରିବାର ପ୍ରୟାସ କଲି ।

ମେଟ୍ରିକ ପରେ ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ନାମ ଲେଖାଇବା ପରେ ଯୌବନର ପହିଲି ପରଶ ଛୁଇଁ ସାରିଥିଲା । ଚଞ୍ଚଳ ମନ, ପାହାଡ଼ ଧସାଇବା ଭଳି ଶତସିଂହର ବଳ, ମାନସରେ ସୃଜନୀକାର ପ୍ରଖରତା, ଏବର ସଙ୍ଗରୋଧ ନୁହେଁ, ସଙ୍ଗବଦ୍ଧତାର ସଙ୍କଳ୍ପିତ ପ୍ରତିବଦ୍ଧତା, କଲେଜରେ ନୂଆଁକରି ପାଦ ଥାପିବାର ଶିହରଣ, ଜୀବନରେ ପହିଲିଥର ଝିଅମାନଙ୍କ ସହ ଏକତ୍ର ବସି କ୍ଲାସ୍ ରୁମ୍‌ରେ ପାଠପଢ଼ିବା, ଝିଅ ସାଙ୍ଗମାନଙ୍କ ସହ ସଂସ୍ପର୍ଶରେ ଆସିବା, ନୂଆଁନୂଆଁ ସ୍ୱପ୍ନ ଦେଖି ତାକୁ ସାକାର କରିବାର ଦୁର୍ବାର ପଦକ୍ଷେପ ନେବା, ନୂଆଁ ସାଇକଲ୍ କିଣି, ଚଢ଼ି ସାଙ୍ଗମାନଙ୍କ ସହ କଲେଜ୍ ଯିବା, ଅଧ୍ୟାପକ-ଅଧ୍ୟାପିକାମାନଙ୍କ ସହ ପରିଚିତ ହେବା ଭଳି ଅନେକ ନୂତନ ଅନୁଭବର ପୃଥିବୀଟିଏ ଆଖିଆଗରେ ନିଜପରିଧିରେ ଘୂରିବାକୁ ଲାଗିଲା । କଲେଜ୍ କଲେଜ ଅଟେ, ତା ପାଦ ଯେ ଛୁଇଁ ନାହିଁ, ସେ ଜୀବନ କି ଜୀବନ ! ! ତା ପୁଣି ଜି.ଏମ୍. କଲେଜ୍ ଭଳି କଲେଜ୍, ସେ ତ ଇଟା ସିମେଣ୍ଟର ଖାଲି ବଲ୍‌ଡିଂଟିଏ ନୁହେଁ, ବର ଯୌବନକୁ ସଜାଡ଼ିବାର, ମାର୍ଜିତ କରିବାର, ଶୃଙ୍ଖଳିତ କରିବାର ଏକ ଗୁରୁକୁଳାଶ୍ରମ । ଆମ ବେଚ୍‌ର ଅଧିକାଂଶ ମେଟ୍ରିକ୍‌ଉତ୍ତୀର୍ଣ୍ଣ ଛାତ୍ରବନ୍ଧୁମାନେ ଗଙ୍ଗାଧର ମେହେର କଲେଜ୍‌କୁ ପ୍ରବେଶ କଲୁଁ, ନୂଆଁ ଆଶାରେ, ନୂଆଁ ଉଦ୍ଦୀପନାରେ, ଜୀବନକୁ ନୂତନ ସ୍ୱପ୍ନିଳ ଉପାଦାନରେ ସଜେଇବା ପାଇଁ, ହେଲେ. ବିଜ୍ଞାନ, କଳା, ବାଣିଜ୍ୟର ବୈଭାଗିକ ଚୋଟରେ ସାଙ୍ଗମାନେ ଭାଗଭାଗ ହୋଇଗଲୁ । କିଛି ପୁରୁଣା କିଛି ନୂଆ ସାଙ୍ଗମାନଙ୍କ ସହ ଜୀବନ ଦୌଡ଼ିବାରେ ଲାଗିଲା, ଟ୍ରେକ୍‌ରେ ଶହେ ମିଟର୍ ଦୌଡ଼ରେ ଭାଗ ନେଲା ପରି । ଯୌବନ ଥରେ ଗଲେ ଆଉ ଫେରେନା କବିତାର ପ୍ରତିଟି ଶବ୍ଦକୁ ଅକ୍ଷରେ ଅକ୍ଷରେ ପାଳନ କରିବାର ବଦ୍ଧପରିକରତା ଆମ ନିଦ ହଜେଇଦେଉଥିଲା ।



ଜିଲ୍ଲାସ୍କୁଲରେ ପଢ଼ିବା ବେଳେ ମୁଁ, କୈଳାସ ତ୍ରିପାଠୀ ଓ ମୁରଲୀ ମେହେର ଖୁବ୍ ସାଙ୍ଗ ହେଉଥିଲୁ, କୈଳାସ ମୋତେ ମାମା ବୋଲି ଡାକୁଥିଲେ । ତିନିଜଣ ଯାକ ସଂଗୀତପ୍ରେମୀ ଥିଲୁ । ମୁରଲୀ ମେହେର ମୁକେଶଙ୍କର ଗୀତଗୁଡ଼ିକୁ ଅନୁକରଣ କରି ଭଲଗାଉଥିଲେ, କୈଳାସ ଭଲ ବୋଙ୍ଗୋ ବଜାଉଥିଲେ, ଆଉ ମୁଁ ଢୋଲକ । କ୍ଲାସ

ଚାଲିଥିବା ବେଳେ ବି ପଛ ସିଟ୍‌ରେବସି ଆମ ଗୀତବାଦ୍ୟ ଚାଲୁଥିଲା । ଏଥି ପାଇଁ ନରସିଂହ ମାଷ୍ଟ୍ରେ ଆଉ ବାଙ୍କା ମାଷ୍ଟ୍ରେଙ୍କଠାରୁ ବହୁବାର ଚାପୁଡ଼ା ଓ ପେଟମୁଡ଼ା ଖାଇବାକୁ ପଡ଼ିଛି । ମୁରଲୀ ମେହେର ପିଲାଟିବେଳୁ ଅଭିନେତା ରାଜେଶଖାନ୍ନାଙ୍କ ଅନୁଗାମୀ ଥିଲେ । କଲେଜ ପଢ଼ିବାବେଳେ ତାଙ୍କ କେଶସଜ୍ଜା, ପୋଷାକ ପରିଚ୍ଛଦ, ଚାଖିଚାହାଣୀ, ଏପରି କି ଯୋତା ମଧ୍ୟ ରାଜେଶ ଖାନ୍ନାଙ୍କ ସହ ମେଳ ଖାଉଥିଲା । ଏବେ ଦଲେଇପଡ଼ାର ମେହେର ଗଳିରେ ନିଜ ନୂଆ ଘରେ ରହୁଛନ୍ତି, ଆୟକର ଟିକସର ଓକିଲଭାବରେ ଅଭ୍ୟାସ ଜାରି ରଖିଛନ୍ତି । କୈଳାସ ଓ ମୁଁ, ଭବିଷ୍ୟତରେ ଆମର ସଂଗୀତକଳା ଅଭ୍ୟାସ ପାଇଁ ନାଁ ମଧ୍ୟ ଅର୍ଜିଥିଲୁ । ଜି.ଏମ. କଲେଜ ଓ ଜ୍ୟୋତିବିହାରର ଅନେକ ସଂଗୀତ କାର୍ଯ୍ୟକ୍ରମରେ ତବଲା, ଢୋଲକ ଓ ନାଲ୍ ଭଳି ବାଦ୍ୟଯନ୍ତ୍ର ବଜାଉଥିଲି । ଯୋଗ ଏମିତି ହେଲା, ଆମେ ଦୁହେଁ ପରମାଣପୁର କଲେଜରେ ଅଧ୍ୟାପକ ଭାବରେ ଯୋଗଦେଇ ଜୀବନଜୀବିକା ଆରମ୍ଭ କଲୁ । ଲୁନାଟାଏ କିଣିଥିଲେ, ସେଥିରେ ବସି ଆମେ ଦୁହେଁ ମାସମାସ ଧରି ପରମାଣପୁର କଲେଜ୍ ଯାଉଥିଲୁ, ରାସ୍ତା ସାରା ମୁହେଁ ମୁହେଁ ଗୀତବାଦ୍ୟ । ଆମେ ଭେଟ ପଡ଼ିବା ମାତ୍ରେ ସଂଗୀତ ଚର୍ଚ୍ଚା ଆରମ୍ଭ ହୋଇଯାଉଥିଲା । କେଉଁ ନୂଆଁ ସିନେମା ରିଲିଜ୍ ହେଲା, ତାର ସଂଗୀତ ନିର୍ଦ୍ଦେଶକ କିଏ, କି କି ଗୀତରେ କେଉଁ କେଉଁ ତାଳବାଦ୍ୟ କିଭଳି ବାଜିଛି, ଏଇ ଚର୍ଚ୍ଚାରେ କେତେବେଳେ ଯେ ସମୟ ସରିଯାଉଥିଲା, ଆମକୁ ଜଣାପଡୁନଥିଲା । ଏମିତି ସମୟ ଥିଲା, ଆମକୁ ନ ଡାକି ଜ୍ୟୋତିବିହାରର କୌଣସି ବିଭାଗ ବାର୍ଷିକ ଉତ୍ସବ କରୁନଥିଲେ । କୁଚିଣ୍ଡା କଲେଜରେ ଥିବାବେଳେ ହଠାତ୍ କୈଳାସଙ୍କ ଦେହାନ୍ତ ଖବର ଜାଣି ମୁଁ ଭାଙ୍ଗିପଡିଥିଲି । ଶରୀରର ଗୋଟାଏ ଅଙ୍ଗଚ୍ଛେଦ ହେଲା ଭଳି ଅନୁଭବ ହେଲା । କୈଳାସଙ୍କ ପରିବାରର ତିନିଭାଇଙ୍କ ସହ ମୁଁ ଏକତ୍ର କାମକରିଛି । ଏକଦା ତାଙ୍କ ବଡ଼ ଭାଇ ଶିବପ୍ରସାଦ ବର୍ତ୍ତମାନ, ନାମରେ ଏକ ସାହିତ୍ୟ ପତ୍ରିକା ପ୍ରକାଶ କରୁଥିଲେ । ମୋତେ ସେ ସହସମ୍ପାଦନାର ଦାୟିତ୍ୱ ନ୍ୟସ୍ତ କରିଥିଲେ । ଏହି ପତ୍ରିକାର ପ୍ରଥମ ସଂଖ୍ୟା ପାଇଁ ଆମେ ଉଭୟ ସାତଆଠଦିନ କଟକରେ ରହି ପତ୍ରିକାଛପା ହେବାଯାଏଁ ବହୁ ପରିଶ୍ରମ କରିଥିଲୁ । ପରେ ଡ. ଶ୍ରଦ୍ଧାକର ସୁପକାର ଦୈନିକ ହୀରାଖଣ୍ଡର ସମ୍ପାଦକ ଥିବାବେଳେ ମୁଁ ତାଙ୍କ ସହ ସହସମ୍ପାଦନାର ଦାୟିତ୍ୱ କିଛି ମାସ ଧରି ନିଭାଇଥିଲି । କୈଳାସଙ୍କ ସାନ ଭାଇ ପଞ୍ଚାନନ ତ୍ରିପାଠୀ କିଛି ବର୍ଷ ପାଇଁ ଚିଚିଣ୍ଡା କଲେଜରେ ଇଂରାଜୀ ବିଭାଗର ଅଧ୍ୟାପକ ଭାବରେ କାର୍ଯ୍ୟ କରିଥିଲେ । ତେବେ କୈଳାସ ଥିଲେ ମୋର ଅତି ଅନ୍ତରଙ୍ଗ ବନ୍ଧୁ, ମୋ ସ୍ମୃତିରେ ସେ ଏବେ ବି ଜୀବିତ ଅଛନ୍ତି ।

ସୁନ୍ଦରଗଡ଼ ପର୍ଯ୍ୟାୟରେ ପାଖ ଦୋକାନରୁ ଅଣିଟିଏ ଦେଲେ ପେଡାଟିଏ ମିଳୁଥିଲା ବୋଲି ସୂଚନା ଦେଇଥିଲି । ମୁଁ ସେହି ଦୋକାନର ନିୟମିତ ପେଡା ଗ୍ରାହକ ଥିଲି । ଖାଇବା ପ୍ରତି ମୋର ଦୁର୍ବଳତା ଥିବା କଥା ମୋର ସବୁବନ୍ଧୁ ଜାଣନ୍ତି । ଆମଘରେ ସଂଖ୍ୟାଧିକ ଗାଈଗୋରୁ ଥିବା କଥା ଆଗରୁ କହିଛି । ତେଣୁ ଦୁଗ୍ଧ ଜାତୀୟ ମିଷ୍ଟ ଖାଦ୍ୟଗ୍ରହଣ କରିବା ଆମର ପିଲାଟିବେଳୁ ଅଭ୍ୟାସ ଥିଲା । ମାଁ ସେସବୁ ତିଆରି କରି ଆମକୁ ଖୁଆଇବାରେ ବହୁତ ଆତ୍ମତୃପ୍ତି ପାଉଥିଲା । ବଛା ବା ବାଛୁରୀଟିଏ ଜନମ୍ ହେଲେ ତାର ପ୍ରଥମ ଗୋରସରୁ ତିଆରି ହେଉଥିବା ପିଆଁସ, ମୋ ମନପସନ୍ଦର ବ୍ୟଞ୍ଜନ ଥିଲା । ପରେ ପରେ ସେଥିରୁ ଖିର୍ସା, ଛେନା, ପେଡା ଆଦି ମାଁ ଖୁବ୍ ସୁନ୍ଦର ତିଆରି କରି ଆମକୁ ଦେଉଥିଲା । ଏକାଦଶୀ କଲାବେଳେ ମାଁ ତାଙ୍କ ପାଇଁ ପୁରୀ ଓ ବିନା ମସଲା ତରକାରୀ ରାନ୍ଧି ଆମେ ଖାଇ ସାରିବା ପରେ ଖାଉଥିଲା । ମୁଁ ଯୁଟିଯାଉଥିଲି ତା ସହ ଖାଇବା ପାଇଁ । ମାଁ ତା ଭାଗରୁ ଦିପଟ ପୁରୀ ଓ କିଛି ତରକାରୀ ମୋ ଆଗରେ ଥୋଇଦେଉଥିଲା । ସେ ସ୍ୱାଦ ଅବର୍ଣ୍ଣନୀୟ । ସେମିତି ତ ଆମ ପରିବାରରେ ଆମିଷ ଯାଉ ନଥିଲା । ତେଣୁ ଦୁଗ୍ଧଜାତୀୟ ଖାଦ୍ୟର ପ୍ରଚୁର ପ୍ରଚଳନ ଥିଲା । ଆମ ଶୈଶବ, କୈଶୋର ତଥା ଯୌବନର ଅର୍ଦ୍ଧେକ ବୟସ ଏମିତି ଖାଦ୍ୟ ଗ୍ରହଣରେ କଟିଥିଲା । ତା ସହ ଜଡ଼ିତ ଥିଲା ଗୋ'ସେବା । ପୁଆଳକିଣା, ପୁଆଳ କାଟିବା, ଦାନା ପ୍ରସ୍ତୁତ କରି ଗାଈଗୋରୁଙ୍କୁ ଖୁଆଇବା, ଖତ ସବୁ ସଂଗ୍ରହକରି ଗୁହାଳକୁ ପରିଷ୍କାରକରି ରଖିବା, ସେମାନେ ଚରିଯାଇ ଘରକୁ ନ ଫେରିଲେ ଖୋଜିଯିବା, କାହା ଧାନକ୍ଷେତର ଧାନ ଖାଇଦେଲେ ଗାଳି ଶୁଣିବା ଆଦି କାର୍ଯ୍ୟରେ ମଧ୍ୟ ମୁଁ ଅଭ୍ୟସ୍ତଥିଲି । ପରେପରେ ବିରକ୍ତରେ ମାଁ ଲୋକବଳର ଅଭାବରେ ସବୁ ଗାଈମାନଙ୍କୁ ବିକ୍ରି କରିଦେଲା । ମୁଣ୍ଡରୁ ବୋଝ ଓହ୍ଲାଇଗଲା, ବିଶେଷତଃ ମୁଁ ଉଷ୍ମାସ ହେଲି କାର୍ଯ୍ୟତାଡ଼ନାରୁ । ତଥାପି ବେଳେବେଳେ, ସେମାନଙ୍କ ଅନୁପସ୍ଥିତି ଜୀବନକୁ ଅସ୍ତବ୍ୟସ୍ତ କରିପକାଏ ।

ହଁ, ମାଁ ଭଲ ଆମ୍ବିଳ ତିଆରି କରୁଥିଲା, ବିଶେଷତଃ କୋଳଥ ଆମ୍ବିଳ । ଏଇ କଥା, ଆମ ଘରକୁ ଆସିଥିବା ବୋହୂମାନେ ମଧ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି । କଳାହାଣ୍ଡି ରହଣିସମୟରୁ ଚାରୁପାଣି ଓ ରସମ୍ ପ୍ରତି ମୋର ଖୁବ୍ ଦୁର୍ବଳତା ଜନ୍ମିଥିଲା । ତେଣୁ ବର୍ଷା ଋତୁରେ ମାଁ ନିଶ୍ଚୟ ଚାରୁ କିମ୍ବା ରସମ୍ ଆମ ପାଇଁ ତିଆରୁଥିଲା ।

ପାଠପଢ଼ା ପ୍ରତି ମୋର ବିଶେଷ ଆଗ୍ରହ ନଥିଲା । ତେବେ ମେଟ୍ରିକ ପରୀକ୍ଷା ପାଇଁ ବାପା ମୋତେ ବେଲପାହାଡ଼ ନେଇଯାଇ ତାଙ୍କ ପାଖରେ ତିନିମାସ ରଖିଲେ । ସୂଚନାଯୋଗ୍ୟ ଯେ ବାପା ସତୁରୀ ମସିହାରେ ସିଆଇ ପଦବିରେ ଥାଇ ଅବସର

ନେଇଥିଲେ । ସେତେବେଳେ ପଞ୍ଚାବନ ବର୍ଷରେ ସରକାରୀ କର୍ମଚାରୀମାନେ ଅବସର ନେଉଥିଲେ । ଅବସର ପରେ ବାପା ବେଲପାହାଡ଼ ରିଫ୍ରେକ୍‌ଟ୍ରି ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ ଯୋଗ ଦେଲେ । ଏକସ୍ତରୀ ଏପ୍ରିଲରେ ମୋର ମେଟ୍ରିକ ପରୀକ୍ଷା । ବାପାଙ୍କ ପାଖରେ ତିନିମାସ ରହି ମୁଁ ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କଲି । ସେହି ହାଇସ୍କୁଲରେ ଥିବା ଶିକ୍ଷକ କ୍ଷେତ୍ରମୋହନ ମେହେର ମୋତେ ଗଣିତ ପଢ଼େଇଲେ, ଯାହାଙ୍କ ଆଦର୍ଶବାଦକୁ ନେଇ ଲେଖକ ମଙ୍ଗଲୁଚରଣ ବିଶ୍ୱାଳ 'ବିରଳ ବିଷ୍ଣୁ ଶର୍ମା' ବୋଲି ଏକ ପୁସ୍ତକ ରଚନା କରିଥିଲେ । ବାପା ନିଜେ ଇଂରାଜୀ ଓ ସଂସ୍କୃତ ପଢ଼େଇଲେ । ପରୀକ୍ଷା ପାଇଁ ସଚେତନ ହେଲି, ତା ସହ ନିଜେନିଜେ କେମିତି ଚଳିବାକୁ ହୁଏ, ତାର ମଧ୍ୟ ତାଲିମ୍ ପାଇଗଲି ।

ଉତ୍ଥାନପତନର ଜୀବନରେ ଏମିତି ଅନେକ ଅବସର ଆସିଛି, ଯାହା ଜୀବନକୁ ସରସିତ କରିବା ସହିତ ଶିକ୍ଷଣୀୟ ମଧ୍ୟ କରିଛି । ଆଜି ବାପାଙ୍କ ଶ୍ରାଦ୍ଧ ଦିବସ, ତାଙ୍କ ସ୍ମୃତିରେ ଏ ଅଧ୍ୟାୟଟି ସମର୍ପିତ କରୁଛି ।



**ବା**ଟବାଟରେ ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ପ୍ରତିମୂର୍ତ୍ତିକୁ ପ୍ରଣାମ କରି କଲେଜ୍‌ର ମୁଖ୍ୟଦ୍ୱାର ଦେଇ ପ୍ରବେଶ କରିବାର ଶିହରଣ ଏବେବି ମନେ ଅଛି । ନୂଆଁ କରି ନୂଆଁ ହାୱାଇ ଚପଲ୍ ପିନ୍ଧି ଭିତର ବାରଣ୍ଡାରେ ପାଦ ଦେଲା କ୍ଷଣି ପ୍ରଥମେ ପ୍ରଥମେ ଡର ମାଡିଲା, କାଳେ ଦାଦାମାନେ ଆଖପାଖରେ ଥିବେ, ମୋର ସରଳତାର ସୁଯୋଗ ନେଇ ରେଗିଂ ଆରମ୍ଭ କରିଦେବେ, ବିଭିନ୍ନ ପ୍ରଶ୍ନପଚାରି ହଇରାଣ କରିବେ, କାଳେ କେଉଁ ଝିଅ ସହ ଆଖି ମିଶିଗଲେ ସେ ଆସି ମୋତେ ଅପଦସ୍ତ କରିବ ! ନା, ସେମିତି କିଛି ଘଟିଲା ନାହିଁ, ବରଂ ପୂର୍ଣ୍ଣ ସ୍ୱାଧୀନତା ସହ ବାରଣ୍ଡା ସାରା ଏକଏକା ଘୂରି ଆସିଲି, ତଳେ ହଲ୍ ନମ୍ବର ଏକ, ତା ସାମ୍ନା ପାହାଚଦେଇ ଉପରକୁ ଉଠିଲେ ମୁହାଁମୁହିଁ ପଡେ ହଲ୍ ନମ୍ବର ଦୁଇ । ସମଗ୍ର କଲେଜର ବଡ଼କ୍ଲାସ ଏହି ଦୁଇ ପ୍ରକୋଷ୍ଠରେ ହିଁ ଅନୁଷ୍ଠିତ ହେଉଥିଲା । ଧିରେ ଧିରେ ଚୌଦ, ଛପନ, ବାଇଶ୍ ନମ୍ବର ପ୍ରକୋଷ୍ଠ ସହ ପରିଚିତ ହେଲି, କେଉଁ କେଉଁଠି ଅଛି ଜାଣିଲି । କୌଣସି ବି କ୍ଲାସ ଆରମ୍ଭ ପୂର୍ବରୁ ପିଲାମାନେ ଭିତରକୁ ଯାଇ ବସୁଥିଲେ, କୋଠରୀ ବାହାରେ ଛାତ୍ରୀମାନେ ବାହାରେ ଅପେକ୍ଷା କରୁଥିଲେ, ଅଧ୍ୟାପକ ଆସିଲେ ଯାଇ କ୍ଲାସଭିତରକୁ ଯାଉଥିଲେ ।

ଶ୍ରାବଣ ପୂର୍ଣ୍ଣିମା ତିଥିରେ ଗଙ୍ଗାଧର ମେହେରଙ୍କ ଜୟନ୍ତୀ, କଲେଜ୍‌ରେ ଆୟୋଜିତ ପ୍ରଥମ ଉତ୍ସବରେ ଉପସ୍ଥିତ ରହି କଲେଜ୍ ଉତ୍ସବର ଗାମ୍ଭୀର୍ଯ୍ୟକୁ ଅନୁଭବ କଲି । ହଲ୍ ନମ୍ବର ଏକରେ ଆୟୋଜିତ ହେଉଥାଏ, ବିଶିଷ୍ଟବକ୍ତା ଗୌରୀକୁମାର ବ୍ରହ୍ମା ଆସିଥାନ୍ତି ମୁଖ୍ୟବକ୍ତା ଭାବରେ । ତାଙ୍କ ଓଜସ୍ୱିନୀ ଅଭିଭାଷଣରେ ମୁଁ ଚକିତ ହେଲି, ପ୍ରଭାବିତ ହେଲି, ସାହିତ୍ୟ ପ୍ରତି ଆକୃଷ୍ଟ ହେଲି । କଲେଜ୍‌ର ପ୍ରଥମ ବର୍ଷର ପାଠ୍ୟକ୍ରମକୁ ପ୍ରାକ୍ ବିଶ୍ୱବିଦ୍ୟାଳୟ ବୋଲି କୁହାଯାଉଥିଲା । ଇଂରାଜୀରେ ଆମେ ପି.ୟୁ. ଛାତ୍ର ବୋଲି ଚିହ୍ନଟ ହେଉଥିଲୁ । କଲେଜ୍ କ୍ଲାସ୍‌ସବୁ ନବା ଭିତରେ କଲେଜ୍ ବୋଲି ଯେଉଁ ଭୟଟିଏ ମନ ମଧ୍ୟରେ ମାଡ଼ିବସିଥିଲା, ତାହା କ୍ରମଶଃ ଦୂରିଭୂତ ହୋଇଗଲା । ବରଂ ତା'ସ୍ଥାନରେ ଜନ୍ମ ନେଲା ମୁକ୍ତ ଜୀବନର ଆଭାସ, ମନ ସାଙ୍ଗକୁ ଶରୀର ମଧ୍ୟ ସ୍ୱାଧୀନ ଭାବରେ ବିଚରଣ କରିବାକୁ ଲାଗିଲା । ସାରା କଲେଜ୍‌ର ଚୌତରା, ମଧ୍ୟଭାଗରେ ଥିବା ସବୁଜ ଗାଲିଚା ପରି ଶାଢ଼ୀର ପଣତକାନୀ ମେଲାଇ ପଡ଼ିଥିବା ପ୍ରାନ୍ତର, ମୁଖ୍ୟଦ୍ୱାର ଦେଇ ଲମ୍ବିଯାଇଥିବା ଅଫିସ୍, ଅଧ୍ୟକ୍ଷଙ୍କ ଚେମ୍ବର, ସାଇନ୍ସ ବ୍ଲକ, ଜୁଲୋଜୀ, ରସାୟନ, ବିଜ୍ଞାନାଗାରରୁ ନିର୍ଗତ ରାସାୟନିକ ଗନ୍ଧ, ପାହାଚଦେଇ ଉପରକୁ ଗଲେ ମୁକ୍ତ ବାୟୁର ସଂଚରଣ, ବାମପଟକୁ ଗଲେ ଆକର୍ଷଣୀୟ ବିଉଟି କର୍ଣ୍ଣର୍, ଆଉ ଟିକିଏ ଆଗକୁ ଗଲେ ଲେଡିସ୍ କମନ୍ ରୁମ୍ । ପ୍ରଥମ ବର୍ଷର ଛାତ୍ର ତ, କଲେଜ୍ ଆସିଲାମାନେ ଏତିକି ଅଞ୍ଚଳ ବାରମ୍ବାର ବିନାକାରଣରେ ଘୂରିବାକୁ ହେଉଥିଲା, ସାଙ୍ଗମାନଙ୍କ ସହ ଗପିଗପି ସମୟ ବିତେଇବାକୁ ହେଉଥିଲା, କଲେଜ୍ ସାମ୍ନାରେ ଧାନ୍‌ଜୀଭାଇ ହୋଟେଲ୍‌କୁ ଯାଇ ଚା' ଜଳଖିଆ କରିବାକୁ ପଡୁଥିଲା । କହିବାକୁ ଗଲେ ପାଦ ତଳେ ପଡୁନଥିଲା, ଖରଖସିଆ ମୁହଁରେ ପାଉଡ଼ର ମାଖି କଲେଜ୍ ଯିବାକୁ ପଡିଲା, କେଶସଜ୍ଜା ବି ନିଜନିଜ ସିନେମା ହିରୋଙ୍କ ଡିଜାଇନ୍‌ରେ ସଜେଇବାକୁ ପଡୁଥିଲା, ମୁହଁରେ ସଦା ମୁରୁକୁନ୍ଦୀ ହସ ପ୍ରକଟେଇବା ପାଇଁ ପଡିଲା, ଇସ୍ତ୍ରୀ କରା ପେଣ୍ଟଜାମା ପିନ୍ଧି ଟିକେଟିକେ ଷ୍ଟାଇଲ ମାରିବାକୁ ପଡୁଥିଲା । ଦାଢ଼ୀ ଓ ମେଛା ଆଙ୍କୁରି ନିଜ ବୟସ ପ୍ରତି ସଚେତନ କରିଦେଲା, ଯିଏ ଦାଢ଼ି ରଖିଲା, ସେ ଦାଦା ଭାବରେ ପରିଚିତ ହେବାରେ ଲାଗିଲା, ଆଉ ସଫା ମୁହଁରେ ଗଲେ ଭାଇ ବା ହୀରୋ ।।

ସେତେବେଳେ ଜି.ଏମ୍. କେଲଜ୍‌ର ବାର୍ଷିକ ନାଟକ ସମଗ୍ର ସମ୍ବଲପୁର ସହରର ମୁଖ୍ୟ ନାଟ୍ୟୋତ୍ସବ ଭାବରେ ବିବେଚିତ ହେଉଥିଲା । ଏକାଦିକ୍ରମେ ଦୁଇରାତି ଧରି ଗୋଟାଏ ନାଟକ ଅଭିନୀତ ହେଉଥିଲା । ଦଶହରା ଛୁଟି ପରେ ଟେଷ୍ଟ ପରୀକ୍ଷା ପରେ କଲେଜ୍ କୋଠା ମଧ୍ୟଭାଗର ପ୍ରାନ୍ତରକୁ ଲାଗି ପ୍ରଜାପତି ଢାଞ୍ଚାର ତ୍ରିମୁଖୀ ମଣ୍ଡପରେ ନାଟକ ମଞ୍ଚସ୍ଥ ହେଉଥିଲା । ଯେହେତୁ ପ୍ରଥମ ବର୍ଷର ଛାତ୍ର, କେବେ ରିହାର୍ସାଲ୍ ଆରମ୍ଭ

ହେଲା, କେଉଁଠି ହେଲା, ବିଲ୍‌କୁଲ୍ ଜାଣି ହେଉନଥିଲା । ନୋଟିସ ଛପା ହୋଇଗଲା, ଏତିକି ତାରିଖରେ ନାଟକ 'ପଳାତକ' ମଞ୍ଚସ୍ଥ ହେବ । ପ୍ରଥମ ରାତି ଛାତ୍ରଛାତ୍ରୀମାନଙ୍କ ପାଇଁ, ଦ୍ୱିତୀୟ ରାତି ସମ୍ବଲପୁରର ମାନ୍ୟଗଣ୍ୟ ଅତିଥି ଓ ସାଧାରଣ ଦର୍ଶକମାନଙ୍କ ପାଇଁ । ନୋଟିସ୍ ପଢ଼ିଲାକ୍ଷଣି ମୁଁ ପୁଲକିତ ହୋଇଗଲି, ଜାଣିଲି, କଲେଜ୍‌ରେ ବି ନାଟକ ହୁଏ, ଛାତ୍ରଛାତ୍ରୀମାନେ ଅଭିନୟ କରନ୍ତି, ପୁରସ୍କୃତ ହୁଅନ୍ତି ।

ନାଟକ ମଞ୍ଚସ୍ଥ ହେବାର ଦିନ ପାଖେଇ ଆସିଲା, ଆମେ ସାଙ୍ଗମାନେ ପ୍ରସ୍ତୁତ ହୋଇଗଲୁ ଦେଖିଆସିବା ପାଇଁ, କିଏ କାହା ସାଇକଲ୍‌ରେ ବସିବ, ଠିକଣା ହୋଇଗଲା । ନାଟକ ଆରମ୍ଭହେବା ଘଣ୍ଟାଏ ପୂର୍ବରୁ ମୁଁ ଏବଂ ମୋ ସାଙ୍ଗମାନେ ଭିତରକୁ ଯାଇ ନିଜନିଜ ଇଚ୍ଛାନୁସାରେ ଚୌକିରେ ବସିପଡିଲୁ । ଯେହେତୁ ସେ ଥିଲା ପ୍ରଥମ ରାତି, କେବଳ କଲେଜ୍‌ର ଛାତ୍ରଛାତ୍ରୀମାନଙ୍କ ପାଇଁ, ତେଣୁ ଚୌକି ଖାଲି ଥିବା ଦେଖି ଆଗଧାଡ଼ିରେ ମୁଁ ବସି ପଡ଼ିଲି ନିର୍ଭୟରେ । ମୋ ସାମ୍ନାରେ ଲମ୍ବା ହୋଇ ଦରି ପଡ଼ିଥିଲା । ଧିରେ ଧିରେ ଭିଡ଼ ବଢ଼ିବାରେ ଲାଗିଲା, ଏନ୍‌ସିସି କେଡେଟ୍‌ମାନେ ଶାନ୍ତିଶୃଙ୍ଖଳା ଦାୟିତ୍ୱ ନିର୍ବାହ କରୁଥିଲେ । ମୋ ଆଗରେ ପରଦା ପଡ଼ିଥିବା ସୁସଜ୍ଜିତ ମଣ୍ଡପ । ସିଟ୍ ନ ପାଇ ବହୁ ଛାତ୍ରୀ ଆଗରେ ପଡ଼ିଥିବା ଦରିଗୁଡ଼ିକରେ ବସି ପଡ଼ିଲେ । ସମସ୍ତଙ୍କ କେତେ ଆଗ୍ରହ ନାଟକ ଦେଖିବାପାଇଁ ।

ସେ ବର୍ଷ ପ୍ରଫୁଲ୍ଲକୁମାର ହୋତା ନାଟ୍ୟ ସଂସଦର ସମ୍ପାଦକ ଭାବରେ ନିର୍ବାଚିତ ହୋଇଥିଲେ ଏବଂ ତାଙ୍କ ବଳିଷ୍ଠ ପରିଚାଳନାରେ ପ୍ରଫୁଲ୍ଲ ରଥଙ୍କ ରଚିତ ନାଟକ 'ପଳାତକ' ମଞ୍ଚାୟନ ହେବାକୁ ଯାଉଛି । ଜୀବନରେ ମାତ୍ର ଦୁଇଟି ମଞ୍ଚ ନାଟକ ଓ ଗୋଟିଏ ବେତାର ନାଟକର ଅନୁଭୂତି ନେଇ ମୁଁ ଆସିଥିଲି ନାଟ୍ୟକଳାର ପ୍ରଶସ୍ତତା ସମ୍ପର୍କରେ ଜ୍ଞାନ ଆହରଣ କରିବା ପାଇଁ, ମଞ୍ଚସଜ୍ଜା କେମିତି ହୁଏ, କିଭଳି ଚରିତ୍ରରେ କେମିତି ଅଭିନୟ କରିବା ପାଇଁ ହୁଏ, ସଂଗୀତ, ଆଲୋକ, ଶବ୍ଦ ସବୁ କିଭଳି ପରିଚାଳିତ ହୁଏ, ସବୁ ଲକ୍ଷ୍ୟ କରିବା ପାଇଁ । ବେଶ୍, ଅଧ୍ୟକ୍ଷଙ୍କ ସହ ଅଧ୍ୟାପକ, ଅଧ୍ୟାପିକାମାନେ ଆସି ସ୍ୱ ସ୍ୱ ସ୍ଥାନ ଅଧିକାର କଲାପରେ ନାଟକ ଆରମ୍ଭ ହେଲା । ତିନୋଟି ମଞ୍ଚରେ ନାଟକର ତିନୋଟି ଦୃଶ୍ୟ ସଜ୍ଜା । କୌଣସି କଳାକାରମାନଙ୍କୁ ନ ଚିହ୍ନିଥିଲେ ବି ଅଗ୍ରଜମାନଙ୍କୁ ପଚାରି ସେମାନଙ୍କ ପରିଚୟ ପାଇଲି । ବରଗଡ଼ର ହରିହର ମିଶ୍ର ନାଟକର ଖଳନାୟକ କୁମ୍ଭକର୍ଣ୍ଣ ଚରିତ୍ରରେ ଖୁବ୍ ପ୍ରଭାବଶାଳୀ ଅଭିନୟ କରିଥିଲେ । ଅନ୍ୟାନ୍ୟ ଚରିତ୍ରରେ ଦୀପ୍ତି ପତି, ଅଶୋକ ତ୍ରିପାଠୀ, ଦିଲୀପ ପଣ୍ଡା ଆଦି ବିଶିଷ୍ଟ କଳାକାରମାନଙ୍କ ବଳିଷ୍ଠ ଅଭିନୟରେ ନାଟକଟି ସଫଳତାର ସହ

ଅଭିନୀତ ହେଲା । ହରିହର ମିଶ୍ର ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହେଲେ । ନାଟକଟିକୁ ପୂର୍ଣ୍ଣ ମାତ୍ରାରେ ଉପଭୋଗ କରିବା ସଂଗେ ଅନୁଭବ କଲି ମୋ ସାମ୍ନାରେ ବସିଥିବା ଆମ କ୍ଲାସର ଜନୈକା ଛାତ୍ରୀ ବସି ନାଟକଟିକୁ ମୋ ଭଳି ଉପଭୋଗ କରୁଥିଲେ । ନାଟକର ବିଭିନ୍ନଦୃଶ୍ୟ ବେଳେ ଆମେ ଉଭୟଙ୍କୁ ଚାହୁଁଥିଲୁ, ହସୁଥିଲୁ, ନୀରବରେ ନିଜନିଜ ଭାଷାରେ କଥା ହେଉଥିଲୁ, ଆଖିରେ ଆଖିରେ ଭାବ ବିନିମୟ କରୁଥିଲୁ, ଆମେ ଆଉ ଆମ ଆୟତ୍ତରେ ନଥିଲୁ, ସେଇଠୁ ଆରମ୍ଭ ହେଲା ଜୀବନର ମହାନାଟକ, ନାଟକ ସିନା ଥିଲା ପଳାତକ, କିନ୍ତୁ ଯୌବନର ଏହି ପହିଲି ପରଶରେ ଲଭିଥିବା ସ୍ୱର୍ଣ୍ଣାନୁଭୂତିକୁ ହାତଛଡ଼ା କରିବା ଅବସ୍ଥାରେ ନଥିଲି । ସଙ୍କଳ୍ପ ନେଲି, ମୁଁ ପଳାତକ ହେବି ନାହିଁ । ଖରାଛୁଟିରେ ବିଭୂତି ପଟ୍ଟନାୟକଙ୍କ ଉପନ୍ୟାସ ପଢ଼ି ଜାଣିଥିଲି, ପ୍ରଥମପ୍ରେମକୁ କେବେ ଭୁଲି ହୁଏ ନାହିଁ ।

ମୁଁ ଭୁଲିନାହିଁ, ଭୁଲିବାର ଚେଷ୍ଟା ବି କଲିନାହିଁ, ବରଂ ସେଇ ଝିଅକୁ ନେଇ ସ୍ୱପ୍ନ ଦେଖିବାରେ ଲାଗିଲି, ଏକସ୍ତରୀ ସାଲ୍‌ର ସେଇ ପ୍ରଥମ ପ୍ରେମ, ସାର୍ଥକ ହେଲା ଠିକ୍ ଦଶବର୍ଷ ପରେ, ଏକାଅଶୀ, ଜାନୁଆରୀ ଅଣତିରିଶ ତାରିଖରେ, ଯେବେ ବରଯାତ୍ରୀ ଦଳରେ ଯାଇ ହାତଧରି ନେଇଆସିଲି ଘରକୁ ଜୀବନସାଥୀ ଭାବରେ ଗ୍ରହଣ କରି ।

ତା'ପର ବର୍ଷ ଜି.ଏମ୍. କଲେଜର ବାର୍ଷିକ ନାଟ୍ୟୋତ୍ସବରେ ଅଭିନୀତ ହେଲା ହେଲା ପ୍ରଫୁଲ୍ଲ ରଥଙ୍କ ରଚିତ ଅନ୍ୟ ଏକ ମନୋରଞ୍ଜନ ଧର୍ମୀ ନାଟକ 'ମୋର ବା ଦୋଷ କଣ' ! !

କୁହନ୍ତୁ, ଏତେ ସବୁ ଘଟଣା ଘଟିଗଲା, ମୋର ବା ଦୋଷ କଣ ! ! !



**ଗ**ଙ୍ଗାଧର ମେହେର ମହାବିଦ୍ୟାଳୟରେ ଚାରିବର୍ଷର ପାଠ୍ୟକ୍ରମ, ପ୍ରାକ୍ ବିଶ୍ୱବିଦ୍ୟାଳୟ, ପ୍ରଥମବର୍ଷ ଡିଗ୍ରୀ, ବି.ଏ. ଦ୍ୱିତୀୟବର୍ଷ ଓ ତୃତୀୟ ବା ବି.ଏ. ଶେଷବର୍ଷ, ଏଇ ଚାରି ବର୍ଷରେ ତିନୋଟି ବିଶ୍ୱବିଦ୍ୟାଳୟ ସ୍ତରର ପରୀକ୍ଷା ପିୟୁ, ପ୍ରଥମ ବର୍ଷ ଡିଗ୍ରୀ ଏବଂ ବିଏ ଶେଷବର୍ଷ ସ୍ନାତକ । ପିୟୁ ଉତ୍ତୀର୍ଣ୍ଣ ହେବା ପରେ ପ୍ରଥମ ବର୍ଷ ଡିଗ୍ରୀରେ ମୋର ବିଷୟ ଥିଲା ଇତିହାସ, ଅର୍ଥନୀତି ଓ ରାଜନୀତି ବିଜ୍ଞାନ । ଖରାଛୁଟି ପରେ ଏବଂ ନାଁ ଲେଖାହେବା ପରେ କ୍ଲାସ୍ ସବୁ ଧିରେ ଧିରେ ଆରମ୍ଭ ହେଲା । ସାହିତ୍ୟ ଶ୍ରେଣୀ ପାଇଁ ଆମେ ତଳେ ବୋଧହୁଏ କୋଡ଼ିଏ ନମ୍ବର ପ୍ରକୋଷ୍ଠରେ ବସି ଅଧ୍ୟାପକଙ୍କ ଆଗମନକୁ ଅପେକ୍ଷା କରିଥିଲୁ । କିଛି ସମୟ ପରେ ବାଙ୍ଗରା ହୋଇ ଜଣେ କଅଁଳିଆ

ଯୁବକ ରେଜିଷ୍ଟର ଧରି କୋଠରୀକୁ ପ୍ରବେଶ କଲେ । ରେଜିଷ୍ଟରକୁ ଟେବୁଲ୍ ଉପରେ ରଖିଦେଇ ଆରମ୍ଭକଲେ ତାଙ୍କ ଅଧ୍ୟାପନା । ଭାଷା, ସାହିତ୍ୟ, ସମାଜ ସହ ସାହିତ୍ୟର ସମ୍ପର୍କ, ସାହିତ୍ୟର ଉପଯୋଗିତା, ମଣିଷ ଜୀବନରେ ସାହିତ୍ୟର ଆବଶ୍ୟକତା, ଛାତ୍ରଛାତ୍ରୀମାନେ ସାହିତ୍ୟ କାହିଁକି ପଢ଼ିବେ, ସାହିତ୍ୟରେ ରୋମାଣ୍ଟିକ ଚେତନା ଆଦି ବିଷୟରେ ଅନର୍ଗଳ କହି ଚାଲିଲେ । ଆମେ ସମସ୍ତେ ଆବାକାବା ହୋଇ ନିଶ୍ଚୁପ୍ ହୋଇ ମନ୍ତ୍ରମୁଗ୍ଧ ଭାବରେ ଅଧ୍ୟାପକଙ୍କୁ କେବଳ ଶୁଣିଗଲୁ, କଲେଜ୍ ଜୀବନର ଗୋଟିଏ ବର୍ଷ ପାରି ହୋଇଗଲାଣି, ଅଥଚ ଏମିତି ଶ୍ରେଣୀଟିଏ ପାଇ ନଥିଲୁ । ମୁଁ ତ ଏତେ ପ୍ରଭାବିତ ହୋଇଗଲି ଯେ ତହିଁ ପରଦିନ ଅଫିସରେ ଦରଖାସ୍ତ ଦେଇଦେଲି, ଇତିହାସକୁ ବଦଳାଇ ମୋତେ ଓଡ଼ିଆ ପାସ୍ ବିଷୟ ଦିଆଯାଉ । ସେମିତି ବି ହେଲା, ଇତିହାସକୁ ବଦଳାଇ ଓଡ଼ିଆ ବିଷୟକୁ ମୁଁ ତୃତୀୟପତ୍ର ଭାବରେ ଗ୍ରହଣ କରିଥିଲି । ଯେଉଁ ଅଧ୍ୟାପକଙ୍କ ଗୋଟିଏ ଶ୍ରେଣୀରେ ଉପସ୍ଥିତ ରହି ତାଙ୍କ ପାଠ ପଢ଼ାଇବା ଶୈଳୀରେ ବିମୋହିତ ହୋଇ ମୁଁ ମୋର ବିଷୟ ବଦଳାଇବା ପାଇଁ ବାଧ୍ୟ ହେଲି, ସେ ଆଉ କେହି ନୁହନ୍ତି, ଆମ ପ୍ରିୟ ଓଡ଼ିଆ ସାର୍ ଡ. ଆଦିକନ୍ଦ ସାହୁ । ସେହିବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇ ପ୍ରଥମ କରି ଅଧ୍ୟାପକ ଭାବରେ ଜି.ଏମ୍. କଲେଜରେ ଯୋଗ ଦେଇଥିଲେ ଓ ମୋର ସୌଭାଗ୍ୟ, ତାଙ୍କ ପ୍ରଥମ ଶ୍ରେଣୀରେ ମୁଁ ଉପସ୍ଥିତ ରହି ତାଙ୍କ ମୁଖନିସୃତ ଅନର୍ଗଳ ଉଚ୍ଚାଙ୍ଗ ସାହିତ୍ୟିକ ଅଭିଭାଷଣର ବିମୁଗ୍ଧ ଶ୍ରୋତା ଥିଲି । ପରେପରେ ସାର୍‌ଙ୍କ ସହ ସମ୍ପର୍କ ବନ୍ଧୁତ୍ୱରେ ରୂପାୟିତ ହୋଇଗଲା, ନିବିଡ଼ ହୋଇଗଲା ଗୁରୁଶିଷ୍ୟ ସମ୍ବନ୍ଧ, ଆତ୍ମୀୟତାର ବନ୍ଧନରେ ସାର୍ ଆଜିଯାଏଁ ମୋ ସହ ଅନ୍ୟ ବନ୍ଧୁମାନଙ୍କୁ ବାନ୍ଧି ରଖିଛନ୍ତି । ସେହି ବର୍ଷ ଅନ୍ୟଜଣେ ଅଧ୍ୟାପକ ମଧ୍ୟ କଲେଜରେ ଯୋଗ ଦେଲେ, ଯେ ତାଙ୍କ ଅମାୟିକ ବ୍ୟବହାରରେ ଆମ ମନ କିଣିନେଇଥିଲେ । ତାଙ୍କ ପାଠ ପଢ଼ାଇବା ଶୈଳୀ ମଧ୍ୟ ନିଆରା, ବହିର ପ୍ରତ୍ୟେକଧାଡ଼ି ଆମେ ସ୍ପଷ୍ଟ ଭାବରେ ବୋଧଗମ୍ୟ ନ ହେବା ପର୍ଯ୍ୟନ୍ତ ଛାଡ଼ୁ ନଥିଲେ । ଜଣେ ପ୍ରବୁଦ୍ଧ କବିର ମାନସିକତାରେ ଅଳଙ୍କୃତ ହୋଇ ବୋଧଗମ୍ୟ ଶବ୍ଦ ଓ ବିନ୍ୟାସରେ ସେ ଛାତ୍ରଛାତ୍ରୀମାନଙ୍କୁ ଆକୃଷ୍ଟ କରିପାରୁଥିଲେ । ସେ ଅଧ୍ୟାପକ ଜଣକ ହେଉଛନ୍ତି ଡ. ବଳରାମ ମିଶ୍ର, ଯେ ସମ୍ପ୍ରତି ଅଧ୍ୟାପନାରୁ ଅବସରନେଇ ନିଜ ଗ୍ରାମ, ବୀରମହାରାଜପୁର ନିକଟସ୍ଥ ବାଗମାରୀରେ ଅବସ୍ଥାନ କରୁଛନ୍ତି । ମୋ ସହ ମୋର ସହପାଠୀମାନଙ୍କ ଜୀବନରେ ଏଇ ଦୁଇ ଅଧ୍ୟାପକଙ୍କ ପ୍ରଭାବ ବହୁମାତ୍ରାରେ ପଡ଼ିଛି ବୋଲି ମୋର ହୃଦ୍‌ବୋଧ ହୁଏ ।



ଅନ୍ୟାନ୍ୟ ଅଧ୍ୟାପକମାନଙ୍କ ମଧ୍ୟରେ ପ୍ରଫୁଲ୍ଲ ହାନ୍ତି, ବନମାଳୀ ମିଶ୍ର, ପ୍ରହଲ୍ଲାଦ ଜେନା ତଥା ଜାନକୀ ବଲ୍ଲଭ ମହାନ୍ତି ପ୍ରମୁଖ ଓଡ଼ିଆ ବିଭାଗ ମଣ୍ଡନ କରୁଥିଲେ । ଜାନକୀବାବୁ ବିଭାଗୀୟ ମୁଖ୍ୟ ଭାବରେ ଦାୟିତ୍ୱ ନିର୍ବାହ କରୁଥିଲେ । ପରେ ତାଙ୍କ ବଦଳି ପରେ ତ୍ରିଲୋଚନ ମେହେର ଯୋଗଦେଇ ବରିଷ୍ଠତା ଭିତ୍ତିରେ ବିଭାଗୀୟ ଦାୟିତ୍ୱ ଗ୍ରହଣ କରିଥିଲେ, ତାଙ୍କ ପୁଅ ଘନଶ୍ୟାମ ମେହେର ମୋର ସହପାଠୀ କେବଳ ନୁହେଁ, ଅନ୍ତରଙ୍ଗ ବନ୍ଧୁ ପାଲଟିଗଲା । ଏବେ ସେ ରାଜେନ୍ଦ୍ର କଲେଜ, ବଲାଙ୍ଗିରରୁ ଅଧ୍ୟାପକ ପଦବୀରେ ଥାଇ ଅବସର ନେଇ ବରଗଡ଼ ରହୁଛି ।

ଓଡ଼ିଆ ବିଭାଗର ଛାତ୍ର ହେଲ ମାନେ, ବିଭାଗୀୟ ଦାୟିତ୍ୱ ପଡ଼ିବ ହିଁ ପଡ଼ିବ । ବାସ୍ତରୀ ମସିହାରେ ପୁଣି ଆୟୋଜିତ ହେଲା ଗଙ୍ଗାଧର ଜୟନ୍ତୀ । ପରଦିନ ସକାଳ ଦଶଟାରେ ସଭା ଆରମ୍ଭ ହେବାରଥାଏ । ଦିନବେଳେ ପ୍ରାରମ୍ଭିକ ସଂଗୀତର ରିହାର୍ସାଲ ସରିଗଲା । ସମବେତ ସ୍ୱରରେ ପ୍ରସ୍ତୁତ ହେଲା, 'ବିଶ୍ୱ ଦେଖ ମଧୁମୟରେ ଜୀବନ' ଗୀତଟି । ସବୁ ସାର୍‌ମାନଙ୍କ ଭିତରେ ଘନଘନ ଆଲୋଚନା, ଜୟନ୍ତୀ ସଭାକୁ କିଭଳି ସଫଳ କରାଯିବ । ନୂଆଁ ହୋଇ ଡ. ଗଦାଧର ମିଶ୍ର ଅଧକ୍ଷ ଭାବରେ ଯୋଗ ଦେଇଥାନ୍ତି । ମୁଖ୍ୟବକ୍ତା ଭାବରେ ଯୋଗଦେବାର ଥାଏ ବିଶିଷ୍ଟ ଗାଳ୍ପିକ ରାଜକିଶୋର ରାୟଙ୍କର । ତାଙ୍କର ଭଉଣୀ ହରପ୍ରିୟା ମେଡମ୍ କଲେଜରେ ପ୍ରାଣୀ ବିଜ୍ଞାନ ବିଭାଗର ଅଧ୍ୟାପିକା ଭାବରେ ଥିଲେ, ଯେ ପ୍ରତିଷ୍ଠିତା ଚଳଚ୍ଚିତ୍ର ଅଭିନେତ୍ରୀ ଅପରାଜିତା ପ୍ରିୟଦର୍ଶିନୀଙ୍କ ମାଆ । ସନ୍ଧ୍ୟା ସୁଦ୍ଧା ପ୍ରାୟତଃ ସବୁ କାମଧାମ ଶେଷ ହୋଇଗଲା । ହଲ୍ ନମ୍ବର ଏକକୁ ପାରୁ ପର୍ଯ୍ୟନ୍ତ ସଜେଇ ଦିଆଗଲା । ସବୁ ଛାତ୍ର ବନ୍ଧୁମାନେ ନିଜନିଜ କାମ ସାରି ଘରକୁ ଫେରିଗଲେ । ରହିଲୁ ମୁଁ ଓ ପ୍ରଫୁଲ୍ଲ ନାଥ । ପ୍ରଫୁଲ୍ଲ ନାଥ ଯଦିଓ ଓଡ଼ିଆ ବିଭଗର ଛାତ୍ର ନଥିଲେ, ତଥାପି ମୋ ଭାଇ ଭଳିଆ ଥିଲେ ଅନୁଜବନ୍ଧୁ ଜଣେ । ତ୍ରିଲୋଚନବାବୁଙ୍କ ପୁଅ ଘନଶ୍ୟାମ ମଧ୍ୟ ପାଖରେ ଥିଲା, ତାଙ୍କ କ୍ୱାଟର୍ ପାଖରେ ଥିବାରୁ ସେ ମଧ୍ୟ ମୋ ସାଙ୍ଗରେ ପ୍ରାୟ ସବୁସମୟ ମହଜୁଦ୍ ରହୁଥିଲା । ଆମ ଭିତରେ ଆଲୋଚନା ହେଲା, ଜୟନ୍ତୀ ସଭା ପୂର୍ବରୁ ସର୍ବପ୍ରଥମେ କଲେଜ୍‌ସମ୍ମୁଖରେ ଥିବା ଗଙ୍ଗାଧରଙ୍କ ପ୍ରତିମୂର୍ତ୍ତିରେ ଅତିଥିମାନେ ମାଲ୍ୟାର୍ପଣ କରିବେ । ସେତେବେଳ ପର୍ଯ୍ୟନ୍ତ ମୂର୍ତ୍ତିକୁ ରଙ୍ଗ କରାଯାଇନଥିଲା । ଧୂଳି ବସି ମଳିଚିଆ ଦେଖାଯାଉଛି । ସାର୍‌ମାନଙ୍କ ତାଗିଦ୍, ମୂର୍ତ୍ତିଟି ଯେମିତି ସଫାହୁଏ ଓ ରଙ୍ଗ ହୁଏ । ରଙ୍ଗ କିଣିବାର ସାମର୍ଥ୍ୟ ନାହିଁ, ବିଭାଗ ତରଫରୁ କୌଣସି ବ୍ୟବସ୍ଥା ନାହିଁ । କଣ କରାଯିବ ! ! ଶେଷରେ ପ୍ରଫୁଲ୍ଲ ନାଥଙ୍କ ପ୍ରସ୍ତାବ ଅନୁସାରେ ମୂର୍ତ୍ତିରେ ପୋଡ଼ା ମୋବିଲ୍

ଲଗାଯିବ, ଯାହା ପାଖ ଗେରେଜ୍‌ରୁ ମାଗି ଆଣିହେବ, ମାନେ ମିଳିଯିବ । କଥାଟି ମୋ ମନକୁ ପାଇଲା । ବିଭାଗର ଇଜ୍ଜତର ବିଷୟ, ଅତିଥିମାନେ କଣ ଭାବିବେ, ଏତେ ବଡ଼ କଲେଜ୍, ଗଙ୍ଗାଧରଙ୍କ ମୂର୍ତ୍ତି ତାଙ୍କ ଜୟନ୍ତୀରେ ବି ରଙ୍ଗ କରାଯାଉନାହିଁ ! ! ମୋ ନାଁ ପଡ଼ିବ, ସାର୍‌ମାନେ ଗାଳି କରିବେ, ଏମିତି କେତେ କଥା । ଶେଷରେ ସେଇଆ ହିଁ ହେଲା, ପାଖ ଗେରେଜ୍‌ରୁ ପୋଡ଼ାମୋବିଲ୍ ଅଣାହେଲା । ମୁଁ ଆଉ ଘରକୁ ନ ଯାଇ କଲେଜ୍‌ରେ ହିଁ ରହିଗଲି । କଲେଜ୍‌ର ସୁଇପର୍ ତୁଫାନ୍‌କୁ କହି ଉପର ଲେଡିସ୍ କମନ୍‌ରୁମ୍ ଖୋଲାଗଲା । ରାତି ହେବା କ୍ଷଣି ମୁଁ ଓ ପ୍ରଫୁଲ୍ଲ ଆମ କାମରେ ଲାଗି ପଡିଲୁ । ବ୍ରସ୍ ତ ନୁହେଁ, କପଡ଼ାରେ ସାରା ମୂର୍ତ୍ତିଟିରେ ପୋଡ଼ାମୋବିଲ୍ ଲଗାଇବାରେ ଲାଗିପଡିଲୁ । ବାପା ଗାଳି ଦେବେ ବୋଲି ଘନ ଆଗରୁ ତା' ଘରକୁ ପଳାଇଗଲା । ରହିଲୁ ମୁଁ ଓ ମୋ ସାଙ୍ଗରେ ପ୍ରଫୁଲ୍ଲ ନାଥ, ଯାହାର ଓଡ଼ିଆ ବିଭାଗସହ କିଛି ଦେଣନେଣ ନଥିଲା । ସମଗ୍ର ମୂର୍ତ୍ତିଟାକୁ ଲଗାଉ ଲଗାଉ ରାତି ବାର ଟପିଗଲା । ସବୁ କାମ ସାରି ଯେତେବେଳେ ଲେଡିସ୍ କମନ୍ ରୁମ୍‌କୁ ଫେରି ଆସିଲୁ, ଆମ ଅବସ୍ଥା ନଥାଏ । ଦେହ ମୁହଁ, ପେଣ୍ଟ ସାର୍ଟ ସବୁଆଡ଼େ ପୋଡ଼ାମୋବିଲ୍‌ର ମେଞ୍ଚା ମେଞ୍ଚା ଦାଗ, ନିଜ ଚେହେରା ଦେଖି ହସିବୁ ନା କାନ୍ଦିବୁ, ଜାଣି ପାରିଲୁ ନାହିଁ । କମନ୍ ରୁମ୍‌ର ବେସିନ୍‌ରେ ଆସୁଥିବା ପାଣିରେ ଧୁଆଧୋଇ ହେଲା ପରେ ବଡ଼ ଟେବୁଲ୍‌ରେ ଶୋଇବାର ପ୍ରୟାସ କରୁକରୁ ପ୍ରଚଣ୍ଡ ଭୋକହେଲା । ରାତି ଆସି ଗୋଟାଏ ହେଲାଣି । ପ୍ରଫୁଲ୍ଲକୁ ମୁଁ ଭୋକ କରିବାକଥା ଜଣାଇଲି । ଘନ ତ ଘଁ ଘଁ ଶୋଇପଡିଥିବ, ତାକୁ କଣ ଉଠାଇବା । ତା ବାପା, ଯେ ପୁଣି ଆମ ବିଭାଗୀୟ ମୁଖ୍ୟ, ଉଠି ପଡ଼ିଲେ ଗାଳି କରିବେ । ମୋ ଅବସ୍ଥା ଦେଖି ପ୍ରଫୁଲ୍ଲ କହିଲେ, ଆମ ଘରେ ରାକ୍ଷୀ ପୂର୍ଣ୍ଣିମା ପାଇଁ ଚାଉଳର ପୋଡ଼ପିଠା ତିଆରି ହୋଇଛି, ଆଣିବି କି ? ମୁଁ ହଁ କହିବାରୁ ସେ ବାହାରିପଡିଲେ ପିଠା ଆଣିବାପାଇଁ । ସେ ଗଲାପରେ ମୁଁ ସେ ଏତେବଡ଼ କମନ୍‌ରୁମ୍‌ରେ ଏକା ।

ଏକାଏକା ଭାବୁଥିଲି, ଏବେ ମୁଁ ସମଗ୍ର କଲେଜର 'ଏକାଙ୍ଗ ଚକ୍ରବର୍ତ୍ତୀ' ରାଜା ! ! ଏଇଟା ସେଇ କମନ୍ ରୁମ୍, କଲେଜ୍ ଚାଲୁଥିବା ବେଳେ ପିଲାମାନେ ମହୁମାଛି ପରି ଯେଉଁଠିକୁ ଆକର୍ଷିତ ହୋଇପଡ଼ନ୍ତି । ପରେ ପୁଣି ଭାବୁଥିଲି, ମୋର କଣ ଯାଉଥିଲା ଯେ ଘରଛାଡ଼ି ଏମିତି କଦର୍ଯ୍ୟ ଅବସ୍ଥାରେ ଏଠି ମୁଁ ପଡ଼ିଛି, ବାକିମାନେ ଘରେ ଆରାମରେ ଶୋଇଥିବେ, ଆଉ ମୁଁ ! ! ନା ନା, ବିଭାଗୀୟ ଛାତ୍ରଭାବରେ ଏଇକାମ ମୋର ନୈତିକ ଦାୟିତ୍ୱ । ବିଭାଗର ଇଜ୍ଜତର କଥା । ସକାଳୁ

ସକାଳୁ ଘରକୁ ଯାଇ ଗାଧୋଇପାଧୋଇ ପୁଣି ଶୀଘ୍ର ଆସିବା ପଡ଼ିବ । ଏମିତି ଭାବନାର ସମୁଦ୍ରରେ ବୁଡ଼ି ରହିଥିବାବେଳେ ପ୍ରଫୁଲ୍ଲ ଆସିଲେ, ସାଙ୍ଗରେ ତାଙ୍କ ଚାଉଳ ପିଠା ବି' ଚାରି ଖଣ୍ଡ । ପିଠା ଖାଇ ପାଣି ଢୋକେ ଢୋକେ ପିଇ କେମିତି ନିଦେଇଗଲୁ, ଜାଣିପାରି ନଥିଲୁ ।

ମୁଣ୍ଡରେ ସକାଳ କାମର ଚିନ୍ତାଥିବାରୁ ଶୀଘ୍ର ନିଦ ଭାଙ୍ଗିଗଲା । ଘରକୁ ଯାଇ ଯଥାଶୀଘ୍ର କଲେଜ୍ ଆସି କାମରେ ମାତିଗଲି ମୁଁ । ସଭା କାର୍ଯ୍ୟ ଆରମ୍ଭ ହେବାକୁ କିଛି ସମୟ ବାକିଥାଏ, ବକ୍ତା ଆସି ପହଞ୍ଚିଗଲେ, ଅଧ୍ୟକ୍ଷଙ୍କ ଚେମ୍ବରରେ ବସିଛନ୍ତି, ଏବେ ଆସିବେ ଅଧ୍ୟାପକମାନଙ୍କ ସହ ପ୍ରତିମୂର୍ତ୍ତି ପାଖକୁ, ମାଲ୍ୟାର୍ପଣ ପାଇଁ । ମାଳା ଧରି ମୁଁ ଆଗକୁ ମୂର୍ତ୍ତିପାଖରେ ଠିଆହୋଇ ଅପେକ୍ଷାରେ ଥାଏ । ପ୍ରତିମୂର୍ତ୍ତି ଆଡ଼କୁ ଦେଖି ମନେମନେ ଭାବୁଥାଏ ଗତରାତିର ପରିଶ୍ରମର କଥା, ଦେହସାରା ପୋଡ଼ାମୋବିଲ୍‌ର ଦାଗ ପଡ଼ିବା କଥା, ଭୋକରେ ଆଉଟୁପାଉଟୁ ହେବା କଥା, ପିଠା ଖାଇ ପାଣି ଢୋକେ ପିଇଦେଇ ଶୋଇପଡିବା କଥା । ଏମିତି ଭାବୁଭାବୁ ଅତିଥିମାନଙ୍କ ସହ ଅଧ୍ୟକ୍ଷ ଆସିଗଲେ । ମାଳା ଧରାଇ ଦେଲି । ସେତେବେଳେ ମୂର୍ତ୍ତି ପାଖକୁ ଯିବା ପାଇଁ ପାହାଚ ନଥିଲା । ତେଣୁ ମୂର୍ତ୍ତି ତଳେ ଥିବା ପେଣ୍ଡାଲ ପର୍ଯ୍ୟନ୍ତ ଯାଇ ମାଳା ପିନ୍ଧାଇବାକୁ ପଡୁଥିଲା । ସେଇ ମାଳା ଧରି ମୋତେ ଚଢ଼ିବାପାଇଁ ପଡ଼ିଲା, ମୂର୍ତ୍ତିରେ ଦୁଇଟି ମାଳା ମୁଁ ଗଳାଇବା ପରେ ଉପସ୍ଥିତ ଦର୍ଶକ ତାଳିମାରିଲେ । ମୁଁ ତଳକୁ ଓହ୍ଲାଇ ଭାବୁଥିଲି, ଦର୍ଶକେ ଅତିଥିଙ୍କ ଉଦ୍ଦେଶ୍ୟରେ ତାଳି ମାରିଲେ ନା ମୋ ପାରିବା ପଣିଆକୁ ଦେଖି । ଯା' ବି ହେଉ, ମୁଁ ମୋ ପାରିବାପଣକୁ ନେଇ ଗର୍ବିତ ଥିଲି । ଏକଥା ବଖାଣିବା ବେଳେ ପ୍ରଫୁଲ୍ଲ ନାଥଙ୍କୁ ମନେ ପଡିଯାଉଛି, ଯେ ଏଇ କିଛି ବର୍ଷ ତଳେ ଇହଧାମ ତ୍ୟାଗ କରି ଆମଠୁ ଦୂରେଇଯାଇଛନ୍ତି ।

ସଭା ହେଲା, ପ୍ରାରମ୍ଭିକ ସଂଗୀତ ପରେ ମୁଖ୍ୟ ବକ୍ତା ରାଜକିଶୋର ରାୟଙ୍କ ବଳିଷ୍ଠ, ଉଚ୍ଚାଙ୍ଗ ଭାଷା ସଂଯୋଜିତ ଭାଷଣରେ ସମସ୍ତେ ଆପ୍ୟାୟିତ ହେଲେ, ମେହେର ସାହିତ୍ୟର ବାସନାରେ ମହମହ ସମସ୍ତଙ୍କ ଭାବ, ମନ ଓ ହୃଦୟ ।

ସେ ବର୍ଷ ବାର୍ଷିକ ନାଟ୍ୟୋତ୍ସବରେ ମଞ୍ଚସ୍ଥ ହୋଇଥିଲା ସମ୍ପାଦକ ରବିନାରାୟଣ ବହିଦାରଙ୍କ ନେତୃତ୍ୱରେ, ନିର୍ଦ୍ଦେଶକ ନିଶିଥ ନାୟକଙ୍କ ନିର୍ଦ୍ଦେଶନାରେ ପ୍ରଫୁଲ୍ଲ ରଥଙ୍କ ରଚିତ ମନୋରଞ୍ଜନଧର୍ମୀ ନାଟକ 'ମୋର ବା ଦୋଷ କଣ' । ତିନୋଟିଯାକ ମଞ୍ଚକୁ ଗୋଟିଏ ମଞ୍ଚରେ ପରିଣତ କରି ସଜ୍ଜିତ ହେଲା ବିରାଟ ପାର୍କର ଦୃଶ୍ୟ । ନାଟକର ମୁଖ୍ୟ ଆକର୍ଷଣ ପାଲଟିଗଲା ଏ ନାଟକର ମଞ୍ଚଶିଳ୍ପ ।

ସଭାରେ, ଉତ୍ସବରେ ପିକ୍‌ନିକ୍‌ରେ ନାଟକରେ କଲେଜ୍ ଦିନମାନ ଉଠୁଥାଏ, ପଡୁଥାଏ । ସମୁଦ୍ର କୂଳରୁ ଶାମୁକା ଗୋଟାଇବା ପରି କଞ୍ଚା ଅନୁଭୂତିମାନ ଛାଣିହୋଇ ଆସୁଥାନ୍ତି ମନର ଗର୍ଭଗୃହକୁ । କେଜାଣି, ହୁଏତ ସେ ସମୟ ଆସିପାରେ ଭବିଷ୍ୟତରେ, ଅନୁଭୂତି ସବୁକୁ ଧାନତଳି ଭଳି ରୋପିବାକୁ ହେବ ସଂସ୍କୃତିର ସବୁଜିମା ଅମଳ କରିବା ପାଇଁ ! ।

❖ ❖

କୈଶୋରରୁ ଯୌବନର ପ୍ରଥମପାହାଚ ଯାଏଁ, ଅର୍ଥାତ୍ ଷଷ୍ଠଶ୍ରେଣୀରୁ ବିଶ୍ୱବିଦ୍ୟାଳୟର ପ୍ରଥମ ବର୍ଷ ଡିଗ୍ରୀ ପର୍ଯ୍ୟନ୍ତ ଯାହାଯାହା ଅଭିଜ୍ଞତା ସଂଗ୍ରହ କରିଥିଲି, ସ୍ନାତକ ଦ୍ୱିତୀୟ ବର୍ଷରେ ଲାଗିଲା, ସେଇ ସବୁତକ ସଜାଡ଼ି ଦେବି କି, ସଂଗୀତ, ସାହିତ୍ୟ, ଆଉ ନାଟକ, ନାଟକରେ ଗଢ଼ିଦେବି ପ୍ରକାଣ୍ଡ ସୌଧ, ଯାହା ସୁଉଚ୍ଚ ଶିଖରକୁ ମୁଁ ବି ମୁଣ୍ଡ ଯେତେ ଉପରକୁ ଉଠାଇଲେ ବି ଚାହିଁ ପାରିବି ନାହିଁ ! ! ଏକେ ତ ଧନୁପାଲିରେ ଗାଇଡ୍ କ୍ଲବ ପ୍ରତିଷ୍ଠା ହୋଇ ପ୍ରଥମ ଅବଦାନ ସ୍ୱରୂପ ନାଟକ ଅମାବାସ୍ୟାର ଅନ୍ଧକାର ମଞ୍ଚସ୍ଥ ହୋଇ ସଫଳ ହେବା ପରେ ଆମ ମନ ମଧ୍ୟରେ ନାଟକ ପକ୍ଷୀର କୋଟର ପରି ତିଆରିବା ମୂଳ କରିସାରିଥାଏ, ପୁଣି ଜି.ଏମ୍. କଲେଜରେ ପ୍ରଥମ ଦୁଇ ବର୍ଷ ଭିତରେ ସାହିତ୍ୟ, ହୃଦୟର ଦରଜା ଖୋଲି ଆସିବି ଆସିବି ହେଉଥାଏ, ଆଉ ସଂଗୀତ ତ ଟେବୁଲ୍‌ପିଟା ବୟସରୁ ଆସି ପିଠି ଉପରେ ସବାର୍ ହୋଇ ସାରା ଭାରତ ଘୂରି ସାରିଥାଏ । ଏମାନଙ୍କ ପ୍ରାବଲ୍ୟ ଦେଖି କ୍ରୀଡ଼ା ଦିଗଟି ଧନୁପାଲିର ଭବାନୀ ଫିଲ୍ଡରେ ସ୍ଥାନୀୟ ବନ୍ଧୁମାନଙ୍କ ସହ କ୍ରିକେଟରେ ସୀମିତ ରହିଗଲା ।

ପ୍ରଥମ ବର୍ଷ ଡିଗ୍ରୀ ପରୀକ୍ଷାପରେ ପୁନଶ୍ଚ ଗ୍ରୀଷ୍ମାବକାଶ, ପୁନଶ୍ଚ ନାଟ୍ୟଋତୁର ଆଗମନ, ପୁଣି ନୂଆଁନାଟକର ନିଶାରେ ମାତିଗଲୁ ଧନୁପାଲିର ଯେତେ କ୍ଲବ ପ୍ରେମୀ, ସଂସ୍କୃତି ପ୍ରେମୀ ବନ୍ଧୁବର୍ଗ । ଧିରେ ଧିରେ ଅମାର୍ଜିତ କଅଁଳ ମନରୁ ବୌଦ୍ଧିକ ବିକାଶର ରାଜରାସ୍ତାକୁ ଓହ୍ଲାଉଥାଏ ବୟସର ସୋପାନ, ଅମାବାସ୍ୟାର ଅନ୍ଧକାରରୁ ଡିଆଁ ମାରି ପ୍ରମୋଦ ତ୍ରିପାଠୀ ପୁଣି ଏକ ସ୍ୱରଚିତ ମନୋରଞ୍ଜନ ଧର୍ମୀ ନାଟକ ଉପହାର ଦେଲେ ଗାଇଡ୍ କ୍ଲବକୁ, ଯାହାର ଶୀର୍ଷକ ଥିଲା 'ଯନ୍ତ୍ରଣାର ସ୍ୱର' । ଆମ ପଥପ୍ରଦର୍ଶକ ଗୁରୁ ସତ୍ୟନାରାୟଣ ତ୍ରିପାଠୀଙ୍କ ଉଦ୍ୟମରେ ଆମ ନିକଟରେ ଆଉଜଣେ ପ୍ରବୀଣ ନାଟ୍ୟ ପ୍ରତିଭାକୁ ଆଣି ପରିଚିତ କରାଇଲେ, ଯାହାଙ୍କୁ ଧନୁପାଲି କଣ, ସାରା ସମ୍ବଲପୁର ମଧ୍ୟ ଚିହ୍ନି ନଥିଲା । ସେ ହେଉଛନ୍ତି ସଦର ଡାକ୍ତରଖାନାରେ କର୍ମରତ ବାଲେଶ୍ୱରର ଜନୈକ ପ୍ରୌଢ଼ ଭଦ୍ରବ୍ୟକ୍ତି ଲଡୁକିଶୋର ନନ୍ଦ । ଧନ୍ୟ କହିବ ତ୍ରିପାଠୀଆଜ୍ଞାଙ୍କ ପ୍ରତିଭାଚିହ୍ନଟ ଚାତୁର୍ଯ୍ୟ ! !



ଆମ ଘର ସାମ୍ନାରେ ଥିବା ସ୍କୁଲକୋଠରୀରେ ସଭା ହେଲା, ଅଭିନେତା ଚୟନ ହେଲା, ରିହାର୍ସାଲ୍ ମଧ୍ୟ ଆରମ୍ଭ ହୋଇଗଲା । ନୂଆଁ ନୂଆଁ ମେଞ୍ଚା ଅଙ୍କୁରିତ ହେଲେ, ତା ସହ ବୁଦ୍ଧିର ଯେମିତି ବିକାଶ ଆରମ୍ଭ ହୁଏ, ଠିକ୍ ସେହିପରି ପ୍ରଥମ ବର୍ଷ ବିନାଅଭିନେତ୍ରୀର ସହାୟତାରେ ଯେଉଁଳି ନାଟକ କରିଦେଲୁ, ଏଥର କିନ୍ତୁ ପ୍ରମୋଦ ଅନୁଷ୍ଠାନ ଉପରେ ସମ୍ପୂର୍ଣ୍ଣ ଭରସା ରଖି ସମସ୍ତଙ୍କ ଇଚ୍ଛାନୁସାରେ ଗୋଟିଏ ନାରୀ ଚରିତ୍ର ରଖି 'ଯନ୍ତ୍ରଣାର ସ୍ୱର' ନାଟକ ଲେଖିଲେ, ଯାହା ଥିଲା ସାମାଜିକ, ରହସ୍ୟଧର୍ମୀ ନାଟକ । ରିହାର୍ସାଲ୍ ଆରମ୍ଭ ହେଲା, ମୋ ବଡ଼ଭାଇ ପୁଣି ନାଟକର ନାୟକ ସାଜିଲେ, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ପଞ୍ଚାନନ ମିଶ୍ର, ଶାନ୍ତନୁ ହୋତା, ରାମଗୋପାଳ ଶର୍ମା, ସନତ ତ୍ରିପାଠୀ ପ୍ରମୁଖଙ୍କ ସହ ଆହୁରିକିଛି ଚରିତ୍ରରେ ବିଭିନ୍ନ କଳାକାରମାନେ ଅଭିନୟ କଲେ, ତାଙ୍କ ସହ ମୁଁ ମଧ୍ୟ ଛୋଟ ଏକ ପଠାଣ ଚରିତ୍ରରେ ଅଭିନୟ କଲି । ରିହାର୍ସାଲ୍ ଗଡ଼ିଚାଲିଲା । ସୁବାସ ଆଚାର୍ଯ୍ୟଙ୍କ ଚାତୁର୍ଯ୍ୟପୂର୍ଣ୍ଣ ସ୍ମାରକୀର ପୂର୍ଣ୍ଣ ସହଯୋଗରେ, ନିର୍ଦ୍ଦେଶକ ନନ୍ଦବାବୁଙ୍କ ବଳିଷ୍ଠ ପରିଚାଳନାରେ ରିହାର୍ସାଲ୍ ଧିରେଧିରେ ପୂର୍ଣ୍ଣାଙ୍ଗହେବା ଭିତରେ ଅଭିନେତ୍ରୀ ସମସ୍ୟା ବିରାଟ ପ୍ରାଚୀରଭାବରେ ଦେଖାଦେଲା । ସତ୍ୟନାରାୟଣ ବାବୁଙ୍କ ସହ ଆଉ କେତେଜଣ ଶୁଭେଚ୍ଛୁଙ୍କ ସହାୟତାରେ ନଟରାଜ ଚିତ୍ରାଳୟର ମାଲିକଙ୍କୁ, ଯେ ବିଦ୍ୟୁତ୍ ବିଭାଗରେ କାମ କରୁଥିଲେ, ମଲ୍ଲିକ ବାବୁ, ତାଙ୍କ ସ୍ତ୍ରୀ ମନୋରମାଙ୍କୁ ନାଟକରେ ଅଭିନୟ କରିବାପାଇଁ ଅନୁରୋଧ କରାଗଲା । ଆମ୍ଭମାନଙ୍କ ଭଳି ଯୁବକମାନଙ୍କ ଆଗ୍ରହ ଦେଖି ମଲ୍ଲିକବାବୁ ମନା କରିପାରିଲେ ନାହିଁ, ଆମ ଅନୁରୋଧରେ ସେ ସମ୍ମତି ଜଣାଇ ଆଗକୁ ବଢ଼ିବାର ପୂର୍ଣ୍ଣ ଭରସା ଯୋଗାଇଦେଲେ । ଆମ୍ଭମାନଙ୍କର ଖୁସି କାହିଁରେ କେତେ । ତହିଁ ପରଦିନ ମଲ୍ଲିକବାବୁଙ୍କ ସହ ତାଙ୍କ ସ୍ତ୍ରୀ ମନୋରମାଦେବୀ ମଧ୍ୟ ଆସିଲେ, ପ୍ରମୋଦ ସହ ଆମ୍ଭମାନଙ୍କ ମାନସିକ ଶକ୍ତି ବୃଦ୍ଧି ପାଇଲା ।

ଲଡୁ କିଶୋର ନନ୍ଦ ଆଜ୍ଞାଙ୍କ ଗମ୍ଭୀର କଣ୍ଠସ୍ୱରରେ ଉଚ୍ଚାରିତ ସଂଳାପମାନ ଅନୁକରଣ କରି ପଞ୍ଚାନନ ମିଶ୍ର, ଖଳନାୟକ ରାଜା ଭୂମିକାରେ କୃଷ୍ଣ ଚନ୍ଦ୍ର, ସୁନ୍ଦର ଅଭିନୟରେ ରିହାର୍ସାଲ ଜମେଇ ଦେଉଥିଲେ । ଧନୁପାଲିର ବହୁ ମାନ୍ୟଗଣ୍ୟ ବ୍ୟକ୍ତି କେବଳ ରିହାର୍ସାଲ ଦେଖି ଆସି ଟଙ୍କାପଇସା ବାବଦରେ ଚିନ୍ତା ନ କରିବାକୁ ଆଶ୍ୱାସନା ଦେଉଥିଲେ । ସେମାନଙ୍କ ଭିତରେ ଥିଲେ ଦୁର୍ଯ୍ୟୋଧନ ମିଶ୍ର, ରବିନ୍ଦ୍ର ନାୟକ ଆଦି ଶିକ୍ଷକଗଣ । ନାଟକର ପ୍ରଚାର ପାଇଁ ମୁଁ ମୋର କଳାକ୍ଷେତ୍ରର ସମସ୍ତ ପ୍ରତିଭାକୁ ଉପଯୋଗ କରି କାଗଜର ପୋଷ୍ଟରମାନ ପ୍ରସ୍ତୁତ କଲି । ବିରାଟ ହୋର୍ଡିଂ ପରି ବଡ଼ ପୋଷ୍ଟର୍‌ରେ

ପଞ୍ଚାନନ ମିଶ୍ର, କୃଷ୍ଣ ଚନ୍ଦ୍ର ଆଚାର୍ଯ୍ୟ ଆଦି କଳାକାରମାନେ ଯେଉଁ ଚରିତ୍ରରେ ଅଭିନୟ କରିବେ, ମେକ୍‌ଅପ୍ ନେବା ପରେ ଯେମିତି ଦେଖାଯିବେ, କଳ୍ପନା କରି ସେହି ଚେହେରା ଫଟୋଚିତ୍ର ନିଜ ତୂଳିକାରେ ଆଙ୍କି ଦେଉଥିଲି, ଯାହା ନାଟକ ସରିବାର ବହୁ ଦିନ ପର୍ଯ୍ୟନ୍ତ ଛକରେ ଶୋଭା ପାଉଥିଲା । ଏସବୁ ଆଙ୍କିଲା ବେଳେ ଭବାନୀପାଟଣାର ରାଜ୍ ସାଇନ୍ ସାର୍ଭିସ୍‌ର ମାଲିକ ରାଜାଙ୍କୁ ସ୍ମୃତିରେ ରଖୁଥିଲି । ବାସ୍ତବରେ, ଅଭିନୟ ନୁହେଁ, ନାଟକ କେମିତି ସର୍ବାଙ୍ଗ ସୁନ୍ଦର ଭାବେ ମଞ୍ଚସ୍ଥ ହେବ, ସେଭଳି ସାଙ୍ଗଠନିକ କାର୍ଯ୍ୟରେ ମୁଁ ନିଜକୁ ଅଧିକ ନିୟୋଜିତ କରୁଥିଲି ।

ପୁଣି ଆରମ୍ଭ ହେଲା ସବୁଦିନିଆ ସମସ୍ୟା ସମାଧାନର ଖେଳ, ପଟାଖଟ ସଂଗ୍ରହ, ତା ସହ ତାଳପତ୍ରୀ ମଗାଣ, କଟକ ରାସ୍ତାରେ ଥିବା ପିଏଚ୍‌ଡି ଗୋଦାମରୁ ଲୁହା ପାଇପ୍ ଅଣାଯାଇ ପୋତାଣ, ନଡ଼ିଆ ରସି କିଣା, ମଞ୍ଚ ରିହାର୍ସାଲ ପୂର୍ବରାତି ପାଇପ୍ ବନ୍ଧା, କଟଙ୍ଗ ବାଉଁଶ ଧରି ଦଶବାର ଜଣଙ୍କ ଦ୍ୱାରା ତାଳପତ୍ରି ଟେକା, ଏଭଳି ପ୍ରକ୍ରିୟାରେ ମଞ୍ଚ ପ୍ରସ୍ତୁତି । ବିପିନ ମିଶ୍ର, ରାମଗୋପାଳ ଶର୍ମା, ବନମାଳୀ ପୋଢ଼, ଦଶରଥ ବେରିହା, ନରେନ୍ଦ୍ର ରାୟଗୁରୁ ପ୍ରମୁଖ ଏଭଳି କାମରେ ଥିଲେ ଓସ୍ତାଦ୍ । ସେହି ତାଳପତ୍ରି ଟେକା ରାତିଟି ଅନିଦ୍ରାରେ ଯାଏ । କାମ ସରିଲେ ହରଡଯୋରର କାକୁଡ଼ି ବଗିଚାକୁ ଯାଇ କାକୁଡ଼ିଚୋରାଇ ଖାଇବା, ଯାହା ବଳିବ ତାକୁ ବସ୍ତାରେ ଆଣି ଗାଁ ଭିତରକୁ ଯାଉଥିବା ପ୍ରଥମ ଘରର ତଳ କ୍ଳବକୋଠରୀରେ ଗଦାକରିବା ଭଳି ବଦମାସୀ କରିବା, ଛକରେ ରଖାଯାଇଥିବା ରିକ୍ସାରେ ପଞ୍ଚାନନ ମିଶ୍ରଙ୍କୁ ସୋନପୁର ବଙ୍ଗଳାପର୍ଯ୍ୟନ୍ତ ଛାଡ଼ିଆସିବା, ଭଲ ଚାନ୍ଦା ନ ଦେଲେ ପ୍ରସନ୍ନ ସାହୁଙ୍କ ବାପାଙ୍କ ଗୁଡ଼ିଆ ଦୋକାନ, ଡିଲର୍ ନାରାୟଣ ମିଶ୍ରଙ୍କ ସହ ମିଛ ଗାଳି ଲାଗିବା ଆଦି ପ୍ରକ୍ରିୟାରେ ନାଟକ ଅଭିନୀତ କରିବାର ରାତି ମାଇକ୍ରୋଫୋନ୍ ମାଧ୍ୟମରେ ପ୍ରଚାରିତ ରେକର୍ଡ ପ୍ଲେୟାରର ସଂଗୀତ ଦର୍ଶକମାନଙ୍କୁ ଡାକି ଆଣିବାରେ ସାହାଯ୍ୟ କରୁଥିଲା । ପୂର୍ଣ୍ଣ ପ୍ରେକ୍ଷାଳୟରେ ନାଟକ ଯନ୍ତ୍ରଣାର ସ୍ୱର ମଞ୍ଚସ୍ଥ ହେଲା । ପ୍ରମୋଦ ତ୍ରିପାଠୀ ନାଟ୍ୟକାରଭାବରେ ପଞ୍ଚାନନ ମିଶ୍ର, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ରାତାରାତି ବଳିଷ୍ଠ ଅଭିନେତା ଭାବରେ ପରିଚିତ ହୋଇଗଲେ ।

ପରଦିନ କେବଳ ଧନୁପାଲି ନୁହେଁ, ସମଗ୍ର ସମ୍ବଲପୁର ସହରରେ ଯନ୍ତ୍ରଣାର ସ୍ୱର ନାଟକକୁ ନେଇ ଚର୍ଚ୍ଚା ହେଲା, ଆମ ପରିଶ୍ରମର ସାର୍ଥକତାରେ ଆମେ ନାଟ୍ୟବିହ୍ୱଳ ପାଲଟିଗଲୁ ।

ଖରାଛୁଟି ପରେ କଲେଜ ଖୋଲିଲା, ବି.ଏ. ଦ୍ୱିତୀୟବର୍ଷର ଛାତ୍ର, ଓଡ଼ିଆ ସମ୍ମାନ ନେଇ ପାଠ୍ୟକ୍ରମରେ କ୍ଲାସ ସବୁ ଆରମ୍ଭ ହେଲା । ଓଡ଼ିଆ ପ୍ରତି ପ୍ରଚଣ୍ଡ ଦୁର୍ବଳତା ମୋତେ ସମ୍ମାନ ପତ୍ର ଭାବରେ ଓଡ଼ିଆ ହିଁ ନେବାକୁ ପଡ଼ିଲା । ତେସ୍ତରୀ, ଚୌସ୍ତରୀ ଶିକ୍ଷାବର୍ଷର କଥା, ଆମେ ସର୍ବମୋଟ ପାଞ୍ଚ ଜଣ ଛାତ୍ର ଓ ପାଞ୍ଚ ଜଣ ଛାତ୍ରୀ ଓଡ଼ିଆ ସମ୍ମାନ ବିଷୟ ନେଇ ଗୋଟିଏ କୂଳରେ ଲାଗିଲୁ । ସେତେବେଳେ ଓଡ଼ିଆ ବିଭାଗ ବୋଲି କୌଣସି ଗୋଟାଏ ବି କୋଠରୀ ନଥିଲା । ଆମେ ଦଶଜଣ ନବାଗତ ସମ୍ମାନର ଛାତ୍ରଛାତ୍ରୀ ଯେତେବେଳେ ଏକଜୁଟହୋଇ ପରସ୍ପର ଏଭଳି ପରିଚିତ ହେଲୁ, ଆଜିଯାଏଁ ସେହି ବନ୍ଧୁତ୍ୱ, ସେହି ଆତ୍ମୀୟତା ଅତୁଟ ରହିଛି । ଆମେ, ପାଞ୍ଚଜଣ ଛାତ୍ର ହେଲୁ ମୋ ସହ ପ୍ରଦୀପ ରାୟ, କାହ୍ନୁଚରଣ ନାଥ, ଘନଶ୍ୟାମ ମେହେର ଓ ଦିଗମ୍ବର ଆଚାରୀ । ଛାତ୍ରୀମାନେ ହେଲେ ବିଜୟଲକ୍ଷ୍ମୀ ଜେନା, ନିରୂପମା ଦାସ, ରୀତାରାଣୀ ଦାସ, ଆଶୀଷବାଳା ପଟ୍ଟନାୟକ ଓ ଭାଗ୍ୟବତୀ ମିଶ୍ର ।

କଲେଜ୍‌ପଢ଼ାର ଦୁଇ ବର୍ଷର ଅଭିଜ୍ଞତା, ବିଭାଗୀୟ ସ୍ୱାଭିମାନ, ଯୌବନର ଉଦ୍ଦାମତା ମୋର ମନକୁ ସଶକ୍ତ କରିବା ସଙ୍ଗେ ଆତ୍ମବିଶ୍ୱାସରେ ଭରିଦେଇଥିଲା । ସେମିନାର୍ ପାଇଁ ଆମ ଉପରବେଚ୍‌ରେ ପଢୁଥିବା ସ୍ୱୟମ୍ଭୁନାଥ ଖଣ୍ଡଗିରି ସେମିନାର୍ ସମ୍ପାଦକ ଓ ସହସମ୍ପାଦକ ଭାବରେ ମୋତେ ମନୋନୀତ କରାଗଲା । ବିଭାଗର ପ୍ରଥମ ପଦକ୍ଷେପ ସ୍ୱରୂପ ପ୍ରଥମେ ନିଜସ୍ୱ ପ୍ରକୋଷ୍ଠ ପାଇଁ ଅଧ୍ୟକ୍ଷଙ୍କୁ ଦାବୀ କରାଗଲା । ଅଧ୍ୟକ୍ଷ ଥିଲେ ପ୍ରଫେସର ଗଦାଧର ମିଶ୍ର, ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ନିକଟସମ୍ପର୍କୀୟ । ଅଧ୍ୟକ୍ଷମହାଶୟ ଆମ ଦାବୀ କର୍ଣ୍ଣପାତ ନକରିବାରୁ ଆନ୍ଦୋଳନ କରାଗଲା, ଅନଶନ କରାଗଲା । ପରିବେଶ ଏମିତି ଥାଏ, ମୁଁ ଯାହା ପ୍ରସ୍ତାବ ଦେଉଥାଏ, ସମସ୍ତେ ଅନ୍ଧ ଭାବରେ ସେଗୁଡ଼ିକୁ ହଁ ଭରୁଥିଲେ । ଆମ ଆନ୍ଦୋଳନକୁ ମଧ୍ୟ ଅଣଦେଖା କରିବାରୁ ତଳେ ଯେଉଁ କୋଠରୀରେ ଆମ ଅନର୍ସ କ୍ଲାସ ହେଉଥିଲା, ସେଥିରେ ଜବରଦସ୍ତି ତାଲାପକାଇ ଆମେ ଅକ୍ତିଆରକୁ ଆଣିଆସିଲୁ ଓ କୋଠରୀ ସାମ୍ନାରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ନାମଫଳକଟିଏ ମାରିଦେଲୁ । ପରେ ବିନାପ୍ରତିବାଦରେ ସେହି କୋଠରୀକୁ ଅଧ୍ୟକ୍ଷ ଓଡ଼ିଆ ବିଭାଗୀୟ ପ୍ରକୋଷ୍ଠ ଭାବରେ ସମ୍ମତି ପ୍ରଦାନ କଲେ । ଏଥିଲା ସମ୍ମାନ ଛାତ୍ର ହେବାର, ସହ ସମ୍ପାଦକ ଭାବରେ ଦାୟିତ୍ୱ ନେବାର ପ୍ରଥମ ଦଳଗତ ସଫଳତା । ବହୁ ବର୍ଷ ଧରି ଏହି ପ୍ରକୋଷ୍ଠରେ ହିଁ ବିଭାଗ ଚାଲିଥିଲା । ଏହି ସଫଳତାକୁ ପୁଞ୍ଜିକରି ବିଭାଗର ସ୍ୱତନ୍ତ୍ର ପାଠାଗାର ହେବା ଦାବୀରେ ଆମେ ଅଟଳ ରହିଲୁ, ଶେଷରେ ଅଧ୍ୟକ୍ଷ ତାହା ମଧ୍ୟ ସ୍ୱୀକୃତି ପ୍ରଦାନ କରିଥିଲେ । ଅଫିସ୍ ସାମ୍ନାରେ



ଥିବା ଲାଇବ୍ରେରୀକୁ ଯାଇ ଓଡ଼ିଆ ବହିସବୁ ସଂଗ୍ରହ କଲି ଏକାଏକା, ସାଥୀରେ ଲାଇବ୍ରେରୀର ପିଅନ୍ । ବହି ବାଛୁବାଛୁ କେତେବେଳେ ଯେ ସନ୍ଧ୍ୟା ହୋଇଯାଇଥିଲା, ଆମକୁ ଜଣା ପଡ଼ିଲା ନାହିଁ । ସୁଇପର୍ ତୁଫାନ୍ ବାହାରୁ ତାଲା ଦେଇ ପଳେଇଯାଇଥିଲା । ଆମେ ଭିତରେ ବହି ବାଛନିଛ କରୁଛୁ, ତାର ଜଣା ନଥିଲା । ଆମେ ମଧ୍ୟ ଭୟଭୀତ ହୋଇଗଲୁ । ଭାଗ୍ୟକୁ ଭିତରକୁ କବାଟ ପିଟିବା ଶୁଣି ଜଗୁଆଳୀ ଆମ ଅବସ୍ଥାଦେଖି ଆଶ୍ୱାସନା ଦେଲା, ଚାବିକାଠି ରଖିଥିବା ତୁଫାନ୍‌କୁ ଡାକି କୋଠରୀ ଖୋଲାହେଲା, ଆମେ ବାହାରିଲୁ, ସାଇକଲ୍ ଷ୍ଟାଣ୍ଡ ଯାଇ ଦେଖିଲି, ଖାଲି ମୋ ସାଇକଲ୍‌ଟି ନୀରବରେ ମୋତେ ଅପେକ୍ଷା କରିଥାଏ ବିପଦ ଆପଦର ବନ୍ଧୁ ଭଳି ।



**ସ**ବୁ ଚାଲିଥିଲା, ପାଠପଢ଼ା, ନାଚଗୀତ, ବାଦ୍ୟନୃତ୍ୟ, ସାଙ୍ଗଚର୍ଚ୍ଚା, ଆନ୍ଦୋଳନ, ଅନଶନ, ଦାବୀ ହାସଲ ପରେ ନୂଆଁ ଦାବୀ ଉପସ୍ଥାପନ, ମେହେର ଜୟନ୍ତୀ, ବସନ୍ତ ଉତ୍ସବ, ବକ୍ତୃତା, ପ୍ରବନ୍ଧ ପ୍ରତିଯୋଗିତା, ସଂଗୀତ ବାଦ୍ୟ ପ୍ରତିଯୋଗିତା, ସବୁଠାରେ ଉପସ୍ଥିତି, ସବୁଠାରେ ଅଂଶଗ୍ରହଣ, ସବୁ ପୂର୍ଣ୍ଣମାତ୍ରାରେ ଚାଲିଥିଲା, ଅନେଶତଭାଗ ଉପଭୋଗ କଲାପରେ ବି ଶେଷ ଏକ ପ୍ରତିଶତକୁ ମଧ୍ୟ ଅପେକ୍ଷା କରିବା ପାଇଁ ପଡୁଥିଲା । ସ୍କୁଲ ଜୀବନ କେବେହେଁ କଲେଜ୍‌ଜୀବନ ସହ ତୁଳନୀୟ ନୁହେଁ, ଏ କଥା ମୁହୂର୍ତ୍ତମୁହୂର୍ତ୍ତରେ ହୃଦ୍‌ବୋଧ ହେଉଥିଲା, ଯେତେବେଳେ ତାଙ୍କ ସହ ଦେଖା ହେଉଥିଲା, ପିୟୁ, ପ୍ରଥମ ବର୍ଷର କଞ୍ଚା ଯୌବନର ଏକ ନାଟକୀୟ ଲଗ୍ନରେ ଶୁଭାରମ୍ଭ ହୋଇଥିବା ଭଲପାଇବାର ପ୍ରଥମପୁଲକ ଧିରେଧିରେ ବୃନ୍ତଗହ୍ୱରରୁ ଜନ୍ମୁଥିଲା କଢ଼ିଟିଏ ହୋଇ ।

ସମ୍ମାନ ଶ୍ରେଣୀରେ ଅଧ୍ୟୟନ କରୁଥିବା ଯୋଗୁଁ ପ୍ରାୟ ସବୁ ଶ୍ରେଣୀରେ ଦେଖାଚାହାଁ, ମୁରୁକୀ ହସରେ ଭାବର ନୀରବ ଅଦାନପ୍ରଦାନ, ନିଃଶବ୍ଦ ଭାଷାର ନିଃଶ୍ଚୁପ୍ ଭାବ, ଲୁପ୍ତ ସ୍ୱପ୍ନର ଉକିଆମୟ କଳ୍ପନା, ତାଙ୍କ ଆସିବାର ବାଟକୁ ପ୍ରତୀକ୍ଷା, ଘରକୁ ଫେରିବାପଥର ପଦଚିହ୍ନ, କ୍ଲାସରେ ଆଗଧାଡ଼ିରେ ବସୁଥିବା ତାଙ୍କ ପୂର୍ଣ୍ଣାଙ୍ଗ ପ୍ରତିମା, ମୋର ପଛ ଧାଡ଼ିରେ ବସି ତାଙ୍କ କଳ୍ପିତ ରୂପରେଖ, ପରୀକ୍ଷା ଫର୍ମପୂରଣର କୋଳାହଳ ଭିତରେ କିଛିଟା ବାଚିକ ଆଚରଣ, ପରୀକ୍ଷା ହଲ୍‌ରେ ବସି ଆଖିରେଆଖିରେ ଅଲକ୍ଷ୍ୟ ନିରୀକ୍ଷଣ, ଖରାଛୁଟିର ଲମ୍ବ ଅବକାଶରେ ମିଛରେମିଛରେ ଘରବାଟକୁ ଯାଇ ଚା'ପାନର ବାହାନାରେ ମୁହଁ ଦେଖାଦେଖି, ତାଙ୍କୁ ପୁଞ୍ଜିକରି ବିନିଦ୍ର ରଜନୀ, ଏମିତି ଚାଲିଥିଲା ବିଭୂତି ପଟ୍ଟନାୟକଙ୍କ ରୋମାଣ୍ଟିକ ଉପନ୍ୟାସପରି ନାୟକନାୟିକାଙ୍କ ଅନ୍ତଃସ୍ଥଳର ଉଛୁଳା ପ୍ରେମଗ୍ରନ୍ଥ । ।

ଉପରିଷ୍ଟ ସବୁ ଘଟଣା, ଉପଘଟଣାଗୁଡ଼ିକର ସାକ୍ଷୀ ଭାବରେ ଏବେ ବି ମହଜୁଦ୍ ଅଛନ୍ତି କଲେଜ୍ ପଛପଟ ମାଟି ମୁରୁମ୍‌ର ମସୃଣ ରାସ୍ତା, ଦୁଇ କଡ଼ର ଅମରିବଣ, ମୁଦିପଡ଼ା ଓ ପାଣିଟାଙ୍କି କଡ଼ ରାସ୍ତାକୁ ଯୋଡୁଥିବା ଛକର ବିରାଟ ବଟବୃକ୍ଷର ଓହଳବେଷ୍ଟିତ ଛାୟାଛନ୍ନ ପରିବେଶ, କଲେଜ୍ କେଣ୍ଟିନ୍‌ର ମିଠାଖାରା ସ୍ୱାଦିଷ୍ଟ ଖାଦ୍ୟଦ୍ରବ୍ୟ, ଲେଡିସ୍ କମନ୍‌ରୁମ୍‌ର କବାଟକୁ ଲାଗିଥିବା ବେଲ୍‌କନିର ଚିକ୍କଣ ବାଡ, ଅର୍ଥନୀତି ବହିର ଫର୍ଦ୍ଦଭିତର ମୟୂରଚୂଳ ସହ ଦି'ଧାଡ଼ିର ଆବୁଡୁଯାବୁଡୁ କବିତା ବୋଲି କିଛି ଭାବର ସ୍ପନ୍ଦନ, ମ୍ୟୁଜିକ୍ ସୋସାଇଟିର ଆଜ୍‌ବେସ୍‌ଟସ୍ ଛୁଆଁ କୁଟୀରର ଛତ୍ରଛାୟା ତଳେ ପ୍ରେମଶବ୍ଦର କିଛି ସାଙ୍କେତିକ ଆଦାନ୍‌ପ୍ରଦାନ, ତଥାପି ଅକୁହାକଥାର ଲୁଚକାଳି, ନକହି ନକହି ଛାତି ତଳେ ଛାପି ରଖିଥିବା ଦରଦୀମନର ସ୍ୱର, ଖୋଲା ହୃଦୟରେ ଜଣାଇପାରୁନଥିବା ସନ୍ଦେଶର ରହସ୍ୟମୟ ଉଦ୍ଭାନ୍, ଜିହ୍ୱାକୁ ଆସୁଆସୁ ଲହଡ଼ିପରି ଫେରିଯାଉଥିବା କଥ୍ୟ, ଆଖିଆଖିର ଭାଷାକୋଷର ଶେଷଶବ୍ଦର ଅନ୍ତ ହେବା ପରେ ବାଚିକ ଶବ୍ଦର ଅନ୍ୱେଷଣରେ ଦୁଇ ଉଚ୍ଛଳ ଜୀବନ, ଅନ୍ତହୀନ ସ୍ୱପ୍ନର ପ୍ରତିକ୍ଷାମାଣ ବାସ୍ତବ ସ୍ୱରୂପ, ଏମିତିଏମିତ ନ'ଶହ ଅନେଶ୍ୱତ ଦିନରାତି ଅତିବାହିତ ହେବା ପରେ ସମ୍ମାନପତ୍ର ଗ୍ରହଣ କରିବାରେ ସାମୟିକ କକ୍ଷବିଭାଜନର ବିରହଜ୍ୱାଳାକୁ ଆହୁରି ତେଜୀୟାନ୍ କରିପକାଇଲା । ମୁଁ ଓଡ଼ିଆ ବିଭାଗର ଛାତ୍ର, ସେ ପାସ୍‌ର ଛାତ୍ରୀ, ଶ୍ରେଣୀ ଭିନ୍ନ, କ୍ଲାସ୍ କୋଠରୀ ଭିନ୍ନ, ସମୟସୂଚି ଭିନ୍ନ ହେଲେ ବି ଆମେ ଥିଲୁ ଅଭିନ୍ନ, ଦୁଇ ଦେହର ଗୋଟିଏ ପ୍ରାଣ, ଗୋଟିଏ ବୃନ୍ତରେ ଲଗାଲଗି ଦୁଇଟି ସଜକଢ଼ି ।

ସେ, କେବଳ ସେ ହିଁ ଥିଲେ ମୋର ଏକାନ୍ତ ଅନ୍ତରଙ୍ଗୀ, ଏକୋଇର ସ୍ୱପ୍ନକଳିକା, ମୋର ରୋମାଣ୍ଟିକ୍ ଜୀବନର ଅର୍ଦ୍ଧାଙ୍ଗ, ମାୟାଧର ମାନସିଂହଙ୍କ କବିତା ପରି ମୂଲାୟମ, ଛୋଟ ମୋର ଗାଁଟି କବିତାର ପୋଖରୀ ତୁଠ ପଥରରେ ପଦମାର୍ଜ୍ଜନା କରୁଥିବା ସ୍ନାତା ଅବଳା, ବିଭୂତି ପଟ୍ଟନାୟକଙ୍କ ବଧୂ ନିରୂପମାର ନିରିମାଖୀ ମୁଖମଣ୍ଡଳର ସହାସ୍ୟ ବଦନା, ସହପାଠିନୀଙ୍କ ସଙ୍ଗରେ ଥିଲେ ଜଣାପଡୁଥିଲା ସଦ୍ୟସ୍ନାତା ଲାବଣ୍ୟବତୀ, ଅନ୍ଧପ୍ରାୟ ମୋର ମନଦର୍ପଣରେ ପ୍ରତିଫଳିତା କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ, ମନଆକାଶର ଉଜ୍ଜ୍ୱଳତମ ତାରକା, ଶରତ ସକାଳର ସଦ୍ୟପ୍ରସ୍ଫୁଟିତା ଗୋଲାପୀ କମଳ, ବସନ୍ତର ଫୁଲଭର୍ତ୍ତି ଉଦ୍ୟାନରେ ମୁଣ୍ଡ ଟେକିଥିବା ଏକମାତ୍ର ରକ୍ତିମ ଗୋଲାପ, ଶ୍ରାବଣର ବର୍ଷଣମୁଖର ସନ୍ଧ୍ୟାର ରିମ୍‌ଝିମ୍ ସଂଗୀତର ମହ୍ଲାର, ଦେବଦେବ ମହାଦେବଙ୍କ ଡମ୍ବରୁବାଦନର ତାଳେତାଳେ ଲାସ୍ୟ ତାଣ୍ଡବର ମୁଦ୍ରାର ପର୍ବତକନ୍ୟା ପାର୍ବତୀ ।।



ସେ ଆସୁଥିଲେ, କଲେଜ୍ ହସୁଥିଲା କୃଷ୍ଣଚୂଡ଼ାର ସିନ୍ଦୁରିଆ ରଙ୍ଗରେ, ଅନୁପସ୍ଥିତ ରହିଲେ ଅନ୍ତର ମୋର ଥମ୍‌ଥମେଇ ଯାଉଥିଲା ଆଷାଢ଼ର ନିସ୍ତବ୍ଧ ଲୁହରେ। ବି.ଏ. ପଢ଼ିବାର ପ୍ରତିଟି ମୁହୂର୍ତ୍ତରେ ସେ ଚଳପ୍ରଚଳ କରୁଥିଲେ ମୋର ଶିରାପ୍ରଶିରାରେ ପ୍ରବାହିତ ରକ୍ତର ସୁଅରେ, ମନବୀଣାର ପ୍ରତିଟି ଝଙ୍କାରରେ। କ୍ରମଶଃ ଆମେ ଭାବରେ ଭାବରେ ନିକଟତର ହେଲୁ, ବାକ୍‌ନୀରବତାକୁ ଭାଙ୍ଗି ମଧୁରମଧୁର ପ୍ରେମଶବ୍ଦରେ କଥାବାର୍ତ୍ତା ହେଲୁଁ, ପରସ୍ପର ପରସ୍ପର ପରିଚୟ ଆଦାନପ୍ରଦାନ କଲୁଁ, କଳ୍ପନାର ପରୀ ରାଇଜରୁ ପୁଷ୍ପକ ବିମାନରେ ବାସ୍ତବତାର ପୃଥିବୀକୁ ଓହ୍ଲାଇଲୁ, ସେ କିଏ, ମୁଁ କିଏ, ତାଙ୍କ ପରିବାର, ମୋ ପରିବାରର ସମସ୍ତ କଥ୍ୟନଥି ଦେବାନେବା କଲୁଁ, ବିଶ୍ୱାସ, ଆତ୍ମବିଶ୍ୱାସରେ ରୂପାୟିତ ହେଲା, ଆଖିର କଥା ହୃଦୟର କଥା ପାଲଟିଗଲା, ଭଲ ପାଇବାର ସମ୍ପର୍କ ଆହୁରି ସୁଦୃଢ଼ ହୋଇଗଲା, ଆମେ ଉଭୟେ ପରସ୍ପର ପ୍ରତି ଆସ୍ଥା ପ୍ରକଟ କରିଦେଲୁଁ, ତଥାପି ବାକି ରହିଗଲା ବାଚିକ ସ୍ୱୀକୃତି, ଖୋଲାଖୋଲି ଆମେ ପରସ୍ପରକୁ ଭଲ ପାଉଛୁ ବୋଲି ସ୍ୱୀକାରୋକ୍ତି, ଭାବରେ, ହୃଦୟରେ, ମାନସରେ, କଥାରେ ସମର୍ପଣର ନିରୁତାପଣ।।

ଆମ ଆଗରେ ଯୋଡ଼ିଯୋଡ଼ି ହୋଇ କଲେଜ୍ ବାରଣ୍ଡାରେ ସ୍ୱାଧୀନ ଭାବରେ ପ୍ରେମର ରଜ୍ଜୁରେ ବାନ୍ଧି ହୋଇଥିବା ପ୍ରେମିକ-ପ୍ରେମିକା ଯା'ଆସ କରୁଥିଲେ, ଆମର କିନ୍ତୁ ସେମିତି କିଛି ବାହ୍ୟାଡମ୍ବର କରିବାର ଅଭିପ୍ରାୟ ନଥିଲା, ବ୍ୟକ୍ତିନିଷ୍ଠ ପବିତ୍ରତାକୁ ସାର୍ବଜନୀନ କରିବାକୁ ଉଭୟେ ବିରୋଧ କରୁଥିଲୁ, ନୀରବ ପ୍ଳାବନକୁ ଖରସ୍ରୋତା କରିବାର ତୀବ୍ର ବିରୋଧ କରୁଥିଲୁ ଆମେ ଦି'ଜଣ ଯାକ, ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟକୁ ହାସଲ କରିବାକୁ ହେଲେ ଆମରି କ୍ଷେତ୍ରରେ ପ୍ରେମସାଧନା, ପ୍ରେମତପସ୍ୟାର ଆବଶ୍ୟକତା ଥିଲା। ତେଣୁ କଲେଜ୍ କେଣ୍ଟିନରେ, ଲେଡିସ୍ କମନ୍‌ରୁମ୍‌ରେ, କଲେଜ୍ ଚୌତରାରେ, ଲାଇବ୍ରେରୀର, ଅନ୍ଧାରୁଆ ଗଳିରେ ଆମ ଦୁହିଙ୍କୁ ଦେଖିପାରି ନଥିଲେ ବନ୍ଧୁବର୍ଗ। କାରଣ, ଆମ ଅଭିଳାଷ ଥିଲା ଏକ, ଆକାଂକ୍ଷା ଥିଲା ଏକ, ଲକ୍ଷ୍ୟ ଥିଲା ଏକ, ଏକ ହିଁ ହୋଇଯିବାର ଶାଶ୍ୱତ ଲଗ୍ନକୁ ସଗର୍ବେ ସ୍ୱାଗତ କରିବାର ମନୋବାଞ୍ଛାକୁ ସାକାର କରିବାଥିଲା ଆମ ଦୁହିଙ୍କର ଏକାନ୍ତ ବାସନା।

ଓଡ଼ିଆ ବିଭାଗର ସହ ସମ୍ପାଦକ ହେବାପରେ ମୋର ସଂଗୀତପ୍ରତି ଆଗ୍ରହ ଦେଖି ସଂଗୀତ ସଂସଦର ଉପସଭାପତି ଇଂରାଜୀ ପ୍ରଫେସର ମନୀଷ ଚକ୍ରବର୍ତ୍ତୀ ମୋ ନାମକୁ ସହସମ୍ପାଦକ ଭାବରେ ମନୋନୟନ କରି ଅଧ୍ୟକ୍ଷଙ୍କ ଦସ୍ତଖତରେ ନୋଟିସ୍ ବାହାର କରିଦେଲେ। ମୋ ସହ ବନ୍ଧୁମାନେ ମୋର ଏହି ନୂତନ ପଦବୀକୁ ନେଇ

ଖୁସିହେଲେ । ଅଗ୍ରଜ ସୁଗାୟକ ନିମାଇଁ ବେହେରା ସମ୍ପାଦକ ଓ ମୁଁ ତାଙ୍କ ସହ ସମ୍ପାଦକ ରୂପେ କାର୍ଯ୍ୟାରମ୍ଭ କଲୁ ।

ସମଗ୍ର କଲେଜ୍‌ର ସାହିତ୍ୟ ଓ ସଂଗୀତ ବିଭାଗ ହାତକୁ ଆସିବା ପରେ ମୁଁ ପୂରା ଦମ୍‌ରେ ପ୍ରସ୍ତୁତ ହୋଇଗଲି ବିଭିନ୍ନ କାର୍ଯ୍ୟକ୍ରମକୁ ସାକାର କରିବାରେ ।

ସବୁ ଠିକ୍ ଚାଲିଲା, ପ୍ରୋତ୍ସାହନ ପାଉଥିଲି ତାଙ୍କ ଉପସ୍ଥିତିରୁ, ପ୍ରେମ ଗଦ୍‌ଗଦ୍ ଥିଲେ, ଯେତେ ବଡ଼ ପାହାଡ଼ ହେଲେ ବି ତାକୁ ଭୂମିସାତ୍ କରିବାକୁ ବେଶିସମୟ ଲାଗି ନଥାଏ । ତାଙ୍କ ଆତ୍ମିକ ଉପସ୍ଥିତି, ମୋର ସକଳ ଉଦ୍ୟମଗୁଡ଼ିକୁ ସଫଳ କରିବାରେ ସହାୟକ ହେଲା । ସେ ଥିଲେ ଓ ଅଛନ୍ତି ମୋର ଅନୁପ୍ରେରଣାର ସାଥୀ, ଶୁଷ୍କ ମରୁଭୂମିର ନୀଳହ୍ରଦ, ଯେତେ ଦେଖୁଥିଲେ ନୂଆଁ ଦିଶୁଥାଇର ସୌନ୍ଦର୍ଯ୍ୟମୟୀ ଚିଲିକାର ନୀଳ ଉର୍ମି, ପ୍ରେମୋଚ୍ଛ୍ୱାସର ଉଦ୍ଧିତ ଶିହରଣ, ଫାଲଗୁନର ରଙ୍ଗାରଙ୍ଗ ପୃଥିବୀର ଚିତ୍ରପଟ ! ! !



**ବି**.ଏ. ଦ୍ୱିତୀୟବର୍ଷଟି ଅନେକ ଦୃଷ୍ଟିରୁ ଗୁରୁତ୍ୱ ବହନ କରିଥିଲା । ପ୍ରଥମ କଥାଟି ହେଲା, ଦୁଇ ଦୁଇଟି ସଂସଦର ସହସଂପାଦକ ଭାବରେ ମନୋନୀତ ହେବା ପରେ ବିଭିନ୍ନ ସାହିତ୍ୟ ଓ ସଂଗୀତ କାର୍ଯ୍ୟକ୍ରମଗୁଡ଼ିକର ପରିଚାଳନା ଭାର ଏବଂ ଅନ୍ୟଟି ହେଲା ଓଡ଼ିଆ ସାହିତ୍ୟ ସଂସଦର ବିକାଶପାଇଁ ବିଭିନ୍ନ ପଦକ୍ଷେପ ନେବା । ସଂଗୀତସଂସଦ ପାଇଁ ବାଦ୍ୟଯନ୍ତ୍ର ଆଦି କ୍ରୟକରିବା ପାଇଁ ସଂପାଦକ ନିମାଇଁ ବେହେରାଙ୍କ ସହ କଲିକତା ଯିବାକୁ ପଡ଼ିଥିଲା । ଆମ ସହ ଯାଇଥିଲେ ନିମାଇଁଦାଦାଙ୍କ ବନ୍ଧୁ ରବୀନ୍ଦ୍ର ପାଢ଼ୀ, ଯେ ତାଙ୍କ ସହପାଠୀ ମଧ୍ୟ ଥିଲେ । ରବିଦାଦା ଆଜି ଦିବଙ୍ଗତ । ନିମାଇଁଦାଦା ଜଣେ ସଂଗଠକ ହେବା ସଙ୍ଗେସଙ୍ଗେ ଭଲ ଗାୟକ ଅଟନ୍ତି । ବିଭିନ୍ନ ସଂଗୀତ କାର୍ଯ୍ୟକ୍ରମରେ ସେ ପ୍ରଭୁ ନିଳାଦ୍ରୀ ବିହାରୀ, ଏଇ ମନ ଗଙ୍ଗା, ଏଇ ମନ ଯମୁନା, ଏଇ ମନ ବୃନ୍ଦାବନ ତଥା ମହମ୍ମଦ ରଫିଙ୍କ ସୌବାର୍ ଜନମ୍ ଲେଙ୍ଗେ ଆଦି ଗୀତମାନ ଗାଇ ଲୋକପ୍ରିୟତା ହାସଲ କରିଥିଲେ । ପାଠପଢ଼ା ପରେ ଓକିଲାତି କରୁଥିଲେ । ତାଙ୍କ ସହ କଲିକତା ଯାତ୍ରାଟି ମଧ୍ୟ ଭାରି ସ୍ମରଣୀୟ । ପ୍ରଥମକରି କଲିକତା ଯାଇଥିବାରୁ ମୋଭିତରେ ଅନେକ ଉତ୍ସୁକତା ଭରିଥିଲା । ତେତ୍ତରୀ, ଚୌନ୍ତରୀ ମସିହାର ଘଟଣା । କଲିକତା ଯିବାକୁ ହେଲେ ଦୁଇଟି ଟ୍ରେନ୍‌ରେ ବସିବାପାଇଁ ପଡୁଥିଲା । ଗୋଟିଏ ଟ୍ରେନ୍‌ରେ ଟାଟା ଯାଏଁ, ସେଇଠୁ ଓହ୍ଲାଇ ପୁଣି ଅନ୍ୟ ଏକ ଟ୍ରେନ୍‌ରେ ହାଓଡା । ନିମାଇଁ ଦାଦା ଓ ରବୀନ୍ଦ୍ରଦାଦାଙ୍କ ସହ ଯାଇଥିବାରୁ ମୁଁ ତାଙ୍କ ସହ ନିର୍ଭୟରେ କଲିକତାନଗର ବୁଲିଥିଲି, ଏସପ୍ଲାନେଡ ଛକ, ଭିକ୍ଟୋରିଆ

ମେମୋରିଆଲ୍ ଆଦି ପର୍ଯ୍ୟଟନ ସ୍ଥଳୀ ବୁଲିଦେଖିବା ସହ ଶରତସର୍ଦ୍ଦାର ଏଣ୍ଡ ସନ୍ସ ଦୋକାନକୁ ଯାଇ ସେଠାରୁ ଦୁଇଟି ହାରମୋନିୟମ୍, ଗୀଟାର୍, ସୀତାର୍ ପାଇଁ ତାର, ଟ୍ରୋଙ୍ଗୋ, ନାଲ୍, ପର୍ କସନ୍ ଝୁମୁକା ଭଳି କିଛି ବାଦ୍ୟଯନ୍ତ୍ର କିଣିଲୁ ସଂସଦ ପାଇଁ ଏବଂ ଦୋକାନବାଲା କେମିତି ସେଗୁଡ଼ିକ ଭଲଭାବରେ ସମ୍ବଲପୁର ପଠାଇବ, ତାର ମଧ୍ୟ ବ୍ୟବସ୍ଥା କରିଦେଲୁ । ମୁଁ ମୋର ସୀମିତ ଆର୍ଥିକ ବ୍ୟବସ୍ଥା ଭିତରେ ଚାଇନା ମାର୍କେଟରୁ ହୀରୋ କମ୍ପାନୀର ମାଉଥ୍ ଅର୍ଗେନ୍‌ଟିଏ କିଣିଥିଲି, କୋଡ଼ିଏ କି ତିରିଶ ଟଙ୍କା ନେଇଥିଲା । ନିମାଇଁଦାଦା ତାଙ୍କ ଘର ପାଇଁ କିଛି ଘରତିଆରି ସାମଗ୍ରି କିଣାକିଣି କରିବାପରେ ସମ୍ବଲପୁର ଫେରି ଆସିଥିଲୁ ।

ସେତେବେଳେ ସଂଗୀତ ସଂସଦର ଅନେକ ବାଦ୍ୟଯନ୍ତ୍ର ଥିଲା । ସୀତାର୍, ବୀଣା, ବେଞ୍ଜୋଲିନ୍, ଜାଜ୍‌ସେଟ୍, ବଙ୍ଗୋ, ଟ୍ରେଙ୍ଗୋ, ହାରମୋନିୟମ୍, ବେହେଲା, ଏସରାଜ୍ ଭଳି ଦାମିକିଆ ବାଦ୍ୟଯନ୍ତ୍ରମାନ ସ୍ୱତନ୍ତ୍ର ଆଲମିରାମାନଙ୍କରେ ସୁରକ୍ଷିତ ରଖାଯାଇଥିଲା । ସରାଫ୍‌ବାବୁ ସାମୟିକ ସଂଗୀତ ଶିକ୍ଷକ ଭାବରେ ନିୟୋଜିତ ହୋଇଥିଲେ । ସପ୍ତାହକୁ ତିନି ଦିନ ଚାରିଟାବେଳେ ଆସି ସେ ଉତ୍ସାହୀ ଛାତ୍ରମାନଙ୍କୁ କଣ୍ଠସଂଗୀତ ଶିକ୍ଷାପ୍ରଦାନ କରୁଥିଲେ । ଏହି ବ୍ୟବସ୍ଥା ମୋ ଦାୟିତ୍ୱ ନେବା ପୂର୍ବରୁ ବନ୍ଦ ହୋଇଯାଇଥିଲା । ମୁଁ ନିମାଇଁ ଦାଦା ଓ ସଂସଦର ଉପସଭାପତି ମନୀଷ ଚକ୍ରବର୍ତ୍ତୀ ସାର୍‌ଙ୍କ ସହ ଆଲୋଚନା କରି ତାକୁ ପୁଣି ଆରମ୍ଭ କରିଥିଲି । ତେବେ ଛାତ୍ରାଭାବ ଦୃଷ୍ଟିରୁ କିଛିମାସ ଚାଲିବା ପରେ ବନ୍ଦ ହୋଇଗଲା । ସଂଗୀତ ସଂସଦ ସାଇକଲଷ୍ଟାଣ୍ଡକୁ ଲାଗିଥିବା ଏକ ଆଜ୍‌ବେସ୍‌ଟସ୍ ଛାତର କୋଠରୀରେ ଚାଲୁଥିଲା । ସଂଗୀତ ଶ୍ରେଣୀ ନ ହେଲେ ବି ବିଭିନ୍ନ ସମୟରେ କଳାକାରମାନେ ଆସି ରିହାର୍ସାଲ କରୁଥିଲେ, ନିୟମିତ ସଂଗୀତ ରିହାର୍ସାଲ୍ ହେଉଥିଲା, ବାଦ୍ୟଶିକ୍ଷା ପାଇଁ କଳାକାରମାନେ ସ୍ୱତଃପ୍ରବୃତ୍ତ ଭାବରେ ଆସି ରିହାର୍ସାଲ୍‌ରେ ଯୋଗ ଦେଉଥିଲେ ।

ସେପଟେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ବିକାଶ ପାଇଁ ପ୍ରତ୍ୟହ ଆଲୋଚନା ଚାଲିଲା । ଶେଷ ବର୍ଷର ଛାତ୍ରଛାତ୍ରୀମାନଙ୍କ ସହଯୋଗରେ ମୁଖ୍ୟ ପାଠାଗାରରୁ ଦୁଇତିନି ଶହ ରେଫରେନ୍ସ ପୁସ୍ତକ ଅଣାଯାଇ ଗୋଟିଏ ଛୋଟ ଆଲମିରାରେ ରଖାଯାଇ ନିଜସ୍ୱ ବିଭାଗୀୟ ପାଠାଗାର ଆରମ୍ଭ କରାଗଲା, ତା ସହ ବୁକ୍‌ବେଙ୍କ୍ ମଧ୍ୟ ଖୋଲାଯାଇ ଆଉ କିଛି ପୁସ୍ତକ ସୀମିତପାଣ୍ଠିରେ କ୍ରୟ କରାଗଲା । ବିଭାଗୀୟ ମୁଖ୍ୟ ପ୍ରଫେସର ତ୍ରିଲୋଚନ ମେହେର ଆମ ପ୍ରତିଟି ପଦକ୍ଷେପକୁ ସମର୍ଥନ କରୁଥିଲେ । ହେଲେ ବାରମ୍ବାର ମୋତେ ସତର୍କ କରିଦେଉଥିଲେ, ବାବୁ, ଗୋଲମାଲ୍ ନାଇଁ କର୍‌ବ, ଯେନ୍ କାମ୍ ବି କର୍‌ବ,

ଶାନ୍ତିଥି କରବ । ଦିବଙ୍ଗତ ମେହେର ସାର୍‌ଙ୍କ ପ୍ରତିଟି କଥା ମୋର ମନେ ଅଛି । ମୋର ଦୁର୍ଦ୍ଦାନ୍ତପଣକୁ ତାଙ୍କ ଭାରୀ ଭୟଥିଲା । ସ୍ୱୟମ୍ଭୂନାଥ ଖଣ୍ଡଗିରି, ଶେଷବର୍ଷର ଛାତ୍ରଥିଲେ ଆମ ସମ୍ପାଦକ, ଜଣେ ସରଳବିଶ୍ୱାସୀ, ଦୃଢ଼ ସଂଗଠକ, ବନ୍ଧୁବତ୍ସଳ ପ୍ରକୃତିର ଯୁବକ ଜଣେ, ମୋର ପ୍ରତ୍ୟେକ ପ୍ରସ୍ତାବପ୍ରତି ଅନ୍ଧ ଭାବରେ ସମର୍ଥନ ଥିଲା ତାଙ୍କର । ଶେଷବର୍ଷର ପୁଷ୍ପା ନାନୀ, ସ୍ୱପ୍ନା ନାନୀ, ଉର୍ମିଳା ନାନୀ ତଥା ନଳିନୀ ନାନୀ ପ୍ରମୁଖ ବିଭାଗର ପ୍ରତି କାର୍ଯ୍ୟକ୍ରମକୁ ଆନ୍ତରିକ ସହଯୋଗ କରୁଥିଲେ । ଖଣ୍ଡଗିରି ଦାଦା ଓ ପୁଷ୍ପାନାନୀଙ୍କ ବଳିଷ୍ଠ ନେତୃତ୍ୱରେ ବିଭାଗଟି ଜୀବନ୍ତ ପାଲଟିଗଲା । ପୁଷ୍ପା ନାନୀଙ୍କ ସ୍ନେହ, ମମତା ଭରା ମଧୁର କଣ୍ଠର ଶବ୍ଦମାନ ଆମକୁ ଆକର୍ଷିତ କରୁଥିଲା ।

ସଂସଦର ପାଣ୍ଠିବୃଦ୍ଧି ପାଇଁ ସମସ୍ତେ ବସି ନିଷ୍ପତ୍ତି ନେଲୁ ସିନେମାଟିଏ ଆଣି 'ଚେରିଟୀ ସୋ' କରି ଅର୍ଥସଂଗ୍ରହ କରିବା । ଆଦିକନ୍ଦ ସାର୍, ବଳରାମସାର୍, ବନମାଳୀ ସାର୍‌ଙ୍କ ସମର୍ଥନରେ ଏଭଳି ଏକ ଦୁଃସାହସିକ ପଦକ୍ଷେପ ନିଆଗଲା, ଅନିଚ୍ଛା ସତ୍ତ୍ୱେ ମେହେର୍‌ସାର୍ କୁନ୍ଥେଇକୁନ୍ଥେଇ ହଁ ଭରିଥିଲେ । ତାଙ୍କ ଏକମାତ୍ର କଥା ଥିଲା, ବାବୁ ଦ୍ୱାରିକା, ସବୁ କର, ହେଲେ ଶାନ୍ତି ଥି କରବ, ଗୋଲମାଲ୍ ନାଇଁ କର୍‌ବ । ତାରିଖ ନିର୍ଣ୍ଣୟ ହେଲା, ଆଗରୁ ଯେହେତୁ କଲିକତା ଯାଇଥିଲି, ମୋ ଉପରେ ହିଁ ଦାୟିତ୍ୱ ନ୍ୟସ୍ତହେଲା, କଲିକତାଯାଇ ଭଲ ସିନେମାଟିଏ ଆଣିବାପାଇଁ । ଏକାଏକା ଯିବାକୁ ମନେ ମନେ ଭୟ ଲାଗୁଥିଲେ ବି ଆଗରୁ କଲେଜ୍ ପାଇଁ ଯେଉଁ ବନ୍ଧୁମାନେ ଏଭଳି କାର୍ଯ୍ୟ ପାଇଁ କଲିକତା ଯାଇଥିଲେ, ତାଙ୍କ ସହ ପଚରାଉଚୁରା କରି ଏକାଏକା କଲିକତା ପଳେଇଲି । ସାଙ୍ଗରେ ନେଇଥିବା ଠିକଣା ଅନୁସାରେ ସିନେମା ବିତରକ ମାଲିକ ପାଖରେ ପହଞ୍ଚିଗଲି, ମୋର ଉଦ୍ଦେଶ୍ୟ ଜଣାଇଲି । ସେ ତାଲିକା ଧରେଇଦେଲେ, ତା ଭିତରୁ ବାଛିବାକୁ ପଡ଼ିବ ସିନେମାଟିଏ । ଶେଷକୁ ରାଜକପୁରଙ୍କ ଅଭିନୀତ ଜାଗ୍‌ତେ ରହୋ କି ଶ୍ରୀ 420 ସିନେମା ବାଛିଲି, ଯେତେ ଟଙ୍କା ଦରକାର ପେମେଣ୍ଟ କରିଦେଲି, ଆଉ ମନ ଖୁସିରେ ଟେକ୍ସି କରି ହାଓ୍ୱଡ଼ାଆସି ସମ୍ବଲପୁର ଟ୍ରେନ ଧରି ପଳେଇଆସିଲି, ଗଡ଼ଟିଏ ଜିତିଗଲା ଭଳି ଲାଗୁଥିଲା, ଏଇ ବୟସରେ ଏକା କଲିକତା ଯାଇ ସିନେମା କଣ୍ଟାକ୍ଟ କରି ସଫଳତାର ସହ ସ୍ୱଗୃହ ଲେଉଟିବା କଣ କମ୍ ଗର୍ବର କଥା ! !

ଗେଇଟୀ ଟକିଜ୍ ରିଜର୍ଭ କରାହେଲା, ଟିକଟ ଛପାହେଲା, ବିଭାଗର ସମସ୍ତେ ଲାଗିପଡ଼ିଲେ ଟିକଟବିକ୍ରି କରି ଅର୍ଥ ସଂଗ୍ରହ ପାଇଁ ଆମ ବିଭାଗର ସମସ୍ତେ, ଝିଅ ପୁଅ ସମସ୍ତେ ମିଳିତ ଭାବରେ ଘନଘନ ଉଦ୍ୟମ କଲୁ, ଏପରିକି ଆମ ସାର୍‌ମାନେ ମଧ୍ୟ ଲାଗିପଡ଼ିଲେ । ଚେରିଟୀ ସୋ'ର ତାରିଖ ପାଖେଇ ଆସିଲା, ଯେଉଁ ରବିବାର ଦଶଟା

ବେଳେ ସୋ, ସେହି ସକାଳ ଟ୍ରେନ୍‌ରେ ଆସିବାର ଥାଏ ରିଲ୍‌ଯୁକ୍ତ ସିନେମାପେଟି । ମୁଁ ମୋର ଜଣେ ଦୁଇଜଣ ବନ୍ଧୁମାନଙ୍କ ସହ ଫାଟକ ଷ୍ଟେସନରେ ଟ୍ରେନ୍‌କୁ ଅପେକ୍ଷା କରିଥାଉ । ଟ୍ରେନ୍ ଆସିଲା, ସିନେମା ପେଟି ବି ଆସିଲା, ମୋ ମନରେ ଖୁସି କାହିଁରେ କେତେ । ଯା'ହେଉ ମୋର ଅକ୍ଳାନ୍ତ ପରିଶ୍ରମ ଶେଷରେ ସଫଳହେଲା, ରିକ୍ସାଟାରେ ପେଟି ସବୁକୁ ଲଦାଯାଇ ଗେଇଟୀ ଟକିଜ୍ ଅଭିମୁଖେ ସଗର୍ବେ ଚାଲିଲା ସିନେମାଲଦା ରିକ୍ସା । ଗେଇଟୀ ଟକିଜ୍‌ରେ ନାହିଁନଥିବା ଭିଡ଼, ପ୍ରୋଜେକ୍ଟର ଚଳଉଥିବା ଭଦ୍ରବ୍ୟକ୍ତିଙ୍କୁ ପେଟି ହସ୍ତାନ୍ତର କରି ସାଙ୍ଗମାନଙ୍କ ସହ ବେଲକନୀରେ ବସିପଡିଲି ସିନେମା ଦେଖିବାପାଇଁ ।

ସିନେମା ଦେଖା ଆରମ୍ଭ ହେଲା, ପରଦା ଆଲୋକିତ ହେଉଥାଏ, କଣ ସବୁ ଦେଖାଯାଇ ପୁଣି ଛିଣ୍ଡି ଯାଉଥାଏ । ଏପରି ତିନିଚାରିଥର ହେବାପରେ ଟକିଜ୍‌ର ମାଲିକ ମୋତେ ଡକେଇ କହିଲେ, ଏଇଟା କି ସିନ୍‌ମା ଆନିଛ, କଟି ଯାଉଛେ, ଇଂଲିଶ ପିକ୍ଚର୍ ଅଛେ, ଖେରାପ୍ ରିଲ୍ ଆଛେ, ଛିଡ଼ି ଯାଉଛେ, ସିନ୍‌ମା ନାଇଁଚାଲେ । ନାଇଁ ହେଇପାରେ !! ମୋ ମୁଣ୍ଡରେ ପାହାଡ଼ଟିଏ ଖସିଲା ପରି ଲାଗିଲା, ଝାଳଭର୍ତ୍ତି କପାଳ ନେଇ ମୁଁ ସାର୍‌ମାନଙ୍କୁ ଏ କଥା ଜଣେଇଲି । ସୋ' ସ୍ଥଗିତ ରଖାଗଲା, ନୂଆଁ ତାରିଖ ନୋଟିସ୍ ଜରିଆରେ ଦର୍ଶକଙ୍କୁ ଜଣେଇ ଦିଆଯିବ ବୋଲି ଘୋଷଣାକରି ଯେ ଯାହା ଘରକୁ ମନମାରି ଫେରିଗଲେ । ବିଭାଗୀୟ ମୁଖ୍ୟଙ୍କ ତାଗିଦ୍, ପେଟି ନେଇ କଲିକତା ଯାଇ ଫେରାଅ, ନୂଆଁ ତାରିଖ ଠିକ୍ କର, ଯାହା କର୍‌ବ, ଶାନ୍ତିଥି କର୍, ଗୋଲ୍‌ମାଲ୍ ନାଇଁ କର୍‌ବ । ତହିଁ ଆରଦିନ ପୁଣି ମୋତେ କଲିକତା ଯିବାକୁ ପଡ଼ିଲା, ପେଟି ଫେରେଇ ଅନ୍ୟ ସିନେମା ବନ୍ଦୋବସ୍ତ କରିବା ପାଇଁ । ଗାଇ ମାଇଲେ ମଲ, ଗାଇକୁ ମାଇଲେ ମଲ !! ବାଧ ହୋଇ ପେଟି ଫେରେଇବା ବୋଝ ବୋହିଲି । ସତ କହୁଛି, ମାତ୍ର ଅଶୀ ଟଙ୍କାରେ କଲିକତା ଯାଇ ପେଟି ଫେରାଇ ସମ୍ବଲପୁର ଚାଲିଆସିଲି । ହାଓଡାକୁ ଟିକଟ କୋଡ଼ିଏ ଟଙ୍କା, ଯିବା ଆସିବା ଚାଳିଶ ଟଙ୍କା ଟେକ୍ସି ଭଡ଼ା ଯିବା ଆସିବା କୋଡିଏ ଟଙ୍କା ଆଉ ପୁରୀତରକାରୀ ଦଶଟଙ୍କା ଲେଖାଏଁ ଦୁଇଥର, ଏଭଳି ମାତ୍ର ଅଶୀ ଟଙ୍କାରେ କଲିକତା ଯାଇ କାମ ଫତେକରି ଚାଲିଆସିଲି, ଫେରିବା ବାଟ ସାରା ମୁଁ ଭାବୁଥିଲି, ଆରେ, ମୁଁ ଗୋଟାଏ ଠକ ସିନେମା ବିତରକର ଜାଲରେ ପଡ଼ିଯାଇଥିଲି । ସବୁଦୋଷ ମୋର, ତେବେ ସେ ଦିନଠାରୁ ସିନେମା ଆଣିବା କଥା ସମସ୍ତେ ପାଶୋରି ଦେଲେ । କିଛି ଟଙ୍କା ସଂଗ୍ରହ ହେଲା, କିନ୍ତୁ ଦର୍ଶକଙ୍କୁ ଆଉ ସିନେମା ଦେଖାଇ ହେଲାନି । ଏ ବିଫଳତା ବହୁଦିନ ପର୍ଯ୍ୟନ୍ତ ମୋତେ ବ୍ୟତିବ୍ୟସ୍ତ କରି ପକାଇଥିଲା । ତଥାପି

ଆଗକୁ ବଢ଼ିବାକୁ ପଡ଼ିବ, ପଛକୁ ଲେଉଟି ଦେଖିଲେ ଆଗକୁ ବଢ଼ି ହୁଏନାହିଁ ।

ସମୟ ଟେଷ୍ଟ ପରୀକ୍ଷା ପାଖାପାଖି । ଖଣ୍ଡଗିରି ଦାଦା ଓ ପୁଷ୍ପାନାନୀଙ୍କ ସଫଳ ନେତୃତ୍ୱରେ ବଣଭୋଜି ଆୟୋଜିତ ହେଲା କୁଇଲିଘୋଗରରେ । ବାର୍ଷିକଉତ୍ସବ ପାଇଁ ଚର୍ଚ୍ଚା ଆରମ୍ଭ ହେଲା । ମୋର ଏକା ଜିଦ୍, ବାର୍ଷିକ ଉତ୍ସବ ମୁଖ୍ୟ ମଞ୍ଚରେ ଆୟୋଜିତ ହେବ, ନାଟକ ଅଭିନୀତ ହେବ । ମୋର ଏହି ପ୍ରସ୍ତାବ ସମସ୍ତଙ୍କୁ ବିସ୍ମିତ କରୁଥିଲା, ଅସମ୍ଭବ ମନେକରୁଥିଲେ ସମସ୍ତେ । ମୁଁ କିନ୍ତୁ ଦୃଢ଼ନିଶ୍ଚିତ, ବନ୍ଧୁ ପ୍ରଦୀପ ରାୟ, କାହ୍ନୁ, ଦିଗମ୍ବର, ଖଣ୍ଡଗିରି ଦାଦା, ପୁଷ୍ପାନାନୀ ଆଦିଙ୍କ ସହ ଘନଘନ ଆଲୋଚନା କଲି । ସାର୍‌ମାନଙ୍କ ସହ ମଧ୍ୟ ଚର୍ଚ୍ଚା କଲି ।

ଇତି ମଧ୍ୟରେ ନାଟ୍ୟ ସଂସଦର ନାଟ୍ୟୋତ୍ସବ ପାଇଁ ନୋଟିସ୍ ବାହାରିଲା । ରବି ନାରାୟଣ ବହିଦାର ଓ ସୁଶାନ୍ତ ମିଶ୍ର ସମ୍ପାଦକ ଓ ସହସମ୍ପାଦକ ଭାବେ ନାଟକପାଇଁ ଯୋଜନା ଆରମ୍ଭ କରିଦେଲେ । ଟେଲେଣ୍ଟ ଟେଷ୍ଟ ପାଇଁ ନୋଟିସ୍ ବାହାରିଲା । ନାଟକ ହେବ ରତ୍ନାକର ଚୈନୀଙ୍କ ରଚିତ 'ପୁନଷ୍ଚ ପୃଥିବୀ', ନିର୍ଦ୍ଦେଶକ ଥିଲେ ମାନଭଞ୍ଜନ ହୋତା, ଟେଲେଣ୍ଟ ଦେଖାଇଲି, ହେଲେ ଟେଷ୍ଟରେ ଉତ୍ତୀର୍ଣ୍ଣ ହୋଇପାରିଲି ନାହିଁ । ମନ ଭିତରେ ଅବଶୋଷ ରହିଗଲା । ତିନି ବର୍ଷ ହେଲା ଏ କଲେଜ୍‌ରେ ପଢ଼ିଲିଣି, ଡ୍ରାମାଟିଏ କରିପାରିଲି ନାହିଁ ।। ଏହି ଅନୁତପ୍ତ ମନ ହିଁ ମୋତେ ବାଧ୍ୟ କଲା, ଓଡ଼ିଆ ସାହିତ୍ୟ ସଂସଦର ବାର୍ଷିକ ଉତ୍ସବରେ ନାଟକ ହିଁ ହେବ, ସେଇ ନାଟକରେ ମୁଁ ଓ ମୋ ସହ ବିଭାଗର କଳାକାରମାନେ ଅଭିନୟ କରିବେ । ଅଭିନେତ୍ରୀ ସମସ୍ୟାରେ ଯୁଝୁଥିବା ନାଟ୍ୟ ସଂସଦର ଜବାବରେ ଆଉ ଗୋଟାଏ ନାଟକ ହେବ, ଯେଉଁଥିରେ କେବଳ ଅଭିନେତ୍ରୀମାନେ ହିଁ ଅଭିନୟ କରିବେ ।। ମୋର ଏହି ଗୁପ୍ତ ନିଷ୍ପତ୍ତିକୁ ସାକାର କରିବା ପାଇଁ ପୁଣି କଲମଚାଲିଲା ନାଟକ ରଚନାକରିବାରେ । ବିଜୟଟୀକା ରଚନାର ସାତଆଠ ବର୍ଷ ପରେ ସମୟର ଆବଶ୍ୟକତା ଓ ଆହ୍ୱାନକୁ ସମ୍ମାନ ଦେଇ ମୋ କଲମରୁ ଉତୁରି ଆସିଲା ନାଟକ 'ଦୁଇଟି ଶବ' । ପ୍ରଦୀପ, ପ୍ରଫୁଲ୍ଲ ଆଦି ବନ୍ଧୁମାନେ ପ୍ରସ୍ତୁତ ହୋଇଗଲେ ନାଟ୍ୟଯୁଦ୍ଧରେ ଲଢ଼ିବା ପାଇଁ । ସେପଟେ ପୁଷ୍ପାନାନୀ, ସ୍ୱପ୍ନାନାନୀଙ୍କ ପ୍ରୋତ୍ସାହନରେ ବିଭାଗର ଛାତ୍ରୀମାନେ ମଧ୍ୟ ପ୍ରସ୍ତୁତ ହୋଇଗଲେ ନାଟକରେ ଭାଗ ନେବା ପାଇଁ । ବନମାଳୀ ମିଶ୍ର ସାର୍ ତାଙ୍କପାଇଁ ବାଛିଲେ ରତ୍ନାକର ଚୈନୀଙ୍କ ରଚିତ ଏକାଙ୍କିକା 'ଆଜି ଶୁକ୍ରବାର' । ବାର୍ଷିକ ଉତ୍ସବର ପ୍ରାଥମିକ ପର୍ଯ୍ୟାୟରେ ବକ୍ତୃତା, ପ୍ରବନ୍ଧ, ନାଟ୍ୟ ରଚନା, କବିତା ରଚନା ଆଦି ପ୍ରତିଯୋଗିତା ଆୟୋଜନ ସଫଳତାର ସହ ହେବାକୁ ଲାଗିଲା ।

ବିଫଳତା ଆସେ, ହେଲେ ସଦାବେଳ ପାଇଁ ନୁହେଁ, କିଛି କାଳ ମନୋବଳକୁ ଅସ୍ତବ୍ୟସ୍ତ କରିପକାଏ, ଦୁର୍ବଳ କରିପକାଏ, ସବୁ ଉତ୍ସାହ, ଉଲ୍ଲାସକୁ, ଉନ୍ମାଦନାକୁ କିଛି ସମୟପାଇଁ ଛୁରିକାଘାତରେ ରକ୍ତାକ୍ତ କରିପକାଏ, ହେଲେ ଧୈର୍ଯ୍ୟର ସହ ପ୍ରତୀକ୍ଷା କଲେ ପୁଣି ସଫଳତା ଲେଉଟି ଆସେ ସୁନାହଣ୍ଡା ପାଇବା ପରି, ନୂଆଁ ସକାଳରେ କୋମଳ ପତ୍ରର ମୁକ୍ତାଧରି ଉପହାର ପରି ।।।



ସେଇ ଚତ୍ତରୀର କଥା, ଓଡ଼ିଆ ସାହିତ୍ୟ ସଂସଦର ବାର୍ଷିକୋତ୍ସବ ପାଇଁ ଚାଲିଲା ଆୟୋଜନ । ମନୋରଞ୍ଜନ ପାଇଁ ଏକା ସାଥିରେ ଦୁଇଟି କ୍ଷୁଦ୍ରନାଟକର ରିହାର୍ସାଲ ଆରମ୍ଭ ହେଲା । ପ୍ରଥମଟି ମୋ ରଚିତ 'ଦୁଇଟିଶବ' ଏବଂ ଅନ୍ୟଟି ରତ୍ନାକର ଚୈନୀଙ୍କ ରଚିତ କେବଳ ନାରୀ ଚରିତ୍ର ଥିବା 'ଆଜି ଶୁକ୍ରବାର' ନାଟକ । ଆମରି ଅନୁରୋଧରେ ଅଧ୍ୟାପକ ବଳରାମ ମିଶ୍ର 'ଦୁଇଟିଶବ' ନାଟକକୁ ଏବଂ ଅଧ୍ୟାପକ ବନମାଳୀ ମିଶ୍ର 'ଆଜିଶୁକ୍ରବାର'କୁ ନିର୍ଦ୍ଦେଶନା ଦେଲେ । ବିଭିନ୍ନ ପ୍ରତିଯୋଗିତା ଆଦି ଆୟୋଜିତହୋଇ ଫଳାଫଳ ନୋଟିସ୍ ଜରିଆରେ ଜଣାଇ ଦିଆଗଲା । ସମସ୍ତଙ୍କ ଭିତରେ ଅନେକ ଆଗ୍ରହ, ଗୋଟିଏ ବିଭାଗର ବାର୍ଷିକୋତ୍ସବ କଲେଜ୍‌ର ମୁଖ୍ୟମଞ୍ଚରେ ଅନୁଷ୍ଠିତ ହେଉଛି । କଲେଜ୍‌ସାରା ଛାତ୍ରଛାତ୍ରୀଙ୍କୁ ନୋଟିସ୍ ଜରିଆରେ ନିମନ୍ତ୍ରିତ କରାଯାଇଛି । ପୁରସ୍କାର ପାଇଁ ବିଭିନ୍ନ ସାମଗ୍ରି କିଣାଗଲା । 'ଦୁଇଟି ଶବ' ନାଟକରେ ମୋସହ ପ୍ରଦୀପ ରାୟ, ପ୍ରଫୁଲ୍ଲ ନାଥ ଆଦି ଆଉ ତିନିଚାରିଜଣ ଅଭିନୟ କଲେ । ମୁଁ ପାଗଳ ଓ ପ୍ରଦୀପ ଭିକାରୀ ଭୂମିକାରେ ଅଭିନୟ କରିଥିଲୁ । 'ଆଜି ଶୁକ୍ରବାର' ନାଟକରେ ସ୍ୱପ୍ନାନାନୀ, ଭାଗ୍ୟବତୀ ମିଶ୍ର, ଆଶୀଷବାଳା ପଟ୍ଟନାୟକ, ସବିତା ସିଂ, ବିଜୟଲକ୍ଷ୍ମୀ ଜେନାଙ୍କ ସହ ଆଉ ଦି'ଜଣ ପାସ୍‌ର ଛାତ୍ରୀ ଅଭିନୟ କରିଥିଲେ । ଜ୍ୟୋତିବିହାରର ଓଡ଼ିଆ ବିଭାଗର ମୁଖ୍ୟ ଡ. ଗୋପାଳଚନ୍ଦ୍ର ମିଶ୍ର ଏବଂ ଲାଲ ରଘୁନନ୍ଦନ ସାଏଦେଓ ବକ୍ତା ଓ ଅତିଥିଭାବରେ ଯୋଗଦେଇଥିଲେ । ସଭାପରେ ପୁରସ୍କାର ବିତରଣି ଏବଂ ପରେ ପରେ 'ଦୁଇଟି ଶବ' ଏବଂ 'ଆଜି ଶୁକ୍ରବାର' ନାଟକ ଦୁଇଟି ସଫଳତାର ସହ ମଞ୍ଚସ୍ଥ ହେଲା । ସଭାକାର୍ଯ୍ୟ ପରେ ସାଙ୍ଗେସାଙ୍ଗେ ପାଗଳର ମେକ୍‌ଅପ୍ ନେଇ ମଞ୍ଚକୁ ଉତୁରିବା ମୋପାଇଁ ଥିଲା ନିଆରା ଅନୁଭୂତି । ବନ୍ଧୁ ପ୍ରଦୀପ ମଧ ତାଙ୍କ ଭୂମିକାରେ ଚମତ୍କାର ଅଭିନୟ କରିଥିଲେ । ମୋର ଯାହା ମନେପଡୁଛି, ଆଉ ଜଣେ ବନ୍ଧୁ ପ୍ରଫୁଲ୍ଲ ନନ୍ଦ ଡାକ୍ତର ଭୂମିକାରେ ଅଭିନୟ କରିଥିଲେ, ହୁଏତ ଏଇ ତଥ୍ୟ ଭୁଲ୍ ମଧ ହୋଇପାରେ । ଦୁଇଟି ଶବ ନାଟକଟି ପରେ ପ୍ରଗତି ସଂଘର ନାଟକ ପ୍ରତିଯୋଗିତାରେ ଅଭିନୀତ କରିଥିଲୁ, ଯେଉଁଥିରେ ସମୟ



ପହଞ୍ଚାଇବା ପାଇଁ ଶେଷଦୃଶ୍ୟର ମୃତ୍ୟୁବେଳର ଅଭିନୟକୁ ମୋତେଏକା ମଞ୍ଚରେ ତେରମିନିଟ ଅଭିନୟ କରିବାପାଇଁ ପଡିଥିଲା । ନାଟକ ଦୁଇଟିର ସଫଳତା ଆମକୁ ତଥା ଆମ ବିଭାଗର ମର୍ଯ୍ୟାଦା ବୃଦ୍ଧି କଲା, ସାର୍‌ମାନେ ଖୁସି ହେଲେ, ବିଭାଗୀୟ ମୁଖ୍ୟ ମେହେରଆଜ୍ଞାଙ୍କ ଚିନ୍ତା ଦୂରିଭୂତ ହେଲା । ତାଙ୍କର ଭାରୀ ଭୟ ଥିଲା, କାଳେ କିଛି ଗୋଳମାଳ ହେବ, ମୁଖ୍ୟମଞ୍ଚରେ ଉତ୍ସବ ଆୟୋଜିତ ହେଉଛି, କେତେବେଳେ କେଉଁକଥା । ତଥାପି ଆମ ଉଦ୍ୟମ ଉପରେ ତାଙ୍କ ଭରସା ଥିଲା । ଖଣ୍ଡଗିରି ଦାଦା, ପୁଷ୍ପାନାନୀ ଆଦିଙ୍କ ଅକ୍ଲାନ୍ତ ପରିଶ୍ରମର ଫଳ ମଧୁରେଣ ସମାପୟେତ୍‌ରେ ସମାପ୍ତି ଘଟିଲା । ମୋର ଅବଶୋଷ ମଧ ମେଣ୍ଟିଗଲା । ଅନୁତାପର ଜ୍ୱାଳା ନାଟକ ଦୁଇଟିର ସଫଳତାରେ ଉପଶମିତ ହେଲା । ଟେଷ୍ଟପରୀକ୍ଷା ପରେ ଶେଷ ବର୍ଷର ଦାଦାନାନୀମାନଙ୍କୁ ଆଖିର ଲୁହସହ ବିଦାୟ ଦିଆଗଲା । ପରୀକ୍ଷାପରେ କିଏକୁଆଡ଼େ ହଜିଗଲେ, କେଉଁ କୂଳରେ ଲାଗିଲେ, ଜଣାପଡିଲା ନାହିଁ । ଆମେ ଶେଷବର୍ଷ ସମ୍ମାନଛାତ୍ର ଥିବାବେଳେ ହିଁ ସ୍ୱପ୍ନାନାନୀ ଆମ କଲେଜର୍ ରାଜନୀତି ବିଭାଗର ଅଧ୍ୟାପକ ଆମୋଫୋଇ ସଂସ୍ଥାର ମୁଖ୍ୟ ବି. ରାମଚନ୍ଦ୍ରଙ୍କ ସହ ବାହାହୋଇଗଲେ ଏନ୍ ଗୁହା ଲେନ୍‌ର ଏକ ଖୋଲା ପଡ଼ିଆରେ ନିରାଡମ୍ୱର ସଭାରେ । ସେ ବିବାହ କେବଳ ବରଣମାଳା ବିନିମୟରେ ହିଁ ସମାହିତ ହୋଇଥିଲା । ମୁଁ ସେ ବିବାହ ସଭାରେ ଉପସ୍ଥିତ ଥିଲି, ସାଧାରଣ ଜଳଖିଆରେ ସମାପ୍ତି ଘଟିଥିଲା ଏହି ବିବାହ ଉତ୍ସବ ।

ଜି.ଏମ୍. କଲେଜ୍ ଛାଡ଼ିବାର କିଛିବର୍ଷ ପରେ ପୁଷ୍ପାନାନୀଙ୍କ ଦେହାନ୍ତ ଘଟିବାର ଦୁଃଖଦ ସମ୍ୱାଦ ଶୁଣିବାକୁ ପଡ଼ିଲା । ଆଉ ସ୍ୱୟମ୍ଭୂଦାଦାଙ୍କ ସହ ଏବେବି ସେଇ ସମ୍ପର୍କରେ ଯୋଡ଼ିହୋଇଛି, ଯେ ଏବେ ତାଙ୍କ ଗାଁ ବୀରମହାରାଜପୁର ନିକଟସ୍ଥ ଉଫୁଲାରେ ଅବସ୍ଥାନକରି ଓକିଲାତି କରୁଛନ୍ତି, ସାମ୍ୱାଦିକତା କରୁଛନ୍ତି, ମଝିରେ ବ୍ଲକ ଚେୟାରମେନ ଭାବରେ ନିର୍ବାଚିତ ହୋଇ ଜନମଙ୍ଗଳ କାର୍ଯ୍ୟରେ ଲିପ୍ତ ରହିଥିଲେ, ଆଉ ମାଲେଶିରୀ ଲୋକଉତ୍ସବ ସହ ମଧ ଜଡ଼ିତ ରହୁଛନ୍ତି ।

ସେଇ ଚସ୍ତରୀର କଥା, ଗଙ୍ଗାଧର ଜୟନ୍ତୀ ଅବସରରେ କଲେଜ୍ ତରଫରୁ ଅଧ୍ୟାପକ ମୀନକେତନ ପୁରୋହିତଙ୍କ ରଚିତ ସଂଗୀତ ରୂପକ ତପସ୍ୱିନୀ ଆକାଶବାଣୀ ସମ୍ୱଲପୁରର ଯୁବବାଣୀ କାର୍ଯ୍ୟକ୍ରମପାଇଁ ପ୍ରସ୍ତୁତ କଲୁ । ଅଧ୍ୟାପକ ମନୀଷ୍ ଚକ୍ରବର୍ତ୍ତୀଙ୍କ ସହଧର୍ମିଣୀ ଶ୍ରୀମତୀ ଉମା ଚକ୍ରବର୍ତ୍ତୀଙ୍କ ସ୍ୱରସଂଯୋଜନାରେ ତପସ୍ୱିନୀର ଅନେକ ପଦ ଏହି ରୂପକରେ ସ୍ଥାନିତଥିଲା । ଶ୍ରୀମତୀ ଚକ୍ରବର୍ତ୍ତୀ ଆକାଶବାଣୀର ଜନୈକା ସୁନାମଧନ୍ୟା ଗାୟିକା ଥିଲେ । ଶାସ୍ତ୍ରୀୟ ସଂଗୀତରେ ମଧ ତାଙ୍କ ଯଥେଷ୍ଟ ଦଖଲଥିଲା । ଆକର୍ଷଣୀୟ ସ୍ୱର ସଂଯୋଜନା

ରୂପକଟି ସୁନ୍ଦର ଭାବରେ ପ୍ରସ୍ତୁତ ହୋଇଥିଲା । ଏବେ ମଧ୍ୟ ସେ ସ୍ୱରମାନ ମୋର ମନେଅଛି, ଅନେକ ଜୟନ୍ତୀସଭାରେ ମୁଁ ସେ ଗୀତମାନ ଶ୍ରୋତାମାନଙ୍କ ପଇଁ ଗାଇ ଶୁଣେଇଛି । ପ୍ରଭୁଦତ୍ତଆଜ୍ଞା ମଧ୍ୟ ଏହି କାର୍ଯ୍ୟକ୍ରମରେ ସହାୟତା କରିଥିଲେ । ଚକ୍ରବର୍ତ୍ତୀ ସାର୍‌ଙ୍କ ଘରେ ଏହି ରୂପକର ରିହାର୍ସାଲ୍ ହେଉଥିଲା । ଏହି କାର୍ଯ୍ୟକ୍ରମର ସଫଳତା ମୋତେ ବିଶେଷ ଭାବରେ ପ୍ରଭାବିତ କଲା । ମୁଁ ଉତ୍ସାହିତ ହୋଇ ଫ୍ରେଣ୍ଡସ୍ ଟେଲେଣ୍ଟ ନାମରେ ଏକ ସଂଗଠନ ସାଙ୍ଗ ସାଥିମାନଙ୍କୁ ଧରି ଗଠନକଲି ଏବଂ ସେହି ସଂଗଠନ ତରଫରୁ ଆକାଶବାଣୀର ଯୁବବାଣୀ ପାଇଁ ଏକ ସଂଗୀତକାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭକଲି । ବନ୍ଧୁ ପ୍ରମୋଦ ତ୍ରିପାଠୀ ଏଥିପାଇଁ ଏକ ନାଟିକା ରଚନା କଲେ, ଯେଉଁ ଥିରେ ଏକ ସମବେତ କଣ୍ଠରେ ଓ ଗୋଟିଏ ଏକକ ପୁରୁଷ କଣ୍ଠରେ ଗୀତ ଥିଲା । ସମବେତ କଣ୍ଠର ଗୀତକୁ ମୁରଲୀଧର ନାୟକ, ଯେ ମୋର ବଡ଼ଭାଇ, ମୁରଲୀ ମେହେର, ସୁବାସ ତ୍ରିପାଠୀ, ଆଶିଷବାଳା ପଟ୍ଟନାୟକ, ତାଙ୍କ ଭଉଣୀ ସରୋଜବାଳା ପଟ୍ଟନାୟକ, ଅମୀୟ କୁମାରୀ ବେହେରା, ତାଙ୍କ ଭଉଣୀ କମଳକୁମାରୀ ବେହେରା ପ୍ରମୁଖ କଳାକାରମାନେ ଅଂଶଗ୍ରହଣ କରିଥିଲେ ଏବଂ ଏକକ ପୁରୁଷ କଣ୍ଠର ଗୀତକୁ ଗାଇଥିଲେ ସୁବାସ ତ୍ରିପାଠୀ । ପ୍ରମୋଦଙ୍କ ରଚିତ ଏହି ଗୀତଟି ଖୁବ୍ ଲୋକପ୍ରିୟ ହୋଇଥିଲା । ମୁଁ ପ୍ରାୟ ଅର୍ଦ୍ଧ ଶତାଧିକ କାର୍ଯ୍ୟକ୍ରମର ପ୍ରାରମ୍ଭିକ ସଂଗୀତ ଭାବରେ ଏଇ ଗୀତଟିକୁ ଶିଖାଇଥିବି । ସ୍ୱର ସଂଯୋଜନାରେ ପ୍ରଥମଥର ପାଇଁ ପାଦ ଦେଇ ଯେଉଁ ସଫଳତା ଟିକକ ପାଇଲି, ଆଜିଯାଏଁ ମୋତେ ପ୍ରୋତ୍ସାହିତ କରିଆସୁଛି । ବନ୍ଧୁ କୈଳାସ ତ୍ରିପାଠୀ ଏଥିରେ ବାଦ୍ୟଯନ୍ତ୍ରରେ ସହଯୋଗ କରିଥିଲେ । ଲେଖାରେ ଉଚ୍ଚାଙ୍ଗ ଭାବ, ଶବ୍ଦ ଚୟନରେ ଗାମ୍ଭୀର୍ଯ୍ୟପଣ ଏହି ଗୀତର ବୈଶିଷ୍ଟ୍ୟ । ସେ ଗୀତର ପ୍ରଥମ କେଇ ଧାଡ଼ି ନଲେଖି ରହିପାରୁ ନାହିଁ ।

ଜୀବନ ଆମ ସପନପରି ସାଗରର ଲହରୀ
ଜୀବନେ ଯେତେ ଦୁଃଖଆମରି ସବୁହେବା ପାରି
ସକାଳ ତୁହି ସାଥିରେ
ତୋର ଆଶା ଆମ ବୋହି ଆ
ଏ ରାତି ତୁ ନିଜ ସାଥିରେ
ବେଦନା ନେଇ ଯାରେ ଯାରେ ଯା.... ଯା..... ।

ଏହି ରେଡ଼ିଓ କାର୍ଯ୍ୟକ୍ରମର ଦଶ ବାର ବର୍ଷ ପରେ ମୋ ଭାଇ ବ୍ରଜେନ୍ଦ୍ର ଏହି ଗୀତଟିକୁ ପୁଣି ଥର ଯୁବବାଣୀ ପାଇଁ ତାର କଳାକାରମାନଙ୍କୁ ନେଇ ରେକର୍ଡିଂ କରିଥିଲା ।

ଏଇ ଚଷ୍ଟରୀରେ ଜି.ଏମ୍. କଲେଜର ସଂଗୀତ ସାଂସଦର ବାର୍ଷିକଉତ୍ସବ ପାଇଁ ପୁଣି ଉଦ୍ୟମ ଆରମ୍ଭହେଲା । ଏହି ସଂସଦ କେବେ ବାର୍ଷିକୋତ୍ସବ ଆୟୋଜନ କରି ନଥିଲା । ଇତିହାସରେ ପ୍ରଥମ ଥର ପାଇଁ ନିଜ ଛାତ୍ରଛାତ୍ରୀ କଳାକାରମାନଙ୍କୁ ନେଇ ଆରମ୍ଭ ହେଲା ପ୍ରୟାସ, ଉପସଭାପତି ଅଧ୍ୟାପକ ମନୀଷ ଚକ୍ରବର୍ତ୍ତୀଙ୍କ ପୂର୍ଣ୍ଣ ସହଯୋଗରେ କାର୍ଯ୍ୟକ୍ରମର ରୂପରେଖ ନିର୍ଣ୍ଣୟ କରାଗଲା । ବିଶିଷ୍ଟ ଗୀଟାର୍ ବାଦକ ତଥା ସୁରେନ୍ଦ୍ର ସାଏ ଅର୍କେଷ୍ଟ୍ରାର ମୁଖ୍ୟ ଶଙ୍କର ପ୍ରଧାନଙ୍କ ପରିଚାଳନାରେ ଆରମ୍ଭ ହେଲା ରିହାର୍ସାଲ୍ । ଷୋହଳଟି ଗୀତ ବିଶିଷ୍ଟ କାର୍ଯ୍ୟକ୍ରମରେ ଭାଗ୍ୟକୁ ବହୁକଳାକାର ଆମ କଲେଜ୍‌ରେ ପଢୁଥିଲେ । ଶରତ ମିଶ୍ର, ରାଧାଗୋବିନ୍ଦ ମହାନ୍ତି, ପ୍ରମିଳା ମହାନ୍ତି, ମୁରଲୀ ମେହେର, ସୁଲେମାନ ଦିୱାନା, କୈଳାସ ତ୍ରିପାଠୀ, ମୁରଲୀଧର ନାୟକ ଆଦି କଳାକାରମାନେ ଏହି କାର୍ଯ୍ୟକ୍ରମରେ ଭାଗ ନେଇ ସୁନ୍ଦର ଗୀତମାନ ପରିବେଷଣ କରିଥିଲେ । ମୁଁ ନିଜେ ଏହି କାର୍ଯ୍ୟକ୍ରମରେ ଢୋଲକ ଓ ନାଲ୍ ଆଦି ବାଦ୍ୟଯନ୍ତ୍ର ବଜେଇଥିଲି । ପ୍ରମିଳା ମହାନ୍ତିଙ୍କ କଣ୍ଠରେ, ଟୁଟ୍ ଗୟା ଦିଲ୍ କା ଖିଲୋନା, ଶରତ ମିଶ୍ରଙ୍କ କଣ୍ଠରେ, ନରେନ୍ଦ୍ର ଚଞ୍ଚଲଙ୍କ ଗୀତ ୟାରା ହୋ ୟାରା, ମୁରଲୀ ମେହେର, ଶରତ ମିଶ୍ର ଓ ପ୍ରମିଳାଙ୍କ କଣ୍ଠରେ ରୋଟି କପଡା ମକାନ୍‌ର ଗୀତ ମେହେଙ୍ଗାଇ ମାର୍ ଗୟି, ଶଙ୍କର ପ୍ରଧାନଙ୍କ ଗୀଟାର୍‌ରେ ତୁ କ୍ୟା ଜାନେ ବେୱଫା ଗୀତର ସୁର, ରାଧା ମହାନ୍ତିଙ୍କ କଣ୍ଠରେ ଅକ୍ଷୟ ମହାନ୍ତିଙ୍କ ଗୀତ ତୁ ତ ହଜାଇ ଦେଲୁ ମୋର ଚାରିଣୀ, ମୁରଲୀଧର ନାୟକଙ୍କ କଣ୍ଠରେ ଓଡ଼ିଆ ଆଧୁନିକ ଗୀତ, ଚାନ୍ଦ ତୁ ଆଉ ଏମିତି ହସନା ଗୀତଗୁଡ଼ିକୁ ଦର୍ଶକେ ଖୁବ୍ ପ୍ରଶଂସା କରିଥିଲେ । ଜଣେ ପଞ୍ଜାବୀ ବନ୍ଧୁ ଭବନ ସିଂ ଇଂରାଜୀରେ ଏହି କାର୍ଯ୍ୟକ୍ରମର ଉଦ୍‌ଘୋଷଣା କରିଥିଲେ । ପ୍ରିତମ୍ ବୋଲି ଜଣେ ମାତ୍ର ପେଶାଦାର କଳାକାରଙ୍କୁ ରାୟପୁରରୁ ଡକାଯାଇଥିଲା ଏକଡିଏନ୍ ବାଦନ ପାଇଁ । ଶରତ ମିଶ୍ର ନରେନ୍ଦ୍ର ଚଞ୍ଚଲଙ୍କ, ମୁରଲୀ ମେହେର ମୁକେଶଙ୍କ, ସୁଲେମାନ କିଶୋର କୁମାରଙ୍କ, ପ୍ରମିଳା ଲତାଙ୍କ ଏବଂ ରାଧାଗୋବିନ୍ଦ ଅକ୍ଷୟ ମହାନ୍ତିଙ୍କ ସ୍ୱରରେ ଗୀତମାନ ସୁନ୍ଦର ଗାଇପାରୁଥିଲେ । ଏହି କାର୍ଯ୍ୟକ୍ରମ ଦେଖି ଛାତ୍ରବନ୍ଧୁମାନେ ଚର୍ଚ୍ଚା କଲେ, କାର୍ଯ୍ୟକ୍ରମଟି ବିନାକା ଗୀତମାଲା ଶୁଣିଲା ଭଳି ଲାଗିଲା । ଏହାର ଅର୍ଦ୍ଧାଧିକ ଶ୍ରେୟ ଶଙ୍କର ପ୍ରଧାନଙ୍କୁ ଯିବ । ସେହିଁ ଥିଲେ ଏହି ଚମତ୍କାର କାର୍ଯ୍ୟକ୍ରମର ନିର୍ଦ୍ଦେଶକ । ମୁଁ ତାଙ୍କୁ ମୋ ସଂଗୀତର ପଥପ୍ରଦର୍ଶକ ଭାବରେ ସମ୍ମାନ ପ୍ରଦାନକରେ । ଥରେ ଶଙ୍କରଦା କହୁଥିଲେ, ସେ କୁଆଡ଼େ ମୋ ବାପାଙ୍କ ଛାତ୍ର, ସୁନ୍ଦରଗଡ଼ରେ ଥିବା ବେଳେ । କି ଅପୂର୍ବ ସଂଯୋଗ ! !

ଏହି କାର୍ଯ୍ୟକ୍ରମର ସଫଳତାପରେ ଫ୍ରେଣ୍ଡସ୍ ଟେଲେଣ୍ଟ ନାଁରେ ପରେ କିଛି କଳାକାର ବର୍ଷାଧିକ କାଳ କୁଚିଣ୍ଡା, ଲଇସିଂହା, ବୌଦ୍ଧ, ଯୁଗଳ ସିଂକ ଗାଁ କୁରୁଆଁକୁ ନିମନ୍ତ୍ରିତ ହୋଇ ସଂଗୀତ କାର୍ଯ୍ୟକ୍ରମ ପରିବେଷଣ କରିଥିଲୁ ।

ଏଇ ଚତ୍ୱରରେ ଗଙ୍ଗାଧର ମେହେର ମହାବିଦ୍ୟାଳୟର ବାର୍ଷିକ ନାଟକୋତ୍ସବରେ 'ପୁନଶ୍ଚ ପୃଥିବୀ' ନାଟକ ସଫଳତାର ସହ ମଞ୍ଚସ୍ଥ ହୋଇଥିଲା । ରତ୍ନାକର ଚୈନୀଙ୍କ ରଚନାକୁ ନିର୍ଦ୍ଦେଶନା ଦେଇଥିଲେ ବିଶିଷ୍ଟ ନିର୍ଦ୍ଦେଶକ ମାନଭଞ୍ଜନ ହୋତା । ମାନ ହୋତାଙ୍କ ନିର୍ଦ୍ଦେଶନାରେ କଲେଜ୍‌ର ଏହାହେଲା ପ୍ରଥମ ନାଟକ । ଯା ପରେ ଲଗାତାର ସେ ବହୁବର୍ଷ ଧରି ନିର୍ଦ୍ଦେଶକ ଭାବରେ ଯୋଗଦେଇଥିଲେ । ଏକଦା, ମାନବାବୁ ଛାତ୍ର ଥିବାବେଳେ କିଛି ନାଟକରେ ଅଭିନୟ କରିଥିଲେ । ତାଙ୍କ ନିର୍ଦ୍ଦେଶନାରେ ବହୁ କଳାକାର ଅଭିନୟ କ୍ଷେତ୍ରରେ ସୁନାମ ଅର୍ଜନ କରିଛନ୍ତି । ପୁନଶ୍ଚ ପୃଥିବୀ ନାଟକରେ ଅଭିନୟ କରି ବିଶଷ୍ଟ ଅଭିନେତା କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଶ୍ରେଷ୍ଠଅଭିନେତା ଭାବରେ ପୁରସ୍କୃତହେବା ସଙ୍ଗେ ଜନାର୍ଦ୍ଦନ ପୂଜାରୀ ସ୍ମୃତି ସ୍ୱର୍ଣ୍ଣପଦକ ପାଇଥିଲେ । ଅନ୍ୟମାନଙ୍କ ମଧ୍ୟରେ ଯୋଗେଶ୍ୱର ସାହୁ, ଦିଲୀପ ପଣ୍ଡା, ପ୍ରକାଶ ଚାନ୍ଦ ଆଦି ଅଭିନେତାମାନେ ଏହି ନାଟକରେ ଅଂଶଗ୍ରହଣ କରିଥିଲେ । ପଦ୍ମନାଭ ମିଶ୍ରଙ୍କ ସୁନ୍ଦର ମଞ୍ଚସଜ୍ଜା ବହୁ ଦର୍ଶକଙ୍କୁ ମୋହିତ କରିଥିଲା । ନାଟ୍ୟ ସଂସଦର ଉପସଭାପତି ଅଧ୍ୟାପକ ମୀନକେତନ ପୁରୋହିତଙ୍କ ଉପଯୁକ୍ତ ଦିଗ୍‌ଦର୍ଶନ ଏବଂ ମାନବାବୁଙ୍କ ବଳିଷ୍ଠ ନିର୍ଦ୍ଦେଶନା ଏହି ନାଟକକୁ ସଫଳତାର ଶୀର୍ଷସ୍ଥାନକୁ ନେଇପାରିଥିଲା । ରବି ବହିଦାରଙ୍କ ଦୃଢ଼ ତଥା ଚାତୁର୍ଯ୍ୟପୂର୍ଣ୍ଣ ପରିଚାଳନା ଏବଂ ସୁଶାନ୍ତ ମିଶ୍ରଙ୍କ ଅକ୍ଲାନ୍ତ ପରିଶ୍ରମ ମଧ୍ୟ ଏଥିପାଇଁ ଦାୟୀ ।

ସେତେବେଳେ ନାଟକ ଉତ୍ସବରେ କଲେଜ୍‌ର ତଥାକଥିତ ବରିଷ୍ଠ ଦାଦାମାନେ ଶୃଙ୍ଖଳା ରକ୍ଷା କରୁଥିଲେ, ଯେଉଁମାନେ ଚାହିଁଲେ କଣ ନାଇଁ କଣ ହୋଇଯାଆନ୍ତା, ସେଇମାନେ ହିଁ ରକ୍ଷକ ଭାବରେ କଲେଜ୍‌ର ସମ୍ମାନ ରକ୍ଷା କରୁଥିଲେ । ଭବନ୍ ସିଂ, ଅର୍ଜୁନ୍ ଟପ୍ପୋ, ଜୟନ୍ତ ସାଏ, ବଦ୍ରୀ ପାଢ଼ୀ ଆଦି ବାହୁବଳୀ ଛାତ୍ରମାନଙ୍କର ଆନ୍ତରିକ ସହଯୋଗରେ ଶାନ୍ତିପୂର୍ଣ୍ଣ ସହକାରେ କାର୍ଯ୍ୟକ୍ରମମାନ ଆୟୋଜିତ ହେଉଥିଲା । ଧନୁପାଲି ଗାଇଡ୍ କ୍ଲବ୍‌ର ଶିଳ୍ପୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହେବା ଖବର ଆମକୁ ଆନନ୍ଦିତ କଲା, ଉତ୍ସାହିତ କଲା । ପରେ ପରେ ଆହୁରି ଅନେକ କଳାକାର ଏହି ପୁରସ୍କାରରେ ମଣ୍ଡିତହୋଇ ଧନୁପାଲିର ଗୌରବ ବୃଦ୍ଧିକଲେ ।

ଚସ୍ତରୀର ଇତିହାସ ଆହୁରି ଲମ୍ବ, ଆହୁରି ଦୈର୍ଘ୍ୟ ପ୍ରସ୍ଥରେ ଉସାର୍‌ବିସାର୍ ।! ନାଟକ ଶିଖାଇଦେଲା ଶିଖରକୁ ଉତ୍ତୀର୍ଣ୍ଣ ହେବାର ଚାତୁର୍ଯ୍ୟ, ସାହିତ୍ୟ ପ୍ରେରିତକଲା ବଞ୍ଚିବାର ନୂତନ ଜୀବନଶୈଳୀ, ସଂଗୀତ ଆକର୍ଷିତ କଲା ପ୍ରେମ ଗ୍ରନ୍ଥରେ ଖୋଦିତ ପ୍ରତିଟି ଅକ୍ଷରପଛରେ ଲୁପ୍ତ ସଫଳତାର ତରାନା, ସାଙ୍ଗଠନିକ ପ୍ରୟାସ ଆଲୋକବର୍ତ୍ତିକା ସାଜିଲା ନିକଟ ଭବିଷ୍ୟତର ସଫଳ ନାଟ୍ୟମଞ୍ଚାୟନର ।!!



**ପୁ**ନଶ୍ଚ ସେଇ ଚସ୍ତରୀର କଥା, ନାଟକ କରୁଛମାନେ ମନୋମାଳିନ୍ୟ ସୃଷ୍ଟିହେବା ସ୍ୱାଭାବିକ । ଏହାର ଗୋଟିଏ ମସ୍ତବଡ଼ କାରଣହେଲା, ବହୁଦିନ ଧରି, ମାସଧରି, ବର୍ଷଧରି ମିଳାମିଶା ହେବା, ସାମାନ୍ୟକଥାରୁ ବି ଅହମିକାକୁ ନେଇ ବିଦ୍ୱେଷ ଦେଖାଦେବା କିଛି ଗୋଟାଏ ବଡ଼କଥା ନୁହେଁ । ଜି.ଏମ. କଲେଜର ବିଭିନ୍ନ କାର୍ଯ୍ୟକ୍ରମ ସହ ଜଡ଼ିତରହିବା ଭିତରେଭିତରେ ଖରାଛୁଟି ଆସିଗଲା, ଧନୁପାଲିରେ ନାଟକ କରିବାକଥା ମନେପଡିଗଲା । ବ୍ୟକ୍ତିଗତ ନୁହେଁ, ଆନୁଷ୍ଠାନିକ କାରଣ ଯୋଗୁଁ ପ୍ରମୋଦ ତ୍ରିପାଠୀଙ୍କ ସହ ମୋର ଓ ଆଉ କିଛି ବନ୍ଧୁଙ୍କର ଆଉ ପଡିଲା ନାହିଁ । ନାଟକ ହେବ ନ ହେବ, ଏମିତି କିଛି ପରିସ୍ଥିତି ଦେଖାଦେଲାବେଳକୁ ବହୁସଦସ୍ୟ ମତପ୍ରଦାନ କଲେ, ଏଥର ପ୍ରମୋଦଙ୍କ ରଚିତ ନାଟକ ନକରି ଅନ୍ୟ କୌଣସି ନାଟକ ବଛାଯାଉ । ନୂତନ ଭାବରେ ନିର୍ବାଚିତ ସମ୍ପାଦକ ଚିତ୍ତରଂଜନ ସାହୁଙ୍କ ନେତୃତ୍ୱରେ କମିଟି ବସିଲା, ଆଲୋଚନା ହେଲା, ଶେଷରେ ନିଷ୍ପତ୍ତି ନିଆଗଲା, ଏ ବର୍ଷ 'ମୋନାଲିସାର ହସ' ନାଟକ କରାଯିବ । ସତ୍ୟନାରାୟଣ ବାବୁଙ୍କ ସହମତିରେ ନାଟକର ସମସ୍ତ ପ୍ରସ୍ତୁତି ଆରମ୍ଭ ହେଲା । ଯେହେତୁ, ତାଙ୍କ ନାଟକ ହେଉନାହିଁ, ପ୍ରମୋଦ ଆଉ ଧରାଦେଲେ ନାହିଁ । ତଥାପି କ୍ଲବର ବାକିସମସ୍ତ ସଦସ୍ୟ ପୂର୍ଣ୍ଣପ୍ରାଣରେ ସହଯୋଗ କଲେ । ନିର୍ଦ୍ଦେଶକ ଲଡୁକିଶୋର ନନ୍ଦଙ୍କୁ ପୁଣି ସସମ୍ମାନେ ନିମନ୍ତ୍ରିତ କରାଗଲା ନିର୍ଦ୍ଦେଶନା ପାଇଁ, ସତ୍ୟନାରାୟଣବାବୁଙ୍କ ଦ୍ୱାରା ଅନ୍ୟଜଣେ ବରିଷ୍ଠ ନାଟ୍ୟପ୍ରତିଭା, ଉମେଶଚନ୍ଦ୍ର ରଥ, ଯେ କି ନିକଟସ୍ଥ ଗୋବିନ୍ଦତୋଲାରେ ସପରିବାର ରହୁଥିଲେ ଏବଂ ସାରଥୀ ସଂସ୍ଥାର କିଛିନାଟକ ସହ ଜଡ଼ିତଥିଲେ, ଆମଠାରେ ଚିହ୍ନିତ ହେଲେ । ନିର୍ଦ୍ଦେଶକ ଲଡୁକିଶୋର ନନ୍ଦଙ୍କ ସହମତିରେ କଳାକାର ଚୟନହେଲା । ସୌଭାଗ୍ୟକୁ ଏହିବର୍ଷ ଗାଇଡ୍ କ୍ଲବର ସବୁଠାରୁ ବଡ଼ ଆବିଷ୍କାର ଥିଲା ହାସ୍ୟରସର ଅଭିନେତା ସୁଶୀଲ ମିଶ୍ର, ଯେ ତାଙ୍କ ବଡ଼ଭାଇ ଅକ୍ଷୟ ମିଶ୍ରଙ୍କ ସହ ରହି ଗଙ୍ଗାଧର ମେହେର କଲେଜରେ ନାମ ଲେଖାଇ ସୁଦୂର ବଲାଙ୍ଗିରରୁ ଆସି ଧନୁପାଲିର ରାଧାମୋହନ ବିଶ୍ୱାଳଙ୍କ ଘରେ ଭଡ଼ାସୂତ୍ରରେ

ରହୁଥିଲେ ପାଠପଢ଼ାପାଇଁ । ସେହି ସୁଶୀଲ ମିଶ୍ର ଆଜିର ପଶୁକବି ! ! ଆମ ସହ ପରିଚିତହେବା ପରେ ଅତିଶ୍ରୀଘ୍ର ସମ୍ପର୍କ ନିବିଡ଼ ବନ୍ଧୁତ୍ୱରେ ରୂପାୟିତ ହୋଇଗଲା, ତାଙ୍କ ନାଟକପ୍ରତି ଆଗ୍ରହ ଦେଖି କ୍ଲବର ପିଲାମାନେ ତାଙ୍କୁ ସସମ୍ମାନେ ସ୍ୱାଗତ କଲେ । କଥାକଥାରେ ହସର ଲହରୀ ସୃଷ୍ଟି କରିପାରୁଥିଲେ ସୁଶୀଲ, ବିଭିନ୍ନ ଚୁଟ୍‌କୁଲା ବିଚିତ୍ର ଢଙ୍ଗରେ ଉପସ୍ଥାପନ କରି ହାସ୍ୟରୋଳ ଜନ୍ମେଇବାରେ ଓସ୍ତାଦ୍ । ପଞ୍ଚାନନ ମିଶ୍ର, ଉମେଶ ରଥ, ମୁରଲୀଧର ନାୟକ, ସୁଶୀଲ ମିଶ୍ର, ଶାନ୍ତନୁ ହୋତା, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ସହ ମୁଁ ମଧ୍ୟ ଗୋଟାଏ ଖଳ ଚରିତ୍ରରେ ଅଭିନୟ କରିଥିଲି । ରିହାର୍ସାଲ ଆରମ୍ଭ ହେଲା, ସାରା ସମ୍ବଲପୁରର ନଜର ଗାଇଡ୍ କ୍ଲବର ନାଟକ ଆଡ଼କୁ, ଏଥର କିଏକିଏ ସବୁ ଅଭିନୟ କରୁଛନ୍ତି, କେବେ ନାଟକ ହେବ ଇତ୍ୟାଦି ଆଲୋଚନାରେ ସରଗରମ୍ ନାଟ୍ୟ ପରିବେଶ । ଉମା ନାମ୍ନୀ ଜଣେ ପେଶାଦାର ଅଭିନେତ୍ରୀ ଏକମାତ୍ର ନାୟିକା ଭୂମିକାରେ ଅଭିନୟ କଲେ । ଏକ ହାସ୍ୟରସାତ୍ମକ ଚରିତ୍ରଟିରେ ସୁଶୀଲ ଅଭିନୟ କଲେ । ଅଭିନୟ କ୍ଷେତ୍ରରେ ଆଉ କୈଶୋରୀୟ ବାଚାଳତା ନଥିଲା, ପରିପକ୍ୱ ଏବଂ ମାର୍ଜିତ ଅଭିନୟରେ ନାଟକଟି ସଫଳତାର ସହ ଖରାଛୁଟିରେ ଅଭିନୀତ ହେଲା । ଶଙ୍କର ପ୍ରଧାନଙ୍କ ସହ ନିବିଡ଼ତା ଥିବାରୁ ନାଟକର ପୃଷ୍ଠଦସଂଗୀତ ପ୍ରଦାନ ପାଇଁ ସେ ରାଜି ହୋଇଗଲେ ଏବଂ ତାଙ୍କ ପ୍ରିୟ ବାଦ୍ୟଯନ୍ତ୍ର ସ୍ପେନିସ୍ ଗୀଟାର୍ ଓ ଜାଜ୍‌ରେ ଅନ୍ତରାଳ ସଂଗୀତ ସଂଯୋଜନା କରିଥିଲେ । ରୂପମହଲର ଚନ୍ଦୁବାବୁଙ୍କ ପରିଚାଳନାରେ ଉତ୍ତମ ମଞ୍ଚସଜ୍ଜା ଦର୍ଶକଙ୍କୁ ଆକୃଷ୍ଟ କଲା । ମୋର ବିଚିତ୍ର ଅନୁଭୂତି, ଦାଦା ନାୟକକୁ ମୁଁ ଖଳନାୟକ ! ! ଏବେ ବି ଏ ନାଟକର ଫଟୋ ମୋପାଖରେ ମହଜୁଦ୍ ଅଛି । ପ୍ରମୋଦ ଗୋଷ୍ଠୀ ଛଡ଼ା ହୋଇଯିବା ପରେ ଆମ ପାଇଁ ଏ ନାଟକର ମଞ୍ଚାୟନ ଏକ ଆହ୍ୱାନଭାବରେ ଦେଖାଦେଇଥିଲା । ଉମେଶବାବୁ, ପଞ୍ଚାଦାଦା, କୃଷ୍ଣଚନ୍ଦ୍ର, ସୁଶୀଲ ମିଶ୍ର, ଅଭିନେତ୍ରୀ ଉମାଙ୍କ ସହ ମୁଁ ମଧ୍ୟ ପାରୁପର୍ଯ୍ୟନ୍ତ ଉତ୍କୃଷ୍ଟ ଅଭିନୟ ପ୍ରଦର୍ଶନକରି ଦର୍ଶକମାନଙ୍କ ଉତ୍ସୁକତାକୁ ସନ୍ତୁଷ୍ଟ କରିପାରିଥିଲୁ । ଅଭିନୟରେ, ମଞ୍ଚସଜ୍ଜାରେ, ବଳିଷ୍ଠ ନିର୍ଦ୍ଦେଶନାରେ, ଦୃଶ୍ୟାନୁଯାୟୀ ସଂଗୀତ ପରିବେଷଣରେ ଉତ୍କର୍ଷତା ଲାଭ କରିଥିବାରୁ ସମଗ୍ର ସମ୍ବଲପୁର ସହରରେ ପରବର୍ତ୍ତୀ ବହୁଦିନ ଧରି ଏ ନାଟକଟି ଲୋକତୁଣ୍ଡରେ ଚର୍ଚ୍ଚାରେ ରହିଥିଲା । ସୁଶୀଲ ମିଶ୍ରଙ୍କ ହାସ୍ୟରସର ଅଭିନୟ ଏବଂ ପଞ୍ଚାୟନନ ମିଶ୍ରଙ୍କ ଖଳଅଭିନୟ ଯୋଗୁଁ ଦର୍ଶକଙ୍କୁ ଭୁରିଭୁରି ପ୍ରଶଂସା ପାଇଥିଲେ ।

ପିଲାଖେଳ ପରି ମନୋମାଳିନ୍ୟ ଭାବ ପରିତ୍ୟାଗ କରି ପୁନଶ୍ଚ ପ୍ରମୋଦ ନାଟ୍ୟଗୋଷ୍ଠୀରେ ସାମିଲ୍ ହୋଇଗଲେ । ଯା ଭିତରେ ଦୁଇବର୍ଷ ଧରି ସମ୍ବଲପୁର

ନାଟ୍ୟକଳା ପରିଷଦ ଆୟୋଜିତ ଏକାଙ୍କିକା ପ୍ରତିଯୋଗିତାରେ ଗାଇଡ୍ କ୍ଲବ ଯୋଗ ଦେଇଥିଲା । ତେସ୍ତରୀରେ ସୁଧୀନ୍ଦ୍ର ପଣ୍ଡାଙ୍କ ରଚିତ ପୁନଶ୍ଚ କାମନା ଓ ଚସ୍ତରୀରେ ରତ୍ନାକର ଚୈନୀଙ୍କ ରଚିତ କଳଙ୍କିତ ସୂର୍ଯ୍ୟ ନାଟକ ଦୁଇଟି ସ୍ଥାନୀୟ କାଲିବାଡ଼ି ରଙ୍ଗମଞ୍ଚରେ ମଞ୍ଚସ୍ଥ କରିଥିଲୁ । ଉଭୟ ନାଟକକୁ ନିର୍ଦ୍ଦେଶନା ଦେଇଥିଲେ ସତ୍ୟନାରାୟଣ ତ୍ରିପାଠୀ । ସୁଶୀଲ ମିଶ୍ର ବଲାଙ୍ଗିର ଯାଇ ରତ୍ନାକରବାବୁଙ୍କଠୁ ଲାଗିଲାଗି କଳଙ୍କିତ ସୂର୍ଯ୍ୟ ନାଟକଟି ଲେଖାଇ ଆଣିଲେ । ନାଟକଟି ସଫଳ ହେଲେ ହେଁ ପୁରସ୍କାରରୁ ବଞ୍ଚିତ ହୋଇଥିଲା । ଏହାର ବହୁ ବର୍ଷ ପରେ 'କଳଙ୍କିତ ସୂର୍ଯ୍ୟ' ନାଟକପାଇଁ ରତ୍ନାକରବାବୁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରରେ ମଣ୍ଡିତ ହେଲେ । ଆମେ ଅବଶ୍ୟ ନିରାଶ ହୋଇ ନଥିଲୁ, କାରଣ ଦେବୁ ବୋଷଙ୍କ ଭଳି ଲେଖକ, ନିର୍ଦ୍ଦେଶକଙ୍କ ସହ ଆମେ ବାଚାଳମାନେ ନାଟକରେ ଲଢ଼ିପାରିଥାନ୍ତୁ କିପରି ? ପୁଣି ଅନ୍ୟପଟେ, ବରଗଡ଼ର ସୌଖିନ କଳାକାର ସଂଘର ନାଟ୍ୟ ପ୍ରସ୍ତୁତି ନିକଟରେ ଆମକୁ ହାରମାନିବାକୁ ପଡ଼ିଥିଲା । ତେବେ ଏହି ପରାଜୟରୁ ବ୍ୟକ୍ତିଗତ ଭାବରେ ଅନେକ ଶିକ୍ଷା ମୁଁ ପ୍ରାପ୍ତ ହୋଇଥିଲି, ଯାହା ମୋତେ ଭବିଷ୍ୟତରେ ଉତ୍ତମନାଟକ ପରିବେଷଣ କରିବାରେ ସହାୟକ ହୋଇଥିଲା ।

ଚସ୍ତୁରୀରେ ଜି.ଏମ୍. କଲେଜର ଛାତ୍ର ସଂସଦ ତରଫରୁ ଏକ ବିରାଟ ଛାତ୍ର ଆନ୍ଦୋଳନର ସୂତ୍ରପାତ ଘଟିଥିଲା । ସେ ଶିକ୍ଷାବର୍ଷରେ ଅଶ୍ୱିନୀ ମିଶ୍ର ବୋଲି ଜଣେ ଛାତ୍ରନେତା ସଭାପତି, ଜ୍ଞାନ ପଟ୍ଟନାୟକ ସାଧାରଣ ସମ୍ପାଦକ ଏବଂ ବନ୍ଧୁ ରବିନାରାୟଣ ନନ୍ଦ ସହସମ୍ପାଦକ ଭାବରେ ନିର୍ବାଚିତ ହୋଇଥିଲେ । କଲେଜ୍ ଅନେକ ଗୁଡ଼ାଏ ସମସ୍ୟା ଦେଇ ଗତି କରୁଥିଲା । ସ୍ୱତନ୍ତ୍ର ପାଠାଗାର କୋଠା ନଥିଲା, ହଷ୍ଟେଲ୍ ଅଭାବ ଥିଲା, ଏଭଳି ବିଭିନ୍ନ ଦାବିରେ ଛାତ୍ର ସଂସଦ ଆନ୍ଦୋଳନ ଆରମ୍ଭକଲା ରିଲେ ଅନଶନରୁ । ପ୍ରଥମଦିନ ଗଙ୍ଗାଧର ମୂର୍ତ୍ତିତଳେ ରବି ନନ୍ଦ, ଜ୍ଞାନ ପଟ୍ଟନାୟକଙ୍କ ସହ ମୁଁ ବି ଅନଶନରେ ବସିଥିଲି ଘରେ ନ ଜଣାଇ । ଯା ହେଉ, ସନ୍ଧ୍ୟାରେ ଅନଶନ ସେ ଦିନକ ଶେଷ ହେଲା । ରବି, ମୋର ଅନ୍ତରଙ୍ଗ ବନ୍ଧୁ ହୋଇଥିବାରୁ ତାଙ୍କ କଥାରେ ମୁଁ ହଁ ଭରିଥିଲି । ତା ପରଦିନ ଅଧକ୍ଷଙ୍କ କୋଠରୀକୁ ଯାଇ ଜ୍ଞାନ ଓ ଅଶ୍ୱିନୀ ମିଶ୍ରଙ୍କ ନେତୃତ୍ୱରେ ପାଟିତୁଣ୍ଡ କଲୁ । ବଳପାଇ ମୁଁ ବି ସେହି ଦଳରେଥାଇ ଅଧକ୍ଷଙ୍କ ଟେବୁଲ୍ ଉପରେ ବସିପଡି ହୋହାଲ୍ଲା କଲି । ଆଗରୁ ଓଡ଼ିଆ ବିଭାଗର ପ୍ରକୋଷ୍ଠ ପାଇଁ ପାଟିକରିଥିଲି, ଏବେପୁଣି ମୋର ଦୁର୍ଦ୍ଦାନ୍ତ ରୂପକୁ ଦେଖି ଅଧକ୍ଷ ଗଦାଧର ମିଶ୍ର ମୋ ଆଡ଼କୁ ଦେଖି କହିଲେ, ଚବିଶଶହ ପିଲା ଭିତରେ ମୁଁ ଦେଖୁଛି, ତୁ ମୋତେ ଭାରି ହଇରାଣ କରୁଛୁ ।।।

ପରେ ପରେ ଅନ୍ଦୋଳନ ଡେଙ୍ଗିଲା, ସଫଳ ହେଲା, ଫଳସ୍ୱରୂପ ନୂତନ ଲାଇବ୍ରେରୀ କୋଠା ତିଆରି ହେଲା, ଛାତ୍ରାବାସ ନିର୍ମାଣ ଆରମ୍ଭ ହେଲା, ନୂତନ ପ୍ରେକ୍ଷାଳୟ ନମ୍ବର ଏକ ଓ ଦୁଇ ତିଆରି ହେଲା, ଯାହା ପରବର୍ତ୍ତୀ ପିଢ଼ୀର ଛାତ୍ରଛାତ୍ରୀମାନେ ଭୋଗ କରୁଛନ୍ତି । ସେତେବେଳେ ଜି.ଏମ.ସି. ଆନ୍ଦୋଳନର ଗୋଟାଏ ମାନେ ରହୁଥିଲା, ସରକାର ବାଧ୍ୟ ହେଉଥିଲେ ଦାବୀ ପୂରଣ କରିବାପାଇଁ । ତେଣୁ, ଏହି କଲେଜର ନିର୍ବାଚନ ମଧ୍ୟ ବହୁ ଗୁରୁତ୍ୱ ବହନ କରୁଥିଲା । ଯେହେତୁ ଆନ୍ଦୋଳନର ଲକ୍ଷ୍ୟ ଥାଏ ମହାନ୍, ଯାହା ଛାତ୍ରଛାତ୍ରୀମାନଙ୍କ ସ୍ୱାର୍ଥଜଡ଼ିତ ।

ଚସ୍ତରୀର ଅଭିଜ୍ଞତା, ସାରା ଜୀବନ ପାଇଁ ଅନେକ ଖୋରାକ୍ ଯୋଗାଇଥିଲା । ସାହିତ୍ୟରେ, ନାଟକରେ, ସଂଗୀତରେ ଅଜ୍ଞ ବହୁତ ଜ୍ଞାନ ଆହରଣ କରିବା ସହ ତାଙ୍କ ସହ ସମ୍ପର୍କ ମଧ୍ୟ ଧିରେଧିରେ ନିବିଡ଼ହେବାରେ ଲାଗିଲା । ମୁଁ ଓଡ଼ିଆ ବିଭାଗର ଛାତ୍ର, ସେ ଇତିହାସ ବିଭାଗର ପାସ୍ ଛାତ୍ରୀ, ଉପସ୍ଥିତିରେ ସାମାନ୍ୟ ଦୂରତା, ଦୂରତାରେ ଭାବନିକଟତା, ତିନିଚାରି ମାସରେ ଥରେ ଭେଟ, ସାକ୍ଷାତ୍ ସହ କିଛି ମଧୁର ଶବ୍ଦର ଆଦାନପ୍ରଦାନ, ପରିପକ୍ୱ ପ୍ରେମର ଛିଟାରେ ଅସ୍ତବ୍ୟସ୍ତ ମନ, ବ୍ୟସ୍ତତା ଭିତରେ ବି କିଛିକାଳ ତାଙ୍କ ପାଇଁ ରିଜର୍ଭ, ସ୍ୱପ୍ନର ଅଟ୍ଟାଳିକା ଗଢ଼ିବାର ଅଦମ୍ୟ ଉଦ୍ୟମ, ଧୀର ପାଣି ପଥର କାଟେ ନ୍ୟାୟରେ କଚ୍ଛପ ଗତିରେ ପ୍ରେମାନୁଗମନ, ତାଙ୍କ ପାଇଁ ଘରେ ରହି ଲେଖାହୁଏ କିଛି ଭାବର କବିତା, ଭଲ ଲାଗିଲେ ପଢ଼ିବାକୁ ଦିଏ, ନ ଲାଗିଲେ ଚିରି ଫୋପାଡ଼ି ଦିଏ, କିଛି ଗୀତ ସୁର ଦେଇ ଲେଖେ, ଅବସର ମିଳିଲେ ଗାଇ ଶୁଣାଇ ଦିଏ. ମନ ତୁଷ୍ଟ ହୁଏ, ସାନ୍ନିଧ ପାଇବାର ଆଗ୍ରହ ଜନ୍ମେ, ଭଲ ପାଇବାର କାହାଣୀକୁ ଆଉପାଦେ ଆଗେଇନିଏ ।

ବିଚିତ୍ର ମଣିଷଟେ ମୁଁ, ସଂଗୀତ ସଂସଦର ଦାୟିତ୍ୱରେ ଥିବାରୁ ସେଠାରେ ଥିବା ଅନେକ ବାଦ୍ୟଯନ୍ତ୍ର ନିଜେନିଜେ ଶିଖିପକାଏ । ଏଭଳି ଘଟଣା ଘଟିଲା, କଲେଜ୍‌କୁ ୟୁଜିସି ଟିମ୍ ନିରୀକ୍ଷଣ ପାଇଁ ଆସିବାର ଥାଏ, ସେମାନଙ୍କୁ ସ୍ୱାଗତ କରିବାପାଇଁ ପ୍ରାରମ୍ଭିକ ସଂଗୀତର ଆବଶ୍ୟକତା ପଡିଲ । ପ୍ରମୋଦଙ୍କ ରଚିତ ସେଇ, ‘ଜୀବନ ଆମ ସପନ ପରି’ ଗୀତଟିକୁ ପୁଣି ଥରେ କଳାକାରମାନଙ୍କୁ ନେଇ ରିହାର୍ସାଲ କଲି । ଆଶ୍ଚର୍ଯ୍ୟର ବିଷୟ, ତାର ଅନ୍ତରାଳ ସଂଗୀତ ମୁଁ ସୀତାର ବାଦନରେ ସଜାଇଥିଲି ନିଜେ ବଜାଇ । ପରିବେଷଣର ପୂର୍ବଦିନ ହିଁ ଶିଖିଲି, ଆଉ ପରଦିନ ମଧ୍ୟାହ୍ନରେ ହଲ୍ ନମ୍ବର ଏକରେ ଆୟୋଜିତ ସ୍ୱାଗତଉତ୍ସବରେ ବଜାଇଲି । ଆଶୀଷ, ସରୋଜ, ଅମୀୟ, କମଳ, ମୁରଲୀ ମେହେର, ସୁବାସ ତ୍ରିପାଠୀ ଆଦି ଗାଇଲେ, କୈଳାସ ଟ୍ରେଙ୍ଗୋ ବାଦନରେ ତାଳ

ଦେଲେ, ମୁଁ ତଳେବସି ସୀତାରବାଦନ କଲି । ଦର୍ଶକମାନଙ୍କ ସହ ଅଧକ୍ଷ/ଅଧ୍ୟାପକମାନେ ଖୁବ୍ ପ୍ରଶଂସା କରିଥିଲେ । ମୋ ପାଇଁ ଏ ଆତ୍ମପରୀକ୍ଷା ଥିଲା ବିସ୍ମୟକର ଏବଂ ଦୁଃସାହସିକ ପଦକ୍ଷେପ । ଏଥିରେ ଅଂଶଗ୍ରହଣ କରିଥିବା ବନ୍ଧୁ ମୁରଲୀ ମେହେର, ଆଶୀଷବାଲା ଆଦି ଆଜି ବି ଜୀବନ୍ତ ସାକ୍ଷୀ ଅଛନ୍ତି ।

ଚସ୍ତରୀ, ଯୌବନକୁ ବ୍ୟସ୍ତ ରଖିଲା, ଚସ୍ତରୀ-ପଞ୍ଚସ୍ତରୀ ଶିକ୍ଷାବର୍ଷ ବି କିଛି କମ୍ ନଥିଲା, ଏ ବର୍ଷଟି ଥିଲା ଗଙ୍ଗାଧର ମେହେର ମହାବିଦ୍ୟାଳୟରୁ ବିଦାୟନେବାର ବର୍ଷ । ବିଦାୟବେଳାରେ ଆହୁରି ସ୍ମରଣୀୟ ହୋଇପଡିଲା ମୁହୂର୍ତ୍ତମାନ, ଆହୁରି ନିଜର ହୋଇଗଲେ ଆତ୍ମୀୟମାନେ, ଆହୁରି ଗଭୀର ହୋଇଗଲେ ନାଟକମାନେ, ଆହୁରି ଆତ୍ମସ୍ଥ ହୋଇଗଲେ ସାହିତ୍ୟର ପୃଷ୍ଠାମାନେ, ଆହୁରି ଆପଣାର ହୋଇଗଲେ ସଂଗୀତର ତରାନାମାନେ, ଆହୁରି ଜୀବନ୍ତ ଦେଖାଗଲେ ରଙ୍ଗମଞ୍ଚମାନେ, ଆହୁରି ନିବିଡ଼ ହୋଇଗଲେ ସାଥୀସହୋଦର, ଆଉ ତମେ !

ତମେ ମୋ ହୃଦୟରେ ସ୍ଥାନିତ ହୋଇଗଲ କାଳକାଳ ପାଇଁ ! ! !



କଳାକାର ଜୀବନରେ ବେଳେବେଳେ ବଡ଼ବଡ଼ ଆହ୍ୱାନ ଆସିଥାଏ, ସେହି ଆହ୍ୱାନକୁ ସମ୍ମୁଖୀନ କରିବା ପାଇଁ ସେ ନିଜକୁ ସଦାପ୍ରସ୍ତୁତ କରି ରଖିଥାଏ । ପାଣ୍ଡୁଲିପିରୁ ମଞ୍ଚବାହାରୁ ଏବଂ ମଞ୍ଚରେ ହିଁ ଏଭଳି ଆହ୍ୱାନ ଆସିଥାଏ ଏବଂ ତାକୁ ଚରିତାର୍ଥ କରିବା ପାଇଁ କଳାକାରଙ୍କୁ ଉପସ୍ଥିତ ବୁଦ୍ଧି ପ୍ରୟୋଗ କରିବା ପାଇଁ ପଡିଥାଏ । ମୋ ଜୀବନରେ ଏମିତି ଦୁଇଜଣ ମଞ୍ଚଶିଳ୍ପୀଙ୍କ ସାନ୍ନିଧ୍ୟରେ ଆସିଛି, ଯେଉଁମାନେ ଉପସ୍ଥିତ ବୁଦ୍ଧି ପ୍ରୟୋଗକରି ନାଟକର ମର୍ଯ୍ୟାଦା ବୃଦ୍ଧି କରିପାରିବାରେ ଓସ୍ତାଦ, ପଞ୍ଚାନନ ମିଶ୍ର ଏବଂ ହାସ୍ୟଅଭିନେତା ସୁଶୀଲ ମିଶ୍ର । 'ମୋନାଲିସାର ହସ' ନାଟକର ଏକ ଦୃଶ୍ୟରେ ଖଳଚରିତ୍ରରେ ଅଭିନୟକରୁଥିବା ଶିଳ୍ପୀ ପଞ୍ଚାୟନ ମିଶ୍ର ଏକାଦିକ୍ରମେ ଗୋଟିଏ ଛୋଟ ସଂଳାପକୁ ଛ' ଥର ବିଭିନ୍ନ ଭଙ୍ଗୀରେ ଉପସ୍ଥାପନ କରି ଛ'ଟି ମଦଭର୍ତ୍ତୀ କାଚଗ୍ଲାସଗୁଡ଼ିକୁ ଏଭଳି ଭାବରେ ମଞ୍ଚରେ କଚାଡ଼ି ଭାଙ୍ଗିଥିଲେ ବାକି ସହଯୋଗୀ କଳାକାରମାନଙ୍କୁ ମଞ୍ଚରେ ପଦଚାରଣ କରିବାରେ ବିଲ୍‌କୁଲ୍ ଅସୁବିଧା ହୋଇ ନଥିଲା । ନ ହୋଇଥିଲେ, ଅନ୍ୟ ଚରିତ୍ରମାନେ ରକ୍ତାକ୍ତ ହେବାର ସମ୍ଭାବନା ଥିଲା । ସେ ଦୃଶ୍ୟପାଇଁ ଧନୁପାଲିର ଦର୍ଶକ ଏଯାଏ ପଞ୍ଚାନନ ମିଶ୍ରଙ୍କୁ ଭୁଲି ନାହାନ୍ତି । ସେ ମୋନାଲିସାର ହସ ନାଟକର ଅନ୍ୟ ଏକ ହାସ୍ୟରସାତ୍ମକ ଚରିତ୍ରରେ ସୁଶୀଲ ମିଶ୍ର କେବଳ, ଯେସ୍ ସାର୍ ଓ ନୋ

ସାର୍ ସଂଳାପ ଦୁଇଟି ଉଚ୍ଚାରଣକରି ଦର୍ଶକଙ୍କୁ ହସେଇ ହସେଇ ବେଦମ୍ କରିଦେଇଥିଲେ, ଯାହା ନା ବହିରେ ଉଲ୍ଲେଖ ଥିଲା, ନା ନିର୍ଦ୍ଦେଶକ ତାଙ୍କୁ ବତେଇଥିଲେ ।

ଏଇ ପରିପ୍ରେକ୍ଷୀରେ ଚଷ୍ତରୀ ସାଲ୍‌ର ଶେଷଭାଗରେ ଗାଇଡ୍ କ୍ଲବ୍‌ର ଏକ ସ୍ୱତନ୍ତ୍ରଉତ୍ସବରେ ଗୋଟିଏ କ୍ଷୁଦ୍ର ନାଟକ ସେହି ସ୍କୁଲ ପରିସରରେ ଅଭିନୀତ ହୋଇଥିଲା, ଯାହା ସମ୍ଭବତଃ ଗାଇଡ୍ କ୍ଲବ୍ ବେନର୍‌ର ଶେଷ ନାଟକ । ଏହି ନାଟକର ସେମିତି କୌଣସି ବିଧିବଦ୍ଧ ପାଣ୍ଡୁଲିପି ନଥିଲା, ଥିଲା ଏକ କନସେପ୍ଟ ବା କଳ୍ପନା । ମୂଳତଃ ଏହାର ସ୍ରଷ୍ଟା ଥିଲେ ସୋନପୁରର କବି ନାକଫୁଡ଼ି ପଣ୍ଡା, ଆମ ଗହଣରେ ଉପସ୍ଥିତ ଥିବା ସୋନପୁରର ମୂଳବାସିନ୍ଦା ତଥା ସମ୍ବଲପୁରରେ ସରକାରୀ କାର୍ଯ୍ୟରେ ନିଯୁକ୍ତି ପାଇଥିବା ବିଶିଷ୍ଟ ନାଟ୍ୟଶିଳ୍ପୀ ତଥା ଶିକ୍ଷାବିତ୍ ହରିହର ରଥଙ୍କ ସାନଭାଇ ଉମେଶ ପ୍ରସାଦ ରଥ ସେହି କନସେପ୍ଟକୁ ଆଣି ଆମ ନିକଟରେ ଉପସ୍ଥାପନ କଲେ, ଯାହା ଆମସମସ୍ତଙ୍କ ମନକୁ ପାଇଥିଲା । ବିଶେଷତଃ ଆମ ମାର୍ଗନିର୍ଦ୍ଦେଶକ ସତ୍ୟନାରାୟଣ ତ୍ରିପାଠୀ ମହାଶୟ ଅଲିଖିତ ନାଟକକୁ ପସନ୍ଦ କରିଥିଲେ ଏବଂ ଭରସା ଦେଇଥିଲେ ଯେ ନାଟକ ନିଶ୍ଚୟ ସଫଳ ହେବ ।

ଜଣେ ଗାଉଁଲି ସ୍ତ୍ରୀ ଲୋକ ଜୀବନରେ କେବେ ଦର୍ପଣ ଦେଖି ନଥିଲା । ତା ଯୁବ ସ୍ୱାମୀ ଥରେ ଗାଁ ହାଟରୁ ତା ପାଇଁ ଗୋଟାଏ ଛୋଟ ଦର୍ପଣ କିଣି ବଡ ସରାଗରେ ସ୍ତ୍ରୀକୁ ଉପହାର ସ୍ୱରୂପ ପ୍ରଦାନ କଲା । ତା ଗାଉଁଲି ସ୍ତ୍ରୀ ବଡ଼ ଖୁସିରେ ସ୍ୱାମୀଠାରୁ ଦର୍ପଣ ଆଣି ପ୍ରଥମକରି ଦେଖିଲା ବେଳକୁ ସେଥିରେ ପ୍ରତିଫଳିତ ତା ମୁହଁକୁ ଅନ୍ୟ ଜଣେ ନାରୀର ଛବି ବୋଲି ମନେ କରି ତା' ସ୍ୱାମୀ ପ୍ରତି ସନ୍ଦେହକଲା ତଥା ଅଭିଯୋଗ କଲା ଯେ ସେ ଅନ୍ୟ ଜଣେ ନାରୀକୁ ରକ୍ଷିତା ଭାବରେ ରଖି ତାକୁ ଠକୁଛି । ତା' ସ୍ୱାମୀ ଯେତେ ବୁଝାଇଲେ ମଧ୍ୟ ସେ ଅବୁଝାହେବାରୁ ସ୍ୱାମୀକୁ ବାବାଜୀ ଡକାଇ ଗୁଣିଗାରେଡି କରିବା ପାଇଁ ପଡିଛି । ବହୁ ନାଟକବାଜି କଲା ପରେ ଯାଇ ନାଟକର ପରିସମାପ୍ତି ଘଟିଛି । ଏଭଳି ଏକ ବିଷୟବସ୍ତୁ ଉପରେ ଆଧାରିତ ଅଲିଖିତ ନାଟକର ନାମ ଦର୍ପନ୍ ଏବଂ ଏହା ସମ୍ପୂର୍ଣ୍ଣ ସମ୍ବଲପୁରୀ ଭାଷାରେ ପରିବେଷିତ ହେଲା । ସ୍ତ୍ରୀ ଭୂମିକାରେ ନିଜେ ସତ୍ୟନାରାୟଣ ବାବୁ, ତାଙ୍କ ସ୍ୱାମୀ ଭୂମିକାରେ ସୁଶୀଲ ମିଶ୍ରଙ୍କ ଦାଦା ଅକ୍ଷୟ ମିଶ୍ର ଅଭିନୟ କରିଥିଲେ, ଯେ ଉଚ୍ଚତା ଦୃଷ୍ଟିରୁ ସତ୍ୟନାରାୟଣ ବାବୁଙ୍କଠାରୁ ଛୋଟ ଥିଲେ, କହିବାକୁ ଗଲେ, ଡେଙ୍ଗେଇ କନିଆକେ ବୁଠି ବର୍ । ! ଗୌନ୍ତିଆ ଭୂମିକାରେ ପ୍ରସନ୍ନ ପାଢ଼ୀ, ଭଣ୍ଡବାବା ଭୂମିକାରେ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ବାବାଙ୍କ ଚେଲା ଭାବରେ ମୁଁ,

ଶୁଶୀଳ, ଶାନ୍ତନୁ ଆଦି ବନ୍ଧୁମାନେ ଅଭିନୟ କରିଥିଲୁ । ଆମର ନିର୍ଦ୍ଦେଶକ ଥିଲେ ଉମେଶଚନ୍ଦ୍ର ରଥ । ନାଟକଟି ଅସମ୍ଭବ ମାତ୍ରାରେ ସଫଳତା ଅର୍ଜନ କଲା, ଦର୍ଶକ ନାଟକଟିର ଭରପୁର ମଜାଉଠେଇଲେ, ଆମ ସମସ୍ତଙ୍କ ପାଇଁ ଏ ନାଟକ ଥିଲା ମସ୍ତବଡ଼ ଆହ୍ୱାନ, ଯାହାକୁ ଖୁବ୍ ପ୍ରଭାବଶାଳୀ ଢଙ୍ଗରେ ମଞ୍ଚରେ ପ୍ରସ୍ତୁତ କରିବାରେ ସମର୍ଥନ ହେଲୁ । ଏହାର ବର୍ଷେପରେ ଏ ନାଟକଟି ବଡ଼ବଜାରର ସମଲେଶ୍ୱରୀ ଯୁବ ସଂଘ ତରଫରୁ ସମଲେଶ୍ୱରୀ ମଣ୍ଡପରେ ଅଭିନୀତ ହୋଇଥିଲା, ଯେଉଁ ଥିରେ ବାରୁଦା ଓରଫ୍ ଶ୍ୟାମ ସୁନ୍ଦର ଧର ସ୍ତ୍ରୀ ଏବଂ ସୁଶୀଲ ମିଶ୍ର ସ୍ୱାମୀ ଭୂମିକାରେ ଏବଂ ମୁଁ ଭଣ୍ଡବାବା ଭୂମିକାରେ ଅଭିନୟ କରିଥିଲି ।

ଚଉରୀ ପଞ୍ଚଷ୍ଠରୀ ଶିକ୍ଷା ବର୍ଷ ଥିଲା ଗଙ୍ଗାଧର ମେହେର କଲେଜରେ ଅଧ୍ୟୟନରେ ମୋର ଶେଷବର୍ଷ । ଏହି ବର୍ଷଟି କଲେଜ୍‌ପାଇଁ ଉତ୍ଥାନ ପତନର ବର୍ଷ । ନାଟ୍ୟ ସମ୍ପାଦକ ଭାବରେ ପ୍ରଫୁଲ୍ଲ ପାଢ଼ୀ ଏବଂ ସହସମ୍ପାଦକ ଭାବରେ ସୁଶୀଲ ମିଶ୍ର ନିର୍ବାଚିତ ହୋଇଥିଲେ । ସୁଶିଲ ମିଶ୍ରଙ୍କ ସହ ସହସମ୍ପାଦକ ପଦବୀ ପାଇଁ ଲଢ଼ିଥିଲେ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ । ସୁଶୀଲ ମିଶ୍ରଙ୍କୁ ମୁଁ କେବଳ ସମର୍ଥନ କରି ନାହିଁ, ତାଙ୍କ ସହ ଏକମାତ୍ର ପ୍ରଚାରକ ଭାବରେ ମୁଁ କ୍ଲାସ୍ କ୍ଲାସ୍ ଯାଇ ଭାଷଣ ଦେଇ ଭୋଟଭିକ୍ଷା କରିଥିଲି । ସୁଶୀଲ, ଏକେ ତ ହାସ୍ୟଅଭିନେତା, ଏଭଳି ହାସ୍ୟଶୈଳୀରେ ବକ୍ତବ୍ୟମାନ ଉପସ୍ଥାପନ କରୁଥାନ୍ତି, ଛାତ୍ରଛାତ୍ରୀମାନେ ତାଙ୍କ ପ୍ରତି ଅକୁଣ୍ଠ ସମର୍ଥନ ଜ୍ଞାପନ କରୁଥାନ୍ତି । ଆତ୍ମବିଶ୍ୱାସର ସହ ସୁଶୀଲ କହୁଥିଲେ, ମୁଇଁ ତେର ଶହ ଭୋଟ୍‌ଥି ଜିତମି ! ! ନିର୍ବାଚନ ଫଳ ପ୍ରକାଶପରେ ଜଣାପଡିଲା, ଶୁଶୀଳ ସତକୁ ସତ ତେରଶହ ପଞ୍ଚଷଠୀ ଭୋଟ୍ ଅଧିକପାଇ ବିଜୟଲାଭ କଲେ । ବାସ୍ତବରେ ଗୋଟିଏ କ୍ଲବ୍‌ର ସଦସ୍ୟହୋଇ ନିର୍ବାଚନ ଲଢ଼ିବାକୁ ମୁଁ ପସନ୍ଦ କରୁ ନଥିଲି । ତାପରେ କୃଷ୍ଣ, ଜଣେ ଦକ୍ଷ ଅଭିନେତା, ପୂର୍ବବର୍ଷ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହୋଇଥିଲେ । ଆଉ ବର୍ଷେ ସେଇ ପୁରସ୍କାର ଜିଣିଥିଲେ ଏକ ରେକର୍ଡ ହୋଇଥାନ୍ତା ବୋଲି ବ୍ୟକ୍ତିଗତ ଭାବରେ ମୁଁ ଚାହୁଁଥିଲି । ତେବେ ସେ ଲଢ଼ିଲେ, ହାରିଗଲେ । ସେଇ କୃଷ୍ଣଚନ୍ଦ୍ର ଆଜି ଦିବଙ୍ଗତ ।

ସେ ଯାହା ହେଉ, ପ୍ରଫୁଲ୍ଲ ପାଢ଼ୀ ଓ ସୁଶୀଲ ମିଶ୍ରଙ୍କ ମିଳିତ ନେତୃତ୍ୱରେ ବାର୍ଷିକ ନାଟକ ପାଇଁ ଆୟୋଜନ ଆରମ୍ଭ ହେଲା । ନିର୍ଦ୍ଦେଶକ ମାନଭଞ୍ଜନ ହୋତାଙ୍କ ପରିଚାଳନାରେ ପ୍ରତିଭାଚୟନ ଅନୁଷ୍ଠିତ ହେଲା । ଅନ୍ୟ ବରିଷ୍ଠ କଳାକାରମାନଙ୍କ ସହ ମୁଁ, ଶାନ୍ତନୁ ହୋତା ଓ ପ୍ରଦୀପ ରାୟ ଗୋଟିଏ ଗୋଟିଏ ଚରିତ୍ର ପାଇଲୁ, ନାଟକରେ ଅଭିନୟ କରିବାର ସୁଯୋଗ ପାଇଲୁ । ଆମ ସହ ଦେବୁପଣ୍ଡା ମଧ୍ୟ ଏକ

ଭୂମିକାରେ ଅଭିନୟ କଲେ । ଦିଲୀପ ପଣ୍ଡା, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ସମେତ ଆହୁରି କେତେକ କଳାକାର ଅଭିନୟକରିବାର ସୁଯୋଗ ପାଇଥିଲେ । ପ୍ରଫୁଲ୍ଲ ରଥଙ୍କ ରଚିତ ନାଟକ 'ଶୂନ୍ୟ ଆକାଶ ଅମର ଆଖି'ର ରିହାର୍ସାଲ୍ ମହାଡମ୍ବରେ ଆରମ୍ଭ ହେଲା । ରିହାର୍ସାଲର ଏକ ଦୃଶ୍ୟରେ କାଳାଚୋର ଚରିତ୍ରଟିରେ ଅଭିନୟ କରୁଥିବା କଳାକାର ଦେବୁପଣ୍ଡା, ପ୍ରଦୀପ ରାୟଙ୍କୁ ଚାପୁଡାଟାଏ ମାରିବାର ଥିଲା । ଦେବୁ ପଣ୍ଡାଙ୍କ ଚାପୁଡା ଏତେ ଶକ୍ତ ଥିଲା ଯେ ଚାପୁଡା ଖାଇଲାକ୍ଷଣି ବନ୍ଧୁ ପ୍ରଦୀପଙ୍କର ଛାତିପୀଡ଼ା ଆରମ୍ଭ ହୋଇଗଲା । ରିହାର୍ସାଲ ବନ୍ଦ ହେଲା, ପ୍ରଦୀପଙ୍କୁ ସଦର ଡାକ୍ତରଖାନାକୁ ନିଆଯାଇ ଏଡମିଟ୍ କରାଗଲା । ଡାକ୍ତରଙ୍କ ଚିକିତ୍ସାପରେ ସାମାନ୍ୟ ଭଲ ଲାଗିଲା ପ୍ରଦୀପଙ୍କୁ । ସମସ୍ତେ ଆଶ୍ୱସ୍ତ ହେଲେ, ବନ୍ଧୁ ଭାବରେ ସାରାରାତି ପ୍ରଦୀପଙ୍କ ପାଖରେ ରହିଲି ମୁଁ, ସକାଳୁ ଅବଶ୍ୟ ସେ ଘରକୁ ଫେରିଥିଲେ । ଏ ଘଟଣା ପ୍ରଦୀପ ଓ ମୋର ବନ୍ଧୁତାକୁ ଆହୁରି ଦୃଢ଼ କଲା ।

ପୁଣି ନାଟକର ରିହାର୍ସାଲ ଆରମ୍ଭ ହେଲା, ଗତି କଲା ମଞ୍ଚାଭ୍ୟାସ ପର୍ଯ୍ୟନ୍ତ । ଷ୍ଟେଜ୍ ରିହାର୍ସାଲ ଯେଉଁ ରାତିରେ ହେବାର ଥାଏ, ସେହିଦିନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ସମ୍ବଲପୁର ଆଗମନ ପାଇଁ ବିପୁଳ ଆୟୋଜନ କରାଯାଇଥିଲା । ଗଙ୍ଗାଧର ମେହେର କଲେଜ୍‌ର ଛାତ୍ରସଂସଦର ସଭାପତି ଅଶୋକ ଦାସଙ୍କ ନେତୃତ୍ୱରେ କଲେଜ୍‌ସାମ୍ନାରେ ରାସ୍ତା ରୋକୋ କରାଯାଇ ବିରୋଧ କରିବାର କାର୍ଯ୍ୟକ୍ରମ ଥାଏ । ଉତ୍ତେଜକ ପରିସ୍ଥିତିରେ ନାଟକ ହେବ ନ ହେବ ର ଚିନ୍ତା ବଢ଼ିବାରେ ଲାଗିଲା । ସତକୁ ସତ ଆନ୍ଦୋଳନ ତୀବ୍ର ହେଲା, ପଥରମାଡ଼ ହେଲା, ଲାଠି ଚାର୍ଜ୍ ହେଲା, ସଭାପତିଙ୍କ ସମେତ କିଛି ଛାତ୍ରବନ୍ଧୁ ଆହତ ହେଲେ । ଅଧ୍ୟକ୍ଷ ଡ. କେ.ଏସ.ଆର. ମୂର୍ତ୍ତି କଲେଜ୍‌କୁ ସାଇନ୍‌ଡେ ଘୋଷଣା କଲେ, ଛାତ୍ରଛାତ୍ରୀମାନଙ୍କୁ ହଷ୍ଟେଲ୍ ଛାଡ଼ିବାର ଆଦେଶ ଦିଆଗଲା, ନାଟକ ସ୍ଥଗିତରହିଲା ପ୍ରାୟ ପନ୍ଦରଦିନ ପାଇଁ । ପରେ ସାଇନଡେ ଉଠିବା ପରେ ପୁଣି କିଛି ଦିନ ରିହାର୍ସାଲ ପରେ ନାଟକ ମଞ୍ଚାୟନର ରାତି ଆସି ପହଞ୍ଚିଲା । ନାଟ୍ୟ ସଂସଦର ଉପସଭାପତି ଅଧ୍ୟାପକ ମୀନକେତନ ପୁରୋହିତଙ୍କ ଉପଯୁକ୍ତ ଦିଗଦର୍ଶନ, ପ୍ରଫୁଲ୍ଲ ପାଢ଼ୀ ଏବଂ ସୁଶୀଲ ମିଶ୍ରଙ୍କ ବଳିଷ୍ଠ ପରିଚାଳନାରେ ନାଟକ 'ଶୂନ୍ୟଆକାଶ ଆମରଆଖି' ସଫଳତାରସହ ମଞ୍ଚସ୍ଥ ହେଲା । ମନ୍ତ୍ରୀ କୃପାସିନ୍ଧୁ ଭୋଇ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ ଏବଂ ଅଭିନେତା ଦିଲୀପ ପଣ୍ଡାଙ୍କୁ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ କଲେ । କହିବା ବାହୁଲ୍ୟ, ଏହି ନାଟକର ବିଚାରକମଣ୍ଡଳୀର ସଦସ୍ୟ ଭାବରେ ତାଙ୍କ ବାପା ସମ୍ବଲପୁରର ପ୍ରାକ୍ତନ ଡିଏସ୍‌ପି

ଶ୍ରୀବଲ୍ଲଭ ମିଶ୍ର ଯୋଗ ଦେଇଥିଲେ । ମୀନକେତନସାର୍ ମୋତେ ହିଁ ପଠେଇଥିଲେ ତାଙ୍କ ଘରକୁ ଶ୍ରୀଯୁକ୍ତ ମିଶ୍ରଙ୍କୁ ନିମନ୍ତ୍ରିତ କରିବା ପାଇଁ । ଏହି ସୌଭାଗ୍ୟରୁ ମୁଁ ନିଜେ ନିଜକୁ ବଞ୍ଚିତ କାହିଁକି କରିବି ।। ଘରକୁ ଯାଇ ତାଙ୍କ ସହ ଦେଖାହେବାର ମଧୁର ମୁହୂର୍ତ୍ତ ଆଜି ବି ମୋର ମନେଅଛି ।

ନାଟକ ସଫଳ ହେଲା ସତ, ହେଲେ ସମଗ୍ର ଭାରତ ବର୍ଷ ସମ୍ମୁଖୀନ କଲା ଜରୁରୀ କାଳୀନ ପରିସ୍ଥିତି । ସମସ୍ତ ସାଂସ୍କୃତିକ କାର୍ଯ୍ୟକ୍ରମର ଗୋଟାଏ ପ୍ରକାର ପୂର୍ଣ୍ଣଛେଦ ପଡ଼ିଲା । ଭୟ ଓ ଅନୁଶାସନର ପରିବେଶରେ ସମଗ୍ର ଭାରତବର୍ଷ ଏକପ୍ରକାରର ନଜରବନ୍ଦ ହୋଇଗଲା ଭଳି ଅନୁଭବ ହେଲା । ସେହିଭଳି ପରିବେଶରେ ଶେଷବର୍ଷ ପରୀକ୍ଷା ଦେଇ ନୀରବରେ କଟାଇ କଲେଜରୁ ବିଦାୟନେବାପାଇଁ ପଡିଲା । ଅବଶ୍ୟ ଦ୍ୱିତୀୟବର୍ଷର ଛାତ୍ରଛାତ୍ରୀମାନଙ୍କ ଅଶ୍ରୁସିକ୍ତ ବିଦାୟ ମୁହୂର୍ତ୍ତକୁ ସମସ୍ତେ ଗ୍ରହଣ କରିଥିଲୁ ।

ଧନୁପାଲିରେ କିନ୍ତୁ ଘଟିଲା ଭିନ୍ନ ଏକ ଦୃଶ୍ୟ । ଧନୁପାଲି ଓ ଗୋବିନ୍ଦତୋଲାର ଦୁଇ ସଂଗଠନ ଏକତ୍ରିତ ହୋଇ ନୂତନ ସଂଗଠନର ଆବିର୍ଭାବ ହେଲା ଚେତନା ସାଂସ୍କୃତିକ ଅନୁଷ୍ଠାନ ନାମରେ । ଉଭୟପଡ଼ା ମଧ୍ୟରେ ଶାନ୍ତିପ୍ରତିଷ୍ଠାର ଏହି ଅଭିନବ ଉଦ୍ୟମର ଉଦ୍ୟୋକ୍ତା ଭାବରେ ଶିକ୍ଷକ ରବୀନ୍ଦ୍ରନାଥ ନାୟକ ସଭାପତି ଆସନରେ ଅଳଙ୍କୃତ ହେଲେ । ଏହି ମିଳନୋତ୍ସବକୁ ସ୍ମରଣୀୟ କରିବା ପାଇଁ ପ୍ରମୋଦ ପୁଣି ସଂଗଠନ ପାଇଁ ନାଟକ ଲେଖିଲେ ସନ୍ନ୍ୟାସୀ, ଯାହା କୃଷ୍ଣ ଚନ୍ଦ୍ର ଆଚାର୍ଯ୍ୟଙ୍କ ନିର୍ଦ୍ଦେଶନାରେ ସେହି ସ୍କୁଲପ୍ରାଙ୍ଗଣର ଅସ୍ଥାୟୀ ମଣ୍ଡପରେ ମଞ୍ଚସ୍ଥହେଲା ମହାସମାରୋହରେ ।

ଏମିତି ଭଙ୍ଗାରୁଜା ଭିତରେ ଯୋଡ଼ାଯୋଡ଼ିର ସୁଯୋଗ ମଧ୍ୟ ଆପେଆପେ ଆସିଯାଏ ସଂଗଠନ ଭିତରେ, ରାଇଜିଂ ଷ୍ଟାର୍ ଓ ଗାଇଡ୍ କ୍ଲବ ଏକତ୍ରିତ ହେଲେ ନୂଆଁ ଚେତନାରେ । ନାଟକ କିନ୍ତୁ ବଞ୍ଚିରହିଲା କଳାକାରମାନଙ୍କ ଅନ୍ତଃସ୍ଥଳରେ, ଧମନୀରେ ପ୍ରବାହିତ ରକ୍ତର ପ୍ରତିଟି ବିନ୍ଦୁରେ । ପଞ୍ଚସ୍ତରୀ ସାଲ୍, ଜରୁରୀକାଳୀନ ପରିସ୍ଥିତି ଭିତରେଭିତରେ ଆମ୍ଭମାନଙ୍କ ମନଭିତରେ ନୂତନ ସମ୍ଭାବନା ସୃଷ୍ଟି କଲା । ବ୍ୟକ୍ତିଗତ ଭାବରେ ମୁଁ ଅନେକ ସ୍ୱପ୍ନ ଦେଖିବାରେ ଲାଗିଲି ନାଟକର ବିକାଶକୁ ନେଇ, ପରବର୍ତ୍ତୀ କାଳରେ ଯାହା ଗୋଟିଗୋଟିକରି ସାର୍ଥକ ହେବାରେ ଲାଗିଲା ।



ପାହାଡ଼ ତ ଚଢ଼ିବାର ଅଛି, ସେ ପଥ ଯେତେ କର୍କଶ ଥାଉ, ପଥୁରିଆ ଥାଉ ଅବା ଘଞ୍ଚ ଅରଣ୍ୟରେ ପରିପୂର୍ଣ୍ଣ, ମସୃଣ ଥାଉ ଅବା ତୁଷାର ଭଳି ପିଚ୍ଛିଳ, ସୂର୍ଯ୍ୟାଲୋକରେ ଉଦ୍‌ଭାସିତ ହେଉ ଅବା ଅମାବାସ୍ୟାର ଅନ୍ଧକାରରେ କଳା ଗିଳିଗିଳି, ବାସନ୍ତିକାର ରୂପଲାବଣ୍ୟରେ ସ୍ନିଗ୍ଧସକାଳ ହେଉ ଅବା ବୈଶାଖର ରୌଦ୍ରଦଗ୍ଧ ଅପରାହ୍ନ, ଶ୍ରାବଣର ବର୍ଷଣମୁଖର ମନୋରମ ସନ୍ଧ୍ୟା ହେଉ ଅବା ଚୈତ୍ରେ ମଲ୍ଲୀର ମହମହ ମଧାହ୍ନ, ମୋତେ ଚଢ଼ିବାର ଅଛି, ଯଦି କେଉ ସାଥ୍ ଦିଓନା, ଏକଲା ଚଲୋରେ ଭଳି ବାଟ ଅଣ୍ଡାଳିଅଣ୍ଡାଳି ଚଢ଼ିବାର ଅଛି, ଗିରିଶିଖେ ଲୟ ରଖି ଚାଲିବି ମୂକର ନ୍ୟାୟରେ ସଦମ୍ଭେ, ସଶକ୍ତେ, ସବଳେ, ସକୌଶଳେ ସେହି ଶିଖରପର୍ଯ୍ୟନ୍ତ ପହଞ୍ଚିବାର ଅଛି ।।

ନାଟକର ରଜ୍ଜୁ ଧରି ଆଗକୁ ମାଡ଼ିଯିବାର ଅଛି, ସଂଗୀତର ଲହରୀ ସହ ତରଙ୍ଗାୟିତ ହେବାର ଅଛି, ଶବ୍ଦେ ଶବ୍ଦେ ସାହିତ୍ୟର ମଧୁର ରସ ପାନ କରିବାର ଅଛି । ଆକାଶବାଣୀର ଯୁବବାଣୀ କାର୍ଯ୍ୟକ୍ରମ ସହ ଆରମ୍ଭ ହୋଇଥିବା ଫ୍ରେଣ୍ଡସ୍ ଟେଲେଣ୍ଟ ସଂସ୍ଥାକୁ ପୁଣି ନାଟକ ସହ ଯୋଡ଼ିବାର ସ୍ୱପ୍ନରେ ବାତୁଳ ଏହି ଲେଖକ ସେହି ପଞ୍ଚସ୍ତରୀ ସାଲ୍‌ରେ ନାଟ୍ୟକଳା ପରିଷଦର ଏକାଙ୍କିକା ପ୍ରତିଯୋଗିତାରେ ଯୋଗ ଦେବା ନିମିତ୍ତ ପୁଣି କାଗଜ, କଲମ ସହ ବନ୍ଧୁତା ସ୍ଥାପିତ ହୋଇ ଲେଖିଲା ଏକ କ୍ଷୁଦ୍ର ପରୀକ୍ଷାମୂଳକ ନାଟକ, 'ସମୟ' । ସେ ସମୟ ବି ଥିଲା ଓଡ଼ିଆ ନାଟ୍ୟ ସାହିତ୍ୟର ନବନାଟ୍ୟ ଆନ୍ଦୋଳନର ସୂତ୍ରପାତ, ତେଣୁ ପରାମ୍ପାରିକ ନାଟ୍ୟ ରଚନାରୁ ହଟି ନୂତନସ୍ୱାଦର ନାଟକ ଦେଖିବାପାଇଁ ଦର୍ଶକଙ୍କ ବ୍ୟଗ୍ରତାକୁ ଦୃଷ୍ଟିରେ ରଖି 'ସମୟ' ଲେଖାଗଲା, ଯାହାର ମୁଖ୍ୟ ଚରିତ୍ର ହିଁ ଥିଲା ସଙ୍କେତଧର୍ମୀ, ଦୃଶ୍ୟପଟ ଥିଲା କୌଣସି ଏକ ସହରର ଛକ, ସମୟ ଥିଲା ମଧରାତ୍ର, ତଥାପି ବିଗତ ଦିନର ଲକ୍ଷ୍ମୀ ଟକିଜ୍ ଛକ ଭଳି ଥିଲା ଚଳଚଞ୍ଚଳ, ଯେଉଁଠି ଚା'ବାଲା, ପାନଦୋକାନୀ, ପୋଲିସ, ଭିକାରୀ, ରିକ୍ସାବାଲା ଭଳି ଚରିତ୍ରମାନଙ୍କ ସମେତ ସେ ବେଳର ରାମକୃଷ୍ଣ, ପ୍ରଦୀପ ପଣ୍ଡା, ଦେବୀଦାସ ଭଳି ବୋହେମିଆନ୍ ଶୈଳୀରେ ବଞ୍ଚିବାକୁ ଚାହୁଁଥିବା କବିଗୋଷ୍ଠୀର ପ୍ରତିନିଧିତ୍ୱ କରୁଥିବା ଭଳି ଚରିତ୍ରଟିଏ, ଏଭଳି ସର୍ବମୋଟ ବାରଗୋଟି ଚରିତ୍ରର ଚିତ୍ରଣରେ ସମୟ ନାଟକଟି ରଚିତ ହୋଇଥିଲା । ପୃଥ୍ୱୀରାଜ ମିଶ୍ର, କୈଳାସ ତ୍ରିପାଠୀ, ଲଳିତ ଜେନା, ପ୍ରଫୁଲ୍ଲ ନାଥ, ଜନ୍ମେଜୟ ଛତର, ଏପରି କି ଡାଲୁ ଓରଫ ରଣଜୀତ୍ ପଟ୍ଟନାୟକଙ୍କ ସହ ମୁଁ ନିଜେ ବିଭିନ୍ନଚରିତ୍ରରେ ଅଭିନୟକରିବାର ଯୋଜନାକରି ରିହାର୍ସାଲ୍ ଆରମ୍ଭ କଲି । ମୁଁ ନାଟକର ମୁଖ୍ୟଚରିତ୍ର 'ସମୟ' ଭୂମିକାରେ, ପୃଥ୍ୱୀରାଜ କବି ଏବଂ ବାକିମାନେ ବିଭିନ୍ନ ଚରିତ୍ରଗୁଡ଼ିକରେ ଅଭିନୟ କରିବାପାଇଁ ଆଗେଇଆସିଲେ । ବାରକୁ ବାର

କଳାକାର ସମୟାନୁସାରେ ରିହାର୍ସାଲରେ ଉପସ୍ଥିତ ରହି ମନପ୍ରାଣ ଢାଳି ସହଯୋଗ କଲେ । ଚେତନା ଅନୁଷ୍ଠାନ ଗଠନ ପରେ ଗୋବିନ୍ଦଟୋଲା ଡ୍ରାଇଭର କଲୋନୀରେ ରହୁଥିବା ରଣଜିତ ପଟ୍ଟନାୟକଙ୍କ ସହ ମୁଁ ସମ୍ପର୍କରେ ଆସିଥିଲି, ପୁଣି ଚେତନାର ପ୍ରଥମ ନାଟକ ସନ୍ନ୍ୟାସୀରେ ଆମେ ଉଭୟ ଅଭିନୟ କରିଥିବାରୁ ଆମ ସମ୍ପର୍କ ନିବିଡ଼ ହୋଇପାରିଥିଲା । ତେଣୁ ତାଙ୍କ ଅଭିନୟକଳା ଉପରେ ଭରସା ରଖି ବୋଧହୁଏ ଚା' ବାଲା ଚରିତ୍ର ପାଇଁ ତାଙ୍କୁ ଅନୁରୋଧ କରିଥିଲି । ଆଗରୁ ରାଇଜିଂଷ୍ଟାର୍ କ୍ଲବ୍‌ର କିଛି ନାଟକରେ ସେ ଅଭିନୟ କରିଥିଲେ । ତେବେ ସମୟ ନାଟକ ମାଧ୍ୟମରେ ସେ ପ୍ରଥମକରି ସମ୍ବଲପୁର ସହରର ନାଟ୍ୟପରିବେଶକୁ ପ୍ରବେଶ କରିଥିଲେ । ଏ ନାଟକର ମୁଁ ଥିଲି ନାଟ୍ୟକାର, ନିର୍ଦ୍ଦେଶକ, ଅଭିନେତା ତଥା ମୁଖ୍ୟ ସଂଗଠକ । ଏଭଳି ନାଟକର ବିଭିନ୍ନ ଦାୟିତ୍ୱ କେହି ମୋତେ ଦେଇ ନଥିଲେ, ମୁଁ ନିଜେ ହିଁ ଏଭଳି ଦାୟିତ୍ୱ ନେଇ ନିଜକୁ ପରଖିବାର ପ୍ରୟାସ କରିଥିଲି ।

ରିହାର୍ସାଲ ଯୋର୍ ଚାଲିଲା, ନାଟକ ମଞ୍ଚାୟନର ଦିନ ଯେତିକି ପାଖେଇ ଆସୁଥାଏ, ମୋ ମନର ଉତ୍କଣ୍ଠା ସେତିକି ବଢୁଥାଏ । ଅବଶେଷରେ ସେଇ ମୁହୂର୍ତ୍ତ ଉପନୀତହେବା ସହ ଆମେ ସବୁ କଳାକାର ନିଜକୁ ପ୍ରସ୍ତୁତ କଲୁ । ନାରୀ ସେବା ସଦନ ପ୍ରେକ୍ଷାଳୟରେ ମହଜୁଦ୍ ହୋଇ ରୂପକାର ସୁବାସ ସମସ୍ତଙ୍କୁ ମେକ୍‌ଅପ୍ କଲେ । ଛୋଟ ନାଟକ ହେଲେ ବି ମଞ୍ଚଶିଳ୍ପପାଇଁ ଅନେକଗୁଡ଼ିଏ ସାମଗ୍ରୀର ଯୋଗାଡ଼ ହୋଇଥାଏ । ରିକ୍ସା, ପାନଦୋକାନର ଟେବୁଲ, ଷ୍ଟୁଲ୍, ଚା' ଟେବୁଲ୍ ସହ ଷ୍ଟୋଭ୍, କାଚଗ୍ଲାସ, ଟ୍ରାଫିକ୍ ଷ୍ଟାଣ୍ଡ, ଏମିତି କେତେ କଣ । ଆମେ ବାରଜଣ ଯାକ ମିଳିମିଶି ଏ ସବୁ ଯୋଗାଡ କରି ନିଜେନିଜେ ମଞ୍ଚ ଗ୍ରହଣ କଲାମାତ୍ରେ ସମୟର ସଦୁପଯୋଗକରି ମଞ୍ଚକୁ ଅବିଳମ୍ବେ ଛକଟିଏର ରୂପରେ ସଜେଇ ଦେଲୁ । ପୂର୍ଣ୍ଣ ପ୍ରେକ୍ଷଳୟରେ ନାରୀ ସେବା ସଦନରେ ଦର୍ଶକମଣ୍ଡଳୀ ଆମ ନାଟକକୁ ଅପେକ୍ଷା କରିଛନ୍ତି । ବିଚାରକମାନଙ୍କ ଘଣ୍ଟି ବାଜିଲା ।

ପରଦା ଅପସାରଣ ପରେ ନାଟକ ଆରମ୍ଭ ହେଲା, ପ୍ରଥମ ମଞ୍ଚ ପ୍ରବେଶ ଥିଲା ମୋର । ମୋ ପୋଷାକ ଥିଲା କଳାପେଣ୍ଟ, କଳା ଫୁଲ୍‌ଜର୍ସି, କଳା ଯୋତାମୋଜା, ମୁଣ୍ଡରେ ବାବୁରି କେଶ, ମୁହଁ ସାରା ଲାଲେଲାଲ୍, ଭୟାନକ ଦିଶୁଥାଏ ମୁଁ, ଆରମ୍ଭ କଲି ସଂଳାପ ଉଚ୍ଚାରଣ । ଧିରେ ଧିରେ ନାଟକ ତାର ଗତିରେ ଆଗକୁ ବଢ଼ିବାରେ ଲାଗିଲା, ସମ୍ପୂର୍ଣ୍ଣ ନୀରବତାରେ ଲୋକେ ନାଟକକୁ ଉପଭୋଗ କରୁଥାନ୍ତି । ଦର୍ଶକମଣ୍ଡଳୀ ଭିତରେ ମୋର ଅନେକବନ୍ଧୁ ଉପସ୍ଥିତ ଥିଲେ । ନାଟକ ସରିବାକୁ ଆଉ ମାତ୍ର ଚାରିପାଞ୍ଚ

ମିନିଟ ବାକି ଥାଏ, ମୋର ଶେଷସଂଳାପ ବାକିଥାଏ, ପରଦା ପଛପଟେ ଥାଇ ହଠାତ୍ ଦେଖିଲି ଦର୍ଶରମଣ୍ଡଳୀରୁ ମଞ୍ଚକୁ ଉଠି ଆସୁଛନ୍ତି ବନ୍ଧୁ ପ୍ରଦୀପ ରାୟ । ସେ ତ ଏ ନାଟକରେ ଅଭିନୟ କରୁ ନଥିଲେ, ସେ ପୁଣି କାହିଁକି ଆସୁଛନ୍ତି ? ଖାଲି ଆସିଲେ ନାହିଁ, ଚା' ବାଲା ଚରିତ୍ରଙ୍କ ସହ କଥାବାର୍ତ୍ତା କରି କହିଲେ, ଆଉ ଭାୟା, ବଢ଼ିଆ ହେଉଛେ ହୋ ନାଟକ୍, ଚା' କପେ ପିଲ; ମଞ୍ଚରେ ସମସ୍ତେ ହତବାକ୍, ଦର୍ଶକେ ଭାବି ନେଲେ ପ୍ରଦୀପ ମଧ୍ୟ ନାଟକର ଏକ ଚରିତ୍ର, ପ୍ରଦୀପ ନାଟକର ସ୍ୱାଭାବିକ ପ୍ରଦର୍ଶନ ଦେଖି ଏତିକି ପ୍ରଭାବିତ ହୋଇଯାଇଥିଲେ ଯେ ଆଉ ସମ୍ଭାଳି ନପାରି ମଞ୍ଚଉପରକୁ ଉଠିଆସିଲେ । ମୋର କିନ୍ତୁ ମୁଣ୍ଡ ଖରାପ ହୋଇ ବସିଲା, ପ୍ରଦୀପ ହୁଏ ତ ଜାଣି ନ ଥିଲେ ଯେ ବାରରୁ ଗୋଟିଏ ବି ଅଧିକ ଅଭିନେତା ମଞ୍ଚକୁ ଆସିଗଲେ ସଂଖ୍ୟା ତେର ହୋଇଯିବ ଏବଂ ବାର ଟପିଗଲେ ନାଟକକୁ ବିଚାରକମାନେ ମୂଲ୍ୟାୟନ କରିବେ ନାହିଁ, ଯାହା ନିୟମରେ ରହିଛି । ସେ ଯାହା ହେଉ, ମୁଁ ମୋର ଶେଷ ସଂଳାପ କହିବା ପରେ ପରଦାପଡି ନାଟକ ଶେଷହେଲା । ଯେମିତି ପରଦା ପଡିଛି, ମୁଁ ମୋ ହାତରେ ଧରିଥିବା ସମୟ ନାଟକର ପାଣ୍ଡୁଲିପିକୁ ପ୍ରଦୀପଙ୍କ ଆଡକୁ ପଥର ଫିଙ୍ଗିଲା ଭଳି ଫିଙ୍ଗି ଦେଇ ରାଗରେ କହି ପକାଇଲି, ବର୍ବାଦ୍ କରିଦେଲ ପ୍ରଦୀପ ନାଟକ୍‌କେ । ମଞ୍ଚ ଖାଲିକରି ପରିଷଦକୁ ଅର୍ପଣ କଲା ପରେ ବାହାରକୁ ଯାଇ ଆମ ନାଟକର ସ୍ଥିତି ସମ୍ପର୍କରେ ଅବଗତ କରାଇଲି । ପୂର୍ଣ୍ଣ ସଫଳତା ପାଇବା ପରେ ସୁଦ୍ଧା ପୁରସ୍କାରରୁ ବଞ୍ଚିତ ହେଲୁ । ପୁରସ୍କାର ବଡକଥା ନୁହେଁ, ଏକ ତ୍ରୁଟିଶୂନ୍ୟ ନାଟକ ପ୍ରଯୋଜନାରୁ ମୁଁ ବଞ୍ଚିତ ହେଲି । ସମସ୍ତଙ୍କ ମନ ମଉଳିଗଲା, ଏତେ ପରିଶ୍ରମ ବୃଥାଗଲା ବୋଲି ସମସ୍ତେ ପ୍ରଦୀପଙ୍କୁ ପଦେପେଦ ଝାଡ଼ିଲେ । ପ୍ରଦୀପ ତାଙ୍କ ଅଜାଣତରେ ଭୁଲଟିଏ କରିଥିବାରୁ ଅନୁତାପ କଲେ । ନିରବରେ ଘରକୁ ଚାଲିଗଲେ ।

ଏଥିଲା ମୋ ରଚନାରେ, ନିର୍ଦ୍ଦେଶନାରେ, ପରିଚାଳନାରେ, ଅଭିନୟ କରିବାରେ ପ୍ରଥମ କରି ପ୍ରତିଯୋଗିତାର ମଞ୍ଚକୁ ଓହ୍ଲାଇବାର ପ୍ରତ୍ୟକ୍ଷଦର୍ଶୀ ଧାରା ବିବରଣୀ । ।

ମୋ ବନ୍ଧୁବର୍ଗଙ୍କ ଧାରଣା ଥିଲା, ଏ ଘଟଣା ପରେ ପ୍ରଦୀପ ସହ ମୋର ସମ୍ପର୍କରେ ପୂର୍ଣ୍ଣଚ୍ଛେଦ ପଡ଼ିଯିବ । ତେବେ କଥା ଘଟିଲା ପୁରା ଓଲଟା । ଆମ ଘନିଷ୍ଠତା ଆହୁରି ବୃଦ୍ଧି ପାଇଲା । ଉଭୟେ ଶେଷବର୍ଷ ଓଡ଼ିଆ ସମ୍ମାନର ଛାତ୍ର, ଭଲ କରି ପଢ଼ି ପରୀକ୍ଷାଦେବାକୁ ହେବ । ପରୀକ୍ଷାପୂର୍ବ ମାସାଧିକାଳ ମୁଁ ମୋ ଘରର ବିଦ୍ୟୁତ୍ ଆଲୋକର ପଢ଼ାକୋଠରୀ ଛାଡ଼ି ପ୍ରାୟ ରାତିରାତି ଧରି ପ୍ରଦୀପଙ୍କ ସମଲେଶ୍ୱରୀ ମନ୍ଦିର ନିକଟସ୍ଥ ରାୟପଡ଼ାରେ ଥିବା

କାଠବକଲୀରେ ତିଆରି କୁଟୀରର ମିଞ୍ଜିମିଞ୍ଜି ଲଣ୍ଠନ ଆଲୁଅରେ ପରୀକ୍ଷାପାଇଁ ପଢ଼ାପଢ଼ି କଲି । ଏତେ ଘନିଷ୍ଠ ହୋଇଗଲୁ ଆମେ ଦି ଜଣ ଯେ ଘଡିଏ ପରସ୍ପରକୁ ନ ଦେଖିଲେ ଅନ୍ଧ ହୋଇଯାଉଥିଲୁ । ସକାଳ ହେଲେ, ଘରକୁ ପକାଏ, ପୁଣି ସନ୍ଧ୍ୟାରେ ସେହି ରାୟପଡ଼ାର ପୁଷ୍ପିତ କୁଟିରକୁ ଧାଇଁ ଆସେ ପଢ଼ିବାପାଇଁ । ପ୍ରଦୀପର ମାଁ ମୋତେ ଖୁବ୍ ଭଲପାଉଥିଲେ । ମୋର ଉପସ୍ଥିତି ତାଙ୍କୁ ଭଲ ଲାଗୁଥିଲା ।

ଏମିତି ଏମିତି କାଳ ବହିଗଲା ନଈର ପାଣି ପରି । ପରୀକ୍ଷା ସରିଲା । ଜୁନ୍ ଶେଷବେଳକୁ ପରୀକ୍ଷା ଫଳ ବାହାରିଲା, ସାଇକଲ୍‌ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଯାଇ ରେଜଲ୍ଟ ଦେଖିଲାରୁ ସମସ୍ତଙ୍କ ନାମ ବାହାରିଛି, ଆମ ଦୁଇଜଣଙ୍କ ନାମ ନାହିଁ ! ! ଦୁଇ ଚାରିଥର ନୋଟିସ୍ ବୋର୍ଡରେ ଛପା ହୋଇଥିବା ଫଳଫର୍ଦ୍ଦକୁ ଦେଖିଲୁ । ସତରେ ଆମ ନାଁ ନଥିଲା । ମାନେ ଆମେ ପରୀକ୍ଷାରେ ଅସଫଳ ! ! ! ପରେ ମାର୍କସିଟ୍ ଯାଞ୍ଚ କଲାରୁ ଜାଣିଲୁ, ରାଜନୀତି ବିଜ୍ଞାନରେ ଇଣ୍ଟର୍ନାଲ୍ ଏସେସ୍‌ମେଣ୍ଟର ଦୁଇଟି ପରୀକ୍ଷା ଦେଇନଥିବାରୁ ସେଥିରେ ଖୁବ୍‌କମ୍ ମାର୍କ ଆସିଛି । ଅନର୍ସ ମାର୍କ ଖୁବ୍ ଭଲ, ପାସ୍ ବିଷୟର ମାର୍କ ଭଲ, ଇଂରାଜୀ ଓ ସାହିତ୍ୟ, ସବୁଥିରେ ଭଲ, ହେଲେ ଦୁଇଟି ଅନ୍ତରୀଣ ପରୀକ୍ଷା ଦେଇପାରି ନଥିଲୁ, ତେଣୁ.... ! !

ଉଭୟେ ଚିନ୍ତିତ ହୋଇଗଲୁ । ନିଜେ ନିଜେ ନିଷ୍ପତ୍ତି ନେଲୁ ଭବିଷ୍ୟତ ପଦକ୍ଷେପକୁ ନେଇ । ମୁଁ ସପ୍ଲିମେଣ୍ଟାରୀ ପରୀକ୍ଷା ଦେବାର ଯୋଜନା କଲି ଆଉ ପ୍ରଦୀପ ଆଉ ବର୍ଷେ ପଢ଼ି ପରବର୍ଷ ଫାଇନାଲ୍ ପରୀକ୍ଷା ଦେବାର ସଙ୍କଳ୍ପ ନେଲେ । ସେଭଳି ହେଲା, ସେ ପୁଣି ନାଁ ଲେଖାଇଲେ, ପ୍ରଦୀପ ପଣ୍ଡାଙ୍କ ସହ ପଢ଼ିଲେ, ମୁଁ ଏକ ପ୍ରକାର ପ୍ରତିଜ୍ଞା କଲି ବିଏ ଅନର୍ସ ସହ ପାସ୍ ନ କରିବାଯାଏଁ ନାଟକ କରିବିନି, ଗୀତ ଗାଇବିନି, ସାହିତ୍ୟ ସଭା କରିବିନି । ପରେ ସ୍ଥିର ମନରେ ଚିନ୍ତାକରି ଜାଣିଲି, ଯେଉଁ ଦିନ ଇଣ୍ଟର୍ନାଲ୍ ପରୀକ୍ଷା ଥିଲା, ତା ପୂର୍ବରାତିରେ ମୁଁ ଓ ମୋ ସଂଗୀତ ଦଳ କୁଚିଣ୍ଡା ଯାଇ ଅର୍କେଷ୍ଟ୍ରା କରିଥିଲୁ । ତା ପରଦିନ ପରୀକ୍ଷାଥିଲା ବୋଲି ଜାଣିନଥିଲୁ । ତେଣୁ ରାତିଅନିଦ୍ରା ପାଇଁ କଲେଜ୍ ଯାଇ ନଥିଲି । ଆଉ ଗୋଟେ କଥା, ଆମ ରାଜନୀତିବିଜ୍ଞାନ ବିଭାଗର ମୁଖ୍ୟ ଜଣେ ମେଡମ୍ ଥିଲେ । ଆମ ଶ୍ରେଣୀକୁ ପ୍ରବେଶ କଲାମାତ୍ରେ ମୋତେ ଜୟପ୍ରକାଶ ନାରାୟଣ ବୋଲି ଥଟ୍ଟାରେ କହୁଥିଲେ । ଜରୁରୀ ପରିସ୍ଥିତି ଥିଲା ତ, ମୋ ଦୁର୍ଦ୍ଦାନ୍ତପଣ ଉପରେ ଏ ଥିଲା ତାଙ୍କ ମିଠାଚାପୁଡ଼ା ! ! ମେଡମଙ୍କୁ ସସମ୍ମାନେ ପ୍ରଣାମ । ବହୁ ବର୍ଷ ପରେ ଶୁଣିଲି, ବନ୍ଧୁ ଜଗଦାନନ୍ଦ ପଣ୍ଡାଙ୍କୁ ଆଇ.ଏ.ଏସ. କରିବାରେ ମେଡମ୍‌ଙ୍କ ସିଧାସଳଖ ପ୍ରଚ୍ଛନ୍ନ ହାତ ଥିଲା ।

ସପ୍ଲିମେଣ୍ଟରୀ ପରୀକ୍ଷା ଫଳ ବାହାରିଲା, ସମ୍ମାନ ସହ ଡିଷ୍ଟିଙ୍କସନ୍ ମଧ୍ୟ ପାଇଲି । ମୁଗାମ୍ୟୋ ଖୁସ୍ ହୁଆ । ହେଲେ ଦେବଦାସ୍ ଭଳି ବିରହରେ ଦୁଃଖୀ ହୋଇଗଲା, କାରଣ ସେ, ମାନେ ସେ ବି ରହିଗଲେ, ପାସ୍ କରିପାରିଲେ ନାହିଁ, ଅଧିକନ୍ତୁ ଉଭୟଙ୍କ ଯାତ୍ରାର ମେଳକ ଠିକ୍‌ଠାକ୍ ଯାଉଥିଲା । ମୁଁ ଆଉ ପାହାଚେ ଉପରକୁ ଯାଇ ଜ୍ୟୋତିବିହାରର ପାହାଡ଼ ତଳର ସବୁଜିମାରରେ ମସଗୁଲ୍ ହୋଇଗଲି, ସାନ୍ତ୍ୱନା ଦେବା ଛଳରେ ତାଙ୍କୁ କହିଲି, ତମେ ବର୍ଷେ ତଳେରହିବା ନିୟମ ସିଦ୍ଧ । ସେ ମୁରୁକୀହସରେ କଥାଟିକୁ ସସମ୍ମାନେ ଗ୍ରହଣ କଲେ, ମୁଁ ଜ୍ୟୋତିବିହାରର ପାହାଡ଼ ଉପରେ ଛିଡ଼ାହୋଇ ଗାଇବାରେ ଲାଗିଲି,

ଏଇ ପାହାଡ଼ର ତଳେ, ନାଲି ନେଳି ରଙ୍ଗ ମେଳେ,<br>
ଏ ମନ ନାଚେରେ ଆଜି, ଯୌବନ ଗାଏ ଆଜି,<br>
ଜ୍ୟୋତିବିହାର... ଜ୍ୟୋତିବିହାର... ଜ୍ୟୋତିବିହାର.... ।

ଆଉ ଗୋଟାଏ ଧାଡ଼ିରେ ଏ ପ୍ରସଙ୍ଗ ସାରିବି, ପ୍ରଦୀପ ରାୟ ବାର୍ଷିକ ପରୀକ୍ଷାଦେଇ ପ୍ରଥମଶ୍ରେଣୀରେ ପ୍ରଥମହୋଇ ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକ ପାଇଲେ ! ! !

□ □

**ଯେ** ଯାହା ଚାହେଁ, ସେଇଆ ମିଳିବାଟା ସବୁବେଳେ ସତ ହୁଏନାହିଁ । ଯଦିବା ମିଳିଯାଏ, ତାକୁ ବହୁ ସମାଧାନର ବ୍ରତୀ ହେବାକୁ ପଡିଥାଏ । ମୋ କ୍ଷେତ୍ରରେ କଥାଟା ଭିନ୍ନପ୍ରକାରର । ବି.ଏ. ପାସ୍ କଲାପରେ ମୋ' ବାପା ମୋତେ ଏମ.ଏ. ପଢ଼ାଇବାକୁ ଚାହୁଁ ନଥିଲେ । ତାଙ୍କର ଇଚ୍ଛାଥିଲା ମୁଁ ବି.ଉଡି. କରି ଶିକ୍ଷକ ହୁଏ । ମୁଁ କିନ୍ତୁ ରୋକ୍‌ଠୋକ୍ ବାପାଙ୍କ ପ୍ରସ୍ତାବକୁ ମନା କରିଦେଇଥିଲି । ମୋର ଏକା ଜିଦ୍, ମୁଁ ଏମ.ଏ. ପଢ଼ିବି, ପରେ ଅଧ୍ୟାପକ ହେବାକୁ ଚେଷ୍ଟା କରିବି । ପରେ ବାପା ଆଉଏକ ଇଚ୍ଛା ବ୍ୟକ୍ତ କଲେ, ଆଇନ୍‌ପଢ଼ି ଓକିଲାତି କରିବାକୁ । ଏଇ ପ୍ରସ୍ତାବକୁ ହଠାତ୍ କାଟି ନ ପାରିଲେ ବି ମୁଁ ବାପାଙ୍କ କହିଲି, ଓକିଲ ହେଲେ ମୋତେ ମିଛ କହିବା ପାଇଁ ପଡ଼ିବ, ସାଧାରଣ ଲୋକଙ୍କୁ ଠକିବାକୁ ପଡିବ, ନା... ନା..., ମୁଁ ଏଭଳି ଠକାଭଣ୍ଡା କାମକରିବା ଜୀବନ ଜୀଇଁ ପାରିବି ନାହିଁ । ବାପା ରାଗିଯାଇ ଗାଳିକଲେ, ତୁ ଯାହା କରୁଛୁ କର, ମୋତେ ଆଉ କିଛି କହିବୁ ନାହିଁ । ମୋତେ ଅବଶ୍ୟ ଟିକିଏ ଖରାପ ଲାଗିଥିଲା, ଭାବିଲି, ବାପା ବୋଧହୁଏ ମୋର ଉଦ୍ଦୁର୍ଣ୍ଣାପଣ ଦେଖି, କିମ୍ବା ବି.ଏ.ରେ ଫେଲ୍ ହୋଇ ସପ୍ଲିମେଣ୍ଟାରୀରେ ପାସ୍ କଲି ବୋଲି ଏଭଳି କହୁଥିବେ । ମୋର କିନ୍ତୁ ପାଠପଢ଼ା ପ୍ରତି ବି.ଏ. ଫେଲ୍ ହେବା ପରେ ଅଧିକ ଆଗ୍ରହ ଜନ୍ମିଥିଲା, ନିଜ ପ୍ରତି ଆତ୍ମବିଶ୍ୱାସ ଜାଗ୍ରତ

ହୋଇଥିଲା । ବାପାଙ୍କ ଗାଳିପରେ ମୁଁ ସମ୍ଭାଳି ନପାରି ମାଁଙ୍କ ସାମ୍ନାରେ କାନ୍ଦିପକାଇଥିଲି । ମାଁଙ୍କୁ ମୋ ମନର କଥା କହି ଏମ.ଏ. ପଢ଼ିବାର ଆଗ୍ରହକୁ ଦୋହରାଇଥିଲି । ମାଁ କଣ ଯାଦୁ କଲେ କେଜାଣି, ପରଦିନ ବାପା ରାଜି ହୋଇଗଲେ । ବାସ୍ତବରେ ଛୋଟବେଳୁ ଆମ ସମସ୍ତ ଭାଇଭଉଣୀଙ୍କ ପଢ଼ାପଢ଼ି ବିଷୟ ମାଁ ହିଁ ବୁଝୁଥିଲେ । ସମ୍ମତି ପାଇବା ପରେ ସ୍ନାତକୋତ୍ତର ଶ୍ରେଣୀରେ ନାମ ଲେଖାଇବା ପାଇଁ ଉଦ୍ୟମ ଆରମ୍ଭ ହୋଇଗଲା ।

ପ୍ରଦୀପ ରାୟଙ୍କ ଘରେ ରହି ପଢ଼ାପଢ଼ି କରିବାଭିତରେ ସେଇ ବଡ଼ବଜାରରେ ରହୁଥିବା ଶ୍ୟାମ ସୁନ୍ଦର ଧର ଓରଫ ବାରୁ ଦା'ଙ୍କ ସଂସ୍ପର୍ଶରେ ପ୍ରଥମକରି ଆସିଥିଲି । ସେତେବେଳେ ସେ ବି ଓଡ଼ିଆରେ ଏମ.ଏ. କରି ଉତ୍ତୀର୍ଣ୍ଣ ହୋଇଥିଲେ, ପରେ ଡିଆର୍‌ଏସ୍ ଯୋଜନାରେ ଗବେଷଣା ସହାୟକ ଭାବରେ ସେଇ ଜ୍ୟୋତିବିହାରର ଓଡ଼ିଆ ବିଭାଗରେ କର୍ମରତ ଥିଲେ । ତାଙ୍କ ସହ ଚର୍ଚ୍ଚାପରେ ମୁଁ ଆଶ୍ୱସ୍ତ ହେଲି ଯେ ନିଶ୍ଚୟ ମୋତେ ଓଡ଼ିଆ ବିଭାଗରେ ସିଟ୍‌ଟିଏ ମିଳିଯିବ । ପ୍ରଫେସର ଡ. ଗୋପାଳ ଚନ୍ଦ୍ର ମିଶ୍ର ଥିଲେ ବିଭାଗୀୟ ମୁଖ୍ୟ । ସପ୍ଲିମେଣ୍ଟରୀରେ ପାସ୍ କରିଥିବା ଛାତ୍ରଛାତ୍ରୀମାନଙ୍କ ପାଇଁ କିଛି ସିଟ୍ ରଖାଯାଇଥିଲା । ତେଣୁ ମାର୍କ ଆଧାରରେ ମୁଁ ଏଡମିସନ୍ ପାଇଁ ଯୋଗ୍ୟ ବିବେଚିତ ହେଲି ଏବଂ ଶେଷରେ ନାଁ ଲେଖାଇ ମୋର ମନୋବାଞ୍ଛାକୁ ପୂରଣ କଲି । ଏ ଦିଗରେ ବାରୁଦାଙ୍କ ସହଯୋଗ ଭୁଲିବାର ନୁହେଁ । ସେ ଦିନଠାରୁ ତାଙ୍କ ସହ ସମ୍ପର୍କ ଘନିଷ୍ଠତାରେ ପରିଣତ ହୋଇଗଲା । ଉଭୟେ ସଂଗୀତ, ନାଟକ ଓ ସାହିତ୍ୟର ରସପିପାସୁ ହୋଇଥିବାରୁ ଆମ ସମ୍ପର୍କ ଆହୁରି ଦୃଢ଼ୀଭୁତ ହୋଇଗଲା । ଏହି ସମ୍ପର୍କର ପ୍ରତିଫଳନ ସ୍ୱରୂପ ସମଲେଶ୍ୱରୀ ଯୁବକ ସଂଘ ଦ୍ୱାରା ଆୟୋଜିତ ନୂଆଁଖାଇ ଭେଟ୍ କାର୍ଯ୍ୟକ୍ରମ ପାଇଁ ପ୍ରାୟ ଆଠ ନଅ ବର୍ଷ ଧରି ପ୍ରାରମ୍ଭିକ ସଂଗୀତ ନିଜେଲେଖି, ସ୍ୱର ଦେଇ, ଶିଖାଇ ପରିବେଷଣ କରିଥିଲି । ତା' ସହ କିଛି ନାଟକ ମଧ ସମଲେଶ୍ୱରୀ ମଣ୍ଡପରେ କରିଛି । ସେହି ନ ବର୍ଷ ସମଲେଶ୍ୱରୀ ମନ୍ଦିର ପ୍ରାଙ୍ଗଣ ଗୋଟିଏ ପ୍ରକାର ଘର ପାଲଟି ଯାଇଥିଲା । ଏବେ ବି ସେ ଅଞ୍ଚଳକୁ ଗଲେ କେହି ନା କେହି ଚିହ୍ନା ଲୋକ ମୋତେଚିହ୍ନି ମୋର ଭଲମନ୍ଦ ପଚାରନ୍ତି ।

ସମ୍ବଲପୁର ବିଶ୍ୱବିଦ୍ୟାଳୟର ଉପାଧ୍ୟୁତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ପ୍ରବେଶ କଲାପରେ ପୁଣି ଥରେ ଭିନ୍ନ ଏକ ଶୈଳୀରେ ଛାତ୍ରଜୀବନ ବିତିବାର ଆରମ୍ଭ ହେଲା । ଦିଗମ୍ବର ଆଚାରୀମାନେ, ଆଶୀଷବାଲା, ଭାଗ୍ୟବତୀ, ରୀତା ଦାସ, ବିଜୟଲକ୍ଷ୍ମୀ ଜେନାମାନେ ସହାସ୍ୟ ବଦନରେ ସ୍ୱାଗତ କଲେ, କଳନା କରିନେଲେ, ଡିପାର୍ଟମେଣ୍ଟରେ ପୁଣି ସଂଗୀତ ଗୁଞ୍ଜରିତ ହେବ, ତବଲା ବାଜିବ, ପାଠସହ ସାଠ ମଧ

ସମାନ୍ତରାଳ ଭାବରେ ଗତି କରିବ । ପୁରୁଣା ସାଂଗ ସହ ନୂତନ ବନ୍ଧୁ ସଂଖୋଳିବାରେ ବେଶି ଡେରି ଲାଗିଲାନାହିଁ । ପ୍ରମୋଦ ଷଡଙ୍ଗୀ, ରାମଚନ୍ଦ୍ର ମିଶ୍ର, କୁଞ୍ଜ ଧଳ, ରମେଶ ନାଏକ, ସୁଶାନ୍ତ ମୁଦୁଲୀ, ଅଶୋକ ବହିଦାର, କାନ୍ତିଲାଲ ମୁଗ୍ରୀ, ବିରଞ୍ଚି ପଟେଲ, ଲୋକନାଥ ଦାସ ଆଦି ଅନେକ ସାଥୀ କ୍ରମଶଃ ଆପଣାର ପାଲଟିଗଲେ ।

ବିଭାଗୀୟ ମୁଖ୍ୟ ପ୍ରଫେସର ଡ. ଗୋପାଳଚନ୍ଦ୍ର ମିଶ୍ରଙ୍କ ସହ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ବାଳକୃଷ୍ଣ ଶତପଥୀ ଏବଂ ବୈରାଗୀ ଜେନା ପ୍ରମୁଖ ଅଧ୍ୟାପକ ଭାବରେ ନିୟୋଜିତ ଥିଲେ । ନିମାଇଁ ଚରଣ ପଣ୍ଡା ଗବେଷଣା ସହାୟକ ଭାବରେ ପଶ୍ଚିମ ଓଡ଼ିଶାର ଲୋକସାହିତ୍ୟ ଉପରେ ଗବେଷଣା କରୁଥିଲେ । ଏ ସମସ୍ତ ଗୁରୁମାନଙ୍କ ସହ ମୋର ସମ୍ପର୍କ ଧିରେ ଧିରେ ପ୍ରତିଷ୍ଠାରୁ ଘନିଷ୍ଠତା ଆଡ଼କୁ ଗତିକଲା । ଠେମରାର ଚକାନନ୍ଦ ମହାଣା କିରାଣୀ ଓ ଫକୀର ବିଭାଗର ପିଅନ ଥିଲା । ପ୍ରମୋଦ ତ୍ରିପାଠୀ ଇଂରାଜୀ ବିଭାଗର ଛାତ୍ରଭାବରେ ହୋଷ୍ଟେଲ୍‌ରେ ରହୁଥିଲେ, କୈଳାସ ଓ ମୁରଲୀ ମେହେର ରାଜନୀତି ବିଜ୍ଞାନର ଛାତ୍ରଭାବରେ ମୋସହ ବସ୍‌ରେ ଯାତାୟାତ କରୁଥିଲେ । ପ୍ରଫେସର ଗୋପାଳ ମିଶ୍ର ଜଣେ ବିଚିତ୍ର ପ୍ରକୃତିର ବ୍ୟକ୍ତିଥିଲେ, ବୁଝିଲେ ବୁଝିଥିବେ, ନହେଲେ ବଡ଼ କଡ଼ାମିଜାଜ୍‌ର ଲୋକ । ଭଲ ପାଇଲେ ଖୁବ୍ ଭଲ ପାଇବେ, ନ ହେଲେ ରାଗରେ ତମତମ ହୋଇ ପ୍ରତିହିଂସାପରାୟଣ ପାଲଟିଯାଉଥିଲେ । ତେଣୁ, ଅଧ୍ୟାପକମାନଙ୍କ ସହ ପ୍ରାୟ ସମସ୍ତ ଛାତ୍ରଛାତ୍ରୀ ତାଙ୍କୁ ଭୟ କରୁଥିଲେ । ସାର୍ ବି ବସ୍ ଯୋଗେ ବିଭାଗକୁ ସମ୍ବଲପୁରରୁ ଯିବା ଆସିବା କରୁଥିଲେ । ସମ୍ବଲପୁର ପ୍ରଫେସର୍ କଲୋନୀରେ ଜି.ଏମ. କଲେଜର କ୍ୱାଟର୍‌ରେ ସପରିବାର ରହୁଥିଲେ । ତାଙ୍କ ଘରକୁ ଲାଗି କ୍ୱାଟର୍‌ରେ ରହୁଥିଲେ ଇଂରାଜୀ ବିଭାଗର ଅଧ୍ୟାପକ ଡ. ହଳଧର ପଣ୍ଡା । ଦୁଇ ବର୍ଷ ଅଧ୍ୟାପନା ଭିତରେ, ଡ. ବାଳକୃଷ୍ଣ ଶତପଥୀ ସାର୍ ମୋର ସବୁଠାରୁପ୍ରିୟ ସାର୍ ଥିଲେ । ତାଙ୍କ ପଢ଼ାଇବା ଶୈଳୀ ମୋତେ ବିଶେଷ ଭାବରେ ପ୍ରଭାବିତ କରିଥିଲା । ସେ ପ୍ରାୟତଃ ଗଳ୍ପ ଓ ଉପନ୍ୟାସ ପଢ଼ାଉଥିଲେ । ତାଙ୍କ କ୍ଲାସକୁ ଆମେ ଅପେକ୍ଷା କରୁଥିଲୁ । ଭାଷାତତ୍ତ୍ୱ ଉପରେ ଉଦ୍‌ଗାତାସାର୍‌ଙ୍କ ଜ୍ଞାନ ଅତୁଳନୀୟ । ସ୍ୱଷ୍ଟ ଉଚ୍ଚାରଣ ଏବଂ ନିଛକ ବିନ୍ୟାସ, ତାଙ୍କ ଅଧ୍ୟାପନା ଶୈଳୀ । ଆମ ଉପର ବେଚ୍‌ର ଅଶୋକ ନାଏକ ଥିଲେ ସେମିନାର ସମ୍ପାଦକ, ଯେ ବାମରା ମହାବିଦ୍ୟାଳୟର ଅଧକ୍ଷ ଭାବରେ ଅବସର ନେବା କିଛି ବର୍ଷ ଭିତରେ ସ୍ୱର୍ଗବାସୀ ପାଲଟିଗଲେ । ତାଙ୍କ ନେତୃତ୍ୱରେ ଆଲୋଚନାଚକ୍ରମାନ ଆୟୋଜିତ ହେଉଥିଲା । ମୋର ମନେ ଅଛି, ଥରେ ଏକ ସେମିନାର୍‌କୁ କବି ଅନନ୍ତ ପଟ୍ଟନାୟକ ଅତିଥିବକ୍ତା

ଭାବରେ ଯୋଗ ଦେଇଥିଲେ । ତାଙ୍କୁ ସ୍ୱାଗତ କରିବା ପାଇଁ ବିଭାଗ ତରଫରୁ ସଂଗୀତ ପରିବେଷଣ କରିବା ପାଇଁ ଅନୁରୋଧ କରାଗଲା । ମୁଁ ନିଜେ ମାନ୍ଦଳ କାନ୍ଧରେ ଝୁଲାଇ ସମ୍ବଲପୁରୀ ଗୀତଟିଏ ନିଜ ଲେଖାରୁ ଗାଇଥିଲି । ଗୀତଟି ଥିଲା -

ସୁନା ମିତାର୍ ଦିଶେ ଭାଇ, ମହାନଦୀର୍ ନୀଲିପାନି...

ଗୀତଟି ଶୁଣିବାପରେ କବି ଅନନ୍ତ ପଟ୍ଟନାୟକ ମୋ ଅଟୋଗ୍ରାଫରୀରେ ପଦିଏ କବିତା ଲେଖି ଉତ୍ସାହିତ କରିଥିଲେ । ସେ ଲେଖାର ପ୍ରଥମ ଧାଡ଼ିଟି ହେଲା - ବଜାଇ ମାନ୍ଦଳ ମୁହଁରେ ସଂଗୀତ..... ।

ଜ୍ୟୋତିବିହାରର କଥା, ସେଇ ପାହାଡ଼ର ସବୁଜିମାରେ ଘଟିଚାଲିଥାଏ । ଏପଟେ, ସମ୍ବଲପୁର ଓ ନାଟ୍ୟ ପରିବେଶକୁ ତିଳେମାତ୍ର ଅବହେଳା ନକରି ଆଗକୁ ମାଡ଼ିଯିବାର ଉଦ୍ୟମ ଆରମ୍ଭ ହୋଇଗଲା । ବ୍ୟକ୍ତିଗତ ଭାବରେ ମୋର ଇଚ୍ଛା ହେଲା, ଆଉ ତ ଜିଏମ୍. କଲେଜରେ ନାଟକ କରି ହେବ ନାହିଁ, ଏଠାରେ ଯେଉଁ କଳାକାରମାନେ ଖ୍ୟାତି ଅର୍ଜନ କରିଛନ୍ତି, ସେମାନଙ୍କୁ ଏକଜୋଟ କରି ଏକ ସହରଭିତ୍ତିକ ମେଗାନାଟକ ଆୟୋଜନ କରିବାପାଇଁ ନିଜ ବନ୍ଧୁମାନଙ୍କ ସହ ଆଲୋଚନା ପରେ ଏଭଳି ଏକ ଯୋଜନା ସମ୍ପର୍କରେ ନାଟ୍ୟକାର ବନ୍ଧୁ ପ୍ରମୋଦ ତ୍ରିପାଠୀଙ୍କ ସହ କଥା ହେଲି । ଏକ ନାଟକ ରଚନା କରିବାର ଗୁରୁଦାୟିତ୍ୱ ନେବାପାଇଁ ସେ ସମ୍ମତି ପ୍ରଦାନ କଲେ । ଚଳଚ୍ଚିତ୍ରର ମୁହୂରତ୍ ଭଳି ଏକ ପ୍ରାରମ୍ଭିକଉତ୍ସବ ଆୟୋଜନର ଚିନ୍ତା କରାଗଲା । ନାଟକରେ ଅଭିନୟକରିବାପାଇଁ ବିଶିଷ୍ଟ ଅଭିନେତାମାନଙ୍କୁ ଜିଏମ କଲେଜର ଏକ ପ୍ରକୋଷ୍ଠକୁ ନିମନ୍ତ୍ରିତ କରି ଏକ ସ୍ୱାକ୍ଷର ଦିବସ ଆୟୋଜିତ ହେଲା । କହିବା ବାହୁଲ୍ୟ ଯେ ତାଙ୍କ ବାପା, ଶ୍ରୀ ଶ୍ରୀବଲ୍ଲଭ ମିଶ୍ର ଏହି ଦିବସର ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ । ତାଙ୍କ ସହ ଆଶିଷବାଳା, ସରୋଜବାଳା, ସେ ଓ ତାଙ୍କ ଭଉଣୀ ଯୋଗଦେଇଥିଲେ ।

ସର୍ବଶ୍ରୀ ଦିଲୀପ ପଣ୍ଡା, ପଞ୍ଚାନନ ମିଶ୍ର, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ରବିନାରାୟଣ ବହିଦାର, ପୃଥ୍ୱୀରାଜ ମିଶ୍ର, ସୁଶୀଲ ମିଶ୍ର, ପ୍ରଦୀପ ସାହାଣୀ, ଦିଲୀପ ପଣ୍ଡା (ଖ), ବିଜୟ ପ୍ରଧାନ ଆଦି ବହୁ ବିଶିଷ୍ଟ ଅଭିନେତାମାନଙ୍କ ସହ ନିର୍ଦ୍ଦେଶକ ମାନଭଞ୍ଜନ ହୋତା ଏହି ନାଟକପାଇଁ ଅନୁବନ୍ଧିତ ହେଲେ । ପ୍ରମୋଦ ନାଟକଟି ଲେଖିବା ପରେ ଅନେକ ଚର୍ଚ୍ଚାବିଚର୍ଚ୍ଚା, ଆଲୋଚନା, କଟାଛଟା ଓ ନିର୍ଦ୍ଦେଶକ ମାନଭଞ୍ଜନ ହୋତାଙ୍କ ଶେଷ ସ୍ପର୍ଶ ପରେ ନାଟକ 'ଦ୍ୱିତୀୟ ମୃତ୍ୟୁ' ରିହାର୍ସାଲପାଇଁ ପ୍ରସ୍ତୁତ ହୋଇଗଲା ।

ରିହାର୍ସାଲ୍ ଆରମ୍ଭ ହେଲା ଅଶୋକା ହୋଟେଲରେ ଅନୁଷ୍ଠିତ ଏକ ମୁହୁରତ୍ କାର୍ଯ୍ୟକ୍ରମ ମାଧ୍ୟରେ । ଚଳଚ୍ଚିତ୍ର ପ୍ରଯୋଜକ ରାହାସବିହାରୀ ମିଶ୍ର ଏବଂ ଅଧ୍ୟାପକ ମୀନକେତନ ପୁରୋହିତ ଅତିଥି ଭାବରେ ଯୋଗଦେଇ କଳାକାରମାନଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ପରେପରେ ନିର୍ଦ୍ଦେଶକ ମାନବାବୁଙ୍କ ପରିଚାଳନାରେ ରିହାର୍ସାଲ ଗଡ଼ି ଚାଲିଲା । ଜରୁରୀକାଳୀନ ପରିସ୍ଥିତିପାଇଁ ଚାନ୍ଦା ଯୋଗାଡ଼ରେ ଅସୁବିଧା ସୃଷ୍ଟି ହେଲା । ତଥାପି ସମସ୍ତଙ୍କ ସହଯୋଗରେ ଅର୍ଥ ସଂଗ୍ରହ ଆଗକୁ ଚାଲିଲା । ସବୁ ଠିକ୍‌ଠାକ୍ ଚାଲିଥିବା ବେଳେ ଅଭିନେତ୍ରୀ ସମସ୍ୟା ଦେଖାଦେଲା । ସୌଖୀନ ଅଭିନେତ୍ରୀଙ୍କ ଅନୁପସ୍ଥିତିରେ ପେଶାଦାର ଅଭିନେତ୍ରୀ କଟକରୁ ଆଣିବାର ଚିନ୍ତା କରାଗଲା, ଯାହା ମୋର ନୀତିବିରୁଦ୍ଧ ଥିଲା । ତଥାପି ଅନ୍ୟମାନଙ୍କ ମତ ନିଆଯିବାପରେ କଟକରୁ ଦୁଇଜଣ ଅଭିନେତ୍ରୀଙ୍କୁ ଆଣି ଅଶୋକା ହୋଟେଲରେ ରଖାଗଲା । ଏଭଳି ଯୋଜନାରେ ବହୁ ଅର୍ଥ ଆବଶ୍ୟକ ହେଉଥିବାରୁ ଏବଂ ସେତିକି ଅର୍ଥ ସଂଗ୍ରହ ହୋଇନଥିବାରୁ ମୁଁ ଅଭିନେତ୍ରୀମାନଙ୍କୁ ଫେରିଯିବା ପାଇଁ କହିଲି । ସେମାନେ ଫେରିଗଲେ, ଏଇ ଘଟଣାକୁ ନେଇ ଆମ ଭିତରେ ଭିନ୍ନମତ ଦେଖାଦେଲା, ନିର୍ଦ୍ଦେଶକ ଏବଂ କେତେକ ବରିଷ୍ଠ କଳାକାରମାନଙ୍କ ସହ ମୋର ମନୋମାଳିନ୍ୟ ଦେଖାଦେଲା । ମୁଁ ସ୍ୱତଃପ୍ରବୃତ୍ତ ଭାବରେ ଅନୁଷ୍ଠାନରୁ ଓହରିଗଲି, ଯଦିଓ ମୋ ପଛରେ ଅନେକ କଳାକାରଙ୍କ ସମର୍ଥନ ଥିଲା । ଏ ଘଟଣାପାଇଁ ବହୁ ବର୍ଷପାଇଁ ମାନବାବୁଙ୍କ ସହ ଆଉ କେତେକ କଳାକାରଙ୍କ ସହିତ ମୋର ଭାବଗତ ସମ୍ପର୍କ ପ୍ରାୟ ଛିନ୍ନ ହୋଇଗଲା ।

ପରେ ଅନ୍ୟ କେତେଜଣ ବନ୍ଧୁମାନଙ୍କ ସହଯୋଗରେ 'ଦ୍ୱିତୀୟ ମୃତ୍ୟୁ' ନାଟକଟି କାଳିବାଡ଼ି ମଞ୍ଚରେ ସଫଳତାର ସହ ମଞ୍ଚସ୍ଥ ହେଲା । ଅଞ୍ଜନା ଚକ୍ରବର୍ତ୍ତୀ ଏଥିରେ ଅଭିନୟ କଲେ । ଆରମ୍ଭରୁ ଶେଷପର୍ଯ୍ୟନ୍ତ ନାଟକକୁ ଦର୍ଶକମଣ୍ଡଳୀରେ ବସି ଉପଭୋଗ କରିଥିଲି ସବୁ କୋହ ଓ ଯନ୍ତ୍ରଣାକୁ ଛାତିରେ ଚାପିରଖି । ଫ୍ରେଣ୍ଡ୍‌ସ ଟେଲେଣ୍ଟର ପ୍ରଥମ ମୃତ୍ୟୁ ଘଟିଥିଲା ସମୟ ନାଟକର  ବିଫଳତାରେ, ଦ୍ୱିତୀୟ ମୃତ୍ୟୁ ଘଟିଲା 'ଦ୍ୱିତୀୟ ମୃତ୍ୟୁ' ନାଟକର ଶେଷ ସଂଳାପ ପରେ, କାରଣ ତାପରେ ଏହି ବେନରରେ ଆଉ କୌଣସି ସଂଗୀତ କାର୍ଯ୍ୟକ୍ରମ ହୋଇନାହିଁ କି ନାଟକ ପ୍ରଦର୍ଶିତ ହୋଇନାହିଁ ।

ସେହି ବର୍ଷ ସମଲେଶ୍ୱରୀ ଯୁବକ ସଂଘ ତରଫରୁ ନୂଆଁଖାଇ ଭେଟ୍ କାର୍ଯ୍ୟକ୍ରମପାଇଁ ବାରୁଦା ଏକ ପ୍ରାରମ୍ଭିକ ସଂଗୀତ ପରିବେଷଣର ଦାୟିତ୍ୱ ଦେଲେ, ଯାହାକୁ ମୁଁ ସାଦରେ ଗ୍ରହଣ କଲି । ବାରୁଦାଙ୍କ ସହ ମୁରଲୀ ମେହେର, ମ୍ୟୁନିସିପାଲିଟି ବାଳିକା ବିଦ୍ୟାଳୟର ଛାତ୍ରୀମାନେ ସମବେତ କଣ୍ଠରେ ମୋ ରଚିତ ଓ ସ୍ୱର ସଂଯୋଜିତ

ଗୀତଟି ଗାଇଥିଲେ, ଯାହା ଦର୍ଶକଙ୍କ ସହ ଆମନ୍ତ୍ରିତ ଅତିଥିମାନଙ୍କୁ ଖୁବ୍ ଭଲ ଲାଗିଥିଲା । ଗୀତଟି ଥିଲା -

ନୂଆଁ ଖାଏମା ନୂଆଁ ପିନ୍ଧମା
ସମଲପୁରର୍ ଯାତ୍ରା ନୂଆଁଖାଇ ହୋ,
ସମଲପୁରର୍ ଯାତ୍ରା ନୂଆଁଖାଇ,
ନୂଆଁ ଖାଏମା, ନୂଆଁ ପିନ୍ଧମା
ପୂଜା କରି ସମଲାଇ ହୋ ।

'ଦ୍ୱିତୀୟ ମୃତ୍ୟୁର' ସମସ୍ତ ଯନ୍ତ୍ରଣାକୁ ଭୁଲିଯାଇ, ଏହା ଏକ ନାଟକର, ଏକ ଅନୁଷ୍ଠାନର ମୃତ୍ୟୁ ନଥିଲା, ଥିଲା ଏକ ନିର୍ଦ୍ଦିଷ୍ଟ କାଳର ବୋଲି ନିଜକୁ ସାନ୍ତ୍ୱନା ଦେଇ ପୁନଶ୍ଚ ପାହାଡ଼ ଶିଖର ଆଡ଼କୁ ନିରେଖ ଦେଖିଲି, କେହି ଜଣେ ମୋତେ ହାତଠାରି ଡାକୁଛି ।। କହୁଛି, ଆରେ ସେଠି ରହିଗଲୁ କଣ ପାଇଁ, ରହିଲେ ଚଳିବ ନାହିଁ, ନ ଅଟକ ନାଟକ ପରା, ଆଉ ଅଟକୁଛୁ କାହିଁ ପାଇଁ ?

ମୁଁ ଆଗେଇଗଲି, ଆଗେଇଗଲି, ଆଗେଇଗଲି ।



ଆଗେଇବା, ନିଶ୍ଚୟ ଆଗେଇବା, ସମସ୍ତଙ୍କୁ ସାଥିରେ ନେଇ ଆଗେଇବା, ନାଟକ ପରା ଯୌଥକଳା, ଦ୍ୱୈତକାବ୍ୟ, ସଂଘବଦ୍ଧ କଳାର ଅନୁପମ ସୃଷ୍ଟି, ଆପଣାକୁ ତୁଷ୍ଟ କରି ପରକୁ ବାଣ୍ଟେ ମନୋରଞ୍ଜନ, ଦୂରଦୃଷ୍ଟିରେ ସମାଜକୁ ଦିଏ ଦିଗଦର୍ଶନ ।। ଗୋଟେ ଯୋଡ଼େ ମଞ୍ଚରେ ବିଫଳ ହେବା ତ ସାମାନ୍ୟ କଥା, ସାର୍‌ମାନେ ପରା କହିଛନ୍ତି, ଅସଫଳତା ହିଁ ସଫଳତାର ସ୍ତମ୍ଭ, ଅନ୍ଧାର ପରେ ସିନା ଆଲୋକ ଆସେ, ଅନ୍ଧକାର ରାକ୍ଷସକୁ ପରାଜିତ କରିବାକୁ ହେଲେ ଆଲୋକଭଳି ଦେବତାଙ୍କ ଆବଶ୍ୟକତା ରହିଛି, ମୁଁ ବା ଅଟକିବି କାହିଁକି ?

ବାପା କହିଥିଲେ ବୋଲି ନୁହେଁ, କେବଳ ତିନୋଟି ନାଟକ ତିନିବର୍ଷର ପାଠ୍ୟକ୍ରମ ବେଳେ କରିବାର ସୁଯୋଗକୁ କାହିଁକି ବା ହାତଛଡ଼ା କରିବି । ତେଣୁ ଜ୍ୟୋତିବିହାରର ସ୍ନାତକୋତ୍ତର ପାଠସହ ସମ୍ବଲପୁର ଲାଲା ଲାଜପତ୍ ରାୟ ଆଇନ୍ ମହାବିଦ୍ୟାଳୟରେ ମଧ୍ୟ ସମାନ୍ତରାଳ ଭାବରେ ନାମ ଲେଖାଇ ପୁଣି ନାଟକର ମୁଖ୍ୟସ୍ରୋତକୁ ଆସିବାର ପ୍ରୟାସ କରିଥିଲି । ଆମ ସମୟରେ ସେଇ ସୁବିଧା ଥିଲା, ଜଣେ ଛାତ୍ର ଚାହିଁଲେ ଉଭୟ ପାଠ୍ୟକ୍ରମ ଏକା ସାଙ୍ଗରେ ପଢ଼ିପାରୁଥିଲେ । କାରଣ,

ଲ'କଲେଜ ଚାଲୁଥିଲା ସହରର ମଧ୍ୟସ୍ଥଳୀରେ ଥିବା ଟାଉନ୍ ହାଇସ୍କୁଲର ଖପରଛାଆଁ କୋଠରୀ ଗୁଡ଼ିକରେ, ପୂର୍ବେ ଏଠାରେ କୁଆଡ଼େ ସମ୍ବଲପୁରର ସଦର ଡାକ୍ତରଖାନା କାମ କରୁଥିଲା । ପଞ୍ଚସ୍ତରୀ-ଛସ୍ତରୀ ଶିକ୍ଷାବର୍ଷରେ ମୁଁ ସକାଳେ ଲ' କଲେଜ୍‌ର କ୍ଲାସ୍ ନିଏ, ପରେ ଜ୍ୟୋତିବିହାର ବସ୍‌ରେ ଯାଇ ଓଡ଼ିଆ ଏମ୍.ଏ. କ୍ଲାସରେ ଉପସ୍ଥିତ ରହେ । ସ୍ୱର୍ଗତ ଅଶ୍ୱିନୀ ପୂଜାରୀ ଲ' କଲେଜର ଅଧ୍ୟକ୍ଷ ଥିଲେ, ଯେ ସମ୍ବଲପୁରୀ ଭାଷାରେ ବୀର ସୁରେନ୍ଦ୍ର ସାଏ ନାଟକ ଲେଖିଥିଲେ, ଶାନ୍ତଶିଷ୍ଟ, ଅମାୟିକ ବ୍ୟକ୍ତିଥିଲେ । ତାଙ୍କ ପରେ ଡ. ଶ୍ରଦ୍ଧାକର ସୂପକାର ମଧ୍ୟ କିଛିକାଳ ଅଧ୍ୟକ୍ଷ ଦାୟିତ୍ୱରେ ରହିଥିଲେ । ସେ ମଧ୍ୟ ଜଣେ ବିଶିଷ୍ଟ ଲେଖକ, କଥାକାର, ଗଙ୍ଗାଧର ମେହେରଙ୍କ ଜୀବନୀକୁ ନେଇ ସମ୍ବଲପୁରୀ ଭାଷାରେ କସ୍ତୁରୀମୃଗ ନାମରେ ଏକ ନାଟକ ରଚନାକରିଥିଲେ, ଯାହା ଗଙ୍ଗାଧର ଜନ୍ମ ଶତବାର୍ଷିକୀ ସମୟରେ ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ମଞ୍ଚସ୍ଥ ହୋଇଥିଲା । ଏହି ନାଟକରେ ବରିଷ୍ଠ ଅଭିନେତା ତଥା କଲେଜର ସେ ସମୟର ଛାତ୍ର ରାଜେନ୍ଦ୍ର ପ୍ରସାଦ ପଣ୍ଡା ଗଙ୍ଗାଧର ମେହେର ଚରିତ୍ରରେ ଅଭିନୟ କରିଥିଲେ । ପରେ ଆକାଶବାଣୀ କଟକରୁ ଏହି ନାଟକଟି ଗୋପାଳ ଛୋଟରାୟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପ୍ରଯୋଜିତ ହୋଇ ପ୍ରସାରିତ ହୋଇଥିଲା । ସମ୍ଭବତଃ, ଏହା ରେଡ଼ିଓରେ ପ୍ରସାରିତ ପ୍ରଥମ ସମ୍ବଲପୁରୀ ନାଟକ । ବାସ୍ତବରେ ନାଟ୍ୟବିହ୍ୱଳତାର କଣ୍ଢ ମୋତେ ଲ'କଲେଜ୍‌ରେ ନାମ ଲେଖାଇବା ପାଇଁ ବାଧ କଲା । ପଙ୍କଜ ବାବୁ, ଗୋପାଳକୃଷ୍ଣ ରଥ, ଚଣ୍ଡୀ ପ୍ରସାଦ ମିଶ୍ର, ହରପ୍ରସାଦ ପଣ୍ଡା, ହର ପ୍ରସାଦ ନାୟକ, ଲକ୍ଷ୍ମୀ ନାରାୟଣ ମିଶ୍ର ପ୍ରମୁଖ ବିଶିଷ୍ଟ ଅଧ୍ୟାପକଗଣ ଆଇନ୍ ପାଠ୍ୟକ୍ରମର ବିଭିନ୍ନ କ୍ଲାସ୍ ନେଉଥିଲେ । ହର ପଣ୍ଡାଙ୍କୁ ଛାଡ଼ିଦେଲେ, ସମସ୍ତେ ଆଜି ସ୍ୱର୍ଗବାସୀ । ମୋର ମନେ ଅଛି, ଅଧ୍ୟାପକ ହରପସାଦ ନାୟକ ଯେଉଁ କୋଠରୀରେ କ୍ଲାସ୍ ନେଉଥିଲେ, ତାକୁ ଲାଗି ଅନ୍ୟ କୋଠରୀର କ୍ଲାସ ସମ୍ଭବହୋଇ ପାରୁନଥିଲା, କାରଣ ନାୟକସାର୍ ଖୁବ୍ ବଡ଼ପାଟିରେ ମଗ୍ନହୋଇ ପାଠ ପଢ଼ାଉଥିଲେ । ପ୍ରଥମ ଦୁଇବର୍ଷ ଟାଉନ୍ ହାଇସ୍କୁଲରେ ଏହି ମହାବିଦ୍ୟାଳୟରେ କ୍ଲାସ୍ ହେବାପରେ ମୋର ଶେଷ ବର୍ଷ ବେଳକୁ କଲେଜଟି ସେନ୍‌ପାର୍କ ନିକଟସ୍ଥ ନୂତନ ନିଜସ୍ୱ କୋଠାକୁ ଉଠିଯାଇଥିଲା । ଆଉ ଏକ କଥା, ପ୍ରି ଲ' ଓ ଇଣ୍ଟର୍ ଲ' ପରେ ବିଶ୍ୱବିଦ୍ୟାଳୟ ଦୁଇ ପାଠ୍ୟକ୍ରମ ଏକସଙ୍ଗରେ ପଢ଼ିପାରିବା ସୁବିଧାକୁ ଉଠେଇ ଦେଇଥିଲେ । ତେଣୁ ଉପାଧ୍ୟୁତ୍ତର ଦ୍ୱିତୀୟ ବର୍ଷ ବେଳକୁ ଆଇନ୍ ପାଠରେ କ୍ରମାନ୍ୱୟତା ରହିଲା ନାହିଁ । ଏମ୍.ଏ. ପରେ ଯାଇ ଇଣ୍ଟର ଲ' ଓ ଫାଇଲାନ୍ ଲ' ପଢ଼ିବା ପାଇଁ ପଡ଼ିଲା ।

ଆଇନ୍ ପ୍ରଥମ ବର୍ଷ ବେଳେ ନାଟ୍ୟସଂସଦର ଉପସଭାପତି ଥିଲେ ପୂଜ୍ୟ ଗୋପାଳକୃଷ୍ଣ ରଥ । ଜଣେ ବିଶିଷ୍ଟ କବି ହେଲେ ସୁଦ୍ଧା ନାଟକପ୍ରତି ତାଙ୍କ ବହୁତ ଦୁର୍ବଳତା ଥିଲା । ପଞ୍ଚସ୍ତରୀ-ଛସ୍ତରୀ ଶିକ୍ଷା ବର୍ଷରେ ଟାଉନ୍ ହାଇସ୍କୁଲର ମଣ୍ଡପରେ ମଞ୍ଚସ୍ଥ ହୋଇଥିଲା ନାଟକ 'ରାତ୍ରିର ରାଧା' । ଏ ନାଟକ କରିବା ପଛର କାରଣ ଥିଲା ଏଥିରେ ନାରୀ ଚରିତ୍ର ନଥିଲା । ସେ ସମୟରେ ଝିଅମାନେ ପ୍ରାୟତଃ ଲ' କଲେଜ୍‌ରେ ନାମ ଲେଖାଉ ନଥିଲେ, ପୁଣି ପେଶାଦାର ଅଭିନେତ୍ରୀ ନେଇ ଆଇନ୍ ମହାବିଦ୍ୟାଳୟରେ ନାଟକ କରିବା ଅସମ୍ଭବ ଥିଲା । ଆମ ସମୟରେ ଗାୟତ୍ରୀ ନନ୍ଦ ଥିଲେ ଏକମାତ୍ର ଆଇନ୍ ଛାତ୍ରୀ । ମୋର ସୌଭାଗ୍ୟ, ସେଇ ନାଟକରେ ଏକ ଚରିତ୍ରରେ ଅଭିନୟ କରିବା ସୁଯୋଗ ମିଳିଲା । ବିଶିଷ୍ଟ ମଞ୍ଚ ଶିଳ୍ପୀ ବରଗଡ଼ର ବିଭୁତି ଭୂଷଣ ପାଢ଼ୀ ସେତେବେଳେ ଥିଲେ ଶେଷବର୍ଷର ଛାତ୍ର । ପୂର୍ବ ଦୁଇ ବର୍ଷର ନାଟକରେ ଅଭିନୟକରି ଲଗାତାର ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହୋଇଥିଲେ । ତାଙ୍କ ସହ ଅଭିନୟ କରିବା ସୁଯୋଗ ପାଇଁ ମୁଁ ନିଜକୁ ଧନ୍ୟ ମଣୁଥିଲି । ତାଙ୍କ ସହ କୃଷ୍ଣ ଆଚାର୍ଯ୍ୟ, ପୂର୍ଣ୍ଣଚନ୍ଦ୍ର ଦାସ, ସୁଶୀଲ ମହାପାତ୍ର ପ୍ରମୁଖ ଏହି ନାଟକରେ ଅଭିନୟ କରିଥିଲେ । ସୁଶୀଳ ମହାପାତ୍ର ଓ ମୁଁ ଦୁଇଜଣ ମଇତ୍ରେ ସାଜିଥିଲୁ ସେଇ ନାଟକରେ । ଆମ ଦୁଇଜଣ ଏକ ସଙ୍ଗରେ ମଞ୍ଚପ୍ରବେଶ କରୁଥିଲୁ, ପ୍ରସ୍ଥାନ ମଧ୍ୟ କରୁଥିଲୁ । ସେଇ ନାଟକ ପରଠାରୁ ଆଜି ପର୍ଯ୍ୟନ୍ତ ଆମେ ଭେଟପଡିଲେ ପରସ୍ପରକୁ 'ମଇତ୍ରେ' ବୋଲି ସମ୍ବୋଧିତ କରୁଛୁଁ । ନାଟକ ସଫଳତାର ସହ ମଞ୍ଚସ୍ଥ ହେଲା, ବିଭୂତି ପାଢ଼ୀ ପୁଣି ଶ୍ରେଷ୍ଠଅଭିନେତା ଭାବରେ ପୁରସ୍କୃତ ହେଲେ ।

ଛସ୍ତରୀ ସାଲ୍‌ଟି ଥିଲା ସମ୍ବଲପୁର ନାଟ୍ୟ ପରିବେଶ ପାଇଁ ଗୁରୁତ୍ୱପୂର୍ଣ୍ଣ ବର୍ଷ । ବିଶେଷ କରି ଦ୍ୱିତୀୟ ମୃତ୍ୟୁ ନାଟକ ପରେ ଅଭିନେତା ଦିଲୀପ ପଣ୍ଡାଙ୍କ ନେତୃତ୍ୱରେ ସ୍ଥିତି ନାଟ୍ୟ ସଂସ୍ଥା ନାମରେ ଏକ ନାଟକ ସଂଗଠନ ଜନ୍ମ ନେଲା, ଯେଉଁ ସଂସ୍ଥା ପାଇଁ ପ୍ରମୋଦ ତ୍ରିପାଠୀ ଲେଖିଲେ ଏକ ଅଭିନବ ନାଟକ, ରାଜକୀୟ, ଯାହା ସେହିବର୍ଷ ଶେଷଭାଗରେ ରାଉରକେଲା କଲ୍‌ଚରାଲ୍ ଏକାଡେମୀ ଆୟୋଜିତ ଲୋକନାଟକ ମହୋତ୍ସବରେ ସଫଳତାର ସହ ଅଭିନୀତ ହୋଇ ସଂଖ୍ୟାଧିକ ପୁରସ୍କାରରେ ମଣ୍ଡିତ ହୋଇଥିଲା । ପ୍ରମୋଦଙ୍କ ନାଟ୍ୟଯାତ୍ରାରେ ଏହି ସଫଳତା ତାଙ୍କୁ ରାଜ୍ୟସ୍ତରୀୟ ସ୍ୱୀକୃତି ଦେଇପାରିଥିଲା । ଏ ନାଟକର ନିର୍ଦ୍ଦେଶକ ଥିଲେ ନିଜେ ଦିଲ୍ଲୀପ ପଣ୍ଡା, ଯେ ନିଜେ ମୁଖ୍ୟ ଭୂମିକାରେ ଅଭିନୟ କରି ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହୋଇଥିଲେ । ନାଟକଟିରେ ଲୋକନାଟକୀୟ ସ୍ୱର ଥିଲେ ବି ଆଙ୍ଗିକ ଦୃଷ୍ଟିରୁ ପରୀକ୍ଷାମୂଳକ ଥିଲା ।

ଏକାଙ୍କିକା ପ୍ରତିଯୋଗିତା ଆୟୋଜନରେ ସମ୍ବଲପୁରର ନାଟ୍ୟକଳା ପରିଷଦ ଏବଂ ହୀରାକୁଦର ଇଣ୍ଡଲ୍ କ୍ଲବ ବ୍ରତୀ ଥିବା ବେଳେ ଦୀର୍ଘ ତଥା ପୂର୍ଣ୍ଣାଙ୍ଗ ନାଟକ ପ୍ରତିଯୋଗିତା ଆୟୋଜନ କରି ରାଉରକେଲା କଲ୍‌ଚରାଲ୍ ଏକାଡେମୀ ସମଗ୍ର ଓଡ଼ିଶାର ନାଟ୍ୟ ମହଲକୁ ଚଳଚଞ୍ଚଳ କରିପକାଇଲା । ଏଥି ସହ ନାଟକକୁ ଲୋକନାଟକ ବୋଲି ଆଖ୍ୟାୟିତ କରି ସମଗ୍ର ଓଡ଼ିଶାରେ ନାଟ୍ୟକ୍ଷେତ୍ରରେ ନୂତନ ପିଢ଼ୀର ନାଟ୍ୟକାର ସୃଷ୍ଟିକରିବାରେ ସହାୟକ ହୋଇଥିଲା ।

ଏପଟେ ଧନୁପାଲିର ଚେତନା ସାଂସ୍କୃତିକ ଅନୁଷ୍ଠାନ ମଧ୍ୟ ନାଟକ କରିବାରେ ଅବହେଳା ପ୍ରଦର୍ଶନ ନକରି ଅଣ୍ଟାଭିଡ଼ି ପ୍ରସ୍ତୁତ ହେଲା ଉମେଶଚନ୍ଦ୍ର ରଥଙ୍କ ନିର୍ଦ୍ଦେଶନାରେ ପ୍ରମୋଦ ତ୍ରିପାଠୀଙ୍କ ରଚିତ ନାଟକ 'ଝଡ଼ ଓ ହାରିଯାଇଥିବା କେତୋଟି ବିରହୀ ଯାତ୍ରୀ' । ଧନୁପାଲି ଓ ଗୋବିନ୍ଦଟୋଲାର କଳାକାରମାନଙ୍କ ମିଳିତ ଉଦ୍ୟମରେ ପ୍ରତିଷ୍ଠିତ ଚେତନାର ଏକ ବଡ଼ନାଟକ ଭାବରେ ଏହା ଧନୁପାଲିର ଗୋପାଳଜୀ ମନ୍ଦିର ନିକଟସ୍ଥ ଯଜ୍ଞସ୍ଥଳରେ ମଞ୍ଚସ୍ଥ ହେଲା । ନାଁ ଥିଲା ଝଡ଼, ପ୍ରଚଣ୍ଡ ଝଡ଼ରୁ ବା ବର୍ତ୍ତିବ କେମିତି! ମଞ୍ଚଶିଳ୍ପୀ ପଦ୍ମନାଥ ମିଶ୍ରଙ୍କ ସୁନ୍ଦର ମଞ୍ଚସଜ୍ଜା, ଉମେଶବାବୁଙ୍କ ବଳିଷ୍ଠ ନିର୍ଦ୍ଦେଶନା, କୃଷ୍ଣଚନ୍ଦ୍ର, ଦିଲୀପ ପଣ୍ଡା (ଖ), ପଞ୍ଚାନନ ମିଶ୍ର ଆଦି ଅଭିନେତାମାନେ ଏହି ନାଟକରେ ଅଭିନୟ କରିଥିଲେ । ମୁଁ ପ୍ରଚ୍ଛଦ ସଂଗୀତ ଦାୟିତ୍ୱରେ ଥିଲି । ମଞ୍ଚାୟନ ରାତି ଝଡ଼ରେ ମଞ୍ଚ ଧୋଇଯାଇ ନାଟକ ବନ୍ଦ ହେଲା । ପରରାତିରେ ନାଟକଟି ମଞ୍ଚସ୍ଥ ହେଲା । ଏହି ନାଟକ ଦୁଇଟି ଘଟଣା ପାଇଁ ମନେ ରହିଛି । ରିହାର୍ସାଲ ସରୁସରୁ ପ୍ରାୟ ରାତି ଦଶଟା ହୋଇଯାଏ । ପଞ୍ଚାନନ ମିଶ୍ରଙ୍କୁ ଫାଟକ ଛାଡ଼ି ଯିବା ଓ ସାଇକଲ୍ ସୁଦ୍ଧା ଚଳଉ ନଥିବା ନିର୍ଦ୍ଦେଶକ ଉମେଶ ବାବୁଙ୍କୁ ଗୋବିନ୍ଦଟୋଲାକୁ ତାଙ୍କ ଘର ପର୍ଯ୍ୟନ୍ତ ଛାଡ଼ିଆସିବା । ଷ୍ଟେଜ୍ ରିହାର୍ସାଲ ସରୁସରୁ ରାତି ବାରଟା ପାର୍ । ସମସ୍ତେ ଘରକୁ ଯିବା ପାଇଁ ବ୍ୟଗ୍ର । ଏତେ ରାତି ଚାଲିଚାଲି ତାଙ୍କ ସହ ଗୋବିନ୍ଦଟୋଲା କିଏ ଯିବ!! ଖାଇବା ପାଇଁ ବିଶେଷ କିଛି ଆୟୋଜନ ହୋଇ ନଥିଲା । ଏକ ବଡ଼ କଞ୍ଚାସୁଆଦୀ ଆମ୍ବଟିଏ ମୁଁ ଛକ ପାଖରେ ଉମେଶବାବୁଙ୍କ ହାତରେ ଧରାଇ କହିଲି, ଆଜ୍ଞା, ଏଇ ଆମ୍ବ ଖଣ୍ଡକ ଅଛି, କଞ୍ଚାସୁଆଦୀ, ଏତକ ଖାଇ ରାତିଟା କଟାନ୍ତୁ । କାଲି ନିଶ୍ଚୟ ଖାଇବା ବ୍ୟବସ୍ଥା କରିବୁ । ଉମେଶ ବାବୁ ମୋ ମୁହଁ ଓ ଆମ୍ବ ଆଡ଼କୁ ବଡ଼ ନିରୀହ ଭାବରେ ଚାହାଣୀଟିଏ ମାରି କହିଲେ, ହଉ, ଚାଲ୍‌ବା । ଆମ୍ବଟି ସସମ୍ମାନେ ମୋଠୁ ଏକାଏକା ପଦବ୍ରଜରେ ତାଙ୍କ ଘର ଆଡ଼କୁ ଚାଲିବା ଆରମ୍ଭକଲେ । ଏଭଳି ଅମାୟିକ ନାଟ୍ୟପ୍ରତିଭା ମୁଁ ମୋ ଜୀବନରେ କ୍ୱଚିତ୍ ଦେଖିଛି ।

ଅନ୍ୟ ଘଟଣାଟି ହେଲା, ଏ ନାଟକ ମଞ୍ଚସ୍ଥ ହେବାବେଳେ ବିଶିଷ୍ଟ ନାଟ୍ୟକାର କାର୍ତ୍ତିକଚନ୍ଦ୍ର ରଥ ରିକ୍ସାରେ ବସି କେଉଁଠିକୁ ଯାଉଥିଲେ । ସେଇଠି ରାସ୍ତା କଡ଼ରେ ରିକ୍ସାରେ



ବସି ନାଟକ ପ୍ରାୟ ଦେଖି ପକାଇଥିଲେ, ଶେଷରେ ଆମ ସହ ସାକ୍ଷାତ କରି ନାଟକକୁ ପ୍ରଶଂସା କରି କହିଲେ, ଏଭଳି ମଞ୍ଚସଜ୍ଜା ମୁଁ କଟକରେ ବି ଦେଖି ନଥିଲି ।

ଏହି ବର୍ଷ ଜ୍ୟୋତିବିହାରର ନାଟ୍ୟସଂସଦ ତରଫରୁ ଅନ୍ତଃମହାବିଦ୍ୟାଳୟସ୍ତରୀୟ ଏକାଙ୍କିକା ପ୍ରତିଯୋଗିତା କନ୍‌ଭୋକେସନ୍ ମଞ୍ଚରେ ଆୟୋଜିତ ହୋଇଥିଲା । ଆମ ପିଜି ବିଭାଗ ତରଫରୁ ଆମେ ପ୍ରଫୁଲ୍ଲ ରଥଙ୍କ ରଚିତ ନାଟକ 'ନାଟ୍ୟକାରଙ୍କ ମୃତ୍ୟୁ ପାଇଁ ଦାୟୀ କିଏ' ମଞ୍ଚସ୍ଥ କରିଥିଲୁ । ପ୍ରଫୁଲ୍ ରଥଙ୍କ ବଡ଼ପୁଅ ପିଲୁ ଆମ ସଙ୍ଗରେ ପଢୁଥିଲେ, ନାଟକଟି ତାଙ୍କ ନିର୍ଦ୍ଦେଶନାରେ ସଫଳତାର ସହ ମଞ୍ଚସ୍ଥ ହେଲା । ମୁଁ ଏଥିରେ ବସ୍‌କଣ୍ଡକ୍ଟର ଭୂମିକାରେ ଅଭିନୟ କରିଥିଲି ।

ଏକା ସାଙ୍ଗରେ ସ୍ନାତକୋତ୍ତର ଓଡ଼ିଆ ପାଠ, ଆଇନ୍ ପାଠ ସହ ନାଟକ କରିବାରେ ମସ୍‌ଗୁଲ୍ ରହି ଦୁନିଆ ଭୁଲିଯାଇଥିଲି ମୁଁ, କେବଳ ତାଙ୍କୁ ଛାଡ଼ି । ସେ ଥିଲେ ମେହେର କଲେଜର ପିଜି ଛାତ୍ରୀ, ମୁଁ ଥିଲି ମେହେରଙ୍କ ଜ୍ୟୋତିର୍ମୟୀ, ଭାବଭୂମି ଜ୍ୟୋତିବିହାରର ଛାତ୍ର । ଭାବଭାବରେ ସମ୍ପର୍କର ସେତୁ ନିର୍ମିତ ହୋଇଥିଲା । ଜ୍ୟୋତିବିହାରର ରୋମାଣ୍ଟିକ ପରିବେଶ ମୋତେ ତାଙ୍କ ନିକଟରୁ କେବେ ବିଚ୍ୟୁତ କରିପାରିନଥିଲା, ବରଂ ସାମୟିକ ଦୂରତା ଆମକୁ ଆହୁରି ନିକଟତର କରିବାରେ ସହାୟକ ହେଲା, ଇତିହାସରେ ଏମ.ଏ. ପରେ ସେ ବି.ଇଡି. କଲେଜର ଛାତ୍ରୀ ହେଲେ, ଯେଭଳି ମୁଁ ଓଡିଆ ପିଜି ପରେ ଆଇନ୍‌ର ଛାତ୍ର ହେଲି । ଗତି ଥିଲା ସମାନ, ପଥ ବି ଥିଲା ମୁକ୍ତ । ବେଳେବେଳେ ସାକ୍ଷାତ ହେଲେ ଘରୋଇ କଥାରେ ନିଜକୁ ହଜେଇଦେଉଥିଲୁ ଆମେ ଦୁଇଜଣ । ପୂର୍ବର ଆଖିଆଖିର ଭାଷା ବାଚିକ ପାଲଟିଯାଇ ହୃଦୟର ଭାଷାରେ ରୂପାନ୍ତରିତ ହୋଇଯାଉଥିଲା । ପରିପକ୍ୱ ପ୍ରେମର ଅକୁହା ଭାଷା, ଅବୁଝା ମନ ଆମ ଦୁହିଁଙ୍କୁ ଆଉ ଉଦ୍‌ବେଳିତ କଲା ନାହିଁ, ବରଂ ସାର୍ଥକ ପ୍ରେମର ଶେଷଦୃଶ୍ୟକୁ ଅପେକ୍ଷା କରିବାର ସୁଯୋଗ ସୃଷ୍ଟି କରିଥିଲା ।

ନାଟକ ଓ ଜୀବନ ନାଟକର ଗତିଥିଲା ସମାନ୍ତରାଳ, ଭଲ ପାଇବାର ଚୁପ୍‌ଚାପ୍ ମୁହୂର୍ତ୍ତ ସବୁ ମିଶି ଗଣତିରେ ଆଠ ବର୍ଷ ହୋଇଗଲେ, ଏକ ଯୁଗକୁ ଛୁଇଁବ ଛୁଇଁବ ହେଉଥିଲେ କାଳଖଣ୍ଡମାନ ।। ମୁକ୍ତାକାଶରେ ଉଡିବୁଲୁଥିବା ଦୁଇ ଚଢ଼େଇ କାଠିକୁଟା ଗୋଟାଉଥିଲେ କୋଟରଟିଏ ତିଆରିବା ପାଇଁ । ଓଃ, ସୁନୀଳ ଆକାଶର ସେଇ ଉଡ଼ାଣକୁ ବଖାଣିବି କେମିତି ।।।



**ଛି**ସ୍ତରୀ, ଉପାଧ୍ୟୁତ୍ତର ପ୍ରଥମବର୍ଷର ବାର୍ଷିକଉତ୍ସବର ବେଳ ଆସିଗଲା, ଶେଷବର୍ଷର ଛାତ୍ର ଅଶୋକ ନାଏକ ଥାନ୍ତି ସେମିନାର୍ ସମ୍ପାଦକ ଏବଂ ଆମ ଭିତରୁ ରାମଚନ୍ଦ୍ର ମିଶ୍ରଙ୍କ ନେତୃତ୍ୱରେ କାର୍ଯ୍ୟକ୍ରମ ଆଗେଇ ଚାଲିଲା । ମୋର ଏକା ଜିଦ୍, ଉତ୍ସବ ମୁଖ୍ୟ କନ୍-ଭୋକେସନ୍ ମଣ୍ଡପରେ ହିଁ ହେବ । ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ର ରାଜି ହେଲେ ନାହିଁ, ପୁଣି ପାଟିତୁଣ୍ଡ ହେଲା, ସେମିନାର୍ ଉପଦେଷ୍ଟା ବାଳକୃଷ୍ଣ ଶତପଥୀ ସାର୍ ପ୍ରଥମେ ଆମକୁ ବୁଝାଇବାର ଚେଷ୍ଟାକଲେ । ଆମ ଉତ୍ସାହ, ଆଗ୍ରହରେ ସେ ବି ଆମକୁ ବୁଝାଇବାରେ ବିଫଳ ହେଲେ, ପରେ ବିଭାଗୀୟ ମୁଖ୍ୟଙ୍କ ସହ ଆଲୋଚନା କରି ମଞ୍ଚରେ କାର୍ଯ୍ୟକ୍ରମ କରିବାପାଇଁ ସମ୍ମତି ପ୍ରଦାନ କଲେ । ସଭା ହେବ, ସଭା ପରେ ସାଂସ୍କୃତିକ କାର୍ଯ୍ୟକ୍ରମରେ ବିଭାଗ ନିଜ ପ୍ରତିଭାକୁ ଉପଯୋଗ କରି ସଂଗୀତ ପରିବେଷଣ କରାଯିବ । ଏ ସମସ୍ତ କାର୍ଯ୍ୟକ୍ରମର ଗୁରୁ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହେଲା ।

ସମ୍ପାଦକ ଅଶୋକ ନାଏକ, ଧିରେ ଧିରେ ମୋ ଦାଦା ପାଲଟିଗଲେ, ଆଉ ରାମଚନ୍ଦ୍ର ମିଶ୍ର, ସମ୍ବୋଧନରେ ମୁଁ ତାଙ୍କ କାକା ପାଲଟିଗଲି, କମ୍ ସମୟର ଅବଧି ଭିତରେ ସମ୍ପର୍କର ଆତ୍ମୀୟତା ଗଭୀରରୁ ଗଭୀରତର ହୋଇଗଲା । ଅଧା କ୍ଲାସ ଉତ୍ସବ ଆୟୋଜନ ପାଇଁ ବନ୍ଦ କରାଯାଇ ସେହି ସମୟରେ ରିହାର୍ସଲ୍ ହେଲା । ବନ୍ଧୁ କୈଳାସଙ୍କୁ ଅନୁରୋଧ କଲି ବାଦ୍ୟଯନ୍ତ୍ରରେ ସହାୟତା କରିବା ପାଇଁ । ସେ ବି ତାଙ୍କ ରାଜନୀତି ବିଜ୍ଞାନ ବିଭାଗର ବାର୍ଷିକ ଉତ୍ସବ ପାଇଁ ଲାଗିପଡିଲେ । ଯେହେତୁ ଓଡ଼ିଆ ବିଭାଗ ଉତ୍ସବ ବିଭାଗୀୟ ପ୍ରକୋଷ୍ଠରେ ନ ହୋଇ ମୁଖ୍ୟ ମୁକ୍ତ ମଞ୍ଚରେ ହେଉଛି, ସେ ବି ତାଙ୍କ ବିଭାଗୀୟ ମୁଖ୍ୟ ଆଦିତ୍ୟ ପ୍ରସାଦ ପାଢ଼ୀଙ୍କ ସହ ଆଲୋଚନା କରି ମନୋରଞ୍ଜନ କାର୍ଯ୍ୟକ୍ରମ ମଞ୍ଚରେ କରିବାର ଯୋଜନା କଲେ । ପ୍ରଥମ ରାତି ଓଡ଼ିଆ ବିଭାଗର ଏବଂ ତା ପରରାତିରେ ରାଜନୀତି ବିଜ୍ଞାନ ବିଭାଗର କାର୍ଯ୍ୟକ୍ରମ ପାଇଁ ଯୋରଦାର୍ ପ୍ରସ୍ତୁତି ଆରମ୍ଭ ହୋଇଗଲା । ଏଭଳି ଯୋଜନା ପଛରେ ଅନ୍ୟ ଏକ କାରଣ ମଧ୍ୟ ନିହିତ ଥିଲା । କୈଳାସ ଓ ମୁଁ ଚାହୁଁଥିଲୁ, ରାୟଗଡ଼ରେ ଏକର୍ଡିଏନ୍ ବାଦକ ପ୍ରୀତମ୍‌କୁ ଡକାଇବା ଉଭୟ କାର୍ଯ୍ୟକ୍ରମ ପାଇଁ, ଯେ ଥରେ ଆସି ସେ ଉଭୟ କାର୍ଯ୍ୟକ୍ରମରେ ବଜାଇ ପରଦିନ ଫେରିଯିବ । ବେଶି ଖର୍ଚ୍ଚ ବି ହେବ ନାହିଁ । ଶେଷରେ ସେମିତି ହିଁ ହେଲା ।

ଆମ ଓଡ଼ିଆ ବିଭାଗର ରିହାର୍ସାଲ ଚାଲିଲା । ପ୍ରମୋଦ ଷଡଙ୍ଗୀ, ଅଶୋକ ବହିଦାର, ହିମାଂଶୁବାଳା, ସବିତା ସିଂ, ରୀତା ଦାସ, ଆଶିଷବାଳା ପ୍ରମୁଖ ଆଗେଇ ଆସିଲେ ସଂଗୀତରେ ଭାଗନେବା ପାଇଁ । ପ୍ରାୟ ଆଠଦଶଟି ଗୀତର ରିହାର୍ସାଲ ଚାଲିଲା ।

ମୁଁ ମଧ୍ୟ ସମବେତ କଣ୍ଠର ଗୀତ ସହ ଏକ ହିନ୍ଦୀ ଚଳଚ୍ଚିତ୍ର ସଂଗୀତର ରିହାର୍ସାଲ କଲି । କାର୍ଯ୍ୟକ୍ରମ ପାଇଁ ସ୍ୱତନ୍ତ୍ର ଗୀତ ଲେଖିଲି;

ଆମେ ତୁମେ ତୁମେ ଆମେ ଶାନ୍ତି ପଥର ଯାତ୍ରୀ,

ଏ ଗୀତ ଗାଏରେ କୁମାରୀ, ଏଗୀତ ଗାଏରେ କୁମାର,

ଜ୍ୟୋତିବିହାର... ଜ୍ୟୋତିବିହାର... ଜ୍ୟୋତିବିହାର.... ।

ତିନି ଦିନ କାଳ ବାରମ୍ବାର ରିହାର୍ସଲ ହେଲା । ଉତ୍ସବ ଯେଉଁ ରାତିରେ ହେବାର ଥାଏ, ସେହଦିନ ମଧ୍ୟ ପ୍ରଚୁର ଅଭ୍ୟାସ କରାଗଲା । କୈଳାସ, ପ୍ରୀତମ୍ ଆଦି କଳାକାରମାନେ ବାଦ୍ୟଯନ୍ତ୍ରରେ ସହଯୋଗ କଲେ । ମୋର ଶହେ ପ୍ରତିଶତ ଆଶା ଥିଲା, ସଂଗୀତକାର୍ଯ୍ୟକ୍ରମ ନିଶ୍ଚୟ ଭଲହେବ । ମୋସହ ବାକିମାନେ ମଧ୍ୟ ସେମିତି ଆଶା କରିଥିଲେ । ଉତ୍ସବ ସନ୍ଧ୍ୟାରେ ମୁଁ ଅନୁଭବ କଲି ମୋ କଣ୍ଠ ଧିରେ ଧିରେ ବସିଯାଉଛି । ଅତ୍ୟଧିକ ରିହାର୍ସାଲ ପାଇଁ ମୋ କଣ୍ଠ ଆଉ ଫିଟିଲା ନାହିଁ । କୈଳାସ, ରାମ, ପ୍ରମୋଦ ଷଡଙ୍ଗୀଙ୍କୁ ଏ ବିଷୟ ଜଣାଇଲି । ସେମାନେ ମୋତେ କାମଚଳେଇ ନେବା ପାଇଁ ଅନୁରୋଧ କଲେ । ରାତି ହେଲା, ସଭା ଓ ପୁରସ୍କାର ବିତରଣୀ ମଧ୍ୟ ସରିଗଲା । ସଂଗୀତ କାର୍ଯ୍ୟକ୍ରମ ପାଇଁ ମଞ୍ଚକୁ ସଜଡ଼ାଗଲା । ପରଦା ଅପସାରଣ ପରେ ଗୀତସବୁ ଗୋଟିଏ ପରେ ଗୋଟିଏ ଗାନ କରାହେଲା । ମୁଖ୍ୟ କଣ୍ଠସ୍ୱର ମୋର ଥିବାରୁ ଦୁର୍ବଳ କଣ୍ଠ ପାଇଁ ଗୀତଗୁଡ଼ିକ ଉପଯୁକ୍ତ ଭାବରେ ପରିବେଷିତ ହୋଇପାରିଲା ନାହିଁ । ଜ୍ୟୋତିବିହାର ଶୀର୍ଷକ ସଂଗୀତଟି ଉଚ୍ଚ ସ୍ୱରରେ ଗାଇବାର ଥିଲା, ପାଶ୍ଚାତ୍ୟ ସଂଗୀତ ଅନୁସରଣରେ ସଂଯୋଜିତ ହୋଇଥିଲା । ସେ ଗୀତଟି ମଧ୍ୟ ବଡ଼ କଷ୍ଟରେ ଗାନ କରାଗଲା । ମୋର ମୁଖ୍ୟକଣ୍ଠ ଯେତେବେଳେ ଫିଟିଲା ନାହିଁ ବାକିମାନେ ମଧ୍ୟ ଧିମେଇଗଲେ । ତେଣୁ ସାମଗ୍ରିକ ଭାବରେ ଗୀତଗୁଡ଼ିକ ପରିବେଷଣରେ ଫେଲ୍ ମାରିଗଲା ବୋଲି କୁହାଯିବ । ଏମିତି ଫେଲ୍‌ମାଇଲା ଯେ, ଶେଷବର୍ଷର ପାଠପଢ଼ା ପରେ ଅନୁଷ୍ଠିତ ବିଦାୟ ଆସରରେ ମୋ ଅଟୋ ଡାଏରୀରେ ରୀତା, ସବିତା ଆଦି ସାଙ୍ଗମାନେ ଲେଖିଥିଲେ, ଗୀତ କାର୍ଯ୍ୟକ୍ରମର ବିଫଳତା ନିଶ୍ଚୟ ମନେ ରହିବ ।।

ମୁଁ ବସ୍‌ରେ ଯିବାଆସିବା କରୁଥିବାରୁ ଜ୍ୟୋତିବିହାରର ନାଟ୍ୟସଂସଦର କୌଣସି ନାଟକରେ ଅଂଶଗ୍ରହଣ କରିପାରି ନଥିଲି । ଶେଷ ବର୍ଷରେ କଂସାକବାଟ ନାଟକଟି ମାନଭଞ୍ଜନ ହୋତାଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହୋଇଥିଲା । ସତସ୍ତରୀ ସାଲ୍‌ର ବାର୍ଷିକ

ଉତ୍ସବଟ ଆହୁରି ଦୟନୀୟ ଅବସ୍ଥାରେ ଶେଷ ହୋଇଥିଲା । ଏ ବର୍ଷ ନାଟକଟିଏ କରିବାର ଯୋଜନା ହେଲା, ତା ପୁଣି ମୁଖ୍ୟ ମଞ୍ଚରେ । ପ୍ରଥମ ବର୍ଷର ଛାତ୍ର ବନ୍ଧୁ ପ୍ରଦୀପକୁମାର ପଣ୍ଡାଙ୍କୁ ମୁଖ୍ୟ ଚରିତ୍ର ପୋଷ୍ଟ ମାଷ୍ଟର ଭୂମିକା ଦିଆଗଲା । ନାଟକଟିର ସମ୍ପୂର୍ଣ୍ଣ ଦାୟିତ୍ୱ ମୋର ଥିଲା । ଭଲ ଭାବରେ ରିହାର୍ସାଲ ବି ହେଲା । ନାଟକଟି ହାସ୍ୟରସାତ୍ମକ ଥିଲା । ପ୍ରଦୀପ ବି ଭଲ ଅଭିନୟ କରୁଥିଲେ । ଭାଗ୍ୟ ଖରାପ ଥିଲା ଆମର, ସଭା ଶେଷ ହେବା ପରେ ବିଦ୍ୟୁତ୍ ଚାଲିଗଲା ଯେ ଆଉ ବିଲ୍‌କୁଲ୍ ଆସିଲା ନାହିଁ । ସେମିତି ସବୁ କଳାକାରମାନେ ମେକ୍‌ଅପ୍ ନେବା ଚେହେରା ନେଇ କିଏ ହଷ୍ଟେଲ୍, ଆଉ କିଏ ଘରକୁ ମନମାରି ଫେରିଗଲେ । ଭଲ ଅଭିନେତା ଜଣେ ମଞ୍ଚପ୍ରବେଶ କରୁକରୁ ଲେଉଟିଗଲେ ଯେ ଆଉ ସେମିତି ନାଟକର ଯୋଗ ଜୁଟିଲା ନାହିଁ । ସେ ବର୍ଷ ପ୍ରମୋଦ ରାଜନୀତି ବିଜ୍ଞାନର କାର୍ଯ୍ୟକ୍ରମ ପାଇଁ ଗୀତଟିଏ ଲେଖିଥିଲେ, ଯାହା ମୋରି ସ୍ୱର ସଂଯୋଜନାରେ ପରିବେଷିତ ହୋଇଥିଲା । ଗୀତଟି ଥିଲା ଏମିତି -

ଆମେ ଅଲିଭା ଦୀପର ଶିଖା,<br>
ଝଡ଼ ପରେ ଝଡ଼ ଆସୁ, ସାଥିରେ ତୋଫାନ,<br>
ଲିଭିବ ନାହିଁ ଆମ ଜୀବନ ଶିଖା ।

ପ୍ରଦୀପ, କବି ପ୍ରଦୀପ କୁମାର ପଣ୍ଡା, ଝାରସୁଗୁଡ଼ା ଲକ୍ଷ୍ମୀ ନାରାୟଣ ମହାବିଦ୍ୟାଳୟରୁ ପ୍ରଧ୍ୟାପକ ଭାବରେ ଅବସର ନେଇ ସମ୍ବଲପୁର ସର୍ଲାକାନୀରେ ଘରକରି ରହୁଛନ୍ତି । ପ୍ରଦୀପ, ଜି.ଏମମ୍. କଲେଜ, ତଳବେଟ୍‌ର ଓଡ଼ିଆ ସମ୍ମାନ ବିଭାଗର ଛାତ୍ର ହେବା ଦିନଠାରୁ ଚିହ୍ନା, ପରେ ସାହିତ୍ୟ ଆଧାରରେ ଘନିଷ୍ଠତା, ବନ୍ଧୁ ହେଲେ ବି ଦାଦା ବୋଲି ସମ୍ବୋଧନ କରନ୍ତି, ହୃଦୟବତ୍ତା ମଣିଷଟାଏ, ସବୁବେଳେ କବିତାମଗ୍ନ, କିଛିବର୍ଷ ତାଙ୍କ କଲମ ନୀରବିଗଲା । ପୁଣି, ପରେ ଯେବେ ଚେଇଁ ଉଠିଲା, ସେଥିରେ ମୋର ମଧ୍ୟ ଛୋଟ ଭୂମିକାଟିଏ ଥିଲା, ଏବେ ସେହି କବିଭାବ କ୍ରମାନ୍ୱୟରେ ଗତି କରୁଛି । ପ୍ରଦୀପ, ସଚେତନ ବେଳେ ମୋ ପାଇଁ ଗ୍ରହଣୀୟ, ଅବଚେତନରେ ଚଳନୀୟ, ନିଜେ ନିଜକୁ ବି ଚିହ୍ନି ପାରନ୍ତି ନି, ସାରା ପୃଥିବୀ ଘୁରି ଆସିଲେ ବି ସେ ଶ୍ମଶାନରେ ବିଚରଣ କଲାବେଳେ ନିଜ ଶବସହ ଝୁଣ୍ଟିଲାବେଳେ ଯାଇ ନିଜକୁ ସ୍ପଷ୍ଟ ଚିହ୍ନିପାରନ୍ତି । ସାହିତ୍ୟମନସ୍କ ପ୍ରଦୀପଙ୍କ ମନୋଭାବ ବେଳେବେଳେ ଉଭଟ ନାଟକ ଭଳି ଲାଗେ, ଆଉ କେତେବେଳେ ହାସ୍ୟରସର ନାଟକ ଭଳି ହସ ଛଳଛଳ, ମଧୁର, ଆଳାପୀ । ତାଙ୍କସହ ଡଙ୍ଗରପଡ଼ା ଯାଇଛି ଚକ୍ରୀ ନାଟକ ଦେଖିବା ପାଇଁ, ତାଙ୍କ ପାଖକୁ ଯାଇଛି

ଭରନୀର ସୁଲଭ୍ୟ ପ୍ରକାଶନ ପାଇଁ, ଆଉ ଏବେ ଉଭୟେ ଅନ୍ୟାର ବନ୍ଧନରେ ଅନୁବନ୍ଧିତ । ମୋ ଭାବରେ, ତାଙ୍କ ଅର୍ଥରେ, ଭାବାର୍ଥ ବାଣ୍ଟୁଛୁ ଦର୍ଶକଙ୍କୁ, ଅବସର ଜୀବନକୁ ସରସିତ କରିବା ପାଇଁ । ସେ ମୋ ପାଇଁ ସେଇ ସାଧାରଣ, ଆଳାପୀ ପ୍ରଦୀପ ଭାବରେ ହିଁ ରହିବେ କାଳକାଳ ପାଇଁ ।

ସତସ୍ତରୀର ସମୟ ଦେଶରୁ ଜରୁରୀ ପରିସ୍ଥିତି ବିଦାୟ ନେଇ ନୂତନ ସ୍ୱାଧୀନ ବାତାବରଣର, ନୂତନ ସରକାର ଶାସନାଧୀନ ହେବାପର ହର୍ଷଉଲ୍ଲାସର ପରିବେଶଭିତରେ ବି ଛୋଟଛୋଟ କାର୍ଯ୍ୟକ୍ରମର ସଫଳତା ମୋର ପାହାଡ଼ ଚଢ଼ା ପଥକୁ ପରିଷ୍କାର କରିପାରିଥିଲା । ସେହି ସମୟ ଅବଧି ପୂର୍ବରୁ ଖଣ୍ଡଗିରିଦାଦାଙ୍କ ଅନୁରୋଧରେ ବୀରମହାରାଜପୁର ଯାଇ ସେଠାକାର ସରସ୍ୱତୀ ପାଠାଗାରର ଏକ ନାଟକକୁ ନିର୍ଦ୍ଦେଶନା ଦେଇଥିଲି । ସେଠି ପରିଚିତ ହୁଏ ବଂଶୀବାଦକ ଗଣେଶ ବାବୁଙ୍କ ସହ । ଖୁବ୍ ଭଲ କଳାକାର ଜଣେ, ତାଠୁ ବଳି ଭଲ ଲୋକ ଜଣେ । ଛସ୍ତରୀରେ ଦାଦା ଛେଣ୍ଡିପଦା ବାପୁଜୀ କଲେଜର ଇଂରାଜୀ ବିଭାଗର ଅଧ୍ୟାପକ ଭାବରେ ଯୋଗଦେଇ ନିଜ ବୃତ୍ତିଗତଜୀବନ ଆରମ୍ଭକରିଥିଲେ । ବାରୁଦାଦା ଏମ.ଏ. ପାସ୍ ପରେ ସେହି ବିଭାଗରେ ଗବେଷଣା ସହାୟକଭାବରେ ଯୋଗଦେଲେ । ସେତିକିବେଳେ ୟୁଜିସିର ଏକ ନୀରିକ୍ଷକ ଦଳ ସମ୍ବଲପୁର ଆସି ବାରୁଦାଙ୍କ ଗବେଷଣାର ତୃଣମୂଳ ସ୍ତରର ଅନୁଶୀଳନ କରିବାକୁ ଚାହିଁଲେ । ତାଙ୍କ ପାଇଁ ବରପାଲି ନିକଟସ୍ଥ କୁମ୍ଭାରୀ ଗ୍ରାମରେ ଲୋକଗୀତ ଓ ଲୋକନୃତ୍ୟର ଏକ ବିଶାଳ ପ୍ରଦର୍ଶନ କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା । ସେ ବେଳର ମନ୍ତ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ ଅତିଥି ଭାବରେ ଯୋଗଦେଇଥିଲେ ଏବଂ ଡ. ଗୋପାଳଚନ୍ଦ୍ର ମିଶ୍ର, କୁଳପତି ଭୁବନେଶ୍ୱର ବେହେରା ଆଦି ବିଶିଷ୍ଟ ବ୍ୟକ୍ତି ମଧ୍ୟ ଏହି ସମାବେଶରେ ଉପସ୍ଥିତ ଥିଲେ । ଅନେକ ଲୋକକଳାକାରଙ୍କ ପ୍ରଦର୍ଶିତ ନୃତ୍ୟଗୀତ କାର୍ଯ୍ୟକ୍ରମ ପୂର୍ଣ୍ଣମାତ୍ରାରେ ସଫଳ ହୋଇଥିଲା ।

ଏହି ଲୋକସଂସ୍କୃତି ସମ୍ପର୍କିତ କାର୍ଯ୍ୟକ୍ରମପାଇଁ ବାରୁଦାଦାଙ୍କ ଅନୁରୋଧରେ ମୁଁ ମଧ୍ୟ କୁମ୍ଭାରୀ ଯାଇଥିଲି । ପ୍ରଥମ କରି ଲୋକଗୀତ ଓ ଲୋକନୃତ୍ୟ ପ୍ରତି ଆକୃଷ୍ଟ ହେଲି । ଜଣେ ନର୍ତ୍ତକୀ ମୁହଁର ଜହ୍ନିଫୁଲ ଗୀତଟିଏ ମୋତେ ବହୁତ ପ୍ରଭାବିତ କରିଥିଲା । ଗୀତଟି ଏବେ ବି ମୋ ତୁଣ୍ଡରେ ସାଇତା ହୋଇ ରହିଛି;

ଚଟୁ ଫିକି ନେଲି ରିଷେ, ଚଟୁ ଫିକି ନେଲି ରିଷେ,<br>
ସେ ଚଟୁ ବାଜିଲା କଦଲୀ ଗଛେରେ କଦଲୀ ଗଛେ ।

ଜହ୍ନି ଫୁଲ କାଏଁ ମଲିଫୁଲ, ନିଆଲୀ ଫୁଲ ମୋର୍ କଇଁଫୁଲ,

ଉଠି ବସିକରି ତୁଲରେ ଜହ୍ନିଫୁଲ.... ।

ଆମ ଅଞ୍ଚଳରେ ଲୋକସଂସ୍କୃତିର ବିରାଟ ସମ୍ପଦ ଭରିରହିଛି, ସ୍ୱରରେ, ତାଳରେ, ଲୟରେ, ବାଦ୍ୟରେ ସେଗୁଡ଼ିକର ସ୍ୱାତନ୍ତ୍ୟ ରହିଛି, ଏ ଅନୁଭବ ପରବର୍ତ୍ତୀ କାଳରେ ମୋର ମଧ୍ୟ ଗବେଷଣାର ବିଷୟ ପାଲଟିଯିବ, ସେତେବେଳେ ହୁଏ ତ ମୋର ଜ୍ଞାନ ନଥିଲା, ତେବେ ଏହି ସମାବେଶରେ ଯୋଗ ଦେବା ମୋ ପାଇଁ ଏକ ସୌଭାଗ୍ୟ, ଏ କଥା ମୁକ୍ତକଣ୍ଠରେ ସ୍ୱୀକାର କରିବାରେ କିଛି ଅସୁବିଧା ନାହିଁ ।

କଳାକାର ଜୀବନ ବଡ଼ ଅନୁସନ୍ଧିତ୍ସୁପ୍ରବଣ, ନାଟକ, ନୃତ୍ୟ, ଗୀତର ମାହୋଲ୍ ମୋର ସମଗ୍ର ଜୀବନର ଗତିକୁ ପ୍ରାୟତଃ ନିୟନ୍ତ୍ରଣ କରୁଥିଲା । କୁମ୍ଭାରୀ ପୂର୍ବରୁ ନିଜସ୍ଥାନ ଧନୁପାଲିର ଚନ୍ଦନଯାତ୍ରା ବେଳେ ଦୁର୍ଗାମଣ୍ଡପ ସମ୍ମୁଖରେ ପ୍ରଦର୍ଶିତ ହେଉଥିବା ସଂଚାର ନୃତ୍ୟଗୀତ, ଅନ୍ୟ ରାଜ୍ୟରୁ ଆସି ପରିବେଷିତ ହେଉଥିବା ରାମଲୀଲା, କଣ୍ଢେଇ ନାଚ, ଚୈତ୍ରର ଦଣ୍ଡନାଚମାନ ଦେଖୁଥିଲି, ରାତିରାତି ଅନିଦ୍ରା ରହି ସଞ୍ଚାର ନୃତ୍ୟର ରସପାନ କରିଛି, ବୁଧ ଭାଟ, ବିପିନ, ଦୁଇ ମାନିଆ, ଦୁଃଖନାଶନ ବେହେରା, ରାଧା, ଧନୁପାଲିର ନନ୍ଦଲାଲ ଆଦିଙ୍କ ସଞ୍ଚାର ପରିବେଷଣ, ମୃଦଙ୍ଗ ବାଦନ, ଗାୟନ ପ୍ରକ୍ରିୟା ଆଦି ମୋତେ ଅନେକାଂଶରେ ପ୍ରଭାବିତ କରିଥିଲା । ତେବେ ସେଗୁଡ଼ିକର ଶିକ୍ଷାଗତ ଗୁରୁତ୍ୱକୁ ଅନୁଭବ କରିପାରୁନଥିଲି । କୁମ୍ଭାରୀ ଲୋକସମାବେଶ ପରେ ଏହାର ସାମଗ୍ରିକ ମୂଲ୍ୟ ଉପରେ କିଛି ଅବଧାରଣା ସୃଷ୍ଟି ହୋଇଥିଲା ।

ପଞ୍ଚାଅଶୀ-ଛୟାଅଶୀ ସାଲ୍‌ରେ ମୋ ଭାଇ ବୁର୍‌ତି ନାମରେ ଏକ ସମ୍ବଲପୁରୀ ନାଟକ ଲେଖିଲା ଜନୈକ ସଞ୍ଚାର ବାହକ ରୁଦ୍ରର ଦୈନନ୍ଦିନ ଜୀବନକୁ ନେଇ, ଯାହା ମୋ ନିର୍ଦ୍ଦେଶନାରେ ପ୍ରଥମେ ଝାଡୁଆପଡ଼ାର ଆରଣ୍ୟକ ମଣ୍ଡପରେ ମଞ୍ଚସ୍ଥ ହେଲା । ମୁଁ ରୁଦ୍ରବାହକ ଓ ବାରୁଦା ମୋର ପାଳିଆ ଭୂମିକାରେ ଅଭିନୟ କରିଥିଲେ । ନିଜେନିଜେ ମୃଦଙ୍ଗ ବଜାଇ, ସଂଚାର ଗୀତ ଗାଇ, ନାଚି, ଅଭିନୟ କରି ସେ ଚରିତ୍ରକୁ ସଫଳତାର ସହ ମଞ୍ଚରେ ଉତାରିବା ପଛରେ ରାତିରାତି ଧନୁପାଲି ଗାଁଖୁଲିରେ ଚନ୍ଦନଯାତ୍ରା ଅବସରରେ ଦେଖିଥିବା ସଞ୍ଚାର ନୃତ୍ୟଗୀତର ପ୍ରତିଫଳନ କହିବା କଣ ଭୁଲ୍ ହେବ ! ! !



ସତସ୍ତରୀ ସାଲ୍, ବାସ୍ତବତଃ ଛାତ୍ରଜୀବନର ଶେଷବର୍ଷ, ବିଦାୟବେଳାରେ କିଛି କୋହ, ଲୁହ ହୋଇ ଝରିଗଲା, ଆଉ କିଛି ଅଟୋଗ୍ରାଫରୀର ଶବ୍ଦ ରୂପେ ଖୋଦିତ ହୋଇଗଲା । କେତେକଙ୍କ ସହ ପାଞ୍ଚ ବର୍ଷର, ଆଉ କେତେକଙ୍କ ସହ ମାତ୍ର ଦୁଇ ବର୍ଷର ବନ୍ଧୁତ୍ୱ, ବିଦାୟ ବେଳାରେ ଲାଗିଲା, ଯେପରି ନିଜ ପରିବାରରୁ କେତେଜଣ ବିଦାୟ ନେଇଯାଉଛନ୍ତି । ପ୍ରମୋଦ ଷଡଙ୍ଗୀ, ମୋଟାପିଲାଟାଏ, ଶଳା ସମ୍ବଲଧନ ନକଲେ ଆମେ କଥା ହେଉ ନଥିଲୁ, ପୁରୀ ଦଉଡୋଟା ଅଞ୍ଚଳରୁ ଆସି ଏଠି ପାଠ ପଢ଼ିଲା, ଆମସାଙ୍ଗରେ ଦୋସ୍ତି କଲା, ଏଠୁ ଗଲା ଯେ, କଣ ଚାକିରୀ କଲା କେଜାଣି, ତାର ଦେହାନ୍ତର ଖବର ଆସିଲା । ଶଳାଃ, ଏଠୁ ଗଲା ପରେ ଆଉ ଦେଖା ବି ହେଲାନି ତା'ସାଙ୍ଗରେ । ଏମିତି ତ, କିଏ କୁଆଡ଼େ, ଛିଞ୍ଚାଡ଼ି ହୋଇପଡ଼ିଲେ, ଜଣା ପଡ଼ିଲା ନି । ପୂର୍ବବର୍ଷ, ଆମ ସିନିୟରମାନଙ୍କୁ ବିଦାୟ ଦେବାବେଳେ ମୁଁ, ସମର ମୁଦାଲୀଙ୍କ ସହ ଆଉ କେତେକ ଛାତ୍ରବନ୍ଧୁ ପ୍ରାରମ୍ଭିକ ସଂଗୀତର ଯେଉଁ ଗୀତଟିଏ ଗାଇଥିଲୁ, ସେଥିରୁ ପଦେ ମନେ ପଡ଼ିଗଲା;

ବିଦାୟ ନିଅ ସାଥୀ, ବିଦାୟ ନିଅ ହେ,<br>ମନେ ରଖିବାର ଭଲ ପାଇବାର,<br>ଏଇ ଏକ ସ୍ମୃତି, ଏଇ ଏକ ସ୍ମୃତି.... ।

ସେଇ, ଶେଷ ବର୍ଷର କଥା, ଆମ ପ୍ରଫେସର ଡ. ଗୋପାଳଚନ୍ଦ୍ର ମିଶ୍ର କେଉଁ ସାମାଜିକ କାର୍ଯ୍ୟକ୍ରମ ପାଇଁ ସପରିବାର କଟକ ଗଲେ । ଯିବା ପୂର୍ବରୁ ବନ୍ଧୁ ରାମଚନ୍ଦ୍ର ମିଶ୍ରଙ୍କୁ ଡାକି ତାଙ୍କ ଫେରିବାଦିନ ପର୍ଯ୍ୟନ୍ତ ପ୍ରଫେସର୍ କଲୋନୀରେ ଥିବା ଘରକୁ ରାତିବେଳା ଜଗିବାପାଇଁ ଦାୟିତ୍ୱଦେଇ ଚାଲିଗଲେ । ରାମ ରହୁଥିଲେ ହଷ୍ଟେଲରେ, ଜ୍ୟୋତିବିହାରରୁ ଆସି ସମ୍ବଲପୁରରେ ଘରଜଗିବା ବଡ଼ ସାଂଘାତିକ କାମ, ତାହା ବୁଝିପାରି ମୋତେ ତାଙ୍କ ସହ ରାତି ରହିବା ପାଇଁ ଅନୁରୋଧ କଲେ । ମୁଁ କହିଲି, ଦେଖ, ତମେ କହୁଛ, ନ ହେଲେ ଏ ଘରଜଗିବା କାମ ମୋଦ୍ୱାରା ହେବ ନାହିଁ । ଦୁହେଁ ସାଙ୍ଗହୋଇ ଗୋଟିଏରାତି କଟେଇଦେବା, କିଛି ଗୋଟାଏ ବଡ଼ ଜିନିଷ ନୁହେଁ । ମୁଁ ବି ପ୍ରସ୍ତୁତ ହୋଇଗଲି । ଘରୁ ଖାଇଦେଇ ସହଳ ଚାଲିଆସିଲି ପ୍ରଫେସର କଲୋନୀ ସ୍ଥିତ ଗୋପାଳ ସାର୍‌ଙ୍କ କ୍ୱାଟର୍‌କୁ । ରାମ ଆଉ ମୁଁ, ଗପ ଆରମ୍ଭ କରିଦେଲୁ, ଅସରନ୍ତି ଗପ, ରାତିଅଧ ହୋଇ ବସିଲା ବେଳେ ବାହାରଦରଜା କିଏ ପିଟିବା ଭଳି ଶବ୍ଦ ହେଲା । ଆମେ ଦି'ଜଣ ବିଚଳିତ ହୋଇଗଲୁ । କିଛି ସମୟରେ ପୁଣି ସେମିତି ଶବ୍ଦ,

ମୁଁ ଉଠିପଡି କବାଟ ଖୋଲିବା ବେଳକୁ ଦେଖିଲି, ପାଖ କ୍ୱାଟର୍‌ରେ ରହୁଥିବା ଇଂରାଜୀ ପ୍ରଫେସର ଡ. ହଳଧର ପଣ୍ଡା ଆମକୁ ଡାକୁଛନ୍ତି । ଏତେ ରାତିରେ, ପୁଣି ହଳଧର ସାର୍ ! !

ସାର୍ କହିଲେ; ଦ୍ୱରିକା ! ମୋ ପୁଅର ଦେହ ଭୀଷଣ ଖରାପ୍, ହସ୍ପିଟାଲ ନେବା ପାଇଁ ପଡ଼ିବ । ଲକ୍ଷ୍ମୀ ଟକିକ୍ ପାଖକୁ ଯାଇ ଟେକ୍ସିଟାଏ ଡାକି ଦିଅନ୍ତ ନି ! ! ମୁଁ ରାମ ଆଡ଼କୁ ଦେଖି ତତ୍‌କ୍ଷଣାତ୍ ବାହରି ପଡିଲୁ । ସାର୍ ଆଶ୍ୱସ୍ତ ହେଲେ । ରାତି ପ୍ରାୟ ବାରଟା ଉପରେ ହେବ, ରାମ ଓ ମୁଁ ମୋ ସାଇକଲ୍‌ରେ ବାହାରିପଡିଲୁ । ତୁରନ୍ତ ଟେକ୍ସିଷ୍ଟାଣ୍ଡରୁ ଆମ୍ବାସାଡର କାର୍ ଟିଏ ଧରି ରାମକୁ କହିଲି, ତମେ କାର୍‌ରେ ଯାଅ, ମୁଁ ସାଇକଲ୍‌ରେ ଯାଉଛି । ରାମ କାର୍ ନେଇ ପଣ୍ଡାସାର୍‌ଙ୍କ ଘରକୁ ଚାଲିଗଲେ । ମୁଁ ତାଙ୍କପଛରେ ପହଞ୍ଚିଲି । ହଳଧରବାବୁ ତାଙ୍କ ଛ, ସାତ ବର୍ଷର ପୁଅକୁ ଧରି ଗାଡ଼ିରେ ବସିପଡିଲେ ତାଙ୍କ ସ୍ତ୍ରୀ ସହ । ମୁଁ ଓ ରାମ ପୁଣି ଥରେ ସାଇକଲ୍‌ରେ ହସ୍ପିଟାଲରେ ପହଞ୍ଚିଲୁ । ସାର୍‌ଙ୍କ ପୁଅକୁ ହସ୍ପିଟାଲରେ ଏଡମିଟ୍ କରାଗଲା । ଡାକ୍ତରଖାନା ବାହାରେ ଆମେ ଅପେକ୍ଷା କଲୁ । ଏମିତି ଏମିତି ସକାଳ ତିନି, ସାଢ଼େ ତିନିଟା ହୋଇଗଲା । ବହୁ ପରିଶ୍ରମ ସତ୍ତ୍ୱେ ପୁଅଟି ବଞ୍ଚିପାରିଲା ନାହିଁ । ସାର୍‌ଙ୍କ ପାଇଁ ପୁଣି ଥରେ ଆଉ ଗୋଟାଏ ଗାଡ଼ି ଠିକ୍‌କରି ଡାକ୍ତରଖାନାରୁ ଘରକୁ ଅଣାଗଲା । ସେତେବେଳଯାଏଁ ପଣ୍ଡାସାର୍‌ଙ୍କ ଦମ୍ଭ ପ୍ରଚୁର ଥିଲା । ଘରେ ପହଞ୍ଚିଲା କ୍ଷଣି କନ୍ଦାକଟା ଆରମ୍ଭ ହୋଇଗଲା । ସାରଙ୍କ ଭଉଣୀ ସୁରବାଳା ମଧ୍ୟ ସାରଙ୍କ ପାଖରେ ରହୁଥିଲେ । ସମସ୍ତଙ୍କ କନ୍ଦାକଟାରେ ଆମ୍ବଗଛ ତଳ ପରିବେଶଟି ଶୋକାର୍ତ୍ତ ପାଲଟିଗଲା । ରାମ ଓ ମୁଁ, ଏଭଳି ପରିସ୍ଥିତିକୁ ଏଡାଇ କୁଆଡ଼େ ଯାଇପାରିଲୁ ନାହିଁ । ସକାଳ ପାଞ୍ଚଟା ହେବ, ସେଇ ଗାଡ଼ିରେ ହଳଧର ସାର୍ ପୁଅର ମରଶରୀରକୁ ଧରି ଆମକୁ ସାଙ୍ଗରେ ଆସିବା ପାଇଁ କହି ଆଗକୁ ମାଡ଼ିଚାଲିଲେ । ବୁଢ଼ାରଜା ପାହାଡ଼ ତଳ ମଶାଣିରେ ଗାତ ଖୋଳା ହେଲା, ସାର୍ ପୁଅର ମରଶରୀରକୁ ସେଇ ଗାତରେ ଥୋଇ ଆଉ ନିଜକୁ ସମ୍ଭାଳି ନ ପାରି 'ବାବୁଜୀ' ବୋଲି ଚିତ୍କାରକରି ମାଟିଆଞ୍ଜୁଳାଏ ପକେଇ ଦେଲା ପରେ ମୁଁ ଓ ରାମ ତାଙ୍କ ବିଶାଳ ଶରୀରକୁ ନିଜ ଆୟତ୍ତକୁ ଆଣି ଘରକୁ ଆଣି ଛାଡ଼ିଲୁ । ସେ ରାତିର ଘଟଣା ଓ ହଳଧର ସାର୍‌ଙ୍କ କାନ୍ଦଣା, ଆମ ଛାତି ଥରେଇ ଦେଲା । ଆମ ଉପସ୍ଥିତି, ସାର୍‌ଙ୍କ ପାଇଁ କିଛି କାମ ଆସିଥିବାରୁ ଆମେ ଦି'ଜଣ ନିଜକୁ ଧନ୍ୟ ମନେ କଲୁ ।

ଶେଷ ବର୍ଷର ପରୀକ୍ଷା ଶେଷ ହେବା ପରେ ପୁଣି ଧନୁପାଲିର ନାଟକଚିନ୍ତା । ନାଟକ ବାଧ ହେବ, ବଛାଗଲା 'ମୋର ବା ଦୋଷ କଣ' ନାଟକ, ପ୍ରଫୁଲ୍ଲ ରଥଙ୍କ



ଲେଖନୀ । ମୋ ସହ ଦିଲୀପ ପଣ୍ଡା (ଖ), କୃଷ୍ଣ ଆଚାର୍ଯ୍ୟ ଆଦି କଳାକାରମାନେ ବିଭିନ୍ନଭୂମିକାରେ ଅଭିନୟ କଲୁ, କଟକରୁ ସନ୍ଧ୍ୟା ନାମ୍ନୀ ଜନୈକା ଅଭିନେତ୍ରୀ ଆସି ନାରୀ ଚରିତ୍ରରେ ଅଭିନୟ କଲେ । ସୁନ୍ଦର ମଞ୍ଚସଜ୍ଜା ସାଙ୍ଗକୁ ଉପଯୁକ୍ତ ଅଭିନୟ ନାଟକଟିକୁ ସଫଳ କରିପାରିଥିଲା । ଏହି ନାଟକଟି ମଧ୍ୟ ସେହି ମନ୍ଦିର ପ୍ରାଙ୍ଗଣରେ ମଞ୍ଚସ୍ଥ ହୋଇଥିଲା ।

ସତସ୍ତରୀ ନିର୍ବାଚନ ହେଲା, ପୁରୁଣା ଯାଇ ନୂତନ ସରକାର ଗଠିତ ହେଲେ । ଡ. ଝସକେତନ ସାହୁ ନିର୍ବାଚିତ ହୋଇ ମନ୍ତ୍ରୀ ହେଲେ । ସମଲେଶ୍ୱରୀ ମଣ୍ଡପରେ ଦର୍ପନ୍, ମଞ୍ଚନାୟିକା ଭଳି ହାସ୍ୟରସର ନାଟକମାନ ଅଭିନୀତ ହେଲା । ମଞ୍ଚନାୟିକା ନାଟକରେ ସମ୍ବଲପୁରର ବହୁ ବିଶିଷ୍ଟ କଳାକାରମାନେ ଅଭିନୟ କରିଥିଲେ । ତାଙ୍କ ସହ ମୁଁ ଓ କୈଳାସ, ଦି ଜଣ ଦର୍ଶକ ଭୂମିକାରେ ଅଭିନୟ କରିଥିଲୁ । ଆମ ଅଭିନୟ କେବଳ ଥିଲା ଗୋଟିଏ ଦୃଶ୍ୟରେ ପାଟିତୁଣ୍ଡ କରିବା । ଏହାର କାରଣ ନାଟକରେ ନାରୀ ଭୂମିକାରେ ଅଭିନେତ୍ରୀ ନଆଣି ଅଭିନେତା ଜଣକୁ ଝିଅବେଶ କରି ମଞ୍ଚରେ ଓହ୍ଲାଯାଇଥିଲା । ତାର ପ୍ରତିବାଦରେମୁଁ ଓ କୈଳାସ ପାଟିତୁଣ୍ଡ କରିବାର ଥିଲା ଦର୍ଶକମାନଙ୍କ ସହ ବସି ।

ସେହି ଦୃଶ୍ୟ ଆସିବା ଉପରେ । ଆମେ ବି ପ୍ରସ୍ତୁତ କୋଳାହଳ କରିବା ପାଇଁ । ସେ ମୁହୂର୍ତ୍ତ ଆସିବାକ୍ଷଣି ଆମେ ପାଟିକଲୁ, ଏ ନାଟକ ବନ୍ଦ କର, ନାଟକ କରାଇ ଦେବୁ ନାହିଁ ଇତ୍ୟାଦି । ସମଲେଶ୍ୱରୀ ଯୁବକ ସଂଘର ସଭାପତି ଚିତ୍ତ ପାଣ୍ଡେ ଆମେ ଅଭିନୟ କରୁଛୁ ବୋଲି ନଜାଣି, ଆମେ ଜାଣିଜାଣି ପାଟି କରୁଛୁ ବୋଲି ଦୌଡ଼ିଆସିଲେ ଆମକୁ ପିଟିବା ପାଇଁ । କୈଳାସ, ଏ କଥା ଜାଣି ପାରି କେତେବେଳେ ମୋ ଠାରୁ ଦୂରକୁ ଚାଲିଗଲେ, ମୁଁ ଜାଣିପାରିଲି ନାହିଁ । ପାଣ୍ଡେ ଆସି ମୋ ଗାଲରେ ଦି ଚାରି ଚାପୁଡ଼ାମାରି ତୁନି ହୋଇ ବସିବାକୁ ଧମକ ଦେଲେ । ମୁଁ କାନମୁଣ୍ଡ ଆଉଁସି ସେଇଠାରେ ବସି ଭାବୁଥିଲି, ପାଣ୍ଡେ ମୋତେ ଏତେ ଭଲ ପାଆନ୍ତି, ପିଟିଲେ କାହିଁକି ? ଅବଶ୍ୟ ନାଟକ ପରେ ପ୍ରକୃତ ଘଟଣା ଜାଣି ପାରି ମୋ ନିକଟକୁ ଆସି କ୍ଷମାପ୍ରାର୍ଥନା କରିଥିଲେ । ସାଙ୍ଗମାନେ ଚର୍ଚ୍ଚା କରିଥିଲେ, ଦର୍ଶକ ଭୂମିକାରେ ଦ୍ୱାରିକା କୈଳାସ ନେଚୁରାଲ୍ ଅଭିନୟ କରିଥିଲେ ବୋଲି ମାଡ଼ଖାଇଲେ ! !

ଅଠସ୍ତରୀରେ ଗୋବିନ୍ଦତୋଲାରେ ସାରଥୀ ସଂସ୍ଥାର ପୁନର୍ଜନ୍ମ ଘଟିଲା ନୂତନ ଏକ ପିଢ଼ୀ ଦ୍ୱାରା । ସେମାନେ ଆସି ତାଙ୍କ ସେ ବର୍ଷର ନାଟକ 'ଗୁଣ୍ଡା'ର ନିର୍ଦ୍ଦେଶନା ଦେବା ପାଇଁ ଅନୁରୋଧ କଲେ । ମୋ ସହ ସେମାନଙ୍କ ସମ୍ପର୍କ ଭଲ ଥିଲା । ମୁଁ ଖୁସିରେ

ହିଁ ଭରିଲି । ସୁରେଶ ତ୍ରିପାଠୀ, ଦେବେନ୍ଦ୍ର, ଜ୍ଞାନ ଜେନା, ବ୍ରଜବିହାରୀ ଦାସ, ରାଜୁ, ବିନୋଦ ପାଢ଼ୀ ଆଦି ନାଟକର ବିଭିନ୍ନ ଚରିତ୍ରରେ ଅଭିନୟ କରିଥିଲେ । ସେମାନଙ୍କ ସହ ଡଲି ଏକମାତ୍ର ନାରୀ ଚରିତ୍ରଟିରେ ଅଭିନୟ କରିଥିଲେ । ମୁଁ ପାରୁପର୍ଯ୍ୟନ୍ତ ନାଟକର ପ୍ରତିଟି ଦୃଶ୍ୟକୁ ନିଜ ସୀମିତ ପ୍ରତିଭାରେ ସଜେଇଥିଲି । କିଛି ସିନେମାଟିକ୍ ସ୍ପର୍ଶରେ ନାଟକଟିକୁ ରଙ୍ଗୀନ କରାଯିବାର ବ୍ୟବସ୍ଥା କରାଯାଇଥିଲା । ନାଟକର ସଫଳତା ସୁରେଶ ଭଳି କଳାକାର ନିଜକୁ ନାଟ୍ୟଶିଳ୍ପୀ ଭାବରେ ପ୍ରତିଷ୍ଠିତ କରିପାରିଥିଲା । ରମେଶଚନ୍ଦ୍ର ପାଣିଗ୍ରାହୀଙ୍କ ରଚିତ ଗୁଣ୍ଡା ନାଟକଟି ମୋ ନାଟ୍ୟଜୀବନକୁ ମଧ୍ୟ ଅଧିକ ପୁଷ୍ଟ କରିପାରିଥିଲା । ଏବେ ଡ. ବିଶ୍ୱନାଥ ମିଶ୍ରଙ୍କ ଘର ଯେଉଁଠି ଅଛି, ସେହି ସ୍ଥାନରେ ହିଁ ଏ ନାଟକଟି ଅସ୍ଥାୟୀ ମଣ୍ଡପରେ ମଞ୍ଚସ୍ଥ ହୋଇଥିଲା । ଅଠସ୍ତରୀ ଲ' କଲେଜ୍‌ରେ ମୋର ଶେଷ ବର୍ଷ, ଇଣ୍ଟର ଲ ପର୍ଯ୍ୟନ୍ତ ପଢ଼ି ପରୀକ୍ଷାଦେଲି, ଭଲନମ୍ବର ମଧ୍ୟ ରଖିଲି । ଛାତ୍ରଜୀବନକୁ ବିଦାୟ ଦେବାକୁ ଇଚ୍ଛା ହେଉ ନଥିଲେ ବି ଆଉ କଲେଜ୍ ଯିବାପାଇଁ ଆଗ୍ରହ ନଥିଲା ।

ଛାତ୍ର ଜୀବନ ଭଳି ମୁକ୍ତଜୀବନ ଆଉ ତ ଆସେ ନାହିଁ । ମୁଁ ମନଭରି ଉପଭୋଗ କରିବା ସଙ୍ଗେ ପାଠ ସହ ସାଠର ଅଧିକ ଗ୍ରାହକ ଥିଲି । ଅନୁଗୋଳର ଘରୋଇ ମାଷ୍ଟ୍ରେ ନରନନାଙ୍କଠାରୁ ଆରମ୍ଭ କରି ଜ୍ୟୋତିବାହରର ଉପାଧ୍ୟୁତ୍ତର ଶ୍ରେଣୀ ପର୍ଯ୍ୟନ୍ତ ସମୟ ଅବଧିରେ ଅନେକ ବନ୍ଧୁ ଅର୍ଜିଛି, କଳାର ପଦସେବା କରିଛି, ନାଟକର ସ୍ୱାଦ ଚାଖିଛି, ମନମତାଣିଆ ଗୀତ ଗାଇଛି, ଗୁଏଇଛି, ଉଦଣ୍ଡ ନୃତ୍ୟ କରିଛି, ଧନୁପାଲି ଯଜ୍ଞସ୍ଥଳରେ ମୃଦଙ୍ଗ ବାଦନ କରିଛି, ଶ୍ରେଣୀ ଭିତର ପାଠ ପଢ଼ିଛି, ଶ୍ରେଣୀ ବାହାର ପୃଥିବୀର ପାଠ ବି ପଢ଼ିଛି ।

ଆଜି ଅଧ୍ୟାପକଭାବରେ ଅବସର ନେବା ପରେ ଅନୁଭବ କରୁଛି, ମୋ ଜୀବନରେ ଶ୍ରେଣୀଭିତର ପାଠ ଅପେକ୍ଷା ଶ୍ରେଣୀ ବାହାରପାଠ ଅଧିକ କାମକୁ ଆସିଛି ।



**ସୁ**ଦୂର ଅବିବକ୍ତ ଢେଙ୍କାନାଳ ଜିଲ୍ଲା ତଳମୂଳ ଅଞ୍ଚଳରୁ ଆମ ପୂର୍ବପୁରୁଷ ଧାନବେପାର ଉଦ୍ଦେଶ୍ୟରେ ସମ୍ବଲପୁର ଚାଲିଆସି ବର୍ତ୍ତମାନର ନନ୍ଦପଡାର ବାଲୁଙ୍କେଶ୍ୱର ମନ୍ଦିର ନିକଟରେ ରହୁଥିଲେ । ସେ କାହିଁ ରାଜାରାଜୁଡ଼ା ଅମଳର କଥା । ସେହି ପରିବାର ପରେ ପଡିଆବାହାଲ ନିକଟସ୍ଥ ବାହାମଗ୍ରାମରେ ଜମିଜମା କ୍ରୟକରି କୃଷିକାର୍ଯ୍ୟକୁ ଆପଣେଇ ନେଇଥିଲେ । ଆମ ପରି ଆହୁରି ଅନେକ ପଞ୍ଚଶାସନୀ ପରିବାର ବିଭିନ୍ନ ଉଦ୍ଦେଶ୍ୟରେ ଏହି ଅଞ୍ଚଳକୁ ଚାଲିଆସିଥିଲେ । ବାହାମକୁ ଭିତ୍ତିକରି ପରିବାର ବିସ୍ତାର

ହେବାପରେ ଶିକ୍ଷାପାଇଁ ସମ୍ବଲପୁରର ସହଁସିଆପଡାରେ ଘରଟିଆରି କରି ରହିଲେ ନାୟକପରିବାର । ଆମ ସାଙ୍ଗିଆ ଏଥି ପୂର୍ବରୁ କର ଥିଲା, ପରେ ଢେଙ୍କାନାଳ ରାଜାଙ୍କ ଦ୍ୱାରା କୌଣସି କାରଣରୁ 'ନାୟକ' ହୋଇଗଲୁ ବୋଲି ବାପା କହୁଥିଲେ । ଆମେ ଅନୁଗୋଳରେ ରହିଥିବାବେଳେ ମାଙ୍କ ପ୍ରରୋଚନାରେ ଧନୁପାଲିରେ କିଛି ଘରଡିହ ପୁଟିବନ୍ଧ ଗ୍ରାମର ଏକ ଗୌଡ଼ ବ୍ୟକ୍ତିଙ୍କଠାରୁ କ୍ରୟ କରାଯାଇଥିଲା ଆଜିଠୁଁ ପ୍ରାୟ ଅଶୀ ନବେ ବର୍ଷ ତଳେ । ଆମ ଧନୁପାଲିର ଘର କେବେ ତିଆରିହେଲା, ମୋର ସେମିତିକିଛି ଜ୍ଞାନ ନଥିଲେ ବି ସମ୍ପୂର୍ଣ୍ଣ ଘରଟି ମୋ ମାଁଙ୍କ ବାପା, ସୂର୍ଯ୍ୟଭାନୁ ବିଶ୍ୱାଳଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତିଆରି ହୋଇଥିଲା । ସମ୍ଭବତଃ, ସୁନ୍ଦରଗଡ଼ ରହଣି ବେଳେ ଏହା ନିର୍ମିତ ହୋଇଥିବ । ବାପା ୧୯୬୮ ମସିହାରେ ସମ୍ବଲପୁର-ସୁନ୍ଦରଗଡ଼ ମଣ୍ଡଳର ଶିକ୍ଷା ନୀରିକ୍ଷକ (ସର୍କଲ୍ ଇନ୍ସପେକ୍ଟର) ଭାବରେ ପଦୋନ୍ନତି ପାଇବାପରେ ଆମ ପରିବାରକୁ ଧନୁପାଲିରେ ରଖି ନିଜେ ସୁନ୍ଦରଗଡ଼ରେ ରହିଲେ ଏବଂ ସତୁରୀସାଲ୍‌ରେ ସରକାରୀଚାକିରୀରୁ ଅବସରଗ୍ରହଣ କରି ସମ୍ବଲପୁରଠାରେ ପରିବାର ସହ ଏକତ୍ର ରହିଲେ ।

ଧନୁପାଲି ଏକ ଗୌଡ଼ ଗାଁ, ଯାହା ମୁଁ ଆଗରୁ କହିଛି । ଏହି ଗାଁର ଅଧିବାସୀମାନଙ୍କ ସହ ପୁଟିବନ୍ଧ, ନକ୍ସାପାଲି, ବରପାଲି, ବୌଦ୍ଧ ତଥା କଟକର ଗୌଡ଼ ସମ୍ପ୍ରଦାୟ ଲୋକଙ୍କସହ ବୈବାହିକସମ୍ପର୍କ ରହିଛି, ଯାହା ଅଦ୍ୟାବଧି ମଧ୍ୟ ଦେଖିବାକୁ ମିଳେ । ଧନୁପାଲିର ଦୋଳପର୍ବ ବହୁ ପୁରାତନ । ଦୋଳପୂର୍ଣ୍ଣିମା ଅବସରରେ ଗାଁର କୃଷ୍ଣଭକ୍ତମାନେ ସ୍ଥାନୀୟ ଗୋପାଳଜୀ ମନ୍ଦିରରୁ ରାଧାକୃଷ୍ଣ ଯୁଗଳମୂର୍ତ୍ତିଙ୍କୁ ଘଣ୍ଟ, ଶଙ୍ଖ, ସମ୍ପର୍ଦା, କୀର୍ତ୍ତନ ମାଧ୍ୟମରେ ବିରାଟ ଶୋଭାଯାତ୍ରାରେ ଗାଁ ଭିତର ଆଖଡ଼ାକୁଠିର ସାମ୍ନାରେ ଖୋଲା ଜାଗାରେ ବେଦୀ ନିର୍ମାଣକରି ସୁସଜ୍ଜିତ ଖଟୁଲୀରେ ଅବସ୍ଥାନକରାଇ ସାରାରାତି ବାଡ଼ିନୃତ୍ୟ କରି ଗୀତଗାଇ ନୃତ୍ୟ କରନ୍ତି । ଆଠଦଶ ଜଣ ଭକ୍ତ ରାଜକୀୟ ବେଶଭୁଷାରେ ସଜ୍ଜିତ ହୋଇ ଡପଡାବାଦ୍ୟର ତାଳେତାଳେ ଅଚ୍ୟୁତାନନ୍ଦଙ୍କ ଗୋପାଳଓଗାଳ ଗୀତ ଗାନକରି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ପଦ ପ୍ରକ୍ଷେପଣକରି ନୃତ୍ୟକରନ୍ତି । ମୁଣ୍ଡରେ ପରଖଚିତ ପଗଡ଼ି, ରଙ୍ଗୀନଧୋତି, ଦେହରେ ରାଜକୀୟ ଆଲଖାଲା, ଅଣ୍ଟାରେ କୁମ୍ଭଗାମୁଛା, ଅଣ୍ଟାରେ ଘୋଗଡମାଲା, ଅର୍ଥାତ୍ ବଡଘୁଙ୍ଗୁରର ମାଳା ବନ୍ଧାହୋଇଥାଏ, ଡପଡାର ନିର୍ଦ୍ଦିଷ୍ଟ ତାଳରେ ଅଣ୍ଟାରେ ବନ୍ଧାଯାଇଥିବା ଘୁଙ୍ଗୁରମାଳାକୁ ଅଣ୍ଟାହଲାଦ୍ୱାରା ବଜାଇ ଏମାନେ ନୃତ୍ୟକରିଥାନ୍ତି । ଶ୍ରୀକୃଷ୍ଣ ଦ୍ୱାରିକାର ରାଜା ହେବାପରେ ଯଦୁବଂଶରେ ଦେଖାଯାଇଥିବା ଆନନ୍ଦକୁ ଏହି ଗୀତମାଧ୍ୟମରେ ପ୍ରଶସ୍ତି ଗାନ କରାଯାଏ । ଏହିନୃତ୍ୟ

ସାରାରାତି ଚାଲେ । ପୂର୍ବେ, ରାତିର ନୀରବତାରେ ସ୍ୱଷ୍ଟ ଭାବରେ ଶୁଣାଯାଉଥିବା ଗୀତବାଦ୍ୟ ମୋ ମନକୁ ରୋମାଞ୍ଚିତ କରୁଥିଲା । ଏହି ଗୋପାଳଓଗାଳ ନୃତ୍ୟ ଧନୁପାଲିର ଏକ ପ୍ରାଚୀନ ପରମ୍ପରା ।

ଗାଁର ମଧ୍ୟବର୍ତ୍ତୀସ୍ଥାନରେ ବସତିସ୍ଥାପନ କରିଥିବା ହରିଜନ ସମ୍ପ୍ରଦାୟର ଲୋକମାନେ ବହୁବର୍ଷ ଧରି ଆୟୋଜନ କରିଆସୁଛନ୍ତି ଚନ୍ଦନଯାତ୍ରା, ଏମାନେ ମଧ୍ୟ ସେଇ ଗୋପାଳଜୀ ମନ୍ଦିରରୁ ମହାପ୍ରଭୁଙ୍କୁ ଆଣି ବର୍ତ୍ତମାନର ଦୁର୍ଗା ମଣ୍ଡପ ସାମ୍ନାରେ ଏକ ସୁସଜ୍ଜିତ ମଣ୍ଡପରେ ଅଧିଷ୍ଠିତ କରାନ୍ତି ଆଧ୍ୟାତ୍ମିକ ପରିବେଶରେ । ପ୍ରାୟପାଞ୍ଚ ଦିନ ଧରି ଏହି ଯାତ୍ରା ଚାଲେ । ରାତିହେଲେ ପଶ୍ଚିମ ଓଡ଼ିଶାର ବିଭିନ୍ନ ଗାଁରୁ ସଂଚାରବାହାକମାନେ ନିମନ୍ତ୍ରିତ ହୋଇ ଆସନ୍ତି ପାଳିପାଳି କରି ସଂଚାର ମାଧ୍ୟମରେ କୃଷ୍ଣଚରିତ ବଖାଣନ୍ତି, ସେମାନଙ୍କ ଅପୂର୍ବ ବାଦ୍ୟନୃତ୍ୟ ସାରାରାତି ଦର୍ଶକଙ୍କୁ ଆକର୍ଷିତ କରି ରଖୁଥିଲା । ଶେଷରାତିର ପ୍ରଭାତରେ ସମ୍ପର୍ଦାଦଳଙ୍କ ବାଦ୍ୟନୃତ୍ୟର ଭକ୍ତିଛଳଛଳ ପରିବେଶରେ ଭକ୍ତମାନେ ପୁଣି ମହାପ୍ରଭୁଙ୍କୁ ମନ୍ଦିରକୁ ନେଇ ପୂଜକ ହସ୍ତରେ ଅର୍ପଣ କରିଥାନ୍ତି । ଏ ପରମ୍ପରା ଆଜିବି ଜାରି ରହିଛି ।

ମାନସିକ କରିଥିବା ଲୋକେ ଚୈତ୍ରମାସରେ ଏହି ଖୁଲିରେ ଅନ୍ୟ ଗାଁରୁ ଆସିଥିବା ଦଣ୍ଡନୃତ୍ୟ ଦଳଙ୍କୁ ଆତିଥ୍ୟ ପ୍ରଦାନ କରୁଥିଲେ ଏବଂ ସେଇ ରାତିରେ ଦଣ୍ଡନାଚ ପରିବେଷିତ ହେଉଥିଲା । ଏବେ ମଧ୍ୟ ଏଭଳି ନୃତ୍ୟକୁ ମନଭରି ଉପଭୋଗ କରୁଛନ୍ତି ଧନୁପାଲିର ଆବାଳବୃଦ୍ଧବନିତା ।

୧୯୬୯ରୁ ବିଜୟଟୀକା ନାଟକ ପରିବେଷଣ ପରେ ଧନୁପାଲିରେ ନାଟ୍ୟ ପରମ୍ପରାର ଏକ ଧାରା ବହୁ ବର୍ଷ ଧରି ଚାଲିଆସିଛି । ପିଢ଼ୀ ପରେ ପିଢ଼ୀ ଆସି ନିଜନିଜ ଶୈଳୀରେ ଯୁଗୋପଯୋଗୀ ନାଟକ ପରିବେଷଣକରି ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖିଛନ୍ତି । ପ୍ରମୋଦଙ୍କ ପରେ ପ୍ରସନ୍ନ ସାହୁ, ଶଶୀଭୂଷଣ ଦାସ, ବ୍ରଜେନ୍ଦ୍ର ନାୟକ, ପ୍ରଶାନ୍ତ ମାଝି, ପ୍ରଦୀପ ପଣ୍ଡାଙ୍କ ସହ ମୁଁ ନିଜେ ବିଭିନ୍ନ ନାଟକ ରଚନାକରି ଧନୁପାଲିକୁ ନାଟକର ଏକ ମନ୍ଦିର ଭାବରେ ଗଢ଼ାଯାଇଛି । ନାଟକସହ ତେସ୍ତରୀରୁ ଅଶୀମସିହା ପର୍ଯ୍ୟନ୍ତ ନାମଯଜ୍ଞର ଏକ ମହାନ୍‌ଧାରା ଜାରିରହିଥିଲା । ଏହା ଗୋପାଳଜୀ ମନ୍ଦିରକୁ ଲାଗି ରାସ୍ତାପଟକୁ ଥିବା ଖୋଲାଜାଗାରେ ଆୟୋଜିତ ହେଉଥିଲା । ସାତଆଠ ବର୍ଷ ଧରି ଏହା ମହାଆଡମ୍ବରରେ ଆୟୋଜିତ ହୋଇଥିଲା । ଧନୁପାଲିର ପ୍ରତ୍ୟେକପଢ଼ାର ଲୋକେ ଏକତ୍ରିତ ହୋଇ ପ୍ରତିବର୍ଷ ନୂଆଁନୂଆଁ କମିଟୀ ଗଠନ ମାଧ୍ୟମରେ ଏହା ପରିଚାଳିତ

ହେଉଥିଲା । ସମଗ୍ର ଧନୁପାଲିବାସୀଙ୍କ ସହଯୋଗରେ ସାତଦିନ, ସାତରାତି ଧରି ଏହି ଯଜ୍ଞ ଅନୁଷ୍ଠିତ ହୋଇଥିଲା । ପ୍ରଥମ ବର୍ଷ ବ୍ରହ୍ମାନନ୍ଦ ନାୟକ ମୁଖ୍ୟକର୍ତ୍ତା ଭାବରେ ପୂର୍ଣ୍ଣାହୁତି ପ୍ରଦାନ କରିଥିଲେ । ପରବର୍ତ୍ତୀ ବର୍ଷମାନଙ୍କରେ ବିଦ୍ୟାଧର ବେହେରା, କୃଷ୍ଣବଲ୍ଲଭ ପଣ୍ଡା, ପଞ୍ଚାନନ ପଣ୍ଡା, ଉପେନ୍ଦ୍ର ମାଝୀ, ଅମ୍ବିକା ନାୟକ ପ୍ରମୁଖ ମୁଖ୍ୟକର୍ତ୍ତା ଭାବରେ ଦାୟିତ୍ୱସମ୍ପନ୍ନ କରିଥିଲେ । ଭାଲୁଗୁଡ଼ା, ସୁବର୍ଣ୍ଣପୁର, ପରମାଣପୁର ଆଦି ବହୁ ଅଞ୍ଚଳରୁ ଉଭୟ ଉଦଣ୍ଡ ଓ ରଂଗୀନ୍ ଧାରାର କୀର୍ତ୍ତନଦଳ ଆମନ୍ତ୍ରିତହୋଇ କୀର୍ତ୍ତନ ପରିବେଷଣ କରୁଥିଲେ । ସେହି ଦଳଗୁଡ଼ିକର ମୃଦଙ୍ଗିଆମାନଙ୍କ ବାଦନଶୈଳୀ ମୋତେ ବିଶେଷଭାବରେ ଆକୃଷ୍ଟ କରୁଥିଲା । ରାତିରାତିଧରି ମୁଁ ସେହି ମୃଦଙ୍ଗବାଦନର ମୋହରେ ପଡିଯାଉଥିଲି । ବେଳେବେଳେ ରାତ୍ରି ତୃତୀୟପ୍ରହରରେ ଦଳମାନଙ୍କ ଅନୁପସ୍ଥିତିରେ ଆମେ ପିଲା କେତେଜଣ ନାମ ଧରୁଥିଲୁ, ମୁଁ ତାଙ୍କସଙ୍ଗରେ ବହୁବାର ମୃଦଙ୍ଗ ବଜାଇଛି । ପୂର୍ଣ୍ଣାହୁତି ପରେ ନଗର କୀର୍ତ୍ତନ ନାମଯଜ୍ଞର ମୁଖ୍ୟ ଆକର୍ଷଣ । ପ୍ରଥମ ବର୍ଷ ମୋର ମନେଅଛି, ନଗରକୀର୍ତ୍ତନ ଶୋଭାଯାତ୍ରାରେ ଟ୍ରକ୍‌ରେ ଲିଆଲଡ୍ଡୁ, ମୁଢ଼ିଲଡୁ ଆଦି ଲୋକଙ୍କୁ ବଣ୍ଟନ କରାଯାଇଥିଲା । ଏବେ ସେ ମାହୋଲ ନାହିଁ, ପ୍ରତିପଡା ତାଙ୍କ ନିଜନିଜ ନାମଯଜ୍ଞ ଅଲଗା ଅଲଗା ଆୟୋଜନ କରୁଛନ୍ତି ।

ନାମଯଜ୍ଞ ଭିତରେ ଭିତରେ ଆମ ପଡ଼ାର କେତେକ ଉତ୍ସାହୀ ଯୁବକ ଧନୁପାଲିରେ ଦୁର୍ଗାପୂଜା ଆୟୋଜନ କରିବା ପାଇଁ ଅଣ୍ଟା ଭିଡ଼ିଲେ । ଏଥି ପୂର୍ବରୁ ଗୋବିନ୍ଦଟୋଲାରେ ଦୁଇ ଦିନ ବର୍ଷ ଆଗରୁ ଦୁର୍ଗାପୂଜା ଆରମ୍ଭ ହୋଇସାରିଥିଲା । ୧୯୭୬ ମସିହାରେ ପ୍ରଥମ କରି ସଭାପତି ଗୋକୁଳଚନ୍ଦ୍ର ପାଢ଼ୀଙ୍କ ସଭାପତିତ୍ୱରେ କମିଟୀ ଗଠନ କରାଯାଇ ଦୁର୍ଗାପୂଜାର ଶୁଭାରମ୍ଭ ଘଟିଥିଲା, ଏଥିପାଇଁ ବିରାଟ ବଟବୃକ୍ଷତଳେ ମଣ୍ଡପଟିଏ ତିଆରି ହୋଇ ସେଠାରେ କମିଟୀ ସଦସ୍ୟମାନଙ୍କ ସହଯୋଗରେ ଦଶଭୂଜା ଦୁର୍ଗାଙ୍କର ପୂଜାବିଧି ଆରମ୍ଭ ହୋଇଥିଲା । ସତସ୍ତରୀ ସାଲ୍‌ରେ ମିର୍ଗାମୁଡାରେ ବାସ କରୁଥିବା ସୌଖୀନ ମୂର୍ତ୍ତି କାରିଗର କୃଷ୍ଣଚନ୍ଦ୍ର ପଣ୍ଡାଙ୍କ ଦେବୀ ଦୁର୍ଗାଙ୍କର ମୃଣ୍ମୟମୂର୍ତ୍ତି ନିର୍ମାଣ ଦାୟିତ୍ୱ ଅର୍ପିତ ହୋଇଥିଲା । ସେ ବର୍ଷର ଅପୂର୍ବ ମୂର୍ତ୍ତି ଏବେସୁଦ୍ଧା ଭକ୍ତମାନଙ୍କ ସ୍ମୃତିରେ ଉଜ୍ଜିବୀତ ହୋଇରହିଛି । ସମ୍ବଲପୁରୀ ଗାଢ଼ ନାଲିରଙ୍ଗର ପାଟରେ ମାଁ ଦୁର୍ଗା ସଦ୍ୟ ଧରାବତରଣ କରିଥିଲା ଭଳି ଅନୁଭୂତ ହୋଇଥିଲା । ତାପରେ ଅନେକ କାରିଗର ଆସି ମୂର୍ତ୍ତି ତିଆରି କରିଛନ୍ତି, ତେବେ କୃଷ୍ଣପଣ୍ଡାଙ୍କ କଳାକୌଶଳର ପଛରେ ବୋଲି ମୋର ବ୍ୟକ୍ତିଗତ ମତ । ଅଭିନେତା ପ୍ରଦୀପ ପଣ୍ଡା ସେହି ମହାନ୍ କଳାକାରଙ୍କ ସୁପୁତ୍ର, ଯେ ଅଭିନୟ କଳାରେ ଜଣେ ପ୍ରତିଷ୍ଠିତ ନାଟ୍ୟଶିଳ୍ପୀ । ଅନ୍ୟତମ ପୁତ୍ର ପ୍ରକାଶ ପଣ୍ଡା ଜନୈକ ନୃତ୍ୟଗୁରୁ

ଭାବରେ ଖ୍ୟାତ। ପୂର୍ବରୁ ସଦସ୍ୟମାନେ ନିଜେ ହିଁ ମଣ୍ଡପର ସାଜସଜ୍ଜାର ଦାୟିତ୍ୱ ନେଉଥିଲେ। ପରେ ଯୁଗ ବଦଳିଲା, ତା'ସହ ଯୁଗରଚି। ସମ୍ପୂର୍ଣ୍ଣ ବ୍ୟବସାୟିକ ପାଲଟିଗଲା ଦଶହରା ପୂଜାର ଆୟୋଜନ। କ୍ରମେ ଧନୁପାଲିର ଦୁର୍ଗାପୂଜା ସମଗ୍ରଓଡ଼ିଶାରେ ପ୍ରସିଦ୍ଧି ଲାଭକରି ଆଉ କେଇବର୍ଷ ପରେ ତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାକୁଯାଉଛି।

ପଢ଼ାଶୁଣାପରେ କିଛିକ୍ଷଣ ଘରେ ରହି ଚାକିରୀ ସନ୍ଧାନରେ ବାହାରିବା ଆଗରୁ ନିଜ ବାସଭୂମିର ସଂସ୍କୃତି ସମ୍ପର୍କରେ ପାଠକମାନଙ୍କୁ ଉପଲବ୍ଧ କରିବା ମୋ ଭଳିଆ ଲେଖକର ନୈତିକ ଦାୟିତ୍ୱ ବୋଲି, ତା ସହ ମୁଁ ନିଜେ ସେଇ ପରମ୍ପରାର ଜଣେ ଜୀବିତ ସୈନିକ, ତେଣୁ ଆଗ୍ରହ ସହକାରେ ଏହି ଆଲେଖ୍ୟ ସେଇ କଳାକାରମାନଙ୍କ ପ୍ରତି ସମର୍ପିତ। ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ଧରି ଗଡିଆସିଥିବା ମହାନ୍ ସାଂସ୍କୃତିକ ପରମ୍ପରାରେ ଲୋକସଂସ୍କୃତି ସହ ଗଣସଂସ୍କୃତି ଏବଂ ଆଧୁନିକ ସଂସ୍କୃତିର ମିଳନୀପୀଠ ଧନୁପାଲିର ମାଟିକୁ ମୋର ଶତପ୍ରଣାମ!!



**ଦୀ**ର୍ଘ ଆଠବର୍ଷ ଧରି ଲଗାୟତ ନାଟକମଞ୍ଚାୟନ କ୍ଷେତ୍ରରେ ଧନୁପାଲିର ଚେତନା ସାଂସ୍କୃତିକ ଅନୁଷ୍ଠାନ ବିଭିନ୍ନ ସ୍ୱାଦର ନାଟକ ମଞ୍ଚସ୍ଥ କରି କେବଳ ସ୍ଥାନୀୟ ଲୋକମାନଙ୍କୁ ମନୋରଂଜିତ କରିନାହିଁ, ବରଂ ନାଟକ କ୍ଷେତ୍ରରେ ନୂତନ ପରିବେଶ ସୃଷ୍ଟିକରିବାରେ ଏବଂ ନୂଆଁ ପିଢ଼ୀର କଳାକାର ଆବିଷ୍କାର କରିବାରେ ସଫଳ ହୋଇଥିଲା। ଆଗରୁ କିଛି ପ୍ରତିଯୋଗିତାରେ ଯୋଗଦେଇ ବିଫଳହେବା ପରେ ଅଠସ୍ତରୀରେ ପୁଣି ନୂଆଁଆଗ୍ରହର ସହ ପ୍ରତିଯୋଗିତାରେ ଅଂଶଗ୍ରହଣ କରିବା ପାଇଁ ଅଣ୍ଟାଭିଡ଼ି ବାହାରିବା ପାଇଁ ପଡିଲା। ଯା ପୂର୍ବରୁ ଡ. ଝସକେତନ ସାହୁ ମନ୍ତ୍ରୀ ହେବା ପରେ ମୁଁ ବ୍ୟକ୍ତିଗତ ଭାବରେ ଭୁବନେଶ୍ୱରରେ ତାଙ୍କସହ ସାକ୍ଷାତକରି ଚେତନାକୁ ରେଜେଷ୍ଟ୍ରୀଭୁକ୍ତ କରିବାପାଇଁ ଅନୁରୋଧ କରିଥିଲି। ସେ ତତ୍‌କ୍ଷଣାତ୍ ଫୋନ୍ କରି କଟକରେ ଥିବା ଅଫିସର୍‌ଙ୍କୁ ଫୋନ୍ କରିଦେଲେ। ପୁନରାୟ କଟକଆସି ସେଇ ନିର୍ଦ୍ଦିଷ୍ଟ ଅଫିସକୁ ଯାଇ ସନ୍ଧ୍ୟାସୁଦ୍ଧା ରେଜିଷ୍ଟ୍ରେସନ ପ୍ରମାଣପତ୍ରଧରି ସମ୍ବଲପୁର ଫେରିଥିଲି। ଅନୁଷ୍ଠାନର ସଭ୍ୟମାନେ ଖୁସି ହୋଇଥିଲେ ଓ ଡ. ସାହୁଙ୍କୁ ଦୁର୍ଗା ମଣ୍ଡପରେ ସଭାକରି ସମ୍ବର୍ଦ୍ଧିତ କରିଥିଲେ।

ସେଇ ଅଠସ୍ତରୀର ପ୍ରଥମ ଭାଗରେ ଜଟଣୀଠାରେ ଚେତନା, ଉତ୍ତରାୟଣୀ କ୍ଲବ ଦ୍ୱାରା ଆୟୋଜିତ ରାଜ୍ୟସ୍ତରୀୟ କ୍ଷୁଦ୍ରନାଟକ ପ୍ରତିଯୋଗିତାରେ ଯୋଗଦେବା ପାଇଁ

ପ୍ରସ୍ତୁତିପର୍ବ ଆରମ୍ଭ କରିଦେଲା । ଇତିମଧ୍ୟରେ ପ୍ରମୋଦ ତ୍ରିପାଠୀ ଯାଜପୁର ନିକଟସ୍ଥ ବରୀ କଲେଜ୍‌ରେ ଇଂରାଜୀ ଅଧ୍ୟାପକ ଭାବରେ ଯୋଗଦେବା ପାଇଁ ବରୀ ଚାଲିଗଲେ । ଜୀବନର ପ୍ରଥମ ନିଯୁକ୍ତି, କେମିତି ବା ଏଡେଇବେ ! ସେ ଗଲାପରେ ଧନୁପାଲିରେ ଏକ ଶୂନ୍ୟସ୍ଥାନ ଦେଖାଦେଲା । କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରସ୍ତାବଅନୁସାରେ ନାଟ୍ୟକାର କ୍ଷୀତିଶ୍ ପୁରୋହିତଙ୍କୁ ଅନୁରୋଧ କରାଗଲା ନାଟକଟିଏ ପାଇଁ । ଆମ ଆଗ୍ରହ ଦେଖି ସେ ମଧ୍ୟ ଉତ୍ସାହର ସହ 'ଅନାଟକ' ନାମକ ଏକ ପରୀକ୍ଷାମୂଳକ ନାଟକ ଅତିଶୀଘ୍ର ଲେଖିକି ଦେଲେ । ଆମେ ସେହି ନାଟକକୁ ବାରବାର ପଢ଼ି ତାର ଗହୀରଭାବକୁ ବୁଝିବାର ଚେଷ୍ଟାକଲୁ । ନିର୍ଦ୍ଦେଶକ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ମନକୁ ନାଟକଟି ଭଲ ଲାଗିଲା । ନାଟକର ସର୍ବମୋଟ ଚରିତ୍ର ସଂଖ୍ୟା ତିନି । ଆମ ନିଷ୍ପତ୍ତି ଅନୁସାରେ ପ୍ରଥମେ ହୀରାକୁଦ ଇଣ୍ଡଲ୍ କ୍ଲବର ଏକାଙ୍କିକା ପ୍ରତିଯୋଗିତାରେ ମଞ୍ଚସ୍ଥ କରି ପରେ ଜଟଣୀକୁ ଯିବାର ଥିଲା । ରିହାର୍ସାଲ ଆରମ୍ଭହେଲା କୃଷ୍ଣଙ୍କ ନିର୍ଦ୍ଦେଶନାରେ । ତାଙ୍କ ସହ ମୁଁ ଓ ଶାନ୍ତନୁ ହୋତା ଏହି ନାଟକରେ ଅଭିନୟ କଲୁ । ହୀରାକୁଦରେ ସଫଳତାର ସହ ଅଭିନୀତ ହେଲେସୁଦ୍ଧା ପୁରସ୍କାର ପାଇବାରେ ଯୋଗ୍ୟ ବିବେଚିତ ହୋଇପାରିଲୁ ନାହିଁ । ଯାର ଦୁଇମାସ ଅନ୍ତରାଳରେ ଜଟଣୀରେ ମଞ୍ଚାୟନର ସମୟ ଆସିଗଲା । ନାଟକରେ ଚରିତ୍ରକହିଲେ ତିନିଜଣ, କିନ୍ତୁ ଜଟଣୀ ଯାଇଥିଲୁ ପ୍ରାୟ କୋଡ଼ିଏରୁ ବାଇଶଜଣ ମଧ୍ୟରେ । ପୁଣିଥରେ ଭଲଭାବରେ ରିହାର୍ସାଲ କଲୁ, କୃଷ୍ଣ, ଶାନ୍ତନୁ ଓ ମୁଁ ବହୁ ପରିଶ୍ରମ କଲୁଁ । ନାଟକ ସମ୍ପୂର୍ଣ୍ଣ ପ୍ରସ୍ତୁତ ହେବାପରେ ନିର୍ଦ୍ଦିଷ୍ଟ ତାରିଖରେ ସମ୍ବଲପୁରରୁ ଭୁବନେଶ୍ୱର ଯାଉଥିବା ସ୍ଲିପରବସ୍‌ରେ ସମସ୍ତେ ବସିପଡିଲୁ । ଯେ ଇଚ୍ଛାକଲା, ବାହାରିପଡିଲା । ନାଟକସହ ଯୋଡ଼ିହୋଇ ନଥିବା ସଭ୍ୟମାନେ ମଧ୍ୟ ବୁଲିଯିବା ଉଦ୍ଦେଶ୍ୟରେ ବାହାରିପଡିଲେ । ସୁବାସ ତ୍ରିପାଠୀ, ହର୍ଷ ସାମଲ, ଲଳିତ ଜେନା, ଶିବନାରାୟଣ ପଣ୍ଡା, ନରେନ୍ଦ୍ର ରାୟଗୁରୁ, ସତ୍ୟ ବେହେରା ଆଦି ବନ୍ଧୁବର୍ଗଙ୍କ ସହ ଆମେ ତିନିଜଣ ଅଭିନେତା ଜଟଣୀ ଉଦ୍ଦେଶ୍ୟରେ ବାହାରିପଡିଲୁ । ଭୁବନେଶ୍ୱର ଯାଇ ସେଠାରୁ ଅନ୍ୟଏକ ବସ୍ ଯୋଗେ ଜଟଣୀ ପହଞ୍ଚିଗଲୁ । ଫଟୋ ଉଠାଇବା ପାଇଁ ମହାନ୍ତିପଡ଼ାର ବିଷ୍ଣୁପ୍ରସାଦ ମିଶ୍ରଙ୍କୁ ସାଙ୍ଗରେ ନିଆଯାଇଥିଲା । ନାଟକ ସଫଳତାର ସହ ଅଭିନୀତ ହେଲା । ବିଚାରକ ଭାବରେ ନାଟ୍ୟକାର ପ୍ରାଣବନ୍ଧୁ କର, ନୃତ୍ୟବିତ୍ ଧୀରେନ୍ ଦାସ ଓ ଅଭିନେତା ବିଜୟ ମହାନ୍ତି ଯୋଗଦେଇଥିଲେ । ନାଟକ ମଞ୍ଚାୟନପରେ ବିଚାରକ ଓ ପରିଚାଳକମାନଙ୍କ ସହ ଫଟୋ ହେଲୁ । ସକାଳୁ ଉତ୍ତରାୟଣୀ ମନ୍ଦିରଯାଇ ଦର୍ଶନକରି ଭୁବନେଶ୍ୱର ଅଭିମୁଖେ ଯାତ୍ରା କଲୁ । ସେଠାରେ ଡ. ଝସକେତନ ସାହୁଙ୍କ ବାସଭବନକୁ

ଯାଇ ତାଙ୍କସହ ଦେଖାକଲୁଁ । ରାତିରେ ପୁଣି ସ୍ଲିପରବସ୍ ଯୋଗେ ଧନୁପାଲି ଫେରି ଆସିଥିଲୁ । ନାଟକ ଅପେକ୍ଷା ଏହି ଗସ୍ତଟି ଆମସମସ୍ତଙ୍କୁ ବଣଭୋଜି ଭଳିଆ ଲାଗିଥିଲା । ହେଲେ, ଫଳାଫଳ ଯେବେ ପ୍ରକାଶିତ ହେଲା, ପୁଣି ପୁରସ୍କାରରେ ଶୂନ୍ୟ । ଆଉ କେମିତି ନାଟକକଲେ ପୁରସ୍କାର ମିଳିଥାଏ, ସେ ବାବଦରେ ଚର୍ଚ୍ଚା ଖୁବ୍ ଚାଲିଲା । ହେଲେ ପଛକୁ ହଟିବା ନାହିଁ, ଏହି ଚିନ୍ତାରେ ପୂର୍ବରୁ ରାଉରକେଲା ଲୋକନାଟକ ମହୋତ୍ସବ ପାଇଁ ପ୍ରମୋଦଙ୍କ ରଚିତ 'କାଳପୁରୁଷ' ନାଟକ ପଠାଯାଇଥିଲା । ଅଠସ୍ତରୀ ଦଶହରା ପୂର୍ବରୁ ନାଟକଟି ମନୋନୀତ ହେବା ଚିଠି ମଧ୍ୟ ଆସିଗଲା । ଦଶହରା ପରେ ରିହାର୍ସାଲ ଆରମ୍ଭହେଲା ନୂତନ ଉନ୍ମାଦନାରେ । କୃଷ୍ଣଚନ୍ଦ୍ରଙ୍କ ନିର୍ଦ୍ଦେଶନାରେ ସେ ନିଜେ, ଶାନ୍ତନୁ, ସୁରେଶ, ଜ୍ଞାନ ଜେନା ଆଦି କଳାକାରମାନେ ଏହି ନାଟକରେ ଅଂଶଗ୍ରହଣ କଲେ । ଭଲ, ଉଚ୍ଚକୋଟୀର ନାଟକଟିଏ । ମୁଁ ଏଥିରେ ଅଭିନୟ ନକରି ଅନ୍ତରାଳରୁ ସହଯୋଗ କରିଥିଲି । ରିହାର୍ସାଲ ଠିକ୍ ଚାଲିଥିଲା, ତେବେ ନାଟକଟିର ସମୟ କମ୍ ହୋଇଯାଉଥିଲା । ଏହି ସମୟରେ ସବ୍ୟସାଚୀ ମହାପାତ୍ର, ତାଙ୍କ ଭାଇ ଚିଣ୍ଟୁ ମହାପାତ୍ରଙ୍କ ଆବିର୍ଭାବ ଘଟିଲା । ସେମାନଙ୍କ ପ୍ରସ୍ତାବ ଅନୁସାରେ ସମୟ ଗଡେଇବାପାଇଁ ଜଣେ ପୁରୋହିତଙ୍କ ଚରିତ୍ର ସୃଷ୍ଟିକରାଯାଇ ପ୍ରତ୍ୟେକ ଦୃଶ୍ୟର ଲାଇଟ୍ ଅଫ୍ ବେଳେ ସେ ପୂଜା କରିବା ଛଳରେ ଘଣ୍ଟି ବଜାଇବେ, ଏଭଳି ପାଞ୍ଚଟି ଦୃଶ୍ୟ ହିସାବରେ ଦଶମିନିଟ୍ ନାଟକକୁ ବଢ଼ାଯାଇପାରେ । ସେମିତି ହିଁ ହେଲା । ରାଉରକେଲା ଯାଇ ନାଟକ ମଞ୍ଚସ୍ଥ କଲୁ । ଏବେ ଭାବଗର୍ଭକ ବିଷୟବସ୍ତୁର ନାଟକରେ ପୁରୋହିତ ଘଣ୍ଟି ବଜାଇବା ଦୃଶ୍ୟ ନାଟକସହ ମେଳ ଖାଇଲା ନାହିଁ । ନାଟକ ଆଉ ଉପରକୁ ଉଠିପାରିଲା ନାହିଁ, ଦର୍ଶକଙ୍କ କଥା ଅଲଗା, ଆମେ ପରଦା ପଛପଟେ ରହି ସହଯୋଗ କରୁଥିବା ପିଲାମାନେ ମଧ୍ୟ ନାଟକର ଦୟନୀୟ ଅବସ୍ଥାକୁ ଅନୁବବ କଲୁ । ପୁଣି ଶୂନ୍ୟହସ୍ତ ।

ଆଇନ୍ ମହାବିଦ୍ୟାଳୟରେ ଶେଷ ବର୍ଷ, ମୁଁ ଏହି ଅନୁଷ୍ଠାନର ବାର୍ଷିକ ନାଟକ ବାବଦରେ ଆଉ ଆଗ୍ରହ ଦେଖାଇ ପାରିନଥିଲି । ତେବେ, ଏହି ବର୍ଷ କଲେଜ୍ ତରଫରୁ ନାଟକ 'ପ୍ରତୀକ୍ଷା' କାଳିବାଡ଼ି ମଣ୍ଡପରେ ମଞ୍ଚସ୍ଥ ହୋଇଥିଲା ଏବଂ ଏହି ନାଟକର ମୁଖ୍ୟ ଚରିତ୍ରରେ ଅଭିନୟ କରି ଉତ୍ତମ ବେହେରା ନାମରେ ଜଣେ ଅଭିନେତା ପୁରସ୍କୃତ ହେବା ଖବର ପାଇ ତାଙ୍କସହ ପରିଚିତ ହେଲି । ଅଣାଅଶୀରେ ପୁନଶ୍ଚ ଲୋକନାଟକ ମହୋତ୍ସବରେ ଯୋଗଦେବାର ନିଶା ଆମକୁ ଘାରିଥିଲା । ପ୍ରମୋଦଙ୍କ ଅନୁପସ୍ଥିତିରେ କ୍ଷୀତିଶ୍ ବାବୁଙ୍କୁ ପୁଣି ଥରେ ଅନୁରୋଧ କରାଗଲା ନାଟକଟିଏ ପାଇଁ । ସେ ମଧ୍ୟ ଆମ

ଅନୁରୋଧ ଏଡି ନପାରି ଛ ନ ସାତ ନ ନାମରେ ଏକ ନାଟକ ରଚନାକରି ପଠାଇଲେ । ନାଟକର ଶୀର୍ଷକ ଆମକୁ ଆଚମ୍ବିତ କଲା । କ୍ଲବରେ ବସି ତାକୁ ପଢ଼ିଲୁ । ଛ ନ ସାତ ନ ମାନେ ଛଅ ହଜାର ନ ଶହ ଅଣାଅଶୀ ମସିହାରେ ଏ ପୃଥିବୀର ଅବସ୍ଥା କଣ ହୋଇଥିବ, ମଣିଷ ସଭ୍ୟତା ଥିବ ନା ନାହିଁ, ଏଭଳି ଏକ ଉଦ୍ଭଟୀୟ କଥାବସ୍ତୁ ଉପରେ ଆଧାରିତ । ରାଉରକେଲା ପଠାଗଲା, ଲୋକନାଟକ ମହୋତ୍ସବ ପାଇଁ ଆମନ୍ତ୍ରଣ ଆସିଗଲା । ଦଶହରା ପୂର୍ବରୁ ନାଟକଟି ମନୋନୀତ ହେବାର ସମ୍ବାଦ ଯେତିକି ଆନନ୍ଦ ଦେଇଥିଲା, ମୋର ସ୍ୱାସ୍ଥ୍ୟ ଜନିତ ସମସ୍ୟା ମୋତେ ସେତିକି କଷ୍ଟ ଦେଇଥିଲା । ବାମ ହାତର ପୀଡ଼ା ଯୋଗୁଁ ମୁଁ ଆଉ ମୋ ଆୟତ୍ତରେ ନଥିଲି । ହାତ ଗୋଟାକଯାକ ପ୍ରଚଣ୍ଡ ପୀଡ଼ା । ଧର୍ମଶାଳା ଗଳିରେ ରହୁଥିବା ଡ. ବଡ଼ପଣ୍ଡା ବୋଲି ଜଣେ ଡାକ୍ତରଙ୍କୁ ଦେଖାଗଲା । ସେ ଯଥାଶୀଘ୍ର ଅପରେସନ୍‌ର ଉପଦେଶ ଦେଇ କଟକ ବଡ଼ ମେଡିକାଲ୍‌ର ପ୍ରଫେସର୍ ରାଧାଚରଣ ମହାନ୍ତିଙ୍କ ନିକଟକୁ ଯିବାପାଇଁ ଲେଖିଦେଲେ । ଅନନ୍ୟୋପାୟ ହୋଇ ମାଁ, ଦାଦା ମୋତେ ସାଙ୍ଗରେ ଧରି ବସ୍‌ରେ କଟକ ଅଭିମୁଖେ ଯାତ୍ରାକଲେ । କଟକ ବାଦାମବାଡ଼ିର ଏକ ଲଜ୍‌ରେ ରହି ଯଥାଶୀଘ୍ର ଡାକ୍ତରଙ୍କ ନିକଟକୁ ନେଇଗଲେ । ଡାକ୍ତର ପରୀକ୍ଷା କରି ରାତିରେ ଅପରେସନ୍ ହେବ ବୋଲି କହି ଚାଲିଗଲେ । ବକ୍ସିବଜାର ପାଖ ଏକ ନର୍ସିଂହୋମ୍‌ରେ ଏଡମିଟ୍ ହେଲି । ସେତେବେଳକୁ ମୋ ବାମହାତଟା ସାରା ଭିତରେଭିତରେ ପୂଜ ମାଡ଼ିଯାଇଥିଲା । ଭଙ୍ଗାହାତ ଯୋଗୁଁ କାନ୍ଧ ଓ ହାତର ଯୋଗାଯୋଗ ସ୍ଥାନର ହାଡ଼ ଘସି ହୋଇ ସମଗ୍ର ହାତଟିକୁ ପଚେଇ ଦେଇଥିଲା । ଅସ୍ତ୍ରୋପଚାର କରି ପୂଜ କାଢ଼ିବାକୁ ପଡିବ । ସେଇ ମାମୁଁ ଘରେ ମାଁ ତେଲ ମଖାଇବା ବେଳେ ଯେଉଁ ଖସିପଡିଥିଲି ବାର ଚଉଦ ପାହାଚ ତଳକୁ, ସେଇ କାରଣ ଯୋଗୁଁ ହିଁ ଆଜିର ଏଇ ଅବସ୍ଥା ।

ରାତିର ମୂଲାୟମ୍ ଛାତିରେ କଟକ ଶୋଇପଡିଥିଲା । ନିଶ୍ଚେତକ ଡାକ୍ତର ମୋ ମୁହଁକୁ ଦେଖି କନାରେ କଣ ଗୋଟାଏ ଢାଙ୍କି ଦେଲେ । ବେଶ୍, ମୋର ଆଉକିଛି ମନେନାହିଁ, ସକାଳୁ ମୁଁ ମୋତେ ଆବିଷ୍କାରକଲି ମୋ ଚେମ୍ବର୍‌ରେ, ବାମ ହାତ ବେନ୍‌ଡେଜ୍ କରାଯାଇ ପଲଙ୍କର ବାଡ଼ରେ ଝୁଲାଇ ଦିଆଯାଇଥାଏ । ପୂର୍ବପୀଡ଼ା ନଥିଲା, ହେଲେ ଅପରେସନ୍ ଜନିତ କଷ୍ଟ ସାମାନ୍ୟ ଅନୁଭୂତ ହେଉଥିଲା । ସେଭଳି ଅବସ୍ଥାରେ ଆଉ ଦଶଦିନ ଦଶରାତି କଟାଇ, ଦଶମଦିନରେ ବେଣ୍ଡେଜ୍ ଓ ସିଲାଇ ଖୋଲିବା ପରେ ନର୍ସିଂହୋମ୍‌ରୁ ଛାଡ଼ପାଇଲି, ମାଁ ଓ ଦାଦାଙ୍କ ସହ ସମ୍ବଲପୁର ଫେରିଆସିଥିଲୁ । ଧନୁପାଲି ଛକରେ ଓହ୍ଲାଇ ଦଶମୀ ତିଥିର ମାଁ ଦୁର୍ଗାଙ୍କୁ ସକାଳୁସକାଳୁ ମୁଣ୍ଡିଆଟିଏ ମାଇଲି, ଧନ୍ୟବାଦ ଦେଲି ମାଁଙ୍କୁ, ମୋତେ ବଞ୍ଚାଇ ରଖିଲା, ଆଉ କିଛି

ସାମାଜିକ, ସାଂସ୍କୃତିକ କାର୍ଯ୍ୟରେ ନିଜକୁ ସମର୍ପିତ କରିବା ପାଇଁ । ବାଗୁଦା ମୋର ସୁସ୍ଥ ହେବା କାମନାରେ ସମଲେଶ୍ୱରୀ ମନ୍ଦିରରେ ପୂଜା ବାଡ଼ିଥିଲେ ।

ସକାଳର ସୂର୍ଯ୍ୟ ରାତିର ଅନ୍ଧକାରକୁ ସମ୍ପୂର୍ଣ୍ଣ ଠେଲି ନିଜ ରାଜତ୍ୱ ସମ୍ଭାଳି ସାରିଥାଏ, ଆମେ ଘରକୁ ପ୍ରବେଶ କରୁକରୁ ଏକ ନୂଆଁ ପୁଲକରେ ମୁଁ ଉଚ୍ଛୁଳି ପଡୁଥାଏ, ଦଶ ଦିନ ଧରି ବନ୍ଧୁଗଣରୁ ବଞ୍ଚିତ ଥିଲି, ଦଶହରାର ଧନୁପାଲି ପରିବେଶରୁ ଦୁରେଇ ଯାଇଥିଲି, ପୁଣି ପୂର୍ବାବସ୍ଥାକୁ ଫେରି ନୂଆଁଜୀବନଟାଏ ଆରମ୍ଭକରିବାର ସଙ୍କଳ୍ପଟିଏ ଯେମିତି ମୋ ରକ୍ତର ପ୍ରତିଟି ବିନ୍ଦୁରେ ପ୍ରବାହିତ ହେଉଥାଏ । ।



**ଭା**ବୁଥିଲି, ମୁଁ ଯେଉଁ ପାହାଡ଼ଟିକୁ ଏତେକଷ୍ଟରେ ଚଢୁଛି, ସେଇଟା ପୁରା ଟାଙ୍ଗରା, ପଥୁରିଆ, ସେଇ ପାହାଡ଼ର ଛାତିରେ ସବୁଜିମା ନାହିଁ, ବୃକ୍ଷଡାଳ କିଛି ନାହିଁ, ସରସ ସୁନ୍ଦର ଫଳମୂଳ କିଛିନାହିଁ । । ଜ୍ୟୋତିବିହାରରୁ ବିଦାୟ ବେଳାରେ କବି ପ୍ରଦୀପ ପଣ୍ଡା ମୋ ଅଟୋ ଡାଏରୀରେ ଗାରେଇ ଦେଇଥିବା ଦି' ଧାଡ଼ି ଏବେ ବି ସୁରକ୍ଷିତ ଅଛି ସେଇ କାଗଜପୃଷ୍ଠାରେ । କବିଜଣେ, ବିଦାୟମୁହୂର୍ତ୍ତରେ ଭାବପ୍ରବଣ ହୋଇ କିଛି ଆଳଙ୍କାରିକ ଭାଷାର ପୁଟରେ ଦି'ଅକ୍ଷର ଲେଖିଥିବେ ବୋଲି ଅନେକ ଆଶାଥିଲା ମୋର, ହେଲେ ସେ କଲମଟିକୁ ଛୁରୀକା ଭଳି ଧରି ଗାରେଇଦେଲେ, ଦେଖ ପକ୍ଷୀ ବୃକ୍ଷଡାଳେ, ବସିଛି ପତ୍ରଗହଳେ । । । ଏବେ ପାହାଡ଼ର କୋଡ଼ିଏବାଇଶି ପାହାଚ ଉପରକୁ ଆସି ଦେଖୁଛି, ନା ଏଠି ବୃକ୍ଷଡାଳ ଅଛି, ନା କୌଣସି ପତ୍ର ଗହଳ ଅଛି ଯେ ସେଠି ପକ୍ଷୀଟି ନିଜକୁ ଲୁଚାଇ କୁହୁତାନ ଦେବ । ଶିଖର ଯେ କେଉଁଠି, ଆଖି ପାଉନାହିଁ, ସତେଜ ସୂର୍ଯ୍ୟକିରଣରେ ଖାଲି ଦିଶୁଛି ଆକାଶର ପ୍ରଶସ୍ତଛାତି ପରେ ମେଘର ନୀରବ ଶୋଭାଯାତ୍ରା । ହାରିଗଲେ ଚଳିବନାହିଁ, ମୋତେ ଚଢ଼ିବାକୁପଡ଼ିବ ଏଇ ପପଙ୍ଗାପାହାଡ଼ ସଦୃଶ ଗୋଜା ପଥରର କର୍କଶ ବକ୍ଷରେ । ଏଠି ବି ତ ଦିନେ ସୁରେନ୍ଦ୍ର ସାଏ ଭଳି ଲଢୁଆ ବୀର ସ୍ୱାଧୀନତାର ଅନୁସନ୍ଧାନ କରିଥିଲା, ଶତ୍ରୁ ଅବରୋଧ ପାଇଁ ସିଂହୋଡ଼ାପାଟିର ପର୍ବତ ଉପରୁ ଖସାଇ ଦେଉଥିଲା ପ୍ରସ୍ତର ଖଣ୍ଡ, ଶତସିଂହର ପରାକ୍ରମରେ ଉତ୍ତେଜିତ କରୁଥିଲା ବାରହାତର ତରବାରୀ, ତା ଉଲଗୁଲାନ୍‌ର ଡାକରାରେ ପାଗଳଙ୍କଭଳି ଘରଛାଡ଼ି ଧାଇଁଆସୁଥିଲେ ଲଢ଼େଇର ମୈଦାନକୁ, ଅକୁହା, ଅପୁଛା ଢାଳିଦେଉଥିଲେ ଲହୁ ମାତୃଭୂମିର ସୁରକ୍ଷାପାଇଁ । । ମୁଁ ବା ଏଇ କିଛିବାଟ ଆସି ପରାଜିତ ସୈନିକଭଳି ପଛଘୁଞ୍ଚା ଦେବି କାହିଁକି ?

ଅଣାଅଣି ପ୍ରଥମ ପ୍ରହରରେ ସ୍ୱୀକୃତି ପାଇଲି ଆକାଶବାଣୀ ସମ୍ବଲପୁର ନାଟକ ବିଭାଗର କଳାକାର ଭାବରେ, ଏଇଠୁ ଆଉ ପଛକୁ କିଛି ଦେଖାଗଲାନାହିଁ। ପ୍ରଭାତବେଳାରେ ଦୂରଆକାଶର ଦିଗବଳୟ ପରେ ଦେଖିବାକୁ ପାଇଲି କ୍ଷୁଦ୍ର ତାରାଟିଏ ମିଞ୍ଜିମିଞ୍ଜି ହୋଇ ଜଳୁଛି, ମୋତେ ଜଣାଗଲା, ଯେମିତି ସେ ହସୁଛି, ମୋତେ ହାତଠାରି ଡାକୁଛି, କହୁଛି ଯେମିତି, ମୁଁ ଦୂର ପାହାଡ଼ ସୁନ୍ଦର ନୁହେଁ, ମୁଁ ସୁଦୂର ନକ୍ଷତ୍ରର ମଖମଲି ଚେନାଏ ହସ। ତା'ଭାଷା ମୋ ହୃଦୟରେ ଅମୃତବିନ୍ଦୁ ଭଳି ନିର୍ଝରିଗଲା। ଶରତ ନାରାୟଣ ବେହେରା ଆକାଶବାଣୀର ନାଟକ ବିଭାଗର କାର୍ଯ୍ୟକ୍ରମ ନିଷ୍ପାଦକ ଥିବାବେଳେ ମୋତେଡାକି ପାଣ୍ଡୁଲିପିମାନ ଦେଉଥିଲେ, କାର୍ବନ୍‌କାଗଜ ମଡାଇ ଓତାରିବା ପାଇଁ। ଗୋଟିଏ ପାଣ୍ଡୁଲିପି ଓତାରିଲେ ମିଳୁଥିଲା କୋଡିଏ ଟଙ୍କା। ମୋର ନାଟକପ୍ରତି ଆଗ୍ରହଦେଖି ସେ ବାରବାର ଅନ୍ୟ ଲେଖକଙ୍କ ପାଣ୍ଡୁଲିପି ମାନ କପି କରିବାପାଇଁ ଦେଉଥିଲେ। ପରେ ମୁଁ ଆଗ୍ରହସହକାରେ ଆତତାୟୀ ନାମରେ ଏକ ଅଧଘଣ୍ଟିଆ ନାଟକ ଦେଲି ରେକର୍ଡିଂପାଇଁ। ଏହି ନାଟକଟି ଗଙ୍ଗାଧର ମେହେର ମହାବିଦ୍ୟାଳୟର ଜନାର୍ଦ୍ଦନ ପୂଜାରୀ ଛାତ୍ରାବାସର ବାର୍ଷିକୋତ୍ସବ ଅବସରରେ ଅଭିନେତା ଦୀପ୍ତି ପତିଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହୋଇଥିଲା। ଭାବୁଥିଲି, ନାଟକଟି ରେକର୍ଡିଂ ପାଇଁ ମନୋନୀତ ହେବନାହିଁ। କିନ୍ତୁ ମୋ ଧାରଣା ଭୁଲ୍‌ଥିଲା, ନାଟକଟି ପ୍ରସାରଣ ପାଇଁ ମନୋନୀତ ହେଲା। ମୁଁ ଭାବିଲି, ମୋ ରାସ୍ତା ଫିଟିଗଲା, ଯେଉଁ ରାସ୍ତାକୁ ମୁଁ ବାଟରେ ହଜାଇଦେଇ ବାଟବଣା ହୋଇଯାଇଥିଲି। ପରେ ଆତ୍ମବିଶ୍ୱାସରେ ଭରପୁର, ଅଡିସନ୍ ଦେଲି, ସଫଳ ହେଲି। ଆଗରୁ ବି ଅଡିସନ୍ ଦେଇପାରିଥାନ୍ତି, ହେଲେ ଯୋଗ ଠିକ୍ ନଥିଲା। ପ୍ରଥମ ଅଡିସନ୍‌ରେ କୃତକାର୍ଯ୍ୟ ହେବାକୁ ମୁଁ ଛୋଟଘଟଣା ପରି ନଦେଖି ତାକୁ ଆଧାର କରି ଆଗକୁ ମାଡିଯିବାର ପ୍ରୟାସକଲି। ମୋ ଅଭିନୀତ ପ୍ରଥମ ନାଟକ ପ୍ରସାରିତ ହେଲା ସେଇବର୍ଷ, ନାଟକର ନାମ ଥିଲା 'ଉର୍ତ୍ତୀର୍ଣ୍ଣ ଆକାଶ', ସେଇ ଶରତବାବୁ ହିଁ ଥିଲେ ପରିଚାଳନା ଦାୟିତ୍ୱରେ। ମୋର ସୌଭାଗ୍ୟ, ମନ ଖୋଜୁଥାଏ ଯାହା ପରି ସେଇ ନାଟକର ଅନ୍ୟ କଳାକାର ଥିଲେ ଉତ୍ତମ ବେହେରା। ବୋଧହୁଏ, ସୁଦେଷ୍ଣା ମିଶ୍ର ସେଇ ନାଟକର ନାରୀ ଚରିତ୍ରରେ ଅଭିନୟ କରିଥିଲେ। ସର୍ବ ମୋଟ ତିନୋଟି ଚରିତ୍ର ହିଁ ଥିଲା ସେ ନାଟକରେ। ନାଟକଟି ଶ୍ରୋତାମାନଙ୍କ ଦ୍ୱାରା ପ୍ରଶଂସିତ ହେବାପରେ ଉତ୍ତମ ବେହେରାଙ୍କ ସହ ମୋର ସମ୍ପର୍କ କ୍ରମଶଃ ଘନିଷ୍ଠ ହେବାରେ ଲାଗିଲା। ପରେ ପରେ ଆମେ ଦୁଇଜଣ ଅନେକ ନାଟକରେ ଏକତ୍ର ଅଂଶଗ୍ରହଣ କରିଛୁ, ତନ୍ମଧ୍ୟରୁ ରମାପଦ ନନ୍ଦଙ୍କ ପରିଚାଳନାରେ ପ୍ରଯୋଜିତ 'ସେଇ କଳାପଥର' ନାଟକଟି ଆକାଶବାଣୀ 'ଜାତୀୟପୁରସ୍କାର'ରେ ମଣ୍ଡିତ ହୋଇଥିଲା।

ଅଣାଅଣୀ ଦ୍ୱିତୀୟ ପର୍ଯ୍ୟାୟରେ ଘଟିଲା ଜୀବନ ଜୀବିକାର ପ୍ରଥମଦୃଶ୍ୟ । ପୂର୍ବରୁ ଅଠଷ୍ଠରୀରେ ବ୍ରଜରାଜନଗର ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ପଦବୀପାଇଁ ସାକ୍ଷାତକାର ଦେଇଥିଲି । ମୋ ସହ ଶ୍ୟାମସୁନ୍ଦର ଧର ଓରଫ୍ ବାରୁଦା ମଧ୍ୟ ଆସିଥିଲେ । ଫଳାଫଳରେ ସେ ପ୍ରଥମ, ମୁଁ ଦ୍ୱିତୀୟ ସ୍ଥାନରେ ରହିଲି । ସେ ସେଠିରହି ତାଙ୍କବୃତ୍ତିର ଶୁଭାରମ୍ଭ କଲେ, ମୁଁ ସଦ୍ୟ ଏମ.ଏ. ପାସ୍ ଥିବାରୁ ସମୟର ଡାକରାକୁ ଅପେକ୍ଷା କଲି । ଅଣାଅଣୀରେ ପରମାଣପୁର କଲେଜ ପାଇଁ ଡାକରା ଆସିଲା । ସେଇଠି ଓଡ଼ିଆ ବିଭାଗର ମୁଖ୍ୟ ପରୀକ୍ଷକ ଥିଲେ ସ୍ୱୟଂ ମଙ୍ଗଳୁଚରଣ ବିଶ୍ୱାଳ । ମଙ୍ଗଳୁବାବୁ ସେତେବେଳେ ପରମାଣପୁର ହାଇସ୍କୁଲରେ ପ୍ରଧାନଶିକ୍ଷକ ଥିଲେ । ଜ୍ଞାନୀ, ଗୁଣି ଲୋକ, ଡବଲ୍ ଏମ.ଏ. ଉଭୟ ଇଂରାଜୀ ଓ ଓଡ଼ିଆ ବିଷୟର । ଗାଁର ମୋହ ତାଙ୍କୁ ଅଧ୍ୟାପକ ହେବାରୁ ବଞ୍ଚିତ କରିଥିଲା । ଦି ଦି ଟା କଲେଜରୁ ଡାକରା ପାଇ ସୁଦ୍ଧା ସେ ଶିକ୍ଷକତା ବୃତ୍ତିକୁ ଆପଣେଇ ନେଲେ ଗାଁ ବାରଡୁମରିରୁ ଯା'ଆସ କରି, ଶେଷରେ ସେଇ ପରମାଣପୁର ହାଇସ୍କୁଲରୁ ହିଁ ଅବସର ନେଲେ । ସାକ୍ଷାତକାର ଏକ ପ୍ରକ୍ରିୟା ଥିଲା ମାତ୍ର, ଯୋଗ୍ୟତା ଲାଭକରି ଅଗଷ୍ଟ ଷୋହଳ ତାରିଖରେ କାର୍ଯ୍ୟରେ ଯୋଗଦେଲି । ସେ ସମୟରେ ସାରାଓଡ଼ିଶାରେ ନୂଆଁକଲେଜ୍ ଖୋଲିବାର ଏକ ପ୍ରବାହ ଚାଲିଥିଲା । ପରମାଣପୁରର ଏହି କଲେଜ୍ ଉଦ୍‌ଘାଟନ କରିବା ଅବସରରେ ଅତିଥି ତତ୍କାଳୀନ ମନ୍ତ୍ରୀ ଡା. ଝସକେତନ ସାହୁ କହିଥିଲେ, ଏହା ମୋର ଉଦ୍‌ଘାଟନ କରିବାର ଚୌବନତମ କଲେଜ । ପରମାଣପୁର ସହ ଲଇଡାରେ ମଧ୍ୟ ଏକ କଲେଜ ସମାନବର୍ଷରେ ଖୋଲିଲା । ପରମାଣପୁର କଲେଜ ଡା. ଝସକେତନ ସାହୁ ମହାବିଦ୍ୟାଳୟ ଏବଂ ଲଇଡା କଲେଜ ତାଙ୍କ ସହଧର୍ମିଣୀ ଦୂତିକା ସାହୁଙ୍କ ନାମରେ ନାମିତ ହେଲା । ସମ୍ଭବତଃ ବନ୍ଧୁ ପ୍ରଦୀପ ରାୟ ଲଇଡା କଲେଜରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗଦେଇଥିଲେ, ପରେ ସେ ବୌଦ୍ଧ ମହାବିଦ୍ୟାଳୟରେ ଯୋଗଦେଲେ ।

ପରମାଣପୁର କଲେଜରେ ଯୋଗ ଦେବା ପୂର୍ବରୁ କଲେଜ ବାବଦରେ ଏକ ମଖମଲି ଧାରଣା ଥିଲା । ଯେଉଠି ଉଚ୍ଚଶିକ୍ଷା ପ୍ରଦାନ କରାଯାଏ, ସେଇଠି ସବୁ ଉଚ୍ଚ ମାନସିକତା, ଉଚ୍ଚ ଜ୍ଞାନସମ୍ପନ୍ନ ବ୍ୟକ୍ତିମାନେ ଜଡ଼ିତ ଥିବେ ବୋଲି ମୁଁ ଭାବୁଥିଲି । ପରମାଣପୁର ହାଇସ୍କୁଲ ପ୍ରକୋଷ୍ଠରେ ପ୍ରଥମେ କଲେଜ ଆରମ୍ଭ ହେଲା, ପରେ ହାଇସ୍କୁଲର ଖାଲିଥିବା ଛାତ୍ରାବାସକୁ ଉଠିଯାଇ ସେଠାରେ କାର୍ଯ୍ୟକ୍ଷମ ହେଲା । ମୋସହ ଅନ୍ୟବିଭାଗରେ ଯେଉଁ ଅଧ୍ୟାପକମାନେ ଏଠାରେ ଯୋଗ ଦେଲେ, ସେମାନେ ହେଲେ ଭୋଇପାଲିର ଭକ୍ତବନ୍ଧୁ ପ୍ରଧାନ ଅର୍ଥନୀତି ବିଭାଗରେ, ବିଶ୍ୱସ୍ୱରୂପ

ରାଜନୀତି ବିଭାଗରେ, ଦୈତାରୀ ପଟେଲ ଇଂରାଜୀ ବିଭାଗରେ, ସୁଦର୍ଶନ ନାଏକ ଇତିହାସ ବିଭାଗରେ, ପ୍ରମୋଦ ନାଏକ କିରାଣୀ ଭାବରେ, କୃଷ୍ଣଚନ୍ଦ୍ର ପିଅନ୍ ଭାବରେ । କିଛିମାସ ପରେ ବନ୍ଧୁ କୈଳାସ ତ୍ରିପାଠୀ ରାଜନୀତି ବିଭାଗର ଅନ୍ୟ ଏକ ପଦବୀରେ ଯୋଗଦେଲେ । ପ୍ରଥମରୁ ଇଂରାଜୀବିଭାଗ ଅଧ୍ୟାପକ ଶୂନ୍ୟ ଥିଲା, ପରେ ଦୈତାରୀ ପଟେଲ ଯୋଗ ଦେଲେ । ଇତିହାସ ବିଭାଗର ଅଧ୍ୟାପକ ସୁଦର୍ଶନ ନାଏକ ସିନିୟର ଥିବାରୁ ସେ ଅଧ୍ୟକ୍ଷ ଭାବରେ ଦାୟିତ୍ୱ ଗ୍ରହଣକଲେ । ତାବେ ତାଙ୍କ ପରିଚାଳନାଗତ ତ୍ରୁଟିପାଇଁ ତାଙ୍କୁ କଲେଜରୁ ସମ୍ପୂର୍ଣ୍ଣ ଅପସାରଣ କରାଯାଇ, ଅଧ୍ୟାପକମାନଙ୍କ ସହ ଆଲୋଚନା କରି, ବରିଷ୍ଠତା ଭିତ୍ତିରେ ଯଦିଓ ମୁଁ ସମସ୍ତଙ୍କଠାରୁ ସିନିୟର ଥିଲି ଏବଂ ଅଧ୍ୟକ୍ଷ ଦାୟିତ୍ୱ ନେବାପାଇଁ ଅନିଚ୍ଛୁକ ଥିବାରୁ ଇଂରାଜୀ ଅଧ୍ୟାପକ ଦୈତାରୀ ପଟେଲଙ୍କୁ ଅଧ୍ୟକ୍ଷ ପଦବୀ ଦିଆଗଲା । ପରେ ଶାନ୍ତିଲତା ନାଏକ ଇତିହାସ ବିଭାଗର ଅଧ୍ୟାପିକା ଭାବରେ ଯୋଗଦେଲେ । ମୁଁ ପ୍ରଥମବର୍ଷ ଧନୁପାଲିରୁ ପରମାଣପୁର ସତର କିଲୋମିଟର ସାଇକଲ୍‌ରେ ଯିବାଆସିବା କଲି । ପରମାଣପୁରର ପ୍ରସିଦ୍ଧ ପାଲାଗାୟକ ବାବାଜୀ ନାଥ ଏବଂ କୁଚିଣ୍ଡା ବିଧାୟକ ଜଗଦେଶ୍ୱର ମିର୍ଦ୍ଧା ଏହି ମହାବିଦ୍ୟାଳୟର ପ୍ରତିଷ୍ଠା କ୍ଷେତ୍ରରେ ମୁଖ୍ୟଭୂମିକା ଗ୍ରହଣକରିଥିଲେ । ବାବାଜୀ ନାଥ ମୋଠୁ ସର୍ତ୍ତ ରଖିନେଲେ, ପ୍ରଥମ ଛ'ମାସର ଦରମା ମୁଁ ଦାବୀ କରିବିନାହିଁ । ପରିସ୍ଥିତିର ତାଡ଼ନାରେ ମୁଁ ହଁ ସିନା ଭରିଥିଲି, ହେଲେ ସେଇଟା ମୋର ଥିଲା ମସ୍ତବଡ଼ ଭୁଲ୍ । ଚାକିରୀ ଜୀବନର ଆରମ୍ଭରୁ ଏଭଳି ଆର୍ଥିକ ବଦାନ୍ୟତା ମୋର ସମଗ୍ର ବୃତ୍ତି ଜୀବନକୁ କଳୁଷିତ କରି ରଖିଲା । ସେ ଯାହାହେଉ, ଜୀବନର ପ୍ରବାହରେ ଜୀବିକା ଜନ୍ମ ହେଲା ଏମିତି, ପଙ୍ଗୁ, ଅଥର୍ବ ଛୁଆଟିଏ ଜନ୍ମ ହେବାପରି । ପରମାଣପୁର ଯିବାଆସିବା କରିବାଭିତରେ ସିନ୍ଦୁରପଙ୍କ, ଠେମରା, ଗୁଣ୍ଡେସିଂଘା, ମାଲଗୁଁଡ଼, ସେରଶୁଆଁତଲ, ଗନ୍ଧାରପଙ୍କ, ଭିକମପୁର, ନୂଆମୁଡ଼ା ଭଳି ଗାଁଗୁଡ଼ିକର ସଂସ୍ପର୍ଶରେ ଆସିଲି, ସେଇ ଗାଁର ଲୋକମାନଙ୍କ ସହ ପରିଚିତହେଲି ।

ଜୀବିକା ଆରମ୍ଭ ହେବାର ବର୍ଷ ରାଉରକେଲାରୁ ଡାକରା ଆସିଲା 'ଛ ନ ସାତ ନ' ନାଟକ ପରିବେଷଣ ପାଇଁ । ଧନୁପାଲିର ଚେତନା ଅନୁଷ୍ଠାନକୁ ନାଟ୍ୟଚେତନାରେ ଚେତନ୍ବିତ କରିବାକୁ ହେବ, ଚାକିରୀ ଜୀବନ ସବୁକିଛି ନୁହେଁ, ତା'ବାହାରେ ଅନ୍ୟଏକ ଜୀବନ ସମାନ୍ତରାଳ ଭାବରେ ଗତି କରୁଛି, ଯାହା ହେଲା ନାଟ୍ୟଜୀବନ ! ! ନାଟ୍ୟଜୀବନ ମଧ୍ୟ ଜୀଇଁବାକୁ ପଡିବ, ସରସିତ କରିବାପାଇଁ । ନଡ଼ିଆ ପିଟାହେଲା, ରିହାର୍ସାଲ ଆରମ୍ଭ ହେଲା, ନିର୍ଦ୍ଦେଶକ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ

ବଳିଷ୍ଠ ପରିଚାଳନାରେ ରିହାର୍ସାଲ୍ ଯୋର୍‌ସୋର୍ ଚାଲିଲା । ବିଭିନ୍ନ ଚରିତ୍ରରେ ମୋ ସହ ଉତ୍ତମ ବେହେରା, ଶାନ୍ତନୁ ହୋତା, ସୁରେଶ ତ୍ରିପାଠୀ, ଜ୍ଞାନ ଜେନା, ନରେନ୍ଦ୍ର ରାୟଗୁରୁ ଏବଂ ଏକମାତ୍ର ନାରୀ ଚରିତ୍ରରେ ଅଞ୍ଜନା ଚକ୍ରବର୍ତ୍ତୀ ଅଭିନୟ କଲେ । ମୁଁ ପ୍ରଫେସରଭୂମିକାରେ ଅଭିନୟ କରିଥିଲି । ପ୍ରଚ୍ଛଦ ସଂଗୀତ ପାଇଁ ସୀତାରାମ ମହାରଣାଙ୍କୁ ଅନୁରୋଧ କରି ସାଙ୍ଗରେ ରାଉରକେଲା ନେଲୁ । ନାଟ୍ୟକାର କ୍ଷୀତିଶ୍ ପୁରୋହିତ ମଧ ଆମକୁ ଉତ୍ସାହିତ କରିବା ପାଇଁ ଆମସହ ରାଉରକେଲା ଗଲେ । ଭଲ ରିହାର୍ସାଲ ହୋଇଥିଲା, ସମସ୍ତେ ପ୍ରତିଯୋଗୀ ମନୋଭାବ ନେଇ ନିଜକୁ ପ୍ରସ୍ତୁତ କରିଥିଲୁ । ତେବେ ପୁଣିସେଇ ଟାଇମ୍ ଫେକ୍ଟର ଆମକୁ ଘାରିପକାଇଲା । ଅନେକ ଆଲୋଚନାପରେ ନିଷ୍ପତ୍ତି ନିଆଗଲା ଯେ ପ୍ରତ୍ୟେକ ଦୃଶ୍ୟର ଲାଇଟ୍ ଅଫ୍ ବେଳେ ସଂଗୀତ ଶିଳ୍ପୀ ସୀତରାମ ମହାରଣା ଗୋଟିଏ ଗୋଟିଏ ଓଡ଼ିଶୀ, ଚମ୍ପୁ ଆଦି ଗୀତମାନ ଗାଇ ଅନ୍ତତଃ ଦଶମିନିଟ୍ ଚଳେଇନେବେ । ସେ ଗାୟକ ନୁହନ୍ତି, ପରିସ୍ଥିତିର ଚାପରେ ହେବାକୁ ପଡିଲା । ସେମିତି ହେଲା, ନାଟକ ଆରମ୍ଭ ହେଲା । ଦୃଶ୍ୟଗୁଡ଼ିକର ଅନ୍ତରାଳରେ ପରିବେଷିତ ଗୀତମାନ ନାଟକର ପ୍ରବାହକୁ ପ୍ରତିହତ କଲା । । ସହନାୟକ ଭୂମିକାରେ ଅଭିନୟ କରୁଥିବା ଶାନ୍ତନୁ ହୋତା ଏକା ରୋମାଣ୍ଟିକ୍ ଦୃଶ୍ୟରେ ସବୁ ସଂଳାପ ପୂରାପୁରି ଭୁଲିଗଲେ, ଯେତେ ପାଟିକରି ସ୍ମାରକ ପଢ଼ିଶୁଣେଇଲେ ବି ତାଙ୍କୁ ଶୁଣାଯାଇ ନଥିଲା । ସେଇଠୁ ନାଟକ ତଳେପଡିବାର ଆରମ୍ଭ ହେଲା, ମୁଁ, ଉତ୍ତମ ଓ ଅଞ୍ଜନା ନାନୀ ଯେତେ ପରିଶ୍ରମ କଲେ ବି ନାଟକ ଆଉ ଉପରକୁ ଉଠିପାରିଲା ନାହିଁ । ନାଟକ ନିର୍ଦ୍ଦେଶକଙ୍କ ହାତରୁ ସମ୍ପୂର୍ଣ୍ଣ ହାତଛଡ଼ା ହୋଇଯାଇଥିଲା । ଆମ ସମସ୍ତଙ୍କ ମନ ଫାଟିଯାଇଥିଲା । ଫେରିବା ପାଇଁ ରେଳଷ୍ଟେସନରେ ଏକତ୍ରିତହୋଇ ଟ୍ରେନ୍‌କୁ ଅପେକ୍ଷା କଲାବେଳେ କ୍ଷୀତିଶ୍ ବାବୁ କୃଷ୍ଣ ଆଚାର୍ଯ୍ୟଙ୍କୁ ଥଟ୍ଟାରେ କହିପକେଇଲେ, କୃଷ୍ଣ ଇ' ଓଡ଼ିଶୀ ଗୀତ ହେନ୍ତା ଗାଏସନ୍ ଭାଏଲ୍ ଯେ ! ! କୃଷ୍ଣଙ୍କ ମୁହଁରେ ଉତ୍ତର ଦେବା ପାଇଁ ଆଉ ଭାଷା ନଥିଲା । ଚେତନାର ଆମ ପିଢ଼ୀର କଳାକାରଙ୍କ ଅଭିନୀତ ଏଇଟା ଥିଲା ବୋଧହୁଏ ଶେଷନାଟକ ।

ଏତେ ସବୁ ଉଦ୍ୟମ ସତ୍ତ୍ୱେ ନାଟକଗୁଡ଼ିକ କାହିଁକି ବିଫଳ ହେଉଥିଲା, ମୁଁ ସବୁ ଜାଣିପାରୁଥିବା ସତ୍ତ୍ୱେ ନୀରବ ଥିଲି, କାରଣ ନାଟକର ନିର୍ଦ୍ଦେଶକ ହିଁ ସର୍ବେସର୍ବା, ନାଟକ ଚୟନଠାରୁ ମଞ୍ଚାୟନ ଯାଏଁ ନିର୍ଦ୍ଦେଶକଙ୍କ ସବୁଠାରୁ ବଡ଼ଭୂମିକା ଥାଏ । ସେ ହିଁ ମୁଖ୍ୟ ସେନାପତି, ତାଙ୍କ ପରିଚାଳନାରେ ହିଁ ଅଭିନୟ, ମଞ୍ଚସଜ୍ଜା, କମ୍ପୋଜିସନ୍, ସଂଗୀତ, ଆଲୋକ, ଶାବ୍ଦିକସ୍ପର୍ଶ ଆଦି ନିୟନ୍ତ୍ରିତ ହୋଇଥାଏ । ଏଥିରୁ ଗୋଟିଏ କ୍ଷେତ୍ର

ଯଦି ଦୁର୍ବଳ ହେଲା, ନାଟକ ଅସଫଳ ହେବ ହିଁ ହେବ। ବ୍ୟକ୍ତିଗତ ଭାବରେ ମୁଁ ଏତେ ସବୁ ବିଫଳ ନାଟକର ଦୃଶ୍ୟମାନ ଜଣେ ଶୃଙ୍ଖଳିତ କଳାକାର ଭାବରେ ନୀରିକ୍ଷଣ କରୁଥିଲି ଏବଂ ସେଇ ସ୍ୱାଧୀନତାକୁ ଅପେକ୍ଷାକଲି, ଯେତେବେଳେ ମଞ୍ଚନାଟକର ସମସ୍ତ ବିଭାଗର ଲଗାମ୍ ମୋ ହାତକୁ ଆସିବ।

ଅଣାଅଶୀର ଶେଷାର୍ଦ୍ଧ, ଜୀବନଜୀବିକାର ପ୍ରଥମ ପାହାଚ ଛୁଇଁବାରେ ଆରମ୍ଭହେବା ମାତ୍ରେ କାମନା ସବୁ ସ୍ୱପ୍ନିଳ ପାଲଟି ତାଙ୍କ ପଟକୁ ଆଉଜି ବସିଲେ। ମୁଁ ଅଧ୍ୟାପକ ଭାବରେ ନିଯୁକ୍ତ, ସେ ବି.ଇଡି. ପାଠ୍ୟକ୍ରମର ଶେଷ ବିନ୍ଦୁ ଆଡ଼କୁ ଅଗ୍ରସର ହେଉଥିଲେ। ତଥାପି ଉଭୟ ପରିବାର ଆମ ଭଲପାଇବା ସମ୍ପର୍କରେ ଅଜ୍ଞ। ଏତେବର୍ଷର ବନ୍ଧନ, କେମିତି ସ୍ଥାୟୀବନ୍ଧନରେ ରୂପାୟିତ ହେବ, କିଏ ବାନ୍ଧିବ ବିଲେଇ ବେକରେ ସୁବର୍ଣ୍ଣ ଘଣ୍ଟି, ସେଇ ଆବେଗରେ ଦିନରାତି ସମାନ୍‌ଭାବରେ ଗତିକରୁଥାଏ। ଏତେ କଷ୍ଟ ନଥିଲା, ଏତେ ସହଜ ବି ନଥିଲା।



ଏତେ ବର୍ଷର ପାଠପଢ଼ା ଓ ସାଧନା ପରେ ମୁଁ ଅଧ୍ୟାପକ ପଦବାଚ୍ୟ ହେଲି, ଡ. ଝସକେତନ ସାହୁ ମହାବିଦ୍ୟାଳୟର ଓଡ଼ିଆ ବିଭାଗର, ଷ୍କିମ ଥିଲା ଆମେ ପଢ଼ିଲା ଭଳି ପ୍ରାକ୍-ବିଶ୍ୱବିଦ୍ୟାଳୟ, ପରେ ପ୍ରଥମବର୍ଷ ସ୍ନାତକ। ବୟାଅଶୀ ବେଳକୁ ଶିକ୍ଷାଧାରା ବଦଳି ୧୦+୨+୩ କୁ ଉର୍ତ୍ତୀର୍ଣ୍ଣ ହୋଇଗଲା, କଲେଜର ନାଁ ମଧ ବଦଳିଗଲା, ଯୁକ୍ତ ଦୁଇ ମହାବିଦ୍ୟାଳୟ, ଜୁନିୟର କଲେଜ, ଏବେ ଏଗୁଡ଼ିକୁ ସେକେଣ୍ଡାରୀ ହାଇସ୍କୁଲ କୁହାଯାଉଛି। ଏପରିକି ଗଙ୍ଗାଧର ମେହେର ହାଇସେକେଣ୍ଡାରୀ ସ୍କୁଲ ବୋଲି ଶିକ୍ଷାନୁଷ୍ଠାନଟିଏ ଅଛି ସେଇ ବିଶ୍ୱବିଦ୍ୟାଳୟ ପରିସରରେ, ଅନେକଙ୍କୁ ଜଣା ନଥିବ। ଗତବର୍ଷ ସରକାରଙ୍କ ନିଷ୍ପତ୍ତି ଅନୁସାରେ ସବୁ ଯୁକ୍ତଦୁଇ ବା ଜୁନିୟର ମହାବିଦ୍ୟାଳୟଗୁଡ଼ିକ ଗଣଶିକ୍ଷା ବିଭାଗ ଅନ୍ତର୍ଭୁକ୍ତ ହେବାପରେ ଏଭଳି ଓଡ଼ିଶାର ସମସ୍ତ ଜୁନିୟର କଲେଜ ହାୟର୍ ସେକେଣ୍ଡାରୀ ସ୍କୁଲ ଭାବରେ ନାମିତ ହେଲା ବୋଲି ଆଦେଶ ଜାରୀ କରିଥିଲେ। ତେଣୁ ସେହି ନିୟମାନୁସାରେ ସମସ୍ତ ଯୁକ୍ତ ଦୁଇ ଅନୁଷ୍ଠାନ ହାଇସ୍କୁଲରେ ପରିଣତ ହେଲା। ତେବେ ସେଠାକାର ଅଧ୍ୟାପକ, ଅଧ୍ୟାପିକାମାନେ ଶିକ୍ଷକ ବୋଲାଇବେ ନା ଅଧ୍ୟାପକ ଭାବରେ ଜଣାଯିବେ, ସେମାନେ ଏଯାଏଁ ଜାଣି ପାରିନାହାନ୍ତି। ମଜାର କଥା କେନ୍ଦ୍ର ସରକାର ଦୀର୍ଘ ଚୌତିରିଶ ବର୍ଷ ପରେ ଗତକାଲି ମାନେ କୋଡିଏ ମସିହା, ସାତ ମାସ, ଅଣତିରିଶ ତାରିଖ, ପ୍ରାପ୍ୟସମ୍ବାଦ ଅନୁସାରେ ଆସନ୍ତା ଶିକ୍ଷାବର୍ଷରୁ ଏକ ନୂତନ ଶିକ୍ଷାନୀତି ପ୍ରଣୟନ କରିବାକୁ ଯାଉଛନ୍ତି। ଏଥିରେ ନୂତନ ଶିକ୍ଷାଧାରା ୫+୩+୩+୪ ପଦ୍ଧତି

ଅନୁସୃତ ହେବ ବୋଲି ଜଣାଯାଇଛି । ଅର୍ଥାତ୍ କଲେଜର ପାଞ୍ଚବର୍ଷରୁ ପୁଣି ଥରେ ଗୋଟିଏ ବର୍ଷ କଟି ଚାରିବର୍ଷରେ ସୀମିତ ରହିବ ଆମେ ଆମ ସମୟରେ ପଢ଼ିଲା ଭଳି । ପ୍ରଥମ ବର୍ଷଟି ପ୍ରାକ୍-ବିଶ୍ୱବିଦ୍ୟାଳୟ ବୋଲାଇବ ଏବଂ ପରବର୍ତ୍ତୀ ତିନି ବର୍ଷ ସ୍ନାତକ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ବର୍ଷ ଭଳି ନାମିତ ହେବ, ପ୍ରତ୍ୟେକ ବର୍ଷର ପରୀକ୍ଷା ବିଶ୍ୱବିଦ୍ୟାଳୟ ସ୍ତରର ହେବ । ପ୍ରତ୍ୟେକ ବର୍ଷର ପାସ୍ କରିଥିବା ଛାତ୍ରଛାତ୍ରୀମାନଙ୍କୁ ଅଲଗାଅଲଗା ପ୍ରମାଣପତ୍ର ମିଳିବ । କଲେଜର ନାମ ପରି ଅଧ୍ୟାପକମାନଙ୍କ ପଦପଦବୀର ମଧ୍ୟ ନାମ ବଦଳିଲା, ଯୁକ୍ତ ଦୁଇ ଅଧ୍ୟାପକ, ଜୁନିୟର ଅଧ୍ୟାପକ, ଡିଗ୍ରୀ ଅଧ୍ୟାପକ, ସିନିୟର ଅଧ୍ୟାପକ, ମେନେଜମେଣ୍ଟ ଅଧ୍ୟାପକ, ବ୍ଲକ ଗ୍ରାଣ୍ଟ ଅଧ୍ୟାପକ, ଷ୍ଟେଟ ସ୍କେଲ୍ ଅଧ୍ୟାପକ, ଏସଏସବି ପ୍ରେରିତ ଅଧ୍ୟାପକ, ୟୁଜିସି ଅଧ୍ୟାପକ, ପ୍ରଧ୍ୟାପକ, ଏସୋସିଏଟ୍ ପ୍ରଫେସର, ସିନିୟର୍ ପ୍ରଫେସର ଆଦି ଆଦି, ଏଭଳି ଅସରନ୍ତି, ଅନାଦି ।

ଏତେ ସବୁ ବିଶେଷ୍ୟ ବିଶେଷଣ ବର୍ଣ୍ଣନା କରିବାର ଅର୍ଥ ମୁଁ ପରମାଣପୁର କଲେଜରେ ଅଧ୍ୟାପକ ଭାବରେ ଯୋଗ ଦେଇଥିଲି, ଏବେ ପରମାଣପୁର ଛାଡ଼ି ଚିଚିଣ୍ଡା କଲେଜରୁ ଷୋହଳ ମସିହାରେ ଅବସର ନେଇଗଲା ପରେ ବି ନିଜେ ଏଯାଏଁ ଜାଣିପାରିନାହିଁ ମୁଁ କିଭଳିଆ ଅଧ୍ୟାପକ !! ମୋର କେଟେଗୋରୀ କଣ ? ଯାହା ବି ହେଉ, ପରମାଣପୁର କଲେଜକୁ ସାଇକଲରେ ସତର-ସତର ଚୌତିରିଶ କିଲୋମିଟର ଯିବାଆସିବାର ଅନୁଭୂତି ବଡ଼ ନିଆରା । ଧନୁପାଲିରୁ ପରମାଣପୁର, ସିନ୍ଦୁରପଙ୍କଠାରୁ ବାମପଟକୁ କାଟି ପୁରୁଣା ରାଂଚିରାସ୍ତା ନାମରେ ଖ୍ୟାତି ଲାଭ କରିଥିବା ରାସ୍ତାରେ ସେତେବେଳେ କେବଳ ଗୋଟିଏ ବସ୍ ଯା-ଆସ କରୁଥାଏ । ସେ ବସ୍, ମାନେ ମିନିବସ୍‌କୁ ଲୋକେ ନାଁ ଦେଇଥିଲେ ମାଚିସ୍‌ଖାଡ଼ି ବସ୍ ଅର୍ଥାତ୍ ଛୋଟ ବସ୍‌ଟିଏ, ତାର ଡ୍ରାଇଭର ଯିଏ, ମାଲିକ ମଧ୍ୟ ସିଏ । ବସ୍‌ଟି ସକାଳୁ କୁଦୋପାଲିରୁ ପରମାଣପୁର ଦେଇ ସମ୍ବଲପୁର ଯାଏ, ଦ୍ୱିପହରବେଳକୁ ସମ୍ବଲପୁରରୁ କୁଦୋପାଲି ଲେଉଟାଣି ଯାତ୍ରା କରେ । ଜଣେ ଅବସରପ୍ରାପ୍ତ ମିଲିଟାରୀ ଭଦ୍ରବ୍ୟକ୍ତି ସେ ବସ୍‌ର ମାଲିକ । ପରେ ସମ୍ବଲପୁରର ପୂଜାରୀବାବୁ ଆଉ ଗୋଟାଏ ଅପେକ୍ଷାକୃତ ବଡ ବସଟିଏ ଚଲେଇଲେ, ସମ୍ବଲପୁରରୁ ଲଇଡା ଭାୟା ପରମାଣପୁର । ତେଣୁ ଧନୁପାଲିରୁ ପରମାଣପୁର ଯିବାପାଇଁ ହେଲେ ସାଇକଲ୍‌ବ୍ୟତୀତ ଅନ୍ୟଉପାୟ ନଥିବାରୁ ବାଧ ହୋଇ ସାଇକଲରେ କଲେଜ୍ ଯାଉଥିଲି, କ୍ଲାସ ନେଉଥିଲି, ଗଙ୍ଗାଧର ହୋଟେଲରେ ପକୋଡିସିଙ୍ଗଡା ପେଟେ ଗେଫିଦେଇ ପୁଣି ଧୁନୁପାଲି ବାହୁଡ଼ାଯାତ୍ରା କରୁଥିଲି । ପ୍ରଥମେ ପ୍ରଥମେ ଉପଭୋଗ୍ୟ ଥିଲା, ଠେମରା ପାରିହେଲେ ରାସ୍ତାର ଉଭୟପଟ ସବୁଜ ଶସ୍ୟକ୍ଷେତ୍ର, ଅନତିଦୂରରେ

ମାଳତୀଯୋରର ତନୁପାତଳୀ ଭଳି କୁଳୁକୁଳୁ ନାଦର ଗତି, ଗୁଣେସିଂରାର ବିରାଟ ବଟବୃକ୍ଷର ଛାତତଳେ ପ୍ରତୀକ୍ଷାମାଣ ଗାଉଁଲି ପଥଚାରୀ, ମାଲଗୁଣ୍ଡ ଗାଁ ଆଦିବାସୀ ଅଧ୍ୟୁଷିତ ମାଁ, ମାଟିଘରର ଉଙ୍କୁଡ଼ାଛାତ, ନିଶାରେ ମସଗୁଲ ମାଂଗ୍ରା ଓରାମ୍‌ର ବେଧଡକ୍ ଝୁମେର୍ ସୁରର ଲହର, ରପ୍‌ଟା ପାରିହେଲେ ଚଢ଼ାଣି, ମୋ ସାଇକଲର ପେଡେଲର ଖର୍ ଖର୍ କ୍ରନ୍ଦନ, ଧର୍ସା ପାରି ହେଲେ ମାଲିନୀ କେଫ୍ ମାଲିକର ବିସ୍ତୀର୍ଣ୍ଣ ଇଲାକାରେ ନିର୍ମିତ ଧାଡ଼ିଧାଡ଼ି ଟିଣ ଛୁଆଁ ଦୋକାନଘର, ଯାହା ଏଯାଏଁ ବ୍ୟବହୃତ ହୋଇପାରିନାହିଁ, ଦାଢ଼ୀରଖା ହାପ୍ ପେଣ୍ଟ ପିନ୍ଧା, ରାଜଦୂତ ଫଟ୍‌ଫଟିଚଢ଼ା ସେଇ ମାଲିକଙ୍କ ପ୍ରତ୍ୟହ ଧାଁଧପଡ ପରେ ବି ସେ ଅଞ୍ଚଳଟି ବିକଶିତ ହୋଇପାରି ନଥିଲା । ଏବେ ତ ମହେଞ୍ଜୋଦାରୋ ଭଳିଆ ଆଦିମ ସଭ୍ୟତାର ସନ୍ତକ ଭଳି କେବଳ କେ.ଏଲ. ସାଇଗଲଙ୍କ ଗୀତ ଗାଉଛି । ଆଗକୁ ଗଲେ ରାସ୍ତା ଉଭୟପଟ ଗ୍ରାମଗୁଡ଼ିକର କେନ୍ଦ୍ରସ୍ଥଳୀ, ସେରଶୁଆଁଗଛ ଥିବାରୁ ଛକର ନାଁ ମଧ୍ୟ ସେରଶୁଆଁତଲ୍ ନାମରେ ଖ୍ୟାତ, ସେତେବେଳେ ଗୋଟିଏଦୁଇଟା ଗୁଡ଼ିଆ ଦୋକାନ, ଗୋଟେଅଧେ ପାନଦୋକାନ ଛକର ଶୋଭାବର୍ଦ୍ଧନ କରୁଥିଲା, ଏବେ ସହରୀକରଣହୋଇ ୟୋୟୋ ହନି ସିଂ ଭଳି ନିଜକୁ ସଜେଇରଖିଛି, ପରେପରେ ଗହ୍ଲାରପଙ୍କ ଗାଁର ବିରାଟ ହାଟ ବାଁପଟକୁ, କେନାଲ୍ କଲୋନୀ ଆସିଗଲେ ସେଠି ଥିବା ମାନଧାତା ଅମଳରେ ତିଆରି ହୋଇଥିବା ଦଦରା କ୍ୱାଟର୍ ସବୁର ଦରମଲା ଚେହେରା, ସେଇଠୁ ସିଧା ପେଡେଲ ମାରି କ୍ଷିପ୍ରଗତିରେ ଯାଇହୁଏ ପରମାଣପୁରକୁ । ଦି ଧାଡ଼ି ଦୋକାନଘର ମଝିରେ ବୋଡାସାପପରି ରାସ୍ତାକୁ ହାମୁଡେଇ ଯାଇଥିବା ଖାଇଢିପର ରାସ୍ତା, ମୁଣ୍ଡରେ ମୁଣ୍ଡରେ ପଡେ ଛୋଟ ଚାଉଳକଳଟିଏ । ମାଲିକ ଜଣକ ହିନ୍ଦୀ ଚଳଚ୍ଚିତ୍ରର କହ୍ନେୟାଲାଲ ଭଳି ଦିଶନ୍ତି, ପରେ ହାଇସ୍କୁଲ, ଯେଉଁଠି ନାଟ୍ୟକାର ମଙ୍ଗଳୁଚରଣ ସାରାଜୀବନ ଖଟିଥିଲେ ଅନୁଷ୍ଠାନର ମୁଖ୍ୟଭାବରେ, ସେଇ ସ୍କୁଲ ବାଟ କୋଠରୀରେ ଆମ ପ୍ରିୟ କଲେଜର ଅଫିସ ଚାଲୁଥିଲା, ସେଇ କୋଠରୀ ହିଁ ଅଧ୍ୟକ୍ଷଙ୍କ ଚେମ୍ବର, ସେଇଠି ହିଁ ଅଧ୍ୟାପକଙ୍କ କମନ ରୁମ୍ । ଦଶଟାରୁ ସ୍କୁଲପିଲେ ଆସିବାପୂର୍ବରୁ କଲେଜ ଅଫିସରେ ତାଲା ପଡିଥିବାର କଥା । ପହିଲେ ପିଲା ହେଉ ନଥିଲେ, ସଂଖ୍ୟାବୃଦ୍ଧି ପାଇଁ ଗାଁରେ ବେକାର ପଡିଥିବା ବୁଢ଼ାହଡା, ସମସ୍ତଙ୍କ ଗୋଡ଼ହାତ ଧରି, କାକୁତି ବିନତି କରି କଲେଜପଢ଼ିବା ପାଇଁ ଡାକିଆଣିବାରେ ବା କ୍ଲାସ କେତେ ହୁଏ ! ! ତେର ପନ୍ଦରରୁ ତିରିଶ ଛତିଶ୍ ହେଲା ପରେ କ୍ଲାସ ନିଆଗଲା । ଗୋଟିଏ ଅଧେ କ୍ଲାସ ନେଇ ଶୁଖାଶୁଖା ଘରକୁ ଫେରିଯିବା ରାସ୍ତାରେ ମୁଁ ଭାବୁଥିଲି, ସତର-ସତର ଚୌତିରିଶ କିଲୋମିଟର ଯାତ୍ରା କରି କି ଲାଭ ପାଉଛି ମୁଁ, କଲେଜ୍ ଆଉ ପରମାଣପୁର ଗ୍ରାମ ?

ଏ ତ ଥିଲା ପହିଲି ତିନିମାସର ଧାରାବିବରଣୀ, ଋତୁଅନୁସାରେ ପୁଣି ଯାତ୍ରାନୁଭବ ଅଛି । ବର୍ଷା ଆସିଗଲେ ମାଲଗୁଣ୍ ରପ୍‌ଟାରେ ପାଣିବହେ ଖରସ୍ରୋତା ରୂପରେ । ଏମିତି ଦିନେ ଗୋଟିଏ ହାତରେ ଛତା, ଅନ୍ୟ ହାତରେ ସାଇକଲ୍‌ର ହେଣ୍ଡେଲ, ସେ ପୁଣି ସଦ୍ୟ ଅପରେସନ୍ ହୋଇଥିବା ହାତ । ମାଲଗୁଣ୍ ରପ୍‌ଟାରେ ବର୍ଷାପାଣି ରକ୍ତମୁଖା ବ୍ୟାଘ୍ର ଭଳି ଧାଉଁଥାଏ । ନଗଲେ ଅଧକ୍ଷଙ୍କ ନାଲି ଆଖି, ଏଲ୍‌ଡବ୍ଲ୍ୟୁପିର ଭୟ । ଦିନେ କଟିଲେ ତେରଟଙ୍କା ପଞ୍ଚାବନ ପଇସା ଦରମାରୁ କଟ୍ । ପାଖଲୋକଙ୍କୁ ପଚାରିବୁଝିଲି ପଛକୁ ଫେରି ବାଁପଟକୁ ଗଲେ, ଖୁଲିଆ, କୁଲିତା ନୂଆପାଲିର ଆଡ଼ି ରାସ୍ତାରେ ଯାଇ ହେବ, ଅନ୍ତତଃ ସାଇକଲ୍ ଗଡ଼ିବ । ଲୋକଙ୍କ କଥାକୁ ଗଳାର ମାଳି କରି ପଛକୁ ଫେରି ପୁଣି ବାମ ପାଖ ରାସ୍ତାକୁ ଛୁଇଁଲି । ବର୍ଷାର ପରିମାଣ କମିଥିଲେ ହେଁ ଛତା ଧରିବାକୁ ପଡୁଥାଏ । କୌଣସି ମତେ ଖୁଲିଆ ଗାଁକୁ ପହଞ୍ଚି ଆଡ଼ି ରାସ୍ତା ଧରିଲି । ଦେଢ଼ଫୁଟ ଓସାରର ଆଡି, ଆଉ ସାଇକଲ ଚଲାଇହେଲା ନାହିଁ । ଆଣ୍ଠୁଏ କାଦୁଅରେ ସାଇକଲ ହେଣ୍ଡଲକୁ ହଳଲଙ୍ଗଳ ଧରି କ୍ଷେତଚଷିବା ଭଳି ରୁଥିନେଉଥିଲି । ଅନ୍ୟ ହାତରେ ପାଁଚେନ୍ ଭଳି ଧରିଥିବ ଛତା, କି କ୍ରୁର ମୋ କପାଳ । ଜାଣୁଛି ଏ ବର୍ଷାରେ ପିଲାଏ ଆସି ନଥିବେ, ଟାଇମ୍‌ପାସ୍ ପାଇଁ ହୁଏ ତ ସେ ମେଛାଦାଢ଼ି ରଖିଥିବା ପିଲା ଆସିଥିବେ, ଯେଉଁମାନେ ପାଠ ଅପେକ୍ଷା ଅଧ୍ୟାପକ ଆସିଛନ୍ତି ନା ନାହିଁ, ସେ ବିଷୟରେ ରଚି ରଖନ୍ତି, ତାଙ୍କ ଭିତରୁ ଜଣେ ଦୁଇଜଣ ଆସିଥିବେ, ମୁଁ ପହଞ୍ଚିଲା ବେଳକୁ ହୁଏ ତ କଲେଜର ତାଲା ଅପେକ୍ଷା କରିଥିବ ପିଥନ୍ କୃଷ୍ଣର ଶେଷସ୍ପର୍ଶ ପାଇବାପାଇଁ ।

ତଥାପି କାଦୁଅ ସତସତ, ଉଦା ସରସର, ନାକ ଭଡଭଡ, ସାଇକଲ ଚେନ୍ ଖର୍‌ଖର୍ ତାଳରେ ତାଳ ମିଳାଇ କଲେଜ ପହଞ୍ଚିଲା ବେଳକୁ କମନରୁମ୍ ବ୍ୟତିତ ଆଉ କୌଣସି କୋଠରୀ ଖୋଲା ନଥିଲା । କିଛି ଅଧ୍ୟାପକ ସେଠି ଗପସପ କରୁଥିଲେ । ଅଧ୍ୟାପକୀୟ ପୋଷାକରେ ଯାଇଥିଲି, ପହଞ୍ଚିଲାବେଳକୁ ହଳିଆଭଳି ଦେଖାଯାଉଥିଲି । କୈଳାସ ମୋତେ ଓ ମୋ ଅବସ୍ଥାଦେଖି କହିଲେ, କାହିଁ ଆଉଥିଲ ମାମା । ମୁଁ ତତ୍‌କ୍ଷଣାତ୍ ଜବାବ୍ ଦେଲି, ତେର ଟଙ୍କା ପଞ୍ଚାବନ ପୈସା ଲାଗି କୈଳାସ । ।

ଏମିତି ତିନିଚାରି ମାସ ଅତିବାହିତ ହେବା ପରେ କୈଳାସ, ଅର୍ଥନିତି ଅଧ୍ୟାପକ ଭକ୍ତବାବୁ, ବିଶ୍ୱରୂପ ବାବୁ ଆଉ ମୁଁ, କଥା ହୋଇ କଲେଜ୍‌କୋଠାର ଅଫିସପାଖ ଏକ କୋଠରୀରେ ରହିବାର ବ୍ୟବସ୍ଥା କଲୁ । ସମସ୍ତେ ଅବିବାହିତ, ବୟସ ପାଖାପାଖି ସମାନ, ତେଣୁ ଗୋଟେ ପ୍ରକାର ଅସଜଡ଼ା ଜୀବନ ଆରମ୍ଭ ହୋଇଗଲା । ପରମାଣପୁର ଛକରେ ଥିବା ଗଙ୍ଗାଧର ହୋଟେଲରେ ଜଳଖିଆ ସହ ମଧ୍ୟାହ୍ନ ଭୋଜନ, ବେଳାର

ଚଣା ପକୋଡ଼ି, ରାତିର ରୁଟି ଆଳୁଝୋଳ, ଏ ଥିଲା ସେଇ କୋଠରିରେ ରହୁଥିବା ସମୟର ରୁଟିନ୍‌ବନ୍ଧା ଜୀବନ । ପିଲାଆସିଲେ ପାଠପଢ଼ା, ପିଲାଗଲେ ଗୁନ୍ଧୁଆଖଟରେ ପଖାଳଖିଆ ନିଦ, ସନ୍ଧ୍ୟାରେ ଗାଁ ପିଲାଙ୍କସହ ଭଲିବଲ୍, କ୍ରିକେଟ ଖେଳ, ତା'ଭିତରେ କବିତା ଲେଖା । ଦରମା ପାଇଁ ଅନଶନ, ଆନ୍ଦୋଳନ, ବାବାଜୀ ନାଥ ଆଦିଙ୍କ ସହ ବାକ୍‌ବିତଣ୍ଡା, ଛକରେ ସ୍ଥାନୀୟ ରାଜନୀତି, ବାବା ହୋଟେଲରେ ଚା' ପାନ, ଭଜମନ ଜଳଖିଆ ଦୋକାନରେ ଦୁଃଖସୁଖ, ବନ୍ଧୁ କାହ୍ନୁଙ୍କ ସହ ହଜିଲା ଅତୀତର ଗପସପ, ଏସବୁ ହୋଇପଡିଲା ଦୈନନ୍ଦିନ ଜୀବନର ନିର୍ଲୋଭ ଘଟଣାସମୂହ ।

ଜୀବନ ଗଡ଼ିଲା ଅଲକ୍ଷିତ ଜିବିକାଡୋରରେ ବନ୍ଧା ହୋଇ । ଘରଭିତରେ ଦାଦାଙ୍କ ସଦ୍ୟ ଜନ୍ମିତା ଝିଅ ମନିର ମଧୁରମଧୁର କୁଆଁ କୁଆଁ କ୍ରନ୍ଦନର ଯେମନ୍ କଲ୍ୟାଣ ରାଗ, ଉଇଖିଆ ଦଦରାକୋଠରିରେ ବେଞ୍ଚଯୋଡ଼ି ପଲଙ୍କ ତିଆରିଥିବା କନ୍ଥାପକା ବିଛଣାରେ ପଡି ଛାତିକୋହରେ ଉକୁଟି ଉଠୁଥିଲା ଅସଜଡ଼ାଜୀବନ ପ୍ରତି ବିରାଗ !!

କିଭଳି ଗଢ଼ିବ, କେଉଁ ଶକ୍ତି ଖଟେଇ ପାହାଡ଼ ଚଢ଼ିବି, ରଙ୍ଗୀନ୍ ସ୍ୱପ୍ନର ସାର୍ଥକତା ପାଇଁ ଆତ୍ମବଳ ଆସିବ ତ ? ଏ ଦଦରା ନାଆରେ ମୁଁ ସମୟର ସ୍ରୋତକୁ ଲଂଘି ପାରିବି ତ !! ଏଭଳି ଅନେକ ପ୍ରଶ୍ନର କୁହେଳିକା ଭିତରେ ମୁଁ ମୋତେ ମୋ ଭିତରେ ଖୋଜି ପାଉନଥାଏ । ଅତ୍ୟଧିକ ଔଜଲ୍ୟରେ ମୁଁ ଅନ୍ଧଙ୍କ ଭଳି ଶୂନ୍ୟତାକୁ ଅଣ୍ଡାଳୁଥାଏ ସୁନେଲୀ ଭବିଷ୍ୟତର ଅଣୁମାନଙ୍କୁ !!!



**ଯେ**ମିତି ବି ହେଉ, ଚାକିରୀ ତ ଚାକିରୀ, ସେ ଦରମା ବିହୁନେ ହେଉ ଅବା ବହୁଳେ, ଅଧ୍ୟାପକ ତ, ସେ ପାଞ୍ଚ ଟଙ୍କିଆ ହେଉ ବା ପାଞ୍ଚ ହଜାର ହେଉ ! ପରମାଣପୁରର କଲେଜ ଡ. ଝସକେତନ ସାହୁ, ପ୍ରାକ୍ତନ ମନ୍ତ୍ରୀଙ୍କ ନାମରେ ନାମିତ । ସୁତ୍ରଧର ଥିଲେ ଲୋକପ୍ରିୟ ପାଲାଗାୟକ ବାଜାଜୀ ନାଥ ଏବଂ ନୀରବ ସମର୍ଥନ ଥଲା ବିଧାୟକ ଜଗତେଶ୍ୱର ମିର୍ଦ୍ଧାଙ୍କର । ମିର୍ଦ୍ଧାବାବୁ, ଆଗରୁ ଶିକ୍ଷକ ଥିଲେ, ନିର୍ବାଚନୀ ରାଜନୀତିକୁ ଆକର୍ଷିତ ହେବାପରେ ଶିକ୍ଷକତା ତ୍ୟାଗକରି ରାଜନୀତିକୁ ବୃତ୍ତି ଓ ପ୍ରବୃତ୍ତି ଭାବରେ ଆପଣେଇ ନେଲେ ଏବଂ ପାଞ୍ଚ ଥର କୁଚିଣ୍ଡା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ସରଳ, ସାଧାରଣ ଲୋକ ଜଣେ, ଅତି ଗହୀର ରାଜନୀତିକୁ ଯାଆନ୍ତିନାହିଁ । ବୁଲେଟ୍‌ରେ ତାଙ୍କ ଗାଁ ନୂଆମୁଣ୍ଡାରୁ ଆସି ବନ୍ଧୁ କାହ୍ନୁଙ୍କ ବାପାଙ୍କ ପାନଦୋକାନରେ ଅଟକି କେଭେଣ୍ଡର୍ ଗୋଟିଏ ପାକିଟ୍ କିଣି ମନଭରି ସେଥିରୁ

ଗୋଟିଏ ଟାଣି ନିଜଲୋକଙ୍କ ସହ ଦି'ଚାରି ପଦ ଆଲୋଚନାକରି, ସମ୍ବଲପୁର ଦିଗକୁ କାମରେ ଚାଲିଯାଉଥିଲେ । ଲୋକେ ଯାହା କହୁଥିଲେ, ଧୈର୍ଯ୍ୟ ସହକାରେ ଶୁଣୁଥିଲେ, କିଛି ପ୍ରତିଶ୍ରୁତି ମଧ୍ୟ ଦେଉଥିଲେ । ସେ ଥିଲେ ଏ ଅଞ୍ଚଳର କଂଗ୍ରେସଦଳର ଟାଣୁଆନେତା । ବାବାଜୀ ନାଥ, ଥିଲେ ବିରୋଧୀ ଜନତା ଦଳର ଧୁରନ୍ଧର ନେତା, ଚାତୁର୍ଯ୍ୟରେ ପରିପୂର୍ଣ୍ଣ । ଯେତେବେଳେ ଯେ ବି ଯାଉ ପରମାଣପୁର, ସେ ନିଶ୍ଚୟ ବାଟରେ ବାଟରେ ଭେଟିବ ତାଙ୍କୁ । ଧୋତି ଓ ସାମାନ୍ୟ ଘିଅ ରଙ୍ଗର ପାଇଜାମା, ପାଦରେ ବାରମାସୀ ବର୍ଷାତି ଯୋତା । ଆମେ ଅଧ୍ୟାପକମାନେ ତାଙ୍କୁ ଗେଟୱ୍ୱେ ଅଫ୍ ପରମାଣପୁର ବୋଲି କହୁଥିଲୁ । ସମାଜସେବାରେ ଉସ୍ତାଦ୍, କଲେଜ, ବାଳିକା ବିଦ୍ୟାଳୟ ସବୁ ବାବାଜୀବାବୁଙ୍କର ମାନସସନ୍ତାନ, ତାଙ୍କ ମୁଣ୍ଡ ସଦାସର୍ବଦା ଅଞ୍ଚଳର ପିଲାମାନଙ୍କ ଶିକ୍ଷା ପାଇଁ ଘୁରୁଥିଲା । ବାଳିକା ବିଦ୍ୟାଳୟ ପରେ ପୁଣି ଏକ ମହିଳା ମହାବିଦ୍ୟାଳୟ ଖୋଲିବା ଯୋଜନାରେ ଥିଲେ । ଅବଶ୍ୟ ବର୍ଷେ, ଦି ବର୍ଷ ଚାଲିବା ପରେ ସମର୍ଥନ ନ ମିଳିବାରୁ ତାହା ଆପେଆପେ ବନ୍ଦ ହୋଇଗଲା । ଡ. ସାହୁଙ୍କ ସହ ମୋର ବକ୍ତିଗତ ସମ୍ପର୍କ ଭଲଥିଲା । ମୁଁ ପରମାଣପୁର କଲେଜରେ ଯୋଗଦେବାପରେ ଥରେ ଏକ ଉତ୍ସବ ସମୟରେ ଭେଟି କଲେଜ୍‌ର ଆର୍ଥିକଅବସ୍ଥା ବାବଦରେ ଆଲୋଚନା କରିଥିଲି । ସେ ଭରସା ଦେଇଥିଲେ, ମୁଁ କଲେଜ୍‌ପାଇଁ ଏକ ଗଞ୍ଜେଇବଗିଚା ବାବାଜୀ ନାଁରେ କରିଦେଇଛି । ତାର ଲାଭାଂଶରେ କଲେଜ ଭଲଚାଲିବ । ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ଭଦ୍ରଲୋକ ଭଳି ଡ. ସାହୁଙ୍କ କଥାରେ ଭରସା ରଖି ପଢ଼ାପଢ଼ି ଦିଗରେ ମନଦେଲି । ଅଧ୍ୟାପକତ୍ୱର ପ୍ରଥମ ବର୍ଷ ପ୍ରାୟ ଖାଲି ପକେଟରେ ଗଲା । କହିବାକୁ ଗଲେ ଖାଲି ପେଟରେ ଗଲା । ସଂସାର ହୋଇ ନଥିଲା, ନଚେତ୍ ବୈରାଗୀହେବାକୁ ବେଳ ଲାଗିନଥାନ୍ତା !

ପରମାଣପୁର, ନାଥଯୋଗୀମାନଙ୍କ ଗାଁ, ଏମାନଙ୍କ ଆଗମନ ମଧ୍ୟ ସେଇ ଅନୁଗୋଳ ଜିଲ୍ଲାରୁ, କେନ୍ଦରା ବଜାଇ ଘରକୁଘର ପଥବ୍ରଜରେ ଯାଇ ଅଚ୍ୟୁତାନନ୍ଦଙ୍କ ମାଳିକା ଗାନକରି ଭିକ୍ଷାବୃତ୍ତି କରି ଜୀବିକାର୍ଜନ କରିବା ଏମାନଙ୍କ କୌଳିକ ବ୍ୟାପାର । ସବୁବେଳେ ଆର୍ଥିକ ଅନଟନରେ ତଳିତଳାନ୍ତ ଏମାନଙ୍କ ଦୈନନ୍ଦିନ ଜୀବନ । ପରେ ପାଲାକୁ ଏମାନଙ୍କ ଭିତରକୁ କେଇଜଣ ନିଶା ଓ ପେଶା ଭାବରେ ଗ୍ରହଣ କରିପକେଇଲେ । ସତୁରୀ, ଅଶୀ ଦଶକରେ ଏମାନଙ୍କୁ ଗାଁ ଗାଁରୁ ନିମନ୍ତ୍ରଣ ଆସୁଥିଲା ପାଲା ପରିବେଷଣ ପାଇଁ । ସତ୍ୟନାରାୟଣ ପୂଜା, ଏକୋଇଶିଆ, ଅନ୍ନପ୍ରାସନ, ବ୍ରତଘର, ଏପରିକି ବାହାଘର ଅବସରରେ ମଧ୍ୟ ଏମାନେ ପାଲା ପରିବେଷଣ କରୁଥିଲେ ।

ଗୌନ୍ତିଆ, ଜମିଦାରମାନେ ଏମାନଙ୍କୁ ଷୋହଳପାଳା ପାଇଁ ଡକାଇ ଏମାନଙ୍କ ବାଦର ରସସ୍ୱାଦନ କରୁଥିଲେ । ହାରାଚାନ୍ଦ ନାଥ, ବାବାଜୀ ନାଥ, ଭାଗିରଥୀ ନାଥ ଆଦି ପାଲାକାରକମାନେ ସେ ସମୟରେ ଖୁବ୍ ଲୋକପ୍ରିୟତା ହାସଲ କରିଥିଲେ । ବିଭିନ୍ନ କବିମାନଙ୍କ କାବ୍ୟକବିତା ଏମାନଙ୍କ ମୁହେଁ ମୁହେଁ ଉଚ୍ଚାରିତ ହେଉଥିଲା ।

ବାବାଜୀ ନାଥ ଏମାନଙ୍କ ମଧ୍ୟରୁ ଅନ୍ୟତମ ପାଲାକାର, ଯେ ପାଲା ଭଳି ଲୋକସଂସ୍କୃତିସମ୍ପନ୍ନ ବୃତ୍ତିକୁ ଆଡ଼େଇ ରାଜନୈତିକ ପାଲାଉପରେ ଅଧିକ ଆକର୍ଷିତ ହୋଇପଡିଥିଲେ । ପାଲାର ଆୟ ଏବଂ ରାଜନୀତି ପାଲାର ଆୟ ଭିତରେ ଆକାଶ ପାତାଳ ପ୍ରଭେଦ । ମୁଁ ପରମାଣପୁର କଲେଜରେ ଅଧ୍ୟାପକ ଥିବାପର୍ଯ୍ୟନ୍ତ ବାବାଜୀବାବୁ ଗଞ୍ଜେଇ ବଗିଚାରୁ ଟଙ୍କାଟିଏ ବି ପରିଚାଳନା କମିଟିକୁ ଦେଇ ରସିଦ ନେବାର ଜାଣିନାହିଁ । ମୋର ପାଞ୍ଚବର୍ଷର ଅଧ୍ୟାପନା ଭିତରେ କଲେଜ୍‌ର ଅଭ୍ୟନ୍ତର ଆୟକୁ ବାଦ୍‌ଦେଲେ ବାହାରୁ ଚାନ୍ଦା କିମ୍ବା ଅନୁଦାନ ଆସିବାର ମୋ ଜ୍ଞାତସାରରେ ଘଟିନାହିଁ । ଏଭଳି ହୋଇଥିଲେ ହୁଏତ ମୋ ଜୀବନରେ ଭିନ୍ନ ମୋଡ଼ ଆସିଥାଆନ୍ତା । ଦରମା ମିଳୁ ନଥିବାରୁ ଦି ବର୍ଷ ପରେ ଆନ୍ଦୋଳନ କରିବା ପାଇଁ ପଡ଼ିଥିଲା, ଦାବୀ ପୂରଣ ହେଲାଯାଏଁ ଭୋକରେ ରହିବାପାଇଁ ପଡ଼ିଥିଲା । ଯେତେ ଅଧ୍ୟାପକ ଥିଲୁ, ପରମାଣପୁର ଗାଁରୁ ମୋ ଘର ଥିଲା ସବୁଠାରୁ ନିକଟତର । ତେଣୁ ମୁଁ ସେ କଲେଜର କେବଳ ଅଧ୍ୟାପକ ନୁହଁ, ମୋ ଅଞ୍ଚଳର କଲେଜ ବୋଲି କିଛି ଅଧିକସମୟ କଲେଜ୍‌କୁ ଦେଲେ, ତାହାର ଭିତ୍ତି ସୁଦୃଢ଼ ହୋଇପାରିବ ବୋଲି ମୋର ଧାରଣା ଥିଲା । କିନ୍ତୁ, କିଛି ସ୍ୱାର୍ଥୀ ବକ୍ତି ମୋର ପଦକ୍ଷେପକୁ ନକାରାତ୍ମକ ବୋଲି ଭାବିନେଇ ତାଙ୍କ ସ୍ୱାର୍ଥହାନୀ ହେବାର ସନ୍ଦେହ କରିଥିଲେ । ପରମାଣପୁରର ମିଶ୍ର ପରିବାରଙ୍କ କଲେଜର ବିକାଶକୁ ନେଇ କିଛି ସମ୍ପର୍କ ନଥିଲା, କିନ୍ତୁ ସଦିଚ୍ଛା ଥିଲା । ବୋଧହୁଏ ବାବାଜୀ ନାଥଙ୍କ ଭଳି ଧୁରନ୍ଧର ବ୍ୟକ୍ତିଙ୍କ ସମ୍ପୃକ୍ତି, ତାଙ୍କୁ ଏଭଳି ସେବାରୁ ଦୂରେଇ ଦେଇଥିଲା । ଏହା ସ୍ୱୀକାର୍ଯ୍ୟ, କେବଳ, କେବଳ ବାବାଜୀ ବାବୁଙ୍କ ଯୋଗୁଁ ହିଁ ପରମାଣପୁର କଲେଜ ପରମାଣପୁର ଭଳି ଆର୍ଥିକଦୁର୍ଗତିସମ୍ପନ୍ନ ଅଞ୍ଚଳରେ ସମ୍ଭବ ହୋଇପାରିଲା । ଏହା ଯେପରି ସତ୍ୟ, ତା'ଠାରୁ ଆହୁରି ନିରାଟ ସତ୍ୟ, ଏଠାରେ ନିଯୁକ୍ତି ପାଇଥିବା ଅଧ୍ୟାପକମାନଙ୍କ ଦରମାବିହୀନ ଅସହାୟ କ୍ଷୁଧାର୍ତ୍ତ ଜୀବନପାଇଁ ସେହି ନେତୃମଣ୍ଡଳୀ ହିଁ ଦାୟୀ । କଲେଜ ଖୋଲିଦିଅ, ଅଧ୍ୟାପକ ନିଯୁକ୍ତି ଦେଣନେଣ ବ୍ୟବସ୍ଥାରେ ସାରିଦିଅ, ସେମାନଙ୍କ ଆର୍ଥିକଦୁର୍ଗତିର ହାହାକାରମୟ ଜୀବନ ନୀରିକ୍ଷଣ କରି ତାଳିମାର, ତାଙ୍କ ନୀରବ ଲୁହକୁ କୁମ୍ଭୀର କାନ୍ଦଣା ବୋଲି କହି ପରିହାସ କର । ଉଚ୍ଚ ଶିକ୍ଷିତ ଅଧ୍ୟାପକମାନେ ଜ୍ଞାନରେ

ଆମଠାରୁ ନ୍ୟୁନ ବୋଲି ନଖ ବଢାଅ, ଏମାନେ ସବୁ ଆମ ଇଙ୍ଗିତରେ ନୃତ୍ୟ କରୁଥିବା କାଷ୍ଠପୁତଳିକା, ରାଜକପୁର ନର୍ଗିସ୍ ଭଳିଆ ଆମେ ଆମହାତର ଲଗାମ୍‌କୁ ଯେମିତି ନଚାଇବୁ, ଏଇ ପଙ୍ଗପାଳମାନେ ସେମିତି ନାଚିବେ, ଏମାନଙ୍କ ହସ ଆମ ହାତମୁଠାରେ, କାନ୍ଦ ଆମ ଆଙ୍ଗୁଳି ମୂନରେ, ଆମେ ତାଙ୍କୁ ଚାକିରୀ ଦେଇଛୁ, ସେମାନେ ଆମ ନିର୍ଦ୍ଦେଶନାରେ ଚଳିବେ, ଖଟିବେ, ଲହୁଲୁହ ଢାଳିବେ, ବିନା ଦରମାରେ ରେଭିନ୍ୟୁ ଷ୍ଟାମ୍ପ ଲଗାଇ ଦରମାନେଲୁ ବୋଲି ସ୍ୱାକ୍ଷର କରିବେ, ସତ୍ୟକୁ ଅସତ୍ୟ ବୋଲି କହିବାକୁ ବାଧ୍ୟ ହେବେ, ଅସତ୍ୟକୁ ସତ୍ୟ ବୋଲି କହି ମିଛସଙ୍କଳ୍ପ କରିବେ ।

ତଥାପି ଜୀଇଁବାକୁପଡିବ ଏଭଳି ଅପନ୍ତରା, ଆବର୍ଜନାମୟ ପରିବେଶରେ, ସ୍ୱପ୍ନ ନହେଲେ ଦିବାସ୍ୱପ୍ନ ପରି ପାଣିଚିଆ ହୋଇଯିବ ଯେ ! ! ଦୁଇନମ୍ବର ବର୍ଷ ଅର୍ଥନୀତି ଅଧ୍ୟାପକ ଭକ୍ତବନ୍ଧୁ ପ୍ରଧାନ ୟୁବିଆଇରେ ଚାକିରୀ ପାଇଯାଇଥିବାରୁ ସେ କଲେଜ୍‌ଛାଡ଼ି ଚାଲିଆସିଲେ ସମ୍ବଲପୁରକୁ । ମୁଁ ଭାବୁଥିଲି, ଯା ହେଉ ଅସିରଗଡ଼ ଦୁର୍ଗରୁ ଜଣେ ସ୍ୱାଧୀନତା ସଂଗ୍ରାମୀ ମୁକ୍ତି ପାଇଗଲେ ! ଏବେ ସେ ବେଙ୍କଅଫିସର୍ ଭାବରେ ଅବସରନେଇ ସମ୍ବଲପୁର ବୁଢ଼ାରଜା ଅଞ୍ଚଳରେ ନିଜ କୋଠାଘରେ ରହୁଛନ୍ତି । ଅର୍ଥନୀତି ବିଭାଗଟି ଖାଲି ହେବାରୁ କିଛି ମାସ ଅନ୍ତରାଳେ ନୂତନ ଅର୍ଥନୀତି ଅଧ୍ୟାପକ ଭାବରେ ଯୋଗ ଦେଲେ ବହୁବର୍ଷ ପୂର୍ବରୁ ଉପାଧ୍ୟୁତ୍ତର ପାଠ୍ୟକ୍ରମ ଶେଷ କରି ଘରେ ରହୁଥିବା ବୁଦ୍ଧଦେବ ପଟେଲ । ସେ ସୁନ୍ଦରଗଡ଼ ଜିଲ୍ଲା ଉଜଲପୁର ଗୌନ୍ତିଆ ଘରର ସନ୍ତାନ । ଗୋରା ତକତକ ମଣିଷ, କଥାରେ ନରମ, ସରଳ, ଶାଳୀନ, ଜ୍ଞାନୀ ପୁରୁଷ । ସେ ଯୋଗ ଦେବାପରେ ପରିବାର ସହ ପରମାଣପୁରଠାରେ ଘରଭଡ଼ାନେଇ ରହିଲେ । ତାଙ୍କସହ ମୋର ଖୁବ୍ ଜମିଲା ବନ୍ଧୁତ୍ୱ, ସେ ବୟସରେ ମୋଠାରୁ ବଡ଼ ହୋଇଥିବାରୁ ତାଙ୍କ ପ୍ରତି ମୋର ସମ୍ମାନବୋଧ କିଛି ଅଧିକ ଥିଲା, ଆଜି ବି ଅଛି, ସେ ମଧ୍ୟ ସୁବର୍ଣ୍ଣପୁର ଜିଲ୍ଲା ରାମପୁର କଲେଜର ଅଧ୍ୟକ୍ଷ ଭାବରେ ଅବସର ନେଇ ଝାରସୁଗୁଡାରେ ଘରକରି ରହୁଛନ୍ତି । ସୁଦର୍ଶନ ନାଏକ ତଡାଖାଇବା ପରେ ତାଙ୍କ ସ୍ଥାନରେ ଶାନ୍ତିଲତା ନାୟକ ଇତିହାସ ବିଭାଗର ଅଧ୍ୟାପିକାଭାବରେ ଯୋଗଦେଲେ । ବିଶ୍ୱସ୍ୱରୂପବାବୁ କଲେଜର ଆର୍ଥିକ ଅବସ୍ଥା ଦେଖି ବେଳ ଥାଉଁଥାଉଁ ବନ୍ଧ ବାନ୍ଧରେ କୁମର ନ୍ୟାୟରେ କଲେଜ୍ ଛାଡ଼ି ତାଙ୍କ ନିଜଘର ଟିଟିଲାଗଡ଼କୁ ବାହୁଡ଼ିଗଲେ । ପରେ ସେ ତାଙ୍କ ଭିଶୋଇ, ଯେ ଭଦ୍ରକରେ ଅବକାରୀ ଅଧିକ୍ଷକ ଥିଲେ, ତାଙ୍କ ପାଖରେ ଥିବାବେଳେ ଏକ ରାସ୍ତା ଦୁର୍ଘଟଣାରେ ମୃତ୍ୟୁବରଣ କରିଥିବାର ସମ୍ବାଦ ମିଳିଥିଲା । ସେ ମୋର ଅନ୍ତରଙ୍ଗ ବନ୍ଧୁଥିଲେ, ପରମାଣପୁର ଗାଁବାସୀଙ୍କ ସହ ଖଣ୍ଡାଧାର ବଣଭୋଜିର ମଧୁର ଘଟଣାମାନ

ଏବେ ବି ମନେଅଛି । ଖୁବ୍ ମେଳାପୀ ଥିଲେ ବିଶ୍ୱବାବୁ । ତାଙ୍କ ପଦବୀଟି ଖାଲିହେବା ପରେ ଯେହେତୁ କୈଳାସ ରାଜନୀତି ବିଭାଗର ଅଧ୍ୟାପକ ଥିଲେ, ଆଉ କେହି ନ ଆସିଥିଲେ ମଧ୍ୟ ଚଳିଥାନ୍ତା, ତଥାପି ପରେ ସେ ପଦବୀରେ ମୋର ଆଉଜଣେ ଭାଇପରି ବନ୍ଧୁଜଣେ ସୁଧାଂଶୁ ଶେଖର ପଟ୍ଟନାୟକ ଆସି ଯୋଗଦେଲେ । ବନ୍ଧୁ ହୋଇଥିବାରୁ ମୁଁ ଖୁସି ହୋଇଥିଲି, ତଥାପି ମନେମନେ ଚିନ୍ତା କରୁଥିଲି, ଏ ସୁଧାଂଶୁ ତ କେତେ ଭଲ ଥିଲେ, ଜାଣି ଜାଣି କାଦୁଅ ମାଡ଼ିଲେ କାହିଁକି ! !

ଅନୁଷ୍ଠାନଟି ମାଚିସ୍ ଖାଡ଼ି ବସ୍ ପରି ପରମାଣରର ଖାଲଢିପ ରାସ୍ତାରେ କୁନ୍ଥେଇ କୁନ୍ଥେଇ ଚାଲୁଥାଏ । ପଙ୍କ୍ଚର୍ ହେଲେ, ଆମେ ହିଁ ତାର ଟାୟାର ଖୋଲି, ଟ୍ୟୁବ୍ ବାହାର କରି ଝାଳର ସୁଲେସନରେ ସଜାଡ଼ି ଦେଉଥିଲୁ ଆଉ ପମ୍ପ ନଥିବାରୁ ବାବାଜୀ ନାଥଙ୍କ ଶରଣରେ ପଡି ହାଓ୍ୱାୟିତ କରୁଥିଲୁଁ । ନିଜେ ବି ହାଓ୍ୱାୟିତ ହୋଇ ବେଲୁନ୍‌ପରି କଲେଜ ସାରା ଉଡ଼ିବୁଲୁଥିଲୁ । ଆକାଶରୁ କଲେଜଟି ଦେଖାଯାଉଥିଲା ଭୁତବଙ୍ଗଳା ପରି, ଛାଇ ଆଲୁଅର ଲୁଚକାଳିରେ କଲେଜଟି କେତେବେଳେ ଅନ୍ଧକାରରେ ବୁଡ଼ି ରହୁଥିଲା, କେତେକଙ୍କ ପାଇଁ ସେଇ ଅନ୍ଧକାର ଭିତରେ ମିଞ୍ଜିମିଞ୍ଜି ଜଳୁଥିବା ବଏଠାରେ ତୀର୍ଯ୍ୟକ ଆଲୋକଶିଖା ସ୍ୱଷ୍ଟ ଦିଶୁଥିଲା । ସାଇକଲ୍ ଛାଡ଼ି କଲେଜ୍ କୋଠରି, କଲେଜ୍ ଛାଡ଼ି ମାଚିସ୍ ଖାଡ଼ି ବସ୍, ବସ୍ ଛାଡ଼ି ପୁଣି ପ୍ରଭାକର ପ୍ରଧାନଙ୍କ ଘରେ ସୁଧାଂଶୁଙ୍କ ସହ ଭଡ଼ାରେ ରହଣି, ଏମିତି ଅସ୍ଥିରତା ଭିତରେ ଜୀବନ ଗତି କରୁଥିଲା, ତା ସହ ଅନୁଷ୍ଠାନ ବି । ଏହି ତାଡ଼ନାରୁ ମୁକ୍ତିର ପଥ ଖୋଜୁଖୋଜୁ ରାଉରକେଲାର କଲଚରାଲ୍ ଏକାଡେମୀରୁ ପୁଣି ନାଟକର ଆହ୍ୱାନଆସିଲା ଭିନ୍ନଭାଷାରେ, ଲକ୍ଷ୍ୟରେ, ଦିଶାରେ । ଏଭଳି ବିପର୍ଯ୍ୟସ୍ତ ଜୀବନରୁ ନାଟକ ହିଁ ବ୍ୟକ୍ତିଗତ ଭାବରେ ମୋତେ ମୁକ୍ତି ଦେଇ ପାରିବ ବୋଲି ଆତ୍ମବିଶ୍ୱାସଟିଏ ଜନ୍ମିଲା ହୃଦୟର କେଉଁ ଏକ ନିଭୃତ କୋଣରେ । ଯାହା ପରେ ବାସ୍ତବରେ ଇତିହାସ ପାଲଟିଗଲା, ଯାହାର ଜ୍ୱଳନ୍ତ ଉଦାହରଣ ହେଉଛି ଆସନ୍ତାକାଲି କବି ସତ୍ୟନାରାୟଣ ବହିଦାରଙ୍କ ଜନ୍ମଦିବସକୁ ସମ୍ବଲପୁର ଦିନ୍ ନାମରେ ପାଳନ କରିବା, ଏଇ ତ ନାଟ୍ୟଜୀବନର ସୁବର୍ଣ୍ଣ ମୋଡ଼ ।



**ଲେ**ଖିବି, ନିଶ୍ଚୟ ଲେଖିବି, ମୋ ଦଦରା ଚାକିରୀଜୀବନକୁ ସରସିତ କରିବା ପାଇଁ ନାଟକ ହିଁ ତ ମୋର ଏକାମାତ୍ର ଆଶ୍ରୟ, ଅଭିନୟ କେତେବେଳେ ବାସ୍ତବତାକୁ ଲୁଚେଇ ରଖେ, ଆଉ କେତେବେଳେ ବାସ୍ତବତା ଅଭିନୟକୁ ଜୀବନ୍ତ କରିପକାଏ ।

ଏବେ ମୁଁ ଅଭିନୟକୁ ଲୁଚେଇବି ନା ବାସ୍ତବତାକୁ? ରାଉରକେଲାରୁ ସବୁଜ ସଙ୍କେତ ଆସିବାର ତଥାପି କିଛି ମାସ ବାକି ଥାଏ । ହେଲେ ତାଙ୍କଠାରୁ ସବୁଜ ସଙ୍କେତ ଆସିଯିବା ପରେ ନାଟକକୁ କିଛଦିନ ସ୍ଥଗିତ ରଖିବା ପାଇଁ ପଡିବ, ଜୀବନ ଗଢ଼ିବା ପ୍ରସଙ୍ଗ, ସଂସାରର ଭିତ୍ତି ସ୍ଥାପନ କରିବାର ବେଳ, ଦଶ ବର୍ଷର ପ୍ରତୀକ୍ଷାର ଆନନ୍ଦମୟ ପରିଣତିକୁ ସ୍ୱାଗତ କରିବାର ମଧୁଲଗ୍ନ ! !

ଓଃ... ଦଶ ବର୍ଷର କାହାଣୀର ସୁଖଦ ଯବନୀକା, ପୁନଶ୍ଚ କାମନାରେ ପୁନଶ୍ଚ ପୃଥିବୀ ଗଢ଼ିବାର ଦମ୍ଭୋକ୍ତି, ନିରବ ପ୍ରେମର ହର୍ଷୋହ୍ଲାଦମୟ ଶେଷଦୃଶ୍ୟ, ପରଦା ପଛପଟର ସମସ୍ତ ଅଭିନୟଗୁଡ଼ିକର ସତ୍ୟାସତ୍ୟ ଉନ୍ମୋଚନ । ଯାହା ହୃଦୟର ନିଭୃତ କୋଣରେ ଅଭିନୀତ ହେଉଥିଲା, ସେସବୁ ଉନ୍ମୁକ୍ତ ମଞ୍ଚରେ ଆଲୋକାୟିତ ମଣ୍ଡପରେ ମନ୍ତ୍ରୋଚ୍ଚାରଣର ପବିତ୍ର ଅନୁରଣନରେ ଉଦ୍‌ଘାଟିତ ହେବ, ଯାହା ଦୁଇଦୁଇ ଚାରିଆଖିର ପଲକ ଭିତରେ ସୀମିତ ଥିଲା, ତାହା ଦୁଇ ଶହ ଗୁଣନ ଦୁଇ ସମାନ ଚାରିଶହ ଆଖିଗୁଡ଼ିକରେ ଦୃଶ୍ୟମାନ୍ ହେବ, ଯେଉଁ ସମ୍ପର୍କ ଦଶବର୍ଷର ଉତ୍ଥାନ-ପତନ ଦେଇ ଗଢ଼ି ଉଠିଥିଲା, ତାହା କାଳକାଳର ସମ୍ବନ୍ଧରେ ରୂପାୟିତ ହେବ, କିମାଶ୍ଚର୍ଯ୍ୟମ୍ ! ! !

ଏମିତି ଏକ ଘଡିସନ୍ଧି ମୁହୂର୍ତ୍ତରେ ସମ୍ବଲପୁର ସହରର ଏକ ନିର୍ଦ୍ଦିଷ୍ଟ ଇଲାକାରେ, ବୃକ୍ଷଲତାମୟ ସବୁଜ ପରିବେଷ୍ଟନୀରେ, ଜନଶୂନ୍ୟ ଏକ ନିଛାଟିଆ ଅଞ୍ଚଳରେ, ଅପରାହ୍ନର ଛାଇଆଲୁଅଛିଟା ମାହେନ୍ଦ୍ର ବେଳାରେ ମୁକ୍ତ ଆକାଶର ବିହଙ୍ଗ ଭଳି ଉଡ଼ିଉଡ଼ି ଆସି ନିଜ ମନଗହନର କଥା ପରସ୍ପରକୁ ଜଣାଇଲେ, ଶବ୍ଦ ସବୁ ଶୁଭୁଥାଏ ଫୁସୁରୁଟୁପୁର । ଲାଗୁଛି ତ ନାଟକୀୟ, ତାହେଲେ ତାକୁ ନାଟ୍ୟରୂପ ଦିଆଯାଉ ! ଯେଉଁ ଘଟଣାରେ ନାଟକୀୟତା ଭରିଛି, ତାକୁ କାହାଣୀ ଭଳିଆ ଲେଖିଲେ ଚଳିବ କି ! ! !

ମୁଁ – ଦେଖ, ଆଉ ଟାକ୍‌ଲେ ନାଇଁଚଲେ । କଥାଟାକେ ଆଗକେ ବଢ଼ାବାକେ ପଡ଼୍‌ବା ।

ସେ – ମତେ ତ ଡର୍ ଲାଗୁଛେ ।

ମୁଁ – ଆଉ ଡର୍‌ଲେ ହେବାକାଏଁ, ତମେ ବି.ଇଡି. ସାଏଲ । ମଦନାବତୀ ନ ଟିଚର୍ ହେଲ, କେଡେ ଖୁସିର କଥା । ମୁଇଁ ପିଜି ସାଏଲି, ଅଧ୍ୟାପକ ହେଲି । ଆଉ ତ ହେନ୍ତା କିଛି ଘଟବାର୍ ନାଇନ ଯେ ଟାକି ହେବା ।

ସେ – କେନ୍ତା ହେବା ଯେ..

ମୁଁ – ହେବା, ଜରୁର୍ ହେବା । ତୁମର୍ ଘର କେ ଘାଏ ଅଧେ ଯାଇକରି ଚା' କପେ ପି'ଲା ଭିତ୍ରେ ତମର୍ ଘରେ ତ ଟିକେ ସୋର୍ ସୁରାକ୍ ପାଇଥିବେନ । ଆମର୍ ଘରେ ତ କିଛି ନିହେ ଜାନନ୍ । ଅବଶ୍ୟ ଦାଦାବୋହୂ କିଛି ସନ୍ଦେହ କରିଥିବେନ । ଜିଏମ୍‌ରେ ପଢ଼ଲାବେଲେ ଯେହେତୁ ଘାଏ ମୁହାଁମୁହିଁ ନାଇଁ ହେଇଯାଇଥିଲା କାଏଁ ! ଫିର୍ ବି ବାପା ମାଁ ନାଇଁ ଜାନବାର୍‌ତକ୍ ତ କଥା ଆଗକେ ନାଇଁ ବଢ଼ନେ ।

ସେ – ହେଟା ତ ସତ୍ କଥା ।

ମୁଁ – ଗୁଟେ କାମ୍ କରୁଁ ।

ସେ – କାଣା ?

ମୁଁ – ଯେହେତୁ କାମ୍‌ଟା ଆମ୍ ଦୁହିଜନ୍‌କର୍ ଆଏ, ଆମେ ନିଜର୍ ଘରେ ନିଜେ ହିଁ ଜନାବାର୍ ଦାୟିତ୍ୱ ନେଉଁ । ତୁମେ ତୁମର୍ ମାଁବାପାକେ କହେବ, ମୁଇଁ ମୋର୍ ବାପାମାଁକେ କହେମି, ହେଲା ତ ! !

ସେ – ହଉ ସିନେ, କାଣା ହେବା ଯେ...

ମୁଁ – କାଣା ଆଉ ହେବା, ଆମେ ଯେନ୍‌ଟା ଚାହୁଁଛୁ ସେଟା ନ ହେବା । ପାପ୍ ତ ନାଇଁକରି, ଭଲ୍ ପାଇଛୁଁ, ଆମର୍ ଭଲ୍‌ପାଏବାର୍ ଗୁଟେ କୁଢ଼େ ନାଇଁ, ଦଶ୍ ବରଷ୍‌ର ନିଷ୍କଲଙ୍କ୍ ଇତିହାସ ଅଛେ, ଆମର୍ ମନ୍ ମିଶିଛେ, ଭାବ୍ ଗୁଟେ ହେଇଛେ, ଦୁହିକର ବିଚାର୍ ଗୁଟେ ଆଏ ।

ସେ – ତୁମର୍ କଥାମାନ୍ କେତେ  ଭଲ୍ ଲାଗୁଛେ, କିଛି ଅସୁବିଧା ନାଇଁ ହୁଏ ଲେଖେଁ ଲାଗୁଛେ । ଆଛା,  ତୁମର୍ ଘରେ ଯଦି ମନା କରିଦେବେ !

ମୁଁ – ମନା ତ ନାଇଁକରନ୍, ଆଘୁ ନାଇଁକହେଲୁ ବଲି ଦୁଇ ଚାର୍ ପଦ୍ ମଧୁର୍‌ଗାଲି ଦେଇପାରନ୍ । ଆଉ, ସେ ଗାଲି ଶୁନବାକେ ମୁଇଁ ପ୍ରସ୍ତୁତ୍ । ଗୁଟେ କଥା ମନେରଖିଥ, ଆମର୍ ବିହାକେ ବିବାହ ବଲି ମୁଇଁ ନାଇଁବୁଝବାର୍ ।

ସେ – ଆଉ ସେ ?

ମୁଁ – ବିବାହ ଶବ୍ଦନୁ ବନ୍ଧନ ଶବ୍ଦକେ ମୁଇଁ ବେଶି ବିଶ୍ୱାସ କରସିଁ । ଆମର୍ ବିହା, ବିହା ନୁହେଁ, ଗୁଟେ ପବିତ୍ର ବନ୍ଧନ ଆଏ, ଯେନ୍‌ଟା ଜନମ୍‌ଜନମ୍ ତକ୍ ଛିଡ଼େ ନାଇଁ ।

ସେ; ଫେର୍ ସାହିତ୍ୟ ଲମାଲ କାଏଁ ? ଚାଲ, ଘର୍‌କେ ଯାଇବସୁଁ, ଦେରିହେଲାନ ।

ମୁଁ – ବୈଲେ ଇ ହପ୍ତା କହେମା, ପଛେ ଯେନ୍‌ଟା ହେବା, ଜନାବ ।

ସେ – ହଁ, ଯାଉଛେଁ ।

ଏ ତ ସତ ଘଟଣାର ମିଛ ନାଟ୍ୟରୂପ । ହଁ' ସିନା କହିଦେଲି, ହେଲେ ଛାତିର ଛନ୍‌କା ଏଭଳି ଲହଡ଼ି ମାରିଲା, ସେହି ସପ୍ତାହର ପ୍ରଥମ ଦୁଇଚାରି ଦିନ ନିଦ ଖୁବ୍‌ଡେରିରେ ଆସିଲା । ପଞ୍ଚମ ଦିବସର ସନ୍ଧ୍ୟାରେ ଭାବିଲି ଯାହା ମୁହଁରେ ସମ୍ଭବ ହେଉ ନାହିଁ, ତାକୁ ଲେଖି ଜଣାଇଦେଲେ କେମିତି ହୁଅନ୍ତା ! ଆଗପଛ କିଛି ନଦେଖି ଟେବୁଲ୍ ଚୌକି ସଜାଡ଼ି, କାଗଜକଲମଧରି ଲେଖିବାର ଆରମ୍ଭକଲି ଲିଖିତ ବୟାନ୍ ମୋର ଦଶବର୍ଷ ସମ୍ପର୍କର । ଲେଖୁଲେଖୁ କାହାଣୀ ଭଳି ଦି ଫର୍ଦ୍ଦ ହୋଇଗଲା ମୋ ସଂସାରଗଢ଼ିବାର ଇସ୍ତାହାର । ଲେଖିସାରିବାପରେ ଆନନ୍ଦରେ କେଇ ବୁନ୍ଦା ଲୁହ ନିଗିଡ଼ିଗଲା, ମୋ ଭାବନାର ଶାଶ୍ୱତ ଢେଉସବୁ ନୃତ୍ୟ କରିବସିଲେ । ଉତ୍କଣ୍ଠା, ଆବେଗ, ଉଦ୍‌ବେଳନର ଘୁର୍ଣ୍ଣାୟମାନ ମାନସିକତାରେ ମାଁଙ୍କ ହାତରେ ଲେଖିଥିବା କାଗଜ ଦିଫାଳ ଭଲଭାବରେ ଚଉତି ପ୍ରଭୁଙ୍କୁ ଡାକି ଧରାଇଦେଇ ଛକକୁ ଚାଲିଗଲି । ଛକକୁଆସି ପାନଦୋକାନର ବେଞ୍ଚରେ ବସି ଭାବୁଥିଲି, ମାଁ ବାପାଙ୍କ ପ୍ରତିକ୍ରିୟା କଣ ହୋଇଥିବ ! ରାଗିଥିବେ, ହସିଥିବେ, ମୋତେ ଘୃଣାଚକ୍ଷୁରେ ଦେଖିଥିବେ, ପ୍ରକୃତରେ କଣ ଘଟୁଥିବ ଏବେ ଘରେ, କି ଚର୍ଚ୍ଚା ଚାଲିଥିବ ! ଏଭଳି କେତେ ସୁଚିନ୍ତା, ଦୁଃଶ୍ଚିନ୍ତା... । ଘରକୁ ଲେଉଟାଣିବେଳେ ଲାଗୁଥାଏ, ପାଦତଳୁ ମାଟି ଖସିଖସି ଯାଉଛି । ତଥାପି ମାଁ ଉପରେ ମୋର ଭରସା ଥିଲା, ତାର ଦୁଃଖିଧନକୁ ସେ କେବେ ନିରାଶ କରିବନାହିଁ ! ।

ଘରକୁ ପହଞ୍ଚିଲାକ୍ଷଣି ମାଁ କହିଲେ, ଯା', ତୋର ବାପା ଡାକୁଛନ୍ । ଯାଉଛି' କହି ମୁଣ୍ଡଟା ତଳକୁକରି ବାପାଙ୍କ କୋଠରିକୁ ପଶିବାମାତ୍ରେ ବାପା କହିଲେ, 'ହଏରେ ଚୁପ୍ ସୈତାନ୍, ମତେ ଆଗୁ ନାଇଁ କହିଥିଚୁ ! ହେ ଶ୍ରୀବଲ୍ଲଭର୍ ଝିଅ ତ, ମୁଇଁ ଜାନିଛେଁ ଯେ । ରେଭେନ୍ସାରେ ପଢୁଥିଲୁଁ, ଘାଏ ମତେ ଜର୍ ଆନ୍‌ଲା, ରାତିସାରା ଶ୍ରୀବଲ୍ଲଭ ମତେ ଗୀତ୍ ଗାଇକରି ଶୁନାଏ । ବଢ଼ିଆ ଗୀତ୍ ଗାଉଥିଲା । ପଛେ କାଣା କଲା, ଆଉଖବର୍ ନାଇଁ ରଖି ।' ମୁଁ ଭରସା ପାଇ ତାଙ୍କ ଅବସରନେଇ ଫାଟକଘରେ ରହିବା କଥା ଜଣାଇଦେଲି । ଆମ କଥାଭିତରେ ମାଁ ବି କେତେବେଳେ ଆସିଯାଇଥିଲା, ମୋର ଅଜାଣତରେ । ସେ କହିଲା, ବୁଝଲୁରେ ବାବୁ, ତାର୍ ମାଁ ଆଉ ମୁଇଁ ଗରିଆ ଧରି ପରେ ରାମସାଗର୍ ବନ୍ଧକେ ପାଏନ୍ ଆନି ଯାଉଥିଲୁଁ । ହେମାନେ ହେ ବାବୁଘରର୍ ଝି । ବାପା କହେଲେ, 'ହଉ ହଉ, ମାଁ ସାଙ୍ଗେ କଥା ଲାଗ୍ । ଯିମା, ଘର୍ ଦେଖିଯିମା ।'



ଓଃ, ଦୀର୍ଘ ଦଶବର୍ଷର ଦୀର୍ଘଶ୍ୱାସ ଯେଭଳି ଗୋଟିଏ ଧାରାରେ ଉତୁରିଗଲା । ଆଉ ସେଇ କ୍ଷୀପ୍ରଶ୍ୱାସର ଶକ୍ତି ନେଇ ମୋ ମନଆକାଶରେ ରଙ୍ଗବେରଙ୍ଗ ବେଲୁନ୍‌ଗୁଡ଼ାଏ ଉଡ଼ିବୁଲିଲା । ସବୁଗଛରେ ହଠାତ୍ ରଙ୍ଗିନ୍ ଫୁଲମାନ ଏକା ସଙ୍ଗରେ ଫୁଟି ଚତୁର୍ଦ୍ଦିଗ ଚହଟାଇଦେଲେ, ଦୁନିଆଯାକର ଚଢ଼େଇମାନେ ଯେମିତି ଏକାସାଙ୍ଗରେ ଗାଇ ବସିଲେ ଆମପ୍ରେମର ସାର୍ଥକତାର କୋରସ୍, ଘରେବାହାରେ ଯାତାୟାତ କରୁଥିବା ଚିହ୍ନାଅଚିହ୍ନା ମଣିଷମାନଙ୍କ ହସରେ ଉଚ୍ଛୁଳିପଡୁଥାଏ ଯେମିତି ସାରାପୃଥିବୀ, ବିଜୟଉଲ୍ଲାସରେ ଯେମିତି ବୀରଦର୍ପରେ ଗଡ ଜୟକରି ଫେରୁଥାନ୍ତି ପ୍ରେମିକସେନା କଦମ୍‌ତାଲ୍ କରି, ଏକାଏକା ପୁଣି ଛକକୁ ଆସି ସେଲିବ୍ରେଟ୍ କଲି ମୋର ପ୍ରଥମ ବିଜୟକୁ । ଓଃ, କି ଆତ୍ମସନ୍ତୋଷ ! ! !



ଆମ ଘରକଥା ତ ଜଣାପଡିଗଲା । ତାଙ୍କ ଘରକଥା ଜାଣିବି କେମିତି ? ସାତ ଦିନରୁ ଦି ଦିନ ଆହୁରି ଗଡ଼ିଗଲାଣି । କିଛି ଖବର ନାହିଁ । ଏମିତି ବି ହୋଇଥାଇପାରେ, ଏ ଘଟଣା ଜଣାଇବା ପରେ ପ୍ରାଣ, ପ୍ରେମନାଥ, ରାଜା ମୁରାଦ୍ ଭଳି ତାଙ୍କୁ ପ୍ରଚଣ୍ଡଗାଳି ଶୁଣିବାପାଇଁ ପଡିଥିବ । ଚିରାଚରିତ ସିନେମା ସଂଳାପ ପରି ତାଙ୍କୁ ଗର୍ଜନ ଶୁଣିବାପାଇଁ ପଡ଼ିଥିବ । 'ଖବରଦାର୍ ଆଉ ଇ ଘରୁ ବାହାର ଆଡ଼େ ବାହାରଲୁ ବଏଲେ ! ଆଏଜ୍‌ଠାନୁ ସ୍କୁଲଫୁଲ୍ ଯିବାର୍ ବନ୍ଦ ।' ଆଉ ଏମିତି ବି ହୋଇଥିବ । ଅଶୋକ କୁମାର ଭଳି ସାମାନ୍ୟ ସହାନୁଭୂତିଶୀଳ ଭାଷାରେ ଶୁଣିବାକୁ ପଡିଥିବ । 'ଆରେ ମାଁ, ତୋର ଲାଗି ମୁଇଁ କେଡ଼େ ସୁନ୍ଦର ଘରବର ଦେଖି ସାଏଲିନ । ସମସ୍ତଙ୍କର ଜୀବନେ ଏନ୍ତା ଘଟିଥିସି, ହେଲେ ସଂସାର ଗଢ଼ବାରଟା ଏତେ ସହଜ୍ ନୁହେଁରେ ମାଁ । ଯେନ୍‌ଟା ହେଇଗଲା, ହେଇଗଲା, ସବୁ ଭୁଲି ଯା । ଏତ୍‌କେ ନିଜର୍ ଭବିଷ୍ୟତ ଆଡକେ ଭାବିକରି ଆଗକେ ବଢ଼ ! ! !'

ଏଭଳି ଦୁଶ୍ଚିନ୍ତା ମୋତେ ଘାରି ପକାଇଲା କିଛିଦିନ । ମୁଁ ଉତ୍ତରପଶ୍ଚିମ ଦିଗର ନୌଭେଲା । ସେ ପଶ୍ଚିମ ଦିଗର ଅନୁଗାମୀ । ସେ ମଦନାବତୀ ପବ୍ଲିକସ୍କୁଲର ଶିକ୍ଷୟିତ୍ରୀ । ମୁଁ ପରମାଣପୁର କଲେଜର ଅଧ୍ୟାପକ । ଗୋଟାଏ ମଧ୍ୟବର୍ତ୍ତୀ କାଳୀନ ଅଧିବେଶନର ଆବଶ୍ୟକତା ପଡୁଛି । ଆମେ ପରସ୍ପର ଭେଟ ନ ହେଲେ, ଆଲୋଚନା ନ କଲେ କଥା ଆଗକୁ ବଢ଼ିବ କେମିତି ? ପୁଣି ନିର୍ବାଚିତ ହେଲା ଏକ ନିର୍ଦ୍ଦିଷ୍ଟ ସମୟ, ସ୍ଥାନ, ଭେଟିବାର ଭାବବିନିମୟ କରିବାର ।

ସ୍ଥାନ, କାଳ ସଠିକ୍ ହେବା ପରେ ପାତ୍ରୀ ଅପେକ୍ଷାରେ ମୁଁ । ଆସିବେ ନା ନାହିଁ, ଯଦି ଆସିବେ, ମୁହଁ ଶୁଖେଇ ଆସିବେ, ନା ହସହସ ମୁହଁରେ ଆସିବେ । ମୋ ସାମ୍ନାରେ ଯଦି କାନ୍ଦିକାନ୍ଦି କହିବେ, ବାପା ମନା କଲେ । ତମେ ମତେ ଭୁଲିଯା ! ! ଆଉ ଏମିତି ବି କହିପାରିନ୍ତି, ବାପା ମାଁ ସଭେ ରାଜି ! ! ଏମିତି ଚିନ୍ତାରେ ବାଉଳା ହୋଇଯାଉଥିବା ବେଳେ ଲକ୍ଷ୍ୟ କଲି ଦୂର ଦିଗ୍‌ବଳୟରୁ ନିଶୁଣି ଯୋଗେ ଆକାଶର ଛାତରୁ ସେ, ପାହାଚପାହାଚ ଓହ୍ଲାଇ ଆସୁଛନ୍ତି । ଏତେ ଦୂରରୁ ଜଣାପଡୁ ନଥିଲେ । ସେ ହସହସ ମୁହଁନେଇ ଆସୁଛନ୍ତି ନା ମୁହଁଶୁଖେଇ ଆସୁଛନ୍ତି । ନାଁ ଗମ୍ଭୀର ଢଳଢଳ ହୋଇ ଆସୁଛନ୍ତି । ସେ ଯେତେ ପାଖେଇ ଆସୁଥାନ୍ତି, ମୋ ହୃଦ୍‌ସ୍ପନ୍ଦନ ବଢ଼ିବଢ଼ି ଚାଲିଥାଏ ।

ସେ – ମୁଇଁ ଆଏଲି ନ ଯେ ।

ମୁଁ – ଇ ବୁଆ । ଆସି ଗଲନ । ମୁଇଁ ହେ ଆଡ଼େ ତମକୁ ଅନ୍‌ସିରଛେଁ ।

ସେ – ତମର୍ ଘରେ କାଁ ବଏଲେ ?

ମୁଁ – ଆଉ ତମର୍ ଘରେ ?

ସେ – ମୋତେ କହେଲେ, ନାଇଁ, ପହେଲା ତମେ କହ ।

ମୁଁ – ମୋର୍ ବାପା ଆଉ ତମର୍ ବାପା ପରେ ଏକାସାଙ୍ଗେ ରେଭେନ୍ସାରେ ପଢୁଥିଲେ । ଦୁହେଁ ବଡ଼ାସାଙ୍ଗ ହେଉଥିଲେ । ଆଉ ଜାନିଛ, ତମର୍ ମାଁ ଆଉ ମୋର୍ ମାଁ ଗରିଆଙ୍କୁରା ଧରି ରାମସାଗର୍ ବନ୍ଧକେ ଗାଧି ଯାଉଥିଲେ । ଇ ଭିତରେ ତମକୁ ଦେଖିଆଏବେ ପରେ ।

ସେ – ମୋର୍ ବାପା ତମକୁ ଘର୍‌କେ ଡାକିଛନ୍ ।

ମୁଁ – କାଁଜେ ?

ସେ – ଆମକୁ ପରୀକ୍ଷା ଦେବାକେ ପଡ଼ବା ତାଙ୍କର ଆଘେ ।

ମୁଁ – କାଣା ରିଟିନ୍ କି ଭାଏଭା ?

ସେ – ଖାଲି ଭାଏଭା । ତୁମକୁ ପଚରାବେ । ତମେ ମତେ ପସନ୍ଦ କରୁଛ କି ନାଇଁ ?

ମୁଁ – ତମକୁ ବି ତ ପଚରାବେ । ମତେ ତୁମେ ପସନ୍ଦ କରୁଛ କି ନାଇଁ ?

ସେ – ତମେ କାଣା କହେବ ?

ମୁଁ – ତମେ କାଣା କହେବ । ପହେଲା କହ ।

ସେ - ମୁଇଁ କହେମି । ହେନ୍ତା ନାଟୁଆଟାକେ କିଏ ବିହା ହେବା !!

ମୁଁ - ଆଉ ମୁଇଁ କହେମି । ଇନ୍ତା ଖେଁଡରୀ ନାକୀକେ କିଏ ବିହା ହେବା ।

ଦୁହେଁ କିଛି ସମୟ ଯାଏ ଖୁବ୍ ହସିଲୁ । ହୃଦୟ ଖୋଲା ହସ । ତୃପ୍ତିର ହସ ।

ସେ - କେଭେ ଆଏବ ?

ମୁଁ - ତମେ କହ, କେଭେ ଗଲେ ଠିକ୍ ହେବା ।

ଏମିତି ଏମିତି ବାର୍ତ୍ତାଳାପ ଭିତରେ ପଶ୍ଚିମ ଦିଗନ୍ତ ଅସ୍ତରାଗର ରଙ୍ଗରେ ରଙ୍ଗୀନ ହୋଇଯାଉଥିବା ବେଳେ ଆମ ଭଲ ପାଇବାର ରବିଟି ଉଦିବ ଉଦିବ ହେଉଥାଏ । ଅଶୀ ଦଶକର ପୂର୍ବକାଳ, ଯିବାକୁ ହେବ ଇଣ୍ଟର୍ଭ୍ୟୁ ଦେଇ, ଜୀବନ ପରୀକ୍ଷାର । ଯଦିଓ ପରମାଣପୁର ଇଣ୍ଟର୍ଭ୍ୟୁ ଭଳି ଏହା କେବଳ ଗୋଟାଏ ପ୍ରକ୍ରିୟା, ତଥାପି ଏଭଳି ସାକ୍ଷାତକାରର ଗୋଟାଏ ଗାମ୍ଭିର୍ଯ୍ୟ ଅଛି । ଆଗରୁ ତାଙ୍କ ବାପାଙ୍କ ସହ ଭେଟ ହୋଇଛନ୍ତି, କଥାବାର୍ତ୍ତା ମଧ୍ୟ ହୋଇଛି, ତଥାପି ଏହି ଭେଟର ଏକ ସ୍ୱାତନ୍ତ୍ୟ ରହିଛି । ଭଲ ଜାମାଟିଏ ଗଳାଇ, ପାଉଡର ପୁଳାଏ ବିଞ୍ଚି ହୋଇ, ପନିଆରେ କେଶରାଶିକୁ ଅନ୍ତତଃ ପନ୍ଦର ଥର ସେଟ୍ କରି, ସାଇକଲରେ ବହାରିପଡିଲି ତାଙ୍କଘର ଅଭିମୁଖେ । ଭାରୀ ଭଦ୍ର, ଶାଳୀନ, ସାବଲୀଳ ତାଙ୍କ ବାପାଙ୍କ କଣ୍ଠସ୍ୱର, କଥାର ଧ୍ୱନୀ ବି କେ.ଏଲ୍. ସାଇଗଲ ଜମାନାକୁ ମୋତେ ଟାଣିନେଉଥିଲା । ଆମ ଉଭୟଙ୍କୁ ତାଙ୍କ ପାଖରେ ଠିଆ କରେଇ ଆମଠୁ ସ୍ୱୀକାରୋକ୍ତି ନେଇଗଲେ, ଜନ୍ମଜନ୍ମାନ୍ତରର ସାଥି ହେବାର ସଙ୍କଳ୍ପ ସଂଗ୍ରହୀନେଲେ, ତୃପ୍ତିର ନିଶ୍ୱାସଟାଏ ମାରି ଖୁସିରେ ତାଙ୍କୁ ତଳକୁ ପଠେଇଦେଲେ, ଯା, ଚା' ଆଣିବୁ ଯା କହି । ସେ ତଳକୁ ଗଲା ପରେ ବାପାଙ୍କ କଥା ପଚାରିଲେ, ଅତୀତର ସ୍ମୃତି ଚାରଣ କଲେ । ମୋ ଚାକିରୀ ଓ ହବି ବାବଦରେ ପଚରାଉଚୁରା କଲେ, ପରେ ବିଦାୟ ନେବା ବେଳେ ଲକ୍ଷ୍ୟ କଲି ସେ ଓ ତାଙ୍କ ଭଉଣୀ ଛାତରେ ଠିଆ ହୋଇ ହସହସ ମୁଖରେ ମୋ ଆଡ଼କୁ ଦେଖୁଛନ୍ତି । ବେଶ୍, ଏତିକି ପାଇଁ ଏତେ ଟେନସନ୍ !!

ମୁଁ ସିନା ଦଶ ବର୍ଷ ହେଲା ତାଙ୍କୁ ଦେଖିଆସିଛି, ଆମ ଘରଲୋକ ତ ବିଲକୁଲ୍ ଦେଖିନ ଥିଲେ । ମୋ ବଡ଼ ନାନୀ ଆଉ ମାଁ କରି କିଛି ତାଙ୍କ ଘରକୁ ଗଲେ ବୋହୂଦେଖି । ବଡ଼ ନାନୀ କହୁଥିଲେ, ଦେଖି, ମୁଇଁ ସଫାସଫା କହିଦେଉଛେଁ, ମୋର ଭାଇ ଦଶପଟ୍ ଲେଖାଁ ପରଠା ଖାଏସି, ହେତ୍କି ବନେଇକରି ଖୁଏଇ ପାରବୁ ତ ଆମର୍ ଘର୍କେ ଆ ।

ସେ କଥା ସବୁ ଏବେ ମନେ ପଡିଲେ ହସ ମାଡୁଛି । ଏ କଥା ସତ ଯେ ମୁଁ ଭାରି ରୁଟି ପରଠା ପ୍ରିୟ, ଖାଉଥିଲି ବି ମସ୍ତ । ହେଲେ ଏବେ ମଧୁମେହ ପାଇଁ ତିନୋଟି ରୁଟିରୁ ଆଉ ଅଧିକ ପେଟକୁ ଯାଉନି ।

ପଣ୍ଡିତେ ଲଗ୍ନ ସ୍ଥିର କଲେ ଆସନ୍ତା ୧୯୮୧ ମସିହା ଜାନୁଆରୀ ଅଣତିରିଶ ତାରିଖରେ ବାହାଘର ଅନୁଷ୍ଠିତ ହେବ । ତିରିଶରେ ବନ୍ଧାପନା । ମୋ ସହପାଠୀ ରବି ନନ୍ଦ ଓ ରେଣୁ ମଧ୍ୟରେ ବାହାଘର ଠିକ୍ ହୋଇଗଲା । ତାଙ୍କ ତାରିଖ ହେଲା ଏକତିରିଶ, ଜାନୁଆରୀ । ସେ ବି ଥିଲା ଏକ ସଫଳ ପ୍ରେମବିବାହ । ଉଭୟ ବନ୍ଧୁଙ୍କର ଭଲ ପାଇବାର ସଫଳତା ପଛ ପଟେ ଥିଲା ଆମର ଦୃଢ଼ ସଙ୍କଳ୍ପବୋଧ ।

ଏଭଳି ମଧୁର ମୁହୂର୍ତ୍ତମାନଙ୍କରେ ମୁଁ ଭୁଲିଯାଇଥିଲି କଲେଜ୍‌ର କଥା । ନାଟକ କଥା, ସାହିତ୍ୟସେବା କଥା, ସଂଗୀତ କାର୍ଯ୍ୟକ୍ରମ କଥା । ଏକ ହିଁ ଲକ୍ଷ୍ୟ, ସଫଳ ପ୍ରେମର ସଫଳତମ ଯବନୀକା । ମୁଁ ମୁଁ ନଥିଲି, ସେ ସେ ନଥିଲେ । ଆମର ନାମ କିଛି ନଥିଲା । ବେଶ୍, ଆମେ ଦୁହେଁ ଥିଲୁ ଈଶ୍ୱରଙ୍କ ସୃଷ୍ଟିରେ ଗୋଟିଏ ଗୋଟିଏ ଆତ୍ମା । ଦୁଇଟି ଆତ୍ମାର ମିଳନ ହେବ ଏହି ବିବାହ ବନ୍ଧନରେ, ଦୁଇ ମନର ସଂଯୋଗ ଘଟିବ । ଦୁଇଟି ହୃଦୟ ଭେଟାଭେଟି ହେବେ ସ୍ୱପ୍ନର ଅଳିନ୍ଦରେ, ଯେଉଁଠି ଥିବ ସମୁଦ୍ର ସମୁଦ୍ର ଭଲ ପାଇବାର ଉର୍ମି । ଦିଗନ୍ତ ଆକାଶଭଳି ବ୍ୟାପକତା । ନଈର କୁଳୁକୁଳୁ ନାଦବ୍ରହ୍ମ, ଅନେକ ତାରାର ଆକାଶ ଭଳି ଛାଇଅନ୍ଧାର ଖେଳ । କାଞ୍ଚନଜଙ୍ଘାର ଶିଖରଭଳି ତୁଷାରାଚ୍ଛନ୍ନ ଶୀତଳତା । କନ୍ୟାକୁମାରୀର ତ୍ରୀସାଗରୀୟ ମିଳନୀପୀଠର ଅଲୌକିକ ଉପଲବ୍ଧି । ଖଣ୍ଡାଧାରର ପ୍ରପାତ ଭଳି ଉଚ୍ଛୁଳା ପ୍ରେମ, ଚନ୍ଦ୍ରଭାଗାର ସୂର୍ଯ୍ୟୋଦୟ ଭଳି ଉଦ୍‌ଭାସ । ସମ୍ବଲପୁରୀ ନିଷାଣର ଦୁନ୍ଦୁଭୀ ଭଳି ଉଚ୍ଛନ୍ନ ଉନ୍ମାଦ ! ! !



ନିଷ୍ପତ୍ତି ବଡ଼କଥା । ବାକି ସବୁ ଉପଚାର । ଦଶମୀରେ ଟଙ୍କା ନଡ଼ିଆ ଧରାଣି । ପରେ ଲଗ୍ନଦେଖା ଓ ତାରିଖ ନିର୍ଣ୍ଣୟ, ପଣ୍ଡିତଖୋଜା, ବରଯାତ୍ରୀ ପାଇଁ ବାଜାଗଜା, ଭୋଜିଭାତ ପାଇଁ ମେନୁ ତାଲିକା, ନିମନ୍ତ୍ରଣ ପତ୍ର ପ୍ରକାଶନ, ଅତିଥିମାନଙ୍କ ତାଲିକା, ଘରଦ୍ୱାର ସଫାସଫା, ଭିତରବାହାର ନୂଆଁ ରଙ୍ଗ ପ୍ରଲେପନ । ଆତ୍ମୀୟମାନଙ୍କ ଘରଘର ଯାଇ ନିମନ୍ତ୍ରଣ କରିବା, ବନ୍ଧୁମାନଙ୍କୁ ବରଯାତ୍ରୀଦଳରେ ଯିବାପାଇଁ ଅନୁରୋଧ କରିବା, ଘରକାନ୍ଥରେ ମାଁ ଫଟଫଟା ଦେବା ଆଦି ଗୋଟିଗୋଟି କରି କାର୍ଯ୍ୟ ସମାପନ କରିବା ପରେଯାଇ ଆସିଗଲା ସେଇ ଅମୃତଲଗ୍ନ । ସକାଳେ ଗନ୍ଧସଣ ଆଦି ବିଧି ଅନୁଷ୍ଠିତ

ହେଲା ଏବଂ ସୂର୍ଯ୍ୟ ଢଳିବାକୁ ବସୁଥିଲେ, ଆମ ଘର ସ୍ନାନପ୍ରାଙ୍ଗଣରେ ଗେଇଟୀ ଟକୀଜ୍ ପାଖର ସୂରଜ୍ ବେଣ୍ଡପାର୍ଟିର କଳାକାରମାନେ ବିଗୁଲ୍ ଓ କ୍ଲୋରୋନେଟ୍ ବାଦ୍ୟରେ ଇଲାକାଟିକୁ ସଂଗୀତମୟ କରିପକାଇଲେ। ହୁରଷି ଓ ତାର ଦୁଲଦୁଲି ଭରନିପାରରେ ଘରସମ୍ନା ଅଞ୍ଚଳକୁ ଦୁଲୁକେଇଦେଲେ। କିଛିବନ୍ଧୁ ଆଗରୁ ଆସି ବରଯାତ୍ରୀ ଦଳର ଅତିଥିମାନଙ୍କୁ ଆପ୍ୟାୟିତ କରିବାରେ ବ୍ୟସ୍ତରହିଲେ। ଯେଉଁମାନେ ସାରିଲେ, ସେମାନେ ସିଧା ନିଜନିଜ ବ୍ୟବସ୍ଥାରେ ଯିବାକୁ ଆରମ୍ଭକଲେ ଲକ୍ଷ୍ମୀଟକିଜ୍ ନିକଟସ୍ଥ ଆଶାପାଲି ସ୍କୁଲ ପାଖକୁ। କାରଣ ସେହିଠାରେ ହିଁ ବରଯାତ୍ରୀଙ୍କ ପାଇଁ ଡେରା ଦିଆଯାଇଥିଲା।

ଘରେ ନାନୀମାନେ ମୋ ବେଶଭୂଷାରେ ବ୍ୟସ୍ତ ରହିଲେ। ଧଳା ଧୋତି, ଧଳା ଚୂଡ଼ିଦାର, କାନ୍ଧରେ କୁମ୍ଭ ଗାମୁଛା, ପାଦରେ ଅଳତା, ମୁହଁସାରା ପ୍ରସାଧନୀୟ, ଶେଷରେ ଗୁଟୁ ଭଣ୍ଡାରୀ ମୁଣ୍ଡରେ ପାଗ ବାନ୍ଧିଦେଲା। ପାଗ ଉପରେ ମୁକୁଟ। ବେକ ପଛପଟେ ଫୁଲର ଝାଲିରୀ। ପାଦରେ ନୂଆଁ ଚମଡ଼ାଚପଲ। ବେଶ୍, ବରପିଲା ପ୍ରସ୍ତୁତ, ବାଜା ବଜାଅ, ହୁଳହୁଳି ଦିଅ। ଶଙ୍ଖଧ୍ୱନୀ ଭିତରେ ପଣ୍ଡିତ ବହିଦାରକଟାପାଲିର ଦୁର୍ଗାଶଙ୍କର ପୁରୋହିତଙ୍କ ଶ୍ଳୋକୋଚ୍ଚାରଣ ମଧ୍ୟରେ ମୋ ହାତରେ ଧରାଇଦିଆଗଲା ନାରିକେଳ ଖଣ୍ଡିଏ। ମାଁଙ୍କ ତାଗିଦ୍, ଏଇଟା ଧରିଥିବୁ, ପକାବୁ ନାଇଁ କି ହଜାବୁ ନାଇଁ।। ଘର ଭିତରୁ ମାଁ ମୋ ଆଙ୍ଗୁଠି ଧରି ବାହାରକୁ ଆଣି ଆସିଲେ, ପଛରେ ପଛରେ ପରିବାରବର୍ଗ। ଶଙ୍ଖ ଓ ହୁଳହୁଳିର ନିନାଦରେ ଉଛୁଳି ପଡୁଥିଲା ପରିବେଶଟି। ତା ସହ ପରିତୃପ୍ତିର ନିଶ୍ୱାସ ଛାଡୁଥିଲି ମୁଁ। ଉପଭୋଗ କରୁଥିଲି ଗୋଟିଗୋଟି କରି ସବୁ ଉପଚାରର ସାନ୍ନିଧ। ଘରବାଟରେ ଠିଆକରାଇ ମାଁଙ୍କ ସହ ମାଇଁ, ବୋହୂ, ନାନୀମାନେ ତଥା ଅନ୍ୟମାନଙ୍କ ପାନପତ୍ରସେକା ପର୍ବ। ମାଁଙ୍କ ହାତରୁ ସାଦାପାନ ବିଡ଼ାଏ ଚୋବାଇବା ପରେ ଧଳା ଏମ୍ବାସାଡର କାର୍ ଭିତରକୁ ଯାଇ ପଛପାଖ ସିଟ୍‌ର ଡାହାଣପଟରେ ଗେଟ୍‌କୁ ଲାଗି ବସିପଡ଼ିଲି ରଜାପୁଅଙ୍କ ଭଳିଆ। କାରଣ ମୋ ଅଜା କାନେକାନେ କହିଛନ୍ତି, ଆଜି ଦିନକପାଇଁ ତୁ ରାଜା, ମୁଣ୍ଡ ତଳକୁ କରିବୁନାହିଁ।। ଠିକ୍ ତ, ମୋ ବାହାଘର, ମୋ ପାଇଁ ଏତେ ଆୟୋଜନ, ମୋ ପାଇଁ ଏତେ ବାଜାଗଜା। ମୁଁ ଆଜି ଦିନିକିଆ ରାଜା ନୁହେଁ ତ ଆଉ କଣ।। ଓଃ, କି ଆତ୍ମଗର୍ବର କଥା। ସାମ୍ନା ସିଟ୍‌ରେ ବସିଲେ ବାପା। ମୋ ସାଙ୍ଗରେ ବସିଲେ ଭଉଣୀ ଜ୍ୟୋତ୍ସ୍ନା, ତା ପାଖରେ ଅଭିନେତ୍ରୀ ରୀତା ଚାନ୍ଦ୍। ସମସ୍ତେ ଯାଇ ଆଶାପାଲି ସ୍କୁଲ ସାମ୍ନାରେ ମହଜୁଦ୍। ମୋ ଗାଡ଼ି ପହଞ୍ଚିବାକ୍ଷଣି ଆଗରୁ ପହଞ୍ଚିଥିବା ବାଜାଦଳ ଆରମ୍ଭ କରିଦେଲେ ତାଙ୍କ ଅର୍କେଷ୍ଟ୍ରା। ଆଉ ନ ଅଟକି

ମୋ ଇଙ୍ଗିତ ପାଇବାକ୍ଷଣି ଯାତ୍ରା ଆରମ୍ଭ ହେଲା । ଏ ଯାତ୍ରା ଜୀବନର ସର୍ବପ୍ରଥମ ଓ ସର୍ବଶେଷ ଯାତ୍ରା । ଯେଉଁଠି ଏକା ଯିବାକୁ ପଡେ । ଫେରିବାବେଳେ ସାଙ୍ଗରେ ଆଉ ଜଣଙ୍କୁ ସାଥିରେ ଆଣିଆସିବାକୁ ହୁଏ । ଯେ ଜୀବନସାରା କେବେ ସାଥୀ ଛାଡ଼ନ୍ତି ନାହିଁ । ଯେ ଅର୍ଦ୍ଧାଙ୍ଗ ପାଲଟି ଯାଆନ୍ତି ଶେଷ ନିଶ୍ୱାସ ଯାଏ । ଯେ ଶୟନେ ସପନେ ଜାଗରଣେ ସତର୍କପ୍ରହରୀ ଭଳି ମାର୍ଗନିଦର୍ଶନ କରିଥାନ୍ତି । ଘରୁ ଆସିବାବେଳେ ମାଁ କୋଳରେ ଥରେ ବସିବା ପାଇଁ ପଡ଼େ । ମାଁ ମାନଙ୍କର ସନ୍ଦେହ ଥାଏ, ବାହା ପରେ ହୁଏ ତ କାଳେ ଏ ସୁଯୋଗ ତାକୁ ମିଳି ନପାରେ ।

ବରଯାତ୍ରୀ ଆଗେଇ ଯାଉଥାଏ, ବନ୍ଧୁମାନଙ୍କୁ ପଚାରି ବୁଝୁଥାଏ, କେତେ ଲୋକ ହେବେ । ଯାତ୍ରାରମ୍ଭ ବେଳେ ସେ କହିଥିଲେ ପ୍ରାୟ ଦୁଇ ଅଢ଼େଇଶହ ହେବେ । ଜଣେପରେ ଜଣେ ବନ୍ଧୁବର୍ଗ ମୋ ପାଖକୁ ଆସି ଦେଖା ଦେଇଯାଉଥାନ୍ତି । କୈଳାସ, ପ୍ରଦୀପ, ବିବେକା, ନରେନ୍ଦ୍ର, ଅଶୋକ ବାବୁ, ବରୁଣ, ବୀରେନ୍‌ଦା, ସୁଶୀଲ, ସୁଲେମାନ, ପଣ୍ଡା ପୁରୋହିତ, ବାରୁଦା, ମନୋରଞ୍ଜନ, ବୀରେନ୍ଦ୍ର ଏମିତି କେତେ ନାଁ ଧରିବି, ସମ୍ବଲପୁରକୁ ଧରି ବଲାଙ୍ଗିର, ବରଗଡ, ପରମାଣପୁର ଆଦି ଅଞ୍ଚଳରୁ ବନ୍ଧୁବର୍ଗ ବରଯାତ୍ରୀ ଦଳରେ ସାମିଲ ହୋଇ ନୃତ୍ୟଗୀତରେ ମସଗୁଲ୍ ହୋଇଗଲେ । ନାଚ ପାଇଁ ଖୁବ୍ ଧିମେଇଧିମେଇ ଆଗକୁ ଯାଉଥାଏ ବାଜାଗଜା ସହ ଶୋଭାଯାତ୍ରା । ଅଶୋକବାବୁ ବାଟରେ ବାଣଫୁଟାଇ ଶୋଭାଯାତ୍ରାକୁ କୋଳାହଳମୟ କରିଦେଉଥିଲେ । ଚର୍ଚ୍ଚଛକ ଓ ଜିଏମ କଲେଜ ଛକରେ ପ୍ରାୟ ଅଧଘଣ୍ଟା ଅଟକି ରହିଯାଇଥିଲା ଯାତ୍ରା । ସମ୍ପର୍କ ଯେଉଁ ବିନ୍ଦୁରୁ ଆରମ୍ଭିଥିଲା, ସେଇ ବିନ୍ଦୁକୁ ବୋଧହୁଏ ସଲାମୀ ଦିଆଯାଉଥିଲା ଶୁଭପରିଣୟର ଶୁଭ ପରିଣତି ଅବସରରେ ଆଜି । ଏ ଯାତ୍ରା ସ୍ମୃତିକୁ ବର୍ଣ୍ଣିବା ବେଳେ ମୋର ଏହି ବରଯାତ୍ରୀ ଦଳ ଯେମିତି ଏକୋଇଶ ତୋପର ସଲାମୀ ଦେଉଥିଲେ କଲେଜ ସାମ୍ନାରେ ଦଣ୍ଡାୟମାନ ହୋଇଥିବା ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଆମ୍ବ୍ରା ବିଜଡିତ ପ୍ରତିମୂର୍ତ୍ତିକୁ, ଯାହାଙ୍କ ଏକଶହ ଅଣଷଠୀତମ ଜୟନ୍ତୀ ଆଜି ସର୍ବତ୍ର ପାଳିତ ହେଉଛି । ନାଚ ସରୁନାହିଁ, ବାଜା ସରୁନାହିଁ, ଯାତ୍ରା ଆଗକୁ ବଢ଼ିବାର ନାଁ ଧରୁନାହିଁ । ଅଗଣିତ ବନ୍ଧୁ ସେଇଠାରେ ହିଁ ସାମିଲ୍ ହୋଇଗଲେ ବରଯାତ୍ରୀ ଦଳରେ । ସମସ୍ତେ ଯେଭଳି ଅପେକ୍ଷା କରିଥିଲେ ଆମ ଆଗମନକୁ । ମୁଁ ବନ୍ଧୁଙ୍କୁ ଡାକି ପଚାରିଲି, କେତେ ହେବେ ? ସେ କହିଲେ, ସାଢ଼େ ଚାରିଶହରୁ କମ୍ ନଥିବେ । ତିନିଶହ ଟପିବା ପରେ ସମଗ୍ର ବରଯାତ୍ରୀ ଶୋଭାଯାତ୍ରା ଉପରୁ ମୋର ଲଗାମ୍‌ଟି ହୁଗୁଳା ହୋଇଯାଉଥିଲା । ଶୋଭାଯାତ୍ରାଟି ରେଳ ଫାଟକ ପାରି ହେବାପରେ ଆଉ ସମ୍ଭାଳି ହେଲାନାହିଁ । ମୁଁ

ତାଙ୍କ ଘରେ କଥାଦେଇଥିଲି, ବେଶିହେଲେ, ତିନିଶହ ହେବେ, ଆଉ ଉପରକୁ ଯିବନାହିଁ । କିନ୍ତୁ ଫାଟକ ହଟଲି ପାଖରେ ଥିବା ତାଙ୍କ ଘରକୁ ପହଞ୍ଚିଲାବେଳେ ଅନୁମାନ କଲି, ହାରାହାରି ଛଅ ଶହରୁ କମ୍ ନଥିବେ । ଭଗବାନଙ୍କଠାରେ ସବୁ ଛାଡ଼ି ଦେଇ ମୁଁ ଗାଡ଼ିରୁ ଓହ୍ଲାଇପଡ଼ିଲି, ତାଙ୍କ ବାପା ମୋ ଆଙ୍ଗୁଠି ଧରି ମୋତେ ଗାଡ଼ିରୁ ଓହ୍ଲାଇଦେଲେ । ପୁଣି ବରପାତ୍ରଙ୍କୁ ପାନପତ୍ରସେକା, ପାନଖୁଆରେ ସ୍ୱାଗତ, ପଣ୍ଡିତଙ୍କ ଶ୍ଳୋକାବୃତ୍ତି, ଶଙ୍ଖ ହୁଳହୁଳିରେ ପ୍ରକମ୍ପିତ ପରିବେଶ ମଧ୍ୟରେ ମୁଁ ମୋସହ କଥା ହେଉଥିଲି, ଏଇ ତ, ମୁଁ ମୋ ଲକ୍ଷ୍ୟସ୍ଥଳରେ ପହଞ୍ଚିଗଲି, ସେ ଏବେ ମୋ ହାତପାଆନ୍ତାରେ । ସ୍ୱପ୍ନ ନାୟିକା ଆଉ ସ୍ୱପ୍ନ ଦେଶରେ ନାହାନ୍ତି, ତାଙ୍କ ଧରାବତରଣ ହୋଇଛି, ମୋ ପରି ସେ ବି ଏଇ ଶୁଭମୁହୂର୍ତ୍ତରେ କେତେ ସଜେଇ ହୋଇଥିବେ, ମୁଣ୍ଡରେ ହାତେ ଲମ୍ବ ଓଢ଼ଣା, ତାଙ୍କ ସଜ୍ଜିତା ମୁଖମଣ୍ଡଳକୁ ଲୁଚେଇ ରଖିଥିବ, ଅଳଙ୍କାରାଦି ଆଭୂଷଣରେ ଆଚ୍ଛାଦିତ ହୋଇଯାଇଥିବ ଆପାଦ ମସ୍ତକ, ମନ ମଧ୍ୟରେ ଭରିଥିବ ଅସୁମାରୀ ଉତ୍କଣ୍ଠା, ସଲ୍ଲଜ ଭାବସମୁଦ୍ରରେ ବୁଡ଼ିରହିଥିବ ତାଙ୍କ ଅନ୍ତଃସ୍ଥଳ, ହୃଦ୍ ସ୍ପନ୍ଦନ ସହ ମିଶିଯାଉଥିବ ଅପୂରଣୀୟ ଅଭିଳାଷର ଶେଷଯାତ୍ରା !!

ବେଦୀ ଆଲୋକରେ ଉଦ୍‌ଭାସିତ, ପୁଷ୍ପମାଳାର ଚହଟରେ ସୁବାସିତ, ବିବାହାଦି ସରଞ୍ଜାମରେ ସଜ୍ଜିତ, ଯଜ୍ଞକୁଣ୍ଡ ମଧ୍ୟ ସାକ୍ଷୀ ରହିବାର ସଙ୍କଳ୍ପରେ ଅପେକ୍ଷାରତ, ବରଣମାଳାମାନେ ଗଳାମାନଙ୍କରେ ଶୋଭିତ ହେବା ପାଇଁ ଉଛନ୍ନ !!!



ଦୁଇଶହରୁ ଆରମ୍ଭ, ଆଶାପାଲି ସ୍କୁଲ ପହଞ୍ଚିବା ବେଳକୁ ଅଢ଼େଇ ଶହରୁ ତିନିଶହ, ଜି.ଏମ. କଲେଜ ସାମ୍ନାରେ ଅପେକ୍ଷା କରିଥିବା ବନ୍ଧୁମାନେ ମିଶି ପ୍ରାୟ ପାଞ୍ଚଶହ, ଆଉ ରେଳ ଫାଟକ ପାରିହୋଇ ତାଙ୍କଘରକୁ ପହଞ୍ଚିଲା ବେଳକୁ ପ୍ରାୟ ଛଅଶହ, କିଏ ସମ୍ଭାଳିବ !! ଭୋଜିଭାତ ଆରମ୍ଭ ହେଲାପରେ କିଏ ପାଇଲା, କିଏ ନପାଇଲା, ସେ ସବୁ ସମସ୍ୟା ଶୁଣିବାକୁ ନା ମୋର ସମୟ ଥିଲା ନା ମାନସିକତା । ଯେ ପାଇଲା, ସେ ଖୁସି, ଯେ ନ ପାଇଲା, ସେ ମୋ ମୁହଁକୁ ଦେଖି ଦବିଗଲା । ପରେ ନ ପାଇବା ବନ୍ଧୁମାନେ ନିଜନିଜ ବ୍ୟବସ୍ଥା କରିପକାଇଥିଲେ । ମୁଁ ମୋର ବିଭାଘର ବିଧିବିଧାନ ଭିତରେ ବ୍ୟସ୍ତରହିଲି, କିଛି ଅନ୍ତରଙ୍ଗ ବେଦୀପାଖରେ ମୋ ଆସିବାକୁ ଅପେକ୍ଷାକରି ରହିଲେ । ରାତି ଅନିଦ୍ରା ରହିବା ପାଇଁ ଆଗରୁ ପ୍ରସ୍ତୁତ ହୋଇ ଆସିଥିଲେ ତାଙ୍କ ବନ୍ଧୁଙ୍କର ସଫଳ ପ୍ରେମର ସାକ୍ଷୀ ରହିବାପାଇଁ । ସୁଶୀଳ ମିଶ୍ର, ପ୍ରଦୀପ ରାୟ, କୈଳାସ ତ୍ରିପାଠୀ, ବିଶ୍ୱମାମା, ଶାନ୍ତନୁ ହୋତା, ପ୍ରଫୁଲ୍ଲ ନାଥ, ବିବେକା ବେହେରା

ଭଳି ଆହୁରି ଅନେକ । ସୁଶୀଲର ଚୁଟୁକୁଲାରେ ବନ୍ଧୁମାନେ ହସିହସି ବେଦମ୍, ସମସ୍ତଙ୍କ ହସର ଲହରି ଭିତରେ ବେଦୀ କାର୍ଯ୍ୟ ଆରମ୍ଭ ହେଲା ପଣ୍ଡିତଙ୍କ ମଙ୍ଗଳ ଶ୍ଳୋକାବୃତ୍ତିରୁ, ସେଇ ପବିତ୍ର ଶ୍ଳୋକୋଚ୍ଚାରଣ ଭିତରେ ମୋତେ ବେଦୀଉପରକୁ ଆସିବାର ନିର୍ଦ୍ଦେଶ ଆସିଲା । ସେତବେଳକୁ ମୋର ପରିଧେୟ ବଦଳିସାରିଥାଏ । ତାଙ୍କ ଘରଲୋକେ ପ୍ରଦାନକରିଥିବା ପାଟଯଥାର ଆବରଣରେ ମୁଁ ନିଜକୁ ଖୁବ୍ ପବିତ୍ର, ଶାଶ୍ୱତ ଅନୁଭବ କରୁଥିଲି । ଜାଣିଲି, ପରିଧେୟ, ପୋଷାକ ପରିଛଦ ବ୍ୟକ୍ତିର କେବଳ ବାହ୍ୟରୂପକୁ ପ୍ରଦର୍ଶନ କରେ ନାହିଁ, ଉପଲବ୍ଧିରେ ବ୍ୟକ୍ତିର ଅନ୍ତଃରୂପକୁ ମଧ୍ୟ ନିୟନ୍ତ୍ରଣ କରିଥାଏ । ଘିଅ ରଙ୍ଗର ପାଟଧୋତି, ମୋ ନିଜ ଚୁଡ଼ିଦାର, କାନ୍ଧରୁ ଲମ୍ବି ଆସିଥିଲା ପାଟଯଥାର କାନି, ଦୁଇମୁଣ୍ଡ ଯୋଡ଼ିହୋଇଥିଲା ବାମପଟର ହାତତଳେ, ମସ୍ତକରେ ଧଳାକନାର ପାଗ ବା ପଗଡ଼ି, ତାକୁ ଚିପି ରହିଥିବା ରୌପ୍ୟଜରିର ମୁକୁଟ, ବେକପଛକୁ ଝୁଲି ରହିଥାଏ ଫୁଲ ଝାଲିରି । ଓଃ, ଏମିତିଥାନ୍ତା କି ଦୈନନ୍ଦିନ ବ୍ୟବହାର୍ଯ୍ୟ ପରିଛଦ । ଏମିତି ରାଜକୀୟ, ଏମିତି ସୌଖିନ, ଏମିତି ଶୌର୍ଯ୍ୟବୀର୍ଯ୍ୟଧାରୀ ରାଜକୁମାରର ତୀର୍ଯ୍ୟକ ଚାହାଣୀ, ପ୍ରଫୁଲ୍ଲ କର ଗାଇଥିବା, କମଳ ଦେଶ ରାଜକୁମାର ମୁଁ, ହାତରେ ଇନ୍ଦ୍ରଧନୁ.... ! ! ଆରେ, ଅଜା କହିଛନ୍ତି, ଆଜି ରାତିକପାଇଁ ମୁଁ ସମ୍ରାଟ, ବୀରାଧିବୀରବର ମହାରାଜ, ମୁଁ କାହାରି ଆଗରେ ମୁଣ୍ଡ ନଇଁବି ନାହିଁ । ସବୁବେଳେ ହସହସ ମୁହଁରେ ସମସ୍ତଙ୍କୁ ଆପ୍ୟାୟିତ କରିବି ! !

ଯେମିତି ଆସି ବେଦୀରେ ପଡ଼ିଥିବା ନୂଆଁ ମଷିଣାରେ ବସିଛି, ସୁଶୀଳ ସହ ବାକି ବନ୍ଧୁମାନେ ମଧ୍ୟ ବେଦୀର ତିନି ଦିଗରେ ଚୌକିପକାଇ ଉତ୍ସୁକତାର ସହ ବସିପଡ଼ିଲେ । ଏବେ ନାଟକ ନୁହେଁ, ମହାନାଟକ, ଜୀବନ ନାଟକ ଦୃଶ୍ୟାୟିତ ହେବ, ଯେଉଁ ନାଟକର ନାୟକ ମୁଁ ଓ ନାୟିକା ସେ । ବାକିମାନେ ଯେ'ଯାର ଭୋଜିଭାତସାରି ନିଜନିଜ ଘରମାନଙ୍କୁ ଫେରିଗଲେ । କିଛି ଅନ୍ତରଙ୍ଗ ବନ୍ଧୁମାନଙ୍କ ଗହଣରେ ବାହାଘରର ବିଧିବିଧାନ ଆରମ୍ଭ ହେଲା । ପ୍ରାୟ ଦେଢ଼ ଦୁଇଘଣ୍ଟା ଭିତରେ ଦୁଇ ହାତଯୋଡ଼ି ହୋଇଗଲା । କନ୍ୟାଦାନ, ପତ୍ନୀଗ୍ରହଣ, ହୋମଯଜ୍ଞ, ଶଳାବିଧା, ଜୁଆଖେଳ, କଉଡ଼ି ଖେଳ ପରେ ଯାଇ ବନ୍ଧୁମାନଙ୍କ ପାଖକୁ ଆସି ତାଙ୍କସହ ଗପସପ କରିବାର ସୁଯୋଗ ମିଳିଲା । ରାତି ପ୍ରାୟ ଗୋଟାଏ ରୁ ଦିଟା ହେବ, ବନ୍ଧୁମାନଙ୍କ ପାଇଁ ଚାହାର ଆବଶ୍ୟକତା ପଡିଲା ନିଦମାରିବା ପାଇଁ । ଭିତରକୁ ଚାଲିଗଲା ଖବର । କିଏ ଜଣେ ବଡ଼ ପାଟିରେ କହୁକହୁ କହିଦେଲା, ଚିନି ନାଇନ ପରେ । କହିବା ବାହୁଲ୍ୟ, ତାଙ୍କ ଭଉଣୀଙ୍କ ଡାକନାମ ଚିନି । ସୁଶୀଳକୁ ତ ମୌକା ମିଳିଗଲା ଢଗ ସୃଷ୍ଟି କରିବା ପାଇଁ । ତାଙ୍କ ତୁଣ୍ଡରୁ

ବାହାରିପଡ଼ିଲା, ଘରେ ଚିନି ଥାଉଁ ଥାଉଁ ଚାହା ଟିକେ ନାଇଁମିଳେ । ଏ ପଦକ କଥା ଶୁଣି ମୋ ସହ ବାକିମାନଙ୍କ ହାସ୍ୟରୋଳରେ ଇଲାକାଟିର ନିଦ ଭାଙ୍ଗିଗଲା । ପରେ କିନ୍ତୁ ସମସ୍ତଙ୍କ ପାଇଁ ଚା' ଆସିଲା । ଗପସପ ଭିତରେ କେତେବେଳେ ଯେ ପାଖ ମହାମାୟା ମନ୍ଦିରର ଘଣ୍ଟ ଶଙ୍ଖ ବାଜି ସକାଳର ସୂଚନା ଦେଇଦେଲା, ତାହା ଜଣାପଡିଲାନି । ବନ୍ଧୁମାନେ ବିଦାୟନେଲେ ରାତି ଭୋଜିରେ ସାମିଲ୍ ହେବାର ପ୍ରତିଶ୍ରୁତି ଦେଇ । ପାଖ ଅର୍ଜ୍ଜୁନବୃକ୍ଷର ପତ୍ରଗହଳରେ ଲୁଚିଲୁଚି ଏକାସାଙ୍ଗରେ ଦୁଇ କୋଇଲି କୁହୁତାନ ଛୁଟାଇବାରେ ଲାଗିଲେ । ପୂର୍ବାକାଶ ତଥାପି ରାତିର ଶେଷସ୍ପର୍ଶରେ ରୋମାଣ୍ଟିକ୍ ଜଣାପଡୁଥାଏ । ଆକାଶର ଗୋଟାଏ ଦିଗରେ ଜହ୍ନ ତଥାପି ଓହ୍ଲାଇ ନଥାଏ । ବାକି ଜ୍ୟୋତ୍ସ୍ନାତକ ଆମ ପାଇଁ ବୋଧହୁଏ ସାଇତି ରଖିଥିଲା । ତାଙ୍କ ସହ ନିଜ ଘରକୁ ଲେଉଟିଲା ବେଳେ ବିଛିଦେବାପାଇଁ ।

ଫାଟକରୁ ଧନୁପାଲି । କେତେ ବା ଦୂର । ଗାଡ଼ି ଆରମ୍ଭ ହୋଇ ଗିଅର୍ ବଦଳାଇବା ବେଳକୁ ଘର ଆସିଯାଇଥିବ । ହୁଳହୁଳିର କଳରୋଳ, ଲୁହଭିଜା ତାଙ୍କ ଘରଲୋକ । ଗାଡ଼ି ଭିତର ପଛସିଟ୍‌ରେ ମୁଁ ସେ । ରାଜାରାଣୀଙ୍କ ଭଳି । ମସ୍ତକରେ ମୁକୁଟ, ଉଭୟଙ୍କ ଶରୀର ପାଟଲୁଗାରେ ଆଚ୍ଛାଦିତ । ଉଭୟଙ୍କ ପଦଯୁଗଳ ନାଳିଅଳତାର ରଙ୍ଗରେ ରଞ୍ଜିତ । ଉଭୟଙ୍କ ଅବୟବକୁ ବାନ୍ଧି ରଖିଥାଏ ଲମ୍ବ ଗଣ୍ଠିଆଳ, ବିନିଦ୍ରରଜନୀର କିଛି ବି ଛାପ ଜଣା ପଡୁନଥାଏ ସତେଜ୍ ଚାହାଣୀରେ । ବିଦାୟନେଇ ଗାଡ଼ି ଆମଅଞ୍ଚଳକୁ ମାଡ଼ିଚାଲିଲା । ଏକ ମାତ୍ର ଗାଡ଼ିର ସହାୟତାରେ ଏତେ ବଡ଼ ବାହାଘର ଶେଷ ପର୍ଯ୍ୟାୟରେ ପହଞ୍ଚିଗଲା । ପରେ ତାଙ୍କଘର ସାମଗ୍ରୀ ଆଣିବା ପାଇଁ ବନ୍ଧୁ ଲାଲା ଯୋଗେଇ ଦେଇଥିଲେ ଏକ ଚାରିଶହ ସାତ ଗାଡ଼ିଟିଏ । କାର୍‌ଟି ଥିଲା ତୋଫାନ ମାମୁଙ୍କର, ତୋଫାନ ତ୍ରିପାଠୀ । ସାଧନା ଓ ଅଶାନ୍ତଗ୍ରହର ପ୍ରଯୋଜକ । ଧୀର ମନ୍ଥର ଗତିରେ ତାଙ୍କସହ ମୁଁ ପହଞ୍ଚିଗଲି ଧନୁପାଲିସ୍ଥିତ ବାହାଘରପାଇଁ ସଜ୍ଜିତ ଆମ ଘରସାମ୍ନାକୁ । ଘରେ ପହଞ୍ଚିଲା ବେଳକୁ ପୂର୍ବାକାଶର ନାଲିଆ ସୂର୍ଯ୍ୟ ଅଞ୍ଚଳଟିକୁ ରଙ୍ଗୀନ କରିସାରିଥାଏ । ରେଡିଓରେ ବିସ୍‌ମିଲ୍ଲା ଖାନ୍‌ଙ୍କ ସେହେନାଇ ମଙ୍ଗଳ ଧ୍ୱନୀ ଛୁଟାଇସାରିଥାନ୍ତି । ତା' ସହ ଅପେକ୍ଷାମାଣା ମାଁଙ୍କ ସହ ଅନ୍ୟମାନେ ସଦ୍ୟବିବାହିତ ଦମ୍ପତିଙ୍କ ବନ୍ଦାପନା ପାଇଁ ପ୍ରସ୍ତୁତ ହୋଇଗଲେ । ମାଁଙ୍କ ଏକୋଇ କଣ୍ଠର ହୁଳହୁଳିରେ ପରିବେଶ ପରିଚ୍ଛନ୍ନ ହୋଇଗଲା । ମୁଁ ତାଙ୍କ ପଛପଟେ ଠିଆହୋଇ ଭାବୁଥାଏ, ମାଁ, ତା ଦୁଃଖୀଧନ ପାଇଁ ରାତି ସାରା ଶୋଇ ନଥିବ । ଭଲ କରି ମୁଠେ ଖାଇ ନଥିବ । ଆମ ସ୍ୱାଗତରେ ଯେମିତି କିଛି ବି ଅବହେଳା ନହୁଏ, କେତେ ଯତ୍ନ ନେଇନଥିବ ।

ଏଇ ତ ଦୀର୍ଘ ଦଶ ବର୍ଷର ଅଛୁଆଁ ସମ୍ପର୍କର ମନଛୁଆଁ ପରିଣତି, ବହୁ ବର୍ଷର ପ୍ରତୀକ୍ଷାର ସଫଳ ଯବନୀକା । ପବିତ୍ରଭାବ ଓ ହୃଦୟର ମିଳନାନ୍ତକ ଜୀବନ କାହାଣୀ । ବ୍ୟକ୍ତିଜୀବନର କଥାସବୁ ଆଉ ବ୍ୟକ୍ତିଗତ ନରଖି ଏହି ଆଲେଖ୍ୟରେ ସାର୍ବଜନୀନ କରିଦେଲି, ସମଗ୍ର ଜୀବନକୁ ଖୋଲାଖାତା ଭାବରେ ଛାଡ଼ିଦେଲି । ବିବାହ ହିଁ ଜୀବନର ସବୁକିଛି ନୁହେଁ, ଏହା ଅନ୍ୟ ଏକ ଜୀବନର ଆରମ୍ଭ ମାତ୍ର । ଏହା ଦ୍ୱୈତଜୀବନର ମିଳନାତ୍ମକ ପୂର୍ଣ୍ଣାହୂତି ନୁହେଁ, ବରଂ ଭିନ୍ନଏକ ପୃଥିବୀ ଗଠନକରିବାର ଶୁଭମୁହୁରତ୍ ।

ଜୀବନ ମଞ୍ଚରୁ ଆସନ୍ତୁ ପୁଣି ଫେରିଯିବା ନାଟ୍ୟମଞ୍ଚକୁ । ବାହାଘର ଶେଷ ହୋଇସାରିଥିଲେ ବି ଅଷ୍ଟମଙ୍ଗଳା କଣ ମୋର ଧାରଣାରେ ନଥାଏ । ବିବାହର ସପ୍ତମ ରାତି ନ ସରୁଣୁ ଶିଳ୍ପୀ ସଂସ୍ଥାର ଡାକରାରେ ଏହ୍ଲାବାଦ ଯିବାକୁ ପଡ଼ିଲା । ଶୈଳେଶ୍ ପଟ୍ଟନାୟକଙ୍କ ରଚିତ 'ତୁମେ ଆମେ ନା ସେମାନେ' ନାଟକ ସେଠାରେ ଅଭିନୀତ ହେବାରଥାଏ । ପୂର୍ବ ବର୍ଷ ଏହି ଅନୁଷ୍ଠାନ ତରଫରୁ ଚିନ୍ତାମଣି ଜେନାଙ୍କ ରଚିତ 'ପାପ ପୁଣ୍ୟରୁ କିଛି' ନାଟକଟି ମାନରଞ୍ଜନ ହୋତାଙ୍କ ନିର୍ଦ୍ଦେଶନାରେ ଅଭିନୀତ ହୋଇ ପ୍ରଶଂସିତ ହୋଇଥିଲା । ଚଳିତ ବର୍ଷର ନିର୍ଦ୍ଦେଶକ ଥିଲେ ଯୁବ ନିର୍ଦ୍ଦେଶକ ଭବାନୀଶଙ୍କର ଦାସ । ରାଜେନ୍ଦ୍ର ପ୍ରସାଦ ପଣ୍ଡା ମୁଖ୍ୟ ଚରିତ୍ରରେ, ତାଙ୍କ ସହ ସୁଶୀଲ ମିଶ୍ର, ପଞ୍ଚାନନ ମିଶ୍ର, ରିତା ଚାନ୍ଦ, ପୂର୍ଣ୍ଣଚନ୍ଦ୍ର ଦାସ ଆଦି କଳାକାରମାନେ ଅଭିନୟ କରିଥିଲେ । ମୁଁ ଦଳ ସହ ଯାଇଥିଲି, ଜଣେ ପ୍ରଚ୍ଛଦପଟର ବାଦ୍ୟକାର ଭାବରେ, ରାତିର ସାଂସ୍କୃତିକ କାର୍ଯ୍ୟକ୍ରମରେ କିଛି ପରିବେଷଣ କରିବା ପାଇଁ । ଆମ ସହ ସୁଜେମାନ ଦିବାନା ମଧ୍ୟ ଯାଇଥିଲେ ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ । ତାଙ୍କୁ ଛାଡ଼ି ଯିବାର ଇଚ୍ଛା ହେଉ ନଥିଲେ ବି ଅନ୍ୟମାନଙ୍କ ଅନୁରୋଧକୁ ଟାଳି ପାରିନଥିଲି । ଯିବା ଆସିବା, ନାଟକ କରିବାର ଦିନ ସବୁ ମିଶିଲେ ପ୍ରାୟ ଛ' ଦିନ, ଛ' ରାତି ଲାଗୁଥିଲା ।

ଏହ୍ଲାବାଦ ଯାତ୍ରା ଆରମ୍ଭ ହେଲା, ରାତିଗୁଡ଼ିକୁ ଛାଡ଼ିଦେଲେ ବାକି ସମୟ ଗୀତବାଦ୍ୟ, ହସକଥା, ରାଜୁଦାଙ୍କ ଟିଣିଟାଣି, ନନକଚନନମମ ଭଳି କିମ୍ଭୂତକିମାକାର ଶବ୍ଦରେ କେମିତି କଟିଯାଉଥିଲା, ଜଣା ପଡୁନଥିଲା । ଏହ୍ଲାବାଦରେ ପହଞ୍ଚି ଘୋଡ଼ାଗାଡ଼ିରେ ଆମ ରହିବା ପଡ଼ିଆକୁ ଗସ୍ତ ଆରମ୍ଭ ହୋଇଗଲା । ମୋ ପାଇଁ ନୂଆଁ ଜାଗା, ନୂଆଁ ଅନୁଭୂତି । ଭାରୀ ଭଲ ଲାଗୁଥିଲା ପ୍ରତ୍ୟେକଟି ମୁହୂର୍ତ୍ତ । ଘୋଡାମାନେ ଅଟକିଲେ ଗାଡ଼ି ସହ ଆସ୍ଥାନ ନିକଟରେ । ବିସ୍ତୀର୍ଣ୍ଣ ଏକ ପଡ଼ିଆ, ମଝିରେ ବାଡ଼କୁ ଲାଗି ତମ୍ବୁମାନ ଟଣାହୋଇଥାଏ । ସଂଖ୍ୟାନୁସାରେ ତମ୍ବୁ ଦିଆଯାଉଥିଲା ଦଳମାନଙ୍କୁ,

ଆମ ପାଇଁ ତିନୋଟି ତମ୍ବୁର ବ୍ୟବସ୍ଥା କରାଗଲା । ପ୍ରତ୍ୟେକ ତମ୍ବୁରେ ପୁଆଳ ବିଛାଯାଇ ତା'ଉପରେ ଶେଯତକିଆ ପକାଯାଇଥିଲା । ନିତ୍ୟକର୍ମ ସାରି ମଧ୍ୟାହ୍ନ ଭୋଜନପରେ ନାଟକର ରିହାର୍ସାଲ । ରାତିରେ ମଞ୍ଚସ୍ଥହେବ ନାଟକ । ଆଉ ବିଶ୍ରାମ ବେଳ ନାହିଁ । ନାଟକ ହେବ ଅଦୂରରେ ଥିବା ମେହେଟା ପ୍ରେକ୍ଷାଳୟରେ । ସୋ, ସାତଟାରୁ ଆଠଟା, ଘଣ୍ଟାଏ ସମୟ ଦିଆଯିବ, ସେ ଭିତରେ ମଞ୍ଚଗ୍ରହଣ, ନାଟକ ମଞ୍ଚାୟନ, ମଞ୍ଚସାମଗ୍ରୀ ଅପସାରଣ । ସବୁ ଠିକ୍‌ଠାକ୍ ଗଲା । ନାଟକ ଭଲରେ ସରିଲା । ଶିବିରକୁ ଫେରି ଆସି ଯେ ଯାହାର ବିଶ୍ରାମ ନେଲେ । ରାତି ଏଗାରଟାରେ ଆରମ୍ଭ ହେବାର ଥାଏ ସାଂସ୍କୃତିକ କାର୍ଯ୍ୟକ୍ରମ । ପଡ଼ିଆ ମଝିରେ ନିଆଁ ଜଳାଯାଇଥାଏ । ନିଆଁ ଚାରିପଟେ ଦରିମାନ ବିଛାଯାଇଥାଏ । ମୋ ଆଖିରେ ସେଥିପାଇଁ ନିଦ ନଥାଏ । ସମ୍ବଲପୁରୀ ନୃତ୍ୟ ପାଇଁ ନିଜକୁ ପ୍ରସ୍ତୁତ କଲି । ମାନ୍ଦଲ କାନ୍ଧରେ ଝୁଲାଇ ଏକାଏକା ଗୀତଗାଇ ଝୁମେର୍ ନୃତ୍ୟ ପରିବେଷଣ କଲି ପ୍ରଚଣ୍ଡଥଣ୍ଡାରେ । ବରଫ ପଡୁଥାଏ ଏହ୍ଲାବାଦ ଆକାଶରୁ । ଆଣ୍ଠୁ ପର୍ଯ୍ୟନ୍ତ ଧୋତି, ଅଣ୍ଟାରେ ଗାମୁଛା, ମୁଣ୍ଡରେ ପଗଡ଼ି, ତା ସହ ତାଳଖୁଞ୍ଚା ଖାଲି ପାଦରେ ନିଜେ ଗୀତଗାଇ ନାଚିଲି ଦେଶର ବିଭିନ୍ନ ଅଞ୍ଚଳରୁ ଆସିଥିବା କଳାକାରମାନଙ୍କ ସାମ୍ନାରେ । ମୋର ବଜାଇବା କଳାରେ ପ୍ରଭାବିତ ହୋଇ ଅନ୍ୟ କ୍ଷେତ୍ରରୁ ଆସିଥିବା ଦଳମାନେ ମୋ ନିକଟକୁ ଆସି ତାଙ୍କ ନୃତ୍ୟଗୀତରେ ତାଳଦେବାପାଇଁ ଅନୁରୋଧ କଲେ । ପଞ୍ଜାବୀ, ଗୁଜୁରାଟୀ ଦାଣ୍ଡିଆ, ଆଲିଗଡ, କବାଲୀ, କଲିକତାର ଦୁର୍ଗାତାଣ୍ଡବ ନୃତ୍ୟଗୀତାଦିରେ ଡ୍ରମ୍, ଢୋଲ, ଢୋଲକ ଆଦି ବାଦ୍ୟବଜାଇ ଖୁବ୍ ପ୍ରଶଂସିତ ହୋଇଥିଲି । ଆଗରୁ ନାଁ ଦିଆଯାଇଥିବା ସୁଲେମାନ୍ କିନ୍ତୁ ନିଘୋଡ଼ ନିଦରେ ତମ୍ବୁ ଭିତରେ ଶୋଇପଡିଥାଏ । ସୁଲେମାନ୍‌ର ନାଁ ଯେତେବେଳେ ଡକାଗଲା ମୁଁ ଦୌଡ଼ିଯାଇ ତାକୁ ଉଠେଇ ଆଣିଲି, ଆଉ ତା' କେରିକେଚର୍ ପରିବେଷଣ ପାଇଁ କହିଲି । ମଳିଚିଆ ସାଲ୍‌ଖଣ୍ଡିଏ କାନ୍ଧରେ ପକାଇ ସେ ସିଧାଚାଲିଲା ମାଇକ୍ ଷ୍ଟେଣ୍ଡ ପାଖକୁ । ଗୋଟିଏ ସଂଳାପ, ଦିଲୀପ କୁମାର, ରାଜକୁମାର, ଦେବାନନ୍ଦ ଆଦି ଅଭିନେତାମାନେ ତାଙ୍କ ଶୈଳୀରେ କିଭଳି ଉଚ୍ଚାରଣ କରିବେ, ତାକୁ ପରିବେଷଣ କରି ଉଚ୍ଚପ୍ରଶଂସିତ ହେଲା ଏବଂ ଶେଷରେ ସଭାପତିଙ୍କ ସ୍ୱତନ୍ତ୍ର ପୁରସ୍କାରରେ ମଣ୍ଡିତ ହେଲା । ପରଦିନ, ନୌକାରେ ପବିତ୍ର ତ୍ରିବେଣୀ ସଂଗମରେ ବୁଡ଼ ପକାଇଲି ସନ୍ଧ୍ୟାରେ ସମ୍ବଲପୁରକୁ ଲେଉଟାଣି ଯାତ୍ରା ଆରମ୍ଭ କଲୁ ।

ଗଲି ସିନା ଏହ୍ଲାବାଦ, ହେଲେ ମାନସିକତାରେ ସେ' ପ୍ରତିଟି ମୁହୂର୍ତ୍ତରେ ମୋ ପାଖରେଥିଲେ । ସେଭଳି ମୁଁ ଅନୁଭବ କରୁଥାଏ । ସେ ବି.ଇଡି. ପଢୁଥିବାବେଳେ

କବିତାଟିଏ ଲେଖିଥିଲି ତାଙ୍କ ପାଇଁ, ତାର ଗୋଟିଏ ଧାଡ଼ି ଥିଲା, 'ବଞ୍ଚିବାର ଖୋରାକ ତମେ ବୁଣି ଦେଇଛ ସାରାଜୀବନ କ୍ଷେତ୍ରରେ ମୋର'।। ଏହି ଧାଡ଼ିକ ପୁଣି ବ୍ୟବହାର କରିଥିଲି ମୋ ରଚିତ ନାଟକ 'ତମେ ଅଛ ବଲି' ର ନାୟକ ଅବିନାଶ ପାଇଁ। ଏମିତି ଏମିତି ବେଳେବେଳେ ଜୀବନଟା ନାଟକୀୟ ପାଲଟି ଯାଉଥିଲା, ଆଉ କେତେବେଳେ ନାଟକଟା ଜୀବନ।।



ଏହ୍ଲାବାଦରୁ ଫେରିବାପରେ ପୁଣି ଜୀବନଚକ୍ର ଘୂରିବାରେ ଲାଗିଲା। ସ୍ୱାଦରେ, ଆଘ୍ରାଣରେ, ଭାବରେ, କଥାରେ, ଚିନ୍ତାରେ, ଚେତନାରେ ସବୁ ନୂଆଁ ନୂଆଁ ଲାଗିଲା। ଫଗୁଣର ଛିଟାରେ ଆମ୍ରକାନନରେ ନବପଲ୍ଲବର ରଙ୍ଗରେ ଜୀବନ ଯେମିତି ନୂତନ ପଥଟିଏ ଆବିଷ୍କାର କରି ସେଇ ପଥରପଥିକ ପାଲଟିଗଲା। ସେ ଆସିଗଲା ପରେ ମାଁ ପରେ ମୁଁ ପାଇଗଲି ଅନ୍ୟ ଏକ ଆଶ୍ରୟ, ଫରକ୍, ଜଣକପାଇଁ ଦୁଃଖିଧନ ତ ଆଉ ଜଣକପାଇଁ ସୁଖୀଧନ।।।

ସେହି ଏକାଅଶୀର ପ୍ରଥମ ଭାଗରେ, ବିଶେଷ କରି ଶିଳ୍ପୀ ଅନୁଷ୍ଠାନ ସହ ଏହ୍ଲାବାଦରୁ ଫେରିବାପରେ ମନ ଭିତରେ ଆଲୋଡନଟିଏ ସୃଷ୍ଟିହୋଇ ଅସ୍ତବ୍ୟସ୍ତ କରିପକାଉଥାଏ। ଏମିତି ସହଯୋଗୀ ଭାବରେ ନାଟକ କରୁଥିବି ନା ପୁନରାୟ ଏକ ନୂତନ ଅନୁଷ୍ଠାନ ସଂଗଠିତକରି ନିଜ ନେତୃତ୍ୱରେ ଆଗେଇନେବି ନିଜସ୍ୱ ଏକ ଭିନ୍ନ ନାଟ୍ୟଧାରା! ଶେଷରେ ନିଷ୍ପତ୍ତିନେଲି ଏକ ନୂତନ ସଂଗଠନ ଗଢ଼ିବାର, ଯାହାର ନାଁ ଦିଆଗଲା ସୃଷ୍ଟି। କାଲିବାଡ଼ି ରଙ୍ଗମଞ୍ଚରେ ନୂଆଁ ନାଟକଟିଏ ଅଭିନୀତ କରିବା ପ୍ରୟାସରେ ସମଭାବାପନ୍ନ ବନ୍ଧୁମାନଙ୍କୁ ଏକଯୋଟ କଲି, ଆଲୋଚନା କଲି, ଶେଷରେ ସାକାର ହେଲା ମୋର ଯୋଜନା। ନାଟକ ନିର୍ବାଚିତ ହେଲା କାର୍ତ୍ତିକ ରଥଙ୍କ ରଚିତ ନାଟକ ମାଂସର ଫୁଲ, ରିହାର୍ସାଲ ମଧ୍ୟ ଆରମ୍ଭ ହେଲା ବ୍ରୁକ୍‌ହିଲ୍ ଉଚ୍ଚ ବିଦ୍ୟାଳୟର ପ୍ରକୋଷ୍ଠରେ। ଏହି ନାଟକ ନିର୍ବାଚିତ କରିବାର ଏକ ସ୍ୱତନ୍ତ୍ର କାରଣ ରହିଥିଲା। ଅଶୀ ମସିହାରେ ଏହି ନାଟକଟି ଦେବୁ ବୋଷ୍‌ଙ୍କ ନିର୍ଦ୍ଦେଶନାରେ ବରଗଡ ସୌଖୀନ କଳାକାରମାନେ ସଂଘର କଳାକାରମାନେ ବହୁତ ସୁନ୍ଦର ଭାବରେ ଅଭିନୀତ କରିଥିଲେ, ଯାହାକୁ ମୁଁ ଦେଖିବା ପାଇଁ ବରଗଡ ଯାଇଥିଲି। ମୋ ଉପରେ ତାର ପ୍ରଭାବ ପଡ଼ିଥିଲା ଏବଂ ସୁଯୋଗ ଦେଖି ସମ୍ବଲପୁରରେ ଏହି ନାଟକ ମଞ୍ଚସ୍ଥ କରିବାର ମୌକା ଖୋଜୁଥିଲି। ଏବେ ସୃଷ୍ଟି ସଂସ୍ଥା ଗଠିତ ହେବାପରେ ସେହି ସୁଯୋଗ ସୃଷ୍ଟି କରାଯାଇ ଯୋଜନା

ଆରମ୍ଭ କରାଗଲା । ନିଜେ ନିର୍ଦ୍ଦେଶନାର ଦାୟିତ୍ୱନେଲି, ସମ୍ବଲପୁରର ବିଭିନ୍ନ ପଡାର କଳାକାରମାନଙ୍କୁ ବିଭିନ୍ନ ଚରିତ୍ର ବାଣ୍ଟିଦେଲି । ଆଇନ୍ ମହାବିଦ୍ୟାଳୟରେ ପଢୁଥିବା ବ୍ରହ୍ମପୁରର ଜଣେ ଅନୁଜ ବନ୍ଧୁ, ରବିପାତ୍ରଙ୍କୁ ନାଟକର ମୁଖ୍ୟଚରିତ୍ର କୁମାର ପଟ୍ଟନାୟକ ଭୂମିକା ଦିଆଗଲା । ତାଙ୍କ ଉଚ୍ଚତା ଓ ଅଭିନୟ କଳାକୌଶଳ ସେହି ଚରିତ୍ରସହ ମେଳ ଖାଉଥିଲା । ଦିଲୀପ ପଣ୍ଡା (ଖ), ବିବେକା ବେହେରା, ବିପିନ ଦାସ, ପ୍ରେମଶୀଳା ସହ ଅନ୍ୟ କେତେକ ନାଟ୍ୟଶିଳ୍ପୀ ଏଥିରେ ଅଭିନୟ କରିଥିଲେ । ମୁଁ ମଧ୍ୟ ନାଟକର ଏକ ଛୋଟ ଅଥଚ ଗୁରୁତ୍ୱପୂର୍ଣ୍ଣ ଚରିତ୍ର ଗୁଙ୍ଗା ଭୂମିକାରେ ଅଭିନୟ କରିଥିଲି, ଯେଉଁ ଚରିତ୍ରଟି ବରଗଡରେ ନିଜେ ଦେବୁ ବୋଷ୍ ଅଭିନୟ କରିଥିଲେ । ତାଙ୍କ ଅଭିନୟ ଶୈଳୀ ମୋତେ ଖୁବ୍ ପ୍ରଭାବିତ କରିଥିଲା । ନାଟକର ରିହାର୍ସାଲ୍ ଆଗେଇ ଚାଲିଲା, ନାଟକ କରିବା ଦିନ ପାଖେଇ ଆସିଲା । ପୂର୍ବ ବିଫଳତା ସବୁକୁ ଖୁବ୍ ସତର୍କତା ସହ ଦୃଷ୍ଟିରେରଖି ନାଟକ ବିନା ବାଧାରେ ମଞ୍ଚସ୍ଥହେଲା । ପୂର୍ଣ୍ଣ ପ୍ରେକ୍ଷାଳୟରେ ନାଟକଟି ମଞ୍ଚସ୍ଥହେଲା । ନାଟକ ଦେଖିବାପାଇଁ ତାଙ୍କୁ ମଧ୍ୟ ସାଙ୍ଗରେ ନେଇଆସିଥିଲି । ବିବାହପରେ ମୋ ଅଭିନୀତ ନାଟକ, ପୁଣି ମୋ ନିର୍ଦ୍ଦେଶିତ ନାଟକକୁ ଦେଖାଇବା ଆଗ୍ରହକୁ ମୁଁ ଚପାଇ ପାରିନଥିଲି । ଦର୍ଶକ ମଣ୍ଡଳୀରେ ବସାଇ ମୁଁ ମୋର ମଞ୍ଚରେ ନାଟ୍ୟ ପ୍ରଯୋଜନା ନେଇ ବ୍ୟସ୍ତ ରହିଲି । ଗୁଙ୍ଗା ଚରିତ୍ରରେ ଅଭିନୟ କରୁଥିବାରୁ ମେକଅପ୍ ବି ନେଇଗଲି । କଳା ଫୁଲପେଣ୍ଟକୁ ଆଣ୍ଠୁ ପର୍ଯ୍ୟନ୍ତ ମୋଡ଼ି ଖାଲି ଦେହରେ କଳା ମଚମଚ ରଙ୍ଗ ଲଗାଇ, ଦୁଇ ହାତ, ଦୁଇ ଗୋଡ଼ରେ ଶିକୁଳୀ ବନ୍ଧାଯାଇଥାଏ ଗୋଟିଏ ପରେ ଗୋଟିଏ ଦୃଶ୍ୟର ସଫଳ ଦୃଶ୍ୟାୟନପରେ ଏକ ଦୃଶ୍ୟରେ ଚରିତ୍ର କୁମାର ପଟ୍ଟନାୟକ ଗୁଙ୍ଗାମାନେ ମୋତେ ଚାବୁକ୍‌ରେ ପିଟିବାର ଥାଏ । ସେହି ଦୃଶ୍ୟଟି ଅଭିନୀତ ହେଲା ବେଳେ ଅଭିନୟକୁ ପାରୁ ପର୍ଯ୍ୟନ୍ତ ଜୀବନ୍ତ କରିବା ପାଇଁ ରବିପାତ୍ର ଖୁବ୍ ଯୋର୍‌ରେ ଦୀର୍ଘ ସମୟ ପର୍ଯ୍ୟନ୍ତ ଚାବୁକ୍‌ରେ ମୋତେ ପିଟିବାରେ ଲାଗିଲେ । ମୁଁ ନିଜେ ନିର୍ଦ୍ଦେଶକ, କେମିତି ବା ରୋକି ପାରିଥାନ୍ତି, ସବୁ ପାହାର ବାଧ୍ୟ ହୋଇ ସହିଯାଉଥାଏ । ପିଠି ସାରା ଲାଲ୍ ଲାଲ୍ ଦାଗ ପଡିଗଲା । ମୁଁ ସେ ପାହାର ଖାଇବା ଚରିତ୍ର, କଣ ଆଉ କରିପାରିଥାନ୍ତି । ଯାହା ହେଉ ପ୍ରଚଣ୍ଡ ଚାବୁକ୍‌ମାଡ଼ରେ ମୋ ପିଠି ଫୁଲିଯାଇଥାଏ । କୌଣସି ମତେ ନାଟକଟି ଶେଷ ହେଲା ମୋର ଶେଷସଂଳାପରେ । ନାଟକ ସରିବାପରେ ସମସ୍ତେ ମୋ ପାଖକୁ ଦୌଡ଼ି ଆସିଲେ ପିଠିର ଦାଗ ନିରୀକ୍ଷଣ କରିବା ସହ ସାନ୍ତ୍ୱନା ଦେବା ପାଇଁ । ମୁଁ ଯଥାଶୀଘ୍ର ମେକଅପ୍ ଛଡ଼ାଇ ଡ୍ରେସ୍ ବଦଳାଇ ତାଙ୍କ ନିକଟକୁ ଚାଲିଆସି ପାଖରେ ବସିପଡିଲି । ଲକ୍ଷ୍ୟକଲି ତାଙ୍କ ଆଖିପତା ଭିଜି

ଯାଉଥାଏ । ମୁଁ ଅନୁଭବ କରିପାରୁଥିଲି ତାଙ୍କ ଦରଦ, କେଉଁ ସଦ୍ୟବିବାହିତା ସ୍ତ୍ରୀ ଚାହିଁବ ତାର ସ୍ୱାମୀ ତା ସାମ୍ନାରେ ଚାବୁକରେ ମାଡ଼ଖାଉ, ଆଉ ସେ ନୀରବଦ୍ରଷ୍ଟା ହୋଇ ମଜା ଦେଖୁଥାନ୍ତୁ । କିଛି ବେଳ ପରେ ରବିପାତ୍ର ଆମ ନିକଟକୁ ଆସି ମୋତେ କ୍ଷମାମାଗି କହିଲେ, ଦାଦା, ମୋର ଭୁଲ୍‌ହୋଇଛି, ମତେ କ୍ଷମା କରିଦିଅ । ତାଙ୍କ ଲୁହଭିଜା ଆଖି ଆଗରେ ରବିବାବୁଙ୍କ ମୁଣ୍ଡ ନଇଁ ଯାଉଥାଏ । ମୁହଁ ଫିଟିଲା ନାହିଁ, କେବଳ ହାତଯୋଡ଼ି ଠିଆ ହୋଇ ରହିଗଲେ । ମୁଁ ପରିବେଶକୁ ହାଲୁକା କରିବା ଉଦ୍ଦେଶ୍ୟରେ କହିଲି, ହଁ, ନାଟକରେ ବେଳେବେଳେ ଏମିତି ହୁଏ ।

'ମାଂସର ଫୁଲ୍' ନାଟକର ସଫଳତା ମୋତେ ଓ ମୋ ଦଳକୁ ଉତ୍ସାହିତ କଲା । ସୃଷ୍ଟିର ପ୍ରଥମ ନାଟକ ଭାବରେ ଏହା ଏକ ସଫଳ ଉଦ୍ୟମବୋଲି ସହରରେ ଚର୍ଚ୍ଚାହେଲା । ଗୋକୁଳ ପଟେଲଙ୍କ ସଂଗୀତାଳୟ ଆଲୋକ ଓ ଶବ୍ଦ ସାମଗ୍ରୀ ଯୋଗାଇ ନିଜେ ମଞ୍ଚରେ ପରିଚାଳନା କରିଥିଲେ ଗୋକୁଳବାବୁ । ସମ୍ବଲପୁର ମଧ୍ୟ ନାଟକର ଜଣେ କୁଶଳୀ ନାଟ୍ୟକାରିଗର ପାଇ ନିଜକୁ ଧନ୍ୟ ମଣିଲା । କାରଣ ଆଧୁନିକ ଶବ୍ଦ ଓ ଆଲୋକ ସଂପାତପାଇଁ ସମ୍ବଲପୁରରେ ସେମିତି କିଛି ସୁବିଧା ଯା ପୂର୍ବରୁ ନଥିଲା । ଆଜି ଗୋକୁଳବାବୁ ଆମ ଗହଣରେ ନାହାନ୍ତି, ତଥାପି ସେ ସମୟର ସମସ୍ତକଳାକାର ତାଙ୍କୁ ମନେରଖିଛନ୍ତି । ରଙ୍ଗମହଲର ଉଦୟବାବୁ, ରୂପମହଲର ଚନ୍ଦୁବାବୁ, ନଟରାଜ ଚିତ୍ରାଳୟର ମଲ୍ଲିକବାବୁ, କଳାମନ୍ଦିରର ସୁବାସବାବୁ, ହାଡୁ ଓ ଦାସବାବୁ, ଏମାନେ ହିଁ ବହୁଦିନରୁ ସମ୍ବଲପୁରର ନାଟ୍ୟମଞ୍ଚ ପରିଚାଳନା କରିଆସୁଥିଲେ । ଗୋକୁଳବାବୁ ଏହି ବେପାରକୁ ଆସିବାପରେ ନାଟକର ସୌନ୍ଦର୍ଯ୍ୟ ବୃଦ୍ଧିପାଇଥିଲା ।

ଖରା ଛୁଟିରେ ନାଟକ କରିବା ଅଭ୍ୟାସରୁ ଆମଦଳ ଅବ୍ୟାହତି ନେଇସାରିଥିଲା । ଛୁଟିରେ ପ୍ରମୋଦ ଆସିଲେ ଆମେ କେତେଜଣ ଗପସପରେ ବେଶ୍ ମଜି ରହୁଥିଲେ । ବିଶେଷକରି ନରେନ୍ଦ୍ର, ଲଳିତ, ବିଶୁମାମା, ରାମ ଆଦି । କଲେଜ୍ ଖୋଲିବା ସମୟ ଆସିଗଲେ ପୁଣି ବିଦାୟ, ଦଶହରାକୁ ଅପେକ୍ଷା । ଏକାଅଶୀର ଠିକ୍ ଏଇ ବେଳାକୁ ରାଉରକେଲାର କଲ୍‌ଚରାଲ୍ ଏକାଡେମୀରୁ ଚିଠି ଆସିଲା, ସମ୍ପାଦକ ହରେକୃଷ୍ଣ ଦାସଙ୍କର ହସ୍ତାକ୍ଷରରେ । ସମ୍ପାଦକ, ସୃଷ୍ଟି, ଧନୁପାଲି ଠିକଣାରେ ଆସିଥିବା ଏଇ ଚିଠିଖଣ୍ଡକ ଦିନେ ସମ୍ବଲପୁରୀ ନାଟକକୁ ନୂଆଁ ଜନ୍ମଦେବ, କିଏ ଜାଣିଥିଲା ! ! ଚିଠିରେ ନାଟକକୁ ଲୋକନାଟକ ଭାବରେ ଆଖ୍ୟାୟିତ କରାଯାଇ ତାର ନୂତନ ସଂଜ୍ଞା ନିରୁପଣ କରାଗଲା । ପରୀକ୍ଷାମୂଳକ, ଉଦ୍ଭଟ ନାମରେ ଓଡ଼ିଆ ନାଟକ ଯେତେବେଳେ ଅତି ବୌଦ୍ଧିକ ରୂପ ଧାରଣକରି ଦର୍ଶକମାନଙ୍କୁ ଆଖିଠାରକରି ବସିଲା, ଠିକ୍ ସେହି ବେଳରେ କଲ୍‌ଚରାଲ

ଏକାଡେମୀର ଏହି ଚିଠି ସମଗ୍ର ଓଡ଼ିଶାର ନାଟ୍ୟଧାରାକୁ ବଦଳାଇବାରେ ସମର୍ଥ ହୋଇଥିଲା ।

ନାଟକ ଲୋକମାନଙ୍କ ପାଇଁ, ଲୋକଙ୍କ ଦ୍ୱାରା, ଲୋକ ସମାଜକୁ ନେଇ ରଚିତ ହେବା ଉଚିତ୍ । ଲୋକଙ୍କଠାରୁ ଦୂରେଇ ଯାଇ ନାଟକ ଲେଖାଯିବା ଦ୍ୱାରା ନାଟକ ମଞ୍ଚରୁ, ଦର୍ଶକମାନଙ୍କଠାରୁ ଦୂରେଇଯାଉଛି । ଲୋକଙ୍କ ଭାଷାରେ, ଲୋକ ସମସ୍ୟା ବିଜଡିତ ବିଷୟବସ୍ତୁ ଆଧାରିତ ନାଟକ ଲୋକନାଟକ ମହୋତ୍ସବ ପାଇଁ ପଠାଇବା ପାଇଁ ଚିଠିରେ ଓଡ଼ିଶାର ନାଟ୍ୟଦଳମାନଙ୍କୁ ଅନୁରୋଧ କାଯାଇଥିଲା । ଚିଠିର ବିଷୟବସ୍ତୁ ମୋତେ ଆକୃଷ୍ଟ କଲା । ନାଟକଟି ଲୋକଙ୍କ ଭାଷାରେ ରଚିତ ହେବା ଉଚିତ୍ ଧାଡ଼ିଟି ଉପରେ ମୋର ଦୃଷ୍ଟି ନିବଦ୍ଧ ହୋଇ ରହିଲା । ମନ ଭିତରେ କାଳ ପୁରୁଷ ଓ ଛ ନ ସାତ ନ ନାଟକ ଦୁଇଟିର ବିଫଳତା ଘାଣ୍ଟିସାଉଁଟି ପକାଉଥାଏ । ଲୋକଙ୍କଭାଷା, ମାନେ ଆମେ ଯେଉଁ ଭାଷାରେ କଥାବାର୍ତ୍ତା କରୁଛୁ ଘରେ ବାହାରେ, ସାଙ୍ଗସାଥୀଙ୍କ ମେଳରେ, ମାଁ ସାଙ୍ଗରେ ଭାଇଭଉଣୀମାନଙ୍କ ସାଙ୍ଗରେ, ଧୋବା, ଭଣ୍ଡାରୀ, ପରିବାବିକାଳୀ, ବାସନ ମାଜିଆସୁଥିବା ମହିଳାଙ୍କସହ ଯେଉଁ ଭାଷାରେ କଥାବାର୍ତ୍ତା କରୁଛୁ, ସେହି ଭାଷାରେ ନାଟକ ଲେଖାହେବ । ସାହିତ୍ୟ ସୃଷ୍ଟି କରାଯିବ, କଥିତରୁ ଲିଖିତ ଅବସ୍ଥାକୁ ଅଣାଯିବ, ଅପଢ଼ା ଅଶିକ୍ଷିତ ଅଜ୍ଞାନ ନିପଟ ଗାଉଁଲିଲୋକ ଚରିତ୍ରମାନଙ୍କୁ ଆହରଣ କରାଯିବ । ଗାଁର କଥା ରହିବ ତାଙ୍କରି ଭାଷାରେ ତାଙ୍କରି ପରିବେଶରେ, ସେମାନଙ୍କ ନୃତ୍ୟଗୀତରେ, ସେଇୟା ହିଁ ପାଲଟିବ ନାଟକର ମୁଖ୍ୟ କଥାବସ୍ତୁ ।

ବେଶ୍, ବେଶ୍ ଉଚିତ୍ ପ୍ରସ୍ତାବ ନୂଆଁ ସ୍ୱାଦର୍, ନୂଆଁ ମାନସିକତାର୍, ଏହାକୁ କେନ୍ଦ୍ରକରି ମୋ ଭାବନାରେ ସୃଷ୍ଟିହେଲା ଅସୁମାରୀ ଢେଉ । ମନକୁ ମନ, ସେ ଚିଠିର ଅନେକ ସୂଚିତ ପ୍ରଶ୍ନର ଉତ୍ତର ମୋ ତୁଣ୍ଡକୁ ଆସିଗଲା । ଆମେ ଲାଗୁଥିବା ଭାଷା ସମ୍ବଲପୁରୀ, ଅପଢ଼ା, ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଲୋକ ହିଁ ପ୍ରକୃତଲୋକ, ସମାଜର ସବୁଠାରୁ ଅଧିକ ମାତ୍ରାରେ ଅବହେଳିତ ଲୋକ । ଏମାନଙ୍କର ନାଚ ହେଲା କୁମ୍ଭାରୀ ଗାଁରେ ଦେଖିଥିବା ଡାଲଖାଇ, ରସରକେଲୀ, କରମା, ଢାପ, ନଚନିଆ, ବଜନିଆ ନୃତ୍ୟ, ସେମାନେ ଗାଉଥିବା ଗୀତ ହେଉଛି ଲୋକଗୀତ । ଏହି ସବୁ ଉତ୍ତର ନିର୍ଣ୍ଣୟ କରୁକରୁ ସାଧାରଣ ଗାଉଁଲି ଗାଁର ଚରିତ୍ରମାନଙ୍କୁ ନେଇ କାହାଣୀଟିଏ ମଧ୍ୟ ଗଠନ ହୋଇଗଲା ଅଲିଖିତ ଅବସ୍ଥାରେ । ଦି ଚାରିଦିନ, ଏମିତି ପ୍ରସବବେଦନା ଭଳି ମାନସିକ ପୀଡ଼ାଗ୍ରସ୍ତ ହେବା ପରେ ହଠାତ୍ ପହଞ୍ଚିଗଲି ବିନୋଦ ପଶାୟତଙ୍କ ସେଲୁନ୍‌ରେ । ସାଇକଲ୍‌ଟି ସେଲୁନ୍ ଆଗରେ ଆଉଜି ଦେଇ ତାଙ୍କପାଖକୁ ଉଠିଗଲି । ମୋତେ ଦେଖି ସେ ଖୁସି ହୋଇଗଲେ,



ଜୁହାର ଆଦାନପ୍ରଦାନ ପରେ ଖାଲି ଚୌକି ଦେଖାଇ ବସିପଡ଼ିବାକୁ କହି ତାଙ୍କ କଇଁଚି ଆଦି ଯନ୍ତପାତି ଖୋଲିବା ଆରମ୍ଭ କରିଦେଲେ । ମୁଁ ତାଙ୍କୁ କହିଲି, ବିନୋଦବାବୁ, ମୁଇଁ ଆଜି ଖାଲି ବାଲ୍ କାଟି ନାଇଁ ଆସି । ଗୁଟେ ଉଦ୍ଦେଶ୍ ନେଇକରି ଆଇଛେ । ମୋର୍ ଉଦ୍ଦେଶ୍‌ଟା ଆପଣ ହିଁ ସଫଲ୍ କରି ପାର୍ବେ । ହଁ ବଲ୍‌ବେ ବେଲେ ବାଲ୍ କାଟ୍‌ମି, ନାଇଁ ହେଲେ ମୁଇଁ ଘର୍‌କେ ଚାଲ୍‌ଲି ।

ମୋର ଚୌକିରୁ ଉଠିବା ଦେଖି ସେ କହିଲେ, ଇ ବୁଆ, ବସୁନ୍ ବସୁନ୍, ହେନ୍ତା କେନ୍ତେଇ ପଲାବେ, କାଣା ଆପଣକର୍ ଉଦ୍ଦେଶ୍‌ଟା ଯେ ଜନାବେ ବଏଲେ କାଏଁନ ।

ମୁଁ କହିଲି, ଶୁନୁନ୍, ମତେ ଗୋଟେ ସମ୍ବଲପୁରୀ ନାଟକ୍ ଦରକାର୍ ଅଛେ । ମୁଇଁ କଥାନୀର୍ ଭାବ୍‌ଟାକେ କହିଦଉଛେଁ । ଆପଣ ତାକେ ଆପଣକର୍ ଭାଷା ଦେଇକରି ଲେଖ୍‌ବେ ।

ବିନୋଦବାବୁ କହେଲେ, ମୁଇଁ ପାରମି ଭାଏଲ୍!!

ଆପଣ ହିଁ ପାର୍‌ବେ, ମତେ କଥା ଦଉନ୍, ମୁଁ କହିଲି ।

ହଉ, ଲେଖ୍‌ମା, ଆପଣ କହୁଛନ୍ ଆଉ ମୁଁ ମନା କର୍‌ମି!!

ବେଲେ ବାଲ୍ କାଟବାର୍ ମୂଲ୍ କରୁନ୍, ମୁଇଁ କଥାନୀଟା କହୁଛେଁ, ମୁଁ କହିଲି ଓ ଚୌକିରେ ବସିପଡି ଯାହା ମୋ ମୁଣ୍ଡ ଭିତରେ ଗଜୁରିଥିଲା, ବିନୋଦବାବୁଙ୍କ ପାଖରେ ଆବୃତ୍ତି କରିବାରେ ଲାଗିଲି ।

ଏଇ ତ ଥିଲା ଉଖୀ ନାଟକର ଶୁଭାରମ୍ଭ, ସମ୍ବଲପୁରୀ ନାଟକର ନୂତନ ଯୁଗର୍ ଶୁଭ ମହୁରତ୍, ଯାହାର ପ୍ରଭାବରେ ଆଜି ସମଗ୍ର ଓଡ଼ିଶାର ନାଟ୍ୟଧାରାର ପରିବର୍ତ୍ତିତ ରୂପ ଦୃଶ୍ୟମାନ୍ ହେଉଛି!!



**କା**ହାଣୀ ଅନୁସାରେ ବିନୋଦ ପଶାୟତ ଲେଖା ଆରମ୍ଭ କଲେ, ମଝିମଝିରେ ପୁଣି ଆମ ଭେଟ ହୁଏ, ଆଲୋଚନା ହୁଏ, ଅଧାଲେଖିଥିବା ନାଟକର ପାଣ୍ଡୁଲିପି ମୋ ସାମ୍ନାରେ ପଢ଼ନ୍ତି ବିନୋଦବାବୁ, ଆବଶ୍ୟକ ସ୍ଥଳରେ ମୁଁ ତାଙ୍କୁ କିଛି ପ୍ରସ୍ତାବ ଦିଏ, ଲେଖକୀୟ ସ୍ୱାଧୀନତାକୁ ସମ୍ମାନଦେଇ ବିନୋଦବାବୁଙ୍କୁ କେବଳ ସମ୍ୟକ୍ ସୂଚନା ମାଧ୍ୟରେ ପ୍ରସ୍ତାବ ଦେଉଥାଏ । ମୋର ସମସ୍ତ କଥାକୁ ସେ ମଧ୍ୟ ଆଦର ସହିତ ଗ୍ରହଣ କରିଥାନ୍ତି । ଏହି ନାଟକର ଡାକ୍ତରବାବୁ ମୁହଁରେ ଓଡ଼ିଆସଂଳାପ, ଜଁରା ପଣ୍ଡିତ ମୁହଁରେ ଉତ୍କଳୀୟବ୍ରାହ୍ମଣମାନଙ୍କ ଭାଷାର ସଂଳାପ ରହିବା ଭଳି ଛୋଟଛୋଟ ଟିପ୍‌ସ ଆଗରୁ

ନାଟକର ସାମଗ୍ରିକ ପ୍ରଯୋଜନାଗତ ମୂଲ୍ୟକୁ ଦୃଷ୍ଟିରେ ରଖି ବିନୋଦବାବୁଙ୍କୁ ଜଣାଇ ଦିଆଯାଇଥିଲା । ପାନଦୋକାନୀ ଅଖେ ଏକ କିନ୍ନରଚରିତ୍ର ହେବ, ବୋଲାରସିଂ ବେରିହା ଜଣେ ଯୁଦ୍ଧ ଫେରନ୍ତା ଅବସରପ୍ରାପ୍ତ ସୈନିକର ଚରିତ୍ର, ସତିଆ, ଯେ ନାଟକର ନାୟକ, ଜଣେ ଭଲ ମାନ୍ଦଲିଆ ଅନାଥ ଚରିତ୍ର, ମଦନ ଜଣେ ଅନ୍ଧ ଗାୟକର ଚରିତ୍ର ହେବା ଆଦି ପ୍ରସଙ୍ଗ ନାଟକ ରଚନା ପୁର୍ବରୁ ନିର୍ଦ୍ଧାରିତ ଥିଲା । ତେବେ, ନାଟକର ପରିଣତି କିଭଳି ହେବ, ତାହା ବିନୋଦବାବୁଙ୍କ ଉପରେ ସମ୍ପୂର୍ଣ୍ଣ ଛାଡ଼ି ଦିଆଯାଇଥିଲା । ଏଥର ପାଗଳ ଓରଫ୍ ସିଆଇଡି, ଚରିତ୍ରଟି ନାଟ୍ୟକାରଙ୍କ ସମ୍ପୂର୍ଣ୍ଣ ନିଜସ୍ୱ ସୃଷ୍ଟି । ଶେଷ ଦୃଶ୍ୟ ପାଇଁ ବିନୋଦବାବୁ ଯଥେଷ୍ଟ ସମୟ ନେଇଥିଲେ । ପରିଶେଷରେ ନାଟକଟିକୁ ସମ୍ପୂର୍ଣ୍ଣ କଲେ ବିନୋଦବାବୁ, ସେ ପୂରା ନାଟକର ପାଣ୍ଡୁଲିପିଟିକୁ ମୋତେ ହସ୍ତାନ୍ତର କଲାପରେ ମୁଁ ତାକୁ ପ୍ରାୟ ଦି' ଚାରିଥର ପଢ଼ି ଆଉ କିଛି ପରିବର୍ତ୍ତନ କରିଥିଲି, ପ୍ରସଙ୍ଗରେ ନୁହେଁ, ସଂଳାପ ଗଠନରେ ।

କାହାଣୀଟିକୁ ନାଟ୍ୟରୂପ ଜଣେ ଗୀତିକବିଙ୍କ ଉପରେ ନ୍ୟସ୍ତ କରିବା ପଛରେ ମୋ ଚିନ୍ତାଧାରା ଥିଲା, ଜଣେ ଗୀତିକବି ପାଖରେ ସମ୍ବଲପୁରୀ ଭାଷାର ମୌଳିକତା ନିଶ୍ଚିତ ଭାବରେ ଥିବ । ସାମାନ୍ୟ ନାଟକୀୟ ଛଟା ପାଇଗଲେ, ସେ ଉନ୍ନତମାନର ସଂଳାପ ରଚନା କରିବାରେ ସଫଳ ହେବେ, ଏ ବିଶ୍ୱାସ ମୋର ଥିଲା । ବିନୋଦବାବୁ ଖୁବ୍ ନିକଟରେ ରହୁଥିବା ଜନୈକ ଉନ୍ନତମାନର ଗୀତିକବି । ତେଣୁ ପ୍ରଥମଚିନ୍ତାରେ ହିଁ ମୋ ମନରେ ତାଙ୍କ ନାମଟି ଆପେଆପେ ଆସିଯାଇଥିଲା । ନାଟକଟି ପଢ଼ିବାପରେ ବିନୋଦବାବୁଙ୍କ ଉପରେଥିବା ମୋରଆସ୍ଥା ଶତପ୍ରତିଶତ ସଠିକ୍ ପ୍ରମାଣିତ ହେଲା । ପାଣ୍ଡୁଲିପି ହେଉଛି, ସାମଗ୍ରିକ ଭାବରେ ନାଟକର କଙ୍କାଳ । ନିର୍ଦ୍ଦେଶକ, ଅଭିନେତା, ଅଭିନେତ୍ରୀ, ସଂଗୀତକାର, ଶବ୍ଦ, ମଞ୍ଚ ଓ ଆଲୋକର କୁଶଳୀକାରିଗରମାନେ ଏକତ୍ରିତହୋଇ ସେଇ କଙ୍କାଳକୁ ରକ୍ତ, ମାଂସ ପ୍ରଦାନକରି ସମ୍ପୂର୍ଣ୍ଣ ନାଟକଟିକୁ ଗଢନ୍ତି । ମଞ୍ଚରେ ସାମୂହିକପ୍ରଚେଷ୍ଟାରେ ମଞ୍ଚସ୍ଥହୋଇ ସାରିଲେଯାଇ ନାଟକ ଜୀବନ୍ତ ହୋଇପଡେ । ଉଖୀ ବୋଲି ନାଟକର ନାମକରଣପରେ ମୋର ଚିନ୍ତା ବଢ଼ିଲା, ଏବେ ପରବର୍ତ୍ତୀ ପଦକ୍ଷେପ କଣ ହେବା ଉଚିତ୍ ! ନାଟ୍ୟକାର ଚୟନପରେ ନାଟ୍ୟରଚନା ଗୋଟିଏ ପ୍ରକାର ଶେଷ ହେଲା । ଏବେ ପ୍ରଶ୍ନ ନାଟକର ସେନାପତି ଅର୍ଥାତ୍ ନିର୍ଦ୍ଦେଶକ କିଏ ହେବ ? ମୁଁ ନିଜେ ଏ ବାବଦରେ କେବେ ଚିନ୍ତା କରି ନଥିଲି । ନିଜେ ନିର୍ଦ୍ଦେଶନା ଦେବାର କଳ୍ପନା ହିଁ କରିନଥିଲି । ମୋ'ଘରେ ମୋର ଗୋଟିଏ ହାତରେ ଉଖୀ ନାଟକର ପାଣ୍ଡୁଲିପି ଅନ୍ୟ ହାତରେ ରାଉରକେଲା କଲ୍‌ଚାଲ୍ ଏକାଡେମୀରୁ ଆସିଥିବା ନୀତିନିୟମ

ସହ ଦରଖାସ୍ତ ଫର୍ମ । ମାନବାବୁଙ୍କ ସହ ଦ୍ୱିତୀୟ ମୃତ୍ୟୁ ସମୟରେ ଆସି ଅଭିଜ୍ଞତା ରହିଥିଲା । ପରବର୍ତ୍ତୀ ଚର୍ଚ୍ଚିତ ନାଟ୍ୟଶିଳ୍ପୀ ଭାବରେ ରାଜେନ୍ଦ୍ର ପଣ୍ଡା ଓରଫ ରାଜୁଦା ହିଁ ମନକୁ ପ୍ରବେଶକଲେ, ଯାହାଙ୍କ ସହ ଶିଳ୍ପୀ ସଂସ୍ଥା ମାଧ୍ୟମରେ ଭଲ ସମ୍ପର୍କ ପ୍ରତିଷ୍ଠା ହୋଇସାରିଥିଲା । ସମ୍ବଲପୁରୀ ସଂସ୍କୃତି ସହ, ଭାଷାସହ ପରିଚିତ ଥିବା ବ୍ୟକ୍ତିମାନଙ୍କ ଭିତରେ ରାଜୁଦା ହିଁ ଏକମାତ୍ର ନାଟ୍ୟକଳାର ବ୍ୟକ୍ତିତ୍ୱ ବୋଲି ଧାରଣା ହେବା ମାତ୍ରେ ଆଗପଛ କିଛି ବିଚାର ନକରି ସେଇମୁହୂର୍ତ୍ତରେ ସାଇକଲ୍ ଧରି ଛୁଟିଲି ରାଜୁଦାଙ୍କ ନନ୍ଦପଡା ସ୍ଥିତ ବାସଭବନକୁ । ବେଗ୍‌ରେ ଉଖୀ ନାଟକର ପାଣ୍ଡୁଲିପି ଓ ଏକାଡେମୀର ଦରଖାସ୍ତ ଫର୍ମ । ଅବିଳମ୍ବେ ପହଞ୍ଚିଗଲି ରାଜୁଦାଙ୍କ ଘରେ, ବାହାରୁ ଡାକିଲି । ଉପରୁ ରାଜକୀୟଠାଣୀରେ ପାହାଚପରେ ପାହାଚ ଡେଇଁ ଓହ୍ଲାଇଆସୁଥିଲେ ଦାଦା । ମୋତେ ଦେଖି ଖୁସି ହେଲେ, ବାଟର ବୈଠକଖାନାର ଦରଜାଖୋଲି ବସିବାକୁ କହିଲେ, ବୋହୂଙ୍କୁ ଜଣାଇଦେଲେ, ଏଦେ, ଦ୍ୱାରିକା ଆସିଛନ୍, ଚା' ଟିକେ ବନ । ହଁ, କାଣା ହେଲା ବାବୁ? ମୁଁ ଆଗ ପ୍ରତିଶ୍ରୁତି ମାଗିଲି, କହିଲି, ମୋତେ ଆଘ ହଁ କହ । ପଛେ ବାକିଟା ।

ଟିକେ ଚିନ୍ତା କରି କହେଲେ, ତମେ ଆଇଛ ଆଉ ନାଇଁ ବଲି କେନ୍ତେଇ କହେମି, ହଉ ହେଲା, କହ କାଣା ଯେ?

ମୁଁ ପ୍ରଥମେ ଏକାଡେମୀର ଦରଖାସ୍ତ ଫର୍ମଟି ବାହାରକରି ଦାଦାଙ୍କୁ ଦେଖାଇଲି, ମୋ ଯୋଜନା ସମ୍ପର୍କରେ ତାଙ୍କୁ ଅବଗତକଲି, ଉଖୀ ନାଟକର ପାଣ୍ଡୁଲିପି ବାବଦରେ ଚର୍ଚ୍ଚାକଲି ଏବଂ ଶେଷରେ ତାଙ୍କୁ ନାଟକର ନିର୍ଦ୍ଦେଶକ ଭାବରେ ସମ୍ମତି ଦେବାପାଇଁ ଅନୁରୋଧ କଲି । ସେ ଖୁସିରେ ସମ୍ମତି ପ୍ରଦାନକରି ଦରଖାସ୍ତର ନିର୍ଦ୍ଦେଶକ ସ୍ଥାନରେ ଦସ୍ତଖତକରି ତାଙ୍କ ପ୍ରତିବଦ୍ଧତା ପ୍ରମାଣକଲେ ଏବଂ ମୋ ଅନୁରୋଧକୁ ସସମ୍ମାନେ ଗ୍ରହଣକଲେ । ସେ ଦସ୍ତଖତ କରିବାପରେ କଳାକାର ଚୟନ ବାବଦରେ ସାମାନ୍ୟ କିଛି ଆଲୋଚନା କରିବାପରେ ମୁଁ ଖୁସିରେ ସେଠାରୁ ଫେରିଆସିଲି ଏବଂ ଯଥାଶୀଘ୍ର ପାଣ୍ଡୁଲିପିକୁ ନିଜେ କାର୍ବନ୍ ପକାଇ ଦୁଇ ତିନିକିତା ପ୍ରସ୍ତୁତକରି ଫର୍ମ ପୂରଣ ସହ ଏକକିତା ପାଣ୍ଡୁଲିପି ସମ୍ପାଦକ, କଲ୍‌ଚାଲ ଏକାଡେମୀ ଠିକଣାରେ ମାଁ ସମଲେଶ୍ୱରୀଙ୍କୁ ଧ୍ୟାନରେ ରଖି ରାଉରକେଲା ପଠାଇଦେଲି ।

କଲ୍‌ଚରାଲ୍ ଏକାଡେମୀ ଉପରେ ମୋର ସମ୍ପୂର୍ଣ୍ଣ ଭରସାଥିଲା । ଉଖୀ ନିଶ୍ଚୟ ମନୋନୀତ ହେବ । କାରଣ ପାଣ୍ଡୁଲିପି ପ୍ରସ୍ତୁତି ସମୟରେ ଏକାଡେମୀର ସମସ୍ତ ନିୟମାବଳୀ ପ୍ରତିସତର୍କ ଦୃଷ୍ଟି ଦିଆଯାଇଥିଲା । ଏକାଅଶୀର ଦଶହରା ପରେପରେ ଉଖୀ

ମନୋନୀତ ହେବାର ଚିଠି ମୋର ହସ୍ତଗତ ହେଲା । ଖୁସିରେ ମୁଁ ଆତ୍ମହରା ହୋଇପଡିଥିଲି । ସାଇକଲ୍ ମାଡି ମୁଁ ପ୍ରଥମେ ସୃଷ୍ଟିର ନବମନୋନୀତ ସଭାପତି ଶ୍ୟାମସୁନ୍ଦର ଧର ଓରଫ ବାରୁଦାଙ୍କ ଘରକୁ ଛୁଟିଗଲି ଏ ଶୁଭସମ୍ବାଦ ଦେବାପାଇଁ । ବାରୁଦା ମଧ୍ୟ ଖୁସିହେଲେ । ସମସ୍ତପ୍ରକାର ଆୟୋଜନ କରିବାର ପ୍ରତିଶ୍ରୁତିଦେଲେ ଓ ରାଜୁଦାଙ୍କ ସହ ସଦ୍ୟମନୋନୀତ କଳାକାର ଭେଟହୋଇ ରିହାର୍ସାଲ ତାରିଖ ଠିକଣା କରିବା ବୋଲି କହିଲେ । ବାରୁଦା ସେତେବେଳେ ବ୍ରଜରାଜନଗର ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକଭାବରେ ପ୍ରତ୍ୟହ ଟ୍ରେନ୍ ଯୋଗେ ଯିବାଆସିବା କରୁଥିଲେ । ଫେରିବାବେଳେ ଆସୁଆସୁ ରାତି ସାତଟା, ତେଣୁ ମୋତେ ହିଁ ଅଧିକାଂଶ ଆୟୋଜନକରିବାକୁ ପଡୁଥିଲା । ରାଜୁଦାଙ୍କ ଓକିଲାତି ଚେମ୍ବର ଥିଲା ଝାଡୁଆପଡାର ବ୍ରହ୍ମପୁରା ମନ୍ଦିର ପାଖରେ । ରବିବାର ସକାଳ ଦେଖି ସୃଷ୍ଟିର ଉଖୀ ନାଟକ ପ୍ରସ୍ତୁତିର ପ୍ରଥମ ବୈଠକୀ ବସିଲା । ବେଲାର୍ ସିଂ ବେରିହା ଭୂମିକା ପାଇଁ ଉତ୍ତମ ବେହେରା, ସତିଆ ଭୂମିକାରେ ମୁଁ ନିଜେ, ଅଖେ ପାଇଁ ବାରୁଦା, ଢଁରା ପଣ୍ଡିତ ପାଇଁ ବଡ଼କଷ୍ଟରେ ନନ୍ଦପଡାକୁ ଆସି ଖୋଜି ପାଇଥିବା ଚିତ୍ରସେନ ମିଶ୍ର, ମଦନ ପାଇଁ ବିପିନ ଦାସ, ଡାକ୍ତର ଭୂମିକା ପାଇଁ ଚିତ୍ତରଞ୍ଜନ ପଟ୍ଟନାୟକ, ଏଭଳି କିଛି ନାଟୁଆ ବନ୍ଧୁମାନଙ୍କସହ ପ୍ରଥମ ବୈଠକ ବସି ଉଖୀ ନାଟକର ପାଣ୍ଡୁଲିପିକୁ ଆମୂଳଚୂଳ ସମସ୍ତଙ୍କ ସମ୍ମୁଖରେ ମୋତେ ପଢ଼ିବାକୁପଡିଲା । ପରିଣତି ଦୃଶ୍ୟରେ ସଂଳାପ କିଛି ଦୁର୍ବଳ ଥିବା ରାଜୁଦା ମତ ପ୍ରଦାନକଲେ । ନାଟକର ଚରିତ୍ରଗୁଡ଼ିକୁ ଆହୁରି ସୁଦୃଢ଼ କରିବାର ପ୍ରସ୍ତାବ ଦେଲେ । ମୁଁ ସେସବୁ ସମସ୍ୟା ଆଉ ବିନୋଦବାବୁଙ୍କୁ ନଦେଇ ନିଜ କଲମଚାଳନାକରି ତାର ସମାଧାନ କରିଦେଲି । ଆଉ ଏକ ବୈଠକରେ ପୁଣି ନାଟକଟିକୁ ପଢ଼ାଗଲା, ଏବେ ନିର୍ଦ୍ଦେଶକଙ୍କ ସହ ବାକି ସମସ୍ତଙ୍କୁ ତୁଷ୍ଟ କରିପାରିଲା । ଗୌନ୍ତିଆ ଭୂମିକା ପାଇଁ ରାଜୁଦା ମୁଦିପଡାର ସାମ୍ବାଦିକ କିଶୋର ଦାସଙ୍କ ନାମ ପ୍ରସ୍ତାବ ଦେଲେ । ପରେପରେ ପାଗଳ ଚରିତ୍ର ପାଇଁ ରଣଜିତ୍ ଗୁରୁଙ୍କ ନାମକୁ ସମ୍ମତି ପ୍ରଦାନକଲେ ରାଜୁଦା । ପରେ ଅଲୋଚନା ହେଲା, ନାଟକରେ ଥିବା ଦୁଇ ନାରୀ ଚରିତ୍ର ପାଇଁ ଅଭିନେତ୍ରୀ ଖୋଜା । ଲାଏବାନ ପାଇଁ ମୁଁ ପ୍ଲାବନୀ ପାଢ଼ୀଙ୍କ ନାମ ପକାଇଲି । ଯେ ଏଥି ପୂର୍ବରୁ ଜ୍ୟୋତିବିହାରର ବିଭାଗୀୟ ନାଟକରେ ଅଭିନୟ କରି ଖ୍ୟାତି ଅର୍ଜନ କରିଥିଲେ । ପରେ ସାଏବାନୀ, ଯେ ନାଟକର ନାୟିକା, ସେ ଚରିତ୍ର ପାଇଁ ଗତ ବର୍ଷ ଶିଳ୍ପୀ ଅନୁଷ୍ଠାନ ସହ ଏହ୍ଲାବାଦ ଯାଇଥିବା ଓଡ଼ିଶୀ ନୃତ୍ୟଶିଳ୍ପୀ ପ୍ରଣତି ପଣ୍ଡାଙ୍କ ନାମ ପ୍ରସ୍ତାବ ଦେଲି । ଉଭୟ ପ୍ରସ୍ତାବ ରାଜୁଦାଙ୍କ ମନକୁ ପାଇଥିଲା ଏବଂ ଏ ବାବଦରେ କିଛିଦିନ ରିହାର୍ସାଲପରେ ଅଭିଯାନ ଆରମ୍ଭକରିବାର ଚିନ୍ତା କରାଯାଇଥିଲା ।

ପ୍ଲାବନୀ ପାଢ଼ୀ, ଅବସର ପ୍ରାପ୍ତ ଇଞ୍ଜିନିୟର ରାମନାରାୟଣ ପାଢ଼ୀଙ୍କ ଝିଅ ଏବଂ ପ୍ରଣତି ପଣ୍ଡା ସେ ସମୟର ସହକାରୀ କମିଶନର, ଆୟକରବିଭାଗ, ଧର୍ମନାରାୟଣ ପଣ୍ଡାଙ୍କ ଝିଅ, ସେତେବେଳେ ଯୁକ୍ତଦୁଇ ପ୍ରଥମବର୍ଷର ଛାତ୍ରୀ । ଉଖୀ ଭଳିଆ ସମ୍ୱଲପୁରୀ ନାଟକ କୌଣସି ପେଷାଦାର ଅଭିନେତ୍ରୀଙ୍କୁ ନେଇ ମଞ୍ଚାୟନ କରିବା ଅସମ୍ଭବ ବୋଲି ପ୍ରଥମରୁ ହିଁ ଆମର ହୃଦ୍‌ବୋଧ ହୋଇଥିଲା । ତେବେ ପ୍ଲାବନୀ ଓ ପ୍ରଣତି ପଣ୍ଡାଙ୍କ ଘରକୁ ଯାଇ ସେମାନଙ୍କ ବାପାମାଁଙ୍କ ସମ୍ମତି ଆଣିବା ପାଇଁ ରାଜୁଦାଙ୍କ ନେତୃତ୍ୱରେ ଚାରିଜଣିଆ ଦଳ ପ୍ରସ୍ତୁତ ହୋଇଗଲା । ବାରୁଦା, ମୁଁ, ଉତ୍ତମ ରାଜୁଦାଙ୍କ ସହ ସେମାନଙ୍କ ଘରକୁଯାଇ ନାଟକରେ ଅଭିନୟ ପାଇଁ ସେମାନଙ୍କ ସମ୍ମତି ପ୍ରାର୍ଥନାକଲୁଁ । ରାଜୁଦାଙ୍କ ଉପସ୍ଥିତି, ଆମ ଉଦ୍ୟମକୁ ସଫଳ କରିଥିଲା । ଉଭୟ ପରିବାରଙ୍କ ସମ୍ମତି, ଆମ ଯୋଜନାକୁ ସଫଳକରିବା ପାଇଁ ଖୁବ୍ ସହାୟକ ହୋଇଥିଲା । ପରେ ପରେ କିଶୋର ଦାସ ଏବଂ ରଣଜିତ୍ ଗୁରୁଙ୍କ ସହ ମୁଁ ଯୋଗାଯୋଗକରି ଆମ ନାଟକ ବାବଦରେ ଜଣାଇଲି । ସେମାନେ ମଧ ଆନନ୍ଦରେ ସେମାନଙ୍କ ସ୍ୱୀକୃତି ପ୍ରଦାନକଲେ । ନାଟକ ରିହାର୍ସାଲର ଶୁଭମୁହୂର୍ତ୍ତ ନିର୍ଦ୍ଦିଷ୍ଟ କରାଯାଇ ଟାଉନ୍ ହାଇସ୍କୁଲର ହଲ୍‌କୁ ରିଜର୍ଭ କରାଗଲା । ସକାଳୁ ସମଲେଶ୍ୱରୀ ମନ୍ଦିରଯାଇ ପାଣ୍ଡୁଲିପି ପୂଜାକରାଗଲା ସମସ୍ତ କଳାକାରମାନଙ୍କ ଗହଣରେ । ସମସ୍ତ କଳାକାର, ସ୍ମାରକ ଲଳିତ ମିଶ୍ର, ନିରଞ୍ଜନ ନନ୍ଦଙ୍କ ଉପସ୍ଥିତିରେ ନିର୍ଦ୍ଦେଶକ ରାଜେନ୍ଦ୍ର ପ୍ରସାଦ ପଣ୍ଡାଙ୍କ ପରିଚାଳନାରେ ନଡ଼ିଆ ଫଟା ହେଲା, ସାତ ଦିନ ପାଇଁ ପ୍ରଥମେ ପଢ଼ା ରିହାର୍ସାଲ୍ ଲଗାୟତ ଚାଲିଲା ।

ଏ ଥିଲା ରିହାର୍ସାଲ ଆରମ୍ଭ ପର୍ଯ୍ୟନ୍ତ ଯାତ୍ରାର ଅଧିସୂଚନା । ଉଖୀ, ନାଟକ ଖାଲି ଗୋଟାଏ ନାଟକ ନଥିଲା, ନାଟ୍ୟାଭିନୟ ସହ ସେ ବହନ କରିଥିଲା ଗୋଟିଏ ନୂତନ ଭାଷାର ଆବିର୍ଭାବ ଓ ତାହାର ସାହିତି୍ୟକ ରୂପକୁ ଜନମାନସର ସ୍ୱୀକୃତି, ପରେ ଯାହା ଏକ ଭାଷା ଆନ୍ଦୋଳନର ରୂପରେଖ ଗ୍ରହଣ କଲା, ସମ୍ୱଲପୁର ରଙ୍ଗମଞ୍ଚର ନୂତନ ଦିଗନ୍ତ ଉନ୍ମୋଚିତହେଲା, ପ୍ରେମିକାଭଳି ଲୋକେ ସମ୍ୱଲପୁରୀଭାଷାକୁ ଅନ୍ତରସହ ଭଲପାଇଲେ, କିଛିବୁଦ୍ଧିଜୀବୀ ଏହାର ସାହିତି୍ୟକ ରୂପକୁ ହାର୍ଦ୍ଦିକତାର ସହ ଗ୍ରହଣକଲେ, କବି ବିନୋଦ ପଶାୟତ, ନାଟ୍ୟକାର ବିନୋଦ ପଶାୟତ ଭାବରେ ପରିଚିତ ହେଲେ ।



ରାଉରକେଲା କଲ୍‌ଚରାଲ ଏକାଡେମୀ ଆୟୋଜିତ ଲୋକନାଟକ ମହୋତ୍ସବପାଇଁ ସୃଷ୍ଟି, ସମ୍ବଲପୁରର ସମ୍ବଲପୁରୀ ନାଟକ ଉଖୀର ପ୍ରସ୍ତୁତି ଆରମ୍ଭ ହୋଇଗଲା । ଟାଉନ୍ ହାଇସ୍କୁଲର ବଡପ୍ରକୋଷ୍ଠରେ ସନ୍ଧ୍ୟା ଛ' ଟା ତିରିଶ ଥିଲା ଆମ ରିହାର୍ସାଲ କରିବାର ସମୟ ନିର୍ଘଣ୍ଟ । ରିହାର୍ସାଲ କୋଠାକୁ ସର୍ବ ପ୍ରଥମେ ମୁଁ ପହଁଞ୍ଚୁଥିଲି, ସମଗ୍ର କୋଠରୀକୁ ସଫାରଫାକରି ଓ ଦରିବିଛାଇ ଅନ୍ୟମାନଙ୍କୁ ଅପେକ୍ଷାକରୁଥିଲି । ଜଣଜଣକରି ସମସ୍ତେ ଆସୁଆସୁ ସାତଟା ହୋଇଯାଉଥିଲା । ନିଜନିଜ ବୃତ୍ତିରେ ସମସ୍ତେ ବ୍ୟସ୍ତ, ତେଣୁ ବିଳମ୍ବହେଲେ ସୁଦ୍ଧା ମୁଁ ନୀରବ ହୋଇଯାଉଥିଲି । ବାରୁଦା ଆସନ୍ତି ସିଧା ବ୍ରଜରାଜନଗରରୁ କଲେଜ କାମସାରି, କିଶୋର ଦାସ ପ୍ରାୟ ଡେରିରେ ଆସନ୍ତି । ରାଜୁଦା ମଧ୍ୟ ପାଞ୍ଚ ଦଶ ମିନିଟ ଡେରି କରନ୍ତି । ବିପିନ ଦାସ, ଚିତ୍ରସେନ, ନରେନ୍ଦୁ ଠିକ୍ ସମୟରେ ଆସି ମୋତେ ଅନ୍ୟାନ୍ୟ କାର୍ଯ୍ୟରେ ସହଯୋଗକରନ୍ତି । ପ୍ଲାବନୀ ପାଢ଼ୀ ଓ ପ୍ରଣତି ପଣ୍ଡାଙ୍କୁ ଘରକୁ ଯାଇ ରିକ୍ସାରେ ଆଣିବାକୁପଡେ, ପୁଣି ରିହାର୍ସାଲ ଶେଷହେଲେ ଛାଡ଼ିଯିବା ପାଇଁ ପଡେ ବିଭିନ୍ନ ସଦସ୍ୟଙ୍କ ଦ୍ୱାରା । ପ୍ରଥମ ସାତ ଆଠ ଦିନ ପାଣ୍ଡୁଲିପିକୁ ପଢ଼ିବା ଓ ସଂଳାପ ଉଚ୍ଚାରଣ କରିବା ଅଭ୍ୟାସ କରିଥିଲୁ, କାରଣ, ଏହା ସମ୍ବଲପୁରୀ ନାଟକ, ପ୍ରାୟ ସବୁକଳାକାରମାନଙ୍କ ପାଇଁ ସର୍ବ ପ୍ରଥମ ପୂର୍ଣ୍ଣାଙ୍ଗ ନାଟକ । ପରେ ଅଭିନୟ ସହ ରିହାର୍ସାଲ ଆରମ୍ଭ ହେଲାବେଳକୁ ପ୍ରଥମଦୃଶ୍ୟରେ ମୋ ସହ ସାଏବାନୀ ଚରିତ୍ରର ନୃତ୍ୟ ପ୍ରଦର୍ଶନ ଥିଲା । ପରଦିନ, ଠେଲକୋ ପଡାର କରମାପୂଜାବେଳେ ଯେଉଁ ବାଦ୍ୟକାର ମାନ୍ଦଳ ବଜାଏ, ତାଠାରୁ ମାନ୍ଦଳ ଅଣାଗଲା । ମୁଁ 'ସତିଆ', ନାଟକର ନାୟକ ଭୂମିକାରେ ଅଭିନୟ କରୁଥିବାରୁ ବହୁ ସାଂଗଠାନିକ ପରିଶ୍ରମ କରିବା ସତ୍ତ୍ୱେ ପ୍ରଥମ ଦୃଶ୍ୟର ରିହାର୍ସାଲ ପାଇଁ ନିଜକୁ ସାଙ୍ଗେସାଙ୍ଗେ ପ୍ରସ୍ତୁତ କରିପକାଉଥିଲି । ପ୍ରଥମ ଦୃଶ୍ୟର ପ୍ରଥମରୁ ହିଁ ଥିଲା ସତିଆ ଓ ସାଏବାନୀର ଦ୍ୱୈତ ସମ୍ବଲପୁରୀ ନୃତ୍ୟ । ରିହାର୍ସାଲ କିଛିଦିନ ଗଡିଯିବା ପରେ ଦୈବାତ୍ କ୍ରମେ ଦିନେ ଆରମ୍ଭରୁ ବିଶିଷ୍ଟ ନୃତ୍ୟଶିକ୍ଷୀ ତଥା ନାଟ୍ୟନିର୍ଦ୍ଦେଶକ ଦେବୁ ବୋଷ୍ ରାଜୁଦାଙ୍କ ସହ ରିହାର୍ସାଲ୍ କୋଠାରୀରେ ହାଜର୍ । ରାଜୁଦା ମୋତେ ଦେବୁ ବୋଷଙ୍କଠାରୁ ନୃତ୍ୟ ଶିଖିଯିବାପାଇଁ ନିର୍ଦ୍ଦେଶ ଦେଲେ । ପ୍ରଣତି ମଧ୍ୟ ରିହାର୍ସାଲ୍‌କୁ ଆସିସାରିଥାଏ ।

ଦେବୁ ବୋଷ ମୋତେ କାନ୍ଧରେ ମାନ୍ଦଳ ଝୁଲାଇବା ଦେଖି ପଚାରିଲେ, ତମେ ବଜାଇ ଜାଣିଛ ? ମୁଁ କହିଲି, ହଁ ସାର୍ । ଦେଖି ଥରେ ବଜାଇଲ, କହିଲେ ଦେବୁ ବୋଷ । ଆଦେଶ ପାଇଲା କ୍ଷଣି ମୁଁ ମୋ ପ୍ରିୟ ପାର୍‌ମାନ ମାନ୍ଦଳରେ ବଜାଇ ତାଙ୍କୁ ଶୁଣାଇଲି । ସେ ଖୁସି ହୋଇଯାଇ ପୁଣି ପଚାରିଲେ, ନାଚି ପାରିବ ମାନ୍ଦଳ ବଜାଇ ?

ମୁଁ ହଁ କହିବା ମାତ୍ରେ ସେ ନିର୍ଦ୍ଦେଶ ଦେଲେ, ଯେଉଁ ତାଳରେ ବଜାଉଥିଲ, ସେହି ପାର୍ ହିଁ ବଜାଅ। ପରେ ପରେ ପ୍ରଣତି ଆଉ ମୋତେ ଡାକି ସିଧା ନୃତ୍ୟ ନିର୍ଦ୍ଦେଶନା ପ୍ରଦାନକରି ଆମକୁ ପ୍ରାୟ ଅଧଘଣ୍ଟା ପାଇଁ ନାଚ ଶିଖାଇଲେ। ମୁଁ ଓ ପ୍ରଣତି ତାଙ୍କୁ ଅନୁକରଣ ଓ ଅନୁସରଣ କରି ତାଙ୍କ ଉପସ୍ଥିତିରେ ଦୁଇଚାରି ଥର ନାଚି ପକାଇଲୁ। ଅତି ଶୀଘ୍ର ନୃତ୍ୟକୁ ପ୍ରଦର୍ଶନମୁଖୀ କରିପାରିଥିବାରୁ ଦେବୁ ବୋଷ ଆନନ୍ଦ ପ୍ରକାଶକରି ଆମଠୁ ବିଦାୟ ନେଇଯାଇଥିଲେ। ଆଜି ଚାଳିଶ୍ ବର୍ଷ ପରେ ଏହି ଅନୁଭୂତି ସମ୍ପନ୍ନ ପ୍ରସଙ୍ଗ ଉଲ୍ଲେଖ କଲାବେଳେ, ମୁଁ ଅନୁଭବ କରୁଛି. ଏବେ ବି କାନ୍ଧରେ ମାନ୍ଦଲ ମୋ କାନ୍ଧରେ ଝୁଲାଇ ଦେଇ, ଠିକ୍ ସେଭଳି ନାଚିଦେଇପାରିବି, ସେତେବେଳେ ଯେମିତି ନାଚିଥିଲି। ପୁଣି ନିଜେ ମାନ୍ଦଲ ବଜା ବଜାଇ।। ରିହାର୍ସାଲ ଧିରେ ଧିରେ ଜମି ବସିଲା। ନୃତ୍ୟ ସହ ଅଭିନୟ ଏକାସାଙ୍ଗରେ ଅଭ୍ୟାସ ଚାଲିଲା। ରିହାର୍ସାଲର ଖବର ଆଉ ଟାଉନ୍ ହାଇସ୍କୁଲର କୋଠରୀ ଭିତରେ ସୀମିତ ନରହି ସାରା ସହରକୁ ବ୍ୟାପିଗଲା। ସବୁ ପଡାରେ ଚର୍ଚ୍ଚା। ସମ୍ବଲପୁରରେ ଏକ ବଡ଼ ସମ୍ବଲପୁରୀ ନାଟକ ଅଭିନୀତ ହେବାକୁ ଯାଉଛି। ଯାହା ସର୍ବପ୍ରଥମେ ରାଉରକେଲା ସିଭିକ୍ ସେଣ୍ଟରରେ ମଞ୍ଚସ୍ଥ ହେବ, ନାଟକ ପ୍ରତିଯୋଗିତାରେ। ସମ୍ବଲପୁରୀ ନାଟକ, ପୁଣି ରାଉରକେଲାରେ, ଏ ଥିଲା ସମ୍ବଲପୁର ସହରର ନାଟୁଆମାନଙ୍କ ପାଇଁ ଏକ ବିସ୍ମୟ। ରିହାର୍ସାଲ ଦେଖି ଅସିବା ପାଇଁ ମାନ୍ୟଗଣ୍ୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଆଗମନ ଆମକୁ ଖୁବ୍ ଉତ୍ସାହିତ କରିଥିଲା। ଏମାନଙ୍କ ମଧ୍ୟରେ ଥିଲେ ଶ୍ରୀବଲ୍ଲଭ ପାଣିଗ୍ରାହୀ, ଡ. ଝସକେତନ ସାହୁ, ମୁରାରୀ ପ୍ରସାଦ ମିଶ୍ର, ଗୋବିନ୍ଦଚନ୍ଦ୍ର ଉଦଗାତା, ଡ. ଶ୍ରଦ୍ଧାକର ସୁପକାର। ମୁରାରୀବାବୁ ତ ପ୍ରାୟ ଲଗାୟତ ଆସୁଥିଲେ। ଜଁରା ପଣ୍ଡିତଙ୍କ ତୁଣ୍ଡରେ ନନ୍ଦପଡାର ଓଡ଼ିଆ ମିଶ୍ରିତ ସମ୍ବଲପୁରୀ ଭାଷାର ସଂଳାପ ତାଙ୍କୁ ବିଶେଷ ଭାବରେ ଆକର୍ଷିତ କରୁଥିଲା। ନନ୍ଦପଡାର ଅଭିନେତା ଚିତ୍ରସେନ ମିଶ୍ର ତାଙ୍କ ଭୂମିକାକୁ ନିଖୁଣ ଭାବରେ ପ୍ରଦର୍ଶନ କରିବାର ଭରପୂର ପ୍ରୟାସ କରୁଥିଲେ। ବାରୁଦା, ଯେ ଅଖେ ଭଳି ଏକ ହାସ୍ୟରସାତ୍ମକ କିନ୍ନର ଚରିତ୍ରରେ ଅଭିନୟ କରୁଥିଲେ, ସେ ମଧ୍ୟ ଚରିତ୍ରଟିକୁ ପାରୁପର୍ଯ୍ୟନ୍ତ  ଜୀବନ୍ତ କରିବାରେ ଚେଷ୍ଟିତ ଥିଲେ। ରାଜୁଦା, ଜଁରା ପଣ୍ଡିତ ଓ ଅଖେ ଚରିତ୍ର ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେଉଥିଲେ। ପ୍ଲାବନୀ କଣ୍ଠରେ କଞ୍ଚା ସମ୍ବଲପୁରୀ ଭାଷାର ସଂଳାପ ନାଟକର ମର୍ଯ୍ୟାଦାକୁ ଦ୍ୱିଗୁଣିତ କରୁଥିଲା। ପ୍ରଣତି ଓ ମୋର ପ୍ରାରମ୍ଭିକ ଦୃଶ୍ୟର ଦ୍ୱୈତନୃତ୍ୟ ଅଳଙ୍କାର ଥିଲା ସମଗ୍ର ନାଟକର। ବେଲାର ସିଂ ବେରିହା ଚରିତ୍ରଟିର ଉପସ୍ଥିତି ନାଟକର ନାଟକୀୟତାକୁ ବାନ୍ଧି ରଖୁଥିଲା। ଉତ୍ତମ ବେହେରା ଏହି ଚରିତ୍ରଟିକୁ ଯତ୍ନସହକାରେ ନିଭାଉଥିଲେ। କିଶୋର ଦାସ, ବିପିନ

ଦାସ, ନରେନ୍ଦ୍ର ରାୟଗୁରୁ ମଧ୍ୟ ନିଜନିଜ ଭୂମିକାରେ କିଛି କମ୍ ନଥିଲେ । ପାଗଳ ଭୂମିକାରେ ରଣଜିତ୍ ଗୁରୁ, ନାଟକର ଯବନିକାରେ ତାଙ୍କ ଜବରଦସ୍ତ ସଂଳାପ ଉଚ୍ଚାରଣ ଶୈଳୀ ଦ୍ୱାରା ଶେଷସ୍ପର୍ଶ ଦେଇପାରୁଥିଲେ ।

ରାଜୁଦାଙ୍କ ନିର୍ଦ୍ଦେଶନା ଶୈଳୀ ବିଶେଷ ଭାବରେ ସଂଳାପ ଉଚ୍ଚାରଣ ଭିତରେ ହିଁ ନିବଦ୍ଧ ରହୁଥିଲା । ଦାଦାଙ୍କ ଗୋଟିଏ ଭଲ ଗୁଣ, କଳାକାର ଶତପ୍ରତିଶତ ଫଳାଫଳ ନଦେବା ପର୍ଯ୍ୟନ୍ତ ସେ ଛାଡୁ ନଥିଲେ । ତେଣୁ, ସଂଳାପଗୁଡ଼ିକୁ ବାରମ୍ବାର ରିହାର୍ସାଲ କରିବାକୁ ପଡୁଥିବାରୁ ଏହାର ଦୁଇଟି ଲାଭ କଳାକାରମାନଙ୍କୁ ମିଳୁଥିଲା । ପ୍ରଥମତଃ, ସଂଳାପ ମନେରହିଯାଉଥିଲା, ଦ୍ୱିତୀୟତଃ ତାହା ଅଭିନୟକୁ ସମର୍ଥନ କରୁଥିଲା । ମାନବାବୁ ଓ ରାଜୁଦାଙ୍କ ନିର୍ଦ୍ଦେଶନା ଦେବା ଶୈଳୀ ଭିତରେ ଏତିକି ଫରକ୍ ଥିଲା । ମାନଭଞ୍ଜନ ହୋତା ଥିଲେ ପ୍ରଦର୍ଶନାତ୍ମକ ନିର୍ଦ୍ଦେଶକ । ଅର୍ଥାତ୍ ସେ ରିହାର୍ସାଲରେ ନିଜେ ଅଭିନୟ ମାଧ୍ୟମରେ କଳାକାରଙ୍କୁ ନିର୍ଦ୍ଦେଶନା ଦେଉଥିଲେ ଏବଂ ରାଜୁଦା ସଂଳାପ ଇଙ୍ଗିତାତ୍ମକ ନିର୍ଦ୍ଦେଶକ । ଯେ, ନିଜେ କୌଣସି ସଂଳାପ ଉର୍ଚ୍ଚାରଣ ନକରି ଇଙ୍ଗିତ ମାଧ୍ୟମରେ କଳାକାରଙ୍କୁ ପ୍ରଭାବିତ କରି ଫଳାଫଳ ଅସୁଲ୍ କରୁଥିଲେ । ଉଖୀ, ରାଜୁଦାଙ୍କ ପାଇଁ ଥିଲା ଏକ ଆହ୍ୱାନ, ସେ ମଧ୍ୟ ଏହି ଆହ୍ୱାନକୁ ଗମ୍ଭୀରତା ସହ ଗହଣକରି ନାଟକକୁ ସର୍ବାଙ୍ଗ ସୁନ୍ଦର କରିବାପାଇଁ ପ୍ରୟାସ କରୁଥିଲେ । ନାଟକର ସମସ୍ତ କଳାକାରମାନଙ୍କ ସହଯୋଗରେ ଉଖୀ ନାଟକଟି ରାଉରକେଲାର ମଞ୍ଚ ଉତୁରିବାପାଇଁ ପ୍ରାୟତଃ ପ୍ରସ୍ତୁତ ହୋଇଗଲା ।

ନାଟକର ମଞ୍ଚସଜ୍ଜା ପାଇଁ ରଙ୍ଗମହଲର ଉଦୟବାବୁଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରାଗଲା । ଗାଁ ମୁଣ୍ଡ ଦୃଶ୍ୟକୁ ସ୍ୱାଭାବିକ କରିବାର ସମସ୍ତ ପ୍ରୟାସ ସେ ଜାରି ରଖିଲେ । ବିରାଟ ବଟବୃକ୍ଷର ଗଣ୍ଡି, ତାକୁ ଲାଗି ସିମେଣ୍ଟ ପଲସ୍ତରା ଦିଆ ଚୌତରା । ବାମ ପାଖରେ ସତିଆର ପୁଆଳ ଛୁଆଁ କୁଟୀର । ଡାହାଣକୁ ଗୌନ୍ତିଆଘରର ଛାୟା, ସାମ୍ନାରେ ଗାଁ ଖୁଲି । ପ୍ରଚ୍ଛଦ ସଂଗୀତ ପାଇଁ ବେହେଲାରେ ପୂର୍ଣ୍ଣଚନ୍ଦ୍ର ସ୍ୱାଇଁ, ବଂଶୀ ଓ ମହୁରୀ ପାଇଁ ଫୈମୁଲ୍ଲା ଖାନ୍ ଆଦିଙ୍କ ସହ ଯୋଗାଯୋଗ କରାଯାଇ ରିହାର୍ସାଲ୍‌କୁ ଅଣାଯାଇ କେଉଁ ଦୃଶ୍ୟରେ କିଭଳି ସଂଗୀତ ସଂଯୋଜିତ ହେବ, ସେ ଦାୟିତ୍ୱ ମୁଁ ନିଜେ ସମ୍ଭାଳୁଥିଲି । ଅନ୍ଧ ମଦନ ଭୂମିକାରେ ଅଭିନୟ କରୁଥିବା ବିପିନ ଦାସ, ନିଜେ ଖଞ୍ଜଣୀବଜାଇ ଗୀତଗାଇ ପାରୁଥିଲେ । ମୁଁ ସତିଆ ଭୂମିକାରେ ନିଜେ ମାଦଳ ବଜାଇପାରୁଥିଲି, ତେଣୁ ଅନ୍ତରାଳରୁ ତାଳବାଦ୍ୟର କୌଣସି ଆବଶ୍ୟକତା ପଡୁ ନଥିଲା । ଆବଶ୍ୟକ ଥିଲେ ମୁଁ ନିଜେ ମାଦଳ ଦ୍ୱାରା ସହଯୋଗ କରୁଥିଲି । ଆରମ୍ଭରୁ ଶେଷ

ପର୍ଯ୍ୟନ୍ତ ପ୍ରଚ୍ଛଦ ସଂଗୀତ ପରିଚାଳନାର ଦାୟୀତ୍ୱ ମୋର ଥିଲା । ସବୁ ପ୍ରସ୍ତୁତି ଭିତରେ ସାଂଗଠାନିକ କାର୍ଯ୍ୟ ମଧ୍ୟ ଆଗେଇ ଚାଲିଥିଲା । ଯେମିତି ଅର୍ଥ ସଂଗ୍ରହ, ରାଉରକେଲା ଯିବା ଆସିବା ପାଇଁ ଗାଡ଼ିଘୋଡ଼ା ଖଞ୍ଜିବା ଆଦି । ଏ ସମସ୍ତ କାର୍ଯ୍ୟ ସମସ୍ତଙ୍କ ସମ୍ମିଳିତ ଉଦ୍ୟମରେ ସଫଳତାର ସହ ଆଗେଇ ଚାଲିଲା ।

ତତ୍କାଳୀନ ସହକାରୀ ଆୟକର କମିଶନରଙ୍କ ଆନ୍ତରିକ ସହଯୋଗ ଆମ ଦଳକୁ ଯଥେଷ୍ଟ ପ୍ରୋତ୍ସାହିତ କରିଥିଲା । ତାଙ୍କ ଝିଅ ଏ ନାଟକରେ ଅଭିନୟ କରୁଥିବା ହେତୁ ସେ ସମଗ୍ରଦଳର ଅଭାବ ଅସୁବିଧା ସହ ନିଜକୁ ଜଡ଼ିତ କରିଥିଲେ । ରାଉରକେଲା ଯିବା ପୂର୍ବରୁ ବ୍ୟକ୍ତିଗତ ଭାବରେ ସେ ମୋତେ ତାଙ୍କ ଅଫିସରକୁ ଡାକି ସମସ୍ତ ଯୋଜନା ବାବଦରେ ଅବଗତ ହେଲେ । ସାଙ୍ଗେସାଙ୍ଗେ ସେ ଫୋନ୍ ଉଠାଇ ଆମ ପାଇଁ ତିନୋଟି ବଡ଼ ଜିପ୍‌ର ବ୍ୟବସ୍ଥା କରିଦେଲେ । ତାଙ୍କ ଅଫିସରୁ ଫେରିବାବେଳେ ମୁଁ ମନେମନେ ଭାବୁଥିଲି, ଉଖୀ, ସୃଷ୍ଟିର କେବଳ ଗୋଟାଏ ନାଟକ ନୁହେଁ । ଏହି ନାଟକ ମାଧ୍ୟମରେ କେବଳ ନାଟକର ଦୁହେଁ, ସମ୍ବଲପୁରୀ ଭାଷାର ଏକ ଆନ୍ଦୋଳନ ହେବାକୁ ଯାଉଛି । ସକାଳୁ ସମସ୍ତକଳାକାର ସମଲେଶ୍ୱରୀ ମନ୍ଦିରଯାଇ ପାଣ୍ଡୁଲିପି ପୂଜା କରିଥିଲୁ ।

ରାଜୁଦାଙ୍କ ବନ୍ଧୁ କ୍ଷେତରାଜପୁରର ଏମ.ଏମ. ଖାରା, ବୃତ୍ତିରେ ଜଣେ କାଠ ବ୍ୟବସାୟୀ । ସେ ମଧ୍ୟ ରିହାର୍ସାଲ କ୍ରମାଗତ ଭାବରେ ଆସି ଆମକୁ ଉତ୍ସାହ ପ୍ରଦାନ କରିଥିଲେ । ରାଉରକେଲା ଯିବାପାଇଁ ସେ ମଧ୍ୟ ତାଙ୍କ ତରଫରୁ ଦୁଇଟି ଜିପ୍ ଓ ତାଙ୍କ ନିଜ କାର୍ ଯୋଗାଇ ଦେଇ ନିଜେ ମଧ୍ୟ ଦଳସହ ଯିବାର ପ୍ରତିଶ୍ରୁତି ଦେଲେ । ପାଞ୍ଚୋଟି ଜିପ୍, ତିନୋଟି କାର୍ ପ୍ରସ୍ତୁତ ହୋଇଗଲା ସୃଷ୍ଟିର କଳାକାରମାନଙ୍କୁ ନେଇ ରାଉରକେଲା ଯିବାପାଇଁ । ଅନ୍ୟ ସମସ୍ୟାଟି ମୋ ଦ୍ୱାରା ହିଁ ବିଶ୍ୱାସ ମାଧ୍ୟମରେ ସମାଧାନ ହୋଇଗଲା । ରାଉରକେଲା ଯିବା ଦିନ ଆମ ଧନୁପାଲିର ସୁବୋଧ ବେହେରା, ଯାହାଙ୍କୁ ମୁଁ ଦାଦା ବୋଲି ମାନ୍ୟତା ଦେଉଥିଲି, ବିଜୟଟୀକା ନାଟକରେ ଯେ ନାୟିକାଙ୍କ ବାପା ଭୂମିକାରେ ଅଭିନୟ କରିଥିଲେ, ତାଙ୍କ ଚାରିଶ' ସାତ ଟ୍ରକଟି ଅଶୋକା ଟକିଜ୍ ପାଖରେ ଛିଡ଼ା ହୋଇଥାଏ । ମୁଁ ତାଙ୍କ ଡ୍ରାଇଭର ପାଖକୁ ଯାଇ ମୋର ପରିଚୟ ଦେଲି ଏବଂ ସୁବୋଧ ଦାଦାଙ୍କ ସହ ମୋର ସମ୍ପର୍କ ବାବଦରେ ସୂଚନା ଦେଲି ଏବଂ ରାଉରକେଲା ଯିବା ପାଇଁ କହିଲି । ଡ୍ରାଇଭର ଜଣକ ତତ୍‌କ୍ଷଣାତ୍ ପ୍ରସ୍ତୁତ ହୋଇଗଲା ଆମ ସହ ଯିବା ପାଇଁ । ତିନି ଦିନ ଆମ ସଙ୍ଗରେ ଟ୍ରକଟି ଥିଲା ସୁବୋଧ ଦାଦାଙ୍କୁ ନ ଜଣାଇ । ଚାରି ନମ୍ବର ଦିନ ସେ ଜାଣିଲେ ଯେ ମୁଁ ଟ୍ରକ ନେଇଥିଲି, ଭଡା ବାବଦରେ ଟଙ୍କାଟିଏ ବି ନେଇ ନଥିଲେ । ଯେଉଁଦିନ ନାଟକ, ସେହି ଦିନ ପ୍ରାୟ ଦଶଟା ବେଳକୁ ଯାତ୍ରା

ଆରମ୍ଭ ହେଲା ରାଉରକେଲାକୁ, ତିନୋଟି କାର, ପାଞ୍ଚୋଟି ଜିପ୍ ଏବଂ ସବାଶେଷରେ ମଞ୍ଚସଜ୍ଜା ପାଇଁ ସାମଗ୍ରୀରେ ଭର୍ତ୍ତି ରଙ୍ଗମହଲର କାରିଗର ଓ ମାଲିକ ଉଦୟବାବୁଙ୍କୁ କୋଳରେ ଧରିଥିବା ଚାରିଶ ସାତ ଟ୍ରକ। ନାଟକ ପାଇଁ ଥିଲା, ଏହା ସୃଷ୍ଟିର ଏକ ବିଚିତ୍ର କାର୍ଣ୍ଣିଭାଲ୍!!!

ଆମ ସହ ନିରଞ୍ଜନ ନନ୍ଦ, ରଘୁନାଥ କର, ସୁରୁବାବୁ ମେହେର, ନାଟ୍ୟକାର ବିନୋଦ ପଶାୟତ, ନିଜେ ଧର୍ମନାରାୟଣବାବୁ ଓ ତାଙ୍କ ସ୍ତ୍ରୀ ଆଦି ଶୁଭେଚ୍ଛୁ ମଧ୍ୟ ଉତ୍ସାହ ପ୍ରଦାନ ପାଇଁ ଯାଇଥିଲେ। ପରେ ଶୁଣିଲି, ନାଟକ ହେଲା ଦିନ, ସମ୍ବଲପୁରର ବହୁ ନାଟ୍ୟପ୍ରେମୀ ଖାସ୍ ଉଖୀ ନାଟକ ଦେଖିବା ପାଇଁ ଯାଇଥିଲେ। ଏହା କେବଳ ସୃଷ୍ଟିର ନାଟକ ନଥିଲା, ଥିଲା ସମ୍ବଲପୁରର, ସମ୍ବଲପୁରୀ ଭାଷାର ସମ୍ମାନର ପ୍ରଶ୍ନ। ତେଣୁ କୌଣସି କାର୍ଯ୍ୟରେ କାମଚଳା ଚିନ୍ତା ମନରେ ପ୍ରବେଶ କରୁନଥିଲା। ରାତିଟା ପାହିବା ପରେ ମଞ୍ଚ ସାମଗ୍ରୀ ସହ ସିଭିକ୍ ସେଣ୍ଟରକୁ ପ୍ରବେଶ କଲୁ ମାଁ ସମଲେଶ୍ୱରୀଙ୍କୁ ସ୍ମରଣକରି। ମୁଁ ନିଜେ ନାଟକର ନାୟକ, ସୃଷ୍ଟିର ସମ୍ପାଦକ, ନାଟକର ପ୍ରଚ୍ଛଦ ସଂଗୀତ ନିର୍ଦ୍ଦେଶକ। ଏତେଗୁଡ଼ିଏ ଦାୟିତ୍ୱ ଥିବା ସତ୍ତ୍ୱେ ସବୁକାର୍ଯ୍ୟକୁ ଦମ୍ଭ ଓ ଧୈର୍ଯ୍ୟ ସହକାରେ କରିବା କଥା ଆଜି ମନେ ପଡିଗଲେ, ନିଜକୁ ନିଜେ ଆଶ୍ଚର୍ଯ୍ୟ ଲାଗୁଛି, କେମିତି କରିପାରୁଥିଲି ଏଭଳି ବହୁମୁଖୀ ଯୋଜନା, ଶକ୍ତି ଆସୁଥିଲା କେଉଁଠୁ!! ସମ୍ପୂର୍ଣ୍ଣ ଭାବରେ ଭୁଲିଯାଇଥିଲି ଯେ ମୁଁ ଏକ କଲେଜ୍‌ର ଅଧ୍ୟାପକ, ବାହା ହେବାର ବର୍ଷେ ବି ହୋଇନି, ଏତେ ବଡ଼ ଯୋଜନାର ସୂତ୍ରଧର ଭାବରେ ଖଟି ଚାଲିଛି ଯେ ଚାଲିଛି ଯେ ଚାଲିଛି!!!



ସମସ୍ତେ ବେଶଭୂଷାରେ ପ୍ରସ୍ତୁତ, ବିଚାରକମାନଙ୍କ ଘଣ୍ଟିକୁ ପ୍ରତୀକ୍ଷା, ଠିକ୍ ସାତଟାରେ ପରଦା ଖୋଲିବ, ଆଲୋକ ପଡ଼ିବ ମଞ୍ଚରେ, ଆଲୋକ ଆସିଲା କ୍ଷଣି ମୋ'ଉପରେ ପ୍ରଥମେ ସ୍ପଟ ପଡିବ। ମୁଁ ମଞ୍ଚରେ ପ୍ରସ୍ତୁତ କାନ୍ଧରେ ମାନ୍ଦଲ ଝୁଲାଇ, ରିହାର୍ସାଲ ଖୁବ୍ ଭଲ ହୋଇଥିବାରୁ ନିର୍ଭୟ ଥିଲି ମୁଁ। ଖାଲି ପରଦା ଖୋଲିବାକୁ ଅପେକ୍ଷା କରିଥିଲି। ବିଚାରକ ଥାଆନ୍ତି ନାଟ୍ୟକାର ରାମଚନ୍ଦ୍ର ମିଶ୍ର, ନାଟ୍ୟକାର ପ୍ରାଣବନ୍ଧୁ କର ଏବଂ ବିଶିଷ୍ଟ ଚଳଚ୍ଚିତ୍ର ଖଳନାୟକ ଦୁଃଖିରାମ ସ୍ୱାଇଁ। ଏକାଦଶ ଲୋକନାଟକ ମହୋତ୍ସବର ପ୍ରଥମ ରାତିର ନାଟକ, ଉଖୀ। ଘଣ୍ଟି ବାଜିଲା, ପରଦା ଖୋଲିଲା, ନାଟକ ଆରମ୍ଭ ହେଲା ଭରପୁର ପ୍ରେକ୍ଷାଳୟରେ। ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ନାଟକର ଗତି ସ୍ୱାଭାବିକ ରହିଲା, ସବୁ କଳାକାର ନିଜନିଜ କ୍ଷେତ୍ରରେ ଅଭିନୟର ଶ୍ରେଷ୍ଠତ୍ୱ ପ୍ରଦର୍ଶନ କଲେ, ପ୍ଲାବନୀ, ଉତ୍ତମ, ଚିତ୍ରସେନ, ବାରୁଦା ଚମତ୍କାର ଅଭିନୟକରି ଦର୍ଶକମାନଙ୍କୁ

ବାନ୍ଧିରଖିଲେ । ସମ୍ବଲପୁରୀ ନାଟକ ହୋଇଥିବା ଯୋଗୁଁ କୌଣସି ଦର୍ଶକଙ୍କ କିଛି ଅବୁଝା ହେଉଥିଲା ବୋଲି ଜଣାପଡିଲା ନାହିଁ । ପ୍ରତ୍ୟେକ ସଂଳାପକୁ ସେମାନେ ମନଭରି ଉପଭୋଗ କରୁଥିଲେ । ସ୍ଥାନେସ୍ଥାନେ ବିପୁଳ କରତାଳିରେ ପ୍ରେକ୍ଷାଳୟ ଗର୍ଜି ଉଠୁଥିଲା । ନାଟକ ଅଧା ସରିଲା ବେଳକୁ ମୁଁ ଜାଣିପାରୁଥାଏ, ଉଖୀ ଖୁବ୍ ସଫଳ ହେବାକୁ ଯାଉଛି । ବାକି ଅଧାରେ ମୋର ଗୁରୁତ୍ୱପୂର୍ଣ୍ଣ ଦୃଶ୍ୟ ଥିଲା ନାଟକର ପରିଣତି ପର୍ଯ୍ୟନ୍ତ । ନିଜକୁ ମାନସିକ ସ୍ତରରେ ପୁଣି ଥରେ ପ୍ରସ୍ତୁତ କରିନେଲି । ବିଗତ ନାଟକଗୁଡ଼ିକର ବିଫଳତା ଆଉ ଦୋହରିବ ନାହିଁ, ଦୋହରାଇବା ପାଇଁ ଦିଆଯିବ ନାହିଁ । ଉତ୍ତମ, ପ୍ଲାବିନୀ, କିଶୋର ଦାସ, ରଣଜିତ ଆଦି ଅଭିନେତାମାନଙ୍କ ସହ ମୋର ସଂଳାପ ଆଦାନପ୍ରଦାନ ଥିଲା । ଆମ୍ଭମାନଙ୍କର ସହଯୋଗ ମନୋବୃତ୍ତି ଓ ତାଳମେଳ ନାଟକକୁ ଶେଷ ପର୍ଯ୍ୟନ୍ତ ଟାଣି ନେଇଗଲା । ଯଥା ସମୟରେ ଅର୍ଥାତ୍ ଦୁଇ ଘଣ୍ଟାରୁ ଦୁଇ ଘଣ୍ଟା ପନ୍ଦର ମିନିଟ ଭିତରେ ନାଟକର ପରିସମାପ୍ତି ଘଟିଲା ।

ଯେମିତି ନାଟକ ସରିଛି, କଲ୍‌ଚରାଲ୍ ଏକାଡେମୀର ସଦସ୍ୟମାନେ ଆମ୍ଭମାନଙ୍କୁ ଘେରିଯାଇ ଭୁରିଭୁରି ପ୍ରଶଂସା କଲେ । ରାଉରକେଲାର ଅଣସମ୍ବଲପୁରୀ ଦର୍ଶକଙ୍କଠାରୁ ପଶ୍ଚିମ ଓଡ଼ିଶାର ଦର୍ଶକ ଯାଏଁ ସମସ୍ତେ ଆମ ପାଖକୁ ଆସି ନାଟକର ସଫଳତା ପାଇଁ ଶୁଭେଚ୍ଛା ଜଣାଇଲେ, ସମ୍ବଲପୁରରୁ ନାଟକ ଦେଖିଯାଇଥିବା କିଛି ଯୁବକବନ୍ଧୁ ମଧ୍ୟ ଖୁସିରେ ଆମ ସହ ଦେଖାକରି ଅଭିନନ୍ଦନ ଜଣାଇ ଫେରିଗଲେ । ଏହି ମହୋତ୍ସବକୁ ସମ୍ବଲପୁରରୁ ରଣଜିତ ପଟ୍ଟନାୟକଙ୍କ ନେତୃତ୍ୱରେ ଟିନି ନାଟ୍ୟସଂସ୍ଥା ତରଫରୁ ବଧିର ଈଶ୍ୱର ଏବଂ ବରଗଡର ସୌଖୀନ କଳାକାର ସଂଘ ତରଫରୁ ପ୍ରମୋଦ ତ୍ରିପାଠୀଙ୍କ ରଚିତ ଗୋଟିଏ ବୁଲାକୁକୁରର ଜନ୍ମ ବୃତ୍ତାନ୍ତ ନାଟକ ଅଭିନୀତ କରିବା ପାଇଁ ମନୋନୀତ ହୋଇଥାଏ । ବଧିର ଈଶ୍ୱରର ରଚୟିତା ଓ ନିର୍ଦ୍ଦେଶକ ନିଜେ ରଣଜୀତ ପଟ୍ଟନାୟକ, ସେତେବେଳେ ଲରମ୍ଭା କଲେଜରେ କାର୍ଯ୍ୟରତ ଅଧ୍ୟାପକ ନରେନ୍ଦ୍ର ମିଶ୍ର, ଆଇନ୍ ମହାବିଦ୍ୟାଳୟର ଛାତ୍ର ଅଶୋକ ଦାସ, ନିରଞ୍ଜନ ନନ୍ଦଙ୍କ ଝିଅ ମିତୁ ସହ ନିଜେ ରଣଜୀତ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅଭିନୟ କରୁଥିଲେ । ସେ ମଧ୍ୟ ତାଙ୍କ ଦଳ ସହ ରାଉରକେଲା ଯାଇ ସଫଳତାର ସହ ନାଟକଟିକୁ ମଞ୍ଚସ୍ଥ କଲେ । ତାପରେ ବରଗଡର ସୌଖୀନ କଳାକାର ସଂଘ ହରିହର ମିଶ୍ରଙ୍କ ନିର୍ଦ୍ଦେଶନାରେ ବୁଲା କୁକୁରର ଜନ୍ମ ବୃତ୍ତାନ୍ତ ନାଟକଟି ଚମତ୍କାର ଭାବରେ ଅଭିନୀତ କଲେ । ସୌଖୀନର ନାଟକରେ ବିଭୁତି ଭୂଷଣ ପାଢ଼ୀ, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ମନୋରଞ୍ଜନ ସାହୁ, ପୂର୍ଣ୍ଣଚନ୍ଦ୍ର ଦାସ, ମୀନା ହାଇଦାର ଭଳି ଦକ୍ଷ ଶିଳ୍ପୀମାନେ ଅଭିନୟ କରିଥିଲେ । ବୁଲା କୁକୁରର ଜନ୍ମ ବୃତ୍ତାନ୍ତ ନାଟକ

ପରିବେଷଣ ପର ଦିନ ଆମ ନିକଟରେ ଖବର ଆସି ପହଞ୍ଚିଲା ଯେ ବିଭୁତି ପାଢ଼ୀଙ୍କ ମାରାତ୍ମକ ଅଭିନୟରେ ରାଉରକେଲା ସିଭିକ୍ ସେଣ୍ଟରର କାନ୍ଥ ବାଡ଼, ଫାଟି ଫାଟି ଯାଇଛି । ଏଭଳି ଖବର ପାଇଲା ପରେ ଆମେ ନିଜେନିଜେ ଆଳାପ ଆଲୋଚନା କରୁଥିଲୁ ଯେ କେଜାଣି, ଆଉ ପୁରସ୍କାର ପାଇବାର ସମ୍ଭାବନା ନାହିଁ । ମୁଁ କିନ୍ତୁ ଆତ୍ମବିଶ୍ୱାସର ସହ କହିପାରୁଥିଲି, ଆମ ହାତ ଖାଲି ହେବାର ନାହିଁ । ମୋର ଦୃଷ୍ଟିକୋଣ ଥିଲା ଅଲଗା, ମୁଁ ମୋ ସଫଳତା ଦର୍ଶକମାନଙ୍କଠାରୁ ନାଟକ ମଞ୍ଚସ୍ଥ ହେବା ପରେପରେ ପାଇଯାଇଥିଲି । ସମ୍ବଲପୁରରେ କେବେ ଓ କିଭଳି ଉଖୀକୁ ମଞ୍ଚସ୍ଥ କରାଯିବ, ମୁଁ ସେ ଚିନ୍ତାରେ ନିଜକୁ ହଜାଇ ଦେଇଥିଲି । ପୁରସ୍କାର ପାଉ ବା ନପାଉ, ଉଖୀ ସମ୍ବଲପୁରରେ ନିଶ୍ଚିତ ଭାବରେ ମଞ୍ଚାୟନ ହେବ ।

ଲୋକନାଟକ ମହୋତ୍ସବର ଶେଷ ରାତିରେ ପୁରସ୍କାର ଘୋଷିତ ହେଲା । ଆମ ନାଟକ ତିନୋଟି ପୁରସ୍କାର ରେ ମଣ୍ଡିତ ହେଲା । ଟିନି ନାଟ୍ୟ ସଂସ୍ଥା ତିନୋଟି ଏବଂ ସୌଖୀନ ପାଞ୍ଚୋଟି ପୁରସ୍କାର ପାଇଲା । ସୃଷ୍ଟି ପାଇଥିବା ପୁରସ୍କାରରୁ ପ୍ଲାବିନୀ ଦ୍ୱିତୀୟ ଶେଷ୍ଠ ଅଭିନେତ୍ରୀ, ମୁଁ ତୃତୀୟ ଶ୍ରେଷ୍ଠ ଅଭିନେତା ଏବଂ ଶ୍ରେଷ୍ଠ ସଂଗୀତ ନିର୍ଦ୍ଦେଶକ ଭାବରେ ପୁରସ୍କୃତ ହୋଇଥିଲି । ସୌଖିନ ଶ୍ରେଷ୍ଠ ନିର୍ଦ୍ଦେଶକ, ବିଭୁତି ପାଢ଼ୀ ଶ୍ରେଷ୍ଠ ଅଭିନେତା, ଶ୍ରେଷ୍ଠ ପ୍ରଯୋଜନା ଭଳି ପାଞ୍ଚୋଟି ଶ୍ରେଷ୍ଠ ପୁରସ୍କାର ପାଇଲା । ରଣଜିତ ଦ୍ୱିତୀୟ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କାର ହେବା ସହ ଆହୁରି ଦୁଇଟି ପୁରସ୍କାର ପାଇଲେ ।

ଉଖୀ ରଚନା ଆରମ୍ଭ ବେଳରୁ ମୁଁ ବେଲାର୍ ସିଂ ବେରିହା ଚରିତ୍ରକୁ ଶ୍ରେଷ୍ଠ ଅଭିନେତା ପୁରସ୍କାର ପାଇଁ ଗଢ଼ିବା ଯୋଜନା କରିଥିଲି, ଯେଉଁ ଚରତ୍ରିଟିରେ ଉତ୍ତମ ବେହେରା ଅଭିନୟ କରିଥିଲେ । ମୋ ଚରିତ୍ର, ମାନେ ନାଟକର ସତିଆ ଯେ ଶ୍ରେଷ୍ଠ ଅଭିନେତା ପର୍ଯ୍ୟାୟକୁ ଆସିଯିବ, ମୁଁ କାଣିଚାଏ ବି ଚିନ୍ତା କରିନଥିଲି । କେହି ମୋତେ ଏ ବାବଦରେ ସମ୍ୟକ୍ ସୂଚନା ବି ଦେଇ ନଥିଲେ । ଏପରିକି ନିର୍ଦ୍ଦେଶକ ରାଜୁଦା ମଧ୍ୟ । ଆଗରୁ ଜାଣିଥିଲେ, ମୁ ହୁଏତ, ଆଉ କିଛି ପରିଶ୍ରମ କରି ନିଜ ଅଭିନୟସ୍ତରକୁ ଆଉ ଟିକିଏ ଉନ୍ନତ କରିପାରିଥାନ୍ତି । ସୃଷ୍ଟିର ସଂପାଦକ ଭାବରେ ମୋର ଏକ ହିଁ ଲକ୍ଷ୍ୟ ଥିଲା, ନାଟକର ମଞ୍ଚସଫଳତା, ତା ସହ ସମ୍ବଲପୁରୀ ଭାଷାର ନାଟକ ଭାବରେ ତାର ମର୍ଯ୍ୟାଦା ବୃଦ୍ଧି କରିବା । ସେ ଯାହା ହେଉ, ସମଗ୍ର ଚଉଦଗୋଟି ପୁରସ୍କାର ମଧ୍ୟରୁ କେବଳ ସମ୍ବଲପୁର ଜିଲ୍ଲାକୁ ଏଗାରଟା ପୁରସ୍କାର ଆସିବାରେ ଆମେ ଖୁସିବ୍ୟକ୍ତ କରିଥିଲୁ । ସମ୍ବଲପୁରରେ ଉଖୀକୁ ପ୍ରଦର୍ଶନ କରାଇବାର ଚିନ୍ତା ମୁଁ ସବୁ ସଦସ୍ୟଙ୍କ

ନିକଟରେ ବାଢ଼ିଲି । ବୟାଅଶୀ ମାର୍ଚ୍ଚକୁ ସମୟ ନିର୍ଘଣ୍ଟ ରଖାଗଲା । ବୟାଅଶୀ ପ୍ରଥମ ଭାଗରେ ନନ୍ଦପଡାର କିଛି ନାଟ୍ୟାଭିନେତା ସନ୍ତୋଷ ମିଶ୍ର, ମୋହିନୀ ମିଶ୍ର ଓ ଦେବେଶ୍ୱର ମିଶ୍ର ମୋ ଘରକୁ ଆସି ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦର ନାଟକ 'ମୁଁ ସନାତନ ସନାତନ ସନାତନ'କୁ ନିର୍ଦ୍ଦେଶନା ଦେବା ପାଇଁ ଅନୁରୋଧ କଲେ । ଉକ୍ତ ନାଟକଟି ଦେବଗଡ ନାଟ୍ୟକଳା ସଂସଦ ଆୟୋଜିତ ରାଜ୍ୟସ୍ତରୀୟ ପ୍ରତିଯୋଗିତା ପାଇଁ ମନୋନୀତ ହୋଇଥିଲା । ମୁଁ ଏଥିପାଇଁ ସେମାନଙ୍କ ନିକଟରେ ଏକ ସର୍ତ୍ତ ରଖିଲି । ମୁଁ ନିର୍ଦ୍ଦେଶନା ଦେବି, କିନ୍ତୁ ନିର୍ଦ୍ଦେଶକ ଭାବରେ ମୋ ନାମ ରହିବନାହିଁ । ଏହି ସର୍ତ୍ତ ରଖିବା ପଛରେ ବିଗତ ଦିନର ବିଫଳତା ହେତୁ ଆତ୍ମବିଶ୍ୱାସ ହରାଇଥିବା କଥା ଜଡ଼ିତଥିଲା । ସେଭଳି ହେଲା, ପ୍ରଫୁଲ୍ଲ ହୋତାଙ୍କ ନାମରେ ନାଟକଟି ରିହାର୍ସାଲ ହୋଇ ଦେବଗଡ ପାଇଁ ପ୍ରସ୍ତୁତ ହୋଇଗଲା । ଦେବେଶ୍ୱର ମିଶ୍ର ମୁଖ୍ୟ ଚରିତ୍ର ସନାତନ ଭୂମିକାରେ ଅଭିନୟ କରିଥିଲେ । ମୋ ପାଇଁ ସମସ୍ତେ ନୂତନ । ସଂଜିବ ମାଝୀ, ସନ୍ତୋଷ ମିଶ୍ର, ମୋହିନୀ ମିଶ୍ର ଆଦି କଳାକାରମାନେ ପ୍ରସନ୍ନ ସାହୁଙ୍କ ରଚିତ ଏହି ଓଡ଼ିଆ ନାଟକରେ ଅଭିନୟ କଲେ । ସମ୍ବଲପୁର ବାହାରେ ମୋ ନିର୍ଦ୍ଦେଶନାରେ ନାଟକ ହେବା ଏଇ ଥିଲା ପ୍ରଥମ ପଦକ୍ଷେପ । ନାରୀ ଚରିତ୍ର ବିହୀନ ପ୍ରସନ୍ନ ସାହୁଙ୍କର ମଧ୍ୟ ଏହି ନାଟକ ଥିଲା ସର୍ବପ୍ରଥମ ପ୍ରଚେଷ୍ଟା । ସବୁ ଦିନେ କଲେଜରୁ ଆସି ସନ୍ଧ୍ୟା ହେଲେ ମୁଁ ନନ୍ଦପଡାରେ ହାଜର ହୋଇଯାଏ । ରିହାର୍ସାଲ ସାରି ନ ଦଶଟା ବେଳେ ଘରକୁ ଆସେ । ଦେବଗଡରେ ନାଟକଟି ସଫଳତାର ସହ ମଞ୍ଚସ୍ଥ ହେଲା ଓ ପାଞ୍ଚୋଟି ଶ୍ରେଷ୍ଠ ପୁରସ୍କାରରେ ମଣ୍ଡିତ ହେଲା । ଶ୍ରେଷ୍ଠ ନିର୍ଦ୍ଦେଶକ, ଶ୍ରେଷ୍ଠ ଅଭିନେତା ଭାବରେ ଦେବେଶ୍ୱର ମିଶ୍ର, ଶ୍ରେଷ୍ଠ ପ୍ରଯୋଜିତ ନାଟକ, ଶ୍ରେଷ୍ଠ ପାଣ୍ଡୁଲିପି ଭାବରେ ପ୍ରସନ୍ନ ସାହୁ ପୁରସ୍କୃତ ହେଲେ । 'ସମୟ' ନାଟକ ପରେ ନିର୍ଦ୍ଦେଶନା କ୍ଷେତ୍ରରେ ଆତ୍ମବିଶ୍ୱାସ ହରାଇଥିବା ଏଇ ଲେଖକ ଅନ୍ୟ ନାମରେ ପୁରସ୍କୃତ ହେବା ପରେ ବି ପୁଣି ଭିଡିମୋଡି ହୋଇ ନିଜ ଗୋଡରେ ନିଜେ ଠିଆହେଲା । ଏହି ନାଟକରୁ ନନ୍ଦପଡାର ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦ ସହିତ ସମ୍ପର୍କ ନଅ ବର୍ଷ ପର୍ଯ୍ୟନ୍ତ ଲାଗି ରହି ସୁଦୃଢ଼ ହୋଇଯାଇଥିଲା । ବୟାଅଶୀରୁ ନବେ ଦଶକର ପ୍ରଥମ ଭାଗ ଯାଏଁ ନନ୍ଦପଡା ମୋର ସନ୍ଧ୍ୟା ସମୟର ସାଥୀ ପାଲଟିଗଲା । ରବି ଗୁଡ଼ିଆର ଚାହା, ବୁଡୁର ସିଗାରେଟ ଆଉ ସଂଜୀବ, ସନ୍ତୋଷ, ଦେବେଶ, ମୋହିନୀ, ପିଲୁ, ଚିତ୍ରସେନ ଆଦି କଳାକାରମାନଙ୍କ ସହ ବନ୍ଧୁତା କ୍ରମଶଃ ଦୃଢ଼ରୁ ଦୃଢ଼ତର ହେବାରେ ଲାଗିଲା ।

ସମୟ ଆସିଗଲା ପୁନଶ୍ଚ ଉଖୀ ନାଟକକୁ ମଞ୍ଚାୟନ କରିବାର ନନ୍ଦପଡାର ନାଟକ ପରେ ଶୁଭ ଦିନ ଦେଖି ଭୋଜିଭାତ ସହ ରିହାର୍ସାଲ ଆରମ୍ଭ ହେଲା ନୂଆଁ ଉଦ୍ଦୀପନାର ସହ । ଟାଉନ୍ ହାଇସ୍କୁଲର ସେଇ ପ୍ରକୋଷ୍ଠ ପୁଣି ନାଚଗୀତରେ ଉଚ୍ଛୁଳି ପଡିଲା ଆଗ ଭଳି ଏଥର ମଧ୍ୟ ରିହାର୍ସାଲକୁ ବହୁ ପୃଷ୍ଠପୋଷକମାନଙ୍କ ଆଗମନ ହେଲା । ଉତ୍ତମ ବେହେରାଙ୍କ ମାଧ୍ୟମରେ ସମ୍ବଲପୁରର ଆୟକର କମିଶନର ଯୋଗେଶ ଚନ୍ଦ୍ର ମିଶ୍ର ଆମ ସହ ପରିଚିତ ହେଲେ ଏବଂ ପ୍ରାୟ ସବୁ ସନ୍ଧ୍ୟାରେ ରିହାର୍ସାଲକୁ ଆସି ଆମକୁ ଉତ୍ସାହିତ କରିଥିଲେ । ନାଟକ ପାଇଁ ବଡ ମଞ୍ଚର ଆବଶ୍ୟକତା ପଡିଲା, ତେଣୁ ଟାଉନହଲ ପଡିଆର ଗଙ୍ଗାଧର ମଣ୍ଡପରେ ମଞ୍ଚାୟନ କରିବାର ନିଷ୍ପତ୍ତି ନେଲୁ । ଟିକଟ କ୍ରୟକରି ନାଟକ ଦେଖିବା ପାଇଁ ପଡିବ । ସେମିତି ପ୍ରେକ୍ଷାଳୟଟିଏ ଗଢ଼ିବା ପାଇଁ ଝାରସୁଗୁଡ଼ାର ଏକ ଟେଣ୍ଟ ହାଉସ୍ ସହ କଥାବାର୍ତ୍ତା କରି ଛ' ଶହ ଚୌକି ପଡିବା ଭଳି ପ୍ରେକ୍ଷାଳୟ ତିଆରି କରିବାର ସମସ୍ତ ଦାୟୀତ୍ୱ ତା' ହାତରେ ଅର୍ପଣ କଲୁ । ପାଞ୍ଚ, ଦଶ, ପଚାଶ ଓ ଶହେ, ଏଭଳି ଚାରି ଶ୍ରେଣୀର ଟିକଟ ଛପାଯାଇ ବିକ୍ରି କରିବା ମଧ୍ୟ ଆରମ୍ଭ କରିଦେଲୁ । ଧୁମଧାମ୍ ରିହାର୍ସାଲ ଚାଲିଲା. ସବୁକଳାକାର ନିୟମିତ ଆସି ନିଜନିଜ ଅଭିନୟ ଅଭ୍ୟାସ କରୁଥିଲେ । ସମଗ୍ର ସହରରେ ଚର୍ଚ୍ଚା ଆରମ୍ଭ ହୋଇଗଲା, ସମ୍ବଲପୁରୀ ନାଟକ 'ଉଖୀ' ଗଙ୍ଗାଧର ମଣ୍ଡପରେ ଦୁଇ ରାତି ଧରି ମଞ୍ଚସ୍ଥ ହେବ । ବିଜ୍ଞାପନ ପାଇଁ ବୈଦ୍ୟନାଥ ଛକର କଲିମ୍ ରାଉତଙ୍କ ଅଙ୍କିତ ଲୁଗାର ବଡ଼ ହୋର୍ଡିଂ ଲକ୍ଷ୍ମୀ ଟକିଜ୍ ଛକରେ ବନ୍ଧା ହେଲା । ଲକ୍ଷ୍ମୀ ଟକିଜ ଛକରେ ହୋର୍ଡିଂ ଲାଗିବା ପରମ୍ପରା ସେବେଠାରୁ ଆରମ୍ଭ ହେଲା । ପୋଷ୍ଟର ଛପା ହେଲା, ସହରର କାନ୍ଥବାଡ଼ରେ ମରାଗଲା । ଦୈନନ୍ଦିନ ଖବର କାଗଜର ଭିତରେ ଲିଫ୍‌ଲେଟ୍ ବଣ୍ଟାଗଲା, ଟକିଜ୍‌ମାନଙ୍କୁ ସ୍ଲାଇଡ ସହକାରେ ବିଜ୍ଞାପନ ଦେଖାଗଲା । ଗୋଟିଏ ନାଟକ ପାଇଁ ଏତେ ବ୍ୟବସ୍ଥା ଆଗରୁ କେବେ ଦେଖାଯାଇ ନଥିଲା । ମୋର ନିଜସ୍ୱ ଭାବନା ଥିଲା, ଆମେ ସମ୍ବଲପୁରୀ ନାଟକ କରୁଛୁ, ଯେତେ ଖର୍ଚ୍ଚ ହେଲେ ହେଉ, ମାନରେ ସାଲିସ୍ କରିବା ନାହିଁ । ଆମ ମାଟିର ଉଜ୍ଜତର ପ୍ରଶ୍ନ, ଆମ ଭାଷାର ବିକାଶର ପ୍ରଶ୍ନ । ସମ୍ବଲପୁରୀ ସାହିତ୍ୟ ଓ ସଂସ୍କୃତିର ପ୍ରଶ୍ନ । ତେଣୁ, ଆୟୋଜନରେ ଆମର ଖୁବ୍ ଆଡମ୍ବର ଥିଲା । ଚଳଚ୍ଚିତ୍ର ଅଭିନେତା ପୃଥ୍ୱୀରାଜ ନାୟକ କୌଣସି କାମରେ ସମ୍ବଲପୁର ଆସିଥିଲେ । ଗଙ୍ଗାଧର ମଣ୍ଡପକୁ କଣ ଗୋଟାଏ ହେଉଛି ବୋଲି ଭିତରକୁ ଆସିଲାବେଳକୁ ନାଟକପାଇଁ ଆମ ପ୍ରସ୍ତୁତି ଦେଖି ବିସ୍ମିତ ହୋଇଯାଇଥିଲେ ।

ଆମ ନିର୍ଦ୍ଦେଶକ ରାଜୁଦା, ସମ୍ପୂର୍ଣ୍ଣ ଭାବରେ ନାଟକ ସହ ମଜ୍ଜି ଯାଇଥିଲେ ।

ପ୍ରତ୍ୟେକ ରାତି ରିହାର୍ସାଲ ଶେଷ ହେବା ପରେ ଗପ କରିବା ବାହାନାରେ ଆମ ଭିତରୁ କେଇଜଣଙ୍କୁ ଗୋଲବଜାର ଛକକୁ ନେଇ, ରାବଡ଼ି, ରସଗୋଲା, ଗୋରସ ଆଦି ନିଜପକେଟରୁ ଖର୍ଚ୍ଚକରି ଆପ୍ୟାୟିତ କରୁଥିଲେ । ସେ ସମ୍ମେଳନ ଯଦିଚ ଆମୋଦଦାୟକ ଥିଲା, ତଥାପି ବାରୁଦା ଓ ମୋ ଭଳି ଅଧ୍ୟାପକମାନେ ରାତି ବାରଟା, ଗୋଟାଏ ପର୍ଯ୍ୟନ୍ତ ରହିଯାଉଥିବାରୁ କିଛି ମାନସିକ କଷ୍ଟ ପାଉଥିଲୁ, ଯାହା ରାଜୁଦାଙ୍କ ପ୍ରତି ସମ୍ମାନବୋଧ ଥିବା ହେତୁ କହି ପାରୁନଥିଲୁ । ବ୍ୟକ୍ତିଗତ ଭାବରେ ମୋ କଥାଟା ଥିଲା ଭିନ୍ନ ଧରଣର, ଏକେ ତ ନବବିବାହିତ, ଘରେ ତାଙ୍କୁ ଏକାକରି ରାତି ଗୋଟାଏ ଦୁଇଟା ପର୍ଯ୍ୟନ୍ତ ରାତି ଅଧିଆ ବାହାରେ କଟାଇବା ମୋ ପାଇଁ, ତା ସହ ତାଙ୍କ ପାଇଁ ମଧ୍ୟ ଅସହ୍ୟ ଥିଲା । ତେବେ ମୁଁ ତ ନିଜେ ସଂମ୍ପାଦକ, ମୁଁ ମୋ ଦୁଃଖ ଜଣାଇବି କାହାକୁ ! ! କଲେଜ୍ କଥା ସମ୍ପୂର୍ଣ୍ଣ ପାଶୋରି ଦେଇଥିଲି ।

ନାଟକ ଦୁଇ ରାତି ପାଇଁ ହେବାର ଥାଏ । ଦୁଇ ଦିନର ଟିକଟ ପ୍ରାୟ ସତୁରୀ ଭାଗ ବିକ୍ରି ସରିଯାଇଥାଏ । ମାର୍ଚ୍ଚ ମାସ ପ୍ରଥମ ସପ୍ତାହରେ ନାଟକ ହେବ । ଷ୍ଟେଜ ରିହାର୍ସାଲ ମଧ୍ୟ ସଫଳତାର ସହ ସମ୍ପନ୍ନ ହୋଇଗଲା । ମଞ୍ଚ ସଜ୍ଜା କରିଥାନ୍ତି ବନ୍ଧୁ ଅଶୋକ ମିଶ୍ର । ମଞ୍ଚଶିଳ୍ପ ଉପରେ ଥିବା ଜ୍ଞାନକୁ ସମ୍ପୂର୍ଣ୍ଣ ବିନିଯୋଗ କରି ଚିତ୍ରସେନଙ୍କ ସହିତ ମିଶି ସୁନ୍ଦର ଭାବରେ ସଜାଇଥିଲେ । ଆମ ମେକ୍‌ଅପ୍ ପଇଁ ବରିଷ୍ଠ କଳାକାର ବାଲୁଙ୍କେଶ୍ୱର ବରାଇ ଆସିଥିଲେ । ଶେଷ ଦୃଶ୍ୟରେ ମୋର ବ୍ୟବହାର ପାଇଁ ମୁଦିପଡାର ବିଜୟ ପ୍ରଧାନ ଗୋଟାଏ ବଡ଼ ଟାଙ୍ଗୀ ମୋତେ ଦେଇଥିଲେ । ଯେ ଆମକୁ ଚାନ୍ଦାଭେଦାରେ ମଧ୍ୟ ସହଯୋଗ କରିଥିଲେ । ମୁଁ ତାକୁ ବଡ଼ ଯତ୍ନ ସହକାରେ କଳାପରିଷଦର ମେକଅପ୍ ରୁମ୍‌ରେ ରଖୁଥିଲି । ଠିକ୍ ସମୟରେ ଆଣି ବ୍ୟବହାର କରିବା ପାଇଁ । ନାଟକ ଆରମ୍ଭ ହେବାକୁ ଆଉ ପ୍ରାୟ ଅଧଘଣ୍ଟା ଥାଏ, କୁଆଡୁ କାଳବୈଶାଖୀ ଝଡ଼ ବର୍ଷା ସହ ଆସି ଆମ ସମସ୍ତଙ୍କ ଉତ୍ସାହକୁ ମାଟିରେ ମିଶାଇଦେଲା । ଘଁ ଘଁ କରି ଗର୍ଜନ କରି ପବନ ବହିବାର ଆରମ୍ଭ ହେଲା, ତା ସହ ବିଜୁଳୀ ସହ ବର୍ଷା । ଯେ ଯାହାର ବ୍ୟବସ୍ଥାରେ ନିଜକୁ ସୁରକ୍ଷିତ କରି ରହିଲେ । ମଞ୍ଚସଜ୍ଜା ଭୁଷୁଡ଼ି ପଡ଼ିଲା । ଦୂରଦୂରାନ୍ତରୁ ଆସିଥିବା ନାଟ୍ୟପ୍ରେମୀ ଦର୍ଶକ ପରଦିନ ଆସିବାର ଚିନ୍ତା କରି ଫେରିଗଲେ । ମୁଁ ସେମିତି ବେଶଭୂଷାରେ ମଞ୍ଚ ପଛରେ ପଡ଼ିଥିବା ବାଲିଗଦା ଉପରେ ଲଥ୍ କରି ବସିପଡି ଭୋ ଭୋ କାନ୍ଦି ପକାଇଥିଲି ।

ମାଁ ସମଲେଶ୍ୱରୀଙ୍କ ନିକଟରେ ଅଭିଯୋଗ କରୁଥିଲି ଯେ ଆମ ଦୋଷ କଣ । ଏ ଦଶା କାହିଁକି ମାଁ ! ! ମୋର କାନ୍ଦିବା ଦେଖି ସବୁ କଳାକାରମାନେ ମୋତେ ଘେରି

ସମବେଦନା ଜ୍ଞାପନ କରୁଥିଲେ । ବାଧ ହୋଇ ସମ୍ପାଦକ ଭାବରେ ମାଇକ୍ ଯୋଗେ ଘୋଷଣା କଲି, ଆସନ୍ତାକାଲି ନାଟକ ହେବ । ହେଲେ ଆଜିରଦର୍ଶକ ପହର ଦିନ ଦେଖିବାକୁ ଆସିବେ । ଆଜି ପାଇଁ ମୁଁ କ୍ଷମା ପ୍ରାର୍ଥୀ । । ।



ବୈଶାଖୀ ଝଡି ବର୍ଷାରେ ଉଖୀ ନାଟକର ମଞ୍ଚସଜ୍ଜା ସମ୍ପୂର୍ଣ୍ଣ ଭୁଷୁଡ଼ି ପଡିଥିଲା । ପ୍ରଥମ ରାତିର ଦୃଶ୍ୟାୟନ ବନ୍ଦ ହୋଇଗଲା, ଦର୍ଶକେ ଯେ ଯାହାର ଫେରିଗଲେ, ପୂର୍ଣ୍ଣ ପ୍ରୋକ୍ଷାଳୟଟି ଦର୍ଶକମାନଙ୍କ ଉପସ୍ଥିତିରେ ଉଛୁଳି ପଡୁଥିଲା, ମାତ୍ର ଅଧଘଣ୍ଟା ଭିତରେ ଚୌକିମାନ ଶୂନ୍ୟ ହୋଇଗଲା । ସମସ୍ତେ ଚାଲିଗଲା ପରି କିଛି ନ ଘଟିଲା ପରି ପାଗ ପୁଣି ଶୁଖିଲା ହୋଇଗଲା । ଆମେ ସମସ୍ତେ ବସି ତୁରନ୍ତ ନିଷ୍ପତ୍ତି ନେଲୁ । ଆସନ୍ତାକାଲି ପାଇଁ ପ୍ରସ୍ତୁତ ହେବା ପାଇଁ ପଡିବ । ମଞ୍ଚଶିଳ୍ପୀ ଅଶୋକ ମିଶ୍ର ଏବଂ ସହଯୋଗୀ ଭାବରେ ଜଁରା ପଣ୍ଡିତ ଭୂମିକାରେ ଅଭିନୟ କରୁଥିବା ଚିତ୍ରସେନ ମିଶ୍ର ପ୍ରସ୍ତୁତ ହୋଇଗଲେ, ପୁରୁଣା ଢାଞ୍ଚା ଭାଙ୍ଗି ସମ୍ପୂର୍ଣ୍ଣ ନୂତନ ଶୈଳୀରେ ଗଛ ଓ ଘର ତିଆରି କରିବାର ଯୋଜନା ଆରମ୍ଭ କରି ଦେଲେ ଏବଂ ସେମାନଙ୍କୁ ଉତ୍ସାହିତ କରିବା ପାଇଁ ମୋ ସହିତ ବଲାଙ୍ଗିରରୁ ଆସିଥିବା ବନ୍ଧୁ ସୁଶୀଲ ମିଶ୍ର, ବାଦୁଦା, ଉତ୍ତମ, ରଣଜୀତ ଗୁରୁ, ନରେନ୍ଦୁ ଆଦି ପ୍ରେକ୍ଷାଳୟ ଭିତରେ ବସି ଗପିବା ଆରମ୍ଭ କରିଦେଲୁ । ଏକେ ତ ଦୁଇଦୁଇ ଜଣ ହାସ୍ୟରସର କଳାକାର, ସୁଶୀଲ ଓ ବାରୁଦା ମଜା ଗପମାନ କହିବାର ଆରମ୍ଭ କରିଦେଲେ, ଚୁଟ୍‌କୁଲା ପରେ ଚୁଟ୍‌କୁଲା ସାରା ରାତି ହସି ହସି ବେଦମ୍ । ରଣଜିତ ଗୁରୁ ଆଜି ନାହାନ୍ତି, ସେ ରାତି ଯେତେ ହସିଥିଲେ, ଜୀବନରେ କେବେ ଏତେ ହସି ନଥିବେ । ନିସ୍ତବ୍ଧ ରାତିରେ ଆମ ଦିଲ୍ ଖୋଲା ହସ ପରିବେଶକୁ ନାଟକୀୟ କରି ପକାଉଥିଲା । ବାରମ୍ବାର ଲକ୍ଷ୍ମୀ ଟକିଜ ପାଖରୁ ଚା ଆସୁଥିଲା, ହସର ଆସରକୁ ଖୋରାକ ଯୋଗାଉଥିଲା । ଏମିତି ଗପିଗପି କେତେବେଳେ ଯେ ମଞ୍ଚ ପ୍ରସ୍ତୁତି ଶେଷ ହୋଇଗଲା, ଆମେ ଜାଣି ପାରିଲୁ ନାହିଁ । ଅଶୋକ ଓ ଚିତ୍ରସେନଙ୍କୁ ଅଶେଷ ଧନ୍ୟବାଦ ଦେଇ ଆମେ ଆସର ଭାଙ୍ଗିଲୁ ଓ ମଞ୍ଚସଜ୍ଜା ଦେଖି ପୂର୍ବରାତିର ସମସ୍ତ ଦୁଃଖ ଓ କ୍ଷୋଭକୁ ଭୁଲିଯାଇ ନୂତନ ଉନ୍ମାଦନାରେ ନିଜକୁ ଆହୁରି ଶକ୍ତିଶାଳୀ ମନେକଲୁ ।

ସନ୍ଧ୍ୟା ଆସିଗଲା, ମଞ୍ଚରୁ ମାଇକ ଯୋଗେ ରେକର୍ଡ ଗୀତ ବାଜିବାର ଆରମ୍ଭ ହୋଇଗଲା । ଯଥେଷ୍ଟ ପୂର୍ବରୁ ସମସ୍ତ କଳାକାରମାନେ ମେକଅପ୍ ରୁମ୍‌କୁ ଚାଲି ଆସିଲେ, ବାଲୁଙ୍କେଶ୍ୱର ବାବୁ ମଧ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଆସି ତାଙ୍କ କାମ ଆରମ୍ଭ କରିଦେଲେ । ଅଗଣିତ ଦର୍ଶକମାନଙ୍କୁ ଦେଖି ମୁଁ ଉତ୍ସାହିତ ହୋଇ ପଡିଲି । ରାଜୁଦା ମଧ ଠିକ୍ ସମୟରେ



ଆସି କଳାକାରମାନଙ୍କୁ ମଞ୍ଚକୁ ଡକାଇ ମଞ୍ଚ ପୂଜା ଆରମ୍ଭ କରିଦେଲେ । ପରଦା ଉଠିବା ମାତ୍ରେ ମୁଁ ସଡିଆ ଭୂମିକାରେ ମାନ୍ଦଲ ଝୁଲାଇ ମଞ୍ଚକୁ ଯିବାର ଥିଲା । ଠିକ୍ ସେତିକି ବେଳେ ମୁଁ ଅନୁଭବ କଲି, କେହି ଜଣେ ମୋ ମାନ୍ଦଲକୁ ପଛପାଖରୁ ଟାଣି ଧରୁଛି । ପଛକୁ ଓଲଟି ଦେଖିଲି, ପ୍ରାୟ ପଚାଶରୁ ଅଧିକ ହେବେ ମୋର ଅନ୍ତରଙ୍ଗ ବନ୍ଧୁମାନେ ମୋତେ ଅଟକାଇ ରଖିଛନ୍ତି । ସେମାନଙ୍କ ଦାବୀ ଥିଲା, ଆମେ ଆଜି ଟିକଟ ପାଇଲୁ ନାହିଁ । ଏ ନାଟକ ତୃତୀୟ ରାତି ପାଇଁ ମଧ୍ୟ ମଞ୍ଚସ୍ଥ ହେଉ । ତମେ ମାଇକରେ ଘୋଷଣା କର, ନହେଲେ ଆମେ ତୁମକୁ ମଞ୍ଚ ଭିତରକୁ ଛାଡ଼ିବୁ ନାହିଁ । ମୁଁ ସ୍ଥିତିର ଗାମ୍ଭୀର୍ଯ୍ୟକୁ ଅନୁଭବ କଲି ଓ ରାଜୁଦାଙ୍କ ସହ ଆଲୋଚନା କରି ବାଧ୍ୟ ହୋଇ ତୃତୀୟ ରାତି ମଧ୍ୟ ଏ ନାଟକ ହେବ ବୋଲି ଘୋଷଣା କଲି । ପରେ ବନ୍ଧୁମାନେ ଧନ୍ୟବାଦ ଦେଇ ମଞ୍ଚ ଉପରୁ ବାହାରକୁ ଚାଲିଗଲେ । ପରେ ପରେ ନାଟକ ଆରମ୍ଭ ହେଲା । ନିର୍ବିଘ୍ନରେ ନାଟକ ଗୋଟାଏ ପରେ ଗୋଟାଏ ଦୃଶ୍ୟ ଜବରଦସ୍ତ ଅଭିନୀତ ହୋଇ ଚାଲିଲା । ଖୁବ୍ ଜମିଲା, ସବୁ କଳାକାର ନିଜନିଜ ସ୍ଥାନରେ ଜମିକରି ଅଭିନୟ କଲେ, ପୂର୍ଣ୍ଣ ପ୍ରେକ୍ଷାଳୟରେ ନାଟକ ଅଭିନୀତ ହେଲା । ପ୍ରଥମ ରାତି ପରେ ଦ୍ୱିତୀୟ ରାତି ମଧ୍ୟ ପୂର୍ଣ୍ଣ ପ୍ରେକ୍ଷାଳୟରେ ଗଲା । ସମ୍ବଲପୁରର ଦୂରଦୂରାନ୍ତରରୁ ଦର୍ଶକମାନେ ଆସି ଉଖୀ ନାଟକର ରସ ଆସ୍ୱାଦନ କଲେ । ଖବରକାଗଜରେ ଏହି ସଫଳତାର ସମ୍ବାଦକୁ ଗୁରୁତ୍ୱ ଦେଇ ପ୍ରକାଶ କଲେ । ନାଟକର ସମୀକ୍ଷା ଓ ଅଲୋଚନା ପ୍ରାୟ ଛ' ସାତ ଦିନ ଲଗାତାର ପ୍ରକାଶିତ ହେଲା ଡ. ଶ୍ରଦ୍ଧାକର ସୁପକାର ମଧ୍ୟ ଏହି ନାଟକ ଦେଖି ଏକ ସମୀକ୍ଷା ଖବରକାଗଜରେ ଲେଖିଥିଲେ । ଦ୍ୱିତୀୟ ରାତିରେ ପନ୍ଦର ଟଙ୍କିଆ ଟିକଟ ପଚାଶ ଟଙ୍କାରେ ବ୍ଲେକ ହେବାର ଘଟଣା ମଧ୍ୟ ଆମକୁ ଚକିତ କଲା । ବାଗୁଦା ଅଖେ ଭଲି ଜନୈକ କିନ୍ନର ପାନଦୋକାନୀର ଚରିତ୍ରକୁ ଏଭଳି ଶୈଳୀରେ ପ୍ରଦର୍ଶନ କଲେ ଯାହା ପରଦିନ ସାରା ସହରରେ ପ୍ରଚାରିତ ହୋଇଗଲା । ଦ୍ୱିତୀୟ ରାତିରେ ଏଥିପାଇଁ ସଂଖ୍ୟାଧିକ କିନ୍ନର ଟିକଟ କାଟି ଆମର୍ ନାନୀ ଅର୍ଥାତ୍ ବାଗୁଦାଙ୍କ କିନ୍ନରୀ ଅଭିନୟ ଦେଖିବାକୁ ଆସିଥିଲେ ।

ପ୍ରଥମ ରାତି କାଳବୈଶାଖୀ ଯୋଗୁଁ ନାଟକ ନହୋଇ ପାରିବାର ସୁଯୋଗଦେଖି ମୋର ମଞ୍ଚସାମଗ୍ରୀ ସେଇ ଟାଙ୍ଗୀଟା ଚୋରି ହୋଇଯାଇଥିଲା । ସେଇ ରାତି ଏଭଳି ଘଟଣା ଯୋଗୁଁ ମୁଁ ବ୍ୟତିବ୍ୟସ୍ତ ହୋଇପଡିଥିଲି । ଟାଙ୍ଗୀର ମାଲିକ ବିଜୟ ପ୍ରଧାନ ତନାଘନା କରି ଟାଙ୍ଗୀ ଚୋରାଇଥିବା ଚୋରକୁ ଧରି ଟାଙ୍ଗୀକୁ ତାଠାରୁ ମୁକୁଳାଇଲେ । ଚୋର ଆଉ କେହି ନୁହେଁ, ଝାରସୁଗୁଡ଼ାରୁ ଆସିଥିବା ଟେଣ୍ଟ ବାଲାର ଏକ ବଙ୍ଗାଳୀ କାରିଗର ତାକୁ ଲୁଚାଇ ରଖିଥିଲା । ଧରାପଡି କିଛି ଉତ୍ତମମଧ୍ୟମ ପରେ ତାକୁ ଛାଡ଼ି ଦିଆଯାଇଥିଲା ।



ତୃତୀୟ ରାତିର ପ୍ରଦର୍ଶନ ପାଇଁ ଟିକଟ ନଥିବାରୁ, ପୁଣି ବନ୍ଧୁ ସଂଜୀବ ବହିଦାରଙ୍କୁ କହି ରାତାରାତି ଟିକଟ ଛପା ହେଲା । ସେଇ ରାତି ମଧ୍ୟ ଆହୁରି ଅଧିକ ଯୋଶ୍‌ରେ କଳାକାରମାନେ ଅଭିନୟ କରି ନାଟକକୁ ସଫଳତାର ଶୀର୍ଷକୁ ଘେନିଗଲେ । ମାସେ କାଳ ଖାସ୍ ସମ୍ବଲପୁରୀ ନାଟକକୁ ନେଇ ଚର୍ଚ୍ଚା ହେଲା, କେବଳ ସାଧାରଣ ଦର୍ଶକମାନେ ନୁହନ୍ତି, ବୁଦ୍ଧିଜୀବୀ ମହଲରେ ମଧ୍ୟ ଚର୍ଚ୍ଚା ଯୋର୍ ଧରିଲା ।

ସମୁଦାୟ ଏକ୍ତିରିଶ ଦିନ ମୁଁ ଉଖୀ ନାଟକ ପାଇଁ କଲେଜ୍ ଯାଇ ପାରିନଥିଲି । ସବୁ ଦିନ ଏଲଡବ୍ଲ୍ୟୁପିରେ ଗଲା । ରାଉରକେଲା ପାଇଁ ଆଗରୁ ଦଶ ଦିନ ଏମିତି କଲେଜ୍‌ରେ ଅନୁପସ୍ଥିତ ରହିଥିଲି । କାରଣ ମୁଁ ସେତେବେଳେ ଅନୁଭବ କରିଥିଲି ଯେ, ମୁଁ ନିୟମିତ କଲେଜ୍ ଗଲେ, ଏ ନାଟକ ହୋଇପରିବ ନାହିଁ । ଚାନ୍ଦାମଗା, କଳାକାରମାନଙ୍କୁ ଏକଜୋଟ କରିବା, ନିଜେ ଅଭିନୟ କରିବା, ରାଜୁଦାଙ୍କ ସହ ସବୁରାତି ପ୍ରାୟ ଗୋଟାଏ ପର୍ଯ୍ୟନ୍ତ ଘରୁ ବାହାରେ ରହିବା, ଅବିଶ୍ରାନ୍ତ ଖଟିବା, ଏଭଳି ଅନେକ ସାଂଗଠନିକ କାର୍ଯ୍ୟସହ ଜଡ଼ିତ ରହିବା ଭିତରେ କଲେଜ୍ କଥା ମୁଁ ପ୍ରାୟତଃ ପାଶୋରି ଦେଉଥିଲି । ଯେମିତି ହେଉ, ଉଖୀକୁ ସାମଗ୍ରିକ ଭାବରେ ସଫଳ କରିବା ପାଇଁ ପଡିବ । ରାଉରକେଲା ଓ ସମ୍ବଲପୁରର ରିହାର୍ସାଲ ଦିନଗୁଡ଼ିକୁ ହିସାବ କଲେ ପ୍ରାୟ ପଚାଶରୁ ଅଧିକ ଦିନ ହେବ । ଏସବୁ ନିମିତ୍ତ ମାତ୍ର, ସମ୍ବଲପୁରୀ ନାଟକ ଉଖୀ ମହାଡମ୍ବରରେ ତିନି ରାତି ଧରି ଗଙ୍ଗାଧର ମଣ୍ଡପରେ ମଞ୍ଚସ୍ଥ ହେଲା, ବ୍ୟକ୍ତିଗତ ଭାବରେ ମୋର ଦୀର୍ଘ ଦିନର ସ୍ୱପ୍ନ ସାର୍ଥକ ହେଲା, ସାମୁହିକ ଭାବରେ ଏ ନାଟକ ସଫଳ ହେବା ପରେ ସମ୍ବଲପୁରୀ ଭାଷା ସାହିତ୍ୟର, ବିଶେଷତଃ ସମ୍ବଲପୁରୀ ନାଟକର ନୂତନ ଯୁଗଟିଏର ଅୟମାରମ୍ଭ ହେଲା । ଆଲୋଚକମାନେ କହିଲେ ସମ୍ବଲପୁରୀ ନାଟକର ନୂଆଁ ଯୁଗଟିଏ ଆରମ୍ଭ ହୋଇଗଲା । ଏହି ନାଟକର ପ୍ରଭାବ ଏତେ ବେଶି ଥିଲା ଯେ, ସମ୍ବଲପୁରର ସମ୍ବଲପୁରୀ ଲେଖକମାନେ ଧିରେ ଧିରେ ଏକଜୋଟ ହୋଇ ଗୋଟିଏ ନୂତନ ଲେଖକ ସଂଗଠନ ଗଢ଼ିବାର ଉଦ୍ୟମ ଆରମ୍ଭ କରିଦେଲେ । ଏହି ଉଦ୍ୟମ ପରେ ତେୟାଅଶୀରେ ସାକାର ହେଲା, ସମ୍ବଲପୁରରେ ସମ୍ବଲପୁରୀ ସାହିତ୍ୟର ଗୋଟିଏ ବିଶେଷାଙ୍କ ପ୍ରକାଶିତ ହେଉଥିଲା । ଉଖୀର ସଫଳତା, କେବଳ ଗୋଟିଏ ନାଟକ ଭିତରେ ସୀମିତ ନଥିଲା, ଥିଲା ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଭାଷା ସାହିତ୍ୟର । ।

ସୃଷ୍ଟିର ଏ ସଫଳତାର ଚର୍ଚ୍ଚା ନ ସରୁଣୁ ଆମ ଘରେ ଦୁଇଟି ଘଟଣା ଘଟିଥିଲା । ପ୍ରଥମଟି ସାନ ଭଉଣୀ ଜ୍ୟୋତ୍ସ୍ନାର ବାହାଘର । ବାହାମରୁ ଆସିଥିଲେ ବରଯାତ୍ରୀ, ସେଇ ଘରର ବଡ ପୁଅ ବଦ୍ରିନାରାୟଣ ନାଥଙ୍କୁ ମୋ ମଝିନାନୀ ସତୁରୀ ମସିହାରେ

ବାହା ହୋଇ ବାହାମ ଗ୍ରାମରେ ସଂସାର ଗଢ଼ିଲେ, ସେଇ ଗଇଁଙ୍କ ତଳ ଭାଇ ଇଂଜିନିୟର ସୁଶୀଲ ନାଥଙ୍କ ସହ । ଆନନ୍ଦରେ, ସୁରୁଖୁରୁ ଭାବରେ ବାହାଘର ଶେଷ ହେଲା । ମୋ ସହଧର୍ମିଣୀ କିନ୍ତୁ ବାହାଘରକୁ ଉପଭୋଗ କରି ପାରିନଥିଲେ ଗର୍ଭବତୀ ଥିବାରୁ । ବୟାଶୀ ଜୁନ୍ ମାସର ତୃତୀୟ ସପ୍ତାହର ଘଟଣା, ମେଟିନିଟି ହସ୍ପିଟାଲରେ ତାଙ୍କୁ ଡେଲିବରୀ ପାଇଁ ଏଡମିଟ୍ କରିବା ପାଇଁ ପଡିଲା । ଜୁନ୍ ଏକୋଇଶ, ସକାଳ ପ୍ରାୟ ଏଗାରଟା ହେବ, ତାଙ୍କୁ ଦେଖିରେଖି କରୁଥିବା ଡାକ୍ତର ନାରାୟଣୀ ପଣ୍ଡା ଭିତରୁ ବାହାରକୁ ଆସି କହିଲେ, ସେ ତମ ସ୍ତ୍ରୀ ? ମୁଁ ହଁ ଭରିବାରୁ ସେ ମୋ ପାଖକୁ ଆସି କହିଲେ, ପ୍ରୋବ୍ଲେମ ଅଛି । ଛୁଆଟାର ମୁଣ୍ଡରେ ଏକ ଛିଦ୍ର ଅଛି, ଡେଲିଭେରି ହେଲେ, ଛୁଆର ଜୀବନ ପ୍ରତି ବିପଦ ଅଛି । ହୁଏ ତ ପଙ୍ଗୁ ହୋଇଯାଇପାରେ । ଅଧିକ ଦିନ ହୁଏ ବଞ୍ଚି ନପାରେ । ଡେଲିଭେରି ନ କଲେ ମାଁର ଜୀବନ ପ୍ରତି ବିପଦ ସୃଷ୍ଟି ହୋଇପାରେ । କହ, ମାଁ ଚାହୁଁଛ, ନା ଛୁଆ ? ଡାକ୍ତର ପଣ୍ଡାଙ୍କ ମୁହଁରୁ ଏଭଳି କଥା ଶୁଣି ଘଡିକ ପାଇଁ ମୁଁ ସ୍ତବ୍ଧ ହୋଇଯାଇଥିଲି । ଭାବିଲି ସନ୍ତାନ ତ ଭବିଷ୍ୟତରେ ହେବ, ମାଁ ଗଲେ ଆଉ ମୋ ଜୀବନ ଚଳିବ କେମିତି । ଆଗ ପଛ କିଛି ନ ଭାବି କହିଲି, ଛୁଆକୁ ଶେଷ କରିଦିଅନ୍ତୁ ଡାକ୍ତର ମୋ ପାଖରୁ ଚାଲିଗଲା ପରେ ମୁଁ ଘରକୁ ଯାଇ ମାଁ ବାପାଙ୍କୁ ଏ କଥା କହିଲି । ପୁଣି ବାପାଙ୍କ ସହ ହସ୍ପିଟାଲକୁ ଆସିଗଲି । ସେଠି ଆଉ ମୋର କିଛି କାମ ନଥିଲା । ଇତି ମଧ୍ୟରେ ଘୋର ବର୍ଷା ଆରମ୍ଭ ହୋଇଯାଇଥିଲା । ପାଖରେ ଆଉ କେହି ନଥିବାରୁ ସାହଯ୍ୟ ପାଇଁ ବାରୁଦାଙ୍କୁ ଖବର ଦେଲି. ସେ ବର୍ଷାରେ ବାରୁଦା ତୁରନ୍ତ ଚାଲି ଆସିଲେ । ତୁହାକୁ ତୁହା ବର୍ଷା, ବାପା ମୋତେ ଘରକୁ ପଳେଇ ଯିବା ପାଇଁ କହିଲେ । ଛୁଆଟିକୁ ଇଂଜେକସନ ମାଧ୍ୟମରେ ପ୍ରଥମେ ମୃତାବସ୍ଥାକୁ ଅଣାଗଲା, ପରେ ସ୍ୱାଭାବିକ ଡେଲିଭରି ହୋଇ ଜନ୍ମ ନେଲା ଏକ ମୃତ କନ୍ୟା ସନ୍ତାନ । ବାପା ମୋତେ ଘରକୁ ଯିବା ପାଇଁ କହିବାର ଅର୍ଥ ମୁଁ ଯେମିତି ମୃତ ସନ୍ତାନକୁ ଦେଖି ଅତ୍ୟଧିକ ଭାବପ୍ରବଣ ହୋଇଯିବି । ମୁଁ ସବୁ ବୁଝିପାରି ଏକାଏକା ବର୍ଷାର ମାଡ ଖାଇଖାଇ ଘରକୁ ଚାଲି ଆସିଲି । ତାଙ୍କ ସ୍ୱାସ୍ଥ୍ୟବସ୍ଥା ବୁଝିଲି, ସେ ସମ୍ପୂର୍ଣ୍ଣ ସୁସ୍ଥ ଥିଲେ । ପରଦିନ ଡାକ୍ତରଖାନାରୁ ଡିସଚାର୍ଜ ହେବାର ଖବର ଆଗରୁ ପାଇସାରିଥିଲି । ଘରେ ପହଞ୍ଚିବା ବେଳକୁ ବର୍ଷାର ପାଣି ଓ ଆଖିର ପାଣି ଏକ ହୋଇସାରିଥିଲା । ମାଁ କୋଳରେ ଲୋଟି ପଡିଥିଲି କୁନି ପୁଅଟି ପରି । ମାଁ କୋଳରେ ଥାଇ ଭାବୁଥିଲି, ସତେ ମାଁ ମୋତେ ଜାଣିଜାଣି ଦୁଃଖିଧନ ବୋଲି ସମ୍ବୋଧିତ କରୁଥିଲା । ସତରେ ଏ ଦୁଃଖନଦୀର ପ୍ରବାହର କଣ ଶେଷ ନାହିଁ ! !

ସେଇ ବର୍ଷା ପାଇଁ ବୟାଅଶୀରେ ସମ୍ବଲପୁରରେ ବନ୍ୟା ହେଲା । ବାଲିବନ୍ଧା ଢଳି ପଡିଥିଲା ଜଳ ସ୍ରୋତରେ । ତାକୁ ନେଇ ଜି.ଏମ. କଲେଜରେ ଦେଖା ଦେଇଥିଲା, ସୁରେଶ ପୂଜାରୀଙ୍କ ନେତୃତ୍ୱରେ ଛାତ୍ର ଆନ୍ଦୋଳନ । ସାରା ଓଡ଼ିଶାକୁ ବନ୍ୟା ଯେମିତି ଗ୍ରାସ କରିଦେଇଥିଲା । ବନ୍ୟା ପରିସ୍ଥିତି ଯୋଗୁଁ ରାଉରକେଲା ଲୋକନାଟକ ମହୋତ୍ସବ ସେ ବର୍ଷ ବନ୍ଦ ହୋଇଗଲା । ବନ୍ଦ ହେବା ପୁର୍ବରୁ କିନ୍ତୁ ବିନୋଦବାବୁ ସୃଷ୍ଟି ପାଇଁ ଅଲାର୍ ନାମରେ ନାଟକଟିଏ ଲେଖି ସାରିଥିଲେ, ଯାହାକୁ ମୁଁ ନାପସନ୍ଦ କରିଦେଇଥିଲି । ସନ୍ତାନ ହରାଇଥିବା ଦୁଃଖରେ ମ୍ରିୟମାଣ ହୋଇପଡିଥିଲି ବୋଲି ବୋଧହୁଏ ଲୋକନାଟକ ମହୋତ୍ସବ ବନ୍ଦ ହେବା ଥିଲା ମୋ ପାଇଁ ସାନ୍ତ୍ୱନା ।

ବାପା ଆଉ ବାରୁଦା କହୁଥିଲେ, ଛୁଆଟା ଭାରୀ ସୁନ୍ଦରୀ ଥିଲା, ଦିଶୁଥିଲା ଡଉଲଡାଉଲ, ଗୋରୀ ତକତକ । ବର୍ଷା ଛାଡ଼ିବା ପରେ ବାପା ଓ ବାରୁଦା ତାକୁ ଧରି ଚାଲିଚାଲି ବିନାଖଣ୍ଡି ଯାଇ ତାର ଶେଷକୃତ୍ୟ ସମାପନ କଲେ । ଆମ ଭଲପାଇବାର ନିଦର୍ଶନ ଭାବରେ ସେ ଆସିଥିଲା, ବିଜୁଳୀ କନ୍ୟା ଭଳି ଉଭାନ୍ ହୋଇଗଲା । ଆଖିରେ ଧାରେ ଲୁହ ଦେଇ ଚାଲିଗଲା । ଏବେ ମୋ ଝିଅ ପୁନମ କାଖରେ ତା ଝିଅ ମୁନ୍‌କୁ ଦେଖିଲେ ବେଳେବେଳେ ଆଖି ଭିଜିଯାଏ ଆନନ୍ଦାଶ୍ରୁରେ ।।



**ବ**ୟାଅଶୀର ବନ୍ୟା ଅନେକ ଲୋକଙ୍କ ଜୀବନଜୀବିକାକୁ ଧ୍ୱସ୍ତବିଧ୍ୱସ୍ତ କରି ପକାଇଥିଲା । ସାରା ସମ୍ବଲପୁରର ସବୁଜିମାକୁ ନଷ୍ଟ କରିଦେଇଥିଲା । ସୁରେଶ ପୂଜାରୀଙ୍କ ନେତୃତ୍ୱରେ ଅସାଧୁ ବ୍ୟବସାୟୀଙ୍କ ବିରୁଦ୍ଧରେ ହୋଇଥିବା ଆନ୍ଦୋଳନ ଆଉ କେତେ ଭ୍ରଷ୍ଟ ଛାତ୍ର ନେତାଙ୍କ ଦ୍ୱାରା ଅବାଟରେ ଚାଲିଯାଉଥିଲା । ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟ ଲୋକଙ୍କ ଉପରେ ହିଂସାତ୍ମକ ଆକ୍ରମଣ ଯୋଗୁଁ ସମ୍ବଲପୁରର ସମ୍ମାନରେ ଆଞ୍ଚ ଆସିଥିଲା । ପରେ ଅବଶ୍ୟ ଏହା କ୍ରମଶଃ ପ୍ରଶମିତ ହୋଇଯାଇଥିଲା । ତେବେ ସୁରେଶ ଏହି ଆନ୍ଦୋଳନରୁ ରାଜନୀତିରେ ପ୍ରବେଶ କରିଥିଲେ । ସମ୍ବଲପୁରର ପୌରପାଳିକାର ଚେୟାରମ୍ୟାନ ପଦବୀ ପାଇବା ପରେ ଆଉ ପଛକୁ ନ ଓଲଟି ବହୁ ଉତ୍ଥାନ ପତନ ଦେଇ ଗତିକରି ଶେଷରେ ବର୍ତ୍ତମାନ ବରଗଡ଼ ଲୋକସଭା ନିର୍ବାଚନ ମଣ୍ଡଳୀରୁ ସାଂସଦ ଭାବରେ ନିର୍ବାଚିତ ହୋଇଛନ୍ତି । ସୁରେଶ ପୂଜାରୀଙ୍କ ବାବଦରେ ଏତିକି ଲେଖିବାର ଅର୍ଥ । ସେ ଆମ ପିଢ଼ୀର ଜଣେକ ରାଜନେତା । ଯେ ନାଟକର ମର୍ଯ୍ୟାଦା ବୃଦ୍ଧି ପାଇଁ ତାଙ୍କ ହାତ ବଢ଼ାଇଥିଲେ । ଗଙ୍ଗାଧର ମଣ୍ଡପ ଆଗରୁ ମେଲାଢିଲା ପଡ଼ିଥିଲା । ତାର ବିକାଶ ବା ସୌନ୍ଦର୍ଯ୍ୟବୃଦ୍ଧି ପାଇଁ କହି ଚିନ୍ତାବି କରୁନଥିଲେ ।

ସୃଷ୍ଟିର 'ବୁର୍ତି' ନାଟକ ବେଳେ ତାଙ୍କରି ଉଦ୍ୟମରେ ପ୍ରଥମେ ମଣ୍ଡପର ଟିଣ ଛାଉଁଣି ନିର୍ମିତ ହୋଇଥିଲା । ପରେ ନରେନ୍ଦ୍ର ମିଶ୍ର ସମ୍ବଲପୁର ଜିଲ୍ଲାପାଳ ଥିବା ସମୟରେ ସତାନବେ ସାଲ୍‌ରେ ପ୍ରଥମ ସମ୍ବଲପୁର ଲୋକମହୋତ୍ସବ ବେଳେ ମଞ୍ଚକୁ ପୁନଃନିର୍ମାଣ କରାଯାଇଥିଲା । ଏହି ମଣ୍ଡପ ମହାନ୍ କବି ଗଙ୍ଗାଧର ମେହେରଙ୍କ ନାମରେ ନାମିତ ହେବା ପଛରେ ଅନ୍ୟତମ ରାଜନେତା ସନାତନ ବିଶିଙ୍କ ମଧ୍ୟ ଅବଦାନ ରହିଛି ।

ପୁଣି ସ୍ୱାଭାବିକ ଭାବରେ କଲେଜ୍ ଯିବା ଆସିବା କରିବା ଭିତରେ ପରମାଣପୁର କଲେଜର ଅଧ୍ୟକ୍ଷ ମୋ ଉପରେ ଏକ ସ୍ୱତନ୍ତ୍ର ଦାୟିତ୍ୱ ନ୍ୟସ୍ତ କଲେ । କଲେଜରେ ପ୍ରଥମ କରି ଏନ.ଏସ.ଏସ. ଅର୍ଥାତ୍ ଜାତୀୟ ସେବା ସଂସ୍ଥାର କାର୍ଯ୍ୟକ୍ରମ ଅଧିକାରୀ ଭାବରେ ମୁଁ ଦାୟିତ୍ୱ ଗ୍ରହଣ କଲି । ଗୋଟିଏ ୟୁନିଟର ପଚାଶ ସ୍ୱେଚ୍ଛାସେବୀଙ୍କୁ ନେଇ କଲେଜ୍‌ରେ ଗଠିତ ହେଲା ଜାତୀୟ ସେବା ସଂସ୍ଥାର ଏକ ବିଭାଗ । ଯାହା ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ହେଉଥିଲା । ପୂର୍ବେ ଦଶହରା ଛୁଟି ବାଇଶ୍ ଦିନର ହେଉଥିଲା । ତେଣୁ ଏହି ସମୟରେ ପୂର୍ବରୁ ହେଉ ବା ପରେ ହେଉ ଦଶଦିନିଆ ସ୍ୱତନ୍ତ୍ର ଶିବିରମାନ ଆୟୋଜନ କରିବାରେ ସୁବିଧା ହେଉଥିଲା । ସେହି ବର୍ଷ ଦଶହରା ପୂର୍ବରୁ ଦଶ ଦିନ ବ୍ୟାପୀ ସ୍ୱତନ୍ତ୍ର ଶିବିର ପରମାଣପୁରରୁ ତେର ଚୌଦ କିଲୋମିଟର ପରେ ଗୁମଲୋଇ ଗ୍ରାମରେ ଅନୁଷ୍ଠିତ ହୋଇଥିଲା । ଏଠାରେ ଏକ ପୁରାତନ ଡାକବଙ୍ଗଳା ରହିଛି । ଯେଉଁଠି ପଚିଶଜଣ ଛାତ୍ରମାନଙ୍କ ସହ ମୁଁ କାର୍ଯ୍ୟକ୍ରମ ଅଧିକାରୀ ଭାବରେ ଦଶଦିନ କାଳ ରହି ଶିବିର ପରିଚାଳନା କରିଥିଲି । ଏହା ଯେହେତୁ ଆମ କଲେଜର ଏବଂ ମୋ ଜୀବନର ସର୍ବପ୍ରଥମ ଏନ.ଏସ.ଏସ. କେମ୍ପ । ତାକୁ ଅବିସ୍ମରଣୀୟ କରିବା ପାଇଁ ଖୁବ୍ ପରିଶ୍ରମ କରିଥିଲି ।

ଗୁମ୍‌ଲୋଇରୁ ଝାରସୁଗୁଡ଼ା ଯିବା ପାଇଁ ଝରଘାଟି ଦେଇ ଏକ ଜଙ୍ଗଲ ରାସ୍ତା ଅଛି । ଗୁମ୍‌ଲୋଇରୁ ଅନତି ଦୂରରେ ଏକ କାଠ ପୋଲ ଅତି ଦଦରା ଅବସ୍ଥାରେ ପଡିଥିଲା । ଲୋକେ ସେଇ ପୋଲତଳୁ ହୋଇ ସାଇକଲ୍‌ରେ ଯିବାଆସିବା କରୁଥିଲେ । ଶିବିରର ଛାତ୍ରମାନେ ମିଶି ସାତ ଦିନ ଭିତରେ ସେହି ପୋଲକୁ ନୂଆଁ କାଠ ଦ୍ୱାରା ମରାମତି କରିଦେଲେ । ଗୁମ୍‌ଲୋଇ ଗ୍ରାମକୁ ଲାଗି ଏକ ପୋଖରୀ କଦର୍ଯ୍ୟ ଅବସ୍ଥାରେ ପଡ଼ିଥିଲା । ବନ୍ଧ ହିଡ଼ରେ ଥିବା ଖଜୁରୀ ଗଛର ଡାଳସବୁ ପୋଖରୀ ଭିତରେ ପଡ଼ି ବିପଦ ସୃଷ୍ଟି କରୁଥିଲା । ଲୋକେ ଏହି ପୋଖରୀର ପାଣି ଶୌଚ ବ୍ୟତିରେକ ଆଉ କୌଣସି କାମରେ ବ୍ୟବହାର କରୁ ନଥିଲେ । ପ୍ରତ୍ୟହ, ଆମ ସ୍ୱେଚ୍ଛାସେବୀମାନେ ଗାଁ ଲୋକଙ୍କ ସହାୟତାରେ ସମଗ୍ର ପୋଖରୀଟିକୁ ସଫା କରିଦେଲେ ଏବଂ ଲୋକଙ୍କ ବ୍ୟବହାର ଯୋଗ୍ୟ

କରିପାରିଥିଲେ । ସନ୍ଧ୍ୟା ସମୟରେ କୌଣସି ଶାରୀରିକ ଶ୍ରମ କାର୍ଯ୍ୟକ୍ରମ ନରଖି ଗାଁ ମଝିରେ ଥିବା ଏକ ବଡ଼ଗଛ ମୂଳରେ ଦରି ପକାଇ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ଲୋକଙ୍କ ଭିତରେ ପରିଚ୍ଛନ୍ନତା ବିଷୟରେ ସଚେତନ କରାଯାଇଥିଲା । ମୁଁ ଏହି ସାଂସ୍କୃତିକ କାର୍ଯ୍ୟକ୍ରମର ନେତୃତ୍ୱ ନେଉଥିଲି । ମାନ୍ଦଳ ବଜାଇ ନୂଆଁ ନୂଆଁ ଗୀତ ସମବେତ କଣ୍ଠରେ ଗାଇ ଲୋକଙ୍କୁ ମନୋରଞ୍ଜିତ କରୁଥିଲୁ । ଏଠାରେ ତନ୍ମଧ୍ୟରୁ ଉଦାହରଣ ସ୍ୱରୂପ ଏକ ଗୀତର ଦୁଇ ଧାଡ଼ି ଉଲ୍ଲେଖ କରାଯାଇପାରେ । ଖଜୁରୀ କଣ୍ଟା ଯୋଗୁଁ ଲୋକଙ୍କ ଯିବାଆସିବାରେ ଅସୁବିଧାକୁ ନେଇ ଏ ଗୀତ ଗାନ କରାଯାଇଥିଲା -

ଇ ଆମର୍ ଗାଁ ଗୁମ୍‌ଲେଇ,

ବାଟେଘାଟେ ଖେଜୁର୍ କଣ୍ଟା ଥିସି,

ଚାଲିଥିବ ଭାର ସମ୍ଭଲେଇ ।

ନିକଟ ଅତୀତରେ ଉଖୀ ନାଟକ ହୋଇଥିବାରୁ ଜଣେ ଅଭିନେତା ଭାବରେ ମୁଁ ଛାତ୍ରମାନଙ୍କ ନିକଟରେ ପରିଚିତ ଥିଲି । ଶିବିର ଶେଷ ହେବାକୁ ଆଉ ଚାରି ଦିନ ବାକିଥିଲା । ପିଲାମାନେ ଶେଷ ରାତିରେ ନାଟକଟିଏ କରିବା ପାଇଁ ମୋତେ ଅନୁରୋଧ କଲେ । ଷ୍ଟ୍ରିଟ୍ ପ୍ଲେକୁ ଆଖି ଆଗରେ ରଖି ମୁଁ ପିଲାଙ୍କୁ ହଁ କହିଦେଲି ସିନା, ନାଟକ ପାଇଁ ଶିବିର ପରିଚାଳନାର କୌଣସି ବ୍ୟବସ୍ଥା ନଥିବା କଥା ପିଲାମାନଙ୍କ ସହ ଆଲୋଚନା କଲି ।

ମୁଁ କଲେଜ୍ ଜୀବନରେ କେବେ ଜାତୀୟ ସେବା ସଂସ୍ଥାର ସଦସ୍ୟ ନଥିଲି କି କେବେ ଦଶ ଦିନିଆ ଶିବିରରେ ଯୋଗ ଦେଇ ନଥିଲି । ନିଜ ଶୈଳୀରେ, ନିଜବୁଦ୍ଧିବୃତ୍ତି ଖଟେଇ ପରିଚାଳନା କରିଥିବା ଏଇ ସ୍ୱତନ୍ତ୍ର ଶିବିରର ସଫଳତା ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ମୋତେ ଏକ ତାଲିମ ପାଇଁ ଭୁବନେଶ୍ୱର ପଠେଇଲେ ଡିସେମ୍ବରରେ । ଭୁବନେଶ୍ୱର କୃଷି ବିଶ୍ୱବିଦ୍ୟାଳୟର ପରିସରରେ ଏହି ଦଶ ଦିବସୀୟ ତାଲିମ୍ ଶିବିର ଆୟୋଜିତ ହୋଇଥିଲା । ପରବର୍ତ୍ତୀ କାଳରେ ତିନି ବର୍ଷ ପାଇଁ ଏ ଦାୟୀତ୍ୱରେ ରହି ଚୌରାଅଶୀ ଦଶହରା ଯାଏଁ ଆହୁରି କେତୋଟି ସ୍ୱତନ୍ତ୍ର ଶିବିର ଆୟୋଜନ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ସ୍ତରରେ କଲେଜ୍‌ର ମାନ ବୃଦ୍ଧିରେ ସହାୟକ ହୋଇଥିଲା । ଯେ କୌଣସି କାର୍ଯ୍ୟକ୍ରମ ହେଉ, ପ୍ରତ୍ୟେକଟିରେ ସଂଗୀତ ଓ ନାଟକ ସମଗ୍ର କାର୍ଯ୍ୟକ୍ରମକୁ ଆଚ୍ଛାଦିତ କରି ରଖୁଥିଲା ।



ଢିୟାଅଶୀର ବନ୍ୟା ପରେ ଓଡ଼ିଶାର ଅଧିକାଂଶ ସାଂସ୍କୃତିକ ଉତ୍ସବମାନ ସ୍ଥଗିତ ରହିଲା କିମ୍ବା ବନ୍ଦ ହୋଇଗଲା । ତା ସହ ବନ୍ଦ ହୋଇଗଲା ବର୍ଷ ଶେଷରେ ଆୟୋଜିତ ହେବାକୁ ଥିବା ରାଉରକେଲାର ଲୋକନାଟକ ମହୋତ୍ସବ । ତେଣୁ ସୃଷ୍ଟି ତରଫରୁ ବିଶେଷ କାର୍ଯ୍ୟକ୍ରମ କରାଗଲା ନାହିଁ । ତଥାପି ବନ୍ୟା ପରେ କାଳେ ମହୋତ୍ସବ ହୋଇଯିବ । ହଠାତ୍ ପାଣ୍ଡୁଲିପି ନ ମିଳିବା ଆଶଙ୍କା ଥିବାରୁ ମୁଁ ବିନୋଦବାବୁଙ୍କୁ ସହ ସାକ୍ଷାତ୍ କରି ନାଟକଲେଖା ବାବଦରେ ଆଲୋଚନା କରିଥିଲି । ସେ ମୋତେ କଥା ଦେଇଥିଲେ, ନାଟକ ନିଶ୍ଚୟ ଲେଖିବି । ଏଭଳି କଥାବାର୍ତ୍ତା ପରେ ମୁଁ ବାରମ୍ବାର ତାଙ୍କ ସହ ଦେଖାକରି ଲେଖା ବାବଦରେ ସତର୍କ କରିଦେଉଥିଲି । ରାଉରକେଲାକୁ ପାଣ୍ଡୁଲିପି ପଠାଇବାର ଦିନ ଯେତିକି ପାଖେଇ ଆସୁଥାଏ । ମୋର ବ୍ୟଗ୍ରତା ସେତିକି ବୃଦ୍ଧି ପାଉଥାଏ । ଶେଷ ତାରିଖ ପୂର୍ବରୁ ଲୋକନାଟକ ମହୋତ୍ସବ ସ୍ଥଗିତ ରହିବାର ଚିଠି ଆସି ନଥାଏ । ଯେବେ ଗଲେ ଲେଖା ଚାଲିଛି ବୋଲି କହୁଥାନ୍ତି । ନାଟକରେ କଣ ଅଛି, କଣ ନାହିଁ, ବିଷୟବସ୍ତୁ କଣ, ଚରିତ୍ର କେତୋଟି ଅଛନ୍ତି, ମୋ ସହ କିଛି ଆଲୋଚନା ନକରି ବିନୋଦବାବୁ ନିଜେ ନିଜେ ଲେଖୁଥାନ୍ତି । ତେଣୁ ମୋର ସନ୍ଦେହ ହେଲା, ପ୍ରକୃତରେ ସେ ଲେଖୁଛନ୍ତି ନା ନାହିଁ ! ! ଶେଷରେ ଶେଷ ତାରିଖ ପୂର୍ବରୁ ବିନୋଦବାବୁ ପାଣ୍ଡୁଲିପିଟିକୁ ହସ୍ତାନ୍ତର କରିଥିଲେ । ମୁଁ ଘରକୁ ଯାଇ ବଡ଼ ଆଗ୍ରହର ସହକାରେ 'ଅଲାର୍' ନାମ ଦିଆଯାଇଥିବା ନାଟକର ପାଣ୍ଡୁଲିପିକୁ ଲାଗଲାଗ ଦୁଇଥର ପଢ଼ି ପକେଇଲି । ପଢ଼ିସାରି ମୁଁ ନିରାଶ ହେଲି, ଲେଖାଟି ଆଦୌ ଭଲ ଲାଗି ନଥିଲା । ନାଟକୀୟ ଉପାଦାନର ଅଭାବରେ ପୁରା ପାଣିଚିଆ ଲାଗୁଥିଲା । କିଛି ନୂତନତା ନଥିଲା ବିଷୟବସ୍ତୁ ଚୟନରେ । ତା'ପରଦିନ ଲୋକନାଟକ ମହୋତ୍ସ ବନ୍ଦ ହେବାର ଘୋଷଣା ଖବରକାଗଜରେ ପ୍ରକାଶିତ ହେଲା । ମୁଁ ଈଶ୍ୱରଙ୍କୁ ଅଶେଷ ଧନ୍ୟବାଦ ଦେଲି ଓ କିଛିଦିନ ପରେ ବିନୋଦବାବୁଙ୍କୁ ପାଣ୍ଡଲିପିଟି ଫେରାଇଦେଲି ।

ଇତି ମଧ୍ୟରେ ନଈରେ ବର୍ଷକର ପାଣି ବହିସାରିଥାଏ । ତେୟାଅଶୀର ଚିଠି ସମ୍ପାଦକ ହରେକୃଷ୍ଣ ଦାସଙ୍କ ନିକଟରୁ ହସ୍ତଗତ କଲି । ଅଗଷ୍ଟ ସେପ୍ଟେମ୍ବର ବେଳର କଥା । ପୁଣି ପାଣ୍ଡୁଲିପି ଚିନ୍ତା, ନୂଆଁ କିଛି କରିବା ପାଇଁ ପଡ଼ିବ । ପ୍ରଥମେ ନିଜେ କଥାବସ୍ତୁ ବାବଦରେ ଚିନ୍ତା କରିଥିଲି ଉତ୍ତମ ଓ ମୋର ଅଭିନୟକୁ ନେଇ । ଉତ୍ତମ କେମିତି ଶ୍ରେଷ୍ଠ ଅଭିନେତା ପୁରସ୍କାରରେ ମଣ୍ଡିତ ହେବେ, ସେଇ ଚିନ୍ତାରେ ମୁଁ କାହାଣୀ ଗଢ଼ିଲି, ଚରିତ୍ର ଚିନ୍ତା କଲି । ପରେ ରହିଲା ମୋ ଅଭିନୟକୁ ନେଇ । ଉର୍ଖୀରେ ମାନ୍ଦଲ

ବଜାଉଥିବା ଚରିତ୍ରରେ ଅଭିନୟ କରି ମୋ ନୃତ୍ୟବାଦ୍ୟରେ ଦର୍ଶକମାନଙ୍କୁ ଆକର୍ଷିତ କରିପାରିଥିଲି । ଏଥର ଢୋଲ ବଜାଇବା ଚରିତ୍ରଟିରେ ଅଭିନୟ କଲେ ମୋର ଢୋଲ ବଜାଇବା କଳା ଲୋକଙ୍କୁ ନିଶ୍ଚୟ ଆକୃଷ୍ଟ କରିବ । ଏଇ ବିନ୍ଦୁରୁ ଭୁଖା ନାଟକର ଫୁଲଟି କଢ଼ି ଧରିବା ଆରମ୍ଭ ହେଲା ।

ପରେ ଧନୁପାଲି ଦୁର୍ଗାପୂଜାବେଳେ କୁଲତାନୁଆଁପାଲି ଗ୍ରାମର ହୃଷୀକେଶ ସୁନା ଓ ତାଙ୍କ ଦୁଲଦୁଲି ବାଦ୍ୟଦଳ ଆସୁଥିଲେ ଏବଂ ସବୁ ବର୍ଷ ଆମ ଘର ସାମ୍ନା ସ୍କୁଲ ଘରେ ରହୁଥିଲେ । ଯେହେତୁ ତାଳ ବାଦ୍ୟ ଉପରେ ମୋର ଦୁର୍ବଳତା ପିଲାଟିବେଳୁ ଥିଲା । ମୁଁ ସ୍କୁଲ ଯାଇ ତାଙ୍କ ସହ ବସି କଥାବାର୍ତ୍ତା କରୁଥିଲି । ତାଙ୍କ ଢୋଲ ଆଣି ବିଭିନ୍ନ ପାର୍ ମାନ ସେଇ ତାଙ୍କ ପାଖରେ ବଜାଉଥିଲ । ଏପରି କି ହୃର୍ଷିର ଢୋଲ ବଜାଇବା ଶୈଳୀ ଦ୍ୱାରା ମୁଁ ଖୁବ୍ ପ୍ରଭାବିତ ହୋଇଥିଲି । ଏବେ ଧନୁପାଲି ଦୁର୍ଗାମଣ୍ଡପକୁ ଲାଗି ଯେଉଁ ହନୁମାନ ମନ୍ଦିର ଅଛି । ସେହିଠାରେ କର୍ମକର୍ତ୍ତାମାନେ ଏମାନଙ୍କୁ ଜାଗା ଦେଉଥିଲେ ପୂଜାବେଳେ ବଜାଇବାପାଇଁ । ସେମାନଙ୍କ ବିଶ୍ରାମକାଳରେ ସେଇଠିକୁ ଯାଇ ଲୋକ ଭିଡ଼ରେ ମଧ ମୁଁ ଥରେଥରେ ଢୋଲ ପିଟୁଥିଲି । ଏମାନଙ୍କ ସହ ମିଶିବା, ତାଙ୍କ ଗାଁ ଓ ଜୀବନ ସମ୍ପର୍କରେ ଅନୁଧ୍ୟାନ କରିବା ଭିତରେ ଏଇମାନଙ୍କୁ ହିଁ ଚରିତ୍ରକରି ନାଟକ କରିବାର ଦୁର୍ବାର ଇଚ୍ଛାଟିଏ ଜନ୍ମନେଲା ହୃଦୟର କେଉଁ ଏକ ଗଭୀରତମ କନ୍ଦରରୁ । ମୋର ଆପାଦମସ୍ତକ ଦୋହଲିବାରେ ଲାଗିଲା । ମୁଁ ସ୍ଥିର ହୋଇ ବସିପାରିଲି ନାହିଁ । ଏହାପରେ ମୋର ଦୁଇଟିଚିନ୍ତା ଦୂରହେଲା, ପ୍ରଥମତଃ ମୁଁ ଢୁଲିଆ ଚରିତ୍ରଟି ପାଇଁ ପୂରା ଫିଟ୍, ମୋ ଇଚ୍ଛାନୁସାରେ ମୋ ଚରିତ୍ରକୁ ପାଇଗଲି । ଦ୍ୱିତୀୟତଃ ଏକ ସୁନ୍ଦର ଓ ଅନୁଶୀଳନାତ୍ମକ କଥାବସ୍ତୁର ଆବିଷ୍କାର ହୋଇଗଲା । ଚରିତ୍ର ଆହରିତ ହୋଇଗଲେ, ନାଟ୍ୟବିନ୍ୟାସ ପାଇଁ ବିଶେଷ ପରିଶ୍ରମ କରିବାକୁ ପଡିନଥାଏ । ଗୋଟିଏ ରାତି ଭିତରେ ବିଛଣାରେ ପଡି ନିଦଶୂନ୍ୟହୋଇ ସାମଗ୍ରିକଭାବରେ ନାଟକର କାହାଣୀ ଭାଗର କଙ୍କାଳ ପ୍ରସ୍ତୁତ ହୋଇଯାଇଥିଲା । ପରମାଣପୁର କଲେଜକୁ ସେତେବେଳେ ମୁଁ ସାଗରିକା ବସ୍ ଯୋଗେ ଯିବାଆସିବା କରୁଥିଲି । ସେଦିନ ବସ୍‌ରେ ବସିବାବେଳୁ ମୋର ଚିନ୍ତା, ଏ ଗୁରୁତ୍ୱପୂର୍ଣ୍ଣ ନାଟକକୁ ଲେଖିବ କିଏ ।।

ପୁଣି ଜଣେ ଗୀତିକବି ଆବଶ୍ୟକ, ବିନୋଦବାବୁଙ୍କ ଉପରୁ ଅଲାର୍ ନାଟକ ପଢ଼ିବା ପରେ ଆଉ ଆସ୍ଥା ରହିଲା ନାହିଁ । ଆଉ କିଏ ଅଛନ୍ତି, ଯେ ମୋ କଥାର ଗାମ୍ଭୀର୍ଯ୍ୟକୁ ହୃଦୟଙ୍ଗମ କରିପାରିବ । ସମ୍ବଲପୁରୀ ଭାଷା ଉପରେ ଦଖଲ ଥିବ, କବିଟିଏ ହୋଇଥିଲେ ଖୁବ୍ ଭଲ । ମୋ ନାଟକକୁ କେବଳ ତାଙ୍କ ଭାଷାର ସଂଳାପ ଦରକାର । ଏମିତି ଭାବନାରେ

ବୁଡ଼ି ରହିଥିବା ବେଳେ ହଠାତ୍ ମୁଁ ନିଜକୁ ମୂର୍ଖମାନଙ୍କ ସର୍ଦ୍ଦାର ବୋଲି ଭାବି ଗାଲରେ ଚାପୁଡ଼ା ମାରିହେଲି । ମୋ ନିକଟରେ ଜଣେ ଜ୍ଞାନୀ, ଗୁଣୀ, କବି ଅଛନ୍ତି, ମୁଁ ତାଙ୍କୁ ଭୁଲିଯାଉଛି ! ! ଯେଉଁ ଅଞ୍ଚଳର କଲେଜ୍‌ର ଅଧ୍ୟାପକ ମୁଁ, ସେହି ଅଞ୍ଚଳର ହାଇସ୍କୁଲର ପ୍ରଧାନଶିକ୍ଷକ ସେ, ନାଟକ ସିନା ଲେଖନ୍ତି ନାହିଁ; ଉଭୟ ଓଡ଼ିଆ ଓ ସମ୍ବଲପୁରୀ ଭାଷାରେ କବିତା, ଗୀତିକବିତା ରଚନା କରିବାରେ ସେ ଯଶ ଅର୍ଜ୍ଜନ କରିଛନ୍ତି । ଆକାଶବାଣୀର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକବି । ଗାଳ୍ପିକ, ଶିଶୁ ସାହିତ୍ୟିକ ମଙ୍ଗଳୁଚରଣ ବିଶ୍ୱାଳ । ସେତେବେଳର ଅନୁଭବ ଅବର୍ଣ୍ଣନୀୟ । ମୁଁ ହାଇସ୍କୁଲ ସାମନାରେ ବସ୍‌ରୁ ଓହ୍ଲାଇ ପଡିଲି । ଆଗ ସ୍କୁଲ ପଡେ, ପରେ କଲେଜ୍ । କଲେଜ୍ କ୍ଲାସ କଥା ଭୁଲି ସିଧା ବସ୍‌ରୁ ଓହ୍ଲାଇ ପ୍ରଧାନ ଶିକ୍ଷକଙ୍କ ପ୍ରକୋଷ୍ଠ ଆଡ଼କୁ ମାଡ଼ିଗଲି । ଆଗରୁ ଅନେକ ଥର ଆମେ ସାକ୍ଷାତ ହୋଇଥିଲେ ସୁଦ୍ଧା ଏଇ ଭେଟର ଗୋଟାଏ ଅଲଗାପଣ ଥିଲା । ମୋ ଉପରେ ତାଙ୍କ ଧାରଣା ଭଲ ଥିଲା, ବାପା ଯେହେତୁ ସି.ଆଇ. ଥିଲେ ସେ ଦୃଷ୍ଟିରୁ ମୋ ପ୍ରତି ତାଙ୍କର ସ୍ୱତନ୍ତ୍ର ସମ୍ମାନବୋଧ ଥିଲା । ସେ ମୋ ମା'ଙ୍କ ବଂଶର ବୋଲି ମୁଁ ବହୁ ବର୍ଷ ପରେ ଜାଣିଲି ।

ମଙ୍ଗଳୁବାବୁଙ୍କ ପ୍ରଧାନଶିକ୍ଷକଙ୍କ ପ୍ରକୋଷ୍ଠକୁ ପ୍ରବେଶ କଲାମାତ୍ରେ ମୋତେ ଦେଖି ସେ ସ୍ୱାଗତ କଲେ ଚିରାଚରିତ ଭାବରେ । ତାଙ୍କ ଟେବୁଲକୁ ଲାଗି ସାମ୍ନାରେ ପଡିଥିବା ଚୌକିରେ ବସିବା ପାଇଁ କହିଲେ । ଚୌକିରେ ବସିବାବେଳକୁ ସେ ଭାରି ବ୍ୟସ୍ତ ହୋଇପଡ଼ନ୍ତି । ଖୁବ୍ ଶୃଙ୍ଖଳାରସହ ବିଦ୍ୟାଳୟ ପରିଚାଳନା କରୁଥିବା ମଙ୍ଗଳୁବାବୁ ଭାବୁଥିଲେ, ମୁଁ କଲେଜ୍‌ର କିଛି ସମସ୍ୟା ନେଇ ତାଙ୍କ ପାଖକୁ ଯାଇଛି । ତେଣୁ ମୁଁ ଯିବାର କାରଣ ଜାଣିବାକୁ ଚାହିଁଲେ । ମୁଁ ମୋ ଉଦ୍ଦେଶ୍ୟ କଥା ସ୍ପଷ୍ଟ ଭାବରେ ଜଣାଇଦେଲି ଯେ ଆପଣ ସୃଷ୍ଟି ପାଇଁ ନାଟକଟିଏ ଲେଖିବେ । ଯେଉଁ ନାଟକକୁ ଆମେ ଚଳିତ ବର୍ଷ ରାଉରକେଲାରେ ଅଭିନୀତ କରିବୁ । ସେ ତାଙ୍କ ଉତ୍ତରରେ କହିଲେ, କବିତା, ଗଳ୍ପ କି ଗୀତ ଲେଖ କହିଲେ ଚର୍‌ଚର୍ ଲେଖିଦେବି, ନାଟକ ତ ବହୁତ ଅଡୁଆ କଥା । ମୁଁ ମଙ୍ଗଳୁବାବୁଙ୍କ କହିଲି, ଆପଣ ହିଁ ଲେଖିବେ, କଣ ଲେଖିବେ, କେଉଁ କେଉଁ ଚରିତ୍ର ଉପରେ ଆଧାରିତ ହେବ ନାଟକ, ଦୃଶ୍ୟସଜ୍ଜା କେମିତି ହେବ, ସବୁ ମୋ ଉପରେ ଛାଡ଼ି ଦିଅନ୍ତୁ । ସେ କହିଲେ, ନାଟକର ଟେକ୍‌ନିକ୍, ଆପଣ ସମ୍ଭାଳିବେ, ଭୁଲଚୁକ ଆପଣ ଯଦି ଦେଖିବେ, ତାହେଲେ ହୁଏତ ମୁଁ ଲେଖିପାରିବି । ମୁଁ କହିଲି, ମୋର ଏବେ କ୍ଲାସ ଅଛି । ମୁଁ କଲେଜରୁ ଦେଢ଼ ଦୁଇ ଘଣ୍ଟା ଭିତରେ ଆସୁଛି । ଆପଣ କିଛି ସମୟ ଦେବେ । ମୁଁ ନାଟକର କାହାଣୀ ଭାଗ ଯାହା ଚିନ୍ତା କରିଛି ଆପଣଙ୍କୁ କହିବି । ସେଥିରେ ଯାହା ଅଭାବ ରହିବ । ଆପଣ ସେଗୁଡ଼ିକୁ ପୂରଣ କରିବେ ।

ଠିକ୍ ଅଛି । ଆସନ୍ତୁ, ମୁଁ ମଧ୍ୟ ମୋ କାମ ସାରୁଛି କହି ସେ ମୋଠୁ ବିଦାୟ ନେଲେ । କ୍ଷିପ୍ର ବେଗରେ ଚାଲିଗଲେ ଶ୍ରେଣୀ କୋଠରୀକୁ । ମୁଁ ମଧ୍ୟ ମୋ କ୍ଲାସ୍ ପାଇଁ କଲେଜକୁ ଚାଲିଗଲା ପରେ ଆସି ମୋ ଭାବନାକୁ ଭାବର ସହ ଭାବାଞ୍ଜଳୀ ଦେବା ପରି ବିନିମୟ କଲି ମଙ୍ଗଳୁବାବୁଙ୍କ ସହ, ପିଅନକୁ ଡାକି ଅର୍ଡର୍ ଦେଲେ ଜଳଖିଆ ଆଣିବା ପାଇଁ । ତାପରେ ଗପ ଚାଲିଲା, ମୋ କାହାଣୀକୁ ସରବତ୍ ପିଇବା ଭଳି ଗୋଟିଏ ଢୋକରେ ପିଇଗଲେ ସେ । ମୋ ଚିନ୍ତାଧାରା, ଚରିତ୍ର ଆହରଣ, ଘଟଣା ବିନ୍ୟାସ ସବୁଯାକ ଧୈର୍ଯ୍ୟ ସହ ଶୁଣିଲେ, ବୁଝିଲେ, କିଛି ଖାତାଟିଏରେ ଟିପି ରଖିଲେ । ଭୁଖା ନାମକରଣକୁ ଖୁବ୍ ପସନ୍ଦ କଲେ । କଥା ଦେଲେ, ସେ ନିଶ୍ଚୟ ଲେଖିବେ, ମଝିରେ ମଝିରେ ମୁଁ ଲେଖା ବଢ଼ିବା ସମ୍ପର୍କର ଖବର ରଖୁଥିଲି । ଗୋଟିଏ ଦୃଶ୍ୟ ଲେଖିଲେ ପୁଣି ମୋତେ କଲେଜରୁ ଡକାଇ ପଠଉଥିଲେ । କେବେ ହାଇସ୍କୁଲରେ, କେବେ ତାଙ୍କ ବାରଡୁମରୀ ଘର ବାରଣ୍ଡାରେ । ବାରମ୍ବାର ଚର୍ଚ୍ଚାବିଚର୍ଚ୍ଚା ଭିତରେ ଭୁଖା ନାଟକର ଲେଖା ଶେଷ ହେଲା । ମୁଁ ପାଣ୍ଡୁଲିପିକୁ ବାରମ୍ବାର ପଢ଼ି ମଙ୍ଗଳୁବାବୁଙ୍କ ସଂଳାପ ରଚନାର ଭାଷା ଓ ଶୈଳୀ ଦେଖି ଚମତ୍କୃତ ହୋଇପଡ଼ିଥିଲି ।

ତେୟାଅଶୀ ଲୋକନାଟକ ମହୋତ୍ସବ ପାଇଁ ସୃଷ୍ଟିର ନାଟକ ପ୍ରସ୍ତୁତ ହୋଇଗଲା । ପୁଣି ଜଣେ ସମ୍ବଲପୁରୀ ଗୀତିକବି ନାଟ୍ୟକାର ଭାବରେ ପରିଚିତ ହେବାକୁ ଯାଉଛନ୍ତି । ଭୁଖା ପରବର୍ତ୍ତୀ ଲେଖାଗୁଡ଼ିକରେ ମଙ୍ଗଳୁଚରଣ ବିଶ୍ୱାଳ ଜଣାଇ ଦେଇଛନ୍ତି ଯେ ମୁଁ ଆମ ଧନୁପାଲିରେ ହୁର୍ଷୀ ଢୁଲିଆ ଓ ତା ଦଳର ଦୈନନ୍ଦିନ ଜୀବନର ବାସ୍ତବ ଘଟଣାମାନଙ୍କୁ ଆଧାର କରି ଯେଉଁ କାହାଣୀ ତାଙ୍କ ପ୍ରକୋଷ୍ଠ ବଖାଣୀଥିଲି, ସେତେବେଳେ ସେ ତାଙ୍କ ହୀରାକୁଦ ପାଣିରେ ବୁଡ଼ିଯାଇଥିବା ପିତାପାଲି ଗାଁର ଦୁଲଦୁଲି ବାଦ୍ୟକାରମାନଙ୍କ କଥା ମନେ ପକାଉଥିଲେ । ତାଙ୍କ ଦୁର୍ଦ୍ଦଶା ଗ୍ରସ୍ତ ଜୀବନର କାହାଣୀକୁ ମୋ କାହାଣୀ ସହିତ ଯୋଡୁଥିଲେ । ଏପରିକି ପିତାପାଲିର ସେଇ ଚରିତ୍ରମାନଙ୍କ ନାମ ମଧ୍ୟ ଭୁଖା ନାଟକରେ ରଖାଯାଇଛି । ବହୁ ନିକଟରୁ ଅଙ୍ଗେ ନିଭାଇଥିବା, ଆଖିରେ ଦେଖି ହୃଦୟରେ ସ୍ଥାନିତ କରିଥିବା ଘଟଣା । ଦୁର୍ଘଟଣାର କଳାତ୍ମକ ରୂପ ନେଲା ଭୁଖା ନାଟକ । ଯାହା ପରବର୍ତ୍ତୀ କାଳରେ ସମ୍ବଲପୁରୀ ଭାଷାର କ୍ଲାସିକ ନାଟକ ଭାବରେ ବୁଦ୍ଧିଜୀବୀଗଣ ଗ୍ରହଣ କରିଥିଲେ ।

ରାଜୁଦା ତାଙ୍କ ଓକିଲାତି ଚେମ୍ବରରେ ବସିଥାନ୍ତି । ପାଣ୍ଡୁଲିପି ନ ନେଇ ପ୍ରଥମେ ମୁଁ ଦେଖାକରିଗଲି ଖାସ୍ ଏଇ ସମ୍ବାଦ ଦେବା ପାଇଁ ଯେ, ଆମ ରାଉରକେଲା ପାଇଁ ଆମ ନାଟକ ପ୍ରସ୍ତୁତ ହୋଇଗଲାଣି । ନିର୍ଦ୍ଧାରିତ ଫର୍ମ ପୂରଣ କରି ପାଣ୍ଡୁଲିପି ସହ ଠିକ୍ ସମୟରେ ପଠାଇବାକୁ

ପଡିବ । ଫର୍ମରେ ନିର୍ଦ୍ଦେଶକ ବିନ୍ଦୁରେ ଦାଦାଙ୍କ ଦସ୍ତଖତ ନେଇଯାଇ ପାଣ୍ଡୁଲିପି ପଠନର ତାରିଖ ନିର୍ଣ୍ଣୟ କରିବାକୁ କହିଲି । ଦାଦାଙ୍କ ଚିନ୍ତା ଥିଲା, ନାଟକଟି ଦମ୍‌ଦାର୍ ହୋଇଛି ତ ! !

ଭୁଖା, କେବଳ ଦମଦାର ନଥିଲା । ଏଭଳି ପୂର୍ଣ୍ଣାଙ୍ଗ ନାଟକ ଥିଲା, ଯାହା ପରବର୍ତ୍ତୀକାଳରେ ପୁସ୍ତକ ଆକାରରେ ପ୍ରକାଶିତ ହେଲା । ବେତାର ନାଟକ ଭାବରେ ପ୍ରଚାରିତ ହେଲା । ଚଳଚ୍ଚିତ୍ରର ରୂପ ନେଇ ଆନ୍ତର୍ଜାତୀୟ ପୁରସ୍କାର ପ୍ରାପ୍ତ ହେଲା । ସମ୍ବଲପୁର ବିଶ୍ୱବିଦ୍ୟାଳୟର ଯୁକ୍ତତିନି ସମ୍ମାନରେ ପ୍ରଥମ ସମ୍ବଲପୁରୀ ପୁସ୍ତକ ଭାବରେ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ହେଲା । ଉଖୀ ସମ୍ବଲପୁରୀ ନାଟକକୁ ନୂଆଁ ମୋଡ ଦେଇଥିଲା । ଭୁଖା ନାଟକକୁ ନାଟ୍ୟ ସାହିତ୍ୟରେ ପରିଣତ କଲା । ଭାଷା ଓ ସାହିତ୍ୟକୁ ବଳିଷ୍ଠ କଲା । ଜଣେ କବି, ଗୀତିକାର, ଗାଳ୍ପିକ, ଔପନ୍ୟାସିକ ତଥା ଶିଶୁ ସାହିତ୍ୟିକଙ୍କୁ ନାଟ୍ୟକାର ଭାବରେ ମାନ୍ୟତା ଦେବାରେ ସଫଳ ହେଲା ।



**ନା**ଟକର ନିଶା ଯେତେବେଳେ ଖୁବ୍ ଘାରେ, ସେତେବେଳେ ତାକୁ ଅଟକାଇବା ଅସମ୍ଭବ ହୋଇପଡେ । କବିମାନେ କହନ୍ତି, କବିତା ମାଡିବା ଗର୍ଭବତୀ ନାରୀର ପ୍ରସବ ବେଦନାଠାରୁ ମଧ୍ୟ ଅଧିକ ପୀଡ଼ାଦାୟକ । ଠିକ୍ ସେହିଭଳି, ନାଟକର ମଞ୍ଚାୟନ ନ ହେବାଯାଏ ସଂଗଠକମାନଙ୍କଠାରୁ ଆରମ୍ଭ କରି ଅଭିନେତା, ଅଭିନେତ୍ରୀମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କଠାରେ ଉତ୍କଣ୍ଠା ଜନିତ ପୀଡ଼ା ଲକ୍ଷ୍ୟ କରାଯାଇଥାଏ । ଭୁଖାର ପାଣ୍ଡୁଲିପି ହସ୍ତଗତ ନ ହେବା ପର୍ଯ୍ୟନ୍ତ ସେହି କଷ୍ଟ ମୁଁ ପ୍ରତି ମୁହୂର୍ତ୍ତରେ ଅନୁଭବ କରିଛି । ସେହି କଷ୍ଟ ଉପଶମ ନ ହେଉଣୁ, ଏବେ ତାହାର ସମ୍ପୂର୍ଣ୍ଣ ମାର୍ଜନା । ମଞ୍ଚ ଉପଯୋଗୀ କରିବା ପୁଣି ଏକ ମସ୍ତବଡ଼ ଦାୟୀତ୍ୱ । ନାଟକରେ ସଫଳତା ସେଇଠୁ ଆରମ୍ଭ ହୁଏ । ଯଦି ତାର କାଗଜପତ୍ର ଜନିତ ଉପାଦାନମାନ ସବୁ ଠିକ୍‌ଠାକ୍ ଥାଏ । ରିହାର୍ସାଲ୍ ଆରମ୍ଭ ପୂର୍ବରୁ ଉଖୀର ପାଣ୍ଡୁଲିପିକୁ ମଞ୍ଚ ଉପଯୋଗୀ କରିବା ପାଇଁ ଯଥେଷ୍ଟ ସମୟ ଲାଗିଥିଲା । ଏବେ ଭୁଖାର ମଞ୍ଚାଭିମୁଖିତାକୁ ସମୀକ୍ଷା କରିବାର ବେଳ ।

ପୁଣି ଦିନେ ନିର୍ଦ୍ଦିଷ୍ଟ ହୋଇଥିବା ସମୟରେ ରାଜୁଦାଙ୍କ ଓକିଲାତି ଚେମ୍ବରରେ ସୃଷ୍ଟିର କେତେକ ଆଗଧାଡ଼ିର କଳାକାର ଏକତ୍ରିତ ହୋଇ ଭୁଖାର ପାଣ୍ଡୁଲିପିକୁ ପଢ଼ିଲୁ । ମୁଁ ପଢ଼ିବା ଲୋକ, କାରଣ ମଙ୍ଗଳୁଚରଣ ବିଶ୍ୱାଳଙ୍କ ହସ୍ତଲିପି ଚିହ୍ନିବା ବାକିମାନଙ୍କ ପକ୍ଷେ କଷ୍ଟକର । ମୁଁ ଯେହେତୁ ନାଟ୍ୟରଚନାର ଆରମ୍ଭରୁ ଅନ୍ତିମ ପର୍ଯ୍ୟାୟ ଯାଏଁ ଜଡ଼ିତ ଥିଲି, ସେଥିପଇଁ ସମସ୍ତଙ୍କ ଆଗରେ ସ୍ପଷ୍ଟ ଭାବରେ ପଢ଼ି ଶୁଣାଇବା ଥିଲା ମୋର ଦାୟିତ୍ୱ । ଅନ୍ୟ ଏକ କାରଣ ହେଲା, ମୁଁ

ପଢ଼ିବା ବେଳେ, ଚରିତ୍ର ଅନୁସାରେ ସଂଳାପଗୁଡ଼ିକୁ ଉଚ୍ଚାରଣ କରିବାର ଚେଷ୍ଟା କରିଥାଏ, ପରେ ନିର୍ଦ୍ଦେଶକଙ୍କୁ ମଧ୍ୟ ଯାହା ସହାୟକ ହୋଇଥାଏ । ଉତ୍ତମ, ବାରୁଦା, ରଣଜିତ୍ ଗୁରୁ, ନରେନ୍ଦ୍ର ଆଦିଙ୍କ ଗହଣରେ ପାଣ୍ଡୁଲିପି ପାଠ କରାହେଲା । ପ୍ରଥମ ପର୍ଯ୍ୟାୟର ପଠନରୁ ହିଁ ଭୁଖା ନାଟକଟି ସମସ୍ତଙ୍କୁ ଆକର୍ଷିତ କଲା । ଯେଉଁ କ୍ଷେତ୍ରରେ ଅଧିକ ସଂଳାପର ଆବଶ୍ୟକତା ପଡ଼ିଲା । ସେହି ବିନ୍ଦୁଗୁଡ଼ିକୁ ରାଜୁଦା ନିର୍ଦ୍ଦିଷ୍ଟ କରିଦେବା ପରେ ସମସ୍ତଙ୍କ ସମ୍ମତିରେ ନାଟକକୁ ରାଉରକେଲା ପାଇଁ ମନୋନୀତ ହେବାର ଚିଠି ମଧ୍ୟ ହସ୍ତଗତ ହେଲା । ଭୁଖା ମନୋନିତ ହେବାରେ ମୁଁ ଶତ ପ୍ରତିଶତ ଆତ୍ମବିଶ୍ୱାସୀ ଥିଲି । କାରଣ ଭୁଖା ସମ୍ପୂର୍ଣ୍ଣ ଭାବରେ ଲୋକଚରିତ୍ରମାନଙ୍କ ନିଷ୍ପେସିତ ଜୀବନର କାହାଣୀ ଉପରେ ଆଧାରିତ ଥିଲା । ଦ୍ୱିତୀୟତଃ, ଏହା ପଶ୍ଚିମ ଓଡ଼ିଶାର ଦୁଲଦୁଲି ବାଦ୍ୟକାରମାନଙ୍କ ଲୋକଚଳଣି, ଲୋକସଂସ୍କୃତି ଉପରେ ଆଧାରିତ ଥିଲା । ଯାହା ଲୋକନାଟକର ସମସ୍ତ ଲକ୍ଷ୍ୟକୁ ପରିପୂର୍ଣ୍ଣ କରୁଛି । ତା'ସହ ନାଟକର ଭାଷା ସମ୍ପୂର୍ଣ୍ଣ । ସେହି ଚରିତ୍ରମାନଙ୍କର ବ୍ୟବହାର୍ଯ୍ୟ ଲୋକଭାଷା । ତେଣୁ, ମନୋନୟନ ନ ହେବାର କୌଣସି ଅବକାଶ ନଥିଲା ।

ଭୁଖା ନାଟକ ମନୋନୀତ ହେବା ପରେ ମୁଁ ବାରମ୍ବାର ରାଜୁଦା ଓ ବାରୁଦାଙ୍କ ପାଖକୁ ଯାଇ ଅତିଶୀଘ୍ର ରିହାର୍ସାଲ ଆରମ୍ଭ କରିବାର ଯୋଜନା ପ୍ରସ୍ତୁତ କରିଥିଲି । ତା ପୂର୍ବରୁ ରାଜୁଦାଙ୍କ ଚେମ୍ବରରେ ଆଉ ଗୋଟିଏ ବୈଠକରେ ଅଭିନେତା ଚୟନ ହୋଇଥିଲା । ଯେଉଁଥିରେ ଅନ୍ୟମାନଙ୍କ ଅପେକ୍ଷା ନିର୍ଦ୍ଦେଶକଙ୍କ ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ । ମୁଁ ଆଗରୁ ରାଜୁଦାଙ୍କୁ ମୋ ମନୋଭାବ ଏବଂ ଯେଉଁ କଳାକାରମାନଙ୍କୁ ଦେଖି ଚରିତ୍ରାୟନ ହୋଇଥିଲା, ସେ ସମ୍ବନ୍ଧରେ ଆଲୋଚନା କରିଥିଲି । ଭୁଖା ନାଟକରେ ସର୍ବମୋଟ ନ'ଟି ଚରିତ୍ର, ମୁହୁରିଆ ଅଏଁଠା, ଢୁଲିଆ ମହରଗୁ, ତାସାବାଲା ହାଡୁ, ଝାଞ୍ଜବାଲା ଗହଦୁ, ନିଷାନ୍ ବାଲା ପଲଟୁ, ଗବେଷକ ଅସୀମ, ମୁହୁରିଆର୍ ବଢ଼ିଲା ଭଉଣୀ କସ୍ତୁରୀ ଏବଂ ତାର ସାତଆଠ ବର୍ଷର ଝିଅ ଫୁଲ । 'ଅଏଁଠା', ନାଟକର ମୁଖ୍ୟ ଚରିତ୍ର ପାଇଁ ଉତ୍ତମ, ତାସା ବାଦକ 'ହାଡୁ' ପାଇଁ ବାରୁଦା, ଝାଞ୍ଜବାଲା ପାଇଁ ନରେନ୍ଦ୍ର, କସ୍ତୁରୀ ପାଇଁ ପ୍ଲାବନୀ ପାଢ଼ୀ, ଫୁଲ ପାଇଁ ନିରଞ୍ଜନ ନନ୍ଦଙ୍କ ଆଉ ଜଣେ ଝିଅ ମାନସା ନନ୍ଦ ମନୋନୀତ ହେଲେ । ଢୋଲବାଦକ ମହରଗୁ ପାଇଁ ମୁଁ ଆଗରୁ ମନ ସ୍ଥିର କରିଥିବା ବେଳେ ରାଜୁଦାଙ୍କ ଇଚ୍ଛାନୁସାରେ ଗବେଷକ ଅସୀମ ଚରିତ୍ରରେ ଅଭିନୟ କରିବା ପାଇଁ ମୋତେ ଅନୁରୋଧ କରାଗଲା । ଦାଦାଙ୍କ ଭାଷାରେ, ତୁମେ ହୀରୋ ହେବ ହିଁ ହେବ, ଉଖୀରେ ଥିଲ, ଭୁଖାରେ ବି ହେବ । ସମ୍ମାନର ସହ ମୁଁ ମୋର ସମ୍ମତି ପ୍ରଦାନ କଲି, ଢୋଲ ବାଦ୍ୟକାର ମହରଗୁ ପାଇଁ ରାଜୁଦା ବରିଷ୍ଠ କଳାକାର ଲକ୍ଷ୍ମୀ ନାରାୟଣ ପ୍ରଧାନଙ୍କ

ନାମ ଉପସ୍ଥାପନ କଲେ । ଲକ୍ଷ୍ମୀ ବାବୁ ଆକାଶବାଣୀ ସମ୍ବଲପୁରର ପ୍ରଥମ ସ୍ୱୀକୃତିପ୍ରାପ୍ତ ଢୋଲବାଦକ, ତେଣୁ ଭୂମିକାଟି ତାଙ୍କ ପାଇଁ ଉପଯୁକ୍ତ ବୋଲି ସମସ୍ତେ ଅନୁଭବ କଲେ । ନିଷାନ୍ ବାଦକ ପାଇଁ ନରେନ୍ଦ୍ରଙ୍କ ପ୍ରସ୍ତାବ ଅନୁସାରେ ବିଦ୍ୟୁତ୍ ବିଭାଗର ତତ୍କାଳୀନ କର୍ମଚାରୀ ବସୁଦେବ ସ୍ୱାଇଁଙ୍କ ନାମ ପ୍ରସ୍ତାବ ଦେଇଥିଲେ । ଯେ ମାନେଶ୍ୱର ନିକଟସ୍ଥ ବାହ୍ମନୀପାଲିର ବାସିନ୍ଦା ଏବଂ ନିଷାନ୍ ବାଦ୍ୟ ସହ ସେ ଜଡ଼ିତ ଥିଲେ । ଏହିଭଳି ଭାବରେ ଅଭିନେତା, ଅଭିନେତ୍ରୀ ଚୟନ ପରେ ନିର୍ଦ୍ଦିଷ୍ଟ ଶୁଭଲଗ୍ନ ଦେଖି ସମଲେଶ୍ୱରୀ ମନ୍ଦିରରେ ପାଣ୍ଡୁଲିପି ପୂଜା ପରେ ରିହାର୍ସାଲ କାର୍ଯ୍ୟ ଆରମ୍ଭ ହେଲା ସେହି ଟାଉନ୍ ହାଇସ୍କୁଲର ବଡ଼ ପ୍ରକୋଷ୍ଠରେ । ମଙ୍ଗଳୁବାବୁଙ୍କୁ ସମସ୍ତ ଖବର ମୁଁ କଲେଜ ଗଲାବେଳେ ଦେଉଥାଏ । ସଂଳାପଗୁଡ଼ିକର ସଂକ୍ଷେପଣ ଏବଂ ସମ୍ପ୍ରସାରଣ ବାବଦରେ ସମ୍ୟକ୍ ଅଲୋଚନା ମାଧ୍ୟମରେ ସମାପନ କରାଯାଉଥିଲା । ଛୋଟଛୋଟ ମାର୍ଜନା ମୁଁ ନିଜେ କରିଦେଉଥିଲି । ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ପାଇଁ ପାଣ୍ଡୁଲିପି ଧରି ବିଶ୍ୱାଳ ବାବୁଙ୍କ ନିକଟକୁ ଯାଉଥିଲି ।

ରିହାର୍ସାଲ ଆରମ୍ଭ ହେଲା । ସାତ ଦିନ ପାଇଁ ବସି ପଢ଼ି, ତା ପରେ ସ୍ୱାଭାବିକ ଭାବରେ ନିର୍ଦ୍ଦେଶନା ସହ । ବିନା ବାଦ୍ୟଯନ୍ତ୍ରରେ ଭୁଖା ନାଟକର ରିହାର୍ସାଲ ଅସମ୍ଭବ । ତେଣୁ ଢୋଲ, ମହୁରୀ, ତାସା, ନିଷାନ୍, ଝାଞ୍ଜ ଆଦି ଯୋଗାଡ଼ କରାଗଲା । ରିହାର୍ସାଲ କୋଠରୀକୁ ସବୁଦିନ ନେବା ପାଇଁ ପଡିଲା । ବାଦ୍ୟ ସହ ସଂଗୀତ ଏ ନାଟକର ଅବିଚ୍ଛେଦ୍ୟ ଅଙ୍ଗ ହୋଇଥିବାରୁ ମୁଖ୍ୟ ଚରିତ୍ର ଅଏଁଠାର ମୁହୂରୀ ବାଦନ ପାଇଁ ଆକାଶବାଣୀ ଷ୍ଟାଫ ଆର୍ଟିଷ୍ଟ ଫୈମୁଲ୍ଲା ଖାନ୍ ଏବଂ ବେହେଲା ପାଇଁ ପୂର୍ଣ୍ଣଚନ୍ଦ୍ର ସ୍ୱାଇଁଙ୍କ ସହ ଯୋଗାଯୋଗ ହେଲା । କେନ୍ଦ୍ର ନିର୍ଦ୍ଦେଶକଙ୍କ ଅନୁମତି ପରେ ସେମାନେ ରିହାର୍ସାଲକୁ ଆସିଲେ । ମୋ ଭାଇ ସେ ସମୟରେ ମୂର୍ଚ୍ଛନା ବୋଲି ଏକ ସଂଗୀତ କେସେଟ୍ ପ୍ରଯୋଜନା କରିଥିଲା । ଯେଉଁଥିରେ ତାର ବନ୍ଧୁ ନବକିଶୋର ମହନ୍ତମ ଏବଂ ସରିତା ପରିଛା କଣ୍ଠଦାନ କରିଥିଲେ, ଯାହା ମୋତେ ଖୁବ୍ ଭଲ ଲାଗିଥିଲା । ବ୍ରଜେନ୍ଦ୍ର ମାଧ୍ୟମରେ ସେହି କଳାକାରମାନଙ୍କୁ ଯୋଗାଯୋଗ କରାଯାଇ ପ୍ରଚ୍ଛଦ ସଂଗୀତ ପାଇଁ ରିହାର୍ସାଲକୁ ଆମନ୍ତ୍ରଣ କରାଗଲା । ହାରମୋନିୟମ ଆସିଲା, ମାନ୍ଦଲ ମଧ୍ୟ ଆସିଲା । ଅସୀମ୍ ଓ କସ୍ତୁରୀର ଏକ ରୋମାଣ୍ଟିକ ଦୃଶ୍ୟ ପାଇଁ ମଙ୍ଗଳୁବାବୁ ତାଙ୍କ ମାଳଞ୍ଚ ଗୀତିକବିତା ବହିରେ ପ୍ରକାଶିତ ଏକ ଦ୍ୱୈତ ସଂଗୀତ ନାଟକ ପାଇଁ ଚୟନ କରିଥିଲେ । ମହନ୍ତମ ଓ ସରିତାକୁ ସେଇ ଗୀତର ସୁର ଦେଇ ବାରମ୍ବାର ରିହାର୍ସାଲ କରାଇଥିଲି, ମହନ୍ତମ ମଧ୍ୟ ସେହି ସ୍ୱରରେ କିଛି ସ୍ୱତନ୍ତ୍ର ସ୍ପର୍ଶ ଦେଇଥିଲେ । ଅଭିନୟରେ ମୁଁ ଓ ପ୍ଲାବନୀ ଦୁଇଥର ଏହି ଗୀତ ସହ ଅଭିନୟ କରିଥିଲୁ, ପ୍ରଥମେ ରୋମାଣ୍ଟିକ୍ ଦୃଶ୍ୟରେ, ପରେ ବିଚ୍ଛେଦ ସମୟରେ ମନ୍ଥର ସ୍ୱରରେ । ଗୀତଟି ମୁଁ ଏ ଯାଏଁ ବିଭିନ୍ନ ସଭାସମିତିରେ ଗାଉଛି । ଗୀତଟି ହେଲା –

ତରେ ମୁଇଁ ଭୁଲମି କେନ୍ତା କରିରେ,

ଇ ମୋର୍ ଜୀବନେ ତୁଇତ କେତେ ଫଗୁନର୍ ଫଗୁ ଦେଇଛୁ ଭରିରେ ।

କୁରେ ଫୁଲର୍ କଅଁଳି ଅହର୍

ହୁର୍ ହୁରିଆ ଧୁକାଥି ଉଠୁଛେ ଥରିରେ, ତତେ ମୁଇଁ ଭୁଲମି କେନ୍ତା କରିରେ.... ।

ନବ ମହନ୍ତମ ଓ ସରିତାଙ୍କ କଣ୍ଠରେ ଏହି ଦ୍ୱୈତ ସଂଗୀତ ରିହାର୍ସାଲରେ ଉପସ୍ଥିତ ସମସ୍ତଙ୍କୁ ଆକୃଷ୍ଟ କରୁଥିଲା । ନାଟକର ଆରମ୍ଭରୁ ଅନ୍ୟ ଏକ ଗୀତ ମାଲେଶିରୀ ସ୍ୱରରେ ସଂଯୋଜିତ ହୋଇଥିଲା ସ୍ୱତନ୍ତ୍ର ସ୍ପର୍ଶରେ । ସରିତାଙ୍କ କଣ୍ଠର ଏହି ଗୀତଟି ରାଉରକେଲା ରିହାର୍ସାଲ ବେଳେ ମଙ୍ଗଳୁବାବୁଙ୍କ ଆଖିରୁ ଲୁହ ଝରାଇ ପାରିଥିଲା । ବାକି ପୁଷ୍ପୁନିର ଦୃଶ୍ୟର ଗୀତମାନ କଳାକାରମାନେ ନିଜ ପସନ୍ଦର ଗୀତମାନ ଗାଉଥିଲେ । ବାରୁଦା ଗାଇଥିଲେ ଗଜେନ୍ଦ୍ର ଗମନୀ ଚାରୁ ସ୍ଥୁଲହଅନି ବଜନିଆଗୀତ, ଲକ୍ଷ୍ମୀବାବୁ ରାଧାରାଧିକେ ଆସ ଭଳି ସମ୍ପୂର୍ଣ୍ଣ ଲୋକଗୀତ ଗାଇଥିଲେ । ବାରୁଦା ବହୁ ପରିଶ୍ରମ କରି ତାସାବାଦ୍ୟ ସହ ନିଜକୁ ଫିଟ୍ କରେଇ ଦେଲେ । ନାଟକର ପ୍ରଥମ ଦୃଶ୍ୟରୁ ହିଁ ସମବେତ ବାଦ୍ୟରୋଳ ଥିଲା । ତେଣୁ ରିହାର୍ସାଲ ପ୍ରାରମ୍ଭରୁ ହିଁ ନାଟକ ତାର ଗତି ଯୋର୍ ଧରୁଥିଲା ।

ସବୁ କଳାକାର, ନିଜନିଜ ପ୍ରତିଭାର ସମ୍ପୂର୍ଣ୍ଣ ଉପଯୋଗ କରୁଥିଲେ । ପ୍ଲାବିନୀ ଓ ମୋର ରୋମାଣ୍ଟିକ ଦୃଶ୍ୟ ପାଇଁ ଗୀତ ମଝିରେ କିଛି ସଂଳାପର ଆବଶ୍ୟକତା ଥିବାରୁ ଦିନେ ରବିବାର ଦେଖି ସମସ୍ତେ ମଙ୍ଗଳବାବୁଙ୍କ ବାରଡୁମରୀ ସ୍ଥିତ ବାସଭବନକୁ ଯାଇଥିଲୁ । ପ୍ରାୟ ଦୁଇ ଘଣ୍ଟାର ରହଣି ଭିତରେ ସଂଳାପ ରଚନା ପ୍ରସ୍ତୁତ ହୋଇଗଲା । ଜଳଖିଆ ଆଦିରେ ଆପ୍ୟାୟିତ ହେବା ପରେ ଆମେ ତାଙ୍କଠାରୁ ବିଦାୟ ନେଇଥିଲୁ ଏବଂ ଆମ ସହ ରାଉରକେଲା ଯିବା ପାଇଁ ଅନୁରୋଧ କରିଥିଲୁ ।

ରାଉରକେଲା ପାଇଁ ଭୁଖା ନାଟକର ପ୍ରସ୍ତୁତି, ଖାଲି ସାଧାରଣ ରିହାର୍ସାଲ ନଥିଲା । ଥିଲା ସମ୍ବଲପୁରୀ ଭାଷାର ଗାମ୍ଭିର୍ଯ୍ୟକୁ ପାଠକ ଓ ଦର୍ଶକମାନଙ୍କ ନିକଟରେ ଉପସ୍ଥାପିତ କରିବା । ଦଳିତ, ନିଷ୍ପେସିତ ସଂପ୍ରଦାୟର କଥନକୁ, ଚରିତ୍ରକୁ, ମଞ୍ଚରେ ସ୍ୱୀକୃତି ପ୍ରଦାନ କରିବା । ଦଳିତ ସାହିତ୍ୟକୁ ଆନ୍ତର୍ଜାତୀୟ ସାହିତ୍ୟ ସହ ସମକକ୍ଷ କରିବା । ସମ୍ବଲପୁରୀ ଭାଷା ସାହିତ୍ୟକୁ ଲିଖିତ ସାହିତ୍ୟର ମର୍ଯ୍ୟାଦା ପ୍ରଦାନ କରିବା । ଦୁଲଦୁଲି ଭଳି ଲୋକପ୍ରିୟ ବାଦ୍ୟକୁ ମାନକ ବାଦ୍ୟ ଭାବରେ ଗ୍ରହଣ କରିବା ଆଦି ଥିଲା ଭୁଖା ନାଟକର ଲକ୍ଷ୍ୟ ।



ଭୁଖା ହେଉଛି ସୃଷ୍ଟିର ତୃତୀୟ ବୃହତ୍ତମ ନାଟ୍ୟଯୋଜନା । ରାଉରକେଲା ଲୋକନାଟକ ମହୋତ୍ସବପାଇଁ ପ୍ରସ୍ତୁତ ସୃଷ୍ଟିର ସମସ୍ତ ନାଟ୍ୟଯୋଦ୍ଧା । ନିରଂଜନ ନନ୍ଦ ଓ ଦେବେଶ୍ୱର ମିଶ୍ର ଯଦିଓ ସ୍ମାରକ ଥିଲେ ହେଲେ ରିହାର୍ସାଲର ଅନ୍ତିମପର୍ଯ୍ୟାୟ ବେଳେ ପ୍ରାୟତଃ କୌଣସି କଳାକାରଙ୍କୁ ସଂଳାପ ସ୍ମରଣକରାଇବା ଆବଶ୍ୟକ ପଡୁନଥାଏ । ଚତୁର୍ଥଦୃଶ୍ୟର ଆରମ୍ଭରେ ପୁଷ୍‌ପୁନିର ନାଚଗୀତ ଥିବାରୁ, ମଞ୍ଚରେ ଜଣେ ନିଷାନ୍‌ବାଦକ ସହ ଆଉଜଣେ ନିଷନିଆଙ୍କର ଆବଶ୍ୟକତା ପଡୁଥିବାରୁ ସଦର ଡାକ୍ତରଖାନାରେ କାମକରୁଥିବା ଭୁବନ୍ ଦୀପ୍, ଯେ ଜଣେ ଢୁଲିଆଭାବରେ ଖ୍ୟାତି ଅର୍ଜନ କରିଥିଲେ, ତାଙ୍କୁ ଯୋଗାଯୋଗକରି ରିହାର୍ସାଲକୁ ଅଣାଗଲା । ତା'ପାଇଁ କିଛି ସଂଳାପ ଅଧିକ ଲେଖାଗଲା, ମୁଁ ସେହି ଦ୍ୱିତୀୟ ନିଷନିଆ ଚରିତ୍ରର ନାଁ ହୁର୍ଷୀ ଦେଇଥିଲି, ଖାସ୍ ଭୁଖା ନାଟକର ବିନ୍ଦୁବ୍ୟକ୍ତିତ୍ୱଙ୍କୁ ସ୍ମରଣୀୟ କରିବାପାଇଁ । ଭୁବନ ଆସିବାପରେ ସେଇ ନୃତ୍ୟଗୀତ ଦୃଶ୍ୟଟି ଆହୁରି ଜମିଲା । ସମବେତ ବାଦ୍ୟରୋଳରେ ଭୁବନ ମଞ୍ଚଉପରେ ନିଷାନ୍‌ସହିତ ପଲଟିମାରିବା ଦୃଶ୍ୟଟିକୁ ଆହୁରି ରଙ୍ଗୀନ୍ କରିପକାଇଲା ।

ଉଖୀ ପରି ଭୁଖାର ରିହାର୍ସାଲକୁ ମଧ୍ୟ ସମ୍ବଲପୁରର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଆସୁଥିଲେ, ଆମକୁ ପ୍ରୋତ୍ସାହିତ କରୁଥିଲେ । ଆୟକର କମିଶନର୍ ଯୋଗେଶଚନ୍ଦ୍ର ମିଶ୍ର ତ ଥିଲେ ଜଣେ ନିୟମିତ ଆଗନ୍ତୁକ । ସେ ସୃଷ୍ଟିର ଜନୈକ ପୃଷ୍ଠପୋଷକ ପାଲଟି ଯାଇଥିଲେ । ଉତ୍ତମର ସିନିୟର ମହାନ୍ତିବାବୁ ମଧ୍ୟ ବହୁପରିମାଣରେ ଆର୍ଥିକ ସହଯୋଗକରି ଆମ ମନୋବଳକୁ ସୁଦୃଢ କରିଥିଲେ । ଅଭିନେତ୍ରୀ ପ୍ଲାବିନୀ ପାଢୀଙ୍କ ଆନ୍ତରିକତା ସୃଷ୍ଟିକୁ ସୁସଂଗଠିତ କରିଥିଲା । ଉତ୍ତମ ବେହେରା ପ୍ରାଣପଣେ ଅଏଁଠା ଚରିତ୍ରକୁ ଜୀବନ୍ତ ଓ ସ୍ୱାଭାବିକ କରିବାକୁ ଚେଷ୍ଟାକରୁଥିଲେ । ତାଙ୍କ କଣ୍ଠସ୍ୱରକୁ ଜାଣି ସଂଳାପମାନ ଲେଖାଯାଇଥିବାରୁ ତାଙ୍କ କଣ୍ଠରେ ସେଗୁଡ଼ିକର ଉଚ୍ଚାରଣ ଚରିତ୍ରାଭିମୁଖୀ ହୋଇପାରୁଥିଲା । ବାରୁଦାଙ୍କ ସଂଳାପ ଉଚ୍ଚାରଣରେ ହାସ୍ୟରସ ଭରିଥିଲା, ସମ୍ବଲପୁରୀ ଶବ୍ଦମାନ, ତାଙ୍କ ତୁଣ୍ଡରେ ଖାଣ୍ଟି ଗ୍ରାମୀଣ ପରିବେଶ ଜନ୍ମାଉଥିଲା । ଲକ୍ଷ୍ମୀବାବୁଙ୍କ ଢୋଲବାଦନ, ନରେନ୍ଦ୍ର, ବସୁଦେବ ଗୌଣଚରିତ୍ର ହେଲେହେଁ ନାଟକର ସାମଗ୍ରିକ ପ୍ରଯୋଜନାରେ ଯଥେଷ୍ଟ ସହାୟକ ହୋଇଥିଲା । ମାନସୀ, ଫୁଲ ଚରିତ୍ରରେ ରାଜୁଦାଙ୍କ ନିର୍ଦ୍ଦେଶାନୁସାରେ ଖୁବ୍ ମାର୍ମିକ ଅଭିନୟ କରୁଥିଲା । ମାନସୀସହ ମୋର ଓ ପ୍ଲାବିନୀର ଅଧିକ ଦୃଶ୍ୟ ଥିବାରୁ ସେ ନିର୍ଭୟରେ ଆମସହ ଅଭିନୟ କରୁଥିଲେ । ମୋ ଚରିତ୍ର ଅସୀମସହ ଉତ୍ତମ, ପ୍ଲାବିନୀ, ତଥା ବାକିସବୁ ବାଦ୍ୟକାରମାନେ ଏକତ୍ରିତ ଦୃଶ୍ୟ

ଥିବାରୁ ଆମ ନାଟକୀୟ ସଂହତି ନାଟକର ଭାରସାମ୍ୟକୁ ଉପଯୁକ୍ତଭାବରେ ରକ୍ଷା କରୁଥିଲା । ଦୀନା ମହାଜନ ଚରିତ୍ରରେ ରଣଜିତ୍ ଗୁରୁଙ୍କ ସହ ମୁଖ୍ୟଚରିତ୍ର ଉତ୍ତମର ବିଶେଷ ଭାଗଥିବାରୁ ସେହି ଦୃଶ୍ୟମାନ ଅଭିନୟ ଓ ସଂଳାପ ଉଚ୍ଚାରଣରେ ଯଥେଷ୍ଟ ପ୍ରଭାବଶାଳୀ ଜଣାପଡୁଥିଲା । ସାମଗ୍ରିକଭାବରେ ଭୁଖା ନାଟକ ସହ ପ୍ରଚ୍ଛଦ ସଂଗୀତ ଓତଃପ୍ରୋତ ଭାବରେ ଜଡିତ ଥିବାରୁ ମୁଁ ନାଟକର ଆରମ୍ଭରୁ ଶେଷପର୍ଯ୍ୟନ୍ତ ଉଭୟ କଣ୍ଠସଂଗୀତ ଓ ଯନ୍ତ୍ରସଂଗୀତର ଉପଯୁକ୍ତ ସଂଯୋଜନାକୁ ସମ୍ଭାଳୁଥିଲି । ପ୍ରଥମ ଓ ଶେଷ ବା ଚତୁର୍ଥ ଦୃଶ୍ୟରେ ମୋର ଅଭିନୟ ନଥିବାରୁ ସଂଗୀତ ପରିଚାଳନାରେ ମୋତେ ବିଶେଷ ଅସୁବିଧା ହେଉ ନଥିଲା । ବେହେଲାରେ ପୂର୍ଣ୍ଣଚନ୍ଦ୍ର ସ୍ୱାଇଁ, ବଂଶୀ ଓ ମହୁରୀରେ ଫୈମୁଲ୍ଲା ଖାନ୍, କଣ୍ଠସ୍ୱରରେ ନବକିଶୋର ମହନ୍ତମ ଓ ସରିତା ପରିଚ୍ଛାଙ୍କୁ ନେଇ ସଂଗୀତ ପରିବେଷଣଦଳ ଗଠିତ ହୋଇଥିଲା । ଏହି ନାଟକପାଇଁ କୌଣସି ଟେପ୍‌ରେକର୍ଡର୍ ବା ଆଗରୁ ରେକର୍ଡହୋଇଥିବା ସଂଗୀତ ଉପଯୋଗ କରାଯାଇ ନଥିଲା ।

ସେ ବର୍ଷର ଲୋକନାଟକ ମହୋତ୍ସବର ଶେଷରାତିରେ ଭୁଖା ମଞ୍ଚସ୍ଥ ହେବାର କାର୍ଯ୍ୟକ୍ରମ ଥାଏ । ସେହି ରାତିରେ ହିଁ ପୁରସ୍କାର ବିତରଣ ଉତ୍ସବମାନେ, ପରୀକ୍ଷା ଯେଉଁଦିନ ଫଳମଧ ସେହିଦିନ । ଆମ ଆଗରୁ ବରଗଡର ସୌଖୀନ କଳାକାର ସଂଘର ପ୍ରମୋଦ ତ୍ରିପାଠୀଙ୍କ ରଚିତ 'ଶୁଣ ପରୀକ୍ଷ ଦଣ୍ଡଧାରୀ' ନାଟକଟି ସଫଳତାର ସହ ଅଭିନୀତ ହୋଇଥିଲା । ଏଥର ଗାଡିମଟର ନଧରି ସମସ୍ତେ ରେଳଯୋଗେ ଯିବାର ବ୍ୟବସ୍ଥା ହେଲା । ମଞ୍ଚସଜ୍ଜାପାଇଁ ବନ୍ଧୁ ଅଶୋକ ମିଶ୍ର ଓ ଚିତ୍ରସେନ ମିଶ୍ର ଆବଶ୍ୟକୀୟ ସାମଗ୍ରୀସହ ପ୍ରସ୍ତୁତ ହୋଇଗଲେ । ଅଏଁଠାର ମାଟିଘର, ତା ପଛକୁ ଗାଁକୁ ଲମ୍ବି ଯାଇଥିବା ରାସ୍ତା, ଘରଉପରେ ବିରାଟ ବରଗଛର କିଛିଡାଳ, ଓଦାଲୁଗା ଶୁଖାଇବା ପାଇଁ ଲମ୍ବି ଯାଇଥିବା ତାର, କଖାରୁ, ଜହ୍ନିର ଶୁଖିଲା ଲହ ଏମିତିଥିଲା ମଞ୍ଚଦୃଶ୍ୟ । ସମସ୍ତ କଳାକାରମାନଙ୍କୁ ନେଇ ରେଳ ପହଞ୍ଚିଲା ରାଉରକେଲା ଷ୍ଟେସନରେ, ପରେ ଟେମ୍ପୋଯୋଗେ ସେକ୍ଟର୍ ଚାରିର ସୋସିଆଲ ହଲ୍, ଯେଉଁଠି ବିଶ୍ରାମପାଇଁ ଜାଗା ଦିଆଯାଇଥିଲା । ନିତ୍ୟକର୍ମ ଓ ଭୋଜନ, ବିଶ୍ରାମପରେ ସିଟିଂ ରିହାର୍ସାଲରେ ଶେଷ ସ୍ପର୍ଶ ସରିତାଙ୍କ କଣ୍ଠରେ ନାଟକର ପ୍ରଥମ ଗୀତ, ପାନିଥି ପତର କୁହୁ କି ନାଇଁ କୁହୁ ଗାଇଲା ବେଳେ ଲକ୍ଷ୍ୟକଲି ମୋ ପାଖରେ ବସିଥିବା ନାଟ୍ୟକାର ମଙ୍ଗଳୁଚରଣ ବିଶ୍ୱାଳଙ୍କ ଆଖି ଲୁହଭର୍ତ୍ତି ହେବାକୁ ଯାଉଥିଲା । କିଛିକ୍ଷଣ ପାଇଁ ସମସ୍ତେ ସ୍ତବ୍ଧ ହୋଇଯାଇଥିଲେ । ମଙ୍ଗଳୁବାବୁ ସାଧାରଣ ଅବସ୍ଥାକୁ ଆସିବାପରେ ରିହାର୍ସାଲ ପାଣି

ପରି ଗଡିଚାଲିଲା ଶେଷ ପର୍ଯ୍ୟନ୍ତ ନିର୍ବିଘ୍ନରେ, ମୁଁ ଏହିକ୍ଷଣରେ ହିଁ ଭୁଖାର ସଫଳତାର ସ୍ୱାଦ ଚାଖିଦେଇଥିଲି । ରିହାର୍ସାଲପରେ ସିଭିକ୍ ସେଣ୍ଟର ଯିବାପାଇଁ ପ୍ରସ୍ତୁତି ଆରମ୍ଭ ହେଲା ପୂର୍ବରୁ ଅଶୋକ ଓ ଚିତ୍ରସେନ ଯାଇ ମଞ୍ଚସଜ୍ଜାରେ ବ୍ୟସ୍ତ ରହିଥିଲେ । ଗୋକୁଳ ପଟେଲ ଶବ୍ଦ ଓ ଆଲୋକ ସାମଗ୍ରୀ ନେଇ ଆଗରୁ ମଞ୍ଚକୁ ପହଞ୍ଚିଯାଇଥିଲେ । ଆଲୋକରେ ଜି.ଏମ୍. କଲେଜ୍‌ର ହରସୁଖଲାଲ୍ ପାର୍‌ମାର୍ ମଧ୍ୟ ରାଜୁଦାଙ୍କ ଅନୁରୋଧରେ ଆମସହ ରାଉରକେଲା ଯାଇଥିଲେ ।

ବିଚାରକ ଆସି ତାଙ୍କ ଆସ୍ଥାନରେ ବସିଲେ, କଳାକାରମାନେ ବେଶଭୂଷା ହୋଇ ଅଭିନୟପାଇଁ ପ୍ରସ୍ତୁତ, ନିର୍ଦ୍ଦେଶକ ରାଜୁଦାଙ୍କ ପୂଜାପାଠପରେ ଘଣ୍ଟି ବାଜିଲା, ପରଦା ଉନ୍ମୁକ୍ତହେଲା, ସରିତାଙ୍କ ଗୀତରୁ ଆରମ୍ଭହେଲା ନାଟକ ଭୁଖା, ପ୍ଲାବିନୀ, ମାନେ କସ୍ତୁରୀର ମଞ୍ଚ ପ୍ରବେଶରୁ ଅଭିନୟର ଶ୍ରୀଗଣେଶ ହେଲା ସମଗ୍ର ପ୍ରେକ୍ଷାଳୟ ଦର୍ଶକମାନଙ୍କ ଦ୍ୱାରା ପରିପୂର୍ଣ୍ଣ, ଶେଷରାତି ଥିବାରୁ ଆବଶ୍ୟକରୁ ଅଧିକ ଦର୍ଶକ ପ୍ରେକ୍ଷାଳୟରେ ମହଜୁଦ୍ ଥିଲାଭଳି ମନେହେଲା । ପ୍ରଥମ ଦୃଶ୍ୟଟି ଖୁବ୍ ଜମାଣିଆ ଭାବରେ ଶେଷହେଲା । ଏହି ଦୃଶ୍ୟର ଦୁଲଦୁଲି ବାଜା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା, ଦ୍ୱିତୀୟ ଦୃଶ୍ୟରେ ମୋର ଉତ୍ତମଙ୍କ ସହ କଥୋପକଥନ ଦୃଶ୍ୟରେ ମୁଁ ଅନୁଭବକଲି ଦର୍ଶକ ମଣ୍ଡଳୀରୁ କିଛି ଦର୍ଶକ ଉସ୍ୱରରେ କଥାବାର୍ତ୍ତା କରିବାର । ମଞ୍ଚରେ ଅଭିନୟ ଅବସ୍ଥାରେ ଥାଇ ମୁଁ ଏ ବିଷୟ ଉତ୍ତମଙ୍କୁ ଇଙ୍ଗିତରେ ଅବଗତକଲି ଏବଂ ଟିକିଏ ଅଧିକ ସ୍ୱରରେ ସଂଳାପ କହିବାପାଇଁ ତାଙ୍କୁ ଜଣେଇ ଦେଲାପରେ ଜାଣିଶୁଣି ଆମେ ଦି'ଜଣ ସେମିତି ଉଚ୍ଚାରିତ କରିବାରୁ ଦର୍ଶକ ମହଲରୁ ଆଉ ପାଟିତୁଣ୍ଡ ଶୁଣାଇଲା ନାହିଁ । ନାଟକପରେ ପଚାରି ବୁଝିଲି, ସେ ପାଟିତୁଣ୍ଡ ଥିଲା ନିର୍ଦ୍ଦିଷ୍ଟ ଦଳର କଳାକାରମାନଙ୍କର, ଯେଉଁମାନେ ଆମ ନାଟକକୁ ଭଣ୍ଡୁର କରିବାର ଚେଷ୍ଟା କରିଥିଲେ । ବିଫଳ ହେବାରୁ ପରେ ଚୁପ୍‌ହୋଇ ବସି ନାଟକ ଦେଖିଲେ ।

ନାଟକ ଠିକ୍ ଗତିରେ ଚାଲିଥିବାବେଳେ ମୁଁ ତୃତୀୟ ଦୃଶ୍ୟପରେ ସମୟ ପଚାରି ବୁଝିଲି, ନାଟକ ସରିବାପାଇଁ ଆଉ ମାତ୍ର ତେରମିନିଟ୍ ବାକି, ଏକଥା ନିର୍ଦ୍ଦେଶକ ରାଜୁଦାଦାଙ୍କୁ ଜଣାଇବାସତ୍ତ୍ୱେ ସେ ପାଣ୍ଡୁଲିପିଧରି କଳାକାରଙ୍କୁ ସଂଳାପ ଅବଗତ କରାଉଥିଲେ, ଯାହାର କିଛି ଆବଶ୍ୟକତା ନଥିଲା ସେଇ ସମୟରେ । ମୁଁ ଆଗପଛ ନଦେଖି ନାଟକକୁ ସ୍କେଚ୍ ହେବାରୁ ବଞ୍ଚାଇବାପାଇଁ ଉପସ୍ଥିତ ବୁଦ୍ଧି ପ୍ରୟୋଗକରି ବାରୁଦା, ଯେ ହାଡୁ ଭୂମିକାରେ ଅଭିନୟ କରୁଥିଲେ, ତାଙ୍କ ମଞ୍ଚପ୍ରବେଶର ଗାମ୍ଭୀର୍ଯ୍ୟକୁ ଉପଲବ୍ଧିକରି ମୋ କଥାନୁସାରେ, ଅଏଁଠାଦଦା, ଅଏଁଠାଦଦା ବୋଲି ଡାକିଡାକି

ମଞ୍ଚକୁଯାଇ ଅଏଁଠା ସହ ଅଭିନୟ ଆରମ୍ଭ କରିଦେଲେ । ମୁଁ ଜାଣିପାରୁଥାଏ, ଏପରି କରିବାଦ୍ୱାରା ପ୍ରାୟ ଦଶମିନିଟ୍ ବଞ୍ଚାଯାଇପାରିଲା ଏବଂ ଶେଷଦୃଶ୍ୟ ଅର୍ଥାତ୍ ଅଏଁଠାର ମୃତ୍ୟୁ ଦୃଶ୍ୟକୁ ଅଭିନୀତ କରିବାପାଇଁ ଯଥେଷ୍ଟ ସମୟ ମିଳିଗଲା, ଯାହା ନାଟକର କରୁଣାନ୍ତକ ଦୃଶ୍ୟକୁ ସଠିକ୍‌ଭାବରେ ପ୍ରଦର୍ଶିତ କରାଯାଇପାରିବ । ମୋର ଇଙ୍ଗିତରେ କଳାକାରମାନେ ମଧ ଶେଷଦୃଶ୍ୟର ସଂଯୋଜନାପାଇଁ ପ୍ରସ୍ତୁତ ହୋଇଗଲେ, ସରିତାଙ୍କ କଣ୍ଠ ସଂଗୀତରେ ସଠିକ୍ ଲୟରେ ନାଟକର ପରିସମାପ୍ତି ଘଟିଲା ।

ଯେମିତି ପରଦା ପଡିଛି, ବିଚାରକ ଆସନରୁ ଦୌଡିଆସିଲେ ଦୁଃଖୀରାମ ସ୍ୱାଇଁ, ସବୁ କଳାକାରମାନଙ୍କୁ ଲୁହ ଛଳଛଳ ହୋଇ କୁଣ୍ଢେଇ ପକାଇ କହିଲେ, ଆଃ କି ନାଟକ । ସତ୍ୟଜିତ୍ ରାୟଙ୍କ ଚଳଚ୍ଚିତ୍ର ଦେଖିଲା ଭଳିଆ ଲାଗିଲା । ଅନ୍ୟତମ ବିଚାରକ ନାଟ୍ୟକାର ପ୍ରସନ୍ନ ମିଶ୍ର କଳାକାରମାନଙ୍କ ବ୍ୟକ୍ତିଗତ ପରିଚୟ ଜାଣିବାକୁ ଚାହିଁବାରୁ ଆମେ ସମସ୍ତେ ମଞ୍ଚକୁ ଗଲୁ, ମୁଁ ସମ୍ପାଦକଭାବରେ ସବୁ କଳାକାରମାନଙ୍କୁ ପରିଚିତ କରେଇଥିଲି । କିଏ ଅଧ୍ୟାପକ, କିଏ ଓକିଲ, କିଏ ଶିକ୍ଷକ ବୋଲି ଜାଣିବାପରେ ସେମାନେ ବିସ୍ମିତ ହୋଇଥିଲେ । ତାଙ୍କ ଧାରଣାଥିଲା ଏହି ବାଜାବାଲାମାନେ ପେଷାଦାର ବଜନିଆ ଗୋଷ୍ଠୀର ।

ନାଟକ ଶେଷ ହେବାପରେ ମଧ ଅଧିକାଂଶ ଦର୍ଶକ ଉପସ୍ଥିତ ରହିଥିଲେ ପ୍ରତିଯୋଗିତାର ଫଳାଫଳ ଜାଣିବାପାଇଁ ମୁଁ ଆଉ ମଞ୍ଚରେ ନରହି ବାହାରକୁ ଚାଲିଆସିଥିଲି ମନ ଦୁଃଖରେ । ରାଜୁଦା, ନାଟକର ସମୟପ୍ରତି କାହିଁକି ସଚେତନ ହେଲେନାହିଁ, ସେ ଚିନ୍ତାରେ ମୁଁ ମନେମନେ କ୍ଷୋଭ ପ୍ରକାଶ କରୁଥିଲି । ମୁଁ ଏକା ଗେଟ୍ ପାଖରେ ଠିଆହେବା ଦେଖି ରାଉରକେଲାର କିଛି ନାଟୁଆ ବନ୍ଧୁ ମୋ'ପାଖକୁ ଆସି କହିଲେ, ନାଟକଟି ଖୁବ୍ ଭଲଲାଗିଲା, ହେଲେ ଆପଣଙ୍କ ମୁହଁରେ ଓଡ଼ିଆ ଭାଷାର ସଂଳାପ ଦେଇଥିଲେ ଭଲ ହୋଇଥାନ୍ତା । ମୁଁ ତାଙ୍କୁ କହିଥିଲି ଆଶ୍ଚର୍ଯ୍ୟ, ମୁଁ ନିଜେ ଜଣେ ଅଧ୍ୟାପକ, ଲୋକସଂସ୍କୃତି ବାବଦରେ ରଚିରଖିଛି, ମୋର ଭାଷା ସମ୍ବଲପୁରୀ ଭାଷା, ଅସୀମ କାହିଁକି ସମ୍ବଲପୁରୀ କହିବନି । ବରଂ ସମ୍ବଲପୁରୀ ଭାଷାରେ ସଂଳାପମାନ କହି ଏ ନାଟକ ମାଧ୍ୟମରେ ଭାଷାର ମର୍ଯ୍ୟାଦା ବୃଦ୍ଧି କରିଛି । ଆମ ଅଞ୍ଚଳ ଏକ ପଛୁଆ ଅଞ୍ଚଳ, ଆମେ ଯେପରି ଅଶିକ୍ଷିତ, ଏଇ ଧାରଣା କାହିଁକି ତାଙ୍କ ମନଭିତରେ ରହିଛି, ମୁଁ ବୁଝିପାରି ନଥିଲି । ସେଇ ମୁହୂର୍ତ୍ତରେ ହିଁ ମୁଁ ମନେମନେ ସଙ୍କଳ୍ପ ନେଇଥିଲି, ଖୁବ୍ ଶୀଘ୍ର ସମ୍ବଲପୁରୀ ଲୋକଗୀତ ଉପରେ ମୁଁ ଗବେଷଣା କାମ ଆରମ୍ଭ କରିବି ।

ପୁରସ୍କାର ବିତରଣୀ ଆରମ୍ଭ ହେବାର ଥାଏ, ମୁଁ ପ୍ରେକ୍ଷାଳୟ ଭିତରକୁ ନଯାଇ ସିଭିକ୍ ସେଣ୍ଟର ବାହାରେ ଥିବା ଲୁହାଗେଟ୍ ପାଖରେ ଚୌକିଟାରେ ବସିପଡିଲି । ଆମ ଦଳର କିଛିବନ୍ଧୁ ଆସି ମୋତେ ଭିତରକୁ ଯିବାପାଇଁ ଅନୁରୋଧ କଲେ । ମୁଁ ଏଇଠି ଅଛି ବୋଲି କହି ସେଇଠି ବସିରହିଲି । ଟିକିଏ ବିରତି ପରେ ପ୍ରତିଯୋଗିତାର ଫଳାଫଳ ଗୋଟିଏ ପରେ ଗୋଟିଏ ଘୋଷଣା ହେଲା । ଏ ପଟେ ମୋର ସମଗ୍ର ଶରୀର କ୍ରୋଧରେ କମ୍ପୁ ଥିଲା । ସେଇ ଦଶମିନିଟ୍ ଯଦି କାଟି ନଥାନ୍ତି, ତେବେ ନାଟକର ଅବସ୍ଥା କଣ ନ ହୋଇ ଥାନ୍ତା । ନିର୍ଦ୍ଦେଶକ ଯେ ବି ହୁଅନ୍ତୁ, ନାଟକର ସବୁକ୍ଷେତ୍ରର ଅଭିଜ୍ଞତା ରହିବା ଜରୁରୀ । ଆଲୋକ, ଶବ୍ଦ, ସଂଗୀତ, ଅଭିନୟ, ସମୟାନୁବର୍ତ୍ତିତା ସବୁ ନାଟକ ପାଇଁ ନିତାନ୍ତ ଆବଶ୍ୟକ । ପୁରସ୍କାରମାନ ଘୋଷିତ ହେଲା । ଭୁଖା, ପାଂଚୋଟି ପୁରସ୍କାରରେ ମଣ୍ଡିତ ହେଲା । ଶ୍ରେଷ୍ଠ ନିର୍ଦ୍ଦେଶକ ରାଜେନ୍ଦ୍ର ପଣ୍ଡା, ଶ୍ରେଷ୍ଠ ସଂଗୀତ ନିର୍ଦ୍ଦେଶକ ଦ୍ୱାରିକା ନାୟକ, ଦ୍ୱିତୀୟ ଶ୍ରେଷ୍ଠ ଅଭିନେତା ଉତ୍ତମ ବେହେରା, ତୃତୀୟ ଶ୍ରେଷ୍ଠ ଅଭିନେତ୍ରୀ ପ୍ଲାବିନୀ ପାଢ଼ୀ ଓ ଶ୍ରେଷ୍ଠ ଶିଶୁକଳାକାର ମାନସୀ ନନ୍ଦ । ସମସ୍ତେ ଖୁସିରେ ଆତ୍ମ ବିଭୋର ହେବାବେଳେ ମୋର ପୁରସ୍କାରପ୍ରତି ଆଉ ଆଗ୍ରହ ନଥିଲା, ଏପରିକି ମୋ ପୁରସ୍କାର ମଧ୍ୟ ଗ୍ରହଣ କରିବାକୁ ମଞ୍ଚକୁ ଯାଇ ନଥିଲି ।

ପରଦିନ ସକାଳେ ରେଳଯୋଗେ ସମ୍ବଲପୁର ଲେଉଟାଣି ଯାତ୍ରା ସମୟରେ ମଧ୍ୟ ମୁଁ କାହାସହ କଥାବାର୍ତ୍ତା ନକରି ମୋର କ୍ରୋଧକୁ ସର୍ବ ସମ୍ମୁଖରେ ଜାହିର କରୁଥିଲି । ତେବେ ମନର କ୍ରୋଧ ମନମଧ୍ୟରେ ରଖି ସମ୍ବଲପୁରରେ ଭୁଖା ପ୍ରଦର୍ଶନର ଯୋଜନା କରୁଥିଲି । ଭୁଖା ନାଟକ ଆହୁରି ବିସ୍ମୟ ସୃଷ୍ଟି କରିଥାନ୍ତା, ଯଦି ସମୟକୁ ଜଗି ପ୍ରଯୋଜିତ ହୋଇଥାନ୍ତା, ମୁଁ ଆଜିଯାଏଁ ଏଇ ଧାରଣାରେ ପ୍ରତିବଦ୍ଧ । ତଥାପି ଭୁଖା, ସମ୍ବଲପୁରୀ ନାଟକକୁ ନୂଆଁ ଦିଗଦର୍ଶନ ଦେଲା, ସେଇ ସଫଳତା ମୋ ପାଇଁ ଆଶ୍ୱାସନାର ବିଷୟ ।



ରାଉରକେଲାରେ ଭୁଖା ପାଂଚୋଟି ପୁରସ୍କାରରେ ମଣ୍ଡିତ ହେଲା ବୋଲି ନୁହେଁ, ଏହି ନାଟକ ରଚନାରେ ମଧ୍ୟ ଅନେକ ଏଭଳି ଉପାଦାନ ଥିଲା, ଯାହା ଦର୍ଶକମାନଙ୍କୁ ଆକୃଷ୍ଟ କରିଥିଲା । ସମାଜର ଦୁର୍ବଳ ଶ୍ରେଣୀର ଦୁଃଖ, ଦୈନ୍ୟ, ତାଙ୍କ ଦୈନନ୍ଦିନ ଜୀବନର ଯନ୍ତ୍ରଣା, ହସଖୁସି, କଳାପ୍ରତି ପ୍ରତିବଦ୍ଧତା, ସ୍ୱତଃସ୍ଫୂର୍ତ୍ତ ଲୋକସଂଗୀତର ସର୍ଜନଶୀଳତା, ଦାରିଦ୍ର୍ୟ, ହୃଦୟର ଖୋଲାପଣ, ଭାଷାର ଲାଳିତ୍ୟ, ବାଦନକଳାରେ ପରିପକ୍ୱତା ଆଦି ଭୁଖା ନାଟକର ଅଳଙ୍କାରସମ । ଏଥିସହ ଏହାର କାହାଣୀଧର୍ମିତା, ଚରିତ୍ର ଚିତ୍ରଣରେ ବାସ୍ତବପଣ, ଗୋଷ୍ଠୀଗତ ଜୀବନର ସାବଲୀଳତା,

ସ୍ନେହ, ମମତାର ଉତ୍କର୍ଷତା ଆଦି ବିଭବମାନ, ନାଟକଟିକୁ ସାହିତ୍ୟଦୃଷ୍ଟିରୁ ଉଚ୍ଚାଙ୍ଗ ମନେହୁଏ । ନାଟକୀୟ ମୂଲ୍ୟସହ ସାହିତ୍ୟିକ ମୂଲ୍ୟବୋଧ ଥିବାରୁ ଏହାକୁ ଏକ ଯୁଗାନ୍ତକାରୀ ନାଟକ ବୋଲି ଆଖ୍ୟାୟିତ କରାଯାଇଥାଏ । ଏଭଳି ମନ୍ତବ୍ୟ, ମୋ ଅନୁଷ୍ଠାନର ନାଟକ ବୋଲି ମୁଁ ଲେଖୁନାହିଁ, ଓଡ଼ିଶାର ଅନେକ ନାଟକ ଓ ସାହିତ୍ୟ ସମାଲୋଚକକୁ ଭୁଖା ବାବଦରେ ଏଭଳି ମନ୍ତବ୍ୟ ବିଭିନ୍ନ ପ୍ରବନ୍ଧମାନଙ୍କରେ ଉଲ୍ଲେଖ କରିଛନ୍ତି । ମଙ୍ଗଳୁବାବୁ ନିଜେ ତାଙ୍କ ଜୀବନୀ, ହଜିଲା ଦିନ ଗ୍ରନ୍ଥରେ ମଧ୍ୟ ଲେଖିଛନ୍ତି, କେବଳ ଲେଖାପାଇଁ ନୁହେଁ, ଯେଉଁ କଳାକାରମାନେ ବହୁ ପରିଶ୍ରମକରି, ମଞ୍ଚସ୍ଥକରି ଏହାକୁ ପ୍ରାଣବନ୍ତ କରିଛନ୍ତି, ସେମାନେ ହିଁ ଏହି ନାଟକର ସଫଳତାର ଶ୍ରେୟଦାର ।

ରାଉରକେଲାରୁ ଫେରି ସମ୍ବଲପୁରରେ ଭୁଖା ଅଭିନୀତ କରିବାର ଯୋଜନା ହେଲା । ଗଙ୍ଗାଧର ମଣ୍ଡପରେ ନାଟକକରିବା ଖର୍ଚ୍ଚବହୁଳ ହୋଇଥିବାରୁ ଟାଉନ୍ ହାଇସ୍କୁଲର ଖୋଲାମଣ୍ଡପରେ ଏହାକୁ ମଞ୍ଚସ୍ଥ କରିବାର ନିଷ୍ପତ୍ତି ନିଆଗଲା । ପୁଣି ଆଗର ରୋଷକୁ ଭୁଲି ନୂଆଁ ଉତ୍ସାହର ସହ ସମଲେଶ୍ୱରୀ ମନ୍ଦିରରେ ପାଣ୍ଡୁଲିପି ପୂଜା ସମାପନ ପରେ ଟାଉନ୍ ହାଇସ୍କୁଲର ବଡ ପ୍ରକୋଷ୍ଠରେ ରିହାର୍ସାଲର ଶୁଭ ମୁହୁରତ୍ ଦିଆଗଲା । ନାଟକ କରିବାର ଦୁର୍ବାର ଅଭୀପ୍ସା କଳାକାରମାନଙ୍କୁ ଗୋଟିଏ ଡୋରିରେ ଆବଦ୍ଧ କରି ରଖିଥିଲା । ଏକ ପରିବାରତ୍ୱ ସୃଷ୍ଟିର କଳାକାରମାନଙ୍କୁ ଏକୀଭୂତ କରି ରଖିଥିଲା ଏବଂ ଏଥିପାଇଁ ରାଜୁଦାଙ୍କ ପ୍ରୟାସ ଏବଂ ମନୋଭାବ ଅନେକାଂଶରେ ଦାୟୀ ବୋଲି କୁହାଯାଇପାରେ । ବିଶେଷତଃ ତାଙ୍କ ସ୍ନେହୀପଣ, ଆଚରଣରେ ଆନ୍ତରିକତା ପ୍ରତ୍ୟେକ କଳାକାରଙ୍କୁ ସଦାସର୍ବଦା ସତେଜ୍ କରି ରଖିଥିଲା ।

ଭୁଖା ସହିତ ସୌଖୀନ କଳାକାର ସଂଘ ମଧ୍ୟ ପାଞ୍ଚଟି ପୁରସ୍କାର ପାଇଥିଲା । ଆମ ସହ ସମ୍ବଲପୁରର କଂସାରିପଡାର ଧର୍ମାତ୍ମା କଲଚରାଲ୍ ଏସୋସିଏସନ୍ ମଧ୍ୟ ବିନୋଦବାବୁଙ୍କ ଅଲାର୍ ନାଟକ ସେହି ମହୋତ୍ସବରେ ଅଭିନୀତ କରିଥିଲେ । ବରଗଡର ନାଟକ 'ଶୁଣ ପରୀକ୍ଷ ଦଣ୍ଡଧାରୀ' ନାଟକଟି ଶ୍ରେଷ୍ଠ ପ୍ରଯୋଜନା, ବିଭୂତି ପାଢୀ ପୁଣି ଶ୍ରେଷ୍ଠ ଅଭିନେତା, ହରିହର ମିଶ୍ର ଦ୍ୱିତୀୟ ଶ୍ରେଷ୍ଠନିର୍ଦ୍ଦେଶକ, ପ୍ରମୋଦ ତ୍ରିପାଠୀ ଶ୍ରେଷ୍ଠନାଟ୍ୟକାର ଭାବରେ ପୁରସ୍କୃତ ହୋଇଥିଲେ । ଅଲାର୍ ମଧ୍ୟ ଦୁଇଟି ପୁରସ୍କାର ପାଇବା ସହ ସମଗ୍ର ଚଉଦଟି ପୁରସ୍କାର ମଧ୍ୟରୁ ସମ୍ବଲପୁର କେବଳ ଏଗାରଟି ପୁରସ୍କାର ପାଇଥିବାରୁ ଆମେ ସେତେବେଳେ ଗର୍ବ ଅନୁଭବ କରୁଥିଲୁ । ଉତ୍ତମ ଦ୍ୱିତୀୟ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହୋଇଥିବାରୁ ନା ସେ ନା ମୁଁ ତିଳେମାତ୍ର ଦୁଃଖ କରି ନଥିଲୁ, କାରଣ ବିଭୂତିଦାଦା ଓ ସୌଖୀନକୁ ଆମେ ବଡ଼ଭାଇର ସମ୍ମାନ ପ୍ରଦାନ

କରୁଥିଲୁ । ଉଖୀ ନାଟକ ସମ୍ବଲପୁରରେ ମଞ୍ଚସ୍ଥ ହେବା ବେଳୁ ସୃଷ୍ଟି ଓ ସୌଖୀନ ସଂସ୍ଥା ଭିତରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ଆମେ ନାଟକ କଲେ ବିଭୂତି ଦାଦାଙ୍କ ସହ ଅନ୍ୟ କଳାକାରମାନେ ଗାଡିରେ ବରଗଡରୁ ଆସି ଆମ ନାଟକ ଦେଖୁଥିଲେ, ସେମାନେ ନାଟକକଲେ ଆମେ ମଧ୍ୟ ତାଙ୍କ ନାଟକ ଦେଖିବାପାଇଁ ବରଗଡ ଯାଉଥିଲୁ । ଏହି ପରମ୍ପରା ବହୁବର୍ଷ ପର୍ଯ୍ୟନ୍ତ ଜାରି ରହିଥିଲା ।

ତେୟାଅଶୀରେ ସମ୍ବଲପୁରୀ ନାଟକ କ୍ଷେତ୍ରରେ ଆହୁରି ଏଭଳି ଦୁଇତିନୋଟି ଘଟଣା ଘଟିଲା, ଯାହା ଉଲ୍ଲେଖ ନକଲେ ଅସମ୍ପୂର୍ଣ୍ଣ ଭଳି ଜଣାପଡିବ । ସେଗୁଡିକ ହେଲା, ମଙ୍ଗଳୁଚରଣଙ୍କ ରଚିତ ଦ୍ୱିତୀୟ ସମ୍ବଲପୁରୀ ନାଟକ ଉଡ୍‌ଲାପତର୍ ବୁଡ୍‌ଲାଡଙ୍ଗା, ସମ୍ବଲପୁରର ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦ ତରଫରୁ ଦେବଗଡ ପ୍ରତିଯୋଗିତାରେ ମଞ୍ଚସ୍ଥ ହେବା, ବ୍ରଜେନ୍ଦ୍ର ନାୟକଙ୍କ ନେତୃତ୍ୱରେ କଖଗ ଅନୁଷ୍ଠାନ ଜନ୍ମନେଇ ତା'ରଚିତ ଉଲ୍‌ଟା ପୁର୍ଥୀ ନାଟ୍ୟକଳା ପରିଷଦର ପ୍ରତିଯୋଗିତାରେ ଅଭିନୀତ ହେବା ଏବଂ ବହୁମୁଖୀ ଶ୍ରମ ମଙ୍ଗଳ କେନ୍ଦ୍ର ତରଫରୁ ଏହ୍ଲାବାଦ ନାଟକ ପ୍ରତିଯୋଗିତାରେ ପ୍ରସନ୍ନ ସାହୁଙ୍କ ରଚନା ସସେମୀରା ମଞ୍ଚାୟନ ହେବା ଆଦି ଘଟଣାମାନ ସମ୍ବଲପୁରୀ ନାଟକକୁ ଅତିଶୀଘ୍ର ପ୍ରାଦେଶିକ ତଥା ଜାତୀୟସ୍ତରକୁ ନେବାରେ ସହାୟକ ହୋଇଥିଲା । ସମ୍ବଲପୁରୀ ଭାଷାରେ ଅଧିକରୁ ଅଧିକ ନାଟ୍ୟକାର ଜନ୍ମନେବା ଓଡ଼ିଶାର ଅନେକ ଲେଖକଙ୍କୁ ଏ କ୍ଷେତ୍ରରେ ଆଗଭର ହେବାପାଇଁ ଆକର୍ଷିତ କରିଥିଲା ।

ଟାଉନ୍ ହାଇସ୍କୁଲ ଖୋଲା ମଞ୍ଚକୁ ବହୁକଷ୍ଟରେ ସଜ୍ଜିତକରି ଚୌରାଅଶୀ ମାର୍ଚ୍ଚ ମାସରେ ଦୁଇରାତି ପାଇଁ ଭୁଖା ସଫଳତାର ସହ ମଞ୍ଚସ୍ଥ ହେଲା । ପଞ୍ଚାନନ ମିଶ୍ର ସଦ୍ୟ ସସେମିରା ନାଟକରେ ଅଭିନୟ କରି ଏହ୍ଲାବାଦରେ ଜାତୀୟ ସ୍ତରରେ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହୋଇ ଫେରିଥିବାରୁ ସୃଷ୍ଟିର ସଭାପତି ବାରୁଦାଙ୍କ ସହ ଆଲୋଚନା କରି ତାଙ୍କୁ ଉଦ୍‌ଘାଟକଭାବରେ ନିମନ୍ତ୍ରିତ କରିଥିଲୁ । ସେ ଆନନ୍ଦର ସହ ଆସି ଦୁଇରାତି ଧରି ଅନୁଷ୍ଠିତ ହେବାକୁଥିବା ଭୁଖା ନାଟକକୁ ଉଦ୍‌ଘାଟନ କରିଥିଲେ । ସମ୍ବଲପୁରର ନାଟ୍ୟପ୍ରେମୀ ଦର୍ଶକ ନାଟକକୁ ଗମ୍ଭୀରତାର ସହ ଗ୍ରହଣ କରିଥିଲେ । ବୌଦ୍ଧିକ ମହଲରେ ମଧ୍ୟ ଏହା ବହୁଦିନଧରି ସହରର ଚର୍ଚ୍ଚାରେ ରହିଥିଲା । ଉତ୍ତମ, ରଣଜିତ, ପ୍ଲାବିନୀ, ବାରୁଦା ଆଦି ସମସ୍ତ କଳାକାର ମାନଙ୍କ ଜୀବନ୍ତ ଅଭିନୟରେ ଭୁଖା ରସାଣିତ ହୋଇଥିଲା । ଆମେ ଏହି ନାଟକ ଅଭିନୀତକଲା ପରେପରେ ଭୁଖା ଦେବଗଡ, ବରଗଡ, ବଲାଙ୍ଗୀର, ଖରିଆର୍ ଆଦି ସ୍ଥାନରେ ମଧ୍ୟ ବିଭିନ୍ନ ଅନୁଷ୍ଠାନ ତରଫରୁ ମଞ୍ଚସ୍ଥ

ହୋଇଗଲା । ମୁଁ ନିଜେ ଦେବଗଡ, ବରଗଡ ଆଦି ଅଞ୍ଚଳକୁ ନିଜ ଆଗ୍ରହରେ ଦେଖିବାକୁ ଯାଇଥିଲି । ବରଗଡରେ ଉତ୍କଳ ଗୌରବ ସଂଘର ପୃଥ୍ୱୀରାଜ ନାୟକ ଏବଂ ଦେବଗଡରେ ବରିଷ୍ଠ ଅଭିନେତା ହେମନ୍ତ ମହାପାତ୍ର, ଅଏଁଠା ଏବଂ ପ୍ରଦୀପ ପଣ୍ଡା ହାଡୁ ଚରିତ୍ରରେ ଅଭିନୟ କରିଥିଲେ । ପ୍ରଦୀପ ସହ ସେଠାରେ ହିଁ ପ୍ରଥମ ଦେଖା ହୋଇଥିଲା ।

ଭୁଖାର ସଫଳତା ମୋତେ ବ୍ୟକ୍ତିଗତଭାବରେ ବହୁଗୁଣରେ ପ୍ରୋତ୍ସାହିତ କରିଥିଲା । ଏମିତି ଲାଗୁଥିଲା, ମୁଁ ବର୍ତ୍ତମାନ ପାହାଡର ସେହି ଶୀର୍ଷସ୍ଥାନକୁ ପହଞ୍ଚି ଯାଇଛି, ଯେଉଁଠି ଦେଖାଗଲା ଏକ ସବୁଜ ଉପତ୍ୟକା, ମୋତେ ଏଇଠି କିଛିକ୍ଷଣ ରହିବାକୁ ପଡିବ, ସେହି ଉପତ୍ୟକାକୁ ଘେରି ବଣଜଙ୍ଗଲ ସହ ମିତ୍ରତା ବାନ୍ଧିବାକୁ ପଡିବ, ବନଫୁଲର ମହକକୁ ଆଘ୍ରାଣକରି ତାକୁ ଆହୁରି ଦିଗନ୍ତ ଆକାଶ ପର୍ଯ୍ୟନ୍ତ ପରିବ୍ୟାପ୍ତ କରିବାକୁ ପଡିବ, ସେହିଠାରୁ ତଳକୁ ବହିଯାଉଥିବା ନିର୍ଝରର ସଂଗୀତକୁ ପବନର ଗତି ସହ ଯୋଡିଦେବାପାଇଁ ପଡିବ, ଖୁଦୁମ୍ ଖୁଦୁମ୍ ଡିଆଁ ମାରୁଥିବା ହରିଣୀର ଉନ୍ମାଦମୟ ନୃତ୍ୟଶୈଳୀକୁ ପୃଥିବୀର କୋଣ ଅନୁକୋଣକୁ ନେଇଯିବାପାଇଁ ପଡିବ । ବଣରମଲ୍ଲୀ, ଆଉ ବଣରେ ପଡିବାକୁ ଦିଆଯିବ ନାହିଁ, ତାକୁ ଗଣର ମଲ୍ଲୀ ଭାବରେ ପରିଚିତ କରିବାକୁ ପଡିବ ।

ଚୌରାଅଶୀ ଶେଷଆଡକୁ ସୃଷ୍ଟି ଆୟୋଜନରେ ସ୍ଥାନୀୟ ଗୋପାଳଜୀ ମଠ ପ୍ରାଙ୍ଗଣରେ ନିଖିଳ ଓଡ଼ିଶା ନାଟ୍ୟଶିଳ୍ପୀ ସମାରୋହ ମହାଆଡମ୍ବର ସହ ଆୟୋଜିତ ହୋଇଥିଲା । ଏଥି ପୂର୍ବରୁ ଭୁବନେଶ୍ୱରରୁ ଡାକରାପାଇ ସେଇଠାରେ ନାଟ୍ୟଶିଳ୍ପୀ ଧୀର ମଲ୍ଲିକଙ୍କ ନେତୃତ୍ୱରେ ସାରା ଓଡ଼ିଶା ଥିଏଟର୍ କୋଅର୍ଡିନେସନ୍ କମିଟି ଗଠିତ ହୋଇଥିଲା, ଯେଉଁଥିରେ ମୋତେ ସମ୍ବଲପୁରର ପ୍ରତିନିଧି ଭାବରେ ମନୋନୀତ କରାଯାଇଥିଲା ଏବେ ଯାହା ଓଡ଼ିଶା ନାଟ୍ୟ ସଂଘ ଅଛି, ଏ ଅନୁଷ୍ଠାନ ଥିଲା ତା'ର ଭ୍ରୂଣ । ସେହି ସୁଯୋଗରେ ମୁଁ ସମ୍ବଲପୁରରେ ଏହାର ପ୍ରଥମ ଅଧିବେଶନ ଆୟୋଜନ କରାଯିବାର ପ୍ରସ୍ତାବକୁ ମଂଜୁରି ମିଳିଥିଲା । ଏହି ସମାରୋହରେ ଅସୀମ ବସୁ, ଧୀର ମଲ୍ଲିକ, ରତିରଂଜନ ମିଶ୍ର, ପୂର୍ଣ୍ଣଚନ୍ଦ୍ର ମଲ୍ଲିକ ପ୍ରମୁଖ ଯୋଗଦାନ କରିଥିଲେ । ଏହି ଅବସରରେ ସାରସ୍ୱତ ପୁସ୍ତକ ଭଣ୍ଡାରର ମାଲିକ ନିର୍ମଳଚନ୍ଦ୍ର ପାଢ଼ୀଙ୍କ ଦ୍ୱାରା ପ୍ରକାଶିତ ଭୁଖା ପୁସ୍ତକକୁ ଆମ ପୃଷ୍ଠପୋଷକ ଯୋଗେଶଚନ୍ଦ୍ର ମିଶ୍ର, ମଙ୍ଗଲୁ ବାବୁ, ରାଜୁଦା, ନିର୍ମଳ ପାଢ଼ୀ, ମୁରାରୀ ମିଶ୍ର ଗହଣରେ ଥାଇ ଉନ୍ମୋଚନ କରିଥିଲେ । ଏହି ସମାରୋହରେ ଓଡ଼ିଶାର ବହୁବିଭିନ୍ନ ଅଞ୍ଚଳରୁ ଶତାଧିକ ନାଟ୍ୟଶିଳ୍ପୀ ଯୋଗଦାନ କରିଥିଲେ ।

ଏଥି ପୂର୍ବରୁ ମୁଁ ବ୍ୟକ୍ତିଗତ ଭାବରେ ନିର୍ମଳବାବୁଙ୍କ ଦୋକାନକୁ ଯାଇ ଭୁଖାକୁ ପ୍ରକାଶ କରିବାପାଇଁ ଅନୁରୋଧ କରିଥିଲି । ଏହାର ରଚୟିତା ମଙ୍ଗଳୁଚରଣ ବିଶ୍ୱାଳ ବୋଲି ଜାଣିବାପରେ ସେ ସଙ୍ଗେସଙ୍ଗେ ହଁ ଭରିଥିଲେ । ତାଙ୍କ ନାମ ଯେପରି, ହୃଦୟ ମଧ୍ୟ ଠିକ୍ ସେହିପରି । ପରେପରେ ମୁଁ ଭୁଖାକୁ ପ୍ରକାଶନ ଉପଯୋଗୀ କରିବାର ପ୍ରସ୍ତୁତି ଆରମ୍ଭ କରିଦେଲି । ନିଜ ହାତରେ ପାଣ୍ଡୁଲିପିକୁ ସୁନ୍ଦରଭାବରେ ସଂଳାପ ଉଚ୍ଚାରଣ ଅନୁସାରେ ସ୍ପଷ୍ଟଭାବରେ ଲେଖି ଅତିଶୀଘ୍ର ମଙ୍ଗଳୁବାବୁଙ୍କ ପାଖକୁଯାଇ ତାଙ୍କ ମୁଖବନ୍ଧ ଏବଂ ବନ୍ଧୁ ନାଟ୍ୟକାର ପ୍ରମୋଦ ତ୍ରିପାଠୀଙ୍କ ନିଜସ୍ୱ ମତ ଲେଖା ସଂଗ୍ରହ କରି ନିର୍ମଳବାବୁଙ୍କ ହାତରେ ସମର୍ପି ଦେଲି ଏବଂ ଏ ବହିର ଗୁରୁତ୍ୱ ସମ୍ପର୍କରେ ତାଙ୍କସହ ଆଲୋଚନା କରିଥିଲି । ସେ ମୋର ଆଗ୍ରହ ଓ ଉତ୍କଣ୍ଠାକୁ ସମ୍ମାନଦେଇ ବହିଟିକୁ ଅତିଶୀଘ୍ର ଲୋକଲୋଚନକୁ ଆଣିବାର ପ୍ରତିଶ୍ରୁତି ଦେଇଥିଲେ । ପରେପରେ ମୁଁ ଏହି ପୁସ୍ତକର ସବୁଯାକ ପ୍ରୁଫ୍ ନିଜେ ଦେଖିଥିଲି । ଏତେ ସବୁ ଯୋଜନା ଭିତରେ ମୋର ଲକ୍ଷ୍ୟ ଥିଲା, ଭୁଖା ଭଳି ନାଟ୍ୟପୁସ୍ତକ ଓଡ଼ିଶାର ସମସ୍ତ ନାଟ୍ୟଶିକ୍ଷୀମାନଙ୍କ ଗହଣରେ ଉନ୍ମୋଚିତ ହେଉ । ସେହି ଲକ୍ଷ୍ୟରେ ସମ୍ବଲପୁରରେ ନାଟ୍ୟଶିକ୍ଷୀ ସମାରୋହର ଆୟୋଜନ । ଠିକ୍ ମୋ ଯୋଜନା ମୁତାବକ ଘଟଣାମାନ ଘଟିବାକୁ ଲାଗିଲା । ଏଥିସହ ଭୁଖା ନାଟକକୁ ନେଇ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଯୋଜନା ମଧ୍ୟ କାର୍ଯ୍ୟକାରୀ ହୋଇଥିଲା ସେହି ଚୌରାଅଶୀ ଶେଷ ଭାଗରେ । ଆକାଶବାଣୀ ସମ୍ବଲପୁରର ନାଟକ ବିଭାଗରେ ବରାହ ମହାନ୍ତି କାର୍ଯ୍ୟକ୍ରମ ନିଷ୍ପାଦକ ଥାଆନ୍ତି । ତାଙ୍କ ସହ ଆଲୋଚନା କରି ଭୁଖା ନାଟକକୁ ଏକ ଘଣ୍ଟାର ନାଟକ ଭାବରେ ବେତାର ନାଟ୍ୟରୂପ ପ୍ରଦାନ କରି ତାଙ୍କପାଖରେ ନେଇ ଦେଇଦେଲି । ସେ ଅତିଶୀଘ୍ର ତାର ପ୍ରକ୍ରିୟା ଆରମ୍ଭକରି ଆମକୁ ରେକର୍ଡିଂ ତାରିଖ ଜଣେଇଦେଲେ । ପୁଣି ସମସ୍ତଙ୍କୁ ଏକଜୁଟ କରି ଭୁଖାର ବେତାରନାଟ୍ୟ ରୂପର ପାଣ୍ଡୁଲିପି ଅନୁସାରେ ରିହାର୍ସାଲ କଲୁ । ସମସ୍ତ କଳାକାରମାନେ ଆନ୍ତରିକତାର ସହ ସହଯୋଗ କଲେ । ରେକର୍ଡିଂ ଭଲ ଭାବରେ ସମାପନ ହେଲା, ଏହା ଆକାଶବାଣୀ ସମ୍ବଲପୁରର ସର୍ବପ୍ରଥମ ଦଳଗତ ପ୍ରଯୋଜିତ ପୂର୍ଣ୍ଣାଙ୍ଗ ସମ୍ବଲପୁରୀ ନାଟକର ମର୍ଯ୍ୟାଦା ପ୍ରାପ୍ତହେଲା । ଡିସେମ୍ବର ଶେଷ ସପ୍ତାହରେ ଭୁଖା ବେତାର ନାଟକ ଭାବରେ ପ୍ରସାରିତ ହେଲା, ଅଗଣିତ ଶ୍ରୋତା ଏହି ନାଟକକୁ ଶୁଣି ତାକୁ ଉପଭୋଗ କରିଥିଲେ ।

ଭୁଖା ମଞ୍ଚରେ ଦେଖାଗଲା, ପୁସ୍ତକ ଭାବରେ ପ୍ରକାଶିତ ହେଲା, ରେଡିଓ ପ୍ରସାରିତ ହେଲା, ହେଲେ ସମସ୍ତଙ୍କର ଅଜାଣତରେ ମୁଁ ଏଗାରମାସର ଦରମା ନପାଇ ଶେଷରେ ବିରକ୍ତରେ ଡା. ଝସକେତନ ସାହୁ ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ

ପଦବୀରୁ ଇସ୍ତଫା ଦେଇ ଥିଲି ସେପ୍ଟେମ୍ବର ମାସରୁ । ନାଟକରେ ଅଏଁଠା ସିନା ଭୋକରେ ପ୍ରାଣ ଛାଡିଦେଲା, ମୋର ସୁନ୍ଦର ପ୍ରେମମୟ ଜୀବନକୁ ମୁଁ ତ ଏତେ ସହଜରେ ମୂର୍ଚ୍ଛି ଦେଇପାରିବି ନାହିଁ । ମୁଁ ବଞ୍ଚିବି, ଅନ୍ୟକୁ ବି ବଂଚେଇବି, ମୁଁ ହସିବି, ଅନ୍ୟର ମୁହଁରେ ହସ ଦେଖିବି, ଏଇ ସଙ୍କଳ୍ପରେ ପରମାଣପୁର କଲେଜ୍‌ରୁ ଆପେଆପେ ଇସ୍ତଫା ଦେଇ ନୂଆଁ କଲେଜ୍‌ର ସଂଧାନରେ ରହିଲି । ପାହାଡର ଉପତ୍ୟକାରେ ଛିଡ଼ାହୋଇ ଅନୁଭବ କରୁଥିଲି ପାଦତଳର ଶୂନ୍ୟତାକୁ, ଉର୍ଦ୍ଧ୍ୱବାହୁରେ ନିଜକୁ ସମର୍ପିଦେଲି ବିଶାଳ ଆକାଶର ବକ୍ଷ ନିକଟରେ, ଅସ୍ତରାଗର ରଙ୍ଗ ଆକାଶକୁ ରଙ୍ଗୀନ୍ କରିଦେଉଥିଲା, ସେତେବେଳକୁ ନବ୍ୟଅତିଥିର କୁଆଁକୁଆଁ ସଂଗୀତରେ ମନକୁ ଆଚ୍ଛନ୍ନ କରିପକାଇଲା । ପୁତ୍ରସନ୍ତାନର ଆଗମନରେ ମୋ ପରିବାର ଖୁସିରେ ଉଚ୍ଛନ୍ନ ହେଲାବେଳକୁ ମୁଁ ଆକାଶ ବକ୍ଷରୁ କଳାବାଦଲ ସବୁକୁ ହାତରେ ସଫାକରି ତାର ନୀଳିମାକୁ ସାଉଁଟିବାରେ ବ୍ୟସ୍ତଥିଲି ।



**ଭୁ**ଖାର ରିହାର୍ସାଲ ଚାଲିଥିବା ସମୟରେ ହିଁ ପୁଅ ପଞ୍ଚମ୍‌ର ଜନ୍ମ । ଫାଟକସ୍ଥିତ ଶ୍ୱଶୁରଙ୍କ ଘରେ ଥାଉଁ ଆମେ । ଫେବୃଆରୀ କୋଡିଏ ତାରିଖ ମଧରାତ୍ରରେ ହିଁ ସଦର ଡାକ୍ତରଖାନାରେ ଭର୍ତ୍ତି, ପହପହରୁ ଧନୁପାଲି ଘରକୁ ଏ ଖବର ସାଇକଲ୍‌ରେ ଯାଇ ଖବର ଦେଉଁ ଦେଉଁ ଜଣାଗଲା ପୁଅଟିଏ ହୋଇଛି । ଯେତେ କ୍ଷିପ୍ର ହୋଇପାରେ ସାଇକଲମାଡି ଡାକ୍ତରଖାନା ପହଞ୍ଚି ହଠାତ୍ ଭିତରକୁ ଯାଇ ସଦ୍ୟଜାତ ସନ୍ତାନକୁ ଦେଖିବାପାଇଁ କେଜାଣି କାହିଁକି ଭରସା ପାଇ ନଥିଲି, ପାଚେରି ବାହାରେ ଥାଇ ବହେ କାନ୍ଦିପକାଇଥିଲି ଅତୀତ ଘଟଣା ସବୁକୁ ମନେ ପକାଇ । ଘରଲୋକ ମୋତେ ବୁଝାଇ କହୁଥାନ୍ତି, ହେଇ ଶୁଣ୍, ପୁଅର କାନ୍ଦ ଶୁଭୁଚି, ମୋତେ ଲାଗିଲା କେହିଜଣେ ଭୈରବୀର ସ୍ୱରରେ ରାଗଟିଏ ଛୁଟେଇ ଦେଇଛି ଯେମିତି ପଞ୍ଚମତାନରେ ଯେବେ ଡିସ୍‌ଚାର୍ଜ୍ ହୋଇ ରିକ୍ସାରେ ଘରକୁ ଫେରୁଥିଲେ ମାଁ ପୁଅ ଦି'ଜଣ, ଡାକ୍ତରଖାନାର ମୁଖ୍ୟଦ୍ୱାରରେ ଦେଖା ହେଲା ଜି. ଏମ. କଲେଜ୍ ସାମ୍ନା ପ୍ରୀତି ହୋଟେଲର ମାଲିକଙ୍କ ସହ । ମୁଁ ତାଙ୍କୁ ପୁଅହେବାର ସମ୍ବାଦ ଯେମିତି ଦେଇଛି, ସେ କହିଲେ, ପଞ୍ଚମୀ ତିଥିରେ ଜନ୍ମ ହୋଇଛି, ହନୁମାନଙ୍କ ଦିନ, ଶୁଭଦିନ । ସାଙ୍ଗେସାଙ୍ଗେ ମୋ ତୁଣ୍ଡରୁ ବାହାରିପଡିଥିଲା, ତା ହେଲେ ଯାର ନାଁ ପଞ୍ଚମ ରହିଲା । ପରେ ଆଉ ଏକ ବ୍ୟକ୍ତିଗତ ରଚି, ସେଇ ଡାକନାମକୁ ସମର୍ଥନ କଲା । ମୋ ପ୍ରିୟ ସଂଗୀତ ନିର୍ଦ୍ଦେଶକ ହେଉଛନ୍ତି ଆର୍.ଡି. ବର୍ମନ୍, ଯାହାଙ୍କ ଡାକନାମ ବି ପଞ୍ଚମ୍ ।

ଟାଉନ୍ ହାଇସ୍କୁଲରେ ଭୁଖା ନାଟକ ମଞ୍ଚସ୍ଥ ହେଲାବେଳେ, ସେ ମା' କୋଳରେ ଥାଇ ଦର୍ଶକ ମଣ୍ଡଳୀରେ ମହଜୁଦ୍ ଥିଲା । ପୁତ୍ରସନ୍ତାନ ପାଇ ଜୀବନ ନାଟକ ଯେଭଳି ଉଛନ୍ନ, ଭୁଖାରେ ଅଭିନୟଗତ ତଥା ସାଂଗଠନିକ ସଫଳତାପାଇ ନାଟ୍ୟଜୀବନ ସେହିପରି ଆନନ୍ଦିତ । ତା'ପୂର୍ବରୁ ନନ୍ଦପଡାର ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦ ପାଇଁ ମଙ୍ଗଳୁଚରଣ ବିଶ୍ୱାଳଙ୍କ ଘରକୁଯାଇ ବିଷୟବସ୍ତୁ, ଚରିତ୍ର ଆଦି ଆଲୋଚନା କରି ନୂଆଁ ପାଣ୍ଡୁଲିପିଟିଏ ଲେଖାଇ ଆଣି ଯେତେବେଳେ ସନ୍ତୋଷ, ସଂଜୀବ ମାଝି, ମୋହିନୀ, ଦେବେଶ୍ ଆଦିଙ୍କ ମେଳରେ ପାଠକଲି, ଦୁର୍ବଳ ଲେଖା ବୋଲି ସମସ୍ତେ ମନେ କରୁଥିଲେ । ମୁଁ ସନାତନ ସନାତନ ନାଟକର ସଫଳତାପରେ ହୁଏତ ସେମାନେ ମଧ୍ୟ ଆଉ ବିଫଳତାକୁ ସାମ୍ନା କରିବାପାଇଁ ପ୍ରସ୍ତୁତ ନଥିଲେ । ମୁଁ ତାଙ୍କୁ ନିର୍ଦ୍ଦେଶକ ଭାବରେ ବୁଝାଇ କହିଥିଲି, ଏଇ ନାଟକ ଦିନେ ତମ ଦଳୀୟ ସଫଳତାର ମେରୁଦଣ୍ଡ ସାଜିବ । ମୋର ପ୍ରତିଶ୍ରୁତି ହିଁ ତାଙ୍କ ଭିତରେ ଏହି ନାଟକ ପ୍ରତି ଆସ୍ଥା ଜମାଟ ବାନ୍ଧିଦେଲା । ଉଭୟ ହୀରାକୁଦ ଇଣ୍ଡଲ କ୍ଲବ ଓ ଦେବଗଡ ନାଟ୍ୟକଳା ସଂସଦର କ୍ଷୁଦ୍ରନାଟକ ପ୍ରତିଯୋଗିତା ପାଇଁ 'ଉଡଲା ପତ୍‌ର ବୁଡଲା ଡ଼ଙ୍ଗା' ନାଟକ ପ୍ରସ୍ତୁତ ହେବାରେ ଲାଗିଲା ।

ଉଡଲାପତର୍ ବୁଡଲାଡ଼ଙ୍ଗା ନାଟକଟିର ମୂଳବିନ୍ଦୁ, ଆମଘର ପାଖରେ ଝୋପଡି ଘର ତିଆରି ଏକ ରିକ୍ସାବାଲା ଓ ତା'ପରିବାରର ନିତ୍ୟଜୀବନ ଉପରେ ଆଧାରିତ ଏକ ସମ୍ବଲପୁରୀ ନାଟକ, ଯାହାର କଥାବସ୍ତୁ ଆମ ସମାଜରେ ରହିଥିବା ଶ୍ରେଣୀ ସଂଘର୍ଷ ଉପରେ ଆଧାରିତ । ମଧ୍ୟବିତ୍ତ, ନିମ୍ନ ମଧ୍ୟବିତ୍ତ ଏବଂ ନିମ୍ନଶ୍ରେଣୀର ଲୋକମାନଙ୍କ ସମସ୍ୟା ବିଜଡିତ କାହାଣୀ ଏହି ନାଟକର ବୀଜ । ଆମ ଘରପାଖରେ ରହିଥିବା ସେହି ରିକ୍ସାବାଲାକୁ ଦିନେ ସେହି ଜାଗା ଛାଡିବାପାଇଁ ପଡିଲା ଅନ୍ୟ ଅଞ୍ଚଳକୁ, କାରଣ ସେ ଡିହ ଯାହାର ଥିଲା, ସେ ଭଦ୍ରବ୍ୟକ୍ତି ତାଙ୍କ ଝିଅ ବାହାଘର ପାଇଁ ସେହି ଡିହରୁ ଖଣ୍ଡେ ବିକ୍ରି କରିବାପାଇଁ ଇଚ୍ଛାପ୍ରକାଶ କରିଥିଲେ । ଟଙ୍କା ଅଭାବରୁ ସେ ଡିହମାଲିକଙ୍କୁ ସେ ଖଣ୍ଡକ ବିକ୍ରି କରିବାପାଇଁ ପଡିଲା । ଏହି ଘଟଣା ମୋ ଆଖି ସାମ୍ନାରେ ଘଟିଥିବାରୁ ମୁଁ ସେ ରିକ୍ସାବାଲାର ଅସ୍ଥାୟୀ କୁଡିଆକୁ ଭାଙ୍ଗିବାର ଦୃଶ୍ୟ ମୋ ଆଖିକୁ ଭିଜେଇଦେଇଥିଲା । ଏହି ବିନ୍ଦୁରୁ ସୃଷ୍ଟି ହୋଇଥିଲା ଉଡଲାପତର୍ ବୁଡ଼ଲାଡଙ୍ଗା ନାଟକର କଥାବିନ୍ୟାସ । ମଙ୍ଗଳୁବାବୁ ମୋ ଅନୁଭୂତି ସମ୍ପନ୍ନ ଜୀବନ୍ତ କାହାଣୀ ଭରସା ଦେଇଥିଲେ, ଆଉ ଅଳ୍ପଦିନ ପରେ ସେ ସେହି ପାଣ୍ଡୁଲିପି ମୋ ହାତକୁ ଆସିଯାଇଥିଲା ।

ଦେବେଶ୍ୱର ମିଶ୍ର, ଜଣେ ପୋଖତ ନାଟ୍ୟଶିଳ୍ପୀ, କାଇଁଶିର୍ ଏମ୍.ଇ. ସ୍କୁଲର ପ୍ରଧାନଶିକ୍ଷକ ଭାବରେ କାର୍ଯ୍ୟରତ ଥିଲେ, ମୁଁ ସନାତନ....ନାଟକରେ ଦେବଗଡରେ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହୋଇଥିଲେ । ଉତ୍ତମକୁ ଦେଖି ଯେଭଳି ଭୁଖାର ଅଏଁଠା ଚରିତ୍ରର ସୃଷ୍ଟି, ଦେବେଶ୍ୱରଙ୍କୁ ଆଖିଆଗରେ ରଖି ସେଭଳି ଉଡଲାପତର୍ ବୁଡ୍‌ଲାଡଙ୍ଗା ନାଟକର କଷ୍ଟୁ ଚରିତ୍ରର ବିନ୍ୟାସ । ଦେବେଶ୍, ମୋ ଅନୁରୋଧରେ ଭୁଖା ନାଟକର ରିହାର୍ସାଲ ସମୟରେ ସ୍ମାରକର ଦାୟିତ୍ୱ ନିଭାଇଥିଲେ । ମଙ୍ଗଳୁବାବୁଙ୍କ ଭାଷା ସହ ପରିଚିତ ହୋଇଯାଇଥିଲେ । ତେଣୁ କଷ୍ଟୁ ରିକ୍ସାବାଲା ଚରିତ୍ରକୁ ପ୍ରଦର୍ଶନ କରିବାରେ ଅନ୍ତତଃ ସଂଳାପ ଉଚ୍ଚାରଣ ଦୃଷ୍ଟିରୁ ତାଙ୍କୁ ଅସୁବିଧା ହୋଇ ନଥିଲା । ଗଉରା, ରିକ୍ସାବାଲାର ଅବାଟରେ ଯାଉଥିବା ପୁଅ ଭୂମିକାଟି ସଂଜୀବ ପାଇଁ ଖୁବ୍ ସାଜିଲା, ରିକ୍ସାମାଲିକ ଭୂମିକାରେ ସନ୍ତୋଷ, ଡିହମାଲିକ ଭୂମିକାରେ ମୋହିନୀ ମିଶ୍ର, କଷ୍ଟୁର କୁନ୍ଦୀ ଝିଅର ପ୍ରେମିକ ଭୁମିକାରେ ପ୍ରଫୁଲ୍ଲ ମିଶ୍ର ଆଦି କଳାକାରମାନେ ଖୁବ୍ ମନପ୍ରାଣ ଦେଇ ନାଟକର ରିହାର୍ସାଲକୁ ଆସି ଯୋଗ ଦେଉଥିଲେ । ମୁଁ ମଧ ମୋର ପାରୁପର୍ଯ୍ୟନ୍ତ ନାଟକର ପ୍ରଯୋଜନାଗତ ସଫଳତା ଆଣିବାପାଇଁ ପରିଶ୍ରମ କରୁଥିଲି । ସଂଗୀତାଂଶରେ ବିଜୟ ମିଶ୍ର, ଆରତୀ ମିଶ୍ର ଓ ଭାରତୀ ମିଶ୍ର, ଯନ୍ତ୍ରସଂଗୀତରେ ପୂର୍ଣ୍ଣଚନ୍ଦ୍ର ସ୍ୱାଇଁ, ସୁଶାନ୍ତ ମିଶ୍ର ସହଯୋଗ କରିଥିଲେ । ଦେବଗଡରେ ଏହା ସଫଳତାର ଶୀର୍ଷସ୍ଥାନରେ ପହଞ୍ଚିପାରିଥିଲା । ଦେବେଶ୍ ଶ୍ରେଷ୍ଠ ଅଭିନେତା, ମଙ୍ଗଳୁବାବୁ ଶ୍ରେଷ୍ଠ ନାଟ୍ୟକାର, ସଂଜୀବ ଶ୍ରେଷ୍ଠ ସହଅଭିନେତା, ଶ୍ରେଷ୍ଠନିର୍ଦ୍ଦେଶକ ଭାବରେ ପୁରସ୍କୃତ ହୋଇଥିଲେ । ମଙ୍ଗଳୁବାବୁ ପୁରସ୍କାର ପାଇବାଟା ବଡ ଜିନିଷ ନୁହେଁ, ସମ୍ବଲପୁରୀ ନାଟକ ଭାବରେ ଏହି ପୁରସ୍କାର ଥିଲା ଇତିହାସରେ ସର୍ବପ୍ରଥମ । ଏଥି ସହିତ ହୀରାକୁଦରେ ମଧ ଏହି ନାଟକଟି ଶ୍ରେଷ୍ଠ ଛ'ଟି ପୁରସ୍କାରରେ ମଣ୍ଡିତ ହୋଇଥିଲା । ହୀରାକୁଦର ସଫଳତାପରେ ନିର୍ଦ୍ଦେଶନା କ୍ଷେତ୍ରରେ ଆଉ ପଛକୁ ଓଲଟି ଦେଖି ନଥିଲି । ଆଜି ପର୍ଯ୍ୟନ୍ତ ଦେଖୁନି ମଧ । ପରେପରେ ଏହି ନାଟକର ସମ୍ପ୍ରସାରିତ ରୂପ ଓଡ଼ିଶାର ଏକମାତ୍ରନାଟକ ଭାବରେ ପୁରସ୍କୃତ ହୋଇଥିଲା । ଯେଉଁମାନେ ପ୍ରଥମେ ନାଟକର କଞ୍ଚା ଅବସ୍ଥାକୁ ଦେଖି ପାଣ୍ଡୁଲିପିକୁ ପସନ୍ଦ କରୁ ନଥିଲେ, ସେମାନେ ନିଜ ଭୁଲ୍ ସ୍ୱୀକାର କଲେ । ଏଠାରେ ଜାଣିବାକୁ ହେବ, ନାଟକଲେଖା ସେତେବେଳେ ଶେଷହୁଏ, ଯେତେବେଳେ ମଞ୍ଚରେ ସେହି ନାଟକର ଶେଷଦୃଶ୍ୟ ଅଭିନୀତ ହୋଇ ନାଟକ ଶେଷହୁଏ । ସୃଷ୍ଟି ସହ ନନ୍ଦପଡ଼ାର ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦ, ମୋ ପାଇଁ ଥିଲା ଏକ ସହସଂଗଠନ, ଯେଉଁଥିପାଇଁ ମୁଁ ମୋର ମୂଲ୍ୟବାନ ସମୟ ବିନିଯୋଗ କରୁଥିଲି ନାଟ୍ୟକଳାର ବିକାଶପାଇଁ ।

ସମ୍ବଲପୁରର ବହୁମୁଖୀ ଶ୍ରମମଙ୍ଗଳ କେନ୍ଦ୍ର ସମ୍ବଲପୁରୀ ନାଟକପ୍ରତି ଆଗ୍ରହ ପ୍ରକାଶକରି ନିର୍ଦ୍ଦେଶକ ଶଙ୍କରପ୍ରସାଦ ନାୟକଙ୍କ ନେତୃତ୍ୱରେ ପ୍ରସନ୍ନ ସାହୁଙ୍କ ରଚିତ ସମ୍ବଲପୁରୀ ନାଟକ 'ସସେମିରା' ଏହ୍ଲାବାଦଠାରେ ମଞ୍ଚସ୍ଥ କରିଥିଲେ ଚୌରାଅଶୀ ପ୍ରଥମଭାଗରେ ପଞ୍ଚାନନ ମିଶ୍ର ଓ ପୁଷ୍ପାରାଣୀ ବେହେରାଙ୍କ ଚମତ୍କାର ଅଭିନୟ ଫଳରେ ସେବର୍ଷ ପଞ୍ଚାନନ ମିଶ୍ର ଓ ପୁଷ୍ପାରାଣୀ ବେହେରା ସର୍ବଭାରତୀୟ ସ୍ତରରେ ଶ୍ରେଷ୍ଠ ଅଭିନେତା ଓ ଶ୍ରେଷ୍ଠ ଅଭିନେତ୍ରୀ ଭାବରେ ପୁରସ୍କୃତ ହୋଇ କେବଳ ସମ୍ବଲପୁର ନୁହେଁ, ସମଗ୍ର ଓଡ଼ିଶାପାଇଁ ଗୌରବ ସାଉଁଟି ଆଣିଥିଲେ । ସସେମୀରା ନାଟକର ସାହିତ୍ୟିକ ମୂଲ୍ୟ ଅପେକ୍ଷା ମଞ୍ଚମୂଲ୍ୟ ଅଧିକଥିବା ମନେ କରାଯାଏ । ଆଦିବାସୀ ଜନଜୀବନ ଉପରେ ଆଧାରିତ ଏହି ନାଟକଟି ବହୁବିଳମ୍ବରେ ସମ୍ବଲପୁରରେ ମଞ୍ଚସ୍ଥ ହୋଇଥିବାରୁ ଏହାର ସାହିତ୍ୟିକ ମୂଲ୍ୟବୋଧଜନିତ ଆଲୋଚନା ବିଶେଷ ହୋଇପାରି ନଥିଲା । ଅଭିନୟ ଦୃଷ୍ଟିରୁ ପଞ୍ଚାନନ ମିଶ୍ର ନିଜ ବୁଦ୍ଧିମତ୍ତା ଓ ଅଭିନୟ ଚାତୁର୍ଯ୍ୟ ଯୋଗୁଁ ନାଟକଟିକୁ ଉଚ୍ଚ ମର୍ଯ୍ୟାଦା ପ୍ରଦାନକରିବାରେ ସଫଳ ହୋଇଥିଲେ । ତେଣୁ ସସେମିରା ମଧ ସମ୍ବଲପୁରୀ ନାଟକ କ୍ଷେତ୍ରରେ ଏକ ମାଇଲଖୁଣ୍ଟ ଭାବରେ ବିବେଚିତ ହେଲା ।

ତେୟାଅଶୀରେ ଜନ୍ମନେଇଥିବା ଅନ୍ୟଏକ ନାଟ୍ୟାନୁଷ୍ଠାନ ହେଲା କଖଗ, ବ୍ରଜେନ୍ଦ୍ର ନାୟକଙ୍କ ନେତୃତ୍ୱରେ ସଂଗଠିତ କିଛି ଯୁବକଳାକାର ସଂଗୀତ ଓ ନାଟକ କ୍ଷେତ୍ରରେ ନୂତନ ପରୀକ୍ଷା କରିବା ଆରମ୍ଭ କରିଦେଲେ । ବ୍ରଜେନ୍ଦ୍ରର ପ୍ରଥମ ସମ୍ବଲପୁରୀ ନାଟକ 'ଉଲଟା ପୁର୍‌ଥୀ' ସେ ବର୍ଷ ନାଟ୍ୟକଳା ପରିଷଦର ପ୍ରତିଯୋଗିତା ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ କରିଦେଲା । ଦିଲୀପ ପଣ୍ଡା (ଖ)ଙ୍କ ନିର୍ଦ୍ଦେଶନାରେ ନନ୍ଦପଡାରେ ଏହାର ରିହାର୍ସାଲ ଆରମ୍ଭ ହୋଇଗଲା । ଉତ୍ତମ ମଧ ବେଳେବେଳେ ଯାଇ କିଛିକିଛି ଟିପ୍‌ସ୍ ଦେଉଥିଲେ । ଏହି ନାଟକର ବିଶେଷତ୍ୱ ହେଲା, ଏହାର କାହାଣୀ ସହରୀ ସଭ୍ୟତାକୁ ନେଇ । ଆଧୁନିକ ଜୀବନଯାପନ କରୁଥିବା କିଛି ଚରିତ୍ର ଏଥିରେ ସନ୍ନିବେଶିତ ହୋଇଥିବାରୁ, ବିଶେଷତଃ ଶିଶୁଶ୍ରମିକ ସମସ୍ୟାଉପରେ ଆଧାରିତ ହୋଇଥିବାରୁ ନାଟକଟି ବେଶ୍ ସଫଳତା ଅର୍ଜନ କରିଥିଲା ଏବଂ ଲୋକପ୍ରିୟତା ମଧ ହାସଲ କରିଥିଲା । ଶିଶୁଶ୍ରମିକ ଭୂମିକାରେ ଅଭିନୟ କରିଥିବା ଜଗଦୀଶ ମେହେରଙ୍କ ଚମତ୍କାର ଓ ସ୍ୱାଭାବିକ ଅଭିନୟପାଇଁ ସେ ଶ୍ରେଷ୍ଠଅଭିନେତା ଭାବରେ ପୁରସ୍କୃତ ହେଲେ । କଖଗର ପ୍ରଥମ ନାଟ୍ୟସଫଳତା ପରେ ସେ ବି ଆଉ ପଛକୁ ନ ଓଲଟି ନାଟକ କ୍ଷେତ୍ରରେ ଆଗକୁଆଗକୁ ମାଡି ଚାଲିଲାପରେ କଖଗର ସମ୍ବଲପୁରୀ ପୂର୍ଣ୍ଣାଙ୍ଗ ନାଟକ 'ମାଙ୍କଡ

ଖାଏ କାଙ୍କଡ କଷି' ନାଟକଟି ସାରା ଓଡ଼ିଶାର ବିଭିନ୍ନ ସହରରେ ମଞ୍ଚସ୍ଥ ହୋଇ ଚହଳ ସୃଷ୍ଟି କରିଥିଲା ।

ଚୌରାଅଶୀ ଡିସେମ୍ବରରେ ଡାକରା ଆସିଲା ଭେଡେନ ବ୍ଲକ୍ ସ୍ଥିତ ଚିଚିଣ୍ଡା ଗ୍ରାମର ନୂତନ ଭାବରେ ପ୍ରତିଷ୍ଠିତ ପଲ୍ଲିଶ୍ରୀ ମହାବିଦ୍ୟାଳୟରୁ, ଓଡ଼ିଆ ବିଭାଗର ଅଧ୍ୟାପକ ଭାବରେ ସାକ୍ଷାତକାର ଦେବାପାଇଁ କେଉଁ ଖବରକାଗଜରେ ବିଜ୍ଞାପନ ଦେଖି ଦରଖାସ୍ତ କରିଥିଲି ମନେ ନାହିଁ । ତେବେ ସାକ୍ଷାତକାର ଦେବାର ଚିଠି ପାଇବା ପରେ ମୁଁ ପ୍ରଥମେ ନିଜକୁ ପ୍ରଶ୍ନ କରିଥିଲି, ଯିବି ନା ନାହିଁ । ନ ଯିବାର କାରଣ ଥିଲା, ସେ ଅଞ୍ଚଳକୁ ମୁଁ କେବେ ଯାଇନାହିଁ, ସେ ଅଞ୍ଚଳ ସହ ମୋର କୌଣସି ସମ୍ପର୍କ ନଥିଲା । ମୁଁ ସେତେବେଳେ ବ୍ୟସ୍ତ ଥାଏ ନିଖିଳ ଓଡ଼ିଶା ନାଟ୍ୟଶିକ୍ଷୀ ସମାରୋହ ଆୟୋଜନରେ, ଭୁଖା ପୁସ୍ତକର ପ୍ରକାଶନଜନିତ କାର୍ଯ୍ୟରେ । ତେଣୁ ସେଭଳି ଏକ ପରିବେଶରେ ସମ୍ବଲପୁର ଛାଡ଼ି ଦୂରଅଞ୍ଚଳକୁ ଯିବାର ମୋଟେ ଇଚ୍ଛା ନଥିଲା । ତେବେ ଯୋଗ ଯେଉଁ ଦିଗକୁ ଟାଣିଲା । ଚିଚିଣ୍ଡା କେଉଁଠି ଅଛି, ସେଠିକି ଯିବା କେଉଁ ରାସ୍ତାରେ, ଏପରି ଭାବୁଭାବୁ ଅନୁଜ କଳାକାର ବନ୍ଧୁ ମୋହିନୀ ସହ ଦେଖାହେଲା । ମୁଁ ତାକୁ ଚିଚିଣ୍ଡାର ଠିକଣା ଓ ରାସ୍ତା ସମ୍ପର୍କରେ ପଚାରିବୁଝିଲି । ସେତେବେଳେ ବରଗଡ, ସମ୍ବଲପୁର ଜିଲ୍ଲା ଅନ୍ତର୍ଗତ ଥିଲା ଏବଂ ମୋହିନୀ ଭେଡେନ୍ ବ୍ଲକ ସମ୍ପର୍କରେ ଜ୍ଞାନ ରଖିଥିଲେ । ମୋତେ ସେ ଚିଚିଣ୍ଡାକୁ ଯିବାର ମାର୍ଗ ମଧ୍ୟ ଦର୍ଶାଇଥିଲେ, କିନ୍ତୁ ସତର୍କ କରିଦେଇଥିଲେ, ରାସ୍ତାର ବିପଦପୂର୍ଣ୍ଣ ଅବସ୍ଥାକୁ ନେଇ ମୁଁ ତାଙ୍କପାଖରୁ ଏଭଳି ନିରାଶାଜନକ କଥାଶୁଣି ସାକ୍ଷାତକାରପାଇଁ ନଯିବା ପାଇଁ ଏକ ପ୍ରକାର ମନସ୍ଥ କରିପକେଇଥିଲି । ତେବେ ସେ ମୋତେ ଭରସା ଦେଲେ ଓ କହିଲେ 'ଦାଦା ଯିମା' ତମେ ଚାହୁଁଛ ଯଦି ନିଶ୍ଚେ ଯିମା । ତମର୍ ସାଙ୍ଗେ ମୁଇଁ ବି ଯିମି, ନାଇଁ ହେଲେ ତମେ ଫିରି ନାଇଁପାର । ମୁଇଁ ସ୍କୁଟରଟେ ଯୁଗାଡ୍ କରୁଛେଁ, ଯିମା, କାମ୍ ସାଏଲେ ଫିରି ଆଏମା ।' ଏମିତି ପ୍ରସ୍ତାବରେ ମୁଁ ତାଙ୍କଉପରେ ଭରସା ରଖି ଯିବାପାଇଁ ମନସ୍ଥ କଲି ।

ସେତେବେଳେ ଲୋକସଭା ପାଇଁ ଯୋର୍ ପ୍ରଚାର ଚାଲିଥାଏ । ସମ୍ବଲପୁର ଲୋକସଭା ମଣ୍ଡଳୀରୁ ଜଗଦୀଶ ପଣ୍ଡା ନାମରେ ଜଣେ ଭଦ୍ରବ୍ୟକ୍ତି ସ୍ୱାଧୀନ ଭାବରେ ନିର୍ବାଚନ ଲଢୁଥିଲେ, ଯେ ମୋହିନୀର ଜଣେ ଜଣାଶୁଣା ଲୋକ । ଆମେ ତୁମପାଇଁ ଭେଡେନ୍ ବ୍ଲକ୍‌କୁ ପ୍ରଚାର ପାଇଁ ଯିବୁ, ତମେ ଆମପାଇଁ ଗାଡିର ବ୍ୟବସ୍ଥା କର ବୋଲି ମୋହିନୀ ତାଙ୍କୁ କହିଲେ । ମୋହିନୀ ଉପରେ ଜଗଦୀଶବାବୁଙ୍କ ଭାରି ଆସ୍ଥା । ସେ

ତତ୍‌କ୍ଷଣାତ୍ ନିଜ ଭେସ୍ପା ସ୍କୁଟର୍ ମୋହିନୀକୁ ଦେଇ, ତା' ଉପରେ ପେଟ୍ରୋଲ ଓ ଖାଇବା ଖର୍ଚ୍ଚ ଦେଇଦେଲେ । ପରେ ମୋହିନୀ ମୋତେ ଖବରଦେଲେ, କହିଲେ, ଗାଡ଼ି ଯୋଗାଡ଼ ହୋଇଗଲା, ତମେ ପ୍ରସ୍ତୁତ ହୋଇ ରହିବ, ମୁଁ ତମ ଘରକୁ ଯାଇ ତମକୁ ନେଇ ଆସିବି । ମୁଁ ଭାରି ଖୁସି, ସ୍କୁଟର୍ ଠିକ୍ ହେବାର କାହାଣୀ ଆଗରୁ ମୋତେ ଜଣା ନଥିଲା । ଚିଚିଣ୍ଡା ଯିବା ବାଟରେ ମୋହିନୀର ମୁହଁରୁ ଘଟଣାଟି ଶୁଣି ହସିହସି ବେଦମ୍ ହୋଇଯାଇଥିଲି ମୁଁ । ଲାଗୁଥିଲା ମୁଁ ଅଧ୍ୟାପକ ଚାକିରିପାଇଁ ଯାଉନି, ଯାଉଛି ବଣଭୋଜି କରିବାକୁ ।

ଗୋଶାଳା, ଗୋଡଭଗା, ଅତାବିରା, ରେଙ୍ଗାଲି କେମ୍ପ ଦେଇ କେନାଲ୍ ରାସ୍ତାକୁ ମୋହିନୀ ସ୍କୁଟର୍ ମୋଡ଼ି ଦେବାରେ ଯେଉଁ ଖାଲଢ଼ିପର ରାସ୍ତା ସହ ମୋର ପରିଚିତ ହେଲା, ମୁଁ ମୋ ଭବିଷ୍ୟତକୁ ମଧ୍ୟ ଠିକ୍ ସେହିପରି ଦେଖିବାରେ ଲାଗିଲି । ଏକ ସମ୍ପୂର୍ଣ୍ଣ ଅପରିଚିତ ଅଞ୍ଚଳକୁ ଯାଉଛି ବନ୍ଧୁତା ସ୍ଥାପନ କରି, ସାକ୍ଷାତକାର ସଫଳ ହେଲେ ଏହି କର୍କଶ ମାର୍ଗ ମଧ୍ୟ ମୋତେ ସବୁଜ ଗାଲିଚାର ମଖମଲି ସ୍ପର୍ଶ ଦେବ, କେନାଲର ନୀଳ ଜଳରାଶି ମହୋଦଧିର ବିଶାଳ ବାଲୁକାପ୍ରାନ୍ତରର ସୁଖପ୍ରଦ ଅନୁଭବ ପ୍ରଦାନ କରିବ, କେନାଲ ରାସ୍ତାର ଖାଲଢ଼ିପ ସହ ମିତ୍ରତା ହୋଇଗଲେ ସେ ଜୀବନର ପାଠ ମୋତେ ପଢ଼ାଇଦେବ, ପଡରାପାଲିର ରାସ୍ତାକଡର ଆମ୍ବଗଛର ଛାୟା ଜୀବନରେ ବଞ୍ଚିବାର୍ ଖୋରାକ୍ ଯୋଗାଇବ, ଥୁଆପାଲିର ଜନଗହଳ ମନକୁ ମୋର କରିଦେବ ଚଳଚଞ୍ଚଳ, ରୂପାପାଲିରେ ସଞ୍ଚାରବାଦିକାର କଣ୍ଠରୁ ଶୁଣାଯାଉଥିବ ନୂଆଁ ସକାଳ ଖୋଜୁଥିବା ଏକ ପଥିକ ପାଇଁ ପାହାନ୍ତିଗୀତ, ଥାନାପତି ଟିକ୍‌ରାର କୁନିବଜାର ଦେବ ମନ ଓ ଜଠରକୁ ଶାନ୍ତ କରିବାର ଉପାଦାନ, ଲୁପୁରସିଂହାରେ ଗୌରୀବାବୁଙ୍କ ଦାସକାଠି ସବୁ ଜୀବନର ଗାଥା ଶୁଣାଇବ, ଖାଉପାଲିରୁ ଚିଚିଣ୍ଡାଛକ ପର୍ଯ୍ୟନ୍ତ ଦୁର୍ଗମ ରାସ୍ତା ମୋର ଉତ୍କଣ୍ଠାର, ଉଦ୍‌ବିଗ୍ନତାର, ଆବେଗର ଉପଶମ ଭଳି କାର୍ଯ୍ୟକରି ମୋତେ ଘେନିଯିବ ଏକ ମହାବିଦ୍ୟାଳୟକୁ, ଯେଉଁଠି ମୋର ଯୋଗଥିଲା ଦୀର୍ଘ ତିରିଶବତ୍ରିଶ ବର୍ଷ ପର୍ଯ୍ୟନ୍ତ ଏକ ଅପୂର୍ବ ତଥା ବିଚିତ୍ର ସମ୍ବନ୍ଧରେ ଯୋଡ଼ିହେବାକୁ, ଭୋକର ଭୂଗୋଳରୂପକ ବେଳାଭୂମିର ଓଦାବାଲିରେ ନିଜ ନାମ ଲେଖିବାକୁ, ଯାହା ସାଗରର ଗୋଟାଏ ଢେଉରେ ଲିଭିଯିବାର ପ୍ରତିଶ୍ରୁତି ଦେଉଥିବ, ଆଉ ମନଭରି ଗାଉଥିବ ମନମତାଣିଆ ପଦଟିଏ –

ମେ ଜିନ୍ଦଗୀକା ସାଥ ନିଭାତା ଚଲାଗୟା.....।।



ବାଙ୍କିପାଲି ଛକରୁ ଏକ କିଲୋମିଟରରୁ କମ୍ ଦୂର ହେବ, ବାମପଟକୁ ପଡେ ପଲ୍ଲିଶ୍ରୀ ମହାବିଦ୍ୟାଳୟର କୋଠା, ଏହି କୋଠାକୁ ବର୍ଷେତଳେ ହରେକୃଷ୍ଣ ମହତାବ ଆସି ଉଦ୍‌ଘାଟନ କରିଥିଲେ ବୋଲି ତାର ଏକ ସ୍ମୃତିସ୍ତମ୍ଭ ବାଟରେବାଟରେ ରହିଛି । ଛାତ୍ରଛାତ୍ରୀମାନଙ୍କ କୋଳାହଳ, ପଛପଟକୁ ଗଲେ ଜଣାପଡେ କେଉଁଟା ଅଫିସ, କେଉଁ କୋଠରି ଅଧ୍ୟକ୍ଷଙ୍କ ପ୍ରକୋଷ୍ଠ, ଆଉ କେଉଁଠି ଶ୍ରେଣୀଗୃହ । ବନ୍ଧୁ ମୋହିନୀଙ୍କ ସୁଚାରୁ ରୂପେ ସ୍କୁଟର୍ ଚାଳନାପାଇଁ ମୋତେ ଦୀର୍ଘ ଅଡଷଠୀ କିଲୋମିଟର ଦୂର ଚିଚିଣ୍ଡା ଓ ପପଙ୍ଗା ଗ୍ରାମ ମଧ୍ୟସ୍ଥଳରେ ଥିବା ଏହି କଲେଜ୍‌କୁ ପହଞ୍ଚିବାରେ ସମ୍ଭବ ହୋଇଥିଲା । ମୁଁ ଯେହେତୁ ସମ୍ପୂର୍ଣ୍ଣ ଅପରିଚିତ ସମସ୍ତଙ୍କ ପାଇଁ, ନିଜେ ଯାଇ ସାକ୍ଷାତକାର ପାଇଁ ଆସିଥିବା କର୍ତ୍ତୃପକ୍ଷଙ୍କୁ ଜଣେଇଦେଲି । ମୋତେ ଅପେକ୍ଷା କରିବାର ସୂଚନା ମିଳିଲା ପରେ ଜାଣିଲି, ଓଡ଼ିଆ ଅଧ୍ୟାପକ ପଦବୀପାଇଁ ମୋତେ ମିଶାଇ ଦୁଇଜଣ ପ୍ରାର୍ଥୀ ଏବଂ ସାକ୍ଷାତକାର ପୂର୍ବରୁ ଏକ ଦୃଷ୍ଟାନ୍ତମୂଳକ କ୍ଲାସ୍ ନେବାପାଇଁ ପଡିବ । ପରେ ପଛପଟକୁ ଥିବା ଏକ ହଲ୍‌ରେ ଛାତ୍ରଛାତ୍ରୀ ଆଗରୁ ବସିସାରିଥିଲେ । ମୋତେ ଏକ ଗଦ୍ୟପୁସ୍ତକ ଧରାଇ ଦିଆଯାଇ କ୍ଲାସ୍ ନେବାକୁ କୁହାଗଲା । ଅଧ୍ୟକ୍ଷ ନେତ୍ରାନନ୍ଦ ପୂଜାରୀ ପଛପଟ ବେଞ୍ଚ୍‌ରେ ବସିଥିଲେ । ସେହି ପୁସ୍ତକର ଜନ୍ମଭୂମି ପ୍ରବନ୍ଧ ପଢାଇବା ଆରମ୍ଭକଲି, ଯାହାକୁ ପାଞ୍ଚବର୍ଷ ଧରି ପରମାଣପୁର କଲେଜ୍‌ରେ ପଢାଇ ଆସୁଥିଲି । ଖୁବ କମ୍‌ସମୟ ପଢାଇଥିବି, ମୋତେ ବନ୍ଦ୍‌କରିବାକୁ କୁହାଗଲା, ପରେ ସାକ୍ଷାତକାରକୁ ଡକାଗଲା । ସେମିତି କେହି ବିଶେଷଜ୍ଞ ଆସି ନଥିଲେ ବୋଧହୁଏ, ପରିଚାଳନା କମିଟିର ସଦସ୍ୟମାନେ ସେଠି ବସିଥିଲେ ମୋତେ ନିଯୁକ୍ତି କରିବା କଥା କହି ଏକ ସର୍ତ୍ତ ରଖିଲେ, ଆମେ ସ୍କେଲ୍  ପାଞ୍ଚଶହ ପଚିଶ ଦେବୁ, କିନ୍ତୁ ସେଥିରୁ ପଞ୍ଚାବନ ଟଙ୍କା ସ୍ୱେଚ୍ଛାକୃତ ଭାବରେ କଟାଯିବ ଅନୁଦାନ ପାଇବାଯାଏ । ମୁଁ ସେସବୁ ଗମ୍ଭୀରତାର ସହ ନନେଇ ହଁ ମାରିଦେଇ କେମିତି ସମ୍ବଲପୁର ଫେରିବି, ସେ ଚିନ୍ତାରେ ରହିଲି । ତେବେ ପରେ ଚିନ୍ତାକଲି ଏଠାରେ ବି ସେ ମାନସିକ ଦାରିଦ୍ର୍ୟ ରହିଛି । ଏବେ ଅବସର ନେବାର ପ୍ରାୟ ସାଢେ ଚାରିବର୍ଷ ହୋଇଗଲାଣି, ଏବେ ବି ମୁଁ ସେ ସ୍ୱେଚ୍ଛାକୃତ କଟ୍‌ର ଅର୍ଥ ବୁଝିପାରିନାହିଁ । ବେଳେବେଳେ ଭାବେ, ପ୍ରାୟ ଚାରିପାଞ୍ଚ ବର୍ଷ ଧରି ପ୍ରତ୍ୟେକ ମାସ କଟାଯାଇଥିବା ଟଙ୍କା କେଉଁଠି ରହିଲା, କଲେଜ୍‌ର କେଉଁ କାମରେ ଆସିଲା, ପ୍ରକୃତରେ ସେହି ଟଙ୍କା ପାସ୍‌ବହିରେ ସ୍ୱତନ୍ତ ଭାବରେ ଡିପୋଜିଟ୍ ହେଉଥିଲା ନା ନାହିଁ, ସ୍ୱଇଚ୍ଛା ମାନେ ନିଜ ଇଚ୍ଛାରେ କଟାଯାଉଥିବା ଟଙ୍କା । କୌଣସି ଅଧ୍ୟାପକ ନିଜଇଚ୍ଛାରେ ସେତିକି ଟଙ୍କା କାଟିବାପାଇଁ ଇଚ୍ଛା କରୁ ନଥିବେ । ଯଦି କାଟୁଥିବେ, ତାହା କଲେଜ୍‌କୁ ଅନୁଦାନ

ଦିଆଗଲା ବୋଲି ବୁଝାଯିବା କଥା, ସେ ଜ୍ଞାନ ଆଜି ବି ମୋର ଆସିପାରିନାହିଁ। ଏଭଳି ପ୍ରଶ୍ନ କେବଳ ମୋର ନୁହେଁ, ସେତେବେଳର ସମସ୍ତ ଅଧ୍ୟାପକଙ୍କ ଥିଲା ଏଇ ଧାରଣା । ମୁଁ ଏଇଆ ମଧ୍ୟ ବେଳେବେଳେ ଭାବେ, ଯେଉଁ କମିଟି ଚାରିଶହ ସତୁରୀ ଟଙ୍କା ଦେଇପାରୁଛି, ସେ ଆଉ ପଞ୍ଚାବନ ଟଙ୍କା କାହିଁକି ଦେଇପାରୁ ନଥିଲା ? ଯଦି କଲେଜ୍‌ର ବିକାଶ ସେମାନଙ୍କ ଉଦ୍ଦେଶ୍ୟ ଥିଲା, ସେ ବିକାଶ ତ କେବେ ଆଖିକୁ ଦେଖାଯାଇ ନଥିଲା ।

ଏମିତି ଭାବୁଭାବୁ କେତେବେଳେ ଯେ ଆମ ସ୍କୁଟର୍ ଧନୁପାଲି ମାଟି ଛୁଇଁଲା, ଜଣା ପଡିଲା ନାହିଁ । ପରେ ନିଯୁକ୍ତି ପତ୍ର ପାଇସାରିବା ପରେ ଯାଇ ଘରେ ଏ ବିଷୟ ଜଣାଇଥିଲି ଏବଂ ଜାନୁଆରୀ ଦୁଇ ତାରିଖରେ ମୁଁ ପଲ୍ଲିଶ୍ରୀ ମହାବିଦ୍ୟାଳୟରେ ଯୋଗ ଦେବାପାଇଁ ଯିବି ବୋଲି କହିଦେଲି । କେହି ଖୁସି କିମ୍ୱା ଦୁଃଖ କରିବାର ଦେଖାଗଲା ନାହିଁ । ପଞ୍ଚମ ରଙ୍ଗୁଥାଏ । ତାକୁ ଦେଖି ମନପ୍ରାଣ ଉଚ୍ଛନ୍ନ ହେଲା ବେଳକୁ ଜୀବିକାର ଡାକରା ମୋତେ ବାଧ୍ୟ କରିଥିଲା ଚିଚିଣ୍ଡା ଯାଇ କଲେଜ୍‌ରେ ଯୋଗ ଦେବାକୁ, ଅନ୍ତତଃ କିଛି ବର୍ଷ ପାଇଁ ବସ୍‌ରେ ଯାଇ ରେଙ୍ଗାଲି କେମ୍ପ୍‌ରେ ଓହ୍ଲାଇଲି ପୁଣି ଏକ ବସ୍ ଧରିବା ପାଇଁ ପ୍ରାୟ ଦଶଟା ବେଳକୁ ଛୋଟ ବସ୍‌ଟିଏ ଆସିଲା । ଏ ବସ୍‌ର ମଧ୍ୟ ସେଇ ପରମାଣପୁର ଭଳି ମାଚିସ୍ ଖାଡି ବସ୍ । ଯା' ବି ହେଉ, ଦୀର୍ଘ ଦୁଇଘଣ୍ଟା ପନ୍ଦରମିନିଟ୍ ପରେ ବସ୍ ଯାଇ କଲେଜ୍ ସମ୍ମୁଖରେ ଓହ୍ଲାଇ ଦେଲା । ସମ୍ବଲପୁର ଫେରିଯିବା ଚିନ୍ତାକରି ଆଉ କିଛି ଅଧିକ ଜିନିଷପତ୍ର ନେଇ ନଥିଲି । ଠିକ୍ ସେହିପରି ପଛପଟ ରାସ୍ତାରେ ଯାଇ ଷ୍ଟାଫ୍ କମନ୍ ରୁମ୍‌କୁ ଯାଇ ବସିପଡିଲି । ଦି' ଜଣ ମେଡମ୍, ଆଉ କିଛି ଅଧ୍ୟାପକ ସେଠାରେ ବସିଥାନ୍ତି । ସମସ୍ତଙ୍କୁ ନମସ୍କାର କରି ମୋ ପରିଚୟ ଦେଲି ସେମାନେ ମୋତେ ବସିବାପାଇଁ କହିଲେ । ନିଯୁକ୍ତିପତ୍ର ସହ ମୋର ଯୋଗଦେବାର ପତ୍ର ପିଅନ୍ ହାତରେ ଅଧ୍ୟକ୍ଷଙ୍କ ନିକଟକୁ ପଠେଇଦେଲି । କିଛି ସମୟପରେ ଅଧ୍ୟକ୍ଷ ମୋତେ ଡକାଇ ପଠାଇଲେ ଓ ମୋ ପରିଚୟ ଜାଣିବାକୁ ଚାହିଁଲେ ମୁଁ ବାପାଙ୍କ ନାଁ ଧରିବାରୁ, ସେ ଖୁସି ହେଲେ, ଆଉ ବାପା ସି.ଆଇ. ଥିଲାବେଳେ ସେ ରେମୁଣ୍ଡା ହାଇସ୍କୁଲରେ ଥିଲେ ବୋଲି କହିଥିଲେ । ମୋର ଯୋଗଦେବାର ପତ୍ରରେ ସେ ସ୍ୱେଚ୍ଛାକୃତ କଟ୍ ବାବଦରେ ଲେଖାଇ ନେଇଗଲେ ।

ପରେ ପୁଣିଥରେ କମନ୍‌ରୁମ୍‌କୁ ଆସି ମୁଁ ଅଧ୍ୟାପକ ଅଧ୍ୟାପିକାମାନଙ୍କ ପରିଚୟ ଜାଣିଲି । ମୋ ନାଁ ଶୁଣିଲା କ୍ଷଣି ଓଡ଼ିଆ ମେଡମ୍ ପଙ୍କଜିନୀ ମିଶ୍ର କିଛିଦିନ ତଳେ ରେଡ଼ିଓରେ ଭୁଖା ନାଟକ ଶୁଣିଥିବା କଥା କହିଲେ ଏବଂ ଭୁଖା ନାଟକ ସହ ମୋର

ସମ୍ବନ୍ଧ ଜାଣି ଖୁସି ହେଲେ । ସେମିତି କଟିଗଲା ଚିଚିଣ୍ଡା କଲେଜ୍‌ର ପ୍ରଥମ ଦିନଟି । ପଚାରି ବୁଝିଲି, ଫେରିବାପାଇଁ ଆଉ ବସ୍ ନାହିଁ । ସେଠି ଚାକିରିକଲେ ମୋତେ ରହିବାପାଇଁ ପଡିବ । ହେଲେ ସେଦିନ କେମିତି ଫେରିବି, ସେ ଚିନ୍ତା ମୋତେ ଘାରିଲା । ରାସ୍ତାକୁ ଆସି ଲିଫ୍ଟର ଆଶାରେ ଘଣ୍ଟେ ଦୁଇଘଣ୍ଟା ଅପେକ୍ଷାପରେ ଏକ କୋଇଲା ବୋଝେଇ ଟ୍ରକ୍ ଆସୁଥିଲା, ବୋଧହୁଏ କୋଉ ଇଟାଭାଟି ପାଇଁ କୋଇଲା ନେଇ ଆସିଥିଲା, ଖାଲିକରି ଫେରୁଥିଲା । ହାତମାରି ଅଟକାଇଲି ଆଉ ରେଙ୍ଗାଲି କେମ୍ପ୍ ପର୍ଯ୍ୟନ୍ତ ନେଇଯିବା ପାଇଁ ଅନୁନୟ କଲି । ଡ୍ରାଇଭର ମୋତେ ଡାଲାକୁ ଚଢିଯିବା ପାଇଁ ନିର୍ଦ୍ଦେଶ ଦେଲା । ମୁଁ ଆଗପଛ କିଛି ନଦେଖି ପଛପଟରୁ କୌଣସି ହାଲତ୍‌ରେ ଡାଲା ଉପରକୁ ଚଢିଗଲି । ଟ୍ରକ୍ ଚାଲିଲା, ତା ସହ ମୁଁ ବି ଚାଲିଲି ଡାଲାରେ ହେମାଲଙ୍କ ଭଳି । ଏକେ ତ କୋଇଲା ବୋଝେଇ ଟ୍ରକ, ଡାଲାସାରା କୋଇଲାଗୁଣ୍ଡର ଛିଟା ପୁଣି ପପଙ୍ଗାଛକରୁ ରେଙ୍ଗାଲିକେମ୍ପ୍ ପର୍ଯ୍ୟନ୍ତ ବାଇଶ କିଲୋମିଟରର ସେ ସମୟର ଘାଟିରାସ୍ତା । ଖୁବ୍ କଷ୍ଟରେ ଟ୍ରକ୍‌ଟି ମୋତେ ରେଙ୍ଗାଲି କେମ୍ପ୍‌କୁ ଆଣି ଓହ୍ଲାଇ ଦେଲା । ମୁଁ ମୋ ନିଜ ଚେହେରାକୁ ନିରୀକ୍ଷଣ କରୁଥିଲି ଓ ଭାବୁଥିଲି, ଅଧ୍ୟାପକ ଭାବରେ ଆସିଥିଲି, ଟ୍ରକ୍‌ରୁ ଓହ୍ଲାଇବାବେଳେ ରେଲୱେ ଡ୍ରାଇଭର ପାଲଟିଗଲି । ବସ୍ ଧରି ପୁଣି ଦୁଷ୍ଚିନ୍ତା ମୋତେ ଘାରିଲା ପ୍ରକୃତରେ ଆଉ ଚିଚିଣ୍ଡା ଯିବି ନା ନାହିଁ । ବସ୍‌ରେ ଫେରିବାବେଳେ ପୁଣି ସିଟ୍ ନପାଇ ସମ୍ବଲପୁର ପର୍ଯ୍ୟନ୍ତ ଠିଆଠିଆ ଯିବାକୁ ହେଲା । ବସ୍‌ରେ ଥାଇ ଜୀବନର ଏଇ ପୃଷ୍ଠାକୁ ଥରେ ଓଲଟେଇ ଦେଖିଲି, ଚିଚିଣ୍ଡା କଲେଜ୍‌କୁ ଯିବାର ପ୍ରଥମ ଦିନର ତିକ୍ତ ଅନୁଭୂତି ବାସ୍ତବରେ ମୋତେ ନୂଆଁ ଦିଶା ଦେଖାଇ ପାରିବ ନା ନାହିଁ । ଘରକୁ ଆସି ଅନେକ ଚିନ୍ତା କଲି, ତାଙ୍କସହ ବାରମ୍ବାର ଆଲୋଚନା କଲି, ମୁଁ ଚିଚିଣ୍ଡାରେ ରହିଲେ ସପ୍ତାହରେ ଥରେ ଘରକୁ ଆସିପାରିବି ସେ ଏକା ବର୍ଷିକିଆ ପଞ୍ଚମକୁ ନେଇ ଚଳିପାରିବେ ତ ! !

ଏମିତି ଅନେକ ଚିନ୍ତା କଲାପରେ ବେଡିଂବିସ୍ତର୍ ଧରି ମୋତେ ପପଙ୍ଗା ଭିଏଲଡବ୍ଲ୍ୟୁଙ୍କ କ୍ୱାଟର୍‌କୁ ଆସିବାପାଇଁ ପଡିଲା, ପ୍ରିୟ ସମ୍ବଲପୁର ଛାଡିବାପାଇଁ ପଡିଲା ।

ଭୁଖା ପରେ ମଙ୍ଗଳୁବାବୁଙ୍କ ସହ ଆଲୋଚନା କରି ଚୌରାଅଶୀ ଲୋକନାଟକ ମହୋତ୍ସବପାଇଁ 'ଲୁରା' ନାମକ ଏକ ପାଣ୍ଡୁଲିପି ରାଉରକେଲା ପଠାଯାଇଥିଲା । ତେବେ ତାହା ମନୋନୀତ ହୋଇ ନଥିଲା । ତଥାପି ସୃଷ୍ଟି ତରଫରୁ ତାକୁ ସମ୍ବଲପୁରଠାରେ ଅଭିନୀତ କରିବାପାଇଁ ମୁଁ ସମସ୍ତ ଯୋଜନା କରିଥିଲି । ଏପରିକି ଟାଉନ୍ ହାଇସ୍କୁଲ

ବଡ ପ୍ରକୋଷ୍ଠରେ ନଡ଼ିଆ ପିଟି ରିହାର୍ସାଲ ମଧ୍ୟ ଆରମ୍ଭ ହୋଇଯାଇଥିଲା । ତେବେ ମୋର ଚିଚିଣ୍ଡାରେ ରହିଯିବା ହେତୁ 'ଲୁରା' ନାଟକ ଆଉ ହୋଇପାରି ନଥିଲା । ଲୁରା ଯେଉଁ ଦିନ ହୋଇଥାନ୍ତା, ସେହି ରାତିରେ ହିଁ ପୁସ୍ତକ ଉନ୍ମୋଚନ ହୋଇଥାନ୍ତା । ସେଥିପାଇଁ ଲୁରା ବହି ଛପାକାର୍ଯ୍ୟ ମଧ୍ୟ ସରିଯାଇଥିଲା । ନାଟକ ହେବା ଓ ବହି ବାହାରିବା ବା ଉନ୍ମୋଚନ ହେବାକାର୍ଯ୍ୟ ଆଉ ହୋଇପାରିଲା ନାହିଁ ।

ଜୀବନ ସହ ଜୀବିକାକୁ ବଡ କଷ୍ଟରେ ଯୋଡିବାକୁ ହେଲା । ଚୌରାଅଶୀ ନାଟ୍ୟକଳା ପରିଷଦର ପ୍ରତିଯୋଗିତାରେ ନନ୍ଦପଡାର ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦ ତରଫରୁ ମଙ୍ଗଳୁବାବୁଙ୍କ ରଚିତ ଅନ୍ୟ ଏକ ସମ୍ବଲପୁରୀ ନାଟକ 'ଭୁତିଆର୍ ହଥିଆର୍' ନାଟକଟି ମୋ ନିର୍ଦ୍ଦେଶନାରେ ଅଭିନୀତ ହୋଇ ଚାରୋଟି ଶ୍ରେଷ୍ଠ ପୁରସ୍କାରରେ ମଣ୍ଡିତ ହୋଇଥିଲା । ଏହି ନାଟକଟି ହୀରାକୁଦରେ ଜମି ହରାଇଥିବା ଏକ ଦୁଃସ୍ଥ, ସ୍ୱାଭିମାନୀ କୃଷକର ପାରିବାରିକ କାହାଣୀ ଉପରେ ଆଧାରିତ ଥିଲା । ଦେବେଶ୍, ସଂଜୀବ, ଅଂଜଳୀ ବହୁ ପରିଶ୍ରମ କରି ନାଟକକୁ ସଫଳ କରିଥିଲେ । ଅନ୍ତରାଳର ଯନ୍ତ୍ର ସଂଗୀତର ଗୋଟିଏ ବଡ ଭୂମିକା ଥିଲା ଏହି ନାଟକର ସଫଳତା ପଛରେ । ପରେ 'ଭୁତି' ନାମରେ ଏହି ନାଟକର ପୂର୍ଣାଙ୍ଗ ସ୍ୱରୂପ ରାଉରକେଲା ଲୋକନାଟକ ମହୋତ୍ସବରେ ମଞ୍ଚସ୍ଥ ହୋଇଥିଲା । ଅଞ୍ଜଳୀ ଏହି ନାଟକରେ ଗୋଲାପୀ ଭୂମିକାରେ ଅଭିନୟକରି ଦ୍ୱିତୀୟ ଶ୍ରେଷ୍ଠ ଅଭିନେତ୍ରୀ ଭାବରେ ପୁରସ୍କୃତ ହୋଇଥିଲେ ।

ଚିଚିଣ୍ଡାରେ ଯୋଗ ଦେବାବେଳେ ସେଠାରେ ଧନୁଯାତ୍ରା ଚାଲୁଥିଲା । ମୁଁ ରାତିବେଳା ରହୁ ନଥିବାରୁ ତାହା ଦେଖି ନଥିଲି । ତେବେ ରହିଲା ବେଳକୁ ଧନୁଯାତ୍ରା ବନ୍ଦ ହୋଇସାରିଥିଲା । କଲେଜ୍‌ର ବାର୍ଷିକୋତ୍ସବ ସମୟରେ ନାଟକ କରିବାର ଆଗ୍ରହ ଦେଖାଇଲି । ସେତେବେଳେ ଅଧ୍ୟାପକମାନେ ଏ କ୍ଷେତ୍ରରେ ଆଦୌ ଆଗ୍ରହୀ ନଥିଲେ, ଏପରିକି ମୋତେ ମଧ୍ୟ ଏ ଦିଗରେ ଆଗ୍ରହୀ ନହେବା ପାଇଁ କହୁଥିଲେ । ତେବେ ମୁଁ ଯେଉଁ ସାଂସ୍କୃତିକ ଭିତ୍ତିରେ ବଢିଆସିଥିଲି, ସେଥିରେ ନାଟକ ନକରିବାର ପ୍ରଶ୍ନ ହିଁ ଉଠୁ ନଥିଲା । ମୁଁ ପିଲାଙ୍କୁ ନେଇ 'ଉଡଲାପତର୍ ବୁଡଲାଡଙ୍ଗା' ନାଟକ କରିବାର ଚିନ୍ତା କରିଥିଲି । ମୋର ନାଟକକରିବାର ପ୍ରସ୍ତାବଦେଖି ଅଧ୍ୟକ୍ଷ ମୋତେ ତାଙ୍କ କୋଠରିକୁ ଡକାଇ ମୋଠୁ କୈଫିୟତ ନେଲେ, ତା'ସହ ଭଲ ଭାବରେ ଆୟୋଜନ କରିବାର ପ୍ରତିଶ୍ରୁତି । ଛାତ୍ରମାନେ ନାଟକକରିବାକୁ ଖୁବ୍ ଆଗ୍ରହୀ ହେଲେ । କୃଷ୍ଣ ଝାଙ୍କର୍, ଶ୍ରୀକାନ୍ତ ଷଡଙ୍ଗୀ ଆଦି ଛାତ୍ରମାନେ ବିଭିନ୍ନ ଭୂମିକାରେ ଅଭିନୟ କଲେ ଏବଂ ଶେଷରେ

ସଫଳତାର ସହ ନାଟକଟି ମଞ୍ଚସ୍ଥ ହେଲା । ଅଧ୍ୟକ୍ଷ ଖୁସିରେ କହିଥିଲେ, ଯା' ହେଉ, ଆପଣ ଆସିବାପରେ କଲେଜ୍ ଟିକେ ଚଳଚଞ୍ଚଳ ହେଲା ।

ଚିଚିଣ୍ଡାରେ ରହିଲି ସିନା, ସମ୍ବଲପୁରରେ ନାଟକ କେମିତି ହେବ, କିଏ ସଂଗଠନ ଦାୟିତ୍ୱ ନେବ, ପାଣ୍ଡୁଲିପି କିଏ ପ୍ରସ୍ତୁତ କରିବ, ଏଭଳି ବହୁସମସ୍ୟା ଉକୁଟି ଆସିଲା । ବିଶେଷତଃ ସୃଷ୍ଟି ଓ ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦର କଳାକାରମାନେ ହତାଶ ହୋଇପଡୁଥିଲେ । ମୁଁ କିନ୍ତୁ ଥିଲି ଦୃଢମନା, ଚିଚିଣ୍ଡାରେ ଥାଇ ସୁଦ୍ଧା ଭାରସାମ୍ୟ ରଖିହେବ । କଲେଜ୍ ଏବଂ ସମ୍ବଲପୁରର ସଂଗଠନ ମଧ୍ୟରେ ଉଭୟ ଅନୁଷ୍ଠାନକୁ ସୁହାଇଲାଭଳି କାର୍ଯ୍ୟକଲେ, ସବୁ ସମ୍ଭବ ହେବ । ଏମିତି ସମୟରେ ପଞ୍ଚାନନ ମିଶ୍ର ପୁଣିଥରେ ଏହ୍ଲାବାଦଠାରେ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହେବା ସମ୍ବାଦ ସମ୍ବଲପୁରର ସମସ୍ତ ନାଟ୍ୟଶିଳ୍ପୀଙ୍କୁ ଆନନ୍ଦିତ କରିଥିଲା । ପ୍ରସନ୍ନ ସାହୁଙ୍କ ରଚିତ ସମୁଦ୍ର ନାଟକରେ ଅଭିନୟ କରି ପଞ୍ଚାଦା ଏହି ପୁରସ୍କାର ପାଇଥିଲେ । ପରେପରେ ପଞ୍ଚାନନ ମିଶ୍ର ଓ ବିପିନ ଦାସ ଲଗାତାର ଏହ୍ଲାବାଦ ଯାଇ ବହୁ ବିଭିନ୍ନ ସ୍ୱାଦର ନାଟକ ପରିବେଷଣ କରି ସମ୍ବଲପୁର ପାଇଁ ଗୌରବ ଆଣିଥିଲେ । ପଞ୍ଚାଅଶୀରେ ଶିଳ୍ପୀ ଅନୁଷ୍ଠାନର ଡାକରାରେ ପୁଣିଥରେ ଏହ୍ଲାବାଦ ପାଇଁ ଭବାନୀ ଦାସଙ୍କ ନିର୍ଦ୍ଦେଶନାରେ 'ହୃଦୟର ଦୈର୍ଘ୍ୟ ଓ ପ୍ରସ୍ଥ' ନାଟକରେ ଏକ ଛୋଟ ଭୂମିକାରେ ଅଭିନୟ କରିଥିଲି । ରାଜୁଦାଙ୍କ ସହ ଏହି ନାଟକରେ ସବ୍ୟସାଚୀ ମହାପାତ୍ର, ପୂର୍ଣ୍ଣଚନ୍ଦ୍ର ଦାସ ଅରବିନ୍ଦ ମିଶ୍ର ପ୍ରମୁଖ ଅଭିନୟ କରିଥିଲେ ।

ନାଟ୍ୟଜୀବନର ଗତି ଏହି ସମୟରେ ବଡ ଦ୍ୱିଧାଗ୍ରସ୍ତ ଜଣାପଡିଲା । ଦୁଇଟି ନାବରେ ଗୋଡ ଦେଇ ମଝି ନଈରେ ପହଞ୍ଚିଲେ ଯେଭଳି ଅବସ୍ଥା ହୁଏ, ମୋର ଠିକ୍ ସେଭଳି ହେବାକୁ ଲାଗିଲା । ହୋସ୍ ଥିଲା, ଯୋଶ୍ ଥିଲା, ବେହୋସ୍ କାହିଁକି ହେବି, ମାଡିଦଳି ଆଗକୁ ବଢିବା କଥା । ବୟସ ଥିଲା, ଦୃଢ ମନୋବଳ ବି ଥିଲା, ରୋକନ୍ତି ବା କାହିଁକି ! !



**ପ**ଛକୁ ପପଙ୍ଗା ପାହାଡର ରହସ୍ୟମୟ ଛତ୍ର, ଗୋଟିଏ ପଟେ ସବୁଜିମାରେ ଆଚ୍ଛାଦିତ, ଅନ୍ୟପଟଟି କଳାପଥରର ପ୍ରଭା, ଯେମିତି ବିରାଟ ଏକ ମଣ୍ଡପରେ ସୁସଜ୍ଜିତ ଦୁର୍ଗାପୂଜାର ଦଶଭୂଜାର ମେଢ଼ ଆକାଶର ସାଇକ୍ଲୋରୋମାରେ ସୁଶୋଭିତ ଆକାଶଚୁମ୍ବି ତୋରଣ, ସବୁଜସବୁଜ ବୁଦାର ଉତାଳରେ ରୁଗୁଡିପଥରର ପାହାଚଡେଇଁ ପ୍ରଥମ ପର୍ଯ୍ୟାୟକୁ ଛୁଇଁଲେ ସୁନ୍ଦର ଏକ ପ୍ରାକୃତିକ ସରୋବର, ତାକୁ ଲାଗି ବାବାଙ୍କ ମଠ

କେଉଁ କାଳେ ସଂସାରୀ ଜଣେ ସଂସାରରୁ ସନ୍ନ୍ୟାସ ନେବା ଉଦ୍ଦେଶ୍ୟରେ ଏଇ ପାହାଡର ନିର୍ଜନ ସ୍ଥାନକୁ ଆସି ଜଞ୍ଜାଳ ତାଡନାରୁ ନିଜକୁ ସୁରକ୍ଷିତ ମଣିବାପାଇଁ ହେଉ ଅବା ସାମୟିକ ଅବସରନେବା ଉଦ୍ଦେଶ୍ୟରେ ତିଆରିଥିଲେ ଏହି କୁଟୀର, ଯାହା କା' ତୁଣ୍ଡରେ ମଠ, ଆଉ କା' ମୁହଁରେ ଆଶ୍ରମ ବୋଲାଉଥିଲା । ତେବେ ଏ କଥା ସତ ସେ ଥରେ ଉପରକୁ ଗଲା, ଥରେ ତଳକୁ ଆସି ଲୋକଙ୍କୁ ଦର୍ଶନ ଦେଲେ ପାଲଟିଯାଉଥିଲା ସର୍ବ ତୁଣ୍ଡରେ 'ବାବା' ।

ଏ ପାହାଡର ଗୋଟାଏ ଐତିହାସିକ ଗୁରୁତ୍ୱ ମଧ୍ୟ ରହିଛି ଲୋକତୁଣ୍ଡରେ । ପାହାଡ଼ ପଛପଟକୁ ଲାଗି ରହିଛି କୁଦୋପାଲି ଗ୍ରାମ, ଯେଉଁଠି ବୀର ସୁରେନ୍ଦ୍ର ସାଏଙ୍କ ସାନଭାଇ ଛବିଳ ସାଏଙ୍କ ନେତୃତ୍ୱରେ ବ୍ରିଟିଶ ବାହିନୀଙ୍କ ସହ ମୁହାଁମୁହିଁ ଯୁଦ୍ଧ ହୁଏ, ଶେଷରେ ବ୍ରିଟିଶ ସେନାଙ୍କ ଗୁଳିରେ କୁଦୋପାଲି ଦାଣ୍ଡରେ ଟଳିପଡିଥିଲେ ଛବିଳ ସାଏ । କେତେକ ଐତିହାସିକଙ୍କ ମତରେ ଏଇ ସେଇ କୁଦୋପାଲି, ଯେଉଁଠି ବେଳେବେଳେ ଆତ୍ମଗୋପନ କରି ରହୁଥିଲେ ବୀର ସୁରେନ୍ଦ୍ରସାଏ । ସହଯୋଗୀ ଭେଡେନ୍ ଜମିଦାର ମନୋହର ସିଂ ମଧ୍ୟ ସୁରେନ୍ଦ୍ରସାଏଙ୍କ ସହ ମନ୍ତ୍ରଣା କରୁଥିଲେ । ଏହି ପାହାଡର ଶୀର୍ଷ ସ୍ଥାନର ଏକ ବାଉଁଶ ବୁଦାତଳେ ବ୍ରିଟିଶ ସେନା ଆସିବାର ସୁରାକ ପାଇ ସୁରେନ୍ଦ୍ର ସାଏ ତତ୍‌କ୍ଷଣାତ୍ ସେହି ସ୍ଥାନ ଛାଡି ଉଭାନ୍ ହୋଇଯାଇଥିଲେ, ହେଲେ ମନୋହର ସିଂ ସେଇ ବାଉଁଶ ବଣ ଭିତରେ ଦିନଦିନ ଧରି ଅଖିଆଅପିଆ ରହି ମୃତ୍ୟୁବରଣ କରିଥିଲେ ବୋଲି ଲୋକତୁଣ୍ଡରେ ଶୁଣାଯାଏ । ଆଉ ମଧ୍ୟ ଲୋକେ କହନ୍ତି, ଏହି ପାହାଡ ଉପରେ ଏକ ଗୁମ୍ଫା ରହିଛି, ଯେଉଁଠି ପୂର୍ବେ ପ୍ରଚୁର ଭାଲୁ ଅବସ୍ଥାନ କରୁଥିଲେ । ମୁଁ ଯୋଗଦେବା ସମୟରେ ମଧ୍ୟ ଏ ଅଞ୍ଚଳରେ ଭାଲୁ ଉପଦ୍ରବ ଜାରି ରହିଥିଲା । ଏ ସମଗ୍ର ଅଞ୍ଚଳର ଶୋଭାବର୍ଦ୍ଧନ କରିଥିବା ଏହି ପାହାଡକୁ ନେଇ କିଛି ବର୍ଷ ହେଲା ଏକ ମହୋତ୍ସବ ଆୟୋଜିତ ହେଉଛି ଏହାର ପାଦଦେଶରେ ଯାହାର ନାମ ପପଙ୍ଗାପାହାଡ ମହୋତ୍ସବ ରଖାଯାଇଛି । ଏହି ପାହାଡ଼ର ପାଦଦେଶରେ ବୀର ସୁରେନ୍ଦ୍ରସାଏଙ୍କ ଏକ ପ୍ରତିମୂର୍ତ୍ତି ସ୍ଥାପିତ ହୋଇଛି । ପ୍ରତ୍ୟେକ ବର୍ଷ ସୁରେନ୍ଦ୍ରସାଏଙ୍କ ଜନ୍ମତିଥିରେ ବିଭିନ୍ନ ସଂଗଠନର ସଭ୍ୟମାନେ ଏଠାରେ ଉପସ୍ଥିତ ରହି ସୁରେନ୍ଦ୍ରସାଏଙ୍କ ସ୍ମୃତି ଚାରଣ କରିଥାନ୍ତି । ଏହି ପାହାଡର ସୌନ୍ଦର୍ଯ୍ୟରେ ପର୍ଯ୍ୟଟକ ଆକୃଷ୍ଟ ହୋଇଥାନ୍ତି । ମୁଁ ପ୍ରାତଃ ଭ୍ରମଣରେ ଏହି ପାହାଡ ପଟକୁ ପ୍ରାୟ ଯାଉଥିଲି ଏବଂ ସୂର୍ଯ୍ୟାଲୋକର ପ୍ରଥମ ରଶ୍ମିରେ ସ୍ନାନ କରୁଥିଲି, ବିହଙ୍ଗ ମାନଙ୍କ ସୁମଧୁର ଗୀତ ଶୁଣୁଥିଲି, ବୃକ୍ଷଲତାମୟ ପରିବେଶରେ ନିଜକୁ ହଜେଇ ଦେଉଥିଲି ।

ପପଙ୍ଗା ଛକରୁ ଗୋଟିଏ ରାସ୍ତା ଲମ୍ବିଯାଇଛି ଗର୍ଭଣା ଗାଁ ପାଖକୁ, ଯେଉଁଠାରୁ ଗୋଡଭଗା, ସମ୍ବଲପୁର ଓ ଡୁରୁମ, ସୋନପୁର ଆଦି ସ୍ଥାନକୁ ଯିବାପାଇଁ ବସ୍ ମିଳେ । ଏହି ରାସ୍ତା ଅବଶ୍ୟ କେନାଲ ଆଡିରାସ୍ତା ଥିଲା, ପରବର୍ତ୍ତୀକାଳରେ ସିମେଣ୍ଟ ରାସ୍ତାରେ ରୂପାନ୍ତରିତ ହୋଇଥିଲା । ମାତ୍ର ନଅ କିଲୋମିଟର ଗଲେ ଗର୍ଭଣା ପଡେ, ପପଙ୍ଗା ବଜାର, କଦଲୀପାଲି, ଆଁଏଖ୍ ଫୁଟା, ଧାତୁକପାଲି, ମହଲାକଁଟା ପାରିହେଲେ ଗର୍ଭଣାର କ୍ଷେତ ଦିଶେ, ଆଉ ମଧ୍ୟ ଦେଖାଯାଏ କୃଷକମାନଙ୍କ ଚାଷକାର୍ଯ୍ୟ, ପହ୍ଲାରୋପଣ କରୁଥିବା ମହିଳାମାନଙ୍କ ସମବେତ ହୁଳହୁଳିର କୋରସ୍, ଲମ୍ବା ଆଙ୍କୁଡିରେ ରଙ୍ଗ କରାଯାଉଥିବା ସମ୍ବଲପୁରୀ ଲୁଗା, ରାସ୍ତାକଡରେ ଜମିଥିବା ତାସ ଖେଳର ଗୁମଟ୍, ଏମିତି କେତେ ଦୃଶ୍ୟ । ଛକରୁ ଡାହାଣ ପଟକୁ ମୋଡିଲେ ପୋଲ ଡେଇଁ ବାମରାସ୍ତାରେ ଗଲେ ପଡେ ବଡପିପିଲିପାଲି ଗାଁ, ଆମ କଲେଜ୍‌ର ଅବସରପ୍ରାପ୍ତ ବଡବାବୁ ପୁରୋହିତ ବାବୁଙ୍କ ଗାଁ, ଏହି ଗାଁ ପୁଣି ଜନ୍ମ ଦେଇଥିଲା ବିଶିଷ୍ଟ ସମ୍ବଲପୁରୀ ନୃତ୍ୟଶିଳ୍ପୀ ଲକ୍ଷ୍ମୀନାରାୟଣ ପାଢୀ, ଯେ ବରଗଡରେ ରହି ନିଜସ୍ୱ ଉଦ୍ୟମରେ ସମ୍ବଲପୁରୀ ନୃତ୍ୟକୁ ନୂତନ ଦିଶା ପ୍ରଦର୍ଶନ କରିଥିଲେ । ମୁଁ ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ପଢୁଥିବାବେଳେ ଲକ୍ଷ୍ମୀବାବୁଙ୍କ ଦେବୀତାଣ୍ଡବ ନୃତ୍ୟ ଦେଖି ଖୁବ ପ୍ରଭାବିତ ହୋଇଥିଲି । ପରେ ଅଶାନ୍ତ ଗ୍ରହ ଚଳଚ୍ଚିତ୍ରର ସୁଟିଂ ସମୟରେ ଗୁମଲେଇଠାରେ ମଧ୍ୟ ତାଙ୍କସହ ଅନେକ ଭାବ ବିନିମୟ କରିବାର ସୁଯୋଗ ପାଇଥିଲି । ଅବୟସରେ ସେ ଦିବଙ୍ଗତ ହୋଇଗଲେ, ଯାହା ଆମ ସଂସ୍କୃତିପାଇଁ ବଡ କ୍ଷତି । ପିପିଲିପାଲି ଡେଇଁ କିଛିଦୂରକୁ ଗଲେ ରାସ୍ତା ପୁଣି ଦୁଇ ଭାଗରେ ବିଭକ୍ତ ହୋଇଛି । ବାଁ ପଟ ରାସ୍ତା ଯାଇଛି ପୂର୍ବକଥିତ କୁଦୋପାଲିକୁ ଏବଂ ଡାହାଣ ପଟକୁ ଗଲେ ପଡେ ପ୍ରଥମେ ଭେଡେନ୍‌କୁ ଯିବାର ପଥ, ଆଗରେ ବାଘପାଲି, ଯେଉଁଠି ରହୁଥିଲେ ଆମ କଲେଜ୍‌ର ପରିଚାଳନା କମିଟିର ସଂପାଦକ ଶ୍ରୀଧର ଦାସ । କଲେଜ୍‌ରେ ଯୋଗ ଦେବାର କିଛି ଦିନପରେ ଜାଣିଲି, ଶ୍ରୀଧରବାବୁ ଆମ ପରିବାରର ବଡ ଜୋଇଁ ଲାଗିବେ । ଏବେ ସେ ତାଙ୍କ ମଝିଆ ପୁଅଙ୍କ ସାଙ୍ଗରେ ଧନକଉଡାରେ ରହୁଛନ୍ତି । ଭେଡେନ୍‌କୁ ଯିବା ପାଇଁ ମୋ ଯୋଗଦେବା ସମୟରେ ପୋଲ ନଥିଲା । ଚିଚିଣ୍ଡାର ଲୋକେ ଗାଁ ପଛପଟେ ବହୁଥିବା ଦନ୍ତାନଦୀରେ ପାଣିମାଡି ଆରପାରିକୁ ଯାଉଥିଲେ । ପରେ ପରେ ଭେଡେନ୍‌କୁ ଯିବାପାଇଁ ଦନ୍ତାଉପରେ ଦୁଇଟି ବଡ ପୋଲ ତିଆରି ହୋଇଛି । ଗୋଟିଏ ବାଘପାଲି ପଟେ, ଆର ଗୋଟାଏ କୁସନପୁରୀ, ବକଟି, ବୁର୍ଦା ଦେଇ ତାଳମେଣ୍ଡା ପଟରେ । ଛକରୁ କଲେଜ୍ ସାମ୍ନାରେ ଥିବା ରାସ୍ତା ସିଧା କେନାଲ୍ ଦେଇ ଯାଇଯାଇ ରେଙ୍ଗାଲି କେମ୍ପ୍‌କୁ ଛୁଇଁଛି ଜାତୀୟ ରାଜପଥରେ ।

ରେଙ୍ଗାଲି କେମ୍ପରୁ ପପଙ୍ଗା ପର୍ଯ୍ୟନ୍ତ ନଦୀପରି ବହୁଥିବା କେନାଲ୍, ଏହି ଅଞ୍ଚଳର ଜୀବନରେଖା ସଦୃଶ । କୃଷିକାର୍ଯ୍ୟ ସହ ଅନ୍ୟାନ୍ୟ ଅନେକ କାମରେ ଲୋକେ ଏହାର ଜଳ ବ୍ୟବହାର କରିଥାନ୍ତି । ବାଞ୍ଜିପାଲିଛକରୁ ଡାହାଣ ଦିଗରେ ଚିଚିଣ୍ଡା ଗ୍ରାମ ଅବସ୍ଥିତ । ପ୍ରାୟତଃ କୃଷି ହିଁ ଏଠାକାର ମୁଖ୍ୟ ବୃତ୍ତି । କିଛି ବୁଣାକାର ପରିବାର ଏହି ଗ୍ରାମରେ ଅଛନ୍ତି, ଯେଉଁମାନେ ସମ୍ବଲପୁରୀ ଲୁଗାବୁଣି ଜୀବିକାର୍ଜନ କରିଥାନ୍ତି । ଚିଚିଣ୍ଡାର ବେଡ୍‌ସିଟ୍ ଅତି ଲୋକପ୍ରିୟ । ଜାତୀୟ ପୁରସ୍କାର ପାଇବାଭଳି ବୁଣାକାରଙ୍କୁ ମଧ୍ୟ ଏହି ମାଟି ଜନ୍ମ ଦେଇ ଧନ୍ୟ ହୋଇଛି । ଗାଁଲୋକଙ୍କ ଉଦ୍ୟମରେ ଏଠାରେ ହାଇସ୍କୁଲ ପ୍ରତିଷ୍ଠା ହୋଇଛି, ମୁଁ ଚିଚିଣ୍ଡାରେ ଯୋଗଦେବା ବେଳେ ଶିକ୍ଷାବିତ୍ ହୃଷୀକେଷ ପଣ୍ଡା ବହୁ ବର୍ଷ ଧରି ପ୍ରଧାନଶିକ୍ଷକ ଭାବରେ କାର୍ଯ୍ୟରତ ଥିଲେ । ଖୁବ୍ ସରଳ, ସାଧାରଣ ମଣିଷ ଜଣେ, ଅଧ୍ୟୟନ ପ୍ରଚୁର, ଭଦ୍ର, ସାବଲୀଳ ବ୍ୟକ୍ତିତ୍ୱ, ଏଇ ଗଲାବର୍ଷ ତାଙ୍କ ପରଲୋକ ହୋଇଯାଇଛି । ବୁର୍ଦା ଭଳି ଶିକ୍ଷିତ ଗାଁରେ ଜନ୍ମନେଇ ଗାଁକୁ ଧନ୍ୟ କରିଛନ୍ତି । ଚିଚିଣ୍ଡାର ପାଣିପବନରେ ବଢ଼ି ଚାକିରିଜୀବନର ଶୀର୍ଷସ୍ଥାନରେ ପହଞ୍ଚିଥିଲେ ଏଇ ମାଟିର ସନ୍ତାନ ସୁଶୀଳ ପ୍ରଧାନ, ତତ୍କାଳୀନ ଆରକ୍ଷୀ ଅଧିକ୍ଷକ, ସମ୍ବଲପୁରରେ ତାଙ୍କ କଡା ମିଜାଜ୍ ପାଇଁ ସେ ଯଶ ଅର୍ଜିଥିଲେ ।

ଚିଚିଣ୍ଡା ଗ୍ରାମର ଏକ ସାଂସ୍କୃତିକ ଐତିହ୍ୟ ରହିଛି, ଯାହା ଏହି ଗ୍ରାମକୁ ସମଗ୍ର ଅଞ୍ଚଳରେ ସ୍ୱତନ୍ତ୍ର ପରିଚୟପ୍ରଦାନ କରିଥାଏ । ୧୯୮୧ ମସିହାରେ ଯେତେବେଳେ ଏଠାରେ ଏକ ମହାବିଦ୍ୟାଳୟ ସ୍ଥାପନ କରାଯିବାର ଯୋଜନା ହେଲା, ଆର୍ଥିକ ଉନ୍ନତିପାଇଁ ଗାଁରେ ଧନୁଯାତ୍ରା ଆୟୋଜନ କରାଯିବାର ପରିକଳ୍ପନା କରାଗଲା । ମୋ ଜାଣିବାରେ, ଚିଚିଣ୍ଡା ଗ୍ରାମରେ ଅନେକ ଯାତ୍ରାପ୍ରେମୀ ରହୁଥିଲେ, ଏବେ ମଧ୍ୟ ଅଛନ୍ତି, ଏପରିକି ଯୁବପିଢ଼ିର କଳାକାରମାନେ ମଧ୍ୟ ଯାତ୍ରାସଂସ୍କୃତି ଆଡକୁ ଢଳି ବହୁସୁନାମ ଅର୍ଜନ କରୁଛନ୍ତି । ତେଣୁ ବରଗଡ ଜିଲ୍ଲା ଅନ୍ତର୍ଗତ ହୋଇଥିବାରୁ ନୁହେଁ, ଏହି ନିର୍ଦ୍ଦିଷ୍ଟ ଗାଁରେ ହିଁ ଧନୁଯାତ୍ରାର ମହାନ୍ ପରମ୍ପରା ରହିଛି । ଏକାଅଶୀରେ ଧନୁଯାତ୍ରା ଆୟୋଜନ ହେଲା ଲୋକଙ୍କ ଉଦ୍ୟମରେ କଲେଜ୍‌ପାଇଁ କିଛି ଅର୍ଥ ଆସିଥିଲା । କଲେଜ୍ ସେ ଅର୍ଥରୁ କେତେ ଚଳିଲା, ସେ ହିସାବ ମୋ ପାଖରେ ନାହିଁ । ତେବେ ଚିଚିଣ୍ଡାର ଧନୁଯାତ୍ରାର ଐତିହ୍ୟକୁ ନେଇ ବ୍ୟକ୍ତିଗତ ଭାବରେ କିଛି ଗବେଷଣାତ୍ମକ କାମ କଲାପରେ ଜାଣିଲି, ଏକାଅଶୀରେ ଆରମ୍ଭ ହୋଇଥିବା ଏ ଧନୁଯାତ୍ରା ହେଉଛି ତୃତୀୟ ପର୍ଯ୍ୟାୟର । ବାଞ୍ଜିପାଲିର ଅଶୀବର୍ଷରୁ ଅଧିକ ବୟସର ଲୋକେ ସେତେବେଳେ ମୋତେ କହିଥିଲେ, ୧୯୫୬ ରୁ ୬୦ ଭିତରେ ଦ୍ୱିତୀୟ

ପର୍ଯ୍ୟାୟ ଏବଂ ୧୯୨୭ ରୁ ୩୦ ମଧ୍ୟରେ ପ୍ରଥମ ପର୍ଯ୍ୟାୟ ଧନୁଯାତ୍ରା ଏହି ଗ୍ରାମରେ ଆୟୋଜିତ ହୋଇଥିଲା । ପ୍ରଥମ ପର୍ଯ୍ୟାୟ କେବଳ ସଞ୍ଚାର ବାହାକଙ୍କ ଦ୍ୱାରା ହରିବଂଶ ଗାୟନ ମାଧ୍ୟମରେ ଗାଁ ଖୁଲିରେ ଅନୁଷ୍ଠିତ ହୋଇଥିଲା । ଦ୍ୱିତୀୟ ପର୍ଯ୍ୟାୟ ସେହି ଗାଁ ଖୁଲିରେ ସାତରାତି ଧରି ସାତବର୍ଷ ଆୟୋଜିତ ହୋଇଥିଲା । ଏହା ମଧ୍ୟ ପଶ୍ଚିମ ଓଡ଼ିଶାର ବିଭିନ୍ନ ଗ୍ରାମରୁ ନିମନ୍ତ୍ରିତ ହୋଇ ଗାଁ ଖୁଲିରେ ଷୋହଳଟି ସ୍ତମ୍ଭରେ ମଡୁଆମାରି ବାହାକମାନଙ୍କ ଦ୍ୱାରା ହରିବଂଶ ଗାୟନ ମାଧ୍ୟମରେ ଧନୁଯାତ୍ରା ଆୟୋଜିତ ହୋଇଥିଲା । ଗାଁ ମୁଖିଆ କୃଷ୍ଣସିଂ ବାବୁ କହୁଥିଲେ, ସେ ସମୟରେ ଷୋହଳଟି ସ୍ତମ୍ଭପାଇଁ ଷୋହଳଗୋଟି ଗୋପିକା ମୂର୍ତ୍ତିରୁ ଚଉଦଟି ଦନ୍ତାନଦୀରେ ଭସାଇ ଦିଆଯାଇଥିଲା, ବାକି ଦୁଇଟି ଏବେ ମଧ୍ୟ ତାଙ୍କ ଘରେ ପୂଜାପାଉଛନ୍ତି । ଏହି ପର୍ଯ୍ୟାୟର ସାତବର୍ଷ ଯାକ ଶେଷଦିନରେ ଦୁଇଜଣ ଲେଖାଏଁ ବାଳକଙ୍କୁ କୃଷ୍ଣ ଓ ବଳରାମ ବେଶରେ ସଜ୍ଜିତ କରାଯାଇ ମଣ୍ଡଳୀରୁ ଶୋଭାଯାତ୍ରାରେ ମହାଡମ୍ବରରେ ଗାଁ ବୁଲାଯାଉଥିଲା । ପ୍ରତ୍ୟେକ ଘରେ ସେମାନଙ୍କୁ ସମ୍ବର୍ଦ୍ଧିତ କରାଯାଉଥିଲା । ଶେଷରେ ଗାଁ ମୁଣ୍ଡରେ ଥିବା ଏକ ପିପ୍ପଳ ଗଛରେ ପୁଆଳତିଆରି କଂସର ଏକ ପୁତ୍ତଳିକାରେ ଅଗ୍ନି ସଂଯୋଗ କରାଯାଉଥିଲା । ମୁଁ ନିଜେ ମୋ ନିଜଆଗ୍ରହରେ ଏଭଳି ଗବେଷଣାତ୍ମକ ତଥ୍ୟ ସଂଗ୍ରହ କରିଥିଲି ।

ଏଥି ସହ ନାଟକର ମଧ୍ୟ ଭଲ ପରମ୍ପରା ଏହି ଗାଁର ଯଶବୃଦ୍ଧିରେ ସହାୟକ ହୋଇଥିଲା । ଅଟଳ ବିହାରୀ ପଣ୍ଡାଙ୍କ ରଚିତ 'ଫଟାକପାଳ୍' ନାଟକଟି ସତୁରି ଦଶକରେ ମଧ୍ୟ ଏହି ଗ୍ରାମର କଳାକାରମାନଙ୍କ ଦ୍ୱାରା ସଫଳତାର ସହ ଅଭିନୀତ ହୋଇଥିଲା । ସ୍ୱର୍ଗତ ପ୍ରଫୁଲ୍ଲ ମେହେର ଏଥିରେ ନାରୀ ଚରିତ୍ର, ଚାବରୀ ଭୂମିକାରେ ଅଭିନୟକରି ଖ୍ୟାତି ଅର୍ଜନ କରିଥିଲେ । ସେ ବି ଆଜି ଦିବଙ୍ଗତ । ପ୍ରକୃତି କ୍ରୋଡରେ ବଢ଼ିଥିବା, ଏହି ଗ୍ରାମର ଚତୁର୍ଦ୍ଦିଗରେ ରହିଛି ବାଂଜିପାଲି, ପପଙ୍ଗା, ପିପିଲିପାଲି, ତାଲମେଣ୍ଡା, ବାଘପାଲି, କୁଦୋପାଲି ଭଳି କୃଷିସମୃଦ୍ଧ ଗ୍ରାମମାନ । ପପଙ୍ଗା ଛକରେ ସେତେବେଳେ ନିର୍ଜ୍ଜନତା ଘର କରିଥିଲା । ଆନ୍ଧ୍ର ହୋଟେଲ୍ ସତ୍ୟନାରାୟଣର, କଟକିଆର ଜଳଖିଆ ଗୁଡିଆ ଦୋକାନ, ବିଶି ଓ ପ୍ରଫୁଲ୍ଲର ପାନ ଦୋକାନ, ମନୋଜର ସେଲୁନ୍, ପଛପଟରେ କେନାଲ କଲୋନୀ, ତାକୁ ଲାଗି ସୁବାସ ଅଗ୍ରୱାଲଙ୍କ ଘର ଓ ଦୋକାନ ସକାଳହେଲେ ଚଳଚଞ୍ଚଳ ହୋଇଯାଏ ଛକଟି । ଜୀବନ୍ତ ଜଣାପଡେ, ଲୋକଗହଳିରେ ହଜିଯିବାକୁ ହୁଏ । ବିଶ୍ୱକର୍ମା ପୂଜାବେଳେ ଉତ୍ସବମୁଖରିତ ହୋଇପଡେ ସମଗ୍ର ଅଞ୍ଚଳଟି । କେନାଲ୍ ଏସ୍.ଡି.ଓ. ଏହାର ନେତୃତ୍ୱ ନିଅନ୍ତି । ମଣ୍ଡପ ସଜାଯାଏ,

ଜରିପତାକାର ଛାଉଣି ଇଲାକାଟିକୁ ଆଚ୍ଛାଦିତ କରିପକାଏ । ମାଇକ୍‌ରେ ଗୀତ ବାଜେ, କଲେଜ୍‌ରେ କ୍ଲାସ ନେଲେ ବି ମାଇକ୍ ଯୋଗୁଁ ନ ନେବା ଭଳିଆ ଲାଗେ, ଗର୍ରାମାଡ୍ ଖେଳାଯାଏ, ସଞ୍ଜବେଳେ ପ୍ରଚୁର ଜନଗହଳି ହୁଏ, ମିଠେଇ, ଗଜା, ସିଙ୍ଗଡା, ବରାର ପସରା ବସେ ।

ଆମେ ଏକାସଙ୍ଗରେ ରହୁଥିଲୁ ଚାରିଜଣ ଅଧ୍ୟାପକ । ମୋ ସହ ଇଂରାଜୀ ଅଧ୍ୟାପକ ସିଦ୍ଧାର୍ଥ ସାହୁ, କମ୍‌ଗାଁର, କୀର୍ତ୍ତନ୍ୟ ବିଶି ଜନ୍‌ହାପଡାର, ଅର୍ଥନୀତି ଅଧ୍ୟାପକ ଏବଂ ତେଜରାଜ ବାଗ୍, ଟାଇପ୍ ରାଇଟିଂର ଡେମଷ୍ଟ୍ରେଟର୍, ବରପାଲି ନିକଟସ୍ଥ ସିକିର୍ଡି ଗ୍ରାମର, ପରେ ଶିକ୍ଷା ବିଭାଗର ଅଧ୍ୟାପକ ସତଲମାର ସାଧୁଚରଣ ସାହୁ ଆମ ସାଙ୍ଗରେ ରହିଲେ । ମୁଁ ଏମାନଙ୍କ ସାଙ୍ଗରେ ରହିବା ମୁହୂର୍ତ୍ତରୁ ହିଁ ନିଜର ଅତି ଆପଣାର ହୋଇଯାଇଥିଲି । ନିତ୍ୟକର୍ମ ପାଇଁ କ୍ୱାଟର୍ ପଛପଟ ବିରାଟ ସବୁଜ ପ୍ରାନ୍ତର, ସ୍ନାନାଦି କାର୍ଯ୍ୟପାଇଁ କେନାଲ୍‌ର ନୀଳ ଜଳରାଶି, ଜଳଖିଆ ଓ ଭୋଜନ ପାଇଁ ସତ୍ୟନାରାୟଣର ଆନ୍ଧ୍ର ହୋଟେଲ୍, ପାନସିଗାରେଟ୍ ପାଇଁ ବିଶି ଦୋକାନ, ଦେହ ଖରାପହେଲେ ଡାକ୍ତର ପ୍ରଫୁଲ୍ଲ ମହାକୁଡ, ବେଶ୍, ବଞ୍ଚିବା ପାଇଁ ଆଉ କଣ ଦରକାର ! !

ରଥ ଯା' ଚଲିଯା', ଚକ ଗଡି ଯା'ର ନ୍ୟାୟରେ ପ୍ରାଣଶକ୍ତିଟା ମନ୍ଥର ଗତିରେ ଗଡୁଥିଲା, ଫୁସ୍‌ଫୁସ୍‌ରେ ରକ୍ତ ପ୍ରବାହପାଇଁ ଅସୁବିଧା ହେଉ ନଥିଲା, ରୁଟି, ଆଳୁଝୋଳର ଅଭାବ ନ ଥିଲା । ଉପଭୋଗ ପାଇଁ ପ୍ରାକୃତିକ ବୈଭବର କିଛି ଉଣା ନଥିଲା, ଲେଖିବା ପାଇଁ କଲମଟା ବି ବ୍ୟସ୍ତ କରିଦେଉଥିଲା । ତେଣୁ, ସକାଳହେଲେ ନିତ୍ୟକର୍ମ ସାରି ଜଳଖିଆ ପେଟେ ଗେଫି ବସିପଡୁଥିଲି କାଗଜଧରି, ଲେଖୁଥିଲି ଦୈନିକ ଅଗ୍ନିଶିଖାପାଇଁ ରମ୍ୟ ଧାରାବାହିକ, କହେଲେ ମଲ ! ! !



**ପ**ଞ୍ଚାଅଶୀ ଭିତରେ ଶିକ୍ଷା ଅନୁଷ୍ଠାନ ତରଫରୁ ଆଉଥରେ ଏହ୍ଲାବାଦ ନାଟକ ପ୍ରତିଯୋଗିତାରେ ଅଂଶଗ୍ରହଣ କରିବାର ମିଳିଥିଲା । ତେବେ ଏଥର ନାଟକର ପ୍ରଚ୍ଛଦ ସଂଗୀତପାଇଁ । ଶୈଳେଶ ପଟ୍ଟନାୟକଙ୍କ ରଚିତ 'ନିଷ୍କଳ ନୂପୁର'କୁ ନିର୍ଦ୍ଦେଶନା ଦେଇଥିଲେ ଭବାନୀ ଶଙ୍କର ଦାସ । ଏଥିରେ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ରାଜେନ୍ଦ୍ରପ୍ରସାଦ ପଣ୍ଡା ଏବଂ ଅପରାଜିତା ପ୍ରିୟଦର୍ଶିନୀ, ଅପରାଜିତାଙ୍କ ଏହା ପ୍ରଥମ ମଞ୍ଚନାଟକ । ଜଣେ ନର୍ତ୍ତକୀର ଜୀବନଉପରେ ଆଧାରିତ ଏହି ନାଟକର ପ୍ରଚ୍ଛଦସଂଗୀତ

ପ୍ରଦାନ କରିଥିଲେ ଅରୁଣ ସେଠ୍ ଏବଂ ମୁଁ କେବଳ ତାଙ୍କୁ ସହାୟତା କରିଥିଲି । ଶିଳ୍ପୀ ନାଟ୍ୟଦଳ ସହ ତିନିଥର ଏହ୍ଲାବାଦ ଯାଇ ତିନୋଟି ଯାକ ନାଟକରେ ସହଯୋଗ କଲେ ସୁଦ୍ଧା ବ୍ୟକ୍ତିଗତ ଭାବରେ ମୁଁ ଅନୁଭବ କରୁଥିଲି, ପ୍ରତିଯୋଗିତାରେ ଅଂଶଗ୍ରହଣ କରିବାପାଇଁ ଯେଉଁଭଳି ପାଣ୍ଡୁଲିପି ଆବଶ୍ୟକ, ଶିଳ୍ପୀ ତାହା ପାଇପାରୁ ନଥିଲା । ତେଣୁ ପୁରସ୍କାର ଶୂନ୍ୟ ହୋଇ ପ୍ରତିଥର ଫେରୁଥିଲା । ପାଣ୍ଡୁଲିପି ହିଁ ପ୍ରଥମେ ଦୃଢ ହେବାକଥା, ପରେ ଲେଖା ଅନୁସାରେ ନିର୍ଦ୍ଦେଶନାର ଚମତ୍କାର ସ୍ପର୍ଶ ରହିଲେ ଏକ ନାଟକ ପ୍ରତିଯୋଗିତା ପାଇଁ ଉତ୍କୃଷ୍ଟ ମନେହୁଏ ।

ପରେ ବହୁମୁଖୀ ଶ୍ରମମଙ୍ଗଳ କେନ୍ଦ୍ର ତରଫରୁ ପ୍ରମୋଦ ତ୍ରିପାଠୀଙ୍କ ରଚିତ, ନରେନ୍ଦ୍ର ମିଶ୍ରଙ୍କ ଦ୍ୱାରା ନିର୍ଦ୍ଦେଶିତ 'ସୀମାବଦ୍ଧ' ନାଟକ ମଧ୍ୟ ଏହ୍ଲାବାଦଠାରେ ମଞ୍ଚସ୍ଥ ହୋଇଥିଲା । ଏଥିରେ ମୁଁ ଅପେକ୍ଷାକୃତ ବଡ଼ ଭୂମିକାରେ ଅଭିନୟ କରିଥିଲି । ପଞ୍ଚାନନ ମିଶ୍ର, ନରେନ୍ଦ୍ର ମିଶ୍ର ପ୍ରମୁଖ ଏଥିରେ ଅଭିନୟ କରିଥିଲେ । ପୂର୍ବରୁ ଏହି ନାଟକଟି ପ୍ରଥମେ ଅଧ୍ୟାପକ ଦିଲୀପ ପଣ୍ଡାଙ୍କ ନିର୍ଦ୍ଦେଶନାରେ ନାଟ୍ୟକଳା ପରିଷଦର ଏକାଙ୍କିକା ପ୍ରତିଯୋଗିତାରେ ମଞ୍ଚସ୍ଥହୋଇ ପୁରସ୍କୃତ ହୋଇଥିଲା । ଏହ୍ଲାବାଦରେ ଏହି ନାଟକ ଅଭିନୀତ ହେବା ବେଳେ ଠିକ୍ ସେହି ମାଂସର ଫୁଲ ନାଟକଭଳି ଘଟଣା ପୁନର୍ବାର ଘଟିଲା । ନରେନ୍ଦ୍ର ମିଶ୍ର ପରିବର୍ତ୍ତିତ ଚରିତ୍ରରେ ସାଜିଥିଲେ ରାଜା ଓ ମୁଁ ସାଜିଥିଲି ରାଜାଙ୍କ ଦାସ । ଏକ ଦୃଶ୍ୟରେ ସମ୍ରାଟ ଦାସକୁ ଚାବୁକ୍‌ରେ ପିଟିବାର ଦୃଶ୍ୟଥିଲା, ନରେନ୍ଦ୍ର ତାଙ୍କ ଅଭିନୟକୁ ଜୀବନ୍ତ କରିବାପାଇଁ ମୋ ପିଠିରେ ଏମିତି ଚାବୁକ୍ ମାଡ ଦେଲେ, ତାହା ମୋ ପାଇଁ ଅସହ୍ୟ ହୋଇପଡିଥିଲା । ଏକେ ତ ଖାଲିଦେହ, ତା ଉପରେ ପୁଣି କୋରଡାମାଡ, ପିଠିସାରା ଲାଲେଲାଲ୍ ହୋଇଯାଇଥିଲା । ଅଭିନୟ ବୋଲି ସହିବାପାଇଁ ପଡିଲା, ନାଟକ ଶେଷ ହେବାମାତ୍ରେ ଦୁଇଜଣ ବିଚାରକ ମୋ ନିକଟକୁ ଦୌଡିଆସି ମୋର ଅବସ୍ଥା ସମ୍ପର୍କରେ ପଚାରି ସାନ୍ତ୍ୱନା ଦେଲେ । ଜଣେ ସେ ଭିତରୁ ମୋତେ କହିଲେ, ଆପ୍ ଅପେରା କରତେ ହେଁ କ୍ୟା ! ତାଙ୍କ ପଚାରିବାର ଅର୍ଥ, କେବଳ ଅପେରାରେ ହିଁ ଏମିତି ଅତିରଞ୍ଜିତ ଅଭିନୟ ଦେଖାଯାଏ । ଆମେ ତ ମଞ୍ଚନାଟକ କରୁଥିଲୁ ! !

ପରବର୍ଷ ନନ୍ଦପଡାର ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦ ମଧ୍ୟ ଏହ୍ଲାବାଦ ଯିବାର ପ୍ରସ୍ତାବ ମୋ ନିକଟୁ ଆସିଲା । ମୋର ସମ୍ପ୍ରତିପରେ ଉଡଲାପତର୍ ବୁଡଲାଡଙ୍ଗା ନାଟକଟି ପଠାଗଲା । ସଠିକ୍ ସମୟରେ ମନୋନୀତ ହେବାର ପତ୍ର ମଧ୍ୟ ଆସିଗଲା । ମୋ ନିର୍ଦ୍ଦେଶନାରେ ଏହ୍ଲାବାଦରେ ହେବ ପ୍ରଥମ ନାଟକ । ପୂର୍ବରୁ ପଞ୍ଚାନନ ମିଶ୍ର

ଦୁଇଦୁଇ ଥର ଶ୍ରେଷ୍ଠଅଭିନେତା ଭାବରେ ପୁରସ୍କୃତ ହୋଇସାରିଥିଲେ । ତାଙ୍କ ଦଳ ସହ କଂସାରି ପଡାର ଧର୍ମାତ୍ମା ଅନୁଷ୍ଠାନ ମଧ୍ୟ ସେ ବର୍ଷ ପ୍ରସନ୍ନ ସାହୁଙ୍କ 'ହାରିଗଲେ ସରିଗଲା' ନାଟକ ଏବଂ ବିପିନ ଦାସଙ୍କ ସମ୍ବଲପୁର କଳାକେନ୍ଦ୍ର ମଧ୍ୟ ଏହି ପ୍ରତିଯୋଗିତାରେ ଭାଗ ନେଇଥିଲେ । ଆମ ନାଟକଟି ଯେତେବେଳେ ମଞ୍ଚସ୍ଥ ହେଲା, କୁନ୍ଦୀ ଭୂମିକାରେ ଅଭିନୟ କରିଥିବା ଅଞ୍ଜଳୀ ମେହେରଙ୍କ ଅଭିନୟ ଦେଖି ସେ ନିଶ୍ଚୟ ଶ୍ରେଷ୍ଠ ଅଭିନେତ୍ରୀ ଭାବରେ ପୁରସ୍କୃତ ହେବାର ଆଶା ରଖିଥିଲି । ହେଲେ ସମଗ୍ର ଓଡିଶାକୁ କେବଳ ଗୋଟିଏ ଜୁରୀ ପୁରସ୍କାର ଆସିଥିଲା, ତାହା ପୁଣି ଆମ ନାଟକ 'ଉଡଲାପତର୍ ବୁଡଲାଡ୍‌ଙ୍ଗାକୁ', ଏହା ଶ୍ରେଷ୍ଠ ଆଞ୍ଚଳିକ ନାଟକ ଭାବରେ ପୁରସ୍କୃତ ହେଲା । ମୁଁ ଦୁଃଖ ନକଲେ ବି କ୍ଷୋଭପ୍ରକାଶ କରିଥିଲି ପ୍ରତିଯୋଗୀ ଭାବରେ । ଅଞ୍ଜଳୀଙ୍କୁ କହିଥିଲି, ଆସନ୍ତା ବର୍ଷ ତୁମେ ନିଶ୍ଚୟ ପୁରସ୍କୃତ ହେବ, କଥା ଦେଉଛି । ଏହାପରବାଦ ସଫଳତା ପାଇଁ ସେବର୍ଷ ନନ୍ଦପଡାର ନୂଆଖାଇ ଭେଟ୍ ଉତ୍ସବରେ ସମ୍ମାନିତ କରାଯାଇଥିଲା, ପଡାର ରିହାର୍ସାଲ କୋଠରିରେ ଏକ ଛୋଟ ଜଳଖିଆ ପାର୍ଟି ମଧ୍ୟ ଆୟୋଜିତ ହୋଇଥିଲା ।

ଏପଟେ କଲେଜ୍‌ରୁ ଦୁର୍ଭାଗ୍ୟଜନକ ପରିସ୍ଥିତିରେ ଅଧ୍ୟକ୍ଷ ନେତ୍ରାନନ୍ଦ ପୂଜାରୀ ବିଦାୟ ନେଲେ ତାଙ୍କ ଅଧୀନରେ ଛ'ମାସ ରହି ମୁଁ ଶୃଙ୍ଖଳାଜ୍ଞାନ ସମ୍ପର୍କରେ କିଛି ଶିକ୍ଷା ଲାଭ କରିଥିଲି । ତାଙ୍କପରେ ବରିଷ୍ଠ ଅଧ୍ୟାପକ ସୁଧୀର ଚୋପଦାର ଭାରପ୍ରାପ୍ତ ଅଧ୍ୟକ୍ଷଭାବରେ ଦାୟିତ୍ୱ ଗ୍ରହଣ କଲେ । ଏନ୍.ଏସ୍.ଏସ୍.ର ଅଭିଜ୍ଞତା ଦେଖି ଏଠାରେ ମଧ୍ୟ ମୋତେ ଜାତୀୟ ସେବା ସଂସ୍ଥାର ଅଧିକାରୀ ଭାବରେ ନିଯୁକ୍ତି ପ୍ରଦାନ କଲେ । ପ୍ରଥମ ବର୍ଷରୁ ହିଁ ମୁଁ ମୋର କାର୍ଯ୍ୟକ୍ରମ ଆରମ୍ଭ କରିଦେଲି । ତୁରୁମ୍‌ଠାରେ ପ୍ରଥମ ସ୍ୱତନ୍ତ୍ର ଶିବିର ଆୟୋଜିତ ହେଲା । ତୁରୁମ ହାଇସ୍କୁଲରେ ରହି ଦଶଦିନ ଭିତରେ ଖେଳପଡିଆ ସହ ଆହୁରି ଅନେକ ବିକାଶ ମୂଳକ କାର୍ଯ୍ୟ କରିଥିଲୁ । ଛାତ୍ରମାନେ ଖୁବ୍ ସହଯୋଗ କରିଥିଲେ । ନାଚଗୀତରେ ଦଶଦିନ କେମିତି କଟିଗଲା, ଜଣାପଡିଲା ନାହିଁ । ମୋର ସୌଭାଗ୍ୟକୁ ପ୍ରଫେସର୍ ଆର୍ତ୍ତବନ୍ଧୁ ମିଶ୍ର ସେତେବେଳେ ସଂଯୋଜକ ଭାବରେ ଯୋଗ ଦେଇଥିଲେ ତାଙ୍କ ସମ୍ପର୍କରେ ଆସି ମୁଁ ଆହୁରି ଉତ୍ସାହିତ ହୋଇଥିଲି । ତୁରୁମ୍‌ଠାରେ ଆମ କଲେଜ୍‌ର ଶିବିରର ସଫଳତା ଦେଖି ଆମ ପିଲାଙ୍କୁ ଆଗାମୀ ଏକ୍‌ମାସ୍ ଅବକାଶରେ ଅତାବିରା କଲେଜ୍ ଆୟୋଜନ କରୁଥିବା ଅନ୍ତଃକଲେଜ୍ ସ୍ତରୀୟ ଶିବିରରେ ଯୋଗ ଦେବାପାଇଁ ଆମନ୍ତ୍ରଣ କଲେ । ଆନନ୍ଦର ସହ ଅପେକ୍ଷାକଲେ ଆମ କଲେଜ୍‌ର ଛାତ୍ରମାନେ ସେହି ଅତାବିରାର ଶିବିରକୁ ।

କଲେଜ୍‌ର ନିୟମିତ କ୍ଲାସ୍ ଚାଲିଲା । ପଞ୍ଚାଅଶୀ ଶେଷ ଭାଗରେ ରାଜନୀତି ବିଜ୍ଞାନର ଅଧ୍ୟାପକ ଭାବରେ ସିନ୍ଦୂରପୁରର ଗଜାନନ ପଣ୍ଡା ଯୋଗ ଦେଲେ । ପୂର୍ବରୁ ଏହି ପଦବୀରେ ଥିବା ଚିଚିଣ୍ଡାଗ୍ରାମର ଅଧ୍ୟାପିକା ବୀଣାପାଣି ପ୍ରଧାନ ଥିଲେ, ସେ ଇସ୍ତଫା ଦେଇ ଗଲାରୁ ତାଙ୍କ ପଦବୀରେ ପଣ୍ଡାବାବୁ ଯୋଗଦେଲେ । ସେହି ଅନ୍ତରୀଣ ସମୟ ଗାଁର ଅରୁଣ ପ୍ରଧାନ ଅସ୍ଥାୟୀ ଭାବରେ ଯୋଗଦେଇ କ୍ଲାସ୍ ନେଉଥିଲେ । ପରେପରେ କିନ୍ତୁ ରତନଲାଲ ଶର୍ମା ରାଜନୀତି ବିଜ୍ଞାନ ବିଭାଗର ଦ୍ୱିତୀୟ ପଦବୀରେ ଯୋଗ ଦେଲେ, ଯେ ଚଳିତବର୍ଷ ଲରମ୍ବା କଲେଜ୍‌ରୁ ଅବସର ନେଇଛନ୍ତି । ସେ ଚିଚିଣ୍ଡାରେ ନରହି ବୁର୍ଲାରୁ ଯିବାଆସିବା କରୁଥିଲେ । କମନ୍‌ରୁମ୍‌ରେ ଆମ ଅଧ୍ୟାପକମାନଙ୍କ ଭିତରେ ଖୁବ୍ ଖଟି ଚାଲେ । ଏକେ ତ ମୁଁ ସହର ବାସିନ୍ଦା ଏବଂ ମନଖୋଲି କଥା ଲାଗିବାର ଲୋକ । ମୁଁ ଓଡ଼ିଆ ମେଡମ୍ ପଙ୍କଜିନୀ ମିଶ୍ରଙ୍କୁ ସିଧାସିଧା କହି ଦେଇଥିଲି, ଦେଖନ୍ତୁ ମେଡମ୍, ଆପଣ ଝିଅ ଲୋକ, ମାନେ କବିତାର ଗ୍ରାହକ, ଆପଣ ପଦ୍ୟ କ୍ଲାସ୍ ନେବେ, ଆଉ ମୁଁ ପୁରୁଷ ଲୋକ, ଆମେ କର୍କଶ, ଗଦ୍ୟ ପଢେଇବି ମୁଁ । ମୋ ପ୍ରସ୍ତାବରେ ସେ ଆନନ୍ଦରେ ରାଜିହେଲେ । ସେ କଲେଜ୍‌ରୁ ବଦଳି ହେବାଯାଏ ଏମିତି ଚାଲୁଥିଲା କ୍ଲାସ୍, ଆମ ଉଭୟଙ୍କ ମଧ୍ୟରେ ଖୁବ୍ ଭଲ ସଂହତି ରହିଥିଲା । ଏମିତି ଗପରେଗପରେ ମୁଁ ଆମ ଅଧ୍ୟାପକମାନଙ୍କୁ କହିଦେଲି, ଏଠି ତ କିଛି ହେଉନାହିଁ ମୁଁ ଏଠି ରହିଲେ କଣ କରିବି । ମୋର ତ ସବୁବେଳେ କାମ ଦରକାର, ନାଟକ ନାହିଁ, ଫାଟକ ନାହିଁ, ଖାଲି ଧନୁଯାତ୍ରା ହେଉଛି । ଖେଚଡରେ କହୁକହୁ କହିଦେଲି, କିଛି ନହେଲେ କଂସ ମହାରାଜ ହୋଇ ନିଜ କଣ୍ଠ ମେଣ୍ଟାଇବା ପାଇଁ ପଡିବ । ମୋ କଥା ଶୁଣି ମୋ ସହ ସମସ୍ତେ ହାସ୍ୟରୋଳରେ କମ୍ପେଇ ଦେଇଥିଲୁ କମନ୍‌ରୁମ୍‌ଟା । ପୂଜାରୀ ସାର୍ ଥିବାବେଳେ କୌଣସି ଅଧ୍ୟାପକ ଏମିତି ଖୋଲା ହୃଦୟର ହସ ହସିପାରୁ ନଥିଲେ । କହନ୍ତିନି, ଗାଁକେ ମୁଡାଟେ, ଆଉ ଘରକେ ବୁଢାଟେ । ଏବେ ତ ସଭିଏ ଯୁବା, କାହିଁକି କିଏ କାହାକୁ ଡରିବ ! !

ପୂଜାରୀବାବୁ ଗଲାପରେ ଇଂରାଜୀ ଅଧ୍ୟାପକ ସିଦ୍ଧାର୍ଥ ସାହୁଙ୍କ ସମୟ ମଧ୍ୟ ଆସିଗଲା । ପରିଚାଳନା କମିଟିସହ ଭଲ ଗଲାନି ବୋଲି ସେ ବି ଚାଲିଗଲା ପରେ ଭୁକ୍ତା କଲେଜ୍‌ରେ ଯୋଗଦେଲେ । ସିଦ୍ଧାର୍ଥବାବୁ ଗଲାପରେ ଆମ କଲେଜ୍‌ର ଇଂରାଜୀ ଅଧ୍ୟାପକ ପ୍ରଥମ ପଦବୀଟି ଅଭିଶପ୍ତ ହେଲାପରି ଅନେକ ପ୍ରତିଭାସମ୍ପନ୍ନ ଅଧ୍ୟାପକ ଆସି ବାଟହୁଡି ଚାଲିଗଲେ । ପଞ୍ଚାନନ ପଣ୍ଡା, ପବିତ୍ର ଦାସ, ପଞ୍ଚାନନ ତ୍ରିପାଠୀ, ଶୀରିଷ ଦାସ ଆହୁରି କେତେକଙ୍କ ନାମ ମନେ ପଡୁନି । ଏବେ କୁଦୋପାଲିର ଏହି କଲେଜ୍‌ର

ପୁରାତନ ଛାତ୍ର ରାମଚନ୍ଦ୍ର ସାହୁ ଇଂରାଜୀ ବିଭାଗର ଦ୍ୱିତୀୟ ପଦବୀରେ ଯୋଗଦେଇ ବିଭାଗଟିକୁ ସମ୍ଭାଳିନେଲେ, ଏବେ ସେ ଅଧକ୍ଷ ଭାବରେ ଦାୟିତ୍ୱ ନେଇଛନ୍ତି, କଲେଜ୍ ସମ୍ଭାଳୁଛନ୍ତି । ପରେ ମନ୍ମୟୀ ବାବୁ ଅଧାପିକାଭାବରେ ଯୋଗ ଦେଲେ ।

ଅତାବିରା କଲେଜ୍ ଆୟୋଜିତ ସ୍ୱତନ୍ତ୍ର ଶିବିରର ସମୟ ଆସିଗଲା । କିଛି ପିଲାଙ୍କୁ ଧରି ମୁଁ ତାଙ୍କ ସହ ଅତାବିରା ଚାଲିଲି । କଲେଜ୍‌ର ଅଧାପକ ସୁନୀଲ ପଣ୍ଡା ଏବଂ ଅଧାପକ ଗୋରାଚାନ୍ଦ୍ ମହାପାତ୍ର ସେହି ଅନ୍ତଃକଲେଜସ୍ତରୀୟ ଶିବିର ପରିଚାଳନା କରୁଥାନ୍ତି । ଆମ ଭିତରେ ଖୁବ୍‌ସୁନ୍ଦର ଭାବସଭାବ ସୃଷ୍ଟି ହେଲା । ଆଠ, ନ'ଟି କଲେଜ୍‌ର ସ୍ୱେଚ୍ଛାସେବୀ ଏଠାରେ ଯୋଗ ଦେଇଥିଲେ । ରେଙ୍ଗାଲିପାଲି ରାସ୍ତାରେ ଥିବା ଆମ୍ରପଡାର ଏକ ପରିତ୍ୟକ୍ତ ପୋଖରୀକୁ ନବୀକରଣ କରିବାଥିଲା ଆମ ମୁଖ୍ୟକାର୍ଯ୍ୟ । ଦିନରେ କାମ, ସଂଧାରେ ଗାଁ ମଝିରେ ସାଂସ୍କୃତିକ କାର୍ଯ୍ୟକ୍ରମର ଆସର । ନନ୍ଦିକିଶୋର ପୂଜାରୀ ସାର୍ ଥିଲେ ବିଶ୍ୱବିଦ୍ୟାଳୟର କୁଳସଚିବ, ସେ ଆମ ଶିବିରକୁ ଆସି ଆମ ବନ୍ଧକୋଡା ଦେଖି, ଆନନ୍ଦିତ ହୋଇ ପିଲାମାନଙ୍କୁ ଉତ୍ସାହିତ କରିଥିଲେ । ସୁନୀଲବାବୁଙ୍କ ପରିଚାଳନାଗତ ପ୍ରତିବଦ୍ଧତା, ଗୋରାବାବୁଙ୍କ ବନ୍ଧୁବତ୍ସଳତା ସାମଗ୍ରିକଭାବରେ ଏହି ସ୍ୱତନ୍ତ୍ର ଶିବିରକୁ ସଫଳତାର ଶୀର୍ଷସ୍ଥାନକୁ ନେଇଯାଇଥିଲା । ମୁଁ ଉଭୟ ବନ୍ଧୁଙ୍କଠାରୁ ବୟସରେ ବଡଥିବାରୁ ଉଭୟଙ୍କୁ ମୋର ଜୋଇଁ ବୋଲି ସମ୍ବୋଧନ କରୁଥିଲି, ସେମାନେ ମଧ ଏଯାଏଁ ଶ୍ୱଶୁରେ ବୋଲି ଡାକନ୍ତି ।।

ଏମିତି ଚାରିପାଞ୍ଚ ଦିନ ସୁରୁଖୁରୁ ଭାବରେ କଟିଯିବା ପରେ ଦିନେ ସକାଳେ ମୁଁ ଜଳଖିଆ ନେଇ ବନ୍ଧପଟକୁ ଯିବାର ପ୍ରସ୍ତୁତିରେ ଅଛି, ଅତାବିରାର କଲେଜ୍ ପିଅନ୍ ଆସି ଖବର ଦେଲା ଚିଚିଣ୍ଡାରୁ କିଛି ବ୍ୟକ୍ତି ଆସି ଆପଣଙ୍କୁ ଖୋଜୁଛନ୍ତି । ମୁଁ ଜଳଖିଆ ଖାଇସାରି ସେମାନଙ୍କ ପାଖକୁ ଯାଇ ଦେଖେତ କଲେଜ୍‌ର ପୂର୍ବତନ ପରିଚାଳନା ସଂପାଦକ ଗରୁଡଧ୍ୱଜ ପ୍ରଧାନ, ଅନ୍ୟତମ ସଦସ୍ୟ କୃଷ୍ଣ ସିଂ ବାବୁ ଏବଂ ଆଉ ଜଣେ, ଯାହାଙ୍କୁ ମୁଁ କେବେ ଦେଖି ନଥିଲି କିମ୍ବା ଜାଣି ନଥିଲି । ଯଥାମାନ୍ୟ ନମସ୍କାର କରି ବସିବାପାଇଁ କହି ମୋତେ ଖୋଜିବାର ଉଦ୍ଦେଶ୍ୟ ବାବଦରେ ପଚାରିଲି । କୃଷ୍ଣ ସିଂ ବାବୁ କହିଲେ, ଆମେ ଯେନ୍‌ଥିର୍ ଲାଗି ଆପଣକର୍ ପାଖକେ ଆଇଛୁଁ, ହେଥି ଆପଣ ହଁ ନାଇଁ କହେଲେ ଆମେ ନାଇଁ ଯାଉଁ ।

ମୁଁ ଆଶ୍ଚର୍ଯ୍ୟ ହେଲି କଥା କଣ, କଲେଜ୍ ଡ୍ୟୁଟିରେ କଣ ଅସୁବିଧା ହେଲାକି, କ୍ଲାସ୍ ନେବାରେ କିଛି ତ୍ରୁଟି ରହିଗଲାକି, ମୋତେ ପୁଣି କଲେଜ୍ ଛାଡିବାକୁ ପଡିବକି ବୋଲି କେତେ ଦୁଶ୍ଚିନ୍ତା ମୋତେ ଇତସ୍ତତଃ କରିଦେଲା । ମୁଣ୍ଡରେ ଝାଳ ଆସିବା

ପୂର୍ବରୁ ଗରୁଡବାବୁ କହିଲେ, ଦ୍ୱାରିକା ବାବୁ, ଆମେ ପ୍ରତିବର୍ଷ ଆମର୍ ଗାଁ ନ ଧନୁଯାତ୍ରା କର୍ସୁଁ । ଆମେ ଶୁନଲୁଁ, ଆପଣ ବି ଜଣେ ପୋଖତ ଅଭିନେତା, ଇଥର ଆପଣ କଂସ ହେତେ ବଏଲେ ଆମେ ଖୁସିହେତୁଁ ।

ହଠାତ୍ ମୋର ପାଦତଳୁ ପୃଥିବୀଟା ତଳକୁ ଚାଲିଗଲାଭଳି ଅନୁଭବକଲି । ମୁହଁରୁ କିଛି ବାହାରିଲାନାହିଁ । କଣ ବା ଉତ୍ତର ଦେଇଥାନ୍ତି ! ଧନୁଯାତ୍ରା କିଏ, ମୁଁ କିଏ । ମୁଁ ପୁଣି ହେବି କଂସ !!!

ଅତି ବିନୟର ସହ କହିଲି, ଆପଣମାନେ ମୋତେ ଭୁଲ ବୁଝିଛନ୍ତି । ମୁଁ ଜଣେ ନାଟ୍ୟାଭିନେତା, ଠିକ୍ କଥା, ହେଲେ ମୁଁ କେବେ ଯାତ୍ରା କରିନାହିଁ, ଅପେରା ମୋତେ ଭଲ ଲାଗେନି । ଏବେ ସୁଦ୍ଧା ମୁଁ ପୌରାଣିକ ନାଟକଟିଏ ବି କରିନାହିଁ । ଆପଣମାନେ କେଉଁ ବିଶ୍ୱାସନେଇ ଆସିଛନ୍ତି ? ଅସମ୍ଭବ, ମୋ ଦ୍ୱାରା ହେବନାହିଁ ।

ମୁଁ ବିଲକୁଲ୍ ମଙ୍ଗୁ ନଥିଲି ପରେ କୃଷ୍ଣ ସିଂବାବୁ ଏବଂ ଗରୁଡବାବୁ ଏମିତି କଥାମାନ କହିଲେ, ମୁଁ କିଛି ସମୟ ଭାବି, କଥାଟିକୁ ଏକ ଆହ୍ୱାନ ଭାବରେ ଗ୍ରହଣ କରି ସମ୍ମତି ପ୍ରଦାନ କରିଥିଲି । ସେମାନେ ମୋର ସହମତି ପାଇ ଖୁସିରେ ଫେରିଗଲେ ସିନା, ମୁଁ କିନ୍ତୁ କଥାଟିକୁ ମୋ ଭିତରେ ଦବାଇ ରଖିଲି ଶିବିର ଶେଷ ପର୍ଯ୍ୟନ୍ତ ।

ଦଶଦିନ ପରେ ଶିବିର ଶେଷ ହେବାପରେ ପିଲାମାନଙ୍କୁ ନିଜନିଜ ଘରକୁ ଯିବାର ବ୍ୟବସ୍ଥା କରି ବସ୍‌ରେ ବସିପଡିଲି ନିଜଘର ଧନୁପାଲି ଅଭିମୁଖେ । ବସ୍‌ରେ ବସିପଡିବା ପରେ ଚିନ୍ତାକରିବାରେ ଲାଗିଲି, କେମିତି କରିବି ? ହଁ'ସିନା କହିଦେଲି ହେଲେ ପୌରାଣିକ ଧାରାର ଯାତ୍ରା କେବେ ଦେଖିନାହିଁ, କି କରିନାହିଁ । ବରଗଡ ଧନୁଯାତ୍ରା ବି ଆଜି ପର୍ଯ୍ୟନ୍ତ ଦେଖିନାହିଁ, କଣ କରାଯାଇପାରେ କହି ଦେବିକି ଯେ ମୁଁ ପାରିବିନି, ଅନ୍ୟକାହାକୁ କହି ଦିଅନ୍ତୁ !!

ପରକ୍ଷଣରେ ପୁଣି ଭାବେ, ମନା କରିଦେଲେ କଣ ଭାବିବେ, କେତେ ଗାଳି କରିବେ, ଗାଁ ନେତୃସ୍ଥାନୀୟ ଲୋକ, ଅବଜ୍ଞା କରିବାଟା ଭୁଲ୍ ହେବ । ନା, ଥରେ ଏତୁଣ୍ଡରୁ ହଁ ବାହାରିଛି ମାନେ କରିବି ହିଁ କରିବି, କଥା ଦେଇଛି ମାନେ ତାକୁ କାର୍ଯ୍ୟକାରୀ କରିବି, କଥାଦେଇ ତାକୁ କାର୍ଯ୍ୟକାରୀ କରିବା ମଣିଷପଣିଆ କଥା !

ମୁଁ ରାଜା ହେବି, ମହାରାଜ କଂସ, ମଥୁରା କଟକର ଦିଗ୍‌ବିଜୟୀ, ମହାପରାକ୍ରମୀ ସମ୍ରାଟ କଂସ ହାଃ...ହାଃ...ହାଃ...ହାଃ..., ମୋରି ପାଦତଳେ ଖଟିବେ ଅସଂଖ୍ୟ ଦାସଦାସୀ, ମନ୍ତ୍ରୀ, ସେନାପତିଙ୍କ ଗହଣରେ ମୁଁ ମୋର ଶୌର୍ଯ୍ୟ, ବୀର୍ଯ୍ୟର

ଶକ୍ତି ପ୍ରଦର୍ଶନ କରିବି, ତ୍ରିଭୁବନ ବିଜୟୀ ଦୁର୍ମିଳାନନ୍ଦନ କଂସର ଅଟ୍ଟହାସ୍ୟରେ ପ୍ରକମ୍ପିତ ହୋଇଉଠିବ ମେଦିନୀ, ଶିରେ ଶୋଭିତ ହେବ ସ୍ୱର୍ଣ୍ଣ ମୁକୁଟ, ହସ୍ତରେ ଶୋଭା ପାଇବ ରାଜକୀୟ ତରବାରୀ, ରାଜଦରବାରରେ ରମ୍ଭା, ମେନକାଙ୍କ ନୃତ୍ୟରେ ମୁଁ ହୋଇଉଠୁଥିବି ମଉଭୋଳ, ମୁଁ ରାଜା ହେବି ମହାରାଜ କଂସ... ହାଃ...ହାଃ...ହାଃ...ହାଃ...!!!

ପୁଅ ପଞ୍ଚମ୍ ଓ ଝିଅ ପୁନମ୍ ଏ ଦୁଇଜଣ ଦିନେ କଂସ ସହ ହାତୀ ଉପରେ ବସି ଚିଚିଣ୍ଡା ଧନୁଯାତ୍ରା ଉପଭୋଗ କରିଥିଲେ ।



ଅଞ୍ଜଳୀକୁ କଥା ଦେଇଥିଲି, ଆରବର୍ଷ ତମେ ନିଶ୍ଚୟ ଶ୍ରେଷ୍ଠ ଅଭିନେତ୍ରୀର ପୁରସ୍କାର ପାଇବ ଏହ୍ଲାବାଦରେ କେଉଁ ଆତ୍ମବିଶ୍ୱାସର ସହ ମୁଁ ଏଇ ପଦକ କଥା ସିଧାସଳଖ କହିଦେଲି, ତାହା ମୁଁ ଜାଣେନା ହୁଏତ ହୋଇପାରେ, ଚାରୋଟି ନାଟକ କରିବାପରେ, ପଞ୍ଚାଦାଦା ଦୁଇଥର ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହେବାପରେ ଏହ୍ଲାବାଦର ପୁରସ୍କାର ବଣ୍ଟନର ଧାରା ତଥା କିଭଳି ଚରିତ୍ରରେ କିଭଳି ଅଭିନୟ କଲେ ତାହା ପୁରସ୍କାର ଉପଯୋଗୀ ହେବ, ତାକୁ ଆଘ୍ରାଣ କରିଦେଇଥାଇପାରେ । ନଚେତ୍, ଉତଲାପତର୍ ବୁଡଲାଡ଼ଙ୍ଗା ନାଟକରେ ଏତେ ଚମତ୍କାର ଅଭିନୟ କଲାପରେ ଅଂଜଳୀ ଶ୍ରେଷ୍ଠ ନହେଲା ନାହିଁ, ଅନ୍ତତଃ ଦ୍ୱିତୀୟ ଶ୍ରେଷ୍ଠ ଅଭିନେତ୍ରୀ ପୁରସ୍କାର ତ ପାଇବା କଥା ! ଅଂଜଳୀଙ୍କୁ କଥା ଦେବା ପରଠାରୁ ମୁଁ ନିଜେ ତାଙ୍କପାଇଁ ଚରିତ୍ର ସଂଧାନରେ ଲାଗିପଡିଲି । ଭଲ ପ୍ଲଟ୍ ନହେଲେ ସେମିତି ନାଟକୀୟ ଚରିତ୍ର ପ୍ରାୟତଃ ମିଳେ ନାହିଁ । ଶେଷକୁ ମନ ଖୋଜୁଥିଲା ଯାହା ପରି ଏକ ଘଟଣାବହୁଳ କଥାବସ୍ତୁ ମୋତେ ମିଳିଗଲା ଏବଂ ସେହି ବିଷୟକୁ ନେଇ ନିଜ ନିର୍ବାଚିତ ଚରିତ୍ରକୁ ଖଞ୍ଜି ଏକ ଭିନ୍ନ ଧରଣର ପ୍ଲଟ୍ ଚିନ୍ତା କରାଗଲା । ନାଟକଟିକୁ ମୁଁ ଲେଖିପାରିଥାନ୍ତି, ହେଲେ, ନାଟକର ଚରିତ୍ରମାନେ ଦାବୀ କରୁଥିଲେ ମଙ୍ଗଳୁଚରଣ ବିଶ୍ୱାଳଙ୍କ ଭାଷା, ଶବ୍ଦ ଓ ସଂଳାପ ।

ପରମାଣପୁର ଯାଇ ମଙ୍ଗଳୁବାବୁଙ୍କୁ ତାଙ୍କ ଘରେ ଦେଖାକରି ମୋ ନୂତନ ନାଟକ ବିଷୟରେ ଆଲୋଚନା କଲି । ନାଟକର ସବୁ ଚରିତ୍ର ସମ୍ପର୍କରେ ମଧ୍ୟ ବିସ୍ତୃତ ଧାରଣା ଦେଇଦେଲି । କିଛିଦିନ ପରେ ତାଙ୍କ କଲମରୁ ଉତୁରି ଆସିଲା 'ଦଦରା ଦର୍ପନ୍' ସମ୍ବଲପୁରୀ ନାଟକ । ଏହି ନାଟକର କଥାବସ୍ତୁ ଚୌରାଅଶୀ, ପଞ୍ଚାଅଶୀ

ମସିହାରେ ବେଲପାହାଡ ନିକଟସ୍ଥ ଏକ ଗାଁରେ ଘଟିଥିବା ଏକ ବାସ୍ତବ ଘଟଣା ଉପରେ ଆଧାରିତ ଥିଲା । ଜନୈକା ବଧୂ ଉପରେ ଶ୍ୱଶୁରଙ୍କ ଅସଦ୍ ବ୍ୟବହାର, ନିର୍ଯାତନାର ଛୋଟ ଘଟଣାସହ ଆଉକିଛି ତତ୍‌ସଂଲଗ୍ନ କାଳ୍ପନିକ ଚରିତ୍ରର ମିଶ୍ରଣରେ ଦଦରା ଦର୍ପନ୍ ନାଟକର ବିଷୟବସ୍ତୁ ସଂଗଠିତ ହୋଇଥିଲା । ବଧୂର ସ୍ୱାମୀ ଭାବରେ ମୁଁ ପୁଣିଥରେ ଭବାନୀପାଟଣାର ସେହି, ମାଣିକେଶ୍ୱରୀ ମନ୍ଦିର ଯାଉଥିବା ରାସ୍ତାର ବାମପାଖରେ ଏକାଏକା କାଠଜାଫ୍ରୀ କୁଡିଆରେ ହାତଗୋଡରେ ବେଡି ଲାଗିଥିବା ପାଗଳର ଚରିତ୍ରକୁ ନିର୍ବାଚିତ କଲି, ଖାସ୍ ଅଭିନେତା ଦେବେଶ୍ୱର ମିଶ୍ରଙ୍କ ପାଇଁ ଏବେ ତିନି ମୁଖ୍ୟ କଳାକାରଙ୍କ ପାଇଁ ଭୂମିକା ନିର୍ଦ୍ଦିଷ୍ଟ ହୋଇଗଲା । ବଧୂ ସାଜିବେ ଅଂଜଳୀ, ତାଙ୍କ ଖଳପ୍ରକୃତିର ଶ୍ୱଶୁର ହେବେ ସଂଜୀବ ମାଝି ଓ ପାଗଳ ସ୍ୱାମୀ ଚରିତ୍ରରେ ଅବତୀର୍ଣ୍ଣ ହେବେ ଦେବେଶ୍, ବାକି ଦୁଇତିନୋଟି ଗୌଣଚରିତ୍ରକୁ ସ୍ଥାନିତକରି ମଙ୍ଗଳୁବାବୁ ଅତିଶୀଘ୍ର ମୋ ହାତକୁ ଟେକିଦେଲେ ତାଙ୍କ ରଚିତ ଚତୁର୍ଥ ସମ୍ବଲପୁରୀ ନାଟକ 'ଦଦରା ଦର୍ପନ' । ମୁଁ ପାଣ୍ଡୁଲିପି ପାଇବାପରେ ବାରମ୍ବାର ପଢି ଆବଶ୍ୟକ ସ୍ପର୍ଶ ଦେଇ ନନ୍ଦପଡାକୁ ଯାଇ ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦର କଳାକାରମାନଙ୍କ ଗହଣରେ ପାଠକଲି । ସମସ୍ତଙ୍କ ମନପାଇଲା ଭଳି ନାଟକ, ବଳିଷ୍ଠ ଚରିତ୍ରଚିତ୍ରଣ, ଉନ୍ନତ ସଂଳାପ ରଚନାଦେଖି ସମସ୍ତେ ଖୁସିହେଲେ ଓ ଏହ୍ଲାବାଦ ପ୍ରତିଯୋଗିତା ପାଇଁ ପଠାଇଦେଲେ ।

ଯଥାସମୟରେ ଏହ୍ଲାବାଦ ଯିବାର ନିମନ୍ତ୍ରଣ ଆସିଗଲା, ଗମ୍ଭୀରତାର ସହ ରିହାର୍ସାଲ ଆରମ୍ଭହେଲା । ଅଞ୍ଜଳୀ ମନପ୍ରାଣଦେଇ ରିହାର୍ସାଲ କଲେ, ଦେବେଶ୍ ପାଇଁ ମୋତେ ବଡ କଷ୍ଟ କରିବାପାଇଁ ପଡିଲା । ସଂଜୀବ ପାଇଁ ଶ୍ୱଶୁର ଚରିତ୍ରଟି ଖୁବ୍ ମେଳ ଖାଉଥିଲା ବୋଲି ସେ ଅବିଳମ୍ବେ ନିର୍ଦ୍ଦେଶନା ଅନୁସାରେ ଚରିତ୍ରକୁ ସମ୍ଭାଳିନେଲେ । ଏହି ନାଟକର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଭାଗ ହେଲା ସଂଗୀତ । ଅନ୍ତରାଳ ସଂଗୀତ ବାଦ୍‌ଦେଲେ ଏଥିରେ ଦୁଇଟି କଣ୍ଠ ସଂଗୀତ ଥିଲା ଗୋଟିଏ କୋରସ୍, ଅନ୍ୟଟି ଦ୍ୱୈତକଣ୍ଠର ଗୀତଟିକୁ ଗାଇଲେ ବିଜୟ ମିଶ୍ର ଓ ଭାରତୀ । ଯୋରସୋର ରିହାର୍ସାଲ ଚାଲିଲା, ଏହ୍ଲାବାଦ ଯିବାର ଦିନ ବି ପାଖେଇ ଆସିଲା । ସମସ୍ତଙ୍କ ଟିକଟ ମଧ୍ୟ କଟା ସରିଗଲା । ଯେଉଁ ଦିନ ଯିବାର ଥାଏ, ତା ପୂର୍ବଦିନ ମୋ ଝିଅ ପୁନମ୍‌କୁ ମାତା ଆସିଗଲେ, ଯାହାକୁ ଆମେ ଇଂରାଜୀରେ ମିଜିଲ୍ସ ବୋଲି କହୁ । ତା' ଦେହରେ ତାତି ଖଇଫୁଟିଲା ଭଳି । ଏମିତି ଅବସ୍ଥାରେ ତାକୁ ଛାଡି କୁଆଡେ ଯିବାପାଇଁ ଇଚ୍ଛା ହେଲାନହିଁ । ବର୍ଷେ ହୋଇନ ଥିଲା ତାକୁ, ଛୟାଅଶୀରେ ଜନ୍ମ, ଡ୍ରାମା କଣ ମୋ

ପାଇଁ ଏତେ ବଡ ହୋଇଗଲା ? ନିଜକୁ ନିଜେ ମୁଁ ପ୍ରଶ୍ନ କରିଥିଲି ହରାଇଥିବା କନ୍ୟାରତ୍ନ ପୁଣି ମୋ କୋଳକୁ ଫେରିଆସିଛି, ତା'ର ଜରାଗ୍ରସ୍ତ ଶରୀରକୁ ଛାଡି ଏହ୍ଲାବାଦ ଯିବାଟା ପାପ ହେବ । ତତ୍‌କ୍ଷଣାତ୍ ନିଜେ ନିଷ୍ପତ୍ତି ନେଲି, ନାଟ୍ୟଦଳର ମୁଖ୍ୟ ପ୍ରଫୁଲ୍ଲ ଦାଙ୍କୁ ମୋର ଏହ୍ଲାବାଦ ନଯିବା ନିଷ୍ପତ୍ତି ଜଣେଇଦେଲି । ତା' ସହ ଏହା ମଧ୍ୟ ଜଣେଇଦେଲି, ଯେ ମୁଁ ଭାଇ ଦିଲୀପ ପଣ୍ଡା (ଖ)ଙ୍କୁ ଅନୁରୋଧ କରିଦେଇଛି, ସେ ଆଜି ରିହାର୍ସାଲରେ ଯୋଗଦେବେ ଓ ମୋ ସ୍ଥାନରେ ସେ ଦଳସହ ଏହ୍ଲାବାଦ ଯିବେ । ମୋର ଏହି ନିଷ୍ପତ୍ତିକୁ ଅନେକ କଳାକାର ନାପସନ୍ଦ କରିଥିଲେ । ତଥାପି ମୁଁ ମୋ ନିଷ୍ପତ୍ତିରେ ଅଟଳ ଥିଲି ସେତେବେଳେ ପୁନମ୍‌ର ଜୀବନ ମୋ ପାଇଁ ପ୍ରଥମ ଦାୟିତ୍ୱ ଥିଲା, ନାଟକ ତ ଯେବେ ଚାହିଁବି, କରିପାରିବି । ନାଟକ ବାବଦରେ ଭାଇ ଦିଲୀପଙ୍କୁ କିଛି ଟିପ୍ସ୍ ଦେଇଦେଲି, ମହନ୍ତମଙ୍କୁ ପ୍ରଚ୍ଛଦସଂଗୀତ ବାବଦରେ ବୁଝାଇଦେଲି, ଅଂଜଳୀଙ୍କୁ ତାଙ୍କ ଅଭିନୟ ବାବଦରେ କିଛି ମହତ୍ତ୍ୱପୂର୍ଣ୍ଣ ସୂଚନାଦେଇ ସମସ୍ତଙ୍କୁ ଶୁଭେଚ୍ଛା ଜଣାଇଲି ନାଟକର ସଫଳତା ପାଇଁ ।

ଦଳ ଗଲା, ଦିଲୀପଙ୍କ ନାଟ୍ୟନେତୃତ୍ୱରେ, ପ୍ରଫୁଲ୍ଲ ହୋତାଙ୍କ ସାଂଗଠନିକ ପରିଚାଳନାରେ, ଅଞ୍ଜଳୀ, ଦେବେଶ୍ ଓ ସଂଜୀବଙ୍କ ଅଭିନୟଗତ ଭରସାରେ । ମୁଁ ଘରେ ରହି ପୁନମ୍‌ର ଆରୋଗ୍ୟ ପାଇଁ ବ୍ୟବସ୍ଥା କରୁଥିଲି ସତ, ହେଲେ ମନଟା ଥିଲା ନାଟ୍ୟଦଳ ପଟେ, ମାଁ ସମଲେଶ୍ୱରୀଙ୍କ ନିକଟରେ ପ୍ରାର୍ଥନା ବି କଲି ନାଟକର ସଫଳତା ପାଇଁ ଦଳ ସମ୍ବଲପୁର ଫେରିବା ପୂର୍ବରୁ ପୁନମ୍ ଭଲ ହୋଇଗଲା । ଦଳ ମଧ୍ୟ ଫେରିଆସିଲା ଦଦରା ଦର୍ପନ୍ ନାଟକ ମଞ୍ଚସ୍ଥ କରି । କିଛି ଦିନପରେ ଏହ୍ଲାବାଦରୁ ଫଳାଫଳ ସମ୍ବାଦ ଆସିଲା, ଅଞ୍ଜଳୀ ସର୍ବଭାରତୀୟ ସ୍ତରରେ ଶ୍ରେଷ୍ଠ ଅଭିନେତ୍ରୀ ପୁରସ୍କାର ପାଇଛନ୍ତି । ମା ସମଲେଇଙ୍କୁ ଶତ ଧନ୍ୟବାଦ ଦେଲି, ଅଞ୍ଜଳୀ ସହ ସମସ୍ତ କଳାକାରମାନଙ୍କୁ ଅଭିନନ୍ଦନ ଜଣାଇଲି । ପରେ ମୋ ନିର୍ଦ୍ଦେଶନାରେ ଏହି ନାଟକର ପୂର୍ଣ୍ଣାଙ୍ଗ ରୂପଟି ବାଲେଶ୍ୱରରେ ମଞ୍ଚସ୍ଥ ହୋଇଥିଲା । ଦଦରା ଦର୍ପନ୍‌ର ସଫଳତା ମୋ ପାଇଁ, ମଙ୍ଗଲୁବାବୁଙ୍କ ପାଇଁ, ତଥା ସାମଗ୍ରିକ ଭାବରେ ନନ୍ଦପଡାର ନାଟ୍ୟଦଳପାଇଁ ଖୁବ୍ ମହତ୍ତ୍ୱପୂର୍ଣ୍ଣ ଥିଲା ।

ଯା ଭିତରେ ନନ୍ଦପଡାର ନୂଆଁଖାଇ ଭେଟ୍ ଅବସରରେ ମୋ ନିର୍ଦ୍ଦେଶିତ କେତୋଟି ନାଟକ ପଡାସ୍ଥିତ ଚିତ୍ରୋତ୍ପଳା ମଣ୍ଡପରେ ଅଭିନୀତ ହୋଇଥିଲା, ମାଂସର ଫୁଲ, ଯେନ୍ତା କାମ୍ କେହେନ୍ତା ଦାମ୍, ଭୁର୍କୁଟି ଆଦି । ପଡାର ଦେବେଶ୍ ମୋର ଜଣେ ପ୍ରିୟ କଳାକାର ଥିଲେ । ମୁଁ ତାଙ୍କୁ ବିଭିନ୍ନ ନାଟକରେ ମୁଖ୍ୟ ଚରିତ୍ରମାନଙ୍କରେ ଅଭିନୟ

କରାଇଛି, ବହୁତ ପରିଶ୍ରମ କରେଇଥିଲି, ବହୁ କଷ୍ଟ ଦେଇଥିଲି । ଅଚାନକ ହୃଦ୍‌ଘାତରେ ତାଙ୍କ ଦେହାନ୍ତ ମୋର ନାଟ୍ୟଜୀବନକୁ ଦୋହଲାଇ ଦେଇଥିଲା । ତାଙ୍କୁ ହରାଇ ମୁଁ ଏକାକୀ ହୋଇଗଲା ଭଳି ଅନୁଭବ କଲି । ସେହିପରି ପିଲୁ ନନ୍ଦ ଜଣେ ଗମ୍ଭୀର କଣ୍ଠସ୍ୱର ରଖିଥିବା କଳାକାର ସେ ମଧ୍ୟ ପଡାର ଅନେକ ନାଟକରେ ଅଭିନୟକରି ଖ୍ୟାତି ଅର୍ଜନ କରିଥିଲେ । ଅସମୟରେ ତାଙ୍କ ଦେହାନ୍ତ ମଧ୍ୟ ମୋତେ ମର୍ମାହତ କରିଥିଲା । ପୂର୍ବରୁ ଅଜୀତ୍ ହୋତା, ଯେ ମାଂସର ଫୁଲ ନାଟକର ନାୟକ ଭୂମିକାରେ ଅଭିନୟ କରିଥିଲେ, ସେ ବି ଆମକୁ ଛାଡ଼ି ସ୍ୱର୍ଗବାସୀ ହୋଇଗଲେ । ଖୁବ୍ ଭଦ୍ର ଓ ସ୍ନେହୀ ମଣିଷଟିଏ ଥିଲେ ଅଜୀତ୍ । ଏମିତି କେତୋଟି ଅଘଟଣ ଘଟିବା ପରେ ନନ୍ଦପଡାର ନାଟକକ୍ଷେତ୍ରରୁ ମୁଁ ନିଜକୁ ଓହରାଇ ନେଇଥିଲି । ତେଣୁ ଏବେ ସେମାନେ ଯେତେ ଡାକିଲେ ବି ମୋଠାରୁ ନକାରାତ୍ମକ ଉତ୍ତର ପାଉଛନ୍ତି । ନନ୍ଦପଡାର ନାଟକଗୁଡିକର ନିର୍ଦ୍ଦେଶନା ଦେଇ ମୁଁ ନିର୍ଦ୍ଦେଶନାଗତ ପରିପକ୍ୱତା ହାସଲ କରିଥିଲି, ଏହା ମୁକ୍ତକଣ୍ଠରେ ସ୍ୱୀକାର କରିବାପାଇଁ ମୋର ତିଳେ ହେଲେ କୁଣ୍ଠାବୋଧ ନାହିଁ ।

ଏପଟେ ଅତାବିରା ଜାତୀୟ ସେବା ଶିବିରର ଉଦ୍‌ଯାପନୀ ପରେ କଲେଜ୍ ଖୋଲିଲା, ଚିଚିଣ୍ଡା ଆସି ପୁଣି ପପଙ୍ଗା ପଞ୍ଚାୟତ କ୍ୱାଟର୍‌ରେ ମୁଣ୍ଡ ଗୁଞ୍ଜିଲି ତଥାପି ମୋ ସାଙ୍ଗରେ ରହୁଥିବା ସାଥୀ ଅଧ୍ୟାପକମାନଙ୍କୁ ଧନୁଯାତ୍ରା ବାବଦରେ କିଛି ସୂଚାଇ ନଥିଲି । କଲେଜ୍ ଖୋଲିବାର ଦୁଇତିନିଦିନ ଯାଇଛି କି ନାହିଁ, ଚିଚିଣ୍ଡା ଗାଁରୁ ଧନୁଯାତ୍ରା ପରିଚାଳନା କମିଟିର ସଦସ୍ୟମାନେ କଲେଜ୍‌କୁ ଆସିଲେ ଦଳବଳ ସହ କଂସବରଣ କରିବାପାଇଁ । କମନ୍‌ରୁମ୍‌ରେ ମୁଁ ଆଳାପରେ ବ୍ୟସ୍ତ ଥାଏ ଡକାଗଲାପରେ ଜାଣିଲି ସେମାନେ ମୋ ନିକଟକୁ ଆସିଛନ୍ତି । ଅଧ୍ୟାପକ, ଅଧ୍ୟାପିକା, ଛାତ୍ରଛାତ୍ରୀମାନଙ୍କ ସାମ୍ନାରେ ସେମାନେ ମୋତେ ନାରୀକେଳ, ଗାମୁଛା, ପରିଛଦ ପାଇଁ ଲୁଗା, ଫୁଲମାଳ ଆଦି ଅର୍ପଣ କରି, ଧନୁଯାତ୍ରା ଆପଣଙ୍କୁ ଲାଗିଲା ବୋଲି କହି ବାହୁଡିଗଲେ । କଂସ ପାଇଁ ଗ୍ରହଣ କରିଥିବା ସାମଗ୍ରୀ କମନ୍‌ରୁମ୍‌ର କୋଠରୀର ଟେବୁଲ୍ ଉପରେ ଥୋଇ କିଛିକ୍ଷଣ ପାଇଁ ବସିପଡିଲି । ସାରା କଲେଜ୍‌ରେ ହଲ୍ଲା ହୋଇଗଲା, ନାୟକସାର୍ ଏଥର ଧନୁଯାତ୍ରାରେ କଂସ ବାହାରିବେ । ଆଗରୁ ମୁଁ ସଦସ୍ୟମାନଙ୍କୁ ସମ୍ମତି ଦେଇଥିଲି । ମୁଁ କିନ୍ତୁ ଥାଏ ଅଟଳ, କୌଣସି ଆଲୋଚନା, ସମାଲୋଚନାକୁ ଖାତିର ନକରି ମୋ ଚିନ୍ତନରେ ମୁଁ ଧନୁଯାତ୍ରାକୁ ମୋରି ଶୈଳୀରେ ପରିବେଷଣ କରିବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହେବାରେ ଲାଗିଲି । ମେଡମ୍ ପଙ୍କଜିନୀ ମିଶ୍ରଙ୍କଠାରୁ କହିବୋଲି ଅସୁଲ କଲି ଏକ ପାଣ୍ଡୁଲିପି । ସେ ଅବଶ୍ୟ କିଛିପୃଷ୍ଠା

ଲେଖି ମୋ ହାତରେ ଧରାଇ ନିଜ ଅପାରଗତାକୁ ସ୍ୱୀକାର କଲେ । ମୁଁ ମଧ୍ୟ ଭାବିଲି, ମୋର ମନ୍ତ୍ରୀ କିଏ, ରକ୍ଷୀ କିଏ, ବାକି ଚରିତ୍ରମାନେ ସବୁ କିଏକିଏ, ତାଙ୍କୁ ନଜଣାଇ ନିର୍ଦ୍ଦିଷ୍ଟ ପାଣ୍ଡୁଲିପିକୁ କାହିକିଁ ଆଶ୍ରା କରିବି, ଯଦିବା କରିବି, ଲେଖା ଅନୁସାରେ ସେମାନଙ୍କୁ ନିର୍ଦ୍ଦେଶନା ଦେବାପାଇଁ ପଡିବ, ପରିଶ୍ରମ ଅଧିକ ପଡିଯିବ । ତେଣୁ ପାଣ୍ଡୁଲିପିକୁ ସେମିତି ବାକ୍ସଭିତରେ ଥୋଇଦେଇ କଳ୍ପନାରେ ସାଜିଦେଲି ମୋର କଳ୍ପ ରାଜଦରବାର । ଧନୁଯାତ୍ରା ଆରମ୍ଭ ହେବାର ଦିନକ ପୂର୍ବରୁ ଘରକୁ ଯାଇ ଦିନେ ଘରେ ରହି ସମସ୍ତଙ୍କୁ ଜଣାଇ ପୁଣି ସମ୍ପୂର୍ଣ୍ଣ ମାନସିକ ବଳ ସଂଗ୍ରହକରି ବସ୍‌ରେ ପଳେଇ ଆସିଲି ଆମ କ୍ୱାଟର୍‌କୁ ।

ଆଜି ରାତିରେ ମୁଁ ସାଜିବି କଂସ, ଯୁବରାଜ କଂସ !! ଉଗ୍ରସେନକୁ ସିଂହାସନରୁ ହଟାଇ ସମ୍ରାଟ ହେବି, ରାଜତ୍ୱ କରିବି ମଥୁରା କଟକକୁ ଦଶ ଦିବସଯାଏ । କଲେଜ୍ କ୍ଲାସ ସାରି ମୋ କୋଠରୀକୁ ଆସି ଭାବୁଥାଏ, ଏ ରାଜା ହେଲେ କେମିତି ଲାଗେ, ପୁଣି ଖଳରାଜା ହେଲେ ଖଳତ୍ୱକୁ କେମିତି ଜାହିର୍ କରିବାକୁ ପଡେ, ତରବାରୀ ଧରି ଶାସନ କେମିତି କରିବାକୁ ହୁଏ, ଅତ୍ୟାଚାର, ନିର୍ଯ୍ୟାତନା କହିଲେ କଣ, ଏମିତି କେତେ ଭାବନା, ଭାବିଭାବି କେତେବେଳେ ଯେ ପ୍ରଥମକରି ମେକ୍‌ଅପ୍ ରୁମ୍‌କୁ ଯିବାର ସମୟ ଆସିଗଲା, ଜଣାପଡିଲା ନାହିଁ । କାହିଁ, କେହି ତ ଗାଡିଘୋଡା ପଠଉନାହିଁ ରାଜା ପାଇଁ, ରାଜା ଯିବେ ପରା ରାଜବାଟିକୁ !! ମୋତେ ପଦରଜରେ ହିଁ ଯିବାକୁ ହେଲା ପପଙ୍ଗା ପଞ୍ଚାୟତ ଅଫିସ୍‌ରୁ ଚିଚିଣ୍ଡା ପଞ୍ଚାୟତ ଅଫିସ ଯାଏଁ , ଯାହାକୁ କଂସ ମହାରାଜାଙ୍କ ରାଜବାଟି କୁହାଯାଉଥିଲା, ପ୍ରକୃତରେ ସେଇଟା ଥିଲା ସବୁ କଳାକାରଙ୍କ ପାଇଁ ବେଶଘର, ଘାସିରାମ ଓ ବାଙ୍କା, ବାପପୁଅ ଅପେକ୍ଷା କରିଥିଲେ ରଙ୍ଗଧରି ମୋ ମୁହଁରେ ବୋଳିବାପାଇଁ । ଆଉ ତାଙ୍କ ସହ ମହଜୁଦ୍ ଥିଲେ ମୋ ମହାମନ୍ତ୍ରୀ ଭୀମସେନ ମାଝି !!



**ବା**ଞ୍ଜିପାଲି ଛକରୁ ଚିଚିଣ୍ଡା ପଞ୍ଚାୟତ ଅଫିସ୍‌କୁ ଯାଇଥିବା ରାସ୍ତାର ଉଭୟ ପଟରେ ଉଠା ଅସ୍ଥାୟୀ ଦୋକାନର ଧାଡ଼ିଧାଡ଼ି ଘର, ବାମ ପାଖ ପଡ଼ିଆରେ ବସିଥିବା ମୀନାବଜାର, ଆଗକୁ ଗଲେ ଡାହାଣକଡ଼ରେ ସୁସଜ୍ଜିତ ମହାରାଜ କଂସଙ୍କର ରାଜଦରବାର, ହାଇସ୍କୁଲ ପର୍ଯ୍ୟନ୍ତ ଲମ୍ବିଥିବା ରାସ୍ତା ଦୁଇକଡ଼େ ମେଲା ପଡ଼ିଥିବା ଉଠାଦୋକାନ, ହାଇସ୍କୁଲର ଖେଳପଡ଼ିଆ, ତତ୍‌ସଂଲଗ୍ନ ଆଞ୍ଚଳିକ କିଶାନ୍ ଉଚ୍ଚ ବିଦ୍ୟାଳୟ, ସେଠି ଥାନ ଦିଆଯାଇଥିବା ଅପେରାଦଳର ନିଦୁଆ ଚେହେରା,

ପରେପରେ ଗାଁଭିତରୁ ଉଠିଆସି କିଛି ଲୋକଙ୍କ ନୂଆଁନୂଆଁ ଅପଲସ୍ତରୀୟ କୋଠା, ରାସ୍ତାର ଧୂଳିସହ ଧୂଳିଆବାବା ସାଜିଥିବା କେଇଜଣ ସ୍କୁଲଯାଇ ନଥିବା ପିଲାମାନଙ୍କ କିର୍ଲାଗୁଗା, ବାମପଟର କ୍ଷେତବାଡ଼ି ଆଉ ଡାହାଣକଡ଼ର ମାଟିକାନ୍ଥର କିଛି ଲଙ୍ଗୁଳିଆ ଝୁପୁଡ଼ି, ତାପରେ ଯାଇ ବାମପଟରେ ଚିଚିଣ୍ଡା ପଞ୍ଚାୟତ କାର୍ଯ୍ୟାଳୟର ଦୁଇ ବଖରିଆ ଘର । ଦେଖିଲାକ୍ଷଣି ମନେହେଲା, ଏ କୋଠା ତିଆରିହେବା ଦିନଠାରୁ ଯେଉଁ ପ୍ରଥମଥର ଚୂନ ଘଷାଯାଇଥିଲା, ପରେ ସେ କାନ୍ଥ ସେମିତି ହିଁ ଅନାଥ ପାଲଟିଯାଇଛି, ବାହାରଟା ପୂରାପୁରି ଶୂନ୍‌ଶାନ୍, କବାଟ ଆଉଜା ବାରଣ୍ଡାଟି ଧୂଳି ସରସର, କାନ୍ଥସାରା ଅଳନ୍ଧୁ, ଏଇଟା ମୋ, ମାନେ ମହାରାଜ କଂସଙ୍କର ରାଜବାଟି !! ଆଜି ପରା ଧନୁଯାତ୍ରାର ପହିଲି ଉଦ୍‌ଘାଟନୀ ରାତି, ସଜବାଜ କିଛି ନାହିଁ, କେନାଲ୍ ମୁଣ୍ଡରେ ଖାଲି ସାଧାରଣ ତୋରଣଟିଏ ଠିଆକରି ମଥୁରା ବେନର୍‌ଟିଏ ଝୁଲେଇଦେଲେ କଣ ଏତେ ବଡ଼ ଗାଁଟି ମଥୁରା ପାଲଟିଯିବ, ବିଦ୍ୟୁତ୍ ଆଲୋକର ମାଳମାନ ଅବଶ୍ୟ ଦୃଷ୍ଟିଗୋଚର ହେଉଥିଲା, ତଥାପି ମୁଁ ପରା ରାଜା ହେବି, ଏହି ବିରାଟ ମଥୁରାପୁରୀର ଅପ୍ରତିଦ୍ୱନ୍ଦୀ ସମ୍ରାଟ, ମୋ ପ୍ରସାଧନୀୟ କୋଠାର ଏ କି ଦୂରାବସ୍ଥା !! ଆଉଜା କବାଟ ଠେଲି ଭିତର ଦୃଶ୍ୟ ଦେଖେ ତ ଆହୁରି କିମ୍ଭୁତକିମାକାର, ଦୁଇତିନି ଜଣ ମଧରାତ୍ରର ନିଦ ଭଳି ଘୁଙ୍ଗୁଡ଼ି ମାରିମାରି ମଳିଚିଆ ଲୁଗାର ଶେଯରେ ଶୋଇପଡିଛନ୍ତି ! କି ଆଶ୍ଚର୍ଯ୍ୟ, ଆଜି ଧନୁଯାତ୍ରା ଆରମ୍ଭ ହେବ ନା ନାହିଁ ? ମୁଁ ଭୁଲ୍ ଜାଗାକୁ ଚାଲିଆସିଛି କି ? ମୋ ଧାରଣ ସମ୍ପୂର୍ଣ୍ଣ ଭିନ୍ନ ଥିଲା, ଭାବୁଥିଲି, ସୁସଜ୍ଜିତ ଏକ ଦ୍ୱିତଳ ପ୍ରାସାଦ ଥିବ, ଉପରେ କଂସ ମହାରାଜାଙ୍କ ବିଶ୍ରାମ କକ୍ଷ ଥିବ, ତଳେ ପ୍ରସାଧନୀୟ ପ୍ରକୋଷ୍ଠ ଥିବ, ପ୍ରସାଧନ ଭିତରେ ସୁସ୍ୱାଦୁ ବ୍ୟଞ୍ଜନରେ ଆପ୍ୟାୟିତ କରାଯାଉଥିବ ମହାରାଜାଙ୍କୁ, ଶୁଦ୍ଧ ନିର୍ମଳ କୋଠରୀ ଅତର, ଅବିରରେ ବାସିଯାଉଥିବ ମହମହ ।

ମୋର ଧାରଣା ସମ୍ପୂର୍ଣ୍ଣ ଭୁଲ୍ ଥିଲା, ବରଂ ମୋ କଳ୍ପନା ବାହାରେ ଥିଲା ବ୍ୟବସ୍ଥାର ସ୍ୱରୂପ । ମୋତେ ଶୋଇପଡିଥିବା ବ୍ୟକ୍ତିମାନଙ୍କୁ ପାଟିକରି ଉଠାଇବା ପାଇଁ ପଡ଼ିଲା, ବଡ଼ କଷ୍ଟରେ ଉଠିଲେ ବରଗଡ଼ରୁ ଆସିଥିବା ପ୍ରସାଧନୀ କାରିଗର ଘାସିରାମ ସାହୁ, ପରେପରେ ଉଠିଲେ ଭୀମସେନ ମାଝି, ମୋତେ ଦେଖି ଚିହ୍ନି ଯଥାମାନ୍ୟ ନମସ୍କାର କଲେ ଏବଂ ବାକିମାନଙ୍କୁ ଉଠେଇଦେଇ ପ୍ରସ୍ତୁତ ହେବାପାଇଁ କହିଲେ । ତାଙ୍କସହ କଥାବାର୍ତ୍ତା ହେବାପରେ ଜାଣିଲି, ସେ ମଥୁରାର ଦାୟିତ୍ୱରେ ଅଛନ୍ତି, ବାକି ଗରୁଡ଼ବାବୁ ଗୋପପୁର ଅର୍ଥାତ୍ ବାଞ୍ଜିପାଲିର ଦାୟିତ୍ୱରେ । ମୁଁ ଆନୁସଙ୍ଗିକ ବ୍ୟବସ୍ଥା ବାବଦରେ ଦଶଦିନ, ଦଶରାତି କେମିତି କଟିବ, ଠଉରାଇନେଲି । ତେବେ,

ଭୀମସେନବାବୁ ଓରଫ୍ ଅନ୍ଧାରୁବାବୁ ମୋତେ ପ୍ରତିଶ୍ରୁତି ଦେଲେ, ଆଜି ଆରମ୍ଭ ଦିନ ତ ଆଜ୍ଞା, ଟିକେ ଅସୁବିଧା ହୋଇପାରେ । ତେବେ କାଲିଠୁ ରୀତିମତ ସଠିକ୍ ଭାବରେ ଚାଲିବ । ତାଙ୍କକଥାରୁ ମୁଁ ଅନୁମାନ କଲି, ଏ ଯାତ୍ରା ପାଇଁ ଅନ୍ଧାରୁବାବୁ ଉପଯୁକ୍ତ ବ୍ୟକ୍ତି, ତେବେ ତାଙ୍କ ହାତରେ ପରିଚାଳନାଗତ କ୍ଷମତା ସେତେ ନାହିଁ । ମୁଁ କହିଲି, ଠିକ୍ ଅଛି, ମୋତେ କିନ୍ତୁ ଦରକାର ଏହି କୋଠରୀ ଯେମିତି କାଲିଠୁ ଭଲ ଭାବରେ ସଫାରଫା ହୁଏ, ସେଥିପ୍ରତି ଟିକେ ଯତ୍ନ ନେବେ । ଆଉ ଗୋଟାଏ କଥା, ମୁଁ ଆସିବା ପୂର୍ବରୁ ଯେମିତି ବାକି ଅଭିନେତାମାନେ ଏହି କୋଠରୀକୁ ଆସିଯାଇଥିବେ । ବିଶେଷ ଭାବରେ ରାତିରେ ଯେଉଁ ଚରିତ୍ରମାନଙ୍କ ମଞ୍ଚରେ ଆବଶ୍ୟକତା ଥିବ । ମୋତେ ଚୌକିଟିଏ ଦେଇ ବସିବା ପାଇଁ କହି ମୁଁ ଘରୁ ଆସୁଛି କହି ସେ ଚାଲିଗଲେ । ମୁଁ ଘାସିବାବୁଙ୍କୁ କହିଲି, ମୋର ମେକ୍ଅପ୍ ଆରମ୍ଭ କର । କେବଳ ଆଜି ପାଇଁ ନୁହେଁ, ଦଶ ଦିନ ଯାକ ସର୍ବପ୍ରଥମେ ମୋର ମେକ୍ଅପ୍ କରିବ, ତାପରେ ବାକିମାନେ । ପରେ ଅନ୍ୟମାନଙ୍କ ବେଶଭୂଷା ପିନ୍ଧେଇ ସାରିବାପରେ ସର୍ବଶେଷରେ ମୋର ପରିଧେୟ ବ୍ୟବସ୍ଥା କରିବ । ମୁଁ ସମ୍ପୂର୍ଣ୍ଣ ଭାବରେ ପ୍ରସ୍ତୁତହେବା ପରେ ସିଧାସଳଖ ରାଜଦରବାରକୁ ଯିବାର ଯାତ୍ରା ଆରମ୍ଭ ହେବ । ଘାସିବାବୁ ପୁରାତନ କଳାକାର, ମୋ ମନୋଭାବକୁ ସେ ପ୍ରଥମଦିନରୁ ହିଁ ଜାଣି ପକେଇଥିଲେ । ମୁଁ ସେହି ଚୌକିରେ ବସି ପ୍ରସ୍ତୁତ ହୋଇଗଲି ପ୍ରସାଧନ ପାଇଁ, ଘାସିବାବୁ ମଧ୍ୟ ମୁହଁହାତ ଧୋଇ ନିଜକୁ ପ୍ରସ୍ତୁତ କରିଦେଲେ ।

ଧନୁଯାତ୍ରା, ଏକ ନାଟକ ନୁହେଁ, ଯାତ୍ରା, ମଞ୍ଚନାଟକ ନୁହେଁ, ଅପେରା ନୁହେଁ କି ଗୀତିନାଟ୍ୟ ନୁହେଁ । ବେତାର ନାଟକ ନୁହେଁ କି ଦୂରଦର୍ଶନ ନାଟକ ନୁହେଁ, ଏହା ମୁକ୍ତମଞ୍ଚରେ ଅଭିନୀତ ହେଉଥିବା ଆଧ୍ୟାତ୍ମିକ ଯାତ୍ରାନାଟକ, ଯାହାର ଚରିତ୍ରମାନେ ଯାତ୍ରା ଶେଷ ହେବାଯାଏଁ ଅତିଭୌତିକ ଅଧିକାର ପ୍ରାପ୍ତହୁଅନ୍ତି, ଠିକଣା ସମୟରେ ତାର ସଦ୍‌ବ୍ୟବହାର କରନ୍ତି, ଯାହା ଅଗଣିତ ଦର୍ଶକଙ୍କୁ ମନୋରଞ୍ଜିତ କରିବା ସଙ୍ଗେସଙ୍ଗେ ବିଭିନ୍ନ ଆଧ୍ୟାତ୍ମିକ ଓ ସାମାଜିକ ପ୍ରସଙ୍ଗରେ ସଚେତନ ମଧ୍ୟ କରିଥାନ୍ତି । ଏ ଯାତ୍ରାର ଧାରା ଓ ପରମ୍ପରା ବରଗଡ଼ ସହରରୁ ମୂଳ ହୋଇ ବିଭିନ୍ନ ଅଞ୍ଚଳକୁ ସମ୍ପ୍ରସାରିତ ହୋଇଛି । କେବେ ଯାତ୍ରା ନାଟକର ମଞ୍ଚକୁ ଓହ୍ଲାଇ ନଥିବା, ପୌରାଣିକ ନାଟକ ବା ଚରିତ୍ରରେ ଅଭିନୟକରି ନଥିବା କଳାକାରଭାବରେ ମୁଁ ମୋ ଜୀବନରେ ସର୍ବପ୍ରଥମ ପାଇଁ ଧନୁଯାତ୍ରାର ମୁଖ୍ୟ ଆକର୍ଷଣ କଂସ ମହାରାଜ ଭୂମିକାରେ ଅବତୀର୍ଣ୍ଣ ହେବାକୁ ଯାଉଛି, ତେଣୁ ମେକ୍ଅପ୍ ନେବା ପୂର୍ବରୁ ଇଷ୍ଟଦେବ ଶ୍ରୀକୃଷ୍ଣଙ୍କୁ ଆତ୍ମାର ଗଭୀରତମ ପ୍ରଦେଶରୁ ପ୍ରଣାମ ଜଣାଇଲି, ମାଁ ସମଲେଶ୍ୱରୀଙ୍କ ଆଶିର୍ବାଦ ଲୋଡ଼ିଲି ଆନ୍ତରିକତାର ସହ, ସେହି

ପ୍ରସାଧନୀୟ କୋଠରୀର ଧୂଳିନେଇ କପାଳରେ ଲେପନକରି, ଶେଷରେ ମେକ୍‌ଅପ୍ ପୁରୁଷ ଘାସିବାବୁଙ୍କୁ ନମସ୍କାର ଜଣାଇ କହିଲି ଆରମ୍ଭକର । ସେ ଭିତରେ ଅନ୍ଧାରୁବାବୁ ଆସିଯାଇଥିଲେ, ଆଉ କିଛି ଅଭିନେତା ମଧ୍ୟ ଆସି ମୋତେ ଲକ୍ଷ୍ୟ କରୁଥାନ୍ତି, ଅନ୍ଧାରୁବାବୁଙ୍କ ମେକ୍‌ଅପ୍ ହେଉହେଉ ଅନେକ ପ୍ରଶ୍ନ ରି ଉତ୍ତର ଅସୁଲ କରିଥିଲି । ତା' ଭିତରେ ଥିଲା, ଚିଚିଣ୍ଡା ଗ୍ରାମର ଏଇ ଯାତ୍ରା କେବେଠାରୁ ଆରମ୍ଭ ହେଲାଣି, ଆଗରୁ କିଏକିଏ ସବୁ କଂସ ଭୂମିକାରେ ଅଭିନୟ କରିଥିଲେ, କେମିତି କରୁଥିଲେ ଆଦି । କୌଣସି ନୂତନ ଯୋଜନା ଆରମ୍ଭ କରିବାକୁ ହେଲେ ସ୍ଥାନର ଇତିହାସ ଓ ଭୂଗୋଳ ସମ୍ପର୍କରେ ଜ୍ଞାନ ରହିବା ବିଧେୟ । ନଚେତ୍ ଯାତ୍ରାର ପରମ୍ପରା କ୍ଷୁର୍ଣ୍ଣ ହୋଇପାରେ । ଆମ କଥା ଶୁଣି ଘାସିବାବୁ ମଧ୍ୟ ବରଗଡ଼ର ଧନୁଯାତ୍ରା ପରମ୍ପରା ସମ୍ପର୍କରେ କିଛି ତଥ୍ୟ ବଖାଣିଲେ । ବରଗଡ଼ ଧନୁଯାତ୍ରାର ମଧ୍ୟ ସେ ବର୍ଷବର୍ଷ ଧରି କଳାକାରମାନଙ୍କୁ ସଜିତ କରିଛନ୍ତି । ତେଣୁ ତାଙ୍କ ଅଭିଜ୍ଞତାର ଭାଷାକୁ ମଧ୍ୟ ମୋତେ ବୁଝିବାକୁ ପଡିବ, କାରଣ ମୁଁ ବରଗଡ଼ର ଧନୁଯାତ୍ରା କେବେ ଦେଖିନଥିଲି, ଧନୁଯାତ୍ରା ସମ୍ପର୍କରେ ମୋର କିଛି ଧାରଣା ବି ନଥିଲା ।

ଇତି ମଧ୍ୟରେ ମୁଁ ଚେହେରାରେ ଦ୍ୱାରିକାତ୍ୱକୁ ଧିରେଧିରେ ହରାଇବସୁଥିଲି, ଆଉ ଦର୍ପଣ ଦେଖିଲା ପରେ ଜାଣିଲି କଂସତ୍ୱ ମୋ ମାନସପଟରେ ଆଧିପତ୍ୟ ବିସ୍ତାର କରିବସୁଥିଲା । ଭ୍ରୂଲତାମାନ ମୋଟା ହୋଇସାରିଥିଲା, ଆଖିତଳର ସ୍ୱାଭାବିକ ରଙ୍ଗ ବଦଳି ରକ୍ତିମ ପାଲଟିଯାଇଥିଲା, ନାକତଳର ମୂଛ ଆସୁରିକ ରୂପ ଧାରଣ କରିସାରିଥିଲା, ଓଠର ରଙ୍ଗ ବି ମଣିଷଖିଆ ବ୍ୟାଘ୍ର ଭଳି ରକ୍ତରଙ୍ଗରେ ରଞ୍ଜିତ ହୋଇସାରିଥିଲା । ବେକଯାଏଁ ରଙ୍ଗବୋଳା ହେଲା ପରେ ଘାସିବାବୁ ଚାହିଁଲେ ବେକତଳ, ବାହୁ ଯୁଗଳ ଓ ଗୋଡ଼ ଦୁଇଟିକୁ ରଙ୍ଗ ଲଗାଇବାପାଇଁ । ମୁଁ କିନ୍ତୁ ମନା କଲି, ସେ ସବୁ ପରିଧାନରେ ଲୁଚିଯିବ । ସେ ସ୍ୱୀକାରକରି ମୋ ମେକ୍‌ଅପ୍ ଶେଷ ହେଲା ବୋଲି କହି ଅନ୍ୟମାନଙ୍କୁ ଡାକିଲେ । ଅନ୍ୟ ସମସ୍ତ କଳାକାରମାନେ ପ୍ରସାଧନୀୟ ନେବା ପରେ ଯାଇ ମୋର ପୋଷାକ ପରିଚ୍ଛଦ ପାଇଁ ବ୍ୟସ୍ତ ହେଲେ ଘାସିବାବୁ । ମୁଁ ମନା କଲି, ସମସ୍ତଙ୍କ ପରେ ଯାଇ ମୋ ପୋଷାକ ପିନ୍ଧାଇବ ବୋଲି କହି ଅନ୍ଧାରୁବାବୁଙ୍କ ସହ ଗପସପ କଲି, ସେ ଭିତରେ ସେ ସେହି ରାତିରେ ରାଜଦରବାରରେ କଣ ସବୁ ଘଟିବ, ସେ ବାବଦରେ ମୋତେ ସମ୍ୟକ୍ ସୂଚନା ଦେଲେ । ସେଥିରୁ ମୁଁ ବୁଝିଯାଉଥିଲି ମୋର ଅଭିନୟର କ୍ଷେତ୍ର ଓ ପରିସୀମା । ମୁଁ ସବା ଶେଷରେ ପରିଧେୟ ନେବା ଅର୍ଥ ସେତିକି ସମୟ ଭାବିବାରେ ନିୟୋଜିତ

ଧରି ସର୍ବାଙ୍ଗ ଭାବରେ ଆଜିର ଦୃଶ୍ୟମାନ କିଭଳି ଅଭିନୀତ ହେବ, ତାର କହଯୋଜନା ପ୍ରସ୍ତୁତ କରୁଥିଲି । କାରଣ, ଏଭଳି ଅଭିନୟ ମୋ ଜୀବନରେ ପ୍ରଥମ, ଯେଉଁଥିରେ ମୁଁ କୌଣସି କଳାକାରମାନଙ୍କୁ ବ୍ୟକ୍ତିଗତ ଭାବରେ ଜାଣି ନଥିଲି, ଭେଟ ହେଲି ସିଧାସଳଖ ମେକ୍‌ଅପ୍ ରୁମ୍‌ରେ, ସେମାନଙ୍କ ସହ ଆଲୋଚନା କରିବାର ଅବକାଶ ନାହିଁ, ରିହାର୍ସାଲ ହୋଇନାହିଁ, କୌଣସି ପାଣ୍ଡୁଲିପି ନାହିଁ, ଯାହାର ଅନୁସରଣରେ ମୁଁ ଯାତ୍ରାକୁ ଦୃଶ୍ୟପରେ ଦୃଶ୍ୟ ଗଢେଇ ପାରନ୍ତି, ସେମିତିକିଛି ହେଲାନି କିମ୍ବା ହେବାର ସମ୍ଭବ ବି ନୁହେଁ । ଏଭଳି ପରିସ୍ଥିତିରେ ନିଜେ ନିଜ ଲଗାମ୍‌ରେ ସମଗ୍ର ଯାତ୍ରାକୁ ନିୟନ୍ତ୍ରଣ କରିବା ବ୍ୟତୀତ ଆଉ ଉପାୟ ନଥିଲା । ଭାବୁଥିଲି, ମୁଁ ଆମ ମେଡମ୍‌ଙ୍କୁ ଅନାବଶ୍ୟକ ହଇରାଣ କଲି । ଯେଉଁ ଯାତ୍ରାରେ ଦେବକୀଙ୍କ ବାହାଘରରୁ ଆରମ୍ଭ ହୋଇ ଉଗ୍ରସେନଙ୍କ ପୁନଃ ସିଂହାସନ ଆରୋହଣ ପର୍ଯ୍ୟନ୍ତ, ସମଗ୍ର ହରିବଂଶର କଥାବସ୍ତୁ ଦଶରାତି ପାଇଁ ଅଭିନୀତ ହେବ, ତା ପାଇଁ କେତେ ବଡ଼ ପାଣ୍ଡୁଲିପି ଆବଶ୍ୟକ, ପାଠକେ ଜାଣିପାରୁଥିବେ ।

ସମସ୍ତ କଳାକାରମାନଙ୍କ ପରିଧାନ ଶେଷ ହେବାପରେ ମୋ ନିକଟକୁ ଆସି କଂସ ଭୂମିକା ପାଇଁ ଆବଶ୍ୟକ ପୋଷାକ ପରିଛଦ ଧରି ଉପକ୍ରମ ଆରମ୍ଭ କଲେ ଘାସିବାବୁ । ଅଣ୍ଟାତଳକୁ ସିଲ୍‌କେନ୍ ପାଟ ଧୋତି, ଦେହରେ ମଖମଲି ଆଲଖାଲା, ଦୁଇ ଗୋଡ଼ରେ, ଦୁଇ ବାହୁରେ, ଛାତିରେ ରକ୍ଷା କବଚ, ଯୁବରାଜ କଂସର ଚରିତ୍ରରୁ ଅଭିନୟ ଆରମ୍ଭ ହେବାକୁ ଥିବାରୁ ମୁଣ୍ଡରେ କେବଳ ଝୁଲୁପ କେଶ, ତା ଉପରେ ପରଖଚିତ ରଙ୍ଗୀନ୍ ଫିତା, ପାଦରେ ରାଜକୀୟ ହଳେ ଯୋତା, ପ୍ରଥମ ରାତି ହୋଇଥିବାରୁ ପ୍ରଥମେ ବାଜାଗଜା ସହ ଉଗ୍ରସେନ ମହାରାଜ ହାତୀଉପରେ ବସି ଦରବାରକୁ ଚାଲିଗଲେ । ପରେ ସେଇଠୁ ହାତୀ ଫେରିବାପରେ ମୋର ପାଳି । ଦରଜା ବାହାରେ ବାଜାବାଲାଙ୍କ ଭରନୀପାର୍, ଯୁବରାଜ କଂସଙ୍କର ଜୟଜୟକାର ଧ୍ୱନିରେ ପ୍ରକମ୍ପିତ ହୋଇଗଲା ଇଲାକାଟା । ଆଗରୁ ପ୍ରସ୍ତୁତ ଧୂପକାଠି ଜଳାଇ ପୂଜାକଲି କୃଷ୍ଣଙ୍କୁ, ସିନ୍ଦୂରର ଲେପନ କରି କାନ୍ଥରେ ରଚିଦେଲି ଓଁ ବର୍ଣ୍ଣଟିଏ, ଘାସିବାବୁଙ୍କୁ କହିଲି ମୋ ତରବାରୀ ଦିଅ, ସେ ମୋ ହାତରକୁ ବଢ଼େଇଦେଲେ ଲମ୍ବ ତରବାରୀ, ପରେ ଆଦେଶ ଦେଲି, ଚାଲ ! !

ଦରଜା ଖୋଲିଲା, ମୋର ଜୟଜୟକାର ଧ୍ୱନୀ କ୍ରମଶଃ ମୋ ଅନ୍ତଃସ୍ଥଳକୁ ରୋମାଞ୍ଚିତ କରୁଥିଲା, ଅଧ୍ୟାପକତ୍ୱକୁ ହତ୍ୟାକରି, ମୋର ମୁଁତ୍ୱକୁ ସମୂଳେ ନାଶକରି ମୋ ଭିତରେ ଗଜରୁଥିଲା ଆସୁରିକ ପ୍ରବୃତ୍ତି ! ! ସାମ୍ନାରେ ହସ୍ତୀ, ତା ସାଙ୍ଗରେ ମାହୁନ୍ତ,

ମାହୁନ୍ତର ନିର୍ଦ୍ଦେଶରେ ହାତୀ ତଳେ ବସିପଡିଲା, ସତେ ଯେମିତି କହିବାକୁ ଚାହୁଁଥାଏ, ଆସ ଯୁବରାଜ, ଆସ, ମୋ ପିଠିରେ ବସ, ଏଠି ବସିଲେ ତମେ ମଥୁରା କଟକର ମହାରାଜ ହୋଇପାରିବ, ଆସ । ଆଜି ତୁମକୁ ଯୁବରାଜ ଭାବରେ ଘେନିଯିବି, ଫେରିଲାବେଳେ ତମକୁ ରାଜକୀୟ ସମ୍ମାନ ସହ ଘେନି ଆସିବି ରାଜବାଟି ଯାଏଁ । ଆସ ଯୁବରାଜ, ଆସ ।

ହାତୀ ପିଠିକୁ ଡେଇଁ ବସି ପଡିଲି, ମାହୁନ୍ତକୁ ଆଦେଶ ଦେଲି, ରାଜଦରବାରକୁ ନେଇଚାଲ ! ! ହାତୀ ଉଠିଲା, ମାହୁନ୍ତର ନିର୍ଦ୍ଦେଶରେ ଆଗକୁ ବଢିଲା, ସାମନାରେ ଢୋଲନିଷାଣର ଦୁଲଦୁଲି ଧ୍ୱନୀ, ହାଇସ୍କୁଲ ପର୍ଯ୍ୟନ୍ତ ପହଞ୍ଚୁପହଞ୍ଚୁ ମୋ ପଛପଟେ ବିରାଟ ଜନଯାତ୍ରା, ମୋର ଜୟଜୟକାରରେ ମୁଁ ଉତ୍‌ଫୁଲ୍ଲିତ, ଉତ୍କଣ୍ଠିତ, ଉଲ୍ଲସିତ । ଯୁବରାଜର ଠାଣିରେ ପ୍ରବେଶକଲି ମଥୁରା କଟକର ରଙ୍ଗୀନ୍ ଆଲୋକମାଳାରେ ସଜ୍ଜିତ ରାଜଦରବାରର ପଥ, ମୋତେ ଦେଖିବାପାଇଁ ଅପେକ୍ଷାରତ ଅଗଣିତ ମଥୁରାବାସୀ । ରାଜଦରବାରର ସମ୍ମୁଖରେ ହାତୀପିଠିରୁ ଓହ୍ଲାଇ ଶିବ ପ୍ରାର୍ଥନା ପର୍ବ ଶେଷକରି ଦରବାର ଉପରକୁ ଯିବାର ପ୍ରଥମ ପାହାଚରେ ପାଦଦେବା ଆଗରୁ ତା' ଧୂଳି ନେଇ ମଥାରେ ଲଗାଇଲି । ଯାହାକଲେ ବି ତ ଏହା ଏକ ନାଟକ, ନାଟକର ବିଧିକୁ ତ ପାଳନ କରିବାକୁ ପଡିବ । ମଞ୍ଚ ନମସ୍କାର କରି ଗୋଟିଏ ପରେ ଗୋଟିଏ ପାହାଚ ଅତିକ୍ରମ କରି ଶେଷ ପାହାଚକୁ ଡେଇଁବା ପୂର୍ବରୁ ଥରେ ଆଖି ବୁଲାଇ ନେଲି ସମଗ୍ର ମଞ୍ଚଭୂମିକୁ, ଯେଉଁଠାରେ ମୋତେ ଆଜିଠାରୁ ଦଶ ଦିନ ପର୍ଯ୍ୟନ୍ତ ମହାରାଜ କଂସ ଭୂମିକାରେ ଅଭିନୟ କରିବାର ଅଛି ।

ଠିକ୍ ଅଛି, ଆଜିଠାରୁ ମୁଁ ଏହି ଯାତ୍ରାର ମୁଖ୍ୟ ନାୟକ ହେବି, ନାଟକର ହେବି ଖଳନାୟକ, ମୁଁ ରାଜା ହେବି ରାଜା, ରାଜା..... ! ! !



ଜଣେ ଅଧ୍ୟାପକ କଂସ ମହାରାଜ ଭୂମିକାରେ ମଞ୍ଚକୁ ଓହ୍ଲାଇବା କେତେକଙ୍କୁ ଚକିତ କରିଥିଲା, କେତେକଙ୍କ ମତରେ ମୁଁ ବୁଆଡ଼େ ପ୍ରଥମ ଉଚ୍ଚ ଶିକ୍ଷିତ ବ୍ୟକ୍ତି, ସେ ଏହି ଭୂମିକାରେ ଅଭିନୟ କରୁଛନ୍ତି, ମୋ ସାଥୀ କିଛି ଅଧ୍ୟାପକଙ୍କ ସହ ଆଉକିଛି ଶିକ୍ଷିତ ଲୋକେ ନାୟକସାର୍ ଶସ୍ତାଲୋକପ୍ରିୟତା ଲାଭପାଇଁ ଏଭଳି ପଦକ୍ଷେପ ନେଇଛନ୍ତି ବୋଲି କଟୁକ୍ତି କରିବାକୁ ମଧ୍ୟ ପଛାଇନଥିଲେ । ମୁଁ କିନ୍ତୁ ମୋ ନିଷ୍ପତ୍ତିରେ ଅଟଳ ଥିଲି, କାହାର କୌଣସି ସମାଲୋଚନାର ଉତ୍ତର ଦେବା ପାଇଁ ମୁଁ ବାଧ୍ୟ ନୁହେଁ ବୋଲି

ଭାବୁଥିଲି । ମୁଁ ଜଣେ ନାଟ୍ୟଶିଳ୍ପୀ, କଳାକାର, କୌଣସି ନାଟକ କରିବା, ନକରିବା, ତାହା ମୋର ଋଚିସଂକ୍ରାନ୍ତ ନିଷ୍ପତ୍ତି, ସେଥିରେ କାହାର ଦଖଲଦେବା ଠିକ୍‌ନୁହେଁ ବୋଲି ମୁଁ ବିଚାର କରୁଥିଲି । ଦ୍ୱିତୀୟତଃ, କଲେଜ ପରିଚାଳନା କମିଟିର ସଦସ୍ୟମାନେ ଧନୁଯାତ୍ରା ଆୟୋଜନର ନେତୃତ୍ୱ ନେଉଥିଲେ, ତେଣୁ କଲେଜ ତରଫରୁ ବିରୋଧ ହୋଇ ନଥିଲା, ତୃତୀୟତଃ ଲୋକସଂସ୍କୃତି ବାବଦରେ ଜଣେ ଓଡ଼ିଆ ଅଧ୍ୟାପକଭାବରେ ମୋର ସ୍ୱତନ୍ତ୍ର ଆଗ୍ରହ ରହିଛି, ଭୁଖା ନାଟକ ପରେ ଅସୀମ ଚରିତ୍ର ଭଳି ମୋର ମଧ୍ୟ ସମ୍ବଲପୁରୀ ଲୋକସଂସ୍କୃତି ବିଷୟରେ ଗବେଷଣା କରିବା ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଅଧିନରେ ପି.ଏଚ୍‌ଡି. ଡିଗ୍ରୀପାଇଁ ଆବେଦନ କରିବା ପ୍ରାୟତଃ ଶେଷ ପର୍ଯ୍ୟାୟରେ ପହଞ୍ଚିଯାଇଥିଲା । ଧନୁଯାତ୍ରା, ଏହି ଲୋକସଂସ୍କୃତିର ଏକ ଅଂଶବିଶେଷ ହୋଇଥିବାରୁ ହାତପାଆନ୍ତାକୁ ଆସିଥିବାର ସୁବର୍ଣ୍ଣ ସୁଯୋଗକୁ ଜଣେ ନାଟ୍ୟପ୍ରେମୀ ଭାବରେ ହାତଛଡ଼ା କରନ୍ତି ବା କିପରି ! !

ପ୍ରଥମ ରାତିର ଅଭିନୟବେଳେ ଆକାଶବାଣୀରୁ ଯେତେବେଳେ ଶୁଣାଗଲା, ଦେବକୀର ଅଷ୍ଟମ ଜାତ ସନ୍ତାନ ତୋର ମୃତ୍ୟୁର କାରଣ ହେବ, ଯୁବରାଜ କଂସର ଭାବରେ ବିରୋଧାତ୍ମକ ସଂଳାପକୁ ମୁଁ ଉତ୍ସୁକତାର ସହ ଆବଶ୍ୟକରୁ ଅଧିକ ଉଚ୍ଚ ସ୍ୱରରେ ପରିବେଷଣ କରିଦେଇଥିବାରୁ, ମଞ୍ଚରୁ ଓହ୍ଲାଇବା ପରେ କଣ୍ଠରେ ପୀଡ଼ା ଅନୁଭବ କରିଥିଲି । ସକାଳ ହେବା ପରେ ମୋର ସନ୍ଦେହ ସତ୍ୟ ହେଲା । ମୁଁ କଲେଜ୍‌ରେ ଭଲ ଭାବରେ କ୍ଲାସ ନେଇପାରି ନଥିଲି । ଡ. ପ୍ରଫୁଲ୍ଲ ମହାକୁଡଙ୍କ କ୍ଲିନିକ୍‌ରେ ଫାର୍ମାସିଷ୍ଟ ଥିବା ଦେବାର୍ଚ୍ଚନବାବୁଙ୍କ ସହ ଯୋଗାଯୋଗ କଲି, ସେ ମୋତେ ଏକ କଫ୍‌ସିରପ୍ ଦେଇ ତାର ପାନ ସମ୍ପର୍କରେ ସୂଚନା ଦେଲେ । ମୁଁ ତାଙ୍କ କହିବାନୁସାରେ ଦୁଇ ତିନି ଥର ସେ ସିରପ୍‌କୁ ଗ୍ରହଣକରି କଲେଜ୍‌ରୁ ଆସି ମୋ କ୍ୱାଟର୍‌ରେ ବିଶ୍ରାମ ନେଇଥିଲି । ଅଧଘଣ୍ଟା ପ୍ରାୟ ବିଶ୍ରାମ ନେବା ପରେ କେତେବେଳେ ଯେ ପୁଣି ରାଜବାଟିକୁ ଯିବାର ସମୟ ଆସିଗଲା, ଜଣା ପଡ଼ିଲା ନାହିଁ ।

ପୁଣି ଆସିଲା ମୁଡ୍, ଆମ ସାଥି ଅଧ୍ୟାପକଙ୍କ ନିକଟରୁ ସାଇକଲ୍ ଖଣ୍ଡେ ମାଗି ମୋ ରାଜବାଟି ଆଡ଼କୁ ମାଡ଼ି ଚାଲିଲି । ମୁଁ ଯେ ଏତେବଡ଼ ଧନୁଯାତ୍ରାର କଂସ ମହାରାଜ, ମୁଁ ମୋ ଶାସିତ ମଥୁରାନଗରୀର ରାଜରାସ୍ତାରେ ଧଡଡ଼ା ସାଇକଟିଏରେ ବସିଯାଉଛି, କାହାର ନଜର ନାହିଁ ! ! ଏବେ ଆଉ କିଛିସମୟ ପରେ ହାତୀ ପିଠିରେ ବସି ଦଳବଳ ସହ ଏଇବାଟ ଦେଇ ଦରବାରକୁ ଆସିବି, ସେତେବେଳେ ଭୟରେ ମୋ ମୁହଁକୁ ମୁହଁ ସାମ୍ନା କରିବାକୁ ଏଇମାନେ ଭୟରେ ଥରଥର ହେବେ ! ! କି ଆଶ୍ଚର୍ଯ୍ୟ କଥା, ବଡ଼

ଅଳବଯାତ୍ରା ଇଯେ, ପୋଷାକ ପିନ୍ଧିଥିଲେ ମହାରାଜ, ସାଧାରଣ ପୋଷାକରେ ଥିଲେ ପ୍ରଜାଠୁ ବଳି ହୀନ ? ଧନୁଯାତ୍ରାର ଏ କି ବୈଚିତ୍ର୍ୟ ! ! ଦ୍ୱିତୀୟ ଦିବସର ସୂର୍ଯ୍ୟ ପଶ୍ଚିମ ଆକାଶରେ ଅସ୍ତମତ ହେଉଥିବା ବେଳେ ସେହି ପଶ୍ଚିମଦିଗରୁ ବଜାଗଜା ସହ, ରାଜକୀୟ ଠାଣିରେ, ଢୋଲ ନିଷାଣର ଦୁନ୍ଦୁଭିର ନିନାଦରେ, ମଥୁରାର ଆବାଳବୃଦ୍ଧବନିତାଙ୍କ କଣ୍ଠନିସୃତ ମୋର ଜୟଜୟକାରରେ ନଗରଭ୍ରମଣ ଉଦ୍ଦେଶ୍ୟରେ ମାଡି ଆସୁଛନ୍ତି ବୀରାଧିବୀରବର ତ୍ରିଭୁବନ ବିଜୟୀ ମହାରାଜ କଂସ ! ! ମସ୍ତକରେ ଶୋଭିତ ସ୍ୱର୍ଣ୍ଣ ମୁକୁଟ, ହସ୍ତରେ ରାଜତରବାରୀ, ସଙ୍ଗରେ ମହାମନ୍ତ୍ରୀ କେଶୀ, ସମ୍ମୁଖରେ ଚାଣୁର ମୁଷ୍ଟିକ ଭଳି ଅଙ୍ଗରକ୍ଷକ, ମୁଖମଣ୍ଡଳରେ ସଦ୍ୟ ମହାରାଜ ପଦବୀରେ ଅଧିଷ୍ଠିତ ହୋଇଥିବା ଅହମିକାପୂର୍ଣ୍ଣ ଅଟ୍ଟହାସ୍ୟ, ନୟନଯୁଗଳରେ ଅଗ୍ନିସ୍ଫୁରିତ ତାର୍ଯ୍ୟକ ଲୋଲୁପୀ ଚାହାଣୀ, ହସ୍ତପଦ, ମସ୍ତକ, ସମଗ୍ର ଶରୀରରେ ରକ୍ଷାକବଚର ଆସ୍ତରଣ, ତ୍ରିଲୋକକୁ ଘଡ଼ିକେ ଆତ୍ମସାତ କରିନେବାର ବାଚନିକ ଫୁତ୍କାର, ଏ ସବୁଥିଲା ମୋର ମାନସିକ ଆବରଣ, ଯାହାରବଳରେ ମୁଁ ଦ୍ୱାରିକାରୁ ରୂପାନ୍ତରିତ ହୋଇଯାଉଥିଲି ଦ୍ୱାପରଯୁଗର ମଥୁରା ନରେଶ । ଜାଣତରେ ହେଉ ବା ଅଜାଣତରେ ହେଉ, ଏହି ମାନସିକତା ହିଁ ଥିଲା ମୋର ଏକମାତ୍ର ସମ୍ବଳ ଅଭିନୟ କରିବା ।

ମଥୁରାକଟକ ସହର୍ଷ ଭ୍ରମଣ ପରେ ରାଜଦରବାରକୁ ଗମନ, ପାରମ୍ପରିକ ଶିବ ବନ୍ଦନାପରେ ମଞ୍ଚ ଉପରକୁ ଯିବାସହ ସିଂହାସନ ଆରୋହଣ ! ମୋର ଉପସ୍ଥିତି ପରେପରେ କଣ୍ଠ ନିସୃତ ରାଜକୀୟ ସମ୍ଭାଷଣ, ଅନର୍ଗଳ କହିପକାଉଥିଲି ଯୁବରାଜରୁ ମହାରାଜା ପଦବୀକୁ ଉତ୍ତୀର୍ଣ୍ଣ ହେବାର କାହାଣୀ, କଂସର ପ୍ରକୋପ, କ୍ଷମତା, ତ୍ରିକାଳଦର୍ଶିତା, ଦୋଷୀକୁ ପ୍ରଚଣ୍ଡ ଶାସ୍ତି ଦେବାର ପ୍ରତାପୀ କ୍ରୁରତା, ନୃତ୍ୟରେ ମଉଭୋଳ କରୁଥିବା ନର୍ତ୍ତକୀମାନଙ୍କୁ ଶତ ସ୍ୱର୍ଣ୍ଣମୁଦ୍ରାରେ ପୁରସ୍କୃତ କରିବାର ମତୁଆଲୀ ପ୍ରବୃତ୍ତି, ମହାମନ୍ତ୍ରୀଙ୍କ ସହ ବାଳକୃଷ୍ଣକୁ ବଧକରିବାର ମନ୍ତ୍ରଣା, ଏମିତିଏମିତି ବିତିଯାଉଥିଲା ରାତି ପରେ ରାତି । କଂସ ଦରବାରରେ ଶିଶୁମାନଙ୍କ ନୃତ୍ୟକୁ ମୁଁ ବିରୋଧ କରୁଥିଲି, ମୋତେ ଭଲ ଲାଗୁନଥିଲା । ପ୍ରତ୍ୟେକ ରାତିର କଂସର ପାଞ୍ଚ ଘଣ୍ଟାର ମଞ୍ଚ ରହଣିରେ ସେ ଶିଶୁମାନେ କେତେ ବା ନୃତ୍ୟ କରିବେ । ତାଙ୍କ ସହ ଅଭିନୟ କରିବା ମଧ୍ୟ ମୋ ପାଇଁ ଥିଲା ଦୁରୂହ ବ୍ୟାପାର । ତେଣୁ ଦରବାରକୁ ଆସିବା ସମୟରେ ହାଇସ୍କୁଲରେ ଡେରା ପକାଇଥିବା ଅପେରା ଦଳର ମୁଖ୍ୟଙ୍କୁ ଆଦେଶ ଦେଇ ଆସୁଥିଲି ମୋ ଦରବାରକୁ ରମ୍ଭା, ମେନକା ଆଦି ନର୍ତ୍ତକୀମାନଙ୍କୁ ପେରଣ କରିବାପାଇଁ । ସେମାନେ ମଧ୍ୟ ଆଗ୍ରହ ସହକାରେ ବେଶଭୁଷା ସହ, ସଂଗୀତଦଳ ସହ ଆସି ମଞ୍ଚରେ ଉପସ୍ଥିତି ରହୁଥିଲେ ।

କେବେ ଓଡ଼ିଶୀ, ଆଉ କେବେ ମେହଫିଲ ନୃତ୍ୟ, ଏଭଳି ସୁନ୍ଦର ନୃତ୍ୟରେ ମୋର ମନ ମୋହି ଦେଉଥିଲେ, ତାଙ୍କ ସହ ମୋର ସଂହତି, ଅଭିନୟକୁ ଲୋକେ ଖୁବ୍ ଉପଭୋଗ କରୁଥିଲେ ।

କେବେ ପୁତନାବଧ, କେବେ ଋଷିମୁନୀମାନଙ୍କ ଉପରେ ଅତ୍ୟାଚାର, କାରାବାସକୁ ଯାଇ ଦେବକୀର ସନ୍ତାନମାନଙ୍କୁ ଶୀଳରେ କଚାଡ଼ି ହତ୍ୟା କରିବା, ମହାମନ୍ତ୍ରୀଙ୍କ ସହ ମନ୍ତ୍ରଣା କରି ରଙ୍ଗସଭା ଆୟୋଜନ କରିବା ଆଦି ପ୍ରସଙ୍ଗମାନ ମଞ୍ଚରେ ଅଭିନୀତ ହେଉଥାଏ । ଦେବାର୍ଚ୍ଚନବାବୁଙ୍କ ସେ ସିରପ୍ ମୋ କଣ୍ଠକୁ ସଜାଗ ରଖିବାରେ ବହୁତ ସାହାଯ୍ୟ କରୁଥିଲା । କେବେକେବେ ହରି ହୋଟେଲ ପଛପଟେ ଥିବା ନିର୍ଗୁଣ୍ଡି ପତ୍ର କିଛି ଚୋବାଇ ତାର ରସକୁ ପାନ କରୁଥିଲି କଣ୍ଠସ୍ୱରକୁ ସତେଜ୍ ରଖିବାପାଇଁ । ପ୍ରଥମ ରାତିର ସେହି ଯନ୍ତ୍ରଣା ପରବର୍ତ୍ତୀ ଛଅବର୍ଷ ଧରି ଆଉ କେବେ ପାଇ ନାହିଁ । ସବୁ ରାତି ଅଭିନୟପରେ ରାଜବାଟିକୁ ଯାଇ ମେକଅପ୍‌ଛଡ଼ାଇ ସାଇକଲ ମାଡ଼ି ମୋ ଅସଜଡ଼ା ଘରକୁ ଫେରିବାବେଳେ ମୋର କମନୀୟ ରୂପକୁ କେହି ନଜରକୁ ଆଣୁନଥିଲେ । ବେଶ୍, ଡ୍ରେସ ବଦଳାଇ ଚଣାବାଲାଠାରୁ ଚାଟ୍ ଏକ ପ୍ଲେଟ୍ ମଗାଇ ରୁଟି ଦୁଇ ତିନିପଟ ଖାଇଦେଇ ଯାଉଥିଲି । ପ୍ରଥମବର୍ଷ କିନ୍ତୁ ଖାଇସାରି ପ୍ରତ୍ୟେକ ରାତି ପଳାଉଥିଲି ଅପେରା ଦେଖି । ଗରୁଡ଼ବାବୁଙ୍କ ସହ ଏକାସାଥିରେ ବସି କେଭେଣ୍ଡର ଟାଣିଟାଣି ଅପେରାର ରସ ଆଘ୍ରାଣ କରିବା ଭିତରେ ମୁଁ ପାଲଟିଯାଇଥିଲି ସମ୍ପୂର୍ଣ୍ଣ ଅପେରା ରସପିପାସୁ ନାଟୁଆ । ସକାଳ ସାଢ଼େ ଚାରିଟା ପର୍ଯ୍ୟନ୍ତ ଅପେରା ଦେଖା, କୋଠାରୀକୁ ଆସି କିଛି ବିଶ୍ରାମ, ସକାଳର ନିତ୍ୟକର୍ମସାରି ପ୍ରାତଃଭ୍ରମଣ, ପୁଣି ହରିହୋଟେଲର ଆଳୁଚପ୍, ସିଙ୍ଗଡ଼ା ସହ ଚଣା ଝୋଳ, କିଛି ସମୟ ପରେ ପୁଣି କଲେଜ, ସାଢ଼େବାର' ପର୍ଯ୍ୟନ୍ତ କ୍ଲାସ, କ୍ଲାସ ପରେ କୋଠରୀରୁ ଆସି ଭୋଜନପରେ ସାମାନ୍ୟ ବିଶ୍ରାମ ଏବଂ ଦୁଇଟା ହୋଇଗଲେ ପୁଣି ରାଜମୁକୁଟର ଆକର୍ଷଣ ମୋତେ ଟାଣି ନେଉଥିଲା ଘଁସିବାବୁଙ୍କ ନିକଟକୁ । ଓଃ, ରାଜା ହେବା ପାଇଁ କେତେ ଆଗ୍ରହ ! !

ମହାମନ୍ତ୍ରୀ ଭୂମିକାରେ ମୋ ସହ ଅଭିନୟ କରୁଥିବା ଭୀମସେନ ମାଝି, ସମଗ୍ର ଯାତ୍ରାକାଳରେ ମୋ ଦକ୍ଷିଣହସ୍ତ ଥିଲେ । ମନ୍ତ୍ରୀଭାବରେ ନୁହେଁ, କଳାକାରଭାବରେ ମେକଅପ୍ ରୁମ୍‌ରେ ଆମ ଦୁହିଁଙ୍କର ଦୁଇଧାଡ଼ି କଥୋପକଥନ ମୋତେ ଉପଶମିତ କରୁଥିଲା ସେଇ ନିର୍ଦ୍ଦିଷ୍ଟ ରାତିର ଦୃଶ୍ୟସବୁକୁ ସୁଚାରୁ ରୂପେ ଦୃଶ୍ୟାୟିତ କରିବାପାଇଁ । ପ୍ରଥମବର୍ଷ ଦ୍ୱିତୀୟ ରାତିରେ ମୁଁ ଅନୁଭବ କରିଥିଲି କିଛି କଳାକାର ନିଶାସକ୍ତଭାବରେ ମଞ୍ଚକୁ ଆସି ବିଶୃଙ୍ଖଳିତ ଅଭିନୟ ପରିବେଷଣ କରୁଛନ୍ତି । ପରେ ମୁଁ ମୋର କ୍ରୋଧ

ପରିଚାଳକମାନଙ୍କ ଆଗରେ ପ୍ରକାଶ କରିଥିଲି । ଏପରି କି ସେଇ ନିର୍ଦ୍ଦିଷ୍ଟ କଳାକାରମାନଙ୍କ ଉପରେ ମଧ୍ୟ ଖୁବ୍ ବର୍ଷିଥିଲି । ତୃତୀୟ ରାତିରେ ଲକ୍ଷ୍ୟକଲି, ସେଭଳି ବିଶୃଙ୍ଖଳା ଆଉ ହେଉନାହିଁ । ବିଗତରାତିର ଅସଜଡ଼ା ମଞ୍ଚକୁ ମଧ୍ୟ ଶୃଦ୍ଧ କରିବାର ବ୍ୟବସ୍ଥା ହେଉ ନଥିଲା । ତା'ର ବ୍ୟବସ୍ଥା ମଧ୍ୟ କରାଗଲା । କଂସ ଅଭିନୟ ବେଳେ ମୋ ସାମ୍ନାରେ ବିନାନୁମତିରେ ଚାଲିକି ଯିବା ଥିଲା କେତେକଙ୍କ ବଦଭ୍ୟାସ । ପ୍ରତ୍ୟେକଙ୍କୁ ତାଙ୍କ ଦୋଷ ପାଇଁ ଦଣ୍ଡିତ କରିବାରୁ ସେଭଳି ଆଚରଣରୁ ସେମାନେ ନିଜକୁ ବଞ୍ଚେଇଥିଲେ । ଏପରି କି ଗରୁଡ଼ବାବୁ ମଧ୍ୟ ଥରେ କଂସ ସାମ୍ନାରେ ଅନାବଶ୍ୟକ ଭାବରେ ଗଲାବେଳେ ତାଙ୍କୁ ମଧ୍ୟ ଦଣ୍ଡିତ କରାଯାଇଥିଲା । ଏଭଳି ଭାବରେ ଚିଚିଣ୍ଡା ଧନୁଯାତ୍ରାରେ ମଞ୍ଚରୁ ଅନୁଶାସନ ବଳରେ କିଛି ସଂସ୍କାର ଅଣାଯାଇଥିଲା । ମୁଁ ଜଣେ ଶିକ୍ଷକ, ତା ସହ ଜଣେ ନାଟ୍ୟନିର୍ଦ୍ଦେଶକ, ବିଶୃଙ୍ଖଳାକୁ ମୁଁ କେବେ କୌଣସି ମତେ ବରଦାସ୍ତ କରି ନାହିଁ । ମୋର ସ୍ୱଭାବ ଚିଚିଣ୍ଡା ଧନୁଯାତ୍ରାକୁ ନବକଳେବର ପ୍ରଦାନ କରିବା ସଙ୍ଗେସଙ୍ଗେ ସମଗ୍ର ଅଞ୍ଚଳରେ ଏକ ଶୃଙ୍ଖଳିତ ଯାତ୍ରା ଭାବରେ ଖ୍ୟାତିଅର୍ଜନ କରିଥିଲା । କଲେଜରେ କ୍ଲାସ ନେଇ, କମନରୁମ୍‌ରେ ଅଧ୍ୟାପକମାନଙ୍କ ସହ ହସାଗିଜରା ହୋଇ, ରାଜା ଭଳି ନୁହେଁ, ସାଧାରଣ ଗ୍ରାମୀଣ ବ୍ୟକ୍ତିଭାବରେ ଆଚାରବ୍ୟବହାର କରି, ପୁନଶ୍ଚ ମୁକୁଟଧାରଣ ପରେ ଆଚରଣ ବଦଳାଇ ରାଜକୀୟ ପାଲଟିଯିବା, ସତରେ, ରାଜକୀୟ ଯେତେ, ତାଠାରୁ ବଳି ଥିଲା ଅଧିକ ନାଟକୀୟ । ପ୍ରଥମବର୍ଷ ପୂରା ଦଶରାତି ଧରି ଅଭିନୟ କଲି ଅପେରା ଦେଖି । ଅର୍ଥାତ୍ ଚବିଶ ଘଣ୍ଟାରୁ ବିଶ୍ରାମ ନେଉଥିଲି ମାତ୍ର ଦୁଇରୁ ତିନିଘଣ୍ଟା । କେଉଁଠି ଥିଲା ଏତେ ଆତ୍ମବିଶ୍ୱାସ, ଏତେ ବଫ୍, ଏବେ ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି ।। ସବୁରାତି ଅନ୍ୟୂନ ଦଶହଜାରରୁ ଅଧିକ ଦର୍ଶକଙ୍କୁ ଭେଟୁଥିଲି ରାଜଦରବାର ସାମ୍ନାରେ, ପ୍ରଥମବର୍ଷ ଦୁର୍ବଳ ମାଇକ୍ରୋଫୋନ ବ୍ୟବସ୍ଥା ଯୋଗୁଁ ବହୁ କଷ୍ଟ ପାଇଥିଲି । ମୋ ମଞ୍ଚର ଚତୁର୍ଦ୍ଦିଗରେ ମୀନାବଜାରର କର୍କଶ ଧ୍ୱନୀ, ସାମ୍ନାରେ ଅପେରାଦଳର ପ୍ରତିଧ୍ୱନ୍ୟାତ୍ମକ ବିଜ୍ଞାପନର କୋଳାହଳ, ସେ ଭିତରେ ମୋ ମଞ୍ଚର ଦୁର୍ବଳ ଶବ୍ଦ ଉପକରଣ, କେମିତି ଦଶଦିନ ଖଟିଛି ତାହା ମୋ ମନ ଜାଣିଛି । ପରବର୍ତ୍ତୀ ବର୍ଷମାନଙ୍କରେ ଅବଶ୍ୟ ଆୟୋଜକମାନେ ସେ ସମସ୍ୟା ଦୂରକରିଥିଲେ । ପ୍ରଥମ ବର୍ଷର ସୁଦୃଶ୍ୟ ରାଜଦରବାରର ସାଜସଜ୍ଜା କିନ୍ତୁ ସବୁଠାରୁ ଆକର୍ଷଣୀୟ ଥିଲା । ସିଭ ଅଗ୍ରୱାଲ ଉଠାଇଥିବା ସେ ବେଳର ଫଟୋସବୁ ଏବେ ବି ମୁଁ ସାଇତି ରଖିଛି ମୋ ଆଲମବ୍‌ରେ ।

ଗରୁଡ଼ବାବୁ, ଯେ ମୋତେ ଅତାବିରାଠାରେ କଂସର ଭୂମିକାପାଇଁ ନିମନ୍ତ୍ରଣ କରାଯାଇଥିଲେ, ଯଦିଓ ସେ ଗୋପପୁରର ନିର୍ଦ୍ଦେଶକ ଥିଲେ, ତାଙ୍କୁ ମୁଁ ଧନୁଯାତ୍ରାର

ମାର୍ଗନିଦର୍ଶକ ଭାବରେ ସମ୍ମାନ ଦେଇଆସୁଛି । ମହାମନ୍ତ୍ରୀ ଅନ୍ଧାରୁ ମାଝି, ମଥୁରାକଟକର ଆୟୋଜନର ମେରୁଦଣ୍ଡ । ତାଙ୍କ ଚାତୁର୍ଯ୍ୟ ଓ ଉପସ୍ଥିତ ବୁଦ୍ଧି ଆମ ଦରବାରର ଅଭିନୟକୁ ଜୀବନ୍ତ କରି ରଖୁଥିଲା । ମୋ ସଂଳାପସହ ତାଳମେଳ ରଖିବାରେ ସେ ଥିଲେ ଓସ୍ତାଦୀ କଳାକାର । ତାଙ୍କସହ ମୋର ମିଳିତ ଉଦ୍ୟମରେ ଧନୁଯାତ୍ରାର ବିଷୟବସ୍ତୁ ଠିକଣାବାଟରେ ଗଡ଼ିଯାଉଥିଲା । କଲେଜରୁ ଷୋହଳରେ ଅବସର ନେବାପରେ ଯେତେଥର ଚିଚିଣ୍ଡା ଯାଇଛି, ତାଙ୍କ ଘରକୁ ଯାଇ ଭେଟ ହେଉଥିଲି । ଗତଥର ଦେଖାକଲାବେଳେ ବେଶ୍ ଦୁର୍ବଳ ଜଣାପଡୁଥିଲେ । ଏଇ ଦଶବାର ଦିନ ପୂର୍ବରୁ ସୁଶୀଳ ମେହେରଙ୍କଠାରୁ ରାତିବେଳା ଫୋନକଲ୍‌ଟିଏ ଆସିଲା, ତାଙ୍କଠୁ ଜାଣିଲି ଅନ୍ଧାରୁବାବୁ ଆଉ ନାହାନ୍ତି, ସ୍ୱର୍ଗବାସୀ ହୋଇଗଲେ । ହଠାତ୍ ମୁଁ ନିର୍ବାକ୍ ହୋଇଗଲି । ପରେ ତାଙ୍କ ପୁଅ ମନୋରଞ୍ଜନ, ଯେ ମୋର ଛାତ୍ର, ତାଙ୍କ ସହ କଥା ହେଲି, କରୋନାପାଇଁ ଯାଇ ନପାରି ପାରିବାର କଥା କହିଲି, କିଛି ସାନ୍ତ୍ୱନାମୂଳକ କଥା ଦେଲି ।

ଭୀମସେନ ମାଝି, ଅନ୍ଧାରୁବାବୁ, ମୋର ଶେଷନିଶ୍ୱାସ ଥିବା ଯାଏଁ ଆପଣ ମୋ ହୃଦୟରେ ବାସ କରି ରହିବେ, ଆପଣଙ୍କ ସହ ବିତାଇଥିବା ମଧୁର ସମୟତକ ମୁଁ ମୋ ସ୍ମୃତିପୃଷ୍ଠରେ ସାଇତି ରଖିବି କାଳକାଳ ଯାଏଁ, ଆପଣଙ୍କ ନାଟ୍ୟ ପ୍ରତିଭାକୁ ସେଲ୍ୟୁଟ୍ !!!



ମୁଁ ପଲ୍ଲିଶ୍ରୀ ମହାବିଦ୍ୟାଳୟରେ ଯୋଗ ଦେବା ବର୍ଷରେ ପ୍ରଥମକରି ଗଙ୍ଗାଧର ଜୟନ୍ତୀକୁ ବ୍ୟାପକ କରିବାର ଚେଷ୍ଟା କରିଥିଲେ । ନେତ୍ରାନନ୍ଦ ପୂଜାରୀ କଲେଜରୁ ବିଦାୟ ନେବାପରେ ଭାରପ୍ରାପ୍ତ ଅଧ୍ୟକ୍ଷ ଇତିହାସ ବିଭାଗ ଅଧ୍ୟାପକ ସୁଧୀର ଚୋପଦାରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ସଭାରେ ବନ୍ଧୁ ତଥା କୁଚିଣ୍ଡା କଲେଜର ଓଡ଼ିଆ ବିଭାଗର ତତ୍କାଳୀନ ଅଧ୍ୟାପକ ପ୍ରଦୀପକୁମାର ରାୟ ଗଙ୍ଗାଧର ମେହେରଙ୍କ ସୃଷ୍ଟି ସମ୍ଭାର ବାବଦରେ ନିଜସ୍ୱ ବକ୍ତବ୍ୟରେ ମନ୍ତ୍ରମୁଗ୍ଧ କରିଥିଲେ ଛାତ୍ରଛାତ୍ରୀମାନଙ୍କୁ । ପରେପରେ ପ୍ରଭାତୀ ରଥ, ମଣୀନ୍ଦ୍ର ମେହେର, ପୂର୍ଣ୍ଣଚନ୍ଦ୍ର ସାହୁ, ଅଶୋକ ଦାସ ଭଳି ବହୁ ବିଶିଷ୍ଟ ପ୍ରତିଭାବାନ ବକ୍ତାଙ୍କୁ କଲେଜକୁ ନିମନ୍ତ୍ରିତ କରାଯାଇଥିଲା । ଗଙ୍ଗାଧର ଜୟନ୍ତୀ କଲେଜର ଏକ ନିଆରା ଉତ୍ସବଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲା । ବନ୍ଧୁ ଦେବଦାସ ମିଶ୍ର ଅର୍ଥନୀତି ବିଭାଗର ଅଧ୍ୟାପକଭାବରେ ଯୋଗଦାନ କଲାପରେ ସୁବାସ ପାଣିଗ୍ରାହୀଙ୍କ

ପରେ ଅଧ୍ୟକ୍ଷ ଦାୟିତ୍ୱରେ ରହିଲେ । ଦୁଃଖର ବିଷୟ, ନିଜେ ଜଣେ ପ୍ରଚଣ୍ଡ ପ୍ରତିଭାଧାରୀ କବି ହୋଇଥିବା ସତ୍ତ୍ୱେ ଅନେକ ପ୍ରୟାସପରେ ବି ତାଙ୍କ ସମୟରେ ବର୍ଷେ ବି ଗଙ୍ଗାଧର ଜୟନ୍ତୀ ଆୟୋଜିତ ହୋଇପାରିନଥିଲା ।

ହଠାତ୍ ଏହି ଆଲେଖ୍ୟରେ ଗଙ୍ଗାଧରଙ୍କ ପ୍ରସଙ୍ଗ କେମିତି ଆସିଗଲା ବୋଲି ଅନେକେ ଚିନ୍ତା କରୁଥିବେ । ତେବେ, ଗଙ୍ଗାଧର ତାଙ୍କ ରଚିତ ଏକ କ୍ଷୁଦ୍ର କବିତା -

ସୂର୍ଯ୍ୟ ପ୍ରତି ଦୀପରେ ଲେଖନ୍ତି

ତୁମ୍ଭ ରିପୁ ତମ, ତାକୁ ନାଶ ଏ ସଂସାରେ,

ମୁହିଁ ତମ ନାଶିଥାଏ ଶକ୍ତି ଅନୁସାରେ ।

ଏ ଉକ୍ତିଟି ଏଠାରେ ଉଲ୍ଲେଖ କରିବାର ଯଥାର୍ଥତା ହେଲା ଯେ ପଲ୍ଲିଶ୍ରୀ ମହାବିଦ୍ୟାଳୟର ଜାତୀୟ ସେବାସଂସ୍ଥାର କାର୍ଯ୍ୟକ୍ରମ ଅଧିକାରୀଭାବରେ ଯୋଗ ଦେବା ପରେପରେ ତୁରୁମ ଶିବିର ଉତ୍ତାରୁ ନୃସିଂହନାଥଠାରେ ଅଞ୍ଚଳ ମହାବିଦ୍ୟାଳୟର ନେତୃତ୍ୱରେ ଏକ ଆନ୍ତଃକଲେଜ ଶିବିର ଆୟୋଜିତ ହୋଇଥିଲା । ମୋ ନେତୃତ୍ୱରେ ଆମ କଲେଜର କିଛି ସ୍ୱେଚ୍ଛାସେବୀ ସେହି ଶିବିରରେ ଯୋଗଦାନ କରିଥିଲେ । ତେବେ ପରିଚାଳନାଗତ ତ୍ରୁଟି ହେତୁ ଆମ କଲେଜ ସହ ଆଉ କିଛି କଲେଜର ସ୍ୱେଚ୍ଛାସେବୀମାନେ ପ୍ରତିବାଦରେ ଶିବିର ଛାଡ଼ି ପଳେଇ ଆସିଥିଲୁ । ଚିଚିଣ୍ଡା ସହ ଅତାବିରା, ଲରମ୍ବା ଆଦି କଲେଜ ତା' ଭିତରେ ଅନ୍ତର୍ଭୁକ୍ତ । ଏହିଠାରୁ ହିଁ ଅତାବିରା ଅନ୍ତଃକଲେଜ ଶିବିରର ଚିନ୍ତା କରାଯାଇଥିଲା । ଏହି ଶିବିରର ସଫଳତା ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଜାତୀୟ ସେବାସଂସ୍ଥା ସଂଯୋଜକ ପ୍ରଫେସର ଆର୍ତ୍ତବନ୍ଧୁ ମିଶ୍ର ଏକ ଦୁଇଜଣିଆ ଛାତ୍ରପ୍ରତିନିଧିଙ୍କୁ ସାଙ୍ଗରେ ନେଇ କେରଳର ତ୍ରିଭାନ୍ଦମଠାରେ ହେବାକୁ ଥିବା ଆନ୍ତର୍ଜାତିକ ଯୁବ ସମ୍ମେଳନରେ ଯୋଗଦେବା ପାଇଁ ପତ୍ରଦ୍ୱାରା ଜଣେଇଥିଲେ । ସେଠାରେ 'ଶାନ୍ତି ପାଇଁ ଯୁବ', ବିଷୟରେ ଏକ ଇଂରାଜୀରେ ଲିଖିତ କ୍ଷୁଦ୍ରପ୍ରବନ୍ଧ ପାଠକରିବା ପାଇଁ ନିର୍ଦ୍ଦେଶ ଥିଲା । ଚିଚିଣ୍ଡା ଭଳି ଏକ ଆଭ୍ୟନ୍ତରୀଣ ଗ୍ରାମାଞ୍ଚଳରେ ପ୍ରତିଷ୍ଠିତ ଏକ ମହାବିଦ୍ୟାଳୟରେ କାର୍ଯ୍ୟରତ ମୋ ଭଳି ସାଧାରଣ ଅଧ୍ୟାପକ ପୁଣି ଆନ୍ତର୍ଜାତିକ ସମ୍ମେଳନରେ ଯୋଗଦେବା ପାଇଁ ମନୋନୀତ ହେବା ମୋ ପାଇଁ ଗର୍ବର ବିଷୟ, ମୋ ମହାବିଦ୍ୟାଳୟ ପଇଁ ମଧ ଗର୍ବର ବିଷୟ । ମୋ ଭଳି କ୍ଷୁଦ୍ରଦୀପଟିଏ ନିଜସ୍ୱ ଆଲୋକରେ ଏନ୍.ଏସ୍.ଏସ୍. କାର୍ଯ୍ୟକଳାପ ମାଧ୍ୟମରେ କିଛି ବ୍ୟକ୍ତିଙ୍କୁ ଆଲୋକିତ କରିଥିବା ଯୋଗୁଁ ହିଁ ଏଭଳି ବିରାଟ ସମ୍ମେଳନକୁ ଯାଇ

ଓଡ଼ିଶା ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ପ୍ରତିନିଧିତ୍ୱ କରିଥିଲି । ସାଙ୍ଗରେ ନେଇଥିଲି ଜି.ଏମ. କଲେଜ୍ ଓ ଅତାବିରା ମହାବିଦ୍ୟାଳୟର ଜଣେ ଲେଖାଏଁ ଛାତ୍ର, ତିରୁଅନନ୍ତପୁରମ୍ ଯାଇ ସେହି ସମ୍ମେଳନରେ ଯୋଗଦେଇ 'ୟୁଥ୍ ଫର୍ ପିସ୍' ପ୍ରସଙ୍ଗରେ ପ୍ରବନ୍ଧ ପାଠ କରିଥିଲି । ନାଇଜେରିଆ, ରୋମାନିଆ, ଇଂଲଣ୍ଡ, ଆଫଗାନିସ୍ଥାନ, ଫିନଲେଣ୍ଡ ଆଦି ଆହୁରି ଅନେକ ଦେଶର ପ୍ରତିନିଧିମାନେ ମଧ୍ୟ ଏହି ସମ୍ମେଳନରେ ଯୋଗ ଦେଇଥିଲେ । ପ୍ରଖ୍ୟାତ ଗାନ୍ଧିବାଦୀ ନେତା ରାଧାକିଷନ୍ ଏହି ଦ୍ୱି-ଦିବସୀୟ ସମ୍ମେଳନକୁ ଉଦ୍‌ଘାଟନ କରିଥିଲେ । ସମ୍ମେଳନ ପରେ ଆମେ ତିନିଜଣ ବସ୍‌ଯୋଗେ କନ୍ୟାକୁମାରୀ ଯାଇ ତିନିସମୁଦ୍ରର ମିଳନ ସ୍ଥଳର ଦୃଶ୍ୟକୁ ଉପଭୋଗ କଲୁ । ପରେ ବିବେକାନନ୍ଦ ହିଲକ୍ ଯାଇ ସେଇଠୁ ତ୍ରିସାଗରୀୟ ଅଭୂତପୂର୍ବ ଦୃଶ୍ୟକୁ ଅବଲୋକନ କରିଥିଲୁ । ଅନୁଷ୍ଠାନ ଛୋଟବଡ଼, ବଡ଼ କଥା ନୁହେଁ, ଆମର କର୍ତ୍ତବ୍ୟନିଷ୍ଠତା ହିଁ ଆମକୁ ଅନେକ ବିସ୍ତାରିତ କ୍ଷେତ୍ରକୁ ଘେନିଯାଇପାରେ । ମୁଁ କିନ୍ତୁ, ବିଶ୍ୱବିଦ୍ୟାଳୟ ମୋତେ ଏକ ଦାୟିତ୍ୱ ନ୍ୟସ୍ତ କରିଛି ବୋଲି ଭାବି ଯୋଜନାକୁ କାର୍ଯ୍ୟକାରୀ କରିଥିଲି ମାତ୍ର ।

ମୋର ଏନ.ଏସ.ଏସ. ଦାୟିତ୍ୱ ଏତିକିରେ ଶେଷ ହୋଇ ନଥିଲା । ଆର୍ତ୍ତବନ୍ଧୁ ମିଶ୍ର ସାର୍ ଜଣେ କ୍ରିୟାଶୀଳ ଲୋକ । ପରିବେଶକୁ ପ୍ରଦୂଷଣରୁ ମୁକ୍ତ କରିବାପାଇଁ ତାଙ୍କ ଅବଦାନ ଅତୁଳନୀୟ । ସତାଅଶୀରେ ସେ ଗ୍ରୀଷ୍ମାବକାଶରେ ବିଶ୍ୱବିଦ୍ୟାଳୟ ପଛପଟେ ଥିବା ପାହାଡକୁ ଘେରି ଯେତେ ଗାଁ ଅଛି, ସେହି ଗାମବାସୀମାନଙ୍କ ମଧ୍ୟରେ ପରିବେଶ ସଚେତନତା ସୃଷ୍ଟି କରିବାପାଇଁ 'ବନଯାତ୍ରା' ନାମରେ ଏକ ସ୍ୱତନ୍ତ୍ର ଅନ୍ତଃ ମହାବିଦ୍ୟାଳୟ ସ୍ତରୀୟ ଶିବିରର ଯୋଜନା କଲେ । ବିଭିନ୍ନ କଲେଜର ସ୍ୱେଚ୍ଛାସେବୀମାନେ ପଦଯାତ୍ରା କରି ଏହିସବୁ ଗ୍ରାମଗୁଡ଼ିକରେ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ପରିବେଶ ସଚେତନତା ସୃଷ୍ଟି କରିବା ଥିଲା ଏହି ଯୋଜନାର ମୁଖ୍ୟ ଲକ୍ଷ୍ୟ । ତେବେ ଜରୁରୀ ଡାକରାପାଇ ସେ ଦିଲ୍ଲୀ ଯିବାକୁ ପଡୁଥିବାରୁ ମୋତେ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟକୁ ଡକାଇ ଏହି ଶିବିରର ନିର୍ଦ୍ଦେଶକ ଦାୟିତ୍ୱ ନେବାକୁ ଅନୁରୋଧ କରିଥିଲେ । ମୁଁ ତାଙ୍କ ଅନୁରୋଧକୁ ଏଡି ନପାରି ସମ୍ମତି ପ୍ରଦାନ କଲି । ସମସ୍ତ ପରିଚାଳନାଗତ ଦାୟିତ୍ୱ ମୋ ହାତରେ ସମର୍ପିଦେଇ ମିଶ୍ରବାବୁ ଦିଲ୍ଲୀ ଚାଲିଗଲେ । ମୁଁ ଦାୟିତ୍ୱ ନେବାପରେ ସେକ୍ସନ୍ ଅଫିସର ନାଥବାବୁଙ୍କ ସହ ଯୋଗାଯୋଗ ରଖି ନିର୍ଦ୍ଦିଷ୍ଟ ଦିନରେ ଯଥାସ୍ଥାନକୁ ପହଞ୍ଚିଗଲି । ବୁର୍ଲା, ଅତାବିରା, ଜି.ଏମ. କଲେଜ୍, ପଞ୍ଚାୟତ କଲେଜ୍, ବରଗଡ, ଏମିତି ନ'ଟି ମହାବିଦ୍ୟାଳୟର

ଛାତ୍ରମାନଙ୍କ ସହ ମୁଁ ରହିଲି ବିଶ୍ୱବିଦ୍ୟାଳୟ ପଛପଟେ ଥିବା ଆଦିବାସୀ ଧୁରିଆପଡା ଉପ୍ରା ସ୍କୁଲର ଆଜ୍‌ବେଷ୍ଟସ୍ କୋଠରୀମାନଙ୍କରେ । ସକାଳ ହେଲେ ସାମଗ୍ରୀସହ ପଦରଜରେ ଯାଉଥିଲୁ ଗୋଟିଏ ଲେଖା ଗାଁ । ସେଇଠି ରହି କିଛି ବିକାଶକାର୍ଯ୍ୟ କରୁଥିଲୁ ଏବଂ ରାତିହେଲେ ସମ୍ବଲପୁରରୁ ଆସି ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରୁଥିଲେ ନେହେରୁ ଯୁବକେନ୍ଦ୍ରର କଳାକାରମାନେ । ଏହିଭଳି ଗୋଶାଳା, ଗୋଡ଼ଭଗା, ଲହଣ୍ଡା ଭଳି ସାତୋଟି ଗ୍ରାମକୁ ଆମେ ଦଳଗତ ଭାବରେ ଯାଇ ଶିବିର ପକାଇ କାର୍ଯ୍ୟକ୍ରମମାନ ଆୟୋଜିତ କରିଥିଲୁ । ଶେଷରାତିରେ ଲହଣ୍ଡା ଗାମରେ ଉଦ୍‌ଯାପନୀ ଉତ୍ସବ ଆୟୋଜିତ ହୋଇଥିଲା । ଆମ ଛାତ୍ରମାନେ ମଧ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିଲେ । ବଡ଼ ନିଆରା ଥିଲା ସେ ଅନୁଭବ, ଗ୍ରାମାଞ୍ଚଳର କଲେଜରୁ ଯାଇ ବୁର୍ଲା, ସମ୍ବଲପୁର, ବରଗଡ଼ ଭଳି ସହରାଞ୍ଚଳର ଛାତ୍ରମାନଙ୍କୁ ଶୃଙ୍ଖଳିତ ଭାବରେ ରଖିବା ହିଁ ଥିଲା ମୋର ପ୍ରଥମ ଦାୟିତ୍ୱ । ସେମାନଙ୍କ ଖାଇବା, ରହିବା ଅଭାବ ଅସୁବିଧାକୁ ନିଜର ବୋଲି ଭାବି ନିଜେ ମଧ୍ୟ ସେ କଷ୍ଟକୁ ଆପଣେଇନେଇଥିଲି । ଏକେ ତ ଖରାମାସ, ପୁଣି ପାହାଡ଼ର ପଥୁରିଆ ପବନର ମାଡ଼, ବଡ଼ କଷ୍ଟକର ଥିଲା ସେ ଅଭିଜ୍ଞତା । ତଥାପି ଶିବିରର ସଫଳତାପାଇଁ ଆର୍ତ୍ତବନ୍ଧୁବାବୁ ଶେଷ ଦିନରେ ଆମ ପାଖରେ ପହଞ୍ଚି ଆମ ସହ ସାମିଲ ହୋଇଥିଲେ । ଏଇ ମାସେ ଦେଢ଼ମାସ ହେବ, ଆର୍ତ୍ତବନ୍ଧୁ ବାବୁଙ୍କର ଦେହାନ୍ତ ହୋଇଯାଇଛି । ପ୍ରାଣୀ ବିଜ୍ଞାନର ପ୍ରଫେସର ଭାବରେ, ଜଣେ ପରିବେଶବିତ୍ ଭାବରେ, ଜଣେ ଗବେଷକ ଭାବରେ ସେ ସୁନାମ ଅର୍ଜନ କରିଥିଲେ । ତାଙ୍କ ସହ ମୋର ବ୍ୟକ୍ତିଗତ ସମ୍ପର୍କ ଖୁବ୍ ଘନିଷ୍ଠ ଥିଲା । ସେଇ ଛୟାଅଶୀରେ କଲେଜ ପ୍ରାଙ୍ଗଣରେ ଏକ ମଣ୍ଡପ ତିଆରି ପାଇଁ ସ୍ୱତନ୍ତ୍ର ଶିବିରର ପ୍ରକଳ୍ପ କେବଳ ତାଙ୍କ ପାଇଁ ସମ୍ଭବ ହୋଇଥିଲା । ପ୍ରବଳ ବର୍ଷା ସତ୍ତ୍ୱେ ଆମେ କଲେଜର ଛାତ୍ରମାନେ ଶାରୀରିକ ଶ୍ରମଦାନରେ ମଣ୍ଡପଟିଏ ଗଢ଼ିଥିଲେ, ଯେଉଁଠି ଦୀର୍ଘବର୍ଷ ଧରି ବାର୍ଷିକ ଉତ୍ସବ ଆୟୋଜିତ ହୋଇଥିଲା । ଅନେକ ସୁନ୍ଦର ନାଟକମାନ ମଞ୍ଚସ୍ଥ ହୋଇଛି । ପରେ ଦେବୀଦାସ ମିଶ୍ରଙ୍କ ଅଧ୍ୟକ୍ଷତ୍ୱ କାଳରେ ସେହି ମଣ୍ଡପକୁ ଭାଙ୍ଗି ଖେଳପଡିଆର ସମ୍ପ୍ରସାରଣ କରାଗଲା ଏବଂ ବାର୍ଷିକୋତ୍ସବ ବେଳେ ଅନେକ ଖର୍ଚ୍ଚକରି ଏଯାଏଁ ଅସ୍ଥାୟୀ ମଣ୍ଡପ ତିଆରି କରାଯାଉଛି । କଲେଜରେ ମଣ୍ଡପର ଆବଶ୍ୟକତା କେତେ, ତାହା ଯେଉଁଠି ନଥାଏ, ସେଇଠି ହିଁ ଅନୁଭବ କରିହୁଏ । ଆର୍ତ୍ତବନ୍ଧୁବାବୁଙ୍କ ଅବର୍ତ୍ତମାନରେ ଆମ ଅଞ୍ଚଳ ତାଙ୍କ ସ୍ମୃତିକୁ ବହୁବର୍ଷ ଯାଏଁ ମନେରଖିବ ତାଙ୍କ ଭଳି ଦରଦୀ ମଣିଷଟିଏ ପାଇବା ଆଜିକାଲି ବଡ଼ ଦୁରୂହ ବ୍ୟାପାର ।

ପଲ୍ଲିଶ୍ରୀ ମହାବିଦ୍ୟାଳୟକୁ ଅନେକ ଅଧ୍ୟକ୍ଷ ଆସିଛନ୍ତି, ଅଧ୍ୟାପକମାନେ ମଧ୍ୟ ଅଧ୍ୟକ୍ଷ ଦାୟିତ୍ୱରେ ରହିଛନ୍ତି ବହୁବର୍ଷ ଯାଏଁ। ତଥାପି ଏହାର ଆର୍ଥିକ ଦୂରାବସ୍ଥାକୁ ଦୂରୀଭୂତ କରିବାପାଇଁ କ୍ୱଚିତ୍ ଦୃଷ୍ଟି ଦିଆଯାଇଛି। ତେଣୁ ଅଧ୍ୟାପନା କାର୍ଯ୍ୟରେ ଧୁରନ୍ଧର ହେଲେ ସୁଦ୍ଧା ବିକାଶ କ୍ଷେତ୍ରରେ ବହୁପଛରେ ପଡିଛି। ଅବସର ନେଇଗଲିଣି ବୋଲି ନୁହେଁ, ଏହି ପ୍ରସଙ୍ଗରେ ବହୁ ଅଧ୍ୟକ୍ଷଙ୍କ ସହ ଆଲୋଚନା ଓ ଚର୍ଚ୍ଚା ମଧ୍ୟ କରୁଥିଲି। ଅତାବିରା ଓ ଭେଡେନ୍ ଏହି କଲେଜଠାରୁ କେତେ ଆଗକୁ ଚାଲିଗଲା କେବଳ ଅଧ୍ୟକ୍ଷମାନଙ୍କ କଲେଜ୍‌ପ୍ରତି ଅବହେଳା ପାଇଁ। କେବଳ ଯଜ୍ଞକୁମାର ମେହେରଙ୍କ ଅମଳରେ ଅଫିସଟି ଏକ ଶୃଙ୍ଖଳାରେ ପହଞ୍ଚିପାରିଥିଲା, ଯାହା ସମସ୍ତେ ସ୍ୱୀକାର କରିଥାନ୍ତି। ୟୁ.ଜି.ସି. ସହ କଲେଜ୍‌କୁ ଯୋଡ଼ିବାର ଯେଉଁ କାଗଜପତ୍ର କାମ, ସେଥିପ୍ରତି କେହି ଦୃଷ୍ଟି ଦେଉନଥିଲେ। 12 F ଆବେଦନ ପତ୍ରାଦି କାର୍ଯ୍ୟ ନିମିତ୍ତ ନବେ ମସିହାରୁ ଯଦି ପଦକ୍ଷେପ ନିଆଯାଇଥାଆନ୍ତା, ତେବେ କଲେଜ୍ କୋଠା ଆଜିବି ଖପରାଚ୍ଛାଦିତ ହୋଇ ରହି ନଥାନ୍ତା। ଏବେ କୁଆଡ଼େ ୟୁଜିସି ଆଉ ଅନୁଦାନ ଦେଉନାହିଁ। ତେଣୁ ସୁବର୍ଣ୍ଣସୁଯୋଗମାନ ଆଗରୁ ହାତଛଡ଼ା ହୋଇସାରିଛି। ଅଧ୍ୟାପକମାନଙ୍କ କାର୍ଯ୍ୟ ଚାକିରୀ ସର୍ବସ୍ୱ ହେଲେ ହେଁ ନୈତିକ ଆଧାରରେ ସେମାନଙ୍କ ମଧ୍ୟ କଲେଜ୍‌ର ବିକାଶ କ୍ଷେତ୍ରରେ କିଛି ଜ୍ଞାନ ଆଧାରିତ ଦାୟିତ୍ୱ ରହିଛି। କଲେଜ୍, ବହୁ ମୂଲ୍ୟବାନ ସମୟ ହରାଇ ସାରିଛି, ସେ ସମୟ ଆଉ ଫେରିବ କି ନାହିଁ, କେହି ଜାଣନ୍ତି ନାହିଁ।

କଲେଜ୍‌ରେ କ୍ଲାସ ନେଇ, ଧନୁଯାତ୍ରାରେ କଂସ ଅଭିନୟ କରିବାର ଅନୁଭୂତ ବଡ଼ ବିଚିତ୍ର। ପଢ଼ା ଜାଗାରେ ପଢ଼ା, ନାଟ ଜାଗାରେ ନାଟ। ଏଥିରେ ଅସୁବିଧା କିଛି ନାହିଁ, ଅନ୍ତତଃ ମୋ ପକ୍ଷରେ। ହେଲେ ମଜା କଥା ହେଲା, କଂସ, ଧନୁଯାତ୍ରାର ଏଭଳି ଏକ ଚରିତ୍ର, ସମସ୍ତ ଦର୍ଶକମାନଙ୍କ ପାଇଁ ଆକର୍ଷକ ହୋଇପଡେ। କ୍ଲାସ ନେବାବେଳେ ସେ ସମୟର ଛାତ୍ରଛାତ୍ରୀମାନେ କେବଳ ମୋତେ ଏକୁଶକଁଟେ ଦେଖୁଥିଲେ। ସଚେତନ ଭାବରେ ମୁଁ ତାଙ୍କୁ ପାଠ ପଢ଼ାଉଛି, ସେ କଥା ତାଙ୍କ ମନରୁ ପୋଛି ହୋଇଯାଉଥିଲା। ପଛପଟରୁ କିଛି ଛାତ୍ର କଂସ କଂସ ବୋଲି ପାଟି କରିବା, ମୋତେ କୌତୁହଳିଆ ଲାଗୁଥିଲା। ପ୍ରଥମ ବର୍ଷ ଆମ ଓଡ଼ିଆ ବିଭାଗର ଅଧ୍ୟାପିକା ପଙ୍କଜିନୀ ମିଶ୍ର ମୋ ଅଜାଣତରେ କିଛି ଛାତ୍ରମାନଙ୍କୁ କଂସ ନିକଟକୁ ପଠାଇ ମଥୁରା ମହାବିଦ୍ୟାଳୟର ଓଡ଼ିଆ ବିଭାଗର ଅଧ୍ୟାପକ ଅନ୍ତର୍ଦ୍ଧାନ ହୋଇଯାଇଥିବା ଅଭିଯୋଗ କରାଇଥିଲେ। ସିଂହାସନରେ ମୁଁ ଥାଏ କଂସର ଭୂମିକାରେ। ଛାତ୍ରମାନଙ୍କ ଅଭିଯୋଗ

ଶୁଣି ମୁଁ ମେଡମଙ୍କର ଷଡଯନ୍ତ୍ରକୁ ଠଉରାଇ ନେଇଥିଲି । ତତ୍‌କ୍ଷଣାତ୍ ମହାମନ୍ତ୍ରୀଙ୍କୁ ଆଦେଶ ଦେଇଥିଲି ସେଇ ନିର୍ଦ୍ଦିଷ୍ଟ ଅଧ୍ୟାପକଙ୍କୁ ଧରିଆଣି ଶୂଳିରେ ବସାଇ ଦିଆଯାଉ । ସଙ୍ଗେସଙ୍ଗେ ଦର୍ଶକ ମହଲରେ ହାସ୍ୟରୋଳ ଖେଳି ଯାଇଥିଲା ।

ବର୍ଷେ ମୁଁ କଂସ ମହାରାଜ ଭାବରେ ସମଗ୍ର ମୀନାବଜାରକୁ ଫ୍ରିଜ୍ କରିଦେଇଥିଲି । ମୀନାବଜାର ମାଲିକର ଦୋଷ, ସେ କଂସ ଦରବାରକୁ ଆସି ରାଜାଙ୍କୁ ଭେଟି ଦେଇ ନଥିଲା । ସେତେବେଳେ ହାତୀପିଠିରେ ବସି ମୁଁ ମଥୁରାର ମୁଖ୍ୟ ତୋରଣ ପାଖରେ ନଗର ଭ୍ରମଣ କରୁଥିଲି । ମୋ ନିର୍ଦ୍ଦେଶ ପାଇବାମାତ୍ରେ ଚାଣୁର, ମୁଷ୍ଟିକ ଯାଇ ସମଗ୍ର ମୀନାବଜାରକୁ ସ୍ଥଗିତ କରିଦେଲେ । ପରେ ମାଲିକ ଆସି କ୍ଷମା ପ୍ରାର୍ଥନା କରିବା ପରେ ମୀନାବଜାର ପୁଣି ଚଳଚଞ୍ଚଳ ହୋଇଥିଲା । ମାଲିକକୁ ଦରବାରରେ ଶତସହସ୍ର ସ୍ୱର୍ଣ୍ଣମୁଦ୍ରା ଜରିବାନା କରାଯାଇଥିଲା ।

ଏମିତି ଛୋଟବଡ଼, ବହୁ ଅଭିଜ୍ଞାତାରେ ପରିପୂର୍ଣ୍ଣ ମୋର କଂସାଭିନୟ । କଷ୍ଟ ପାଇଛି ଯେତେ, ଆନନ୍ଦ, ମଜା ଉଠେଇଛି ସେତେ । କେତେବେଳେ ସତ ମିଛ ପାଲଟିଯାଇଥିଲା, ଆଉ ମିଛ ସତ ପାଲଟି ଜୋକର୍ ଭଳି ମୋତେ ଅନାଉଥିଲା । ରବି, ଷଣ୍ଢବାବୁ, ସମ୍ପଦବାବୁ ମୋ ଅଙ୍ଗରକ୍ଷକ ଚାଣୁର, ମୁଷ୍ଟିକ ଭୁମିକାରେ ଯୋରଦାର ଅଭିନୟକରି ମୋତେ ସହଯୋଗ କରୁଥିଲେ । ପ୍ରଥମ ବର୍ଷରୁ ହିଁ ଶିବ, ଆମ କଲେଜ୍‌ର ପିଅନ, ଦୂତ ଭୂମିକାରେ ଫେଲ୍ ମାରିଥିବାରୁ ଆଉ ମୋ ଦରବାରକୁ ରଙ୍ଗମାଖି ଆସିପାରି ନଥିଲା । ପୁତନାବଧ ଖବରକୁ ସେ 'କୃଷ୍ଣ ଇଏ ହେଇଗଲେ' କହିବାଦ୍ୱାରା ଯେ ଯାତ୍ରାର ଶୃଙ୍ଖଳା ଭାଙ୍ଗିଥିଲା ।

ଏମିତି ଏମିତି ସାତ ବର୍ଷର ଅନୁଭୂତି ବାଢ଼ିଦେଉଥିବି ପାଠକମାନଙ୍କ ଆଗରେ ଚଟଣି ଭଳି । ଜୀବନ ସହ ଜୀବିକା ଗଡିକଲା ଭଳି ଦିବସରୁ କ୍ରୁରସତ୍ୟ ସହ ଧନୁଯାତ୍ରାର ରଙ୍ଗବୋଳା ଅଭିନୟର ବର୍ଣ୍ଣନା, ଏକା ସାଙ୍ଗରେ ଗଡିକରିବ ।



ଆଜି ପବିତ୍ର ନୂଆଁଖାଇ, ପଶ୍ଚିମ ଓଡ଼ିଶାର ମୁଖ୍ୟ କୃଷିଭିତ୍ତିକ ଗଣପର୍ବ । ଏହି ଅବସରରେ ମୁଁ ମୋର ସମସ୍ତ ବନ୍ଧୁମାନଙ୍କୁ ଅଭିନନ୍ଦନ ଜଣାଉଛି ଏବଂ ବରିଷ୍ଠମାନଙ୍କୁ ନୂଆଁଖାଇ ଜୁହାର କରୁଛି । କାହିଁକେତେ ପିଢ଼ୀରୁ ଏହି ପାର୍ବଣିକ ପରମ୍ପରା ଚାଲିଆସୁଛି, ତାର କୌଣସି ଇତିହାସନାହିଁ । ଅବଶ୍ୟ କୌଣସି ଲୋକପର୍ବ ବା ତିହାର୍‌ର ନିର୍ଦ୍ଦିଷ୍ଟ ଆରମ୍ଭବର୍ଷର ଇତିହାସ ନଥାଏ ବରଂ ପରମ୍ପରା ଥାଏ । ତେବେ, ନୂଆଁଖାଇଭେଟ୍‌ର ନିର୍ଦ୍ଦିଷ୍ଟ ଇତିହାସ ରହିଛି, ଯାହା ସମ୍ବଲପୁରର ସମଲେଶ୍ୱରୀ

ମନ୍ଦିରସହ ଜଡ଼ିତ ସମଲେଶ୍ୱରୀ ଯୁବକସଂଘ ଦ୍ୱାରା ୧୯୬୫ ରୁ ୬୯ ମଧ୍ୟରେ ସମଲେଶ୍ୱରୀ ମନ୍ଦିର ପରିସରରେ ପ୍ରମୁଖ ନୂଆଁଖାଇଭେଟ୍ ଆୟୋଜିତ ହୋଇଥିଲା । ଅପରାହ୍ନରେ ସମ୍ବଲପୁରୀ କବିତାପାଠ ପ୍ରତିଯୋଗିତା ଆୟୋଜିତ ହୋଇଥିଲା ଏବଂ ରାତିରେ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଅତିଥିଭାବରେ ନିମନ୍ତ୍ରିତ କରାଯାଇ ସଭାସହ ପୁରସ୍କାରବିତରଣ ଉତ୍ସବ ଅନୁଷ୍ଠିତ ହେଉଥିଲା । ସଭାପରେ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷିତ ହେଉଥିଲା, ଯେଉଁ ପରମ୍ପରା ଆଜିପର୍ଯ୍ୟନ୍ତ ଚାଲିଆସୁଛି । ପରେ ନବେଦଶକର ପ୍ରାରମ୍ଭରେ ସମ୍ବଲପୁରୀ ଭାଷା ଓ ସଂସ୍କୃତି ବିଷୟରେ ସଚେତନତା ସୃଷ୍ଟିହେବା ଫଳରେ ଆଞ୍ଚଳିକ ସଂସ୍କୃତିର ବିକାଶଉଦ୍ଦେଶ୍ୟରେ ପଶ୍ଚିମ ଓଡ଼ିଶାର ବିଭିନ୍ନ ସହରାଞ୍ଚଳରେ ନୂଆଁଖାଇ ଭେଟ୍‌ଘାଟ୍ ଆୟୋଜିତ ହେବାରେ ଲାଗିଲା । ୧୯୯୭ ମସିହାରେ ସମ୍ବଲପୁର ଲୋକମହୋତ୍ସବର ସଫଳତାପରେ ପଶ୍ଚିମଓଡ଼ିଶାର ଲୋକନୃତ୍ୟ, ଲୋକଗୀତ ତଥା ଅନ୍ୟାନ୍ୟ ଆଞ୍ଚଳିକ ସଂସ୍କୃତି ସମ୍ପର୍କରେ ସ୍ୱାଭିମାନୀ ସଚେତନତା ଗଭୀରରୁ ଗଭୀରତମ ହେବାଫଳରେ ନୂଆଁଖାଇଭେଟ୍ ଉତ୍ସବ ଆୟୋଜିତ ହେବା ପରମ୍ପରା ଆଉ ପଶ୍ଚିମ ଓଡ଼ିଶାର ସୀମିତ ନରହି ଜାତୀୟ ତଥା ଆନ୍ତର୍ଜାତିକ ସ୍ତରକୁ ସମ୍ପ୍ରସାରିତ ହୋଇଗଲା । ଏହାଫଳରେ ନିଜସଂସ୍କୃତିର ବିକାଶକୁ ନେଇ ଯୁବପିଢ଼ୀ ଗବେଷଣାର ଆଶ୍ରୟରେ ଲୋକଗୀତ, ଲୋକନୃତ୍ୟ, ଲୋକବାଦ୍ୟର ସଂରକ୍ଷଣ ବାବଦରେ କାର୍ଯ୍ୟ କରୁଛନ୍ତି, ଦେଶବିଦେଶରେ ଜୀବିକାର୍ଜନ କରୁଥିବାରୁ ନିଜ ଘରକୁ ନୂଆଁଖାଇ ଅବସରରେ ଆସିନପାରି ସେହି ରାଜ୍ୟ ଓ ଦେଶରେ ଆୟୋଜନରେ ଲିପ୍ତ ରହୁଛନ୍ତି । ଏହାଦ୍ୱାରା ଏଠାକାର ସଂସ୍କୃତି କ୍ରମଶଃ ଅନ୍ତଃରାଷ୍ଟ୍ରୀୟସ୍ତରକୁ ପ୍ରସାରିତହୋଇ ନିଜର ଏକ ସ୍ୱତନ୍ତ୍ରପରିଚୟ ସୃଷ୍ଟି କରିପାରିଛି ଏବଂ ଏହି ପଦକ୍ଷେପ ବର୍ଷକୁବର୍ଷ ବିଭିନ୍ନଅଞ୍ଚଳକୁ ସମ୍ପ୍ରସାରିତ ହେବାରେ ଲାଗିଛି । ଏହି ଧାରାରେ କବି ହଳଧର ନାଗ, ଗାୟକ ଜିତେନ୍ଦ୍ରିୟ ହରିପାଲ, ଗୀତିକବି ମିତ୍ରଭାନୁ ଗୌନ୍ତିଆ ପ୍ରମୁଖ ପଦ୍ମଶ୍ରୀ ସମ୍ମାନରେ ସମ୍ମାନୀତ ହୋଇଛନ୍ତି, ତା ସହ ହଳଧର ନାଗ ଏବଂ ଡ. ପ୍ରଫୁଲ୍ଲ ତ୍ରିପାଠୀ କେନ୍ଦ୍ର ସାହିତ୍ୟ ଏକାଡେମୀର ଭାଷାସମ୍ମାନ ପୁରସ୍କାର ମଧ୍ୟ ଲାଭ କରିଛନ୍ତି ।

ସମ୍ବଲପୁରର ବଡ଼ବଜାର ସ୍ଥିତ ସମଲେଶ୍ୱରୀ ଯୁବକସଂଘ ଦ୍ୱାରା ଆୟୋଜିତ ନୂଆଁଖାଇଭେଟ୍ ଉତ୍ସବ ସହିତ ମୁଁ ପଞ୍ଚସ୍ତରୀ ମସିହାରୁ ପ୍ରାୟ ଆଠ, ନଅବର୍ଷ ଧରି ଜଡ଼ିତ ଥିଲି । ବନ୍ଧୁ ପ୍ରଦୀପ ରାୟଙ୍କ ଘରେରହି ରାତିବେଳା ବି.ଏ. ପରୀକ୍ଷାପାଇଁ ପ୍ରସ୍ତୁତିରେ ମାତିଥିବାବେଳେ ବାରୁଦା, ଶ୍ୟାମସୁନ୍ଦର ଧରଙ୍କ ସହ ପରିଚିତ ହେଲି



ଏବଂ ସେ ମୋ ସଂଗୀତପ୍ରତି ରହିଥିବା ଆଗ୍ରହଦେଖି ନୂଆଁଖାଇଭେଟ୍‌ର ପ୍ରାରମ୍ଭିକ ସଂଗୀତ ପ୍ରସ୍ତୁତ କରିବାପାଇଁ ଅନୁରୋଧ କରିଥିଲେ । ମୁଁ ନିଜେ ବିଭିନ୍ନ ଗୀତ ରଚନାକରି, ସ୍ୱର ସଂଯୋଜନାକରି ମୋତେ ଯୋଗେଇଥିବା କଳାକାରମାନଙ୍କ ସହ ରିହାର୍ସାଲ କରି ନୂଆଁଖାଇରାତି ମଞ୍ଚରେ ପରିବେଷଣ କରୁଥିଲି । ଗୀତରେ ମୋସହ ନିଜେ ବାରୁଦା, ମୁରଲୀଧର ମେହେର ମଧ୍ୟ ସଂଗୀତରେ ଅଂଶଗ୍ରହଣ କରୁଥିଲେ । ମୁଁ କେବେ ତବଲା, କେବେ ମାନ୍ଦଲବଜାଇ ଗୀତଗୁଡ଼ିକର ତାଳ ବାଦ୍ୟରେ ସହଯୋଗିତା କରୁଥିଲି । ଏହି ଧାରା ପ୍ରାୟ ସାତଆଠବର୍ଷ ପର୍ଯ୍ୟନ୍ତ ଜାରି ରହିଥିଲା । କେବେକେବେ ନାଟକ ମଧ୍ୟ ମଞ୍ଚସ୍ଥ ହେଉଥିଲା । କିଛିବର୍ଷ ପରେ ବିଶେଷତଃ ମୁଁ ନନ୍ଦପଡାର ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦର ନାଟକଗୁଡ଼ିକର ନିର୍ଦ୍ଦେଶନା ଭାର ସମ୍ଭାଳିବାପରେ ଏହି ଅନୁଷ୍ଠାନ ମଧ୍ୟ ନୂଆଁଖାଇଭେଟ୍ ଆୟୋଜନ ଆରମ୍ଭକଲା ପଡ଼ାଭିତରେ । ଶିଶୁଶିକ୍ଷୀମାନଙ୍କ ମଧ୍ୟରେ ନାଚ, ଗୀତ ପ୍ରତିଯୋଗିତାମାନ ଆୟୋଜନକରି ଏହି ଉତ୍ସବରେ ମୁଖ୍ୟଅତିଥିଙ୍କ ଦ୍ୱାରା ପୁରସ୍କାର ବିତରିତ ହେଉଥିଲା । ପରେ ନାଟକ ପରିବେଷିତ ହେଉଥିଲା । ଏଭଳି ନୂଆଁଖାଇଭେଟ୍ ସମୟରେ ଭୁର୍‌କୁଟି, ଯେନ୍ତା କାମ୍‌କେ ହେନ୍ତା ଦାମ୍, ରାମ୍ ରାଏଜ, ମାଂସର ଫୁଲ, ଭୁତିଆର୍ ହତିଆର୍ ନାଟକମାନ ପୂର୍ଣ୍ଣ ପ୍ରେକ୍ଷାଳୟରେ ମଞ୍ଚସ୍ଥ ହୋଇଥିଲା । ଏହିଧାରା ମଧ୍ୟ ଗତି କଲା ପ୍ରାୟ ସାତଆଠବର୍ଷ । ବାଲେଶ୍ୱରରେ ଦଦରା ଦର୍ପନ ମଞ୍ଚାୟନ ପରେ ଏହି ଅନୁଷ୍ଠାନ ସହ ଯୋଡିହେବା ଧିରେଧିରେ କମିଯାଇଥିଲା ।

ପରେ ନୂଆଁଖାଇ ଅବସରରେ ବିଭିନ୍ନ ଅନୁଷ୍ଠାନ ଦ୍ୱାରା ଆୟୋଜିତ ସଭାମାନଙ୍କରେ ମୁଖ୍ୟବକ୍ତା ଭାବରେ ଯୋଗଦେଇ ନୂଆଁଖାଇର ଗୁରୁତ୍ୱପୂର୍ଣ୍ଣ ଦିଗ ଉପରେ ଅଲୋକପାତ କରିଛି, ଅନେକ ପ୍ରବନ୍ଧ ରଚନାକରି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଛି, ଯାହା ଏବେମଧ୍ୟ ଜାରିରହିଛି । ରାଉରକେଲା, ବନ୍ଧବାହାଲ, ବୁର୍ଲା, ହୀରାକୁଦ, ସମ୍ବଲପୁର, ବରଗଡ଼ କଣ୍ଟାପାଲି, ଏପରି କି ପନ୍ଦରମସିହାରେ ନୂଆଦିଲ୍ଲୀ ସ୍ଥିତ ଜୁହାର୍‌ପରିବାର ଆୟୋଜିତ ନୂଆଁଖାଇଭେଟ୍ ଉତ୍ସବରେ ମୁଖ୍ୟବକ୍ତା ଭାବରେ ଯୋଗଦେବାର ସୌଭାଗ୍ୟଲାଭ କରିଥିଲି । ଜୁହାର୍‌ପରିବାରର ଅତିଥ୍ୟ ଓ ଆପ୍ୟାୟନ, କେବେ ଭୁଲିବାର ନୁହେଁ । ନୂଆଦିଲ୍ଲୀସ୍ଥିତ ସାଇ ପ୍ରେକ୍ଷାଳୟରେ ଆୟୋଜିତ ଏହି ଉତ୍ସବରେ ଲହରୀ ଅନୁଷ୍ଠାନ ଗୀତନୃତ୍ୟ ପରିବେଷଣ କରିଥିଲେ । ଏଠାରେ ରଙ୍ଗବତୀର ଗାୟକ ଜିତେନ୍ଦ୍ରିୟ ହରିପାଲ, କବି ମିତ୍ରଭାନୁ ଗୌନ୍ତିଆ, ସଂଗୀତ

ନିର୍ଦ୍ଦେଶକ ପ୍ରଭୁଦତ୍ତ ପ୍ରଧାନ ପ୍ରମୁଖ ଉପସ୍ଥିତ ଥିଲେ । ଲୋକକବି ହଳଧର ନାଗଙ୍କୁ ଏଠାରେ ଜୁହାରସମ୍ମାନରେ ସମ୍ବର୍ଦ୍ଧିତ କରାଯାଇଥିଲା । ମୁଁ ଓ ସହଧର୍ମିଣୀ ଏହି ଯାତ୍ରାକୁ ମନଭରି ଉପଭୋଗ କରିଥିଲୁ । ମୋ ସାନଝିଆରୀ ସୁନୀ ତା' ସ୍ୱାମୀଙ୍କସହ ସେଠାରେ ରହୁଥିବାରୁ ଆଉଦିନେ ଅଧିକରହି ଦିଲ୍ଲୀର କିଛି ପର୍ଯ୍ୟଟନ ସ୍ଥଳୀ, ଆଗ୍ରା ଯାଇ ତାଜମହଲ ଓ ଆଗ୍ରାଫୋର୍ଟ, ମଥୁରା, ବୃନ୍ଦାବନ ଆଦି ସ୍ଥାନ ବୁଲିଦେଖିଥିଲୁ ।

ରେଳ ଯୋଗେ ନୂଆଦିଲ୍ଲୀ ଯାତ୍ରାବେଳେ ସକାଳୁସକାଳୁ ମୋ ନଜର ପଡିଥିଲା ମଥୁରା ଷ୍ଟେସନ । ଏହି ସେହି ମଥୁରାକଟକ, ଯେଉଁଠି ମୁଁ କଂସ ମହାରାଜ ଭାବରେ ଦୀର୍ଘ ସାତବର୍ଷଧରି ଶାସନ କରିଥିଲି । ମଥୁରା ଭ୍ରମଣ ବେଳେ କୃଷ୍ଣଙ୍କ ଜନ୍ମସ୍ଥାନକୁ ଖୋଲାଆଖିରେ ଦେଖିବାପରେ ମୋର ଭାବନାରେ କିନ୍ତୁ ଥିଲା ଏହି ପ୍ରକୋଷ୍ଠ ଏକଦା ମୋର ରାଜବାଟୀ ଥିଲା, ସମ୍ମୁଖରେ ଥିବା ବିରାଟପ୍ରାନ୍ତରରେ ମୋର ରାଜଦରବାର ଥିଲା । ଏହିସବୁ ସ୍ଥାନ ବୁଲି ଦେଖିବାବେଳେ ଶିହରଣ ଖେଳିଯାଉଥିଲା ଶରୀରରେ, ରୋମ ଟାଙ୍କୁରି ଉଠୁଥିଲା । କାହିଁକି କେଜାଣି କେହି ଜଣେ ମୋ ଅଜାଣତରେ ମୋତେ ଘେନି ଯାଉଥିଲା ଦ୍ୱାପର ଯୁଗକୁ । ମାନସପଟେ ସେତେବେଳେ ଦୃଶ୍ୟାୟିତ ହୋଇଯାଉଥିଲା ଚିଟିଣ୍ଡା ଧନୁଯାତ୍ରାର ଘଟଣାମାନ । ବ୍ୟକ୍ତିଗତଭାବରେ ମୋର ଜନ୍ମତିଥି ଜନ୍ମାଷ୍ଟମୀ ରାତି ଓ ନନ୍ଦୋତ୍ସବର ପହପହ ହୋଇଥିବାରୁ କୃଷ୍ଣଜନ୍ମସ୍ଥଳୀ ଖାଲି ଆଖିରେ ଦେଖିବାବେଳେ ଭାବପ୍ରବଣତାରେ ମୋହିତ ହୋଇପଡିଥିଲି । ଏଭଳି ମେଳ ଖାଉଥିବା ଲଗ୍ନ, ପୁଣି ମାମୁଁ କଂସ ଦ୍ୱାରା ଗୋଟିଏପରେ ଗୋଟିଏ ଶିଶୁକୁ ଶିଳାରେ କଚାଡୁଥିବା ଭୂମିକା ପରସ୍ପରବିରୋଧୀ ହେଲେ ସୁଦ୍ଧା ଅଭିନୟରେ ଯେମିତି ତିଳେହେଲେ ଦୁର୍ବଳତା ଦେଖା ନଯାଏ, ସେଥିପ୍ରତି ମୁଁ ଯଥେଷ୍ଟ ଯତ୍ନବାନ୍ ଥିଲି । ଅଣାନବେ କିମ୍ବା ନବେ, କୌଣସି ବର୍ଷର ଧନୁଯାତ୍ରାବେଳେ ମୋର ମନେପଡୁଛି ମହାମନ୍ତ୍ରୀଙ୍କ ନଗରଭ୍ରମଣ ବେଳେ ମୁଁ ଦୂତ ମାଧ୍ୟମରେ ସମ୍ବାଦ ପାଇଥିଲି, ଗୋପପୁରରୁ ଆସି କୃଷ୍ଣ ବଳରାମ ମଥୁରାକୁ ପ୍ରବେଶ କରିସାରିଲେଣି । ମୋ କ୍ରୋଧ ସୀମା ଉଲଙ୍ଘନ କରିସାରିଥିଲା । ଚାଣୁର, ମୁଷ୍ଟିକକୁ ଆଦେଶ ଦିଆଗଲା ସୈନ୍ୟସାମନ୍ତଙ୍କୁ ପ୍ରସ୍ତୁତ ରଖିବାପାଇଁ । ମଥୁରାର କୋଣଅନୁକୋଣରେ ଗୁପ୍ତଚର ନିଯୁକ୍ତକରି କୃଷ୍ଣ ବଳରାମଙ୍କୁ ବାନ୍ଧି ଦରବାରରେ ଉପସ୍ଥିତ କରାଇବାପାଇଁ । ତଥାପି ମନ ନମାନିବାରୁ ମୁଁ କଂସ ଭାବରେ ମହାମନ୍ତ୍ରୀଙ୍କୁ ଆଦେଶ ଦେଲି, ମୁଁ ଏହି ଜନଗହଳି ଭିତରେ ଆୟୋଜିତ ହେଉଥିବା, ମୋ ଆଦେଶରେ ଧନୁଯାତ୍ରା ପାଇଁ ଆସିଥିବା ଅପେରା ଦଳର ଜମାଟ ଭିତରକୁ ଯାଇ ମୁଁ

ସ୍ୱୟଂଯାଇ ଅନୁସନ୍ଧାନ କରିବି, କୃଷ୍ଣବଳରାମଙ୍କୁ ପାଇଲାକ୍ଷଣି ତରବାରୀରେ ହତ୍ୟା କରିବି !! ମୋ ନିର୍ଦ୍ଦେଶ ପାଇବାମାତ୍ରେ ହାତୀର ମାହୁନ୍ତକୁ କୁହାଗଲା ଅପେରାର ମୁଖ୍ୟତୋରଣ ଆଡ଼କୁ ଯିବାପାଇଁ । ଠିକ୍‌ଦ୍ୱାର ସମ୍ମୁଖରେ ହାତୀପିଠିରୁ ମୁଁ ତଳକୁ ଓହ୍ଲାଇପଡ଼ି ଅପେରା ପରିବେଷଣ କ୍ଷେତ୍ରପଟକୁ ଅଗ୍ରସର ହେଲି । ଦୂତ ଓ ଅଙ୍ଗରକ୍ଷକ ଯାଇ ଅପେରା ମାଲିକକୁ ମହାରାଜ କଂସ ମଣ୍ଡପକୁ ଆସୁଥିବାର ସମ୍ବାଦ ଦେଇଦେଲେ । ମୁଁ ଦଳବଳ ସହ ଅପେରା ସ୍ଥଳକୁ ପ୍ରବେଶ କଲାମାତ୍ରେ ଲକ୍ଷ୍ୟକଲି, ଅପେରାର ସଂଗୀତଦଳ, ହଠାତ୍ ମଞ୍ଚରେ ପରିବେଷିତ ହେଉଥିବା ନାଟକପୂର୍ବ ସଂଗୀତନାଟକର ସଂଗୀତକୁ ବନ୍ଦ କରି କଂସମହାରାଜଙ୍କୁ ସ୍ୱାଗତକରିବାର ତୂରୀବାଦ୍ୟ ପରିବେଷଣ କଲେ । ମଣ୍ଡପରେ ନୃତ୍ୟାଭିନୟର କଳାକାରମାନେ ସ୍ଥିର ବା ଫ୍ରିଜ୍ ହୋଇଗଲେ ଯେ' ଯାହାର ସ୍ଥାନରେ । ବୀରବାଦ୍ୟ ବାଜିବା ଫଳରେ ମୋର ଉତ୍ସାହ ଦ୍ୱିଗୁଣିତ ହୋଇଯାଇଥିଲା । ମୋ ରାଜଦରବାରରେ ଦୀର୍ଘ ତିନିଚାରିଘଣ୍ଟା ପରିଶ୍ରମ ପରେ ମଧ ଅଗଣିତ ଅପେରା ଦର୍ଶକଙ୍କୁ ଦେଖି ମୁଁ କୃଷ୍ଣ ବଳରାମଙ୍କୁ ଖୋଜିବା ବାହାନାରେ ଅଧଘଣ୍ଟା କାଳ ଲଗାତାର ସଂଳାପକହି ଦର୍ଶକଙ୍କୁ ଆପ୍ୟାୟିତ କରିଥିଲି । ସେଠାରେ ମହାମନ୍ତ୍ରୀଙ୍କ ସହ କିଛି ବୀରଦର୍ପର କଥୋପକଥନ ହେବାପରେ ମୁଁ ଅପେରାସ୍ଥଳୀ ପରିତ୍ୟାଗ କରିଥିଲି । ଏଭଳି ବିଚିତ୍ର ଅନୁଭୂତି ଖୁବ୍ କମ୍ କଳାକାରମାନଙ୍କ ଭାଗ୍ୟରେ ଥାଏ ।

ଏ ବିଷୟରେ ଉପସ୍ଥାପନ କରିବାର ତାତ୍ପର୍ଯ୍ୟ ହେଲା, ପୂର୍ବରୁ କୌଣସି ଯୋଜନା ନଥିବା ସତ୍ତ୍ୱେ ମୋର ଅପେରା ସ୍ଥାନକୁ ପ୍ରବେଶ କରିବାସମୟରେ ଅପେରାସଂଗୀତ ଦଳର ତାଙ୍କ ନିଜସ୍ୱ ପରିବେଷିତ ସଂଗୀତନାଟକର ଧାରାକୁ ହଠାତ୍ ସ୍ଥଗିତ ରଖି ମହାରାଜ କଂସଙ୍କ ଆଗମନର ବୀରବାଦ୍ୟ ବାଦନ କରି ମହାରାଜଙ୍କୁ ସ୍ୱାଗତ କରିବା ଥିଲା ଏକ କଳାତ୍ମକ ସଂଯୋଗ । ବିନାପ୍ରସ୍ତୁତିରେ ଏକ ଟେଲିପାଥି ମାଧମରେ ପରିବେଶକୁ ଖାପଖୁଆଇଲା ଭଳି କଳା ପରିବେଷଣ କରିବା, ଅପେରା ମଞ୍ଚରେ ସଂଳାପ ଉଚାରଣକରି ବିଷୟବସ୍ତୁକୁ ଆଗେଇନେବା ସହ ଦର୍ଶକମାନଙ୍କୁ ମନୋରଂଜିତକରିବା, ବାସ୍ତବରେ ବିଚିତ୍ରବର୍ଣ୍ଣା । କୁଆଡୁ ଆସେ ଆତ୍ମବଳ, ତୀକ୍ଷ୍ଣ କଣ୍ଠସ୍ୱର, ମୁଁ ନିଜେ ବି ଜାଣିପାରେ ନା । ପରେ ଜାଣିଲି ଦୂତଦ୍ୱାରା, ଯେ ସମ୍ବଲପୁରରୁ ବାରୁଦା, ଅଶୋକ, ବ୍ରଜେନ୍ଦ୍ର, ଲକ୍ଷ୍ମଣ ଗୋକୁଳ ପଟେଲ୍ ଆଦି ଚିଟିଣ୍ଡା ଆସିଛନ୍ତି ଧନୁଯାତ୍ରା ଦେଖିବାପାଇଁ । ଖୁସିରେ ମୁଁ ରାଜବାଟିକୁ ଯାଇ ମୁକୁଟଓତାରି ପୁଣି ଦ୍ୱାରିକାଭାବରେ ବନ୍ଧୁମାନଙ୍କ ଗହଣରେ କିଛି ସମୟ ଅତିବାହିତ କରିଥିଲି ।



ବିବାହିତ ଜୀବନରେ ଚାକିରୀ ପାଇଁ ଥରେ ଘରଛାଡ଼ିଲେ, ଅନେକଟା ଶୃଙ୍ଖଳା ବିପର୍ଯ୍ୟସ୍ତ ହୋଇପଡେ। ଚିଚିଣ୍ଡାରେ ଚାକିରୀକରିବା ଭିତରେ ବିରାଡିଙ୍କ ଭଳି ତିନିଚାରି ଥର ଘରଡେଇଁ ରହିବାପାଇଁ ପଡିଛି। ପ୍ରଥମ ଦୁଇତିନିବର୍ଷ ପପଙ୍ଗା ପଞ୍ଚାୟତର ଖାଲି ପଡିଥିବା ଦଦରା ଅଫିସକୋଠା, ପରେ ଚିଚିଣ୍ଡାର ଅର୍ଦ୍ଧନିର୍ମିତ ଡାକ୍ତରଖାନାରେ ସେମିତି ତିନିଚାରିବର୍ଷ, ପରେପରେ ବାଞ୍ଜିପାଲି ଛକରେ ଥିବା ହରିହୋଟେଲ ପଛପଟର ଦି'ବଖରା ଖପରାଛୁଆଁ କୋଠରୀ, ପରେ ସ୍ଥାନାଭାବରୁ ଅର୍ଥନୀତି ଅଧ୍ୟାପକ କୀର୍ତ୍ତନ୍ୟ ବିଶି ଏବଂ ତେଜରାଜ ବାଗ ପପଙ୍ଗା କଲୋନୀ ସ୍ଥିତ ଛନ୍ଦବାବୁଙ୍କ ମାଛଚାଷ ପଇଁ ଉଦ୍ଦିଷ୍ଟ ପୋଖରୀ ନିକଟସ୍ଥ ଘରକୁ ଚାଲିଯାଇଥିଲେ। ମୁଁ ପଡିରହିଥିଲି ହରିବାବୁଙ୍କ ସେଇ ଅସଜଡ଼ା କୋଠରୀରେ। ଶନିବାର ଆସିଲେ କ୍ଲାସସାରି ବସ୍‌ଯୋଗେ ସମ୍ବଲପୁର ଆସୁଥିଲି ଶନିବାରିଆ ବ୍ରାହ୍ମଣଙ୍କ ପରି। ସୋମବାର ସକାଳେ କ୍ଲାସ୍‌ଥିଲେ ରବିବାର ସଞ୍ଜ ବସ୍‌ରେ ହିଁ ଫେରିବାକୁ ପଡୁଥାଏ। ପପଙ୍ଗାରେ ରହିବାବେଳେ ସତ୍ୟନାରାୟଣର ଆନ୍ଧ୍ର ହୋଟେଲ ହିଁ ଏକମାତ୍ର ଭରସା, ସେଠି ଜଳଖିଆ, ସେଇଠି ମଧ୍ୟାହ୍ନ ଭୋଜନ, ସେଇଠି ରାତ୍ରିକାଳୀନ ଖାଦ୍ୟ। ଚିଚିଣ୍ଡାର ଡାକ୍ତରଖାନାରେ ରହିବାବେଳେ ଆମେ ଚାରିଜଣ ମେସ୍ କରି ଖାନାପିନା କରୁଥିଲୁ। ଅରୁଣବାବୁଙ୍କ ଦୟାରୁ ରନ୍ଧାବଢ଼ା କରିବା ପାଇଁ ଗାଁର ପିଲାଟିଏ ଜୁଟିଗଲା। ନାଁ ତାର ସର୍‌ସତିଆ, ହେଲେ ଥଟ୍ଟାରେ ମୁଁ ତା' ନାଁ କୈବଲ ଦେଇଥିଲି। କୈବଲ ନାଁଟି ଏମିତି ଲୋପ୍ରିୟ ହୋଇଗଲା ଯେ ପିଲାଟି ତାର ମୌଳିକନାମଟି ମଧ୍ୟ ଥରେଥରେ ଭୁଲିଯାଉଥିଲା। ଭଲପିଲାଟିଏ, ବୋଲ ମାନୁଥିଲା, ଅତି ସାଧାରଣ, କମ୍ ଖର୍ଚ୍ଚରେ କେମିତି ଆମ ପେଟପୂରିବ, ତାକୁ ଭଲଭାବରେ ଜଣାଥିଲା। ତାର ସବୁଠାରୁ ମନପସନ୍ଦର ମେନ୍ୟୁ ହେଲା ଚଣା ଓ ଆଳୁମିଶ୍ରିତ ତରକାରୀ। ଆମପାଖରେ ସିଉ ଅଗ୍ରୱାଲଙ୍କ ଆମ୍ବବଗିଚା ଥିଲା। ଖରା ମାସରେ ଉନ୍ନତ କିସମର ଆମ୍ବ ଫଳୁଥିଲା। ସେଥିରୁ କିଛି ତୋଳିଆଣି ଆମ୍ବଖଟା ରନ୍ଧା ଯାଉଥିଲା। ମୁଁ, ବିଶିବାବୁ, ବାଗବାବୁଙ୍କ ସହ ପରେ ଯୋଗଦେଲେ ନୂତନ ଭାବରେ ଯୋଗ ଦେଇଥିବା ଇଂରାଜୀ ଅଧ୍ୟାପକ ପବିତ୍ରମୋହନ ଦାସ, ତାଙ୍କଘର ଭଟଲିନିକଟସ୍ଥ କେଶେଇପାଲି ଗାଁ, ଆମ ନାଟ୍ୟକାର ଚୂଡ଼ାମଣି ରଥଙ୍କ ଗାଁ। ଯୁବକ ଭେଣ୍ଡା ଜଣେ, ପାଠ ଭଲ ପଢ଼ାଉଥିଲେ, ସଂଗୀତ କଳା ପ୍ରତି ରଚିଥିଲା ତାଙ୍କର। ଆମ ମେସ୍‌ର ଚଣାଆଳୁସହ ଖୁବ୍ ଶୀଘ୍ର ମିତ ବସିଯାଇଥିଲେ। ଏବେ ସେ ଛତିଶଗଡ଼ର ସରକାରୀକଲେଜର ଅଧ୍ୟାପକଭାବରେ କର୍ମରତ। ହରିବାବୁଙ୍କ ବାଞ୍ଜିପାଲି ଘରକୁ ଡେରା ଉଠିଯିବାପରେ ମେସ୍‌ବନ୍ଦ,

ଯଦୁବାବୁଙ୍କ କିରାନା ଦୋକାନକୁ ଲାଗି ମଦନର ହୋଟେଲ ହିଁ ଚିଚିଣ୍ଡା ରହଣିର ବାକି ସମୟତକ ଆମକୁ କୋଳେଇ ନେଇଥିଲା । ଖାଦ୍ୟପେୟ ସବୁ ସେଠାରେ । କୌଣସି ହାଲତରେ ପେଟକୁ ମୁଠାଏ ମିଳିଯାଉଥିଲା । ଚାଉଳବରା, ଆଳୁଚପ୍, ସିଙ୍ଗଡା ଆଦି ଭଲ ସ୍ୱାଦିଷ୍ଟ ଥିଲା । କୈବଲ, ଆମ ମେସ୍ ବନ୍ଦହେବା ପରେ ଯୁକ୍ତଦୁଇ ଓ ଦୁକ୍ତତିନି ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଗଲା, ପରେ କଲେଜରେ ପିଅନ ପଦବୀରେ ରହିଗଲା । ଭୋଇବାବୁ ଓ ପୁରୋହିତବାବୁ ଅବସରନେବା ଭିତରେ ସେ କିରାଣୀ କାମକରି ଅଭ୍ୟସ୍ତ ହୋଇଗଲାଣି, ଅନୁଦାନ ଅନ୍ତର୍ଭୁକ୍ତ ହୋଇଗଲାଣି, ବାହାସାହା ହୋଇ ଦି ମହଲା କୋଠା ତାଡିଲାଣି, ଭଲ ସଂସାର ଗଢ଼ିଲାଣି । ବି.ଏ. ପଢ଼ିଥିବାରୁ, ଯେ' ବି ଅଧ୍ୟକ୍ଷ ପଦବୀକୁ ଆସନ୍ତୁ, ସର୍ସରିଆ ମେଣ୍ଡାଲୀ ଉପରେ ଦାୟିତ୍ୱଛାଡ଼ି ବେଶ୍ ଦିନ ଗଡାଇଦେଇଛନ୍ତି ସିନା, ନୂଆଁ କିରାଣୀ ରଖିବାର ଦୁଃସାହସ କରିପାରିନାହାନ୍ତି ।

ଛୟାଅଶୀରେ ମୁଁ ବାସ୍ତବରେ ପି.ଏଚ୍.ଡି. ଡିଗ୍ରୀ ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଆବେଦନ କଲି । ସେଇ, ମୋ ନିଜ ନିର୍ବାଚିତ ବିଷୟ, 'ସମ୍ବଲପୁରୀ ଲୋକଗୀତରେ ସମାଜଜୀବନର ସ୍ୱରୂପ' । ମୋର ତତ୍ତ୍ୱାବଧାରକ ଭାବରେ ମୁଁ ଓଡ଼ିଆ ବିଭାଗର ଏପରି ଜଣେ ପ୍ରଫେସରଙ୍କ ଅନ୍ୱେଷଣରେ ରହିଲି, ଯେ ପ୍ରଥମତଃ ପଶ୍ଚିମ ଓଡ଼ିଶାବାସୀ ହୋଇଥିବେ ଏବଂ ପଶ୍ଚିମ ଓଡ଼ିଶାର ଲୋକସଂସ୍କୃତି ଉପରେ ରଚି ରଖିଥିବେ । ମୋର ସୌଭାଗ୍ୟକୁ ଡ. କୁମୁଦରଞ୍ଜନ ପାଣିଗ୍ରାହୀଙ୍କ ଭଳି ଜଣେ ଉପଯୁକ୍ତ ବ୍ୟକ୍ତିତ୍ୱଙ୍କୁ ମୁଁ ମୋ ନିବନ୍ଧର ମାର୍ଗନିଦର୍ଶକ ଭାବରେ ପ୍ରାପ୍ତହେଲି । କୁମୁଦରଂଜନ ସାରଙ୍କ ସହ ପ୍ରାକ୍ଆଲୋଚନା ପରେ ସେ ମଧ୍ୟ ମୋତେ ତାଙ୍କ ଗବେଷକଛାତ୍ର ଭାବରେ ପାଇଁ ଆନନ୍ଦିତ ହୋଇଥିଲେ ଏବଂ ଖୁସିରେ ସମ୍ମତିପ୍ରଦାନ କରିଥିଲେ । ମୋ ଆବେଦନ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଗ୍ରହଣକରିବା ପରେ ମୁଁ ପ୍ରଥମ ଦୁଇ ବର୍ଷ ସମ୍ବଲପୁର, ବରଗଡ, ବଲାଙ୍ଗିର ଆଦି ଜିଲ୍ଲାର ବହୁ ଗ୍ରାମରୁ ଲୋକଗୀତମାନ ସଂଗ୍ରହ କରିବାରେ ବ୍ୟସ୍ତ ରହିଲି । ଏଥିସହ ଚିଚିଣ୍ଡାକୁ ଘେରି ଭେଡେନ୍ ବ୍ଲକର ଅନେକ ଗାଁକୁ ଯାଇ ସେସବୁ ସ୍ଥାନରୁ ମଧ୍ୟ ଲୋକଗୀତମାନ ସଂଗ୍ରହ କରିଥିଲି । ଏଥିପାଇଁ ସତାଅଶୀ, ଅଠାଅଶୀରେ ଆମ ଇଂରାଜୀ ଅଧ୍ୟାପକ ରାମଚନ୍ଦ୍ର ସାହୁଙ୍କ ଗାଁ କୁଦୋପାଲିରେ ଏକ ଲୋକମେଳା ମଧ୍ୟ ଆୟୋଜନ କରିଥିଲି । ଏହି କାର୍ଯ୍ୟକ୍ରମକୁ ସେତେବେଳେ ଆକାଶବାଣୀ ସମ୍ବଲପୁର ରେକର୍ଡିଂକରି ପ୍ରସାରିତ କରିଥିଲେ । ଏହି ମେଳାରେ ବଉଲି, ନଚନିଆ,

ହଳିଆ, କଠଉକୁଇଲି ଭଳି ବହୁ ପାରମ୍ପାରିକ ସମ୍ବଲପୁରୀ ଲୋକଗୀତ ରେକର୍ଡିଂ କରିଥିଲି । ଏହି କାର୍ଯ୍ୟକ୍ରମକୁ ସଫଳ କରିବାରେ ଛାତ୍ର ନିରଞ୍ଜନ ପୁରୋହିତ ଏବଂ ଅଧ୍ୟାପକ ରାମଚନ୍ଦ୍ରସାହୁଙ୍କ ସହଯୋଗ ଭୁଲିବାର ନୁହେଁ । ଚିଚିଣ୍ଡା ଭଳି ଏକ ଆଭ୍ୟନ୍ତରୀଣ କଲେଜରେ ଥାଇ ଡକ୍ଟରେଟ ଉପାଧି ନିମିତ୍ତ ଗବେଷଣା କାର୍ଯ୍ୟ ହାତକୁ ନେବା ଥିଲା ଦୁରୂହ ବ୍ୟାପାର । ତଥାପି ମୁଁ ମୋ ସଙ୍କଳ୍ପରେ ଦୃଢ଼ ଥିଲି, ମୋର ଲକ୍ଷ୍ୟ ଥିଲା ଏକ ଓ ଅଭିନ୍ନ, ଭୁଖାର ଅସୀମ ତା' ଗବେଷଣାରେ ସଫଳ ହେବ ହିଁ ହେବ, ଏଇ ମାନସିକତାରେ ମୁଁ ନିଜକୁ ସବୁ ବାଧାବିଘ୍ନ ପାରିହୋଇ ଲକ୍ଷ୍ୟସାଧନ ଉଦ୍ଦେଶ୍ୟରେ ଆଗକୁ ମାଡିଯାଉଥିଲି । ଯେହେତୁ ମୋର ବିଷୟବସ୍ତୁ ସମ୍ପୂର୍ଣ୍ଣ ଭାବରେ କ୍ଷେତ୍ର ଅଧ୍ୟୟନ ଉପରେ ନିର୍ଭର କରୁଥିଲା, ତେଣୁ ଗୋଟିଏପଟରେ କଲେଜ କାମ, କଲେଜ କର୍ତ୍ତୃପକ୍ଷଙ୍କ ଅସହଯୋଗ, ଅନ୍ୟପଟରେ ମୋ ରହୁଥିବା ଅସଜଡ଼ା ଘରର ଅସ୍ୱାଭାବିକ ପରିବେଶ । ବହୁ ବ୍ୟାଘାତଫଳରେ କିଛିବର୍ଷ ଗବେଷଣା କାର୍ଯ୍ୟ ସ୍ଥଗିତରଖିବାକୁ ବାଧ ହୋଇଥିଲି । ତେଣୁ କୁମୁଦବାବୁଙ୍କଠାରୁ ମୃଦୁ ଗାଳି ମଧ ଶୁଣିବାକୁ ପଡିଥିଲା ।

ମୋର କ୍ଷେତ୍ରଅଧ୍ୟୟନସମୟରେ, ଘେସ୍ ନିକଟସ୍ଥ ବନ୍ଧାପାଲି, ଯାହା ପ୍ରଫେସର ହୃଦମଣି ପ୍ରଧାନଙ୍କ ଗାଁ, ସେଠାରେ ନେହେରୁ ଯୁବକେନ୍ଦ୍ର ତରଫରୁ ଏକ ସଚେତନତା କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ମୁଁ ସେତେବେଳେ ଘେସରେ ରହି ବିଭିନ୍ନ ଗ୍ରାମରୁ ଲୋକଗୀତମାନ ସଂଗ୍ରହକାର୍ଯ୍ୟରେ ବ୍ୟସ୍ତ ଥିଲି । ସେହି କାର୍ଯ୍ୟକ୍ରମକୁ ଅଧ୍ୟାପକ ଜୟଦେବ ଦଣ୍ଡସେନା ପରିଚାଳନା କରୁଥିଲେ । ଚିତ୍ତରଞ୍ଜନ ବେହେରା ଭଳି କଳାକାରମାନେ ଉକ୍ତ କାର୍ଯ୍ୟକ୍ରମରେ ସାଂସ୍କୃତିକ କାର୍ଯ୍ୟକ୍ରମମାନ ପରିବେଷଣ କରିଥିଲେ । ଜୟଦେବ ବାବୁଙ୍କ ଗୀତ, ଆକାଶେ ଉଠୁଛେରେ ଚାନ୍ଦ୍, ବାହାକେ ବାହା ଆନ୍ ବାନ୍ଧ୍ ବହୁ ଲୋକପ୍ରିୟତା ହାସଲ କରିଥିଲା ଚିତ୍ତରଞ୍ଜନ ବେହେରାଙ୍କ କଣ୍ଠରେ । କାର୍ଯ୍ୟକ୍ରମ ପରେ ମୁଁ ଏକା ଆଉ ଦୁଇଦିନ ଅଧିକ ରହି ବନ୍ଧପାଲିର କିଶୋରୀମାନଙ୍କ କଣ୍ଠରୁ ଅନେକ ଲୋକଗୀତ ରେକର୍ଡିଂ କରି ମୋ ଗବେଷଣା କାର୍ଯ୍ୟରେ ଲଗାଇଥିଲି । ଘେଁସ୍‌ର ତୁଲିଆ ମେଘ କଲେଜ୍ ମୋତେ ଏଦିଗରେ ବହୁତ ସାହାଯ୍ୟ କରିଥିଲେ । ସେତେବେଳେ କବି ହଳଧର ନାଗଙ୍କ ସହ ମୋର ପରିଚୟ ହୋଇ ନଥିଲା କି ସେ କବିଭାବରେ ଲୋକଲୋଚନକୁ ଆସି ନଥିଲେ । ସମୟ ସୁବିଧା ଦେଖି ବହୁ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ମୁଁ ମୋର ଗବେଷଣା କାର୍ଯ୍ୟକୁ ଜାରି ରଖିଥିଲି ।

ଧନୁଯାତ୍ରାର ଶେଷ ରାତିରେ କଂସବଧ ଦୃଶ୍ୟ ଆଗରୁ ବରଗଡ଼ରେ ମଧ ଅଭିନୀତ ହେଉ ନଥିଲା । ତେବେ ପ୍ରଥମ ବର୍ଷ ଧନୁଯାତ୍ରା ବେଳେ ଏହି କଥା ଯେତେବେଳେ ଚର୍ଚ୍ଚାକୁ ଆସିଲା, ମୁଁ ସେହି ଦୃଶ୍ୟକୁ ଅଭିନୟ ମାଧମରେ ପ୍ରଦର୍ଶନ କରିବା ପାଇଁ ନିଜକୁ ପ୍ରସ୍ତୁତକଲି । କୌଣସି ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ କଂସବଧ ଭଳି ଆକର୍ଷଣୀୟ ଦୃଶ୍ୟକୁ ଅଭିନୟରେ ପ୍ରଦର୍ଶନ ନକରିବା, ମୋ ନୀତିବିରୁଦ୍ଧ ଥିଲା । କଂସର ମୃତ୍ୟୁକାଳୀନ ଉତ୍କଣ୍ଠାର ଦୃଶ୍ୟକୁ ମୁଁ ବା ହାତଛଡ଼ା କରନ୍ତି କିପରି ! ସେ ଦୃଶ୍ୟ ଅଭିନୀତହେଲେ ଅଶୁଭଘଟଣାମାନ ଘଟେ ବୋଲି ବରଗଡରେ ଶେଷ ରାତିରେ କଂସକୃଷ୍ଣ ଭେଟହେଲେ ଆଲୋକ ଲିଭାଇଦିଆଯାଇ କଂସକୁ ପଛପଟଦ୍ୱାରରେ ମଞ୍ଚରୁ ଓହ୍ଲାଇ ଦିଆଯାଉଥିଲା । ମୋ ପୂର୍ବରୁ ଚିଚିଣ୍ଡାରେ ମଧ ଏହିଧାରା ଅନୁସୃତ ହେଉଥିଲା । ତେବେ, ମୋର ଯୁକ୍ତି ଥିଲା, ମୁଁ ଅନେକ ନାଟକରେ ମୃତ୍ୟୁଦୃଶ୍ୟରେ ଅଭିନୟ କରିଛି, ତେଣୁ ମୋତେ ଅନ୍ଧବିଶ୍ୱାସର ଭୟ ନଥିଲା । ଏମିତି ନିଷ୍ପତ୍ତିଅନୁସାରେ ଶେଷ ରାତିରେ ଯେତେବେଳେ କୃଷ୍ଣ ଓ ବଳରାମ, ଚତୁର୍ଥ ଦ୍ୱାର ଟପି କଂସର ସିଂହାସନ ଆଡ଼କୁ ମାଡ଼ିଆସୁଥିଲେ, ମୁଁ ସେ ସମୟତକ ଅନର୍ଗଳ, ଅସରନ୍ତି ସଂଳାପ କହି ମୋସହ ଦର୍ଶକମାନଙ୍କ ଉତ୍କଣ୍ଠା ବଢ଼ାଉଥିଲି । କୃଷ୍ଣବଳରାମ ଯେମିତି ମୋର ଅତିନିକଟକୁ ପହଞ୍ଚିଗଲେ ମୁଁ ତରବାରୀ ଉତ୍ତୋଳିତ କରି ମାରିବାପାଇଁ ଉଦ୍ୟତ ହେବାମାତ୍ରେ ଉଭୟଙ୍କୁ ଦର୍ଶନକରି ସିଂହାସନ ଉପରୁ ତଳେ ଅଭିନୟରେ ପଡିଯାଇଥିଲି । ସିଂହାସନତଳେ ପକାଯାଇଥିବା ମୋଟା ଶେଯ ଉପରେ ପଡିଲା କ୍ଷଣିହଠାତ୍ ମୁଁ ଛିଟିକିପଡିଲି କିଛିଦୂର । ମୋ ହାତକୁ ବିଦ୍ୟୁତ୍ କରେଣ୍ଟ ମାରିବା ଭଳି ଲାଗିଲା । ଘଟଣାଟି ହେଲା, ମୋତେ ନ ଜଣାଇ ଅପେରାର କାରିଗରମାନେ ମୋରମୃତ୍ୟୁ କାଳୀନ ଦୃଶ୍ୟକୁ ଆହୁରି ଆକର୍ଷଣୀୟ କରିବା ପାଇଁ ଶେଯ ପାଖରେ ଦୁଇ ବିଦ୍ୟୁତ୍‌ତାର ଧୂଆଁ ବାହାରିବା ଭଳି ବ୍ୟବସ୍ଥା କରିଥିଲେ । ଅର୍ଥାତ୍ ମୁଁ ପଡିଗଲେ ମଞ୍ଚରୁ ଭୁସ୍ କରି ମେଞ୍ଚାଏ ଧୂଆଁ ବାହାରିବ । ଦୁର୍ଭାଗ୍ୟକୁ ମୁଁ ହାତରେ ଧରିଥିବା ତରବାରୀ ସେହି ବିଦ୍ୟୁତ୍ ସଂଯୋଗ ସ୍ଥଳରେ ସଂଯୋଗ ହୋଇଯାଇଥିଲା । ସେଥି ପାଇଁ କରେଣ୍ଟମାରି ମୋହାତକୁ ଛିଞ୍ଚାଡ଼ି ଫିଙ୍ଗିଦେଇଥିଲା । ମୋର ଚିତ୍କାର ଶୁଣି ସଭ୍ୟମାନେ ଦୌଡ଼ିଆସି ମୋତେ ନିକଟସ୍ଥ ଅଧାତିଆରି ଡାକ୍ତରଖାନାକୁ ନେଇଯାଇଥିଲେ । ପରେ ମୁଁ ଦେଖିଲି, ମୋ ଡାହାଣ ପାପୁଲିରେ କିଛି ପୋଡ଼ାଦାଗ । ସେହି ଦାଗ ବହୁବର୍ଷ ପର୍ଯ୍ୟନ୍ତ ରହି ତାରତାର ଉଡିଗଲା । ଅପେରା ଦଳକୁ ପରଦିନ ଭଲଭାବରେ ଶୋଧିଥିଲି । ମୋତେ ଜଣାଇ ଏମତି ବ୍ୟବସ୍ଥା କରିଥିଲେ କିଛି ଘଟି ନଥାନ୍ତା ।

ପରେପରେ ବରଗଡ଼ ସମେତ ବିଭିନ୍ନ ଅଞ୍ଚଳରେ ଆୟୋଜିତ ଧନୁଯାତ୍ରାମାନଙ୍କରେ ଶେଷ ଦୃଶ୍ୟ ବିଭିନ୍ନ ପ୍ରକାରରେ ଅଭିନୀତ ହୋଇଆସୁଛି । ଚିଚିଣ୍ଡାରେ ଧନୁଯାତ୍ରାରେ କଂସଭୂମିକାର ଅଭିନୟ କରି ମୁଁ ମୋ ଅଭିନୟ କଳାକୁ ଧିରେଧିରେ ପରିମାର୍ଜିତ କରିପାରିଥିଲି, ମଞ୍ଚଉପରେ ନିଜକୁ ଆହୁରି ଅଧିକ ମୁକ୍ତ ଓ ସ୍ୱାଧୀନ ଅନୁଭବ କଲି, ଆମ ଲୋକସଂସ୍କୃତିରେ ଧନୁଯାତ୍ରାର ଭୂମିକା ବିଷୟରେ ଅଧିକ ଜ୍ଞାନଅର୍ଜନ କଲି, ପ୍ରବନ୍ଧମାନ ରଚନାକରି ମୋ ଅଭିଜ୍ଞତାକୁ ପାଠକମାନଙ୍କଠାରେ ବାଣ୍ଟିବାରେ ସଫଳ ହେଲି, ମୋ ପରେପରେ ମୋ ଦ୍ୱାରା ପ୍ରଭାବିତ ହୋଇ କଂସ ଭୂମିକା ପାଇଁ ଅନେକ କଳାକାର ସୃଷ୍ଟିକରିବାରେ ସକ୍ଷମ ହେଲି, କିନ୍ତୁ ମୋ ଇଚ୍ଛାନୁସାରେ ଚିଚିଣ୍ଡା ଧନୁଯାତ୍ରାକୁ ସଜାଡ଼ି ପାରିଲି ନାହିଁ, ସେଇ ଅବଶୋଷ ରହିଗଲା ଯୁଗଯୁଗାନ୍ତରପାଇଁ ।।



**ସୃ**ଷ୍ଟିର ଉଖୀ ନାଟକ ପରେପରେ ସମ୍ବଲପୁରୀ ଭାଷାରେ ନାଟକ ରଚନାକରିବା ସହ ମଞ୍ଚାୟନ କରିବାର ପରମ୍ପରା ଦ୍ରୁତଗତିରେ ଆଗେଇ ଚାଲିଲା । କେବଳ ସମ୍ବଲପୁର ନୁହେଁ, ପଶ୍ଚିମ ଓଡ଼ିଶାର ବିଭିନ୍ନଜିଲ୍ଲାର ନାଟ୍ୟକାରମାନେ, ସଂଗଠନମାନେ ଏ ଦିଗରେ ଉଲ୍ଲେଖନୀୟ ପଦକ୍ଷେପ ଗ୍ରହଣକରିଥିଲେ । ବିନୋଦ ପଶାୟତଙ୍କ ସହ ମଙ୍ଗଳୁଚରଣ ବିଶ୍ୱାଳ, ଅଟଳବିହାରୀ ପଣ୍ଡା, ବିପିନ ଦାସ, ପ୍ରସନ୍ନ ସାହୁ, ବ୍ରଜେନ୍ଦ୍ର ନାୟକ, ଉମେଶ ଶତପଥୀ, ନେତ୍ରାନନ୍ଦ ବାରିକ, ରବିରଞ୍ଜନ ପ୍ରଧାନ, ପ୍ରଦୀପ ଭୋଇ ଆଦି ନାଟ୍ୟକାରମାନେ ବିଭିନ୍ନ ସ୍ୱାଦର ନାଟକମାନ ରଚନାକରି ଭାଷା ତଥା ନାଟ୍ୟସାହିତ୍ୟର ବିକାଶରେ ସହାୟକ ହେଲେ । ସୃଷ୍ଟିସହ, ଧର୍ମାତ୍ମା କଲ୍‌ଚରାଲ୍ ଏସୋସିଏସନ୍, କଖଗ, ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତି ସଂସଦ, ସମ୍ବଲପୁର କଳା ସଂସଦ, ସ୍ୱର, ଶ୍ରୀ କଲ୍‌ଚରାଲ୍ ଏସୋସିଏସନ୍, ବରଗଡର ସୌଖିନ କଳାକର ସଂଘ, ଉତ୍କଳ ଗୌରବ କଳାକାର ସଂଘ ଆଦି ସାଂସ୍କୃତିକ ଅନୁଷ୍ଠାନମାନେ ସମ୍ବଲପୁରୀ ନାଟକମାନ ମଞ୍ଚସ୍ଥକରି ଏହାର ଗୌରବ ବୃଦ୍ଧି କରିଥିଲେ ।

ଅଠାଅଶୀରେ ସମ୍ବଲପୁର ସହରରେ ଆର୍ଟିଷ୍ଟ ଫୋରମ୍ ନାମରେ ବିଭିନ୍ନ ସଂଗଠନର ଏକତ୍ରିତ ଉଦ୍ୟମରେ ତଥା ସଂଗଠକ ଅଶୋକ ମିଶ୍ରଙ୍କ ନେତୃତ୍ୱରେ ଏକ ନୂତନ ସଂଗଠନର ଅଭ୍ୟୁଦୟ ଘଟିଥିଲା । ନାଟକ ଏବଂ ଆଞ୍ଚଳିକ ସଂସ୍କୃତିର ବିକାଶ ଲକ୍ଷ୍ୟ ନେଇ ସର୍ବପ୍ରଥମେ ଟାଉନ୍ ହାଇସ୍କୁଲ ମଣ୍ଡପରେ ନାଟ୍ୟୋତ୍ସବ-

୮୮ ନାମରେ ଏକ ରାଜ୍ୟସ୍ତରୀୟ ନାଟକୋତ୍ସବ ଆୟୋଜିତ ହୋଇଥିଲା । ଏହି ଉତ୍ସବରେ ବରଗଡର ସୌଖୀନ କଳାକାର ସଂଘର କଳାକାରମାନେ ପ୍ରମୋଦ ତ୍ରିପାଠୀଙ୍କ ରଚିତ ବହୁଚର୍ଚ୍ଚିତ ନାଟକ, 'ଗୋଟିଏ ବୁଲାକୁକୁର ଜନ୍ମବୃତ୍ତାନ୍ତ', ରାଉରକେଲା ମହୁମାଛିର ନାଟ୍ୟକାର ରଣଜିତ୍ ପଟ୍ଟନାୟକଙ୍କ ଚର୍ଚ୍ଚିତ ନାଟକ 'ପଞ୍ଚୁପାଣ୍ଡବ' ଏବଂ ନନ୍ଦପଡାର ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦର ନାଟକ ମଙ୍ଗଳୁଚରଣ ବିଶ୍ୱାଳଙ୍କ ରଚିତ ସମ୍ବଲପୁରୀ ନାଟକ 'ବରୁଆ' ଅଭିନୀତ ହୋଇଥିଲା । ବରୁଆ ନାଟକକୁ ମୁଁ ନିର୍ଦ୍ଦେଶନା ଦେବାସହ ନାୟକ ଭୂମିକାରେ ଅଭିନୟ ମଧ କରିଥିଲି । ବରୁଆ, ସମ୍ପୂର୍ଣ୍ଣ ଏକ ନୂତନ ନାଟକ ଥିଲା, ବାରୁଦା ଏଥିରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅଭିନୟ କରିଥିଲେ । ଚରିତ୍ରଟି ଥିଲା ସରମଙ୍ଗଲିଆ, ଯେ ମାଁ ମଙ୍ଗଳାକୁ ଗାଁ ଗାଁ ବୁଲାଇ ରଂଜୁ ବାଦ୍ୟ ବଜାଇ ମାଁଙ୍କ ପୂଜାକରି ଗ୍ରାମ ତଥା ଗ୍ରାମବାସୀଙ୍କ ଭବିଷ୍ୟତ ସମ୍ପର୍କରେ ସାନ୍ତ୍ୱନାବାଣୀ ପ୍ରକାଶକରିବା ସହ ବିଭିନ୍ନ କୌଶଳ ପ୍ରଦର୍ଶନକରି ସମସ୍ତଙ୍କୁ ଆପ୍ୟାୟିତ କରିଥାଏ । ବହୁ ପରିଶ୍ରମକରି ବାରୁଦା ରଂଜୁ ବାଦ୍ୟ ବଜାଇବା ଶୈଳୀକୁ ଖାସ୍ ନାଟକପାଇଁ ଅକ୍ତିଆର୍ କରିଥିଲେ । ନାଟକର ଶେଷ ରିହାର୍ସାଲ ପର୍ଯ୍ୟନ୍ତ ସବୁ ଠିକ୍‌ଠାକ୍ ଚାଲିଥିଲା । ପ୍ରଥମ ଦୁଇରାତିର ନାଟକମଧ ସଫଳତାର ସହ ମଞ୍ଚସ୍ଥ ହେଲା । ତୃତୀୟ ଦିନ ଦୁଇପହର ବେଳା ପ୍ରଚଣ୍ଡ ବର୍ଷା ହେବାରୁ ଥଣ୍ଡାରେ ବାରୁଦାଙ୍କ ରଞ୍ଜୁବାଦ୍ୟ ଶୀତଳୀଗଲା ଓ ମଞ୍ଚରେ  ତାର ଧ୍ୱନୀ ସୃଷ୍ଟିକରିବାରେ ବିଫଳ ହେଲା । ବାଦ୍ୟ ଉପଯୁକ୍ତଭାବରେ ନ ବାଜିବା ବାରୁଦାଙ୍କ ଅଭିନୟ ଉପରେ ପ୍ରଭାବ ପକାଇଲା, ପରେ ପରେ ସମଗ୍ର ନାଟକକୁ ମଧ ବିଫଳତା ଆଡ଼କୁ ଘେନିଗଲା । ସମୟସମୟରେ ପ୍ରାକୃତିକ ବିପର୍ଯ୍ୟୟ ମଧ କଳାକାରର ଅଭିନୟ କୁଶଳତା ଉପରେ ତାର ପ୍ରକୋପ ଜାହିର୍ କରିଥାଏ, ଯାହାକୁ ସମ୍ଭାଳିବା କଳାକାରପକ୍ଷେ ଅସମ୍ଭବ ହୋଇପଡେ । ଏହି ଅବସରରେ ସୁନ୍ଦର ସ୍ମରଣିକାଟିଏ ମଧ ପ୍ରକାଶିତ ହୋଇଥିଲା ।

ସେହି ବର୍ଷ ପଲ୍ଲିଶ୍ରୀ କଲେଜ୍‌ର ବାର୍ଷିକ ନାଟକୋତ୍ସବରେ ମୋ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହେଲା ବହୁ ଲୋକପ୍ରିୟ ନାଟକ ଉଖୀ । ସେତେବେଳେ ସମ୍ପାଦକ ଭାବରେ ନିର୍ବାଚିତ ହୋଇଥାନ୍ତି ପ୍ରିୟ ଛାତ୍ର କୁସନପୁରୀର ଦିଲୀପ ଦାସ । ମୁଁ କରିଥିବା ନାୟକ ସତିଆ ଭୂମିକାରେ ନକୁଲ ଦାସ ଅଭିନୟ କରିଥିଲେ । ଅଗଣିତ ଦର୍ଶକମାନଙ୍କ ଉପସ୍ଥିତିରେ ଏହି ନାଟକଟି ସଫଳତାର ସହ ମଞ୍ଚସ୍ଥ ହୋଇ ସେହି ଅଞ୍ଚଳରେ ନାଟକର ଏକ ସୁନ୍ଦର ବାତାବରଣ ସୃଷ୍ଟି କରିବାରେ ସମର୍ଥ ହୋଇଥିଲା ।

ସୃଷ୍ଟିର ନାଟ୍ୟପରମ୍ପରାରେ ଏକ ବ୍ୟତିକ୍ରମ ଥିଲା ପ୍ରମୋଦ ତ୍ରିପାଠଙ୍କ ରଚିତ ଓଡ଼ିଆ ନାଟକ ବେଗମ୍। ଏହି ନାଟକଟି ୧୯୮୯ ମସିହାରେ ଜାନୁଆରୀ ଦୁଇ ଓ ତିନି ତାରିଖ ଏଭଳି ଦୁଇରାତି ଧରି ସ୍ଥାନୀୟ ଗଙ୍ଗାଧର ମଣ୍ଡପରେ ମଞ୍ଚସ୍ଥ ହୋଇଥିଲା। ପ୍ରମୋଦ ଦଶହରାଛୁଟି ହେଲେ ପ୍ରାୟ ନିଜଘର ଧନୁପାଲିକୁ ସପରିବାର ଆସୁଥିଲେ। ସେ ଆସିଲେ, ଧନୁପାଲିରେ ବନ୍ଧୁମାନଙ୍କ ଯେଭଳି ଆସର ଜମୁଥିଲା, ସହରରେ ମଧ୍ୟ ଉତ୍ତମ, ବାରୁଦା ଭଳି କିଛି ନାଟୁଆ ବ୍ୟକ୍ତିତ୍ୱମାନଙ୍କ ସହ ମଧ୍ୟ ଭେଟପଡି କେବଳ ଖଟିପାଇଁ ସ୍ୱତନ୍ତ୍ର ଆସରମାନ ମୋଦ୍ୱାରା ଆୟୋଜିତ ହେଉଥିଲା। ଏଭଳି ଆସରରେ ଉତ୍ତମ ଓ ମୁଁ ପ୍ରମୋଦଙ୍କ ଗୋଟିଏ ନାଟକ ସୃଷ୍ଟିତରଫରୁ ଅଭିନୀତ କରିବାର ଇଚ୍ଛା ପ୍ରମୋଦ ପାଖରେ ଉପସ୍ଥାପନ କଲୁ। ପ୍ରମୋଦ ବେଗମ୍ ନାଟକର ବିଷୟବସ୍ତୁ ଆମ ନିକଟରେ ବଖାଣିଲେ, ଯାହା ମୋତେ ଓ ଉତ୍ତମକୁ ମଧ୍ୟ ଭଲଲାଗିଥିଲା। ସେଇଠୁ ଆରମ୍ଭ ହୋଇଥିଲା ବେଗମ୍ ନାଟକର ପ୍ରସ୍ତୁତି ପର୍ବ। ଜାନୁଆରୀ ପ୍ରଥମ ସପ୍ତାହରେ ମଞ୍ଚାୟନ କରିବା ଲକ୍ଷ୍ୟନେଇ ଆମେ ନଭେମ୍ବର ଶେଷସପ୍ତାହରେ ରିହାର୍ସାଲ ପାଇଁ ନଡ଼ିଆ ପିଟି ମୁହୁରତ୍ ଆରମ୍ଭ କରିଦେଲୁ। ସୃଷ୍ଟିର ନାଟକ, ମାନେ ସାରାସହରର ଚର୍ଚ୍ଚିତନାଟକ ହେବାର ସମ୍ଭାବନା ଥାଏ। ଆଗରୁ ଉଖୀ, ଭୁଖା ଭଳି ସଫଳ ନାଟକ ପ୍ରଦର୍ଶନ କରି ଯଶ ଅର୍ଜିଥିବା ସଂସ୍ଥାରୁ ଦର୍ଶକ ଉନ୍ନତମାନର ନାଟକ ଆଶା ରଖୁଥିଲେ। ଚୌରାଅଶୀର ଭୁଖା ପରେ ଅଠାଅଶୀ ପର୍ଯ୍ୟନ୍ତ ଚାରିବର୍ଷ ନୀରବତା ପରେ ସୃଷ୍ଟି ପୁନଶ୍ଚ ମୁଣ୍ଡ ଟେକିଥିଲା, ସଦଳବଳେ ବେଗମ୍ ନାଟକର ସଫଳ ମଞ୍ଚାୟନ ପାଇଁ ଅଣ୍ଟା ଭିଡ଼ିଲା। ପୁଣି ରାଜୁଦାଙ୍କ ସହ ଯୋଗାଯୋଗକରି ତାଙ୍କୁ ନିର୍ଦ୍ଦେଶକ ଭାବରେ ନିମନ୍ତ୍ରଣ ଜଣାଇଲୁ। ସେ ମଧ୍ୟ ସମ୍ମତି ପ୍ରଦାନ କଲେ। ବ୍ୟକ୍ତିଗତ ଭାବେ ମୁଁ କିନ୍ତୁ ବେଗମ୍ ନାଟକ ପାଇଁ ରାଜୁଦାଦାଙ୍କୁ ନିର୍ଦ୍ଦେଶକ ଭାବେ ଅନୁରୋଧ କରିବାକୁ ପସନ୍ଦ କରୁ ନଥିଲି। କାରଣ, ପ୍ରମୋଦଙ୍କ ବେଗମ୍ ନାଟକର ଧାରା ସହ ରାଜୁଦାଙ୍କ ନିର୍ଦ୍ଦେଶକୀୟ ଧାରା ମେଳ ଖାଉନଥିଲା। ଆଗରୁ ରାଜୁଦା ପ୍ରମୋଦର କୌଣସି ନାଟକ ନିର୍ଦ୍ଦେଶନା ଦେଇ ନଥିଲେ। ପ୍ରମୋଦଙ୍କ ଅଭିନବ ପରିକଳ୍ପନା ସହ ରାଜୁଦାଙ୍କ ପାରମ୍ପରିକ ଶୈଳୀର ନିର୍ଦ୍ଦେଶକୀୟ ଧାରା ପରସ୍ପର ବିରୋଧାତ୍ମକ ଥିଲା। ତଥାପି ସମ୍ମାନ ଦୃଷ୍ଟିରୁ, ସମସ୍ତଙ୍କ ସମ୍ମାନିତ ବ୍ୟକ୍ତିତ୍ୱ ଯୋଗୁଁ ତାଙ୍କୁହିଁ ନିର୍ଦ୍ଦେଶନା ଦେବାପାଇଁ ଡାକିଲୁ। ନାଟକରେ ମୁଖ୍ୟଚରିତ୍ର ଶ୍ରୀହରି ପାଇଁ ଉତ୍ତମ, ବେଗମ୍ ଚରିତ୍ରପାଇଁ ତୃପ୍ତି ପଣ୍ଡା ତଥା ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଚରିତ୍ରଗୁଡ଼ିକ ପାଇଁ ରଣଜୀତ୍ ଗୁରୁ, ବାରୁଦା, ସଂଜୀବ ମାଝୀ, ସୁରେଶ ତ୍ରିପାଠୀ, ଜ୍ଞାନ ଜେନା, ଅର୍ଜୁନ ମେହେର ଆଦି ବହୁ

ବିଶିଷ୍ଟ କଳାକାରମାନେ ଏହି ନାଟକରେ ଅଭିନୟ କରୁଥିଲେ । ମୁଁ ପଶ୍ଚାତ୍‌ପଟରେ ଥାଇ ନିର୍ଦ୍ଦେଶନାଗତ ବାକି କାମ ସମ୍ଭାଳିବା ଆସ୍ଥାରେ ରିହାର୍ସାଲ ଆରମ୍ଭହେଲା ଫ୍ରେଣ୍ଡର କ୍ଲବରେ । ପ୍ରଥମ କିଛି ଦିନ ପଢ଼ିବା ଅଭ୍ୟାସରେ କଟି ଯିବାପରେ ଛିଡ଼ାହୋଇ ରିହାର୍ସାଲକରିବା ଆରମ୍ଭହେବା ଦିନଠାରୁ ରାଜୁଦା ଆଉ ରିହାର୍ସାଲକୁ ଆସିଲେ ନାହିଁ । ଯେତେବେଳେ ସମଗ୍ର ନାଟକର ରିହାର୍ସାଲ ଅଭିନୟ ସହ ବିଭିନ୍ନ କମ୍ପୋଜିସନ୍‌ରେ ସଜଡ଼ାଯିବା କଥା, ନିର୍ଦ୍ଦେଶକଙ୍କ ଅନୁପସ୍ଥିତିରେ କଳାକାରମାନେ ଅସହାୟ ହୋଇପଡିଲେ । ବାଧହୋଇ ମୁଁ ଆଗଭର ହୋଇ ସାମଗ୍ରିକ ଭାବରେ ନିର୍ଦ୍ଦେଶନା ଦାୟିତ୍ୱ ସମ୍ଭାଳିନେଲି ଓ ମୋର ନିଜସ୍ୱ ଚିନ୍ତାଧାରାରେ ନାଟକକୁ ସଜେଇଲି । ତେବେ, ମଝିରେ ମଝିରେ ରାଜୁଦାଙ୍କ ଅକସ୍ମାତ୍ ଉପସ୍ଥିତି ରିହାର୍ସାଲରେ ବାଧାସୃଷ୍ଟି କରୁଥିଲା । ସମ୍ମାନକୁ ଚାହିଁ ତାଙ୍କୁ କେହି କିଛି କହିପାରୁ ନଥିଲେ । ଦିନେ ତାଙ୍କ ଅନୁପସ୍ଥିତିର ସୁଯୋଗରେ ଉତ୍ତମ, ବାରୁଦା ଓ ମୁଁ ଏ ସମ୍ବନ୍ଧରେ ଆଲୋଚନା କଲୁ ଏବଂ ସିଦ୍ଧାନ୍ତ ନେଲୁ ଯେ ରାଜୁଦାଦାଙ୍କୁ କହିଦେବା ଯେ ସେ ଆଉ ରିହାର୍ସାଲ ନ ଆସନ୍ତୁ, ଆମେ ସମ୍ଭାଳି ଦେବୁ । ହେଲେ, ଏତେ ବଡ଼ କଥାଟିଏ, ତାଙ୍କୁ କହିବ କିଏ, ବିରାଡ଼ି ବେକରେ ଘଣ୍ଟି ବାନ୍ଧିବ କିଏ ! ! ଅନେକ ଆଲୋଚନା ପରେ ସମ୍ପାଦକ ଭାବରେ ମୋ ଉପରେ ହିଁ ସେ ଦାୟିତ୍ୱ ନ୍ୟସ୍ତ ହେଲା । ନାଟକର ଏବଂ ସୃଷ୍ଟିର ମର୍ଯ୍ୟାଦା ରକ୍ଷାପାଇଁ ମୋତେ ହିଁ ଛାତିକୁ ପଥର କରି ଏଭଳି ଏକ ଅବିବେକୀ କାର୍ଯ୍ୟ ସମ୍ପାଦନ କରିବାପାଇଁ ପଡିବ । ମୁଁ ଏକ ସର୍ତ୍ତରେ ରାଜି ହେଲି ଯେ, ଉତ୍ତମ ଓ ବାରୁଦାଙ୍କ ଉପସ୍ଥିତିରେ ହିଁ ମୁଁ ଏଭଳି ଅପ୍ରିୟ କଥା ରାଜୁଦାଦାଙ୍କୁ ଜଣାଇବି । ଦିନେ, ଖାସ୍ ଏହିକଥା କହିବାପାଇଁ ଆମେ ତିନିହେଁ ରାଜୁଦାଦାଙ୍କୁ ବୈଦ୍ୟନାଥ ଛକରେ ଭେଟିଲୁ ଓ ମୁଁ କଳିଜାକୁ ଟାଣ କରି ଦାଦାଙ୍କୁ କହିଲି ଯେ, ଦାଦା, ତମେ ଆଉ ହଇରାଣ ନାଇଁ ହୁଅ, ମୁଇଁ ନାଟକ୍‌କେ ସମ୍ଭାଲୁଛେଁ, ଦରକାର୍ ହେଲେ ଡାକ୍‌ମୁଁ ଯେ । ସେ ମୋର୍ କଥାର ମଞ୍ଜଟି ବୁଝି ପାରି 'ହଁ' କହିଲେ ଓ ଆମଠୁ ଦୂରେଇଗଲେ । ଦାଦା ଗଲାପରେ ଆମେ ଦୀର୍ଘଶ୍ୱାସ ଦୁଇ ଚାରିଟା ମାରି ରାତିରେ ରିହାର୍ସାଲ ପୁଣି ପୁରାଦମ୍‌ରେ ଆରମ୍ଭ କରିଥିଲୁ । ନାଟକର ନିର୍ଦ୍ଦେଶନାଗତ ସମସ୍ୟା ଯାହାଥିଲା, ଧିରେଧିରେ ସମାହିତ ହୋଇଗଲା ।

ବେଗମ୍ ନାଟକ ହେବାର ଥିଲା ଜାନୁଆରୀ ତିନି, ଚାରି ତାରିଖରେ । ଏକ ତାରିଖ ପର୍ଯ୍ୟନ୍ତ ରିହାର୍ସାଲ ପ୍ରାୟ ଠିକ୍‌ଠାକ୍ ଗଢ଼ିଯାଇ ଏକ ପ୍ରକାର ସମାପ୍ତି ଆଡ଼କୁ ଗତିକରିଥିଲା । ତୃପ୍ତି ବେଗମ୍ ଚରିତ୍ରକୁ ସଫଳ କରିବାରେ ଜୀବନଢ଼ଳା ପରିଶ୍ରମ

କରିଥିଲେ । ଏହି ନାଟକର ପ୍ରଚ୍ଛଦସଂଗୀତ ପାଇଁ ମୁଁ ମଧ୍ୟ ପ୍ରାଣପଣେ ଚେଷ୍ଟିତ ଥିଲି । ସିନ୍ଥେସାଇଜର୍‌ରେ ଭାଇ ବ୍ରଜେନ୍ଦ୍ର ଏବଂ ବଂଶୀରେ ଆକାଶବାଣୀର ଷ୍ଟାଫ୍ ଆର୍ଟିଷ୍ଟ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କଳାକାର ସୁଦର୍ଶନ ଦାସ ଯନ୍ତ୍ରସଂଗୀତରେ ସହଯୋଗିତା କରୁଥିଲେ । ବେଗମ୍ ମଞ୍ଚକୁ ଆସିବା ମୁହୂର୍ତ୍ତରେ ତୃପ୍ତି ପାଇଁ ସ୍ୱତନ୍ତ୍ର ଏକ ଆବହ ସଂଗୀତର ବ୍ୟବସ୍ଥା କରାଯାଇଥିଲା । ସବୁ ଠିକ୍ ଥିଲା । ମଞ୍ଚସଜ୍ଜା ମଧ୍ୟ ଅଶୋକ ଓ ଚିତ୍ରସେନଙ୍କ କଳ୍ପନାରେ ଜୀବନ୍ତ ଦିଶୁଥିଲା, ଗୋଟିଏ ପାଖରେ ରେଲୱେ ପ୍ଲାଟ୍‌ଫର୍ମ, ଅନ୍ୟ ଭାଗରେ ବେଗମ୍‌ଙ୍କ ଦ୍ୱିତଳ ପ୍ରସାଦ । ଦୁଇ ତାରିଖ ମଞ୍ଚାଭ୍ୟାସର ରାତି, ମୋ ସାନଶଳା ଜତୀନର ସ୍ତ୍ରୀକୁ ଡେଲିଭରୀ ପାଇଁ ସେହିରାତିରେ ସଦର ଡାକ୍ତରଖାନାରେ ଭର୍ତ୍ତିକରାଗଲା । ତେଣୁ, ପତ୍ନୀଙ୍କ ସହ ତାଙ୍କୁ ମଧ୍ୟ ଡାକ୍ତରଖାନାରେ ଜଗିରହିବା ପାଇଁ ପଡ଼ିଲା । ଗଙ୍ଗାଧର ମଣ୍ଡପରେ ହେବାକୁ ଥିବା ଷ୍ଟେଜ୍ ରିହାର୍ସାଲ୍‌କୁ ଯିବା ଅସମ୍ଭବ ହୋଇପଡ଼ିଲା । କୌଣସି ମତେ ରାଜୁଦାଦାଙ୍କୁ ମୋର ପରିସ୍ଥିତି ସମ୍ପର୍କରେ ଅବଗତକରି ମଣ୍ଡପକୁ ଆସିବାପାଇଁ କହିଲି ଓ ସମସ୍ତ କଳାକାରଙ୍କୁ ମୋର ଅସମର୍ଥତା ଜଣାଇଲି । ଈଶ୍ୱରଙ୍କ କୃପାରୁ ଜତୀନ୍‌ର ପୁତ୍ରସନ୍ତାନଟିଏ ଜାତ ହେଲା, ମାଁ ଓ ପୁଅ ଉଭୟଙ୍କ ସ୍ୱାସ୍ଥ୍ୟବସ୍ଥା ସ୍ଥିର ଥିଲା । ସେହି ପୁଅଟିର ବାହାଘର ଏଇ ଗତବର୍ଷ ଅନୁଷ୍ଠିତ ହୋଇଥିଲା ଓ ସସ୍ତ୍ରୀକ ଅଧୁନା ପୁନାରେ ଅବସ୍ଥାନ କରୁଛନ୍ତି ।

ପରଦିନ ବେଗମ୍‌ର ପ୍ରଥମ ଦୃଶ୍ୟାୟନ, ପ୍ରଯୋଜନାରେ ବେଖାପ ଜଣାପଡିଲା । ପ୍ରାୟତଃ, ବିଫଳ ହେଲା କହିଲେ ଭୁଲ୍ ହେବନାହିଁ । ତେଣୁ ଦ୍ୱିତୀୟରାତିର ପ୍ରଦର୍ଶନକୁ ଯେ କୌଣସି ହାଲତ୍‌ରେ ସଫଳ କରିବାକୁ ହେବ, ସେ ବାବଦରେ ସମସ୍ତ କଳାକାରଙ୍କୁ ସଚେତନ କରାଇଦେଲି, ସଂଗୀତ ଭାଗକୁ ପୁଣି ଥରେ ସଜାଡ଼ିଲି, ସମସ୍ତ କଳାକାରଙ୍କୁ ପାରୁପର୍ଯ୍ୟନ୍ତ ଉତ୍ସାହ ପ୍ରଦାନ କଲି । ଦ୍ୱିତୀୟ ରାତି, ସମସ୍ତ କଳାକାର ନିଜ ଅଭିନୟଚାତୁରୀରେ ଦର୍ଶକଙ୍କୁ ବାନ୍ଧିରଖିବାରେ ସକ୍ଷମ ହେଲେ । ଉତ୍ତମ ସହ, ସୁରେଶ, ଜ୍ଞାନ, ବାରୁଦା, ରଣଜିତ୍, ତୃପ୍ତି, ସମସ୍ତେ ଜମେଇକରି ନାଟକକୁ ଜୀବନ୍ତ କରିପାରିଥିଲେ । ବେଗମ୍ ନାଟକର ସଫଳତା ସୃଷ୍ଟିକୁ ନୂଆ ଜୀବନ ପ୍ରଦାନକଲା, ଭବିଷ୍ୟତରେ ଆହୁରି ଅନେକ ନାଟକକରିବାର ସମ୍ଭାବନା ସୃଷ୍ଟି କଲା । ମୋର ଚିଟିଣ୍ଡାରେ ରହଣିଫଳରେ ଧିମେଇଯାଇଥିବା ସୃଷ୍ଟି, ନବଜୀବନପ୍ରାପ୍ତ ହେଲା ।

ସେହି ଅଣାନବେରେ ପୁନଶ୍ଚ ଡାକରା ଆସିଲା କଂସ ଭୂମିକାରେ ଅଭିନୟ କରିବାପାଇଁ । ସେ ବର୍ଷ ମୋର ଅଭିନୟ ଦେଖିବା ପାଇଁ ଜ୍ୟୋତିବିହାର ଓଡ଼ିଆ

ବିଭାଗର ଡ. ଆଦିକନ୍ଦ ସାହୁ, ଡ. କୁମୁଦରଞ୍ଜନ ପାଣିଗ୍ରାହୀ ଏବଂ ଡ. ନିମାଇଁ ଚରଣ ପଣ୍ଡା ଚିଚିଣ୍ଡା ଆସିଥିଲେ । ମୁଁ କଂସମହାରାଜ ଭାବରେ ସେମାନଙ୍କୁ ରାଜକୀୟ ଅତିଥି ଭାବରେ ସ୍ୱାଗତ କରିଥିଲି । ମୋର ମଞ୍ଚର ସମ୍ପୂର୍ଣ୍ଣ ଅଭିନୟର ସ୍ୱାଦ ଚାଖିବା, ରାତ୍ରଭୋଜନ ସହ ଅପେରା ଦେଖିବାର ଆଗ୍ରହ ପ୍ରକାଶକରି ସାରାରାତି ଶିବାନୀ ଅପେରାର ନାଟକ ଉପଭୋଗ କରିଥିଲେ । ସକାଳୁ ଜଳଖିଆପରେ ପ୍ରସ୍ଥାନ କରିଥିଲେ । ଚିଚିଣ୍ଡା ଧନୁଯାତ୍ରାରେ ସାର୍‌ମାନଙ୍କ ଉପସ୍ଥିତି ମୋତେ ଉତ୍ସାହିତ କରିଥିଲା । ସେହିବର୍ଷ ଆକାଶବାଣୀ ସମ୍ବଲପୁରରୁ ଭାଗୀରଥି ମିଶ୍ରଙ୍କ ସହ ତାଙ୍କ ବନ୍ଧୁ ରାମକୃଷ୍ଣ ସାହୁ ଏବଂ ଦେବୀଦାସ ମିଶ୍ର ମଧ ମୋର ମଞ୍ଚରେ ଅଭିନୟ କରିବାସମୟରେ ହିଁ ଆସିଥିଲେ, ମୋତେ ଜଣାନଥିଲା । ଦୂତ ମୋ ନିକଟକୁ ଆସି ସମ୍ବଲପୁର ଆକାଶବାଣୀରୁ ଅଧିକାରୀମାନେ ଆସିଛନ୍ତି ବୋଲି ସମ୍ବାଦ ଦେବାକ୍ଷଣି ମୋର କ୍ରୋଧ ବୃଦ୍ଧି ପାଇଥିଲା, ମୁଁ ବଡ଼ପାଟିରେ ଚିତ୍କାର କରି କହିଥିଲି, ଏମାନେ ହେଉଛନ୍ତି ସେହି ଶତ୍ରୁ, ଯେଉଁମାନେ ମୋତେ ଆକାଶବାଣୀ ମାଧମରେ କହିଥିଲେ, ଦେବକୀର ଅଷ୍ଟମଗର୍ଭର ସନ୍ତାନ ମୋର ମୃତ୍ୟୁର କାରଣ ହେବ, ମହାମନ୍ତ୍ରୀ ଯଥାଶୀଘ୍ର ସେମାନଙ୍କୁ ବାନ୍ଧି ଆଣିବାର ମୋ ଦରବାରରେ ଉପସ୍ଥିତ କରାଅ, ଆଜି ମୁଁ ପ୍ରତିଶୋଧ ନେବି । କିଛିକ୍ଷଣ ପରେ ତିନିହେଁ ମୋ ଦରବାରକୁ ଆସି ନିଜ ପରିଚୟ ପ୍ରଦାନ କରିଥିଲେ । ମହାରାଜ ଭାବରେ ମୁଁ ତାଙ୍କ ଯଥାମାନ୍ୟ ଆତିଥ୍ୟ ପ୍ରଦାନ କରିଥିଲି । ମୋର ମଞ୍ଚରୁ ଓହ୍ଲାଇବା ପରେ ସେମାନେ ଏକ ସାକ୍ଷାତକାର ନେଇଥିଲେ । ରେଡିଓ ତରଫରୁ ଦେବୀଦାସ ମୋର ଇଣ୍ଟର୍ଭ୍ୟୁ ନେଇଥିଲେ ହରିହୋଟେଲ ପଛପଟେ ରହୁଥିବା ମୋ କୋଠରୀରେ । ଦେବୀଦାସ ସେତେବେଳେ ମୋ କୋଠରୀକୁ ଅସଜଡ଼ା ବୋଲି ଆଖ୍ୟାୟିତ କରିଥିଲେ । ମୋତେ କିମ୍ବା ତାଙ୍କୁ ସେତେବେଳେ ଜଣା ନଥିଲା, ଏପରି ଏକ ଦିନ ଆସିବ, ଦେବୀଦାସ ପଲ୍ଲିଶ୍ରୀ ମହାବିଦ୍ୟାଳୟର ଅଧକ୍ଷ ଦାୟିତ୍ୱ ଗ୍ରହଣ କରିବେ ଏବଂ ମୁଁ ତାଙ୍କ ଅଧିନରେ ଅଧାପକ ଭାବରେ କାର୍ଯ୍ୟ କରିବି ।।

ଦେବୀଦାସ ମୋର ଅଧକ୍ଷ ହେଲେ, ତାଙ୍କ ସମୟରେ ହିଁ ମୁଁ ଷୋହଳରେ ଅବସର ଗ୍ରହଣ କଲି, କିନ୍ତୁ ତଥାପି ଅସଜଡ଼ା ରହିଗଲା ମୋର ଜୀବନଘର ।। ଭୁଖା ନାଟକରେ ଅଏଁଠାର ସଂଳାପଟିଏ ଥିଲା, ଜୀବନଟା ହେନ୍ତା ଆଏରେ ନୁନୀ, ପାଖେ ସିଁଲେ, ଆରପାଖ ଦର୍‌କି ଯାଉଥିସି ।।।



ସମ୍ବଲପୁର ସହରରେ ନବେଦଶକ ପର୍ଯ୍ୟନ୍ତ ନାଟକ ମଞ୍ଚାୟନପାଇଁ ସେମିତି କୌଣସି ନିର୍ଦ୍ଦିଷ୍ଟ ରଙ୍ଗମଞ୍ଚ ନଥିଲା । ଏପରିକି ଦୁଇହଜାର୍ ସାଲ୍ ପର୍ଯ୍ୟନ୍ତ ନାଟକକଲା ଭଳି ରଙ୍ଗମଞ୍ଚ ଜଡ଼ିତ ପ୍ରେକ୍ଷାଳୟ ନଥିଲା, ଏହି ଏକବିଂଶ ଶତାବ୍ଦୀର ଦ୍ୱିଦଶକ ଯାଏଁ ମଧ୍ୟ ନାଟ୍ୟଶିଳ୍ପୀମାନଙ୍କ ଏହି ଦାବୀ ପୂରଣ ହୋଇପାରିନାହିଁ । ନାରୀ ସେବା ସଦନ, ଷାଠିଏ, ସତୁରୀ ଦଶକ ପର୍ଯ୍ୟନ୍ତ ଗୋଟେପ୍ରକାର ଠିକ୍ଥିଲା, ତଥାପି ଶବ୍ଦପ୍ରକ୍ଷେପଣ ଦୃଷ୍ଟିରୁ ଉପଯୁକ୍ତ ନଥିଲା । ନନ୍ଦପଡାର ଚିତ୍ରୋତ୍ପଳା, ଝାଡୁଆପଡାର ଆରଣ୍ୟକ, ଫ୍ରେଜର୍ କ୍ଲବ, ବଡ଼ବଜାରର ସମଲେଶ୍ୱରୀ ମଣ୍ଡପ ଆଦି ମଞ୍ଚମାନ ମୁକ୍ତମଞ୍ଚ । ଅନେକବର୍ଷ ପରେ ଆରଣ୍ୟକ ମଞ୍ଚ ଯୁବଉଦୟନର ସଭ୍ୟମାନଙ୍କ ପ୍ରଚଣ୍ଡ ଉଦ୍ୟମଫଳରେ ଏକ ବାତାନୁକୂଳିତ ପ୍ରେକ୍ଷାଳୟରେ ପରିଣତ ହୋଇଛି । ନବେଯାଏଁ ଟାଉନ୍‌ହଲ୍ ପଡିଆ ସ୍ଥିତ ଗଙ୍ଗାଧର ମଣ୍ଡପ ମୁକ୍ତ ମଞ୍ଚ ଥିଲା । ଏକାନବେ ମହିସାରେ ସୃଷ୍ଟିର ବୃତି ନାଟକ ବେଳେ, ସୁରେଶ ପୂଜାରୀ ପୌରସଂସ୍ଥାର ନଗରପାଳ ଥିବା ବେଳେ ଆମ ଅନୁରୋଧରେ ଲୁହାର ପିଲର୍ ଉଠାଇ ଟିଣଛାଉଁଣି କରିଦେଇଥିଲେ । ତାର ଛ' ବର୍ଷ ପରେ ପ୍ରଥମ ସମ୍ବଲପୁର ଲୋକମହୋତ୍ସବ ସମୟରେ ତତ୍କାଳୀନ ଜିଲ୍ଲାପାଳ ନରେନ୍ଦ୍ର ମିଶ୍ରଙ୍କ ଉଦ୍ୟମରେ ମଣ୍ଡପର ଉନ୍ନତିକରଣ ସାଧିତ ହୋଇଥିଲା । ଏଠାରେ ନାଟକ ମଞ୍ଚସ୍ଥ କରିବା ଖୁବ୍ ଖର୍ଚ୍ଚସାଧ୍ୟ କାର୍ଯ୍ୟ । ଖୁବ୍ କମ୍ ସଂଗଠନ ଏହି ମଞ୍ଚରେ ନାଟକ ପ୍ରଦର୍ଶନ କରିବାପାଇଁ ଆଗଭର ହୁଅନ୍ତି । ଫ୍ରେଜର କ୍ଲବ ଓ ପ୍ରଗତି ସଂଘର ମଣ୍ଡପ ଆଉ ଲୋକଙ୍କ ଦୃଷ୍ଟିକୁ ଆସିପାରୁନାହିଁ । ଆଗରୁ ନାଟକ ହେଉଥିଲା, ତେବେ ବର୍ତ୍ତମାନର ପରିବେଶରେ ସେଠାରେ ନାଟକ କରିବା ଅସମ୍ଭବ ମନେ ହେଉଛି । ନନ୍ଦପଡା, ଦଳେଇପଡା ଆଦି ସ୍ଥାନରେ ଥିବା ମଞ୍ଚ ମଧ୍ୟ କେବଳ ସେହିପଡାର ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ଉଦ୍ଦିଷ୍ଟ । ତଥାପି ସମ୍ବଲପୁର ସହରର ନାଟ୍ୟସଂସ୍ଥାଗୁଡ଼ିକ ହାର ନ ମାନି ନିଜସ୍ୱ ଉଦ୍ୟମରେ ବହୁ ପ୍ରତିକୂଳ ପରିସ୍ଥିତିରେ ନାଟକ କରିଚାଲିଛନ୍ତି, ରାଜ୍ୟ ତଥା ଜାତୀୟସ୍ତରରେ ନାଟକ ପରିବେଷଣକରି ସମ୍ବଲପୁର ପାଇଁ ଗର୍ବ ଓ ଗୌରବ ଆଣିପାରୁଛନ୍ତି । କଳାପରିଷଦର ପ୍ରେକ୍ଷାଳୟ ଆଜି ଯାଏଁ ବ୍ୟବହାର ଉପଯୋଗୀ ହୋଇପାରିନାହିଁ । ଯେବେ ହେବ, ଅର୍ଥିକ ଦୃଷ୍ଟିରୁ ଦୁର୍ବଳ ନାଟ୍ୟାନୁଷ୍ଠାନମାନେ ସେଠାରେ ନାଟକ ପ୍ରଦର୍ଶନ କରିପାରିବେ ନା ନାହିଁ, ସନ୍ଦେହ । ପୁରୁଣା ବସ୍‌ଷ୍ଟାଣ୍ଡଠାରେ ନିର୍ମାଣାଧୀନ ପ୍ରେକ୍ଷାଳୟ ବାବଦରେ ପରସ୍ପରବିରୋଧୀ ମନ୍ତବ୍ୟମାନ ପ୍ରକାଶ ପାଉଛି । ଅନେକ ସଭାରେ ମୁଁ ବ୍ୟକ୍ତିଗତ ଭାବରେ ତତ୍କାଳୀନ ଏସଡିଏ ଚେୟାରମ୍ୟାନ ବିଜୟ ମହାନ୍ତିଙ୍କୁ ଅନୁରୋଧ କରିଥିଲି,

ଏହି ପ୍ରେକ୍ଷାଳୟର ଡିଜାଇନ ତିଆରି ପୂର୍ବରୁ କିଛି ନାଟକସହ ଜଡ଼ିତ ବ୍ୟକ୍ତିତ୍ୱମାନଙ୍କ ସହ ଆଲୋଚନା କରାଯାଉ । ଟଙ୍କା ବା ବଜେଟ ଫେରି ବରଂ ଗଲା, କେବେ କେହି ନାଟ୍ୟଶିକ୍ଷୀମାନଙ୍କୁ ପଚାରିଲେ ନାହିଁ । ସଭା ତଥା ଉତ୍ସବମାନଙ୍କରେ ଭାଷଣମାଧ୍ୟମରେ ଆମ ଅଞ୍ଚଳର ନେତୃବର୍ଗ ନାଟକସମ୍ବନ୍ଧୀୟ ଅନେକ ପ୍ରତିଶ୍ରୁତି ଦେଇଥାନ୍ତି, ହେଲେ ବାସ୍ତବକ୍ଷେତ୍ରରେ କାର୍ଯ୍ୟକାରୀ ହେବାବେଳେ ସବୁ ଫେଲ୍‌ମାରିଯାଏ । ପ୍ରତିବାଦଯୋଗ୍ୟ ହେଲେ ସୁଦ୍ଧା କେହି ସେମାନଙ୍କ ବିରୁଦ୍ଧରେ ସ୍ୱରଉତ୍ତୋଳନ କରନ୍ତିନାହିଁ । ଏବେ ତ ସେହି ଡିସେମ୍ବର ମାସ ଆସିଲେ ଯାଇ ନାଟ୍ୟ ସଂସ୍ଥାଗୁଡ଼ିକ ନାଟକକୁ ମନେ ପକାଉଛନ୍ତି । ଡିସେମ୍ବର ଆସିଲେ ନାଟକ, ଜାନୁଆରୀରେ ଲୋକମହୋତ୍ସବ ଏବଂ ଫେବୃଆରୀ ଆସିଲେ ପୁସ୍ତକମେଳା, ବାଣିଜ୍ୟ ମେଳା, ପଲ୍ଲିଶ୍ରୀ ମେଳା ଆଦି ସମ୍ବଲପୁରର ଚିରାଚରିତ ପରମ୍ପରାରେ ପରିଣତ ହୋଇପଡିଛି । ସମ୍ବଲପୁର ବର୍ତ୍ତମାନ ମେଟ୍ରୋସିଟି, ମେଟ୍ରୋସିଟିର ଆବଶ୍ୟକତା ଅନୁସାରେ ଯେଉଁଭଳି ସାଂସ୍କୃତିକ ଜାଗରଣ ସୃଷ୍ଟି ହେବାକଥା, ତାହା ଏଯାଏଁ ଦୃଷ୍ଟିଗୋଚର ହେଉନାହିଁ । ଏଥିପାଇଁ ଅନ୍ତତଃପକ୍ଷେ ତିନୋଟି ସମ୍ପୂର୍ଣ୍ଣ ବିକଶିତ ପ୍ରେକ୍ଷାଳୟର ଆବଶ୍ୟକତା ରହିଛି ।

ଏକଥା ବର୍ଣ୍ଣନା କଲାବେଳେ ମୋର ମନେପଡୁଛି, ପଲ୍ଲିଶ୍ରୀ ମହାବିଦ୍ୟାଳୟରେ ମୋର ଯୋଗଦେବା ପ୍ରଥମ ବର୍ଷ ଉଡଲା ପତର୍ ବୁଡଲା ଡଙ୍ଗା ନାଟକ ମଞ୍ଚସ୍ଥ ହେବାପରେ ତା' ପରବର୍ଷ ପିଲାଙ୍କ ଦାବୀ ଅନୁସାରେ ନାଟକ କରିବା ପ୍ରସଙ୍ଗ ଉଠିଲା । ମୋର ପିଲାମାନଙ୍କଠାରେ ସର୍ତ୍ତ ରହିଲା, ପ୍ରଥମେ ମଣ୍ଡପ ତିଆରି କରିବା, ପରେ ନାଟକ କରିବା । ଛାତ୍ରଛାତ୍ରୀମାନଙ୍କୁ ଶାରୀରିକ ଶ୍ରମ କରି ମଣ୍ଡପ ନିର୍ମାଣକରିବାର ଆହ୍ୱାନ ଦେଲି । ପିଲାମାନେ ମଧ୍ୟ ଆଗ୍ରହର ସହକାରେ କୋଡିକୋଦାଳ ଧରି ମଣ୍ଡପକାମ ଆରମ୍ଭ କରିଦେଲେ । ମୁଁ ଆଗରୁ ବଖାଣିବା ଅନୁସାରେ ଏନଏସଏସ ସହ ଯୋଗାଯୋଗ ରଖି ଆର୍ତ୍ତବନ୍ଧୁ ମିଶ୍ରଙ୍କଠାରୁ ଏକ ସ୍ୱତନ୍ତ୍ର ଶିବିର ମଞ୍ଜୁରୀକରି କିଛି ଅର୍ଥର ବ୍ୟବସ୍ଥା କରିଥିଲି । ଏକ ସପ୍ତାହ ମଧ୍ୟରେ ମଣ୍ଡପ ପ୍ରସ୍ତୁତହୋଇଗଲା । ଅଧ୍ୟକ୍ଷ ମହାଶୟ ମଧ୍ୟ କଲେଜ୍‌ର ବାର୍ଷିକୋତ୍ସବ ପାଇଁ ପ୍ରସ୍ତୁତ ହୋଇଗଲେ । ଆର୍ତ୍ତବନ୍ଧୁ ବାବୁଙ୍କୁ ମୁଖ୍ୟଅତିଥି ଭାବରେ ନିମନ୍ତ୍ରଣ କରାଗଲା ଏବଂ ତାଙ୍କ ହାତରେ ହିଁ ନବନିର୍ମିତ ମଣ୍ଡପର ଉଦ୍‌ଘାଟନ କାର୍ଯ୍ୟ ସମାହିତ ହୋଇଥିଲା । ସେ ମଣ୍ଡପର ନା ରଖାଗଲା 'ନାଟ୍ୟମଣ୍ଡପ' । ତା ପୂର୍ବରୁ ପିଲାଙ୍କୁ କଥାଦେଇଥିଲି, ନାଟକ ନିଶ୍ଚୟ ହେବ । ବାର୍ଷିକୋତ୍ସବ ପୂର୍ବ ରାତିରେ ପିଲାଙ୍କୁ କହିଲି, ଯେଉଁମାନେ ନାଟକରେ ଅଭିନୟ

କରିବାପାଇଁ ଇଚ୍ଛୁକ, ସେମାନେ ରାତି ରିହାର୍ସାଲରେ ଉପସ୍ଥିତ ରହିବେ । ରାତିରେ ପ୍ରାୟ ଦଶ ଜଣ ଛାତ୍ର ମଞ୍ଚରେ ଉପସ୍ଥିତ ଥିଲେ । ତୁମେ ସମସ୍ତେ ଏହି ନାଟକରେ ଅଭିନୟ କରିବ କହି ମୁଁ ବିନା ପାଣ୍ଡୁଲିପିରେ ଏକ ବିଷୟବସ୍ତୁ ଉପରେ ପିଲାଙ୍କ ସହ ଚର୍ଚ୍ଚା କରିଦେଲି, ତାଙ୍କ ସହ ମୁଁ ମଧ ଅଭିନୟ କଲି, ନାଟକର ନାଁ ଦିଆଗଲା 'ବଏରୀ' ଅର୍ଥାତ୍ ଶତ୍ରୁ । ପରଦିନ ଅଭିନେତାମାନଙ୍କୁ ନିଜନିଜ କମନ୍‌ଡ୍ରେସ୍ ବାବଦରେ ସୂଚନା ଦେଲି ଏବଂ ସେମାନଙ୍କ ସ୍ୱତସ୍ଫୁର୍ତ୍ତ ସଂଳାପ ବାବଦରେ ଅଭ୍ୟାସ କରେଇନେଲି । ବାର୍ଷିକୋତ୍ସବର ସଭା ଓ ପୁରସ୍କାର ବିତରଣୀ ପରେ ନାଟକ ହେଲା, ପେଁଚାଳିଶ୍ ମିନିଟ ଧରି ବିନା ପାଣ୍ଡୁଲିପି ଓ ବିନା ରିହାର୍ସାଲର ସହାୟତାରେ ସମ୍ବଲପୁରୀ ନାଟକ 'ବଏରୀ' ଅଭିନୀତ ହେଲା । ଏହା ଏକ ଅଭିନବ ଶୈଳୀ ଓ ବିଷୟବସ୍ତୁର ନାଟକ ହୋଇଥିବାରୁ ଗାଁ ଗହଳିର ଦର୍ଶକମାନଙ୍କୁ ସେତେ ଭଲ ଲାଗି ନଥିଲେ ହେଁ ଶିକ୍ଷିତ ଦର୍ଶକମାନଙ୍କ ପାଇଁ ଉପଭୋଗ୍ୟ ହୋଇଥିଲା । ପରଦିନ ଏହି ନାଟକରେ ଅଂଶଗ୍ରହଣ କରିଥିବା ଛାତ୍ରମାନେ ଆଶ୍ଚର୍ଯ୍ୟ ପ୍ରକଟକରିଥିଲେ, ନାଟକ ସରିଗଲାପରେ ବି ସେମାନେ ଅଭିନୟ କଲାଭଳି ହୃଦ୍‌ବୋଧ କରି ନଥିଲେ ନାଟକର ସ୍ୱାଭାବିକତା ଗୁଣ ଯୋଗୁଁ । ପରବର୍ତ୍ତୀ ବର୍ଷ ସମ୍ବଲପୁରୀ ନାଟକ 'ଉଲଟା ପୁର୍ଥୀ' ସେହି ମଞ୍ଚରେ ପୂର୍ଣ୍ଣ ସଫଳତାର ସହ ଅଭିନୀତ ହୋଇଥିଲା ।

ଚିଚିଣ୍ଡା ରହଣି କାଳରେ ଅଞ୍ଚଳର ବିଭିନ୍ନ ଗ୍ରାମରେ ନାଟକପ୍ରତି ଆଗ୍ରହଜନ୍ମାଇବା ଉଦ୍ଦେଶ୍ୟରେ ସେ ଅଞ୍ଚଳକୁ ନିର୍ଦ୍ଦେଶକ ଭାବରେ ନିମନ୍ତ୍ରିତ ହୋଇ ସହଯୋଗ କରିଥିଲି । ଭେଡେନ୍‌ରେ ଉଲଟା ପୁର୍ଥୀ, ରେମୁଣ୍ଡାରେ ପଳାତକ, ଲଚିଦାରେ ଅଭିଶପ୍ତ ଘୁଙ୍ଗୁର ଆଦି ନାଟକମାନ ମୋ ନିର୍ଦ୍ଦେଶନାରେ ଅଭିନୀତ ହୋଇଥିଲା । ଏପରିକି ଚିଚିଣ୍ଡାରେ ମଧ ବର୍ଷେ ମାଂସର ଫୁଲ ନାଟକଟି ମଞ୍ଚସ୍ଥହୋଇଥିଲା କିଛି ପୂରାତନ ଛାତ୍ରମାନଙ୍କ ଉଦ୍ୟମରେ । ସମ୍ବଲପୁରରେ ସଂଗଠକ ଶିବନାରାୟଣ ଶତପଥୀ ଆକାଶବାଣୀ କଳାକାର ସଂଘ ଗଠନ କରି ପଶ୍ଚିମ ଓଡ଼ିଶା ଏକାଙ୍କିକା ପ୍ରତିଯୋଗିତା ନାରୀ ସେବା ସଦନରେ ଆୟୋଜନ କରିଥିଲେ । ଏହି ପ୍ରତିଯୋଗିତାରେ ଯୋଗ ଦେବାପାଇଁ ମୁଁ ଚିଚିଣ୍ଡା ମଧ ଇଂରାଜୀ ବିଦ୍ୟାଳୟର ଶିକ୍ଷକ ସ୍ୱର୍ଗତ ପ୍ରଫୁଲ୍ଲ ମେହେରଙ୍କୁ ଏକ ନାଟକ ରଚନା କରିବା ପାଇଁ କହିଲି, ନାଟକର ବିଷୟବସ୍ତୁ ମଧ ଚର୍ଚ୍ଚାକରି ତନ୍ତୁବାୟ ସଂପ୍ରଦାୟର ଦୈନନ୍ଦିନ ଜୀବନର କାହାଣୀ ଉପରେ ଆଧାରିତହେଲେ ଖୁବ୍ ଭଲ ହେବ ବୋଲି ତାଙ୍କୁ ଉତ୍ସାହିତ କରିଥିଲି । ତାଙ୍କରଚିତ 'କମଲୟା' ସମ୍ବଲପୁରୀ ନାଟକ ସେହି ପ୍ରତିଯୋଗିତାରେ ଅଭିନୀତ

ହେଲା । ହାଇସ୍କୁଲର ରାଜକିଶୋର ପ୍ରଧାନ ଏହି ନାଟକର ସଂଗୀତ ପାଇଁ ସହଯୋଗ କରିଥିଲେ, ମୋର ମନେ ଅଛି, ମଧୁମିତା ବାବୁ, ଯେ ଆମ ଇଂରାଜୀ ବିଭାଗର ଅଧ୍ୟାପିକା ମନ୍ମୟୀ ବାବୁ, ତାଙ୍କ ସାନ ଭଉଣୀ ମଧ୍ୟ ଏଥିରେ ପ୍ରଚ୍ଛଦସଂଗୀତ ପରିବେଷଣ କରିଥିଲେ । ପୁରସ୍କାର ପାଇ ନଥିଲେ ହେଁ ନାଟକଟି ଭଲ ଭାବରେ ମଞ୍ଚସ୍ଥ ହୋଇଥିଲା ।

କେବଳ ସଂଗଠନ ନୁହେଁ, ଅଭିନେତା, ନିର୍ଦ୍ଦେଶକ ଭାବରେ ମଧ୍ୟ ଯୋଗଦାନ ଥିବାରୁ ଭବିଷ୍ୟତ ଯୋଜନା ପ୍ରତି ମୁଁ ଟିକିଏ ଅଧିକ ବ୍ୟଗ୍ରତା ପ୍ରକାଶ କରୁଥିଲି । ସାମାଜିକ, ସାମ୍ପ୍ରତିକ ଘଟଣାବଳୀକୁ ବାଦ୍ ଦେଇ ଭିନ୍ନ ସ୍ୱାଦର ନାଟକଟିଏ ଅଭିନୀତ କରିବାର ଇଚ୍ଛା ମୋତେ ଗ୍ରାସ କରିଦେଉଥାଏ । କୌଣସି ଏକ ମୁହୂର୍ତ୍ତରେ ମୁଣ୍ଡକୁ ଐତିହାସିକ ନାଟକ ପ୍ରତି ଆଗ୍ରହ ଜନ୍ମିବାରୁ ସୁରେନ୍ଦ୍ର ସାଏଙ୍କ ଉପରେ ଭଲ ସମ୍ବଲପୁରୀ ନାଟକ ନଥିବାରୁ ତାଙ୍କ ସଂଘର୍ଷପୂର୍ଣ୍ଣ ଜୀବନକୁ ନେଇ ନାଟକଟିଏ କଲେ ଲୋକାଦୃତ ହେବ ବୋଲି ଧାରଣା ସୃଷ୍ଟି ହେଲା । ବାରୁଦା, ଉତ୍ତମ ଆଦିଙ୍କ ସହ ଏ ବାବଦରେ ଆଲୋଚନା କଲି । ପାଣ୍ଡୁଲିପି ନ ପାଇବାଯାଏଁ ଏ ପ୍ରକାର ନିଷ୍ପତ୍ତି ନିଆଯାଇପାରିବ ନାହିଁ ବୋଲି ରୋକ୍‌ଠୋକ୍ ଜଣାଇଦେଲେ । ମୁଁ କିନ୍ତୁ ନଛୋଡ଼ବନ୍ଧା । ସମୟ ସୁବିଧା ଦେଖି ମଙ୍ଗଳୁବାବୁଙ୍କ ନିକଟକୁ ଯାଇ ଏ ସମ୍ବନ୍ଧରେ ଆଲୋଚନା କଲି । ଏହା ହେବ ସୃଷ୍ଟିର ମେଗା ପ୍ରୋଜେକ୍ଟ । ଦୃଶ୍ୟ ପରେ ଦୃଶ୍ୟ, ଚରିତ୍ର ଆହରଣ, କଳ୍ପଚରିତ, ଐତିହାସିକ ସତ୍ୟତା, ଏଭଳି ବିଭିନ୍ନଦୃଷ୍ଟିରୁ ନାଟକର ଗଠନାତ୍ମକ ଦିଗଉପରେ ଆଲୋଚନା କଲୁ । ପରିଶେଷରେ ମଙ୍ଗଳୁବାବୁ ଲେଖିବା ପାଇଁ ରାଜିହେଲେ । ରାଜି ମାନେ, ମଙ୍ଗଳୁବାବୁ ଆଜିଯାଏଁ ମୋର କୌଣସି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ନାହାନ୍ତି । ନବେ ମାର୍ଚ୍ଚ ଆଡ଼କୁ ନାଟକ କରିବାର ଥାଏ । ପ୍ରାୟ ସାମାଧିକାଳ ସମୟକୁ ଉପଯୋଗ କରି ମଙ୍ଗଳୁବାବୁଙ୍କଠାରୁ 'ସୁନ୍ଦର ସାଏ' ନାମରେ ପାଣ୍ଡୁଲିପିଟି ମୋର ହାତକୁ ଆସିଗଲା । ଅନ୍ୟମାନଙ୍କ ସହ ପଢ଼ିବା ପୂର୍ବରୁ ମୁଁ ନିଜେ ବାରମ୍ବାର ପଢ଼ି ନାଟକର ରସ ଆସ୍ୱାଦନ କରିପକାଇଥିଲି ।

ଚାରୋଟି ମଞ୍ଚରେ ଏହି ନାଟକର ଦୃଶ୍ୟମାନ ସଜ୍ଜିତଥିଲା । ତ୍ରିମୁଖୀ ରଙ୍ଗମଞ୍ଚ ସହ ସମଗ୍ର ମଞ୍ଚସମ୍ମୁଖ ଅଞ୍ଚଳକୁ ମଧ୍ୟ ଏକ ଚତୁର୍ଥ କ୍ଷୁଦ୍ରମଞ୍ଚର ପରିକଳ୍ପନା କରି ଏକଦୃଶ୍ୟ ରଚିତ ହୋଇଥିଲା । ସୃଷ୍ଟିର ପ୍ରାୟ ସମସ୍ତ କଳାକାରଙ୍କୁ ଏକତ୍ରିତକରି ଫ୍ରେଜର କ୍ଲବରେ ସୁନ୍ଦର ସାଏ ନାଟକ ପଠିତହେଲା । ସମସ୍ତଙ୍କୁ ପାଣ୍ଡୁଲିପିଟି ଭଲ ଲାଗିବାସତ୍ତ୍ୱେ ସୁରେନ୍ଦ୍ର ସାଏଙ୍କ ଜୀବନୀକୁ ନେଇ ନାଟକ କରିବାପାଇଁ କେତେକ ଇଚ୍ଛା ପ୍ରକାଶ କଲେ ନାହିଁ ।

ବହୁ ଆଲୋଚନା ଓ ବୁଝାଶୁଝା କରିବାପରେ ଯାଇ ସମସ୍ତେ ସୁନ୍ଦରସାଏ ନାଟକପାଇଁ ସମ୍ମତି ପ୍ରଦାନ କରିଥିଲେ । ବ୍ୟକ୍ତିଗତଭାବରେ ମୁଁ ଭାବୁଥିଲି, ଏଯାଏଁ ସମ୍ବଲପୁରର ଲୋକମାନଙ୍କ ମଧ୍ୟରେ ସୁରେନ୍ଦ୍ରସାଏ ଜଣେ ସ୍ୱାଧୀନତାସଂଗ୍ରାମୀ ଥିବା ନେଇ ସନ୍ଦେହ ରହିଛି । ସୁନ୍ଦର ସାଏଙ୍କୁ ମଞ୍ଚାୟନ କରିବାପଥରେ ଏଥିଲା ପ୍ରଥମ ବାଧକ । ତଥାପି ମୋ ନିର୍ଦ୍ଦେଶନାରେ ରିହାର୍ସାଲ କାର୍ଯ୍ୟ ଆରମ୍ଭ ହେଲା । ମୋ ପାଇଁ ଏଥିଲା ସୃଷ୍ଟିର ଏକ ମେଗାପ୍ରୋଜେକ୍ଟ । ସୃଷ୍ଟିର ସଭ୍ୟମାନଙ୍କ ପ୍ରତି ମୋର ଗଭୀର ଆସ୍ଥାଥିଲା, ପରିଶ୍ରମକରିବାର ସବୁ ସାମର୍ଥ୍ୟଥିଲା ବୋଲି ଏଭଳି ଏକ ବଡ଼ନାଟକ କରିବାର ଦୁଃସାହସ କରାଯାଇଥିଲା ।

ଅନେକ ନାଟକକରି ଦର୍ଶକମାନଙ୍କୁ ହସାଇଛୁ, କନ୍ଦାଇଛୁ, ରଗାଇଛୁ, ଏ ନାଟକମାଧ୍ୟମରେ ଲୋକଙ୍କ ମଧ୍ୟରେ ଦେଶପ୍ରେମ, ଆଞ୍ଚଳିକ ସ୍ୱାଭିମାନପ୍ରତି ଜାଗରଣ ସୃଷ୍ଟିକରିବା ଉଦ୍ଦେଶ୍ୟରେ ମଙ୍ଗଳୁଚରଣ ବିଶ୍ୱାଳଙ୍କ ରଚିତ ନାଟକ ସୁନ୍ଦର ସାଏ, ସୁପରିକଳ୍ପିତ ଯୋଜନାରେ ରିହାର୍ସାଲ ଆଗକୁ ବଢ଼ିବାରେ ଲାଗିଲା । ନାଟକର ପୂର୍ଣ୍ଣସଫଳତା ପାଇଁ ମୁଁ ପ୍ରତ୍ୟହ ସ୍ୱପ୍ନ ଦେଖିବାରେ ଲାଗିଲି । ସ୍ୱପ୍ନର ସାର୍ଥକବିନ୍ୟାସ ପାଇଁ ସମସ୍ତେ ପ୍ରଚଣ୍ଡ ପରିଶ୍ରମପାଇଁ ପ୍ରସ୍ତୁତ ହୋଇଗଲେ । କୋଡିଏରୁ ଅଧିକ ଚରିତ୍ରରେ ସଜ୍ଜିତ ଏ ନାଟକର କଳାକାରସଂଖ୍ୟା ଅର୍ଦ୍ଧଶତାଧିକ ଥିଲା । ଏତେସଂଖ୍ୟକ କଳାକାରମାନଙ୍କୁ ନେଇ ନାଟକକରିବାର ନୂତନ ଅନୁଭବ ମନ ଓ ହୃଦୟକୁ ସଦା ଆନ୍ଦୋଳିତ କରୁଥିଲା । ଯେମିତି ହେଉ ସୁନ୍ଦରସାଏ ନାଟକକୁ ସଫଳଭାବରେ ମଞ୍ଚସ୍ଥକରି ସୁରେନ୍ଦ୍ରସାଏଙ୍କ ଅମରଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାକୁ ପଡିବ । ।



**ସୁ**ନ୍ଦରସାଏ ନାଟକପାଇଁ ଚାରୋଟି ମଞ୍ଚର ପରିକଳ୍ପନା କରାଯାଇଥିଲା । ତ୍ରିମୁଖୀ ରଙ୍ଗମଞ୍ଚରେ ସୁରେନ୍ଦ୍ର ସାଏଙ୍କ ଖିଣ୍ଡାସ୍ଥିତ ବାସଭବନ, ବାରପାହାଡର ଗୁମ୍ଫାଭିତରର ମନ୍ତ୍ରଣାକକ୍ଷ ଏବଂ ପାହାଡଜଙ୍ଗଲ ଘେରା ଏକ ପ୍ରାକୃତିକ ଦୃଶ୍ୟ, ଏହି ତିନୋଟି ଦୃଶ୍ୟ ଥିଲା ପ୍ରୋସେନିୟମ୍ ମଞ୍ଚରେ, ଚତୁର୍ଥମଞ୍ଚର ଅଞ୍ଚଳଟି ଥିଲା ମଝିମଞ୍ଚର ସମ୍ମୁଖରେ ଯେଉଁଠି ମୁକ୍ତାକାଶରେ ଦୁଇଟିଦୃଶ୍ୟ ଅଭିନୀତ ହେବାର ଥିଲା । ଗଙ୍ଗାଧର ମଣ୍ଡପର ଦୈର୍ଘ୍ୟପ୍ରସ୍ଥ ସେତେବେଳର ଯାହା ଥିଲା, ତାହାକୁ ସେଣ୍ଟ୍ରିନ୍‌ପଟାରେ ମଞ୍ଚର ଉଭୟ ପାର୍ଶ୍ୱକୁ ବଢ଼ାଇବାର ଯୋଜନା କରାଗଲା । ରିହାର୍ସାଲ ସହ ମଞ୍ଚସଜ୍ଜା ପାଇଁ ମଧ୍ୟ ସମ୍ମିଳିତ ଉଦ୍ୟମ ଆରମ୍ଭ ହୋଇଗଲା । ଆମ ମଞ୍ଚଶିଳ୍ପର ବିଶେଷଜ୍ଞ ଅଶୋକ ମିଶ୍ର, ଚିତ୍ରସେନ ମିଶ୍ରଙ୍କ ସହ ମୁଁ, ବାରୁଦା ଭଳି କିଛି ବନ୍ଧୁ ସୁରେନ୍ଦ୍ରସାଏଙ୍କ ଖିଣ୍ଡାସ୍ଥିତ

ଘରକୁ ଯାଇ ନିରୀକ୍ଷଣକରିଥିଲୁ । ତାଙ୍କ ଘରୁ କିଛି ଐତିହାସିକ ସନ୍ତକ ସଂଗ୍ରହକରି ଆଣିଥିଲୁ । ଅନ୍ୟଦିଗରେ ପାଣ୍ଠି ସଂଗ୍ରହପାଇଁ ମଧ୍ୟ ସମ୍ମିଳିତ ଉଦ୍ୟମଫଳରେ ଆମ ଭିତରେ ଆତ୍ମବିଶ୍ୱାସ ଜନ୍ମ ହୋଇଥିଲା ଯେ ଏତେବଡ଼ ବଜେଟ୍‌ର ନାଟକ ଆମେ ଆୟୋଜନ କରିପାରିବୁ । ତତ୍କାଳୀନ ଆୟକର ଅଫିସର୍ ପଠାଣ ପଣ୍ଡା ସହଯୋଗର ହାତବଢ଼ାଇ ଆମ ମନୋବଳ ଦୃଢ଼ କରିଥିଲେ । ଫ୍ରେଜର୍ କ୍ଲବରେ ରିହାର୍ସାଲ ଚାଲୁଥିବା ବେଳେ ତତ୍କାଳକୀନ ଜଳଯୋଗାଣ ବିଭାଗ ଏକ୍‌ଜିକ୍ୟୁଟିଭ୍ ଇଂଜିନିୟର ନୁନିଆ ପାଢ଼ୀ ଆମ ଗହଣକୁ ପଶିଆସି ଆମ ନାଟକବାବଦରେ ବୁଝାଶୁଝା କଲେ ଏବଂ ତହିଁ ପରଦିନ ତାଙ୍କ ଜାମାପକେଟରୁ ଟଙ୍କା ବିଡ଼ାଏ ମୋ ହାତରେ ଧରେଇଦେଇ କହିଲେ, ନିଅ, ନାଟକ ପାଇଁ ଖର୍ଚ୍ଚକରିବ । ସେ ଗଲାପରେ ଟଙ୍କା ବିଡାକୁ ଗଣିଲୁ, ସେଥିରେ ସାତହଜାର ଟଙ୍କା ଥିଲା । ସେତେବେଳେ ସୁଶୀଳ ମିଶ୍ର ମଧ୍ୟ କୌଣସି କାମରେ ସମ୍ବଲପୁର ଆସି ଆମସହ ଥିଲେ । ଟଙ୍କାବିଡ଼ା ପାଇ ସେ ପାଢ଼ୀବାବୁଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରିପକାଇଲେ । ପାଢ଼ୀବାବୁଙ୍କ ଏଭଳି ସହଯୋଗ କେବେ ଭୁଲିବାର ନୁହେଁ । ସେ ତ କେବଳ କାଗଜର ଟଙ୍କା ନଥିଲା, ବରଂ ଥିଲା ସମ୍ବଲପୁରୀ ସ୍ୱାଭିମାନର ଛାତିଖୋଲା ସମର୍ଥନ । ପାଣ୍ଠିପାଇଁ ଆମକୁ ବହୁ ପରିଶ୍ରମ କରିବାପାଇଁ ପଡିଥିଲା ।

ସୃଷ୍ଟିର ସୁନ୍ଦରସାଏ ନାଟକଟି ସମ୍ବଲପୁରର ନାଟ୍ୟ ମହଲକୁ ସରଗରମ୍ କରି ରଖିଥିଲା । ଏକ ପ୍ରଭାବଶାଳୀ ନାଟକର ପ୍ରଦର୍ଶନକୁ ସମସ୍ତେ ପ୍ରତୀକ୍ଷା କରିଥିଲେ ଯେମିତି । ଉତ୍ତମ ବେହେରା, ନାଟକର ଶୀର୍ଷକ ଚରିତ୍ର ସୁରେନ୍ଦ୍ର ସାଏ, ପ୍ରଦୀପ ପଣ୍ଡା। ଉଦନ୍ତ ସାଏ, ସାଧନାକମଳ ବହିଦାର, ସୁନାକୁମାରୀ, ତୃପ୍ତି ପଣ୍ଡା, ଅଞ୍ଜନା, ଝରାଟୁକେଲରେ ଇନ୍ଦିରା ଦାସ, ତାର ପ୍ରେମିକଚରିତ୍ରରେ ବାରୁଦା ତଥା ଅନ୍ୟାନ୍ୟ ଚରିତ୍ରଗୁଡ଼ିକରେ ଫଣିନ୍ଦ୍ର ପଣ୍ଡା, ସୂର୍ଯ୍ୟ ପାଣିଗ୍ରାହୀ, ଶ୍ରୀବାସ ଦୋରା, ଦୟାନିଧି ମେହେର ଚରିତ୍ରରେ ଚିତ୍ରସେନ ମିଶ୍ର, ବିଜୟ ପ୍ରଧାନ ଭଳି ଆହୁରି ଅନେକ କଳାକାର ଏହି ନାଟକରେ ଅଭିନୟ କରୁଥିଲେ । ନବ ମହନ୍ତମଙ୍କୁ ମଧ୍ୟ ବରଗଡ଼ରୁ ଡକାଗଲା ପ୍ରଚ୍ଛଦସଂଗୀତ ପାଇଁ । ଚାରୋଟି ଯାକ ମଞ୍ଚ ପରିଚାଳନା ପାଇଁ ସରୋଜ ଦାସଙ୍କ ସହ ଆଉ ଜଣଙ୍କୁ ନିୟୋଜିତ କରାଗଲା । ମଞ୍ଚର ଆଲୋକ ବ୍ୟବସ୍ଥା ପରିଚାଳନା ପାଇଁ ରାଉରକେଲାରୁ ସାରଦାଙ୍କୁ ଯୋଗାଯୋଗ କରାଯାଇ ଡକାଗଲା । ସାରାସହରର ନାଟକ ବିଜ୍ଞାପନ ପାଇଁ ପୋଷ୍ଟର, ହୋର୍ଡିଂ ଆଦିର ବ୍ୟବସ୍ଥା କରାଗଲା । ଗୋଲବଜାର ଛକସ୍ଥିତ ଲାଇବ୍ରେରୀ କୋଠା ଉପରେ ପ୍ଲାଇରେ ତିଆରି ସୁରେନ୍ଦ୍ରସାଏଙ୍କର ଏକ ପୂର୍ଣ୍ଣ ଅବୟବର ମୂର୍ତ୍ତୀ ଖଚିତ ହେଲା, ଗାଡ଼ି ଲଗାଇ ମାଇକ୍‌ଯୋଗେ ପ୍ରଚାର କରାଗଲା ।

ଧିରେଧିରେ କାମ ଆଗେଇ଼ାଇ ମଞ୍ଚନିର୍ମାଣ ପର୍ଯ୍ୟନ୍ତ ପହଞ୍ଚିଲା । ପିଏଚଡି ବିଭାଗରୁ ପ୍ରାୟ ଦେଢ଼ଶହ ଲୁହା ପାଇପ୍ ଅଣାଯାଇ ସମଗ୍ର ମଞ୍ଚଅଞ୍ଚଳ ଭିତରେ ଗାତ ଖୋଳାଯାଇ ପୋତାଗଲା । ପଟାରେ ମଞ୍ଚର ଉଭୟପାର୍ଶ୍ୱ ବଢ଼ାଯାଇ ଆମ ଯୋଜନା ମୁତାବକ ମଞ୍ଚତିଆରି ହେଲା । ବାରୁଦାଙ୍କ ମାଧ୍ୟମରେ କେନ୍ଦୁପତ୍ର ବିଭାଗରୁ ଅନେକ ନୂଆଁ ନୂଆଁ ତାଳପତ୍ରି ଅଣାଯାଇ ମଞ୍ଚର ଛାଉଣିରେ ଲଗାଗଲା । ଏତେ ବଡ଼ ଯୋଜନା ଦୁଇଦିନ ମଞ୍ଚାଭ୍ୟାସ ନକଲେ ଅସୁବିଧା ହେବ ବୋଲି ନାଟକ ପୂର୍ବ ଦୁଇରାତି ରିହାର୍ସାଲ ପାଇଁ ପ୍ରସ୍ତୁତ ହୋଇଗଲୁ । ନାଟକ ପୂର୍ବଦିନ ଅଶୋକ ମିଶ୍ର ମଞ୍ଚ ସଜ୍ଜାକୁ ପ୍ରାୟତଃ ଅନ୍ତିମ ସ୍ପର୍ଶ ଦେଉଥିଲେ । ସନ୍ଧ୍ୟାରେ ମଞ୍ଚଉପରେ ରିହାର୍ସାଲ, ଶବ୍ଦ ଓ ଆଲୋକ ସମ୍ପାତ ସହ ହେବାର ଥିଲା । ସାରଦା ତାଙ୍କର ଅଧିକାଂଶ ଆଲୋକ ସାମଗ୍ରୀ ମଞ୍ଚରେ ଲଗେଇ ସାରିଥିଲେ । ନଟରାଜ ଚିତ୍ରାଳୟର ମଲ୍ଲିକବାବୁ ତିନୋଟିଯାକ ମଞ୍ଚପାଇଁ ନୂଆଁ ଝାଲର୍ ଓ ପରଦା ତିଆରିକରି ମଞ୍ଚରେ ଲଗାଇଦେଲା ବେଳକୁ ମଞ୍ଚଟି ଆମ ଆଖିରେ ଝଲସିଯାଉଥାଏ । ଉତ୍ସାହ ଓ ଉତ୍କଣ୍ଠାରେ ପରିପୂର୍ଣ୍ଣ ଆମ ମନ, ଶରୀର ଓ ହୃଦୟ । ଠିକ୍ ସନ୍ଧ୍ୟା ହେଲା ବେଳକୁ ପ୍ରକୃତି ଦାଉ ସାଧିଲା, କୁଆଡୁ ଥିଲା କାଳବୈଶାଖୀ, ପ୍ରଚଣ୍ଡ ପବନ ସହ ତୁମୁଳ ବର୍ଷା ଆସି ସମଗ୍ର ମଞ୍ଚକୁ ଭାଙ୍ଗିରୁଜି ଛିନ୍ନଛତ୍ର କରିଦେଲା । ସବୁ କଳାକାର ପ୍ରାୟ ମଞ୍ଚରେ ଥିଲେ ରିହାର୍ସାଲପାଇଁ । ତତ୍କ୍ଷଣାତ୍ ସମସ୍ତେ ନିକଟସ୍ଥ ଟାଉନ୍‌ହଲ୍‌କୁ ଦୌଡ଼ି ପଳେଇଗଲେ, ଆଖିଆଗରେ ମଞ୍ଚରେ ବନ୍ଧାଯାଇଥିବା ଚାଳିଶଟି ଲୁହାପାଇପ୍ ଛିଣ୍ଡି ଯାଇ ଉପରୁ ତଳେ କଚାଡି ହୋଇପଡିଲା । ସେ ଭିତରେ ଚୂନାଚୂନା ହୋଇଗଲା, ନୂଆଁ ନୂଆଁ ତାଳପତ୍ରିମାନ କାଗଜଭଳି ଚିରିଫାଡ଼ି ଟୁକୁରାଟୁକୁରା ହୋଇଗଲା । ଏତେ ପରିଶ୍ରମ ବୃଥାରେ ଗଲା, ନାଟକ କେମିତି ହେବ, ସେ ନିର୍ଣ୍ଣୟ ନେବା ଆମପକ୍ଷରେ କଷ୍ଟକର ହୋଇପଡିଲା । ପରଦିନ ହେବାକୁଥିବାରୁ ନାଟକକୁ ପନ୍ଦରଦିନ ପାଇଁ ଘୁଞ୍ଚେଇ ଦିଆଯିବା ନିଷ୍ପତ୍ତି ସହ ସମସ୍ତେ ନିଜନିଜ ଘରକୁ ଫେରିଥିଲେ ।

ଏଭଳି ଦୁର୍ଘଟଣାର ସମ୍ମୁଖୀନହୋଇ ଆମ ମନୋବଳ ଦୁର୍ବଳ ହେବାରେ ଲାଗିଲା । ତଥାପି, ଯେହେତୁ ଆମେ ଟିକଟ ବିକ୍ରି କରିଛୁ, ଯେମିତିହେଉ ନାଟକ କରିବାପାଇଁ ପଡ଼ିବ । ନୂତନ ତାରିଖ ଘୋଷିତ ହେବାପରେ ପୁନଶ୍ଚ ରିହାର୍ସାଲ ଆରମ୍ଭ ହେଲା । ସମ୍ପାଦକ ଭାବରେ ସମସ୍ତଙ୍କୁ ଉତ୍ସାହିତକରି ସମସ୍ତଙ୍କ ମନରେ ନୂତନ ଉତ୍ସାହ ସୃଷ୍ଟିକରି ନାଟକପାଇଁ ଯୋଜନା ଠିକଣା ବାଟରେ ଆଗେଇଚାଲିଲା । ସାରଦାର ପ୍ରାୟ କୋଡିଏତିରିଶଟି ଦାମୀ ଆଲୋକ ସାମଗ୍ରୀ ଗତଥର ନଷ୍ଟହେବା ସତ୍ତ୍ୱେ ତାଙ୍କ ବାପା

ଆମକୁ ଭରସା ଦେଲେ ସେ ଆସି ସହଯୋଗ କରିବେ । ନାଟକ ପୂର୍ବରାତି ମଞ୍ଚାଭ୍ୟାସ ହେଲା । ସାମାନ୍ୟବର୍ଷା ହେଲେ ସୁଦ୍ଧା ସେମିତି କିଛି ନଷ୍ଟ କରି ନଥିଲା । ନାଟକ ମଞ୍ଚସ୍ଥ ହେବା ଦିନ ଦ୍ୱିପରବେଳକୁ ଭଲ ଅସରାଏ ବର୍ଷାହେବାରୁ ଆମେ ଦୁଇଦିନର ନାଟକକୁ ଗୋଟିଏ ରାତି ପାଇଁ ମଞ୍ଚସ୍ଥ କରିବା ଯୋଜନା ଆଗରୁ କରିସାରିଥିଲୁ । ନାଟକଦିନ ବର୍ଷାସତ୍ତ୍ୱେ ସନ୍ଧ୍ୟାରେ ପାଗ ନିର୍ମଳ ଦେଖାଗଲା । ସବୁକଳାକାର ନିର୍ଦ୍ଦିଷ୍ଟ ସମୟରେ ଆସି ନିଜନିଜ ମେକଅପ୍ ନେଇଗଲେ । ସୁନ୍ଦର ସାଏ ଚରିତ୍ର ପାଇଁ ଉତ୍ତମ ବେହେରାଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ବରିଷ୍ଠଶିଳ୍ପୀ ବାଲୁଙ୍କେଶ୍ୱର ବରାଇଙ୍କୁ ଆମନ୍ତ୍ରଣ କରିଥିଲୁ, ସେ ପ୍ରଥମକରି ସୁରେନ୍ଦ୍ରସାଏଙ୍କ ତୈଳଚିତ୍ର ଅଙ୍କନ କରିଥିଲେ । ଠିକ୍ ସେହି ସମୟରେ ଜଣାଗଲା, ସୁରେନ୍ଦ୍ରସାଏଙ୍କ ଜନୈକ ଭ୍ରାତା ଭୂମିକାରେ ଅଭିନୟ କରୁଥିବା କଳାକାର ଶ୍ରୀବାସ ଦୋରା ଜରୁରୀ କାମରେ ମୋତେ ନଜଣାଇ ଦିଲ୍ଲୀ ପଳେଇଗଲେ । ବାଧ୍ୟହୋଇ ସେହି ଚରିତ୍ରରେ ମୋତେ ମଞ୍ଚରେ ଓହ୍ଲାଇବାପାଇଁ ପଡିଲା । ମୁଁ ଭାବିପାରିଲି ନାହିଁ, ମୁଁ ଏତେବଡ଼ ନାଟକର ନିର୍ଦ୍ଦେଶକ, ଅଭିନୟକରି କିଭଳି ସମ୍ଭାଳିବି ! ତଥାପି ନାଟକ ଆରମ୍ଭ ହେଲା, ହଜାରିବାଗ୍‌ଜେଲ୍ ଭାଙ୍ଗି ମାତୃଭୂମିକୁ ପ୍ରତ୍ୟାବର୍ତ୍ତନ କରିଥିବା ସୁରେନ୍ଦ୍ର ସାଏଙ୍କୁ ବିପୁଳ ସମ୍ବର୍ଦ୍ଧନା ଦେବାର ଦୃଶ୍ୟରୁ । ମଞ୍ଚ ସମ୍ମୁଖରେ ଅଭିନୀତ ହେଉଥିବା ଏହି ଦୃଶ୍ୟରେ ଢୋଲନିଶାଣର ଦୁନ୍ଦୁଭି ଗର୍ଜ୍ଜିଲା, ସଦଳବଳେ ସୁରେନ୍ଦ୍ରସାଏ ମଞ୍ଚ ପ୍ରବେଶ କଲେ । ମୋ ମନଭିତରେ ସେତେବେଳେ ଭାବନାଥିଲା, ଯା'ହେଉ, ନାଟକ ଆରମ୍ଭ ହୋଇଗଲା, ଏବେ ଅନ୍ତତଃ ଆଉକେହି ଅଭିଯୋଗ କରିପାରିବେ ନାହିଁ ଯେ ସୃଷ୍ଟି ନାଟକ କଲାନାହିଁ ବୋଲି । ମୁଁ ପୁଣି ମେକଅପ୍‌ରେ ଅଛି, ପରବର୍ତ୍ତୀ ଦୃଶ୍ୟରେ ମୋର ସଂଳାପ ମଧ୍ୟ ଅଛି ।

ଦୃଶ୍ୟ ଆରମ୍ଭହେଲା ମଝିମଞ୍ଚରେ । ବୁଢ଼ାରଜା ପାହାଡ଼ ତଳେ ବିପୁଳ ଲୋକ ସମାଗମରେ ସୁରେନ୍ଦ୍ର ଅତୀତର ଅନୁଭୂତି ଓ ଭବିଷ୍ୟତର ସଂଗ୍ରାମ ବାବଦରେ ଓଜସ୍ୱିନୀ ଭାଷାଣ ଦେଉଥାନ୍ତି, ନାଟକର ପ୍ରାୟ ପନ୍ଦର ମିନିଟ ପାରି ହୋଇଯାଇଥିଲା, ହଠାତ୍ ଲାଇଟ୍ ଚାଲିଗଲା । ସମଗ୍ର ମଞ୍ଚଟି ଅନ୍ଧାରରେ ଢାଙ୍କିହୋଇଗଲା, ଦର୍ଶକମଣ୍ଡଳୀ ମଧ୍ୟ । ସମଗ୍ର ସହରରେ ଲାଇଟ ନଥିଲା । ଏମିତି କହୁକହୁ ଦଶମିନିଟ ଭିତରେ ଆଲୋକ ଆସିଗଲା, ବଡ଼ କଷ୍ଟରେ ଏ ମଞ୍ଚରୁ ସେ ମଞ୍ଚ ଧାଇଁଧାଇଁ ନାଟକଟି ପ୍ରଦର୍ଶିତ ହେଲା । ଅନେକ କଳାକାର ଭଲ ଅଭିନୟ କରିଥିଲେ । ଉତ୍ତମ, ବାରୁଦା, ପ୍ରଦୀପ, ଫଣିନ, ତୃପ୍ତି, ସାଧନା, ଇନ୍ଦିରା, ଚିତ୍ରସେନ ଆଦି ନାଟ୍ୟଶିଳ୍ପୀମାନେ ଭଲ ଅଭିନୟକରି ନାଟକର ମାନମହତ ବଞ୍ଚାଇଥିଲେ । ନାଟକଟି ବିନା ପ୍ରତିବନ୍ଧକରେ ଶେଷପର୍ଯ୍ୟନ୍ତ

ଅଭିନୀତ ହେଲା । ତେବେ ଯେଉଁ ଉତ୍ସାହରେ ଯୋଜନାଟି ଆରମ୍ଭ ହୋଇଥିଲା, ସେଭଳି ହୋଇପାରି ନଥିଲା । ମୁଁ ତ ଭାବୁଥିଲି, ସୁନ୍ଦରସାଏ ନାଟକ ମଞ୍ଚସ୍ଥ କରିବା ପାଇଁ ଆମକୁ ଯେଉଁ ସଂଘର୍ଷ କରିବା ପାଇଁ ପଡ଼ିଲା, ତାହା ସୁରେନ୍ଦ୍ରସାଏଙ୍କ ସଂଘର୍ଷକୁ ମଧ୍ୟ ବଳିଗଲା ।

ପ୍ରାୟ ପଇଁତିରିଶହଜାର ଟଙ୍କା ଖର୍ଚ୍ଚ ହୋଇଥିଲା ଏ ନାଟକପାଇଁ । ତେବେ ବାଧା ପରେ ବାଧାର ସମ୍ମୁଖୀନ ହୋଇ ଯେଉଁ ସଫଳତା ମିଳିବାକଥା, ତାହା ସେହି ପରିମାଣରେ ମିଳିନଥିଲା । କେବଳ ଏତିକିନୁହେଁ, ସୃଷ୍ଟିର ସଭ୍ୟମାନଙ୍କ ଭିତରେ ଧିରେଧିରେ ଫାଟ ଦେଖାଗଲା, ଆମ ମନୋବଳ ପ୍ରାୟତଃ ଭାଙ୍ଗିସାରିଥିଲା । ଏଭଳି ପରିବେଶଟିଏ ସୃଷ୍ଟିହେଲା, ଆମଭିତରେ ସନ୍ଦେହ ଜନ୍ମ ନେଲା ଯେ ସୃଷ୍ଟି ଆଉ ନାଟକ କରିପାରିବ ନା ନାହିଁ! ସଫଳତା ଆସେ ବସନ୍ତର ମଳୟ ଭାବରେ, ମନ ଓ ହୃଦୟକୁ କେତେବେଳେଯେ ଛୁଇଁ ଦେଇ ଉଭାନ୍ ହୋଇଯାଏ, ଜଣାପଡେନି । ହେଲେ, ବିଫଳତା ଆସେ ଝଡରୂପରେ ଏଭଳି ଛିନ୍ନଛତ୍ର କରିଦିଏ ଯେ ପୁଣିଥରେ ଟୁକୁରାକାଚକୁ ଯୋଡ଼ିବା ଅସମ୍ଭବ ହୋଇପଡେ । ହୁଏତ ମୋର ଅତ୍ୟାଭିଳାଷୀ ମନ ସୁନ୍ଦରସାଏ ନାଟକର ବିଫଳତାପାଇଁ ଦାୟୀ ହୋଇପାରେ, କିନ୍ତୁ କାଳବୈଶାଖୀ, ଝଡ଼ିବର୍ଷାପାଇଁ ତ ମୁଁ ନିଜକୁ ଦାୟୀ କରିବିନାହିଁ । ଶେଷ ରାତିରେ ଲାଇଟ୍ ଚାଲିଯିବା ଘଟଣାପାଇଁ ମୋତେ ତ ଦାୟୀ କରାଯାଇନପାରେ! ଭାବିବାର କଥା, ରିହାର୍ସାଲ ଦିନ ଯଦି ପାଗ ସ୍ୱାଭାବିକ ଥାଆନ୍ତା, କଥା ସମ୍ପୂର୍ଣ୍ଣ ଅଲଗା ହୋଇଥାନ୍ତା । ତଥାପି ଏଇ ଅବଶୋଷକୁ ମେଣ୍ଟାଇଲି ସୁନ୍ଦରସାଏ ନାଟକକୁ ବେତାରନାଟକ ଭାବରେ ରେକର୍ଡିଂ କରି । ସେତେବେଳର କାର୍ଯ୍ୟକ୍ରମ ନିଷ୍ପାଦକ ଭାଗିରଥୀ ମିଶ୍ରଙ୍କ ଉଦ୍ୟମ କ୍ରମେ ସୁନ୍ଦରସାଏ ଆକାଶବାଣୀ ସମ୍ବଲପୁରରୁ ପ୍ରଚାରିତ ହେଲା, କେବଳ ସେତିକି ନୁହେଁ, ସୁରେନ୍ଦ୍ରସାଏଙ୍କ ଜୟନ୍ତୀ ଅବସରବେଳେ ଆଜିଯାଏଁ ଜାନୁଆରୀ ତେଇଶ ତାରିଖ ରାତି ନ'ଟା ତିରିଶ୍ ମିନିଟରେ ପ୍ରସାରିତ ହୋଇଆସୁଛି ।

ତେବେ ଉଜୁଡ଼ି ଯାଇଥିବା ଘରସଂସାରକୁ ପୁନଃସଜାଡିବା ଯେମିତି କାଠିକର ପାଠ, ମେରୁଦଣ୍ଡ ଦୋହଲି ଯାଇଥିବା ସଂଗଠନକୁ ପୁଣି ଥରେ ସଂଗଠିତକରିବା ଦୁରୂହବ୍ୟାପାର । ମାତ୍ର ବର୍ଷେପରେ ଅପେକ୍ଷାକୃତ କମ୍ ଖର୍ଚ୍ଚର ନାଟକ ଭାଇ ବ୍ରଜେନ୍ଦ୍ରର ବୁର୍ଡି ମଞ୍ଚସ୍ଥକରି 'ସୃଷ୍ଟି' ମୃତ୍ୟୁସଂଜୀବନୀ ପାଇଲାଭଳି ଚେଇଁଉଠିଲା । ସୁନ୍ଦରସାଏ ନାଟକର ଅସଫଳତା ନାଟ୍ୟଜୀବନକୁ ଅନେକ ଶିକ୍ଷାଦେଲା, ତାକୁ ଦୃଷ୍ଟିରେ ରଖି ଆଗକୁ ବଢ଼ିବା ହିଁ ଶ୍ରେୟସ୍କର ।



ବ୍ରଜେନ୍ଦ୍ର ନାୟକ, ମୋ ସାନଭାଇ, ଯେ ବାବୁ ନାମରେ ଘରେ ଓ ବାହାରେ ପରିଚିତ, ଏକାଧାରରେ ଜଣେ ନାଟ୍ୟକାର ଓ ସଂଗୀତଜ୍ଞ। ତେୟାଅଶୀରେ ଉଲ୍‌ଟା ପୁର୍ଥୀ ନାଟକ ପରେ ଆଉ ପଛକୁ ନ ଓଲଟି ବହୁବର୍ଷ ଧରି 'କଖଗ' ଅନୁଷ୍ଠାନ ମାଧ୍ୟମରେ ଅଦ୍ୟାବଧି ନୂତନ ନାଟକମାନ ଅଭିନୀତକରି ମଞ୍ଚନାଟକର ବିକାଶ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ କାମ କରୁଛି। ବାବୁର ଲିଖିତ ନାଟକଗୁଡ଼ିକର ଭାଷା ପ୍ରାୟତଃ ସ୍ୱାଭାବିକ, ଅଳଙ୍କାରଶୂନ୍ୟ, ତେବେ ନାଟକୀୟଛଟା ପ୍ରଚୁର ପରିଲକ୍ଷିତ ହୋଇଥାଏ। ଉଲ୍‌ଟା ପୁର୍ଥୀ ପରେ ମୁନା ବୋଲି ଏକ ନାଟକ ଆଧୁନିକ ଜନଜୀବନର କଥା ଉପରେ ଆଧାରିତ। ଜଣେ ଭିନ୍ନକ୍ଷମ ବାଳକର ଯନ୍ତ୍ରଣାଗ୍ରସ୍ତ ଜୀବନ ଉପରେ ଏହି ନାଟକଟି ରଚିତ। ସଫଳ ମଞ୍ଚାୟନ ପରେ ଆକାଶବାଣୀ ସମ୍ବଲପୁର ତରଫରୁ ଏହା ପ୍ରସାରିତ ହୋଇଥିଲା, ଯାହା ମୋ ନିର୍ଦ୍ଦେଶନାରେ ପ୍ରଯୋଜିତ ହୋଇଥିଲା। ବର୍ତ୍ତମାନର ବିଶିଷ୍ଟ ଢୋଲବାଦ୍ୟକାର ଚନ୍ଦ୍ରଶେଖର ଦୁବେ ତାଙ୍କ କିଶୋରାବସ୍ଥାରେ ମୁନା ନାଟକର ଶୀର୍ଷକ ଭୂମିକାରେ ଅଭିନୟ କରିଥିଲେ। ପରେପରେ 'କଖଗ' ଅନୁଷ୍ଠାନ ତରଫରୁ ମାଙ୍କଡ଼ ଖାଏ କାଙ୍କଡ଼ କଷି, କର୍ଣ୍ଣଧାର, ଭାଲୁ ନାଟକରେ ବଜାଇ ବାଜା, ଉଲଟ୍ ପାଲଟ୍, ଦେଖ୍ ଭାଇ ଦେଖ୍, ନିଆଁ ଭଳି ବହୁ ସଫଳ ନାଟକମାନ ମଞ୍ଚସ୍ଥ ହୋଇ ସମ୍ବଲପୁରର ନାଟ୍ୟ ପରିବେଶକୁ ଉଜ୍ଜିବିତ କରିରଖିଥିଲା। ମଞ୍ଚନାଟକ ଭାବରେ ମୁଁ 'କଖଗ'ର କେବଳ ଗୋଟିଏ ନାଟକ ନିର୍ଦ୍ଦେଶନା ଦେଇଛି, ତାହା ହେଲା 'ବୁର୍ଚି'। ଏ ନାଟକଟି ବ୍ରଜେନ୍ଦ୍ରର ଏକମାତ୍ର ନାଟକ, ଯେଉଁଥିରେ ଲୋକଧର୍ମିତା ଅଛି। ଅବଶ୍ୟ ଏ ନାଟକ ରଚନାକାଳରେ ବାବୁସହ ମୋର ଅନେକ ଆଲୋଚନା ହୋଇଥିଲା ଏବଂ ଯେହେତୁ ବାବୁ ଏ ନାଟକର ନିର୍ଦ୍ଦେଶନା ଦାୟିତ୍ୱ ମୋଉପରେ ନ୍ୟସ୍ତ କରିଥିଲା ଏବଂ ମୋତେ ନେଇ ହିଁ ନାଟକର ମୁଖ୍ୟଚରିତ୍ର ବିନ୍ୟାସିତ ହୋଇଥିଲା। ତେଣୁ ନାଟକରେ ମୋରସ୍ପର୍ଶ ରହିବ ହିଁ ରହିବ।

'ବୁର୍ଚି' ସଂଚାର ବାହାକ ରୁଦ୍ରର ପାରିବାରିକ ଜୀବନ ଉପରେ ଆଧାରିତ। ମୁଁ ରୁଦ୍ରବାହାକ ଏବଂ ବାରୁଦା ମୋ ପାଳିଆ ଭୂମିକାରେ ଅଭିନୟ କରିଥିଲୁ। ନାଟକଟି ପ୍ରଥମେ ବାଲେଶ୍ୱର, ସମ୍ବଲପୁର ଏବଂ ପରେପରେ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ମଞ୍ଚସ୍ଥ ହୋଇଥିଲା। ବୁର୍ଚି ଏକାଦିକ୍ରମେ କଖଗ, ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦ ଓ ସୃଷ୍ଟି, ଡିନୋଟିଯୋକ ସଂସ୍ଥାଦ୍ୱାରା ବିଭିନ୍ନ ସହରରେ ମଞ୍ଚସ୍ଥହୋଇ ବହୁପ୍ରଶଂସିତ ହୋଇଥିଲା। ପ୍ରାଥମିକ ସ୍ତରରେ କଖଗ ତରଫରୁ ସମ୍ବଲପୁର, ବାଲେଶ୍ୱର ଆଦି ସ୍ଥାନରେ, ପରେ ପରେ ପଣ୍ଡିତ ଲକ୍ଷ୍ମୀ ନାରାୟଣ

ସାସ୍କୃତିକ ସଂସଦ ତରଫରୁ ରାଉରକେଲା ଏବଂ ସୃଷ୍ଟି ତରଫରୁ ସମ୍ବଲପୁରର ଗଙ୍ଗାଧର ମଣ୍ଡପରେ ବୁର୍ତି ନାଟକର ପରିବର୍ଦ୍ଧିତ ସଂସ୍କରଣ ମଞ୍ଚସ୍ଥ ହୋଇଥିଲା । ଭୁବନେଶ୍ୱରରେ ଜନକଲ୍ୟାଣ କ୍ଲବ୍ ତରଫରୁ ଆୟୋଜିତ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ମୁଁ ସର୍ବଶ୍ରେଷ୍ଠ ଅଭିନେତାଭାବରେ ପୁରସ୍କୃତ ହୋଇଥିଲି । ମୋସହ ବାରୁଦା, ତୃପ୍ତି, ସୌମେନ ପୂଜାରୀ, ଅଶୋକ ପାଣିଗ୍ରାହୀ ଆଦି କଳାକାରମାନେ ଅଭିନୟ କରିଥିଲେ । ରାଉରକେଲା ସ୍ପନ୍ଦନ ସଂସ୍ଥା ଆନୁକୂଲ୍ୟରେ ଆୟୋଜିତ ବହୁଭାଷୀ ନାଟକ ପ୍ରତିଯୋଗିତାରେ ବୁର୍ତି ଆଠଟି ଶ୍ରେଷ୍ଠପୁରସ୍କାର ପାଇଥିଲା । ମୋସହ ବାରୁଦା, ସଂଜୀବ ମାଝି, ତୃପ୍ତି, ସନ୍ତୋଷ ଆଦି କଳାକାରମାନେ ଅଭିନୟ କରିଥିଲେ । ରାଉରକେଲା ପ୍ରଦର୍ଶନରେ ମୋତେ ଖୁବ୍ ପରିଶ୍ରମ ପଡିଥିଲା । ଯେହେତୁ ପରିବର୍ଦ୍ଧିତ ସଂସ୍କରଣ ଭାବରେ ବୁର୍ତିର ଥିଲା ଏହା ପ୍ରଥମ ପ୍ରଦର୍ଶନ, ସଂଚାର ବାହାକ ଭାବରେ ମୃଦଙ୍ଗବଜାଇ ନାଚିବା, ଗାଇବା ଓ ତା'ସହ ଅଭିନୟକରିବା ଥିଲା ରୁଦ୍ରବାହକ ଚରିତ୍ରର ବିଶେଷତ୍ୱ । ଆଗରୁ ଜଣାଇଛି, ଧନୁପାଲିରେ ପ୍ରତିବର୍ଷ ଆୟୋଜିତ ହେଉଥିବା ଚନ୍ଦନଯାତ୍ରା ପାଇଁ ବିଭିନ୍ନ ଅଞ୍ଚଳରୁ ନିମନ୍ତ୍ରିତ ହେଉଥିବା ସଂଚାରବାହାକମାନଙ୍କୁ ନୃତ୍ୟଗୀତ ରାତିରାତି ଅନିଦ୍ରା ରହି ଦେଖିବାର ପ୍ରଭାବ ମୋଉପରେ ପଡିଥିଲା । ତାଳବାଦ୍ୟ ଉପରେ ପିଲାଟିବେଲୁ ଆଗ୍ରହଥିବାରୁ ଦେଖିଶୁଣି ଶିଖିବା ମୋର ଅଭ୍ୟାସରେ ପରିଣତ ହୋଇଥିଲା । ଢୋଲ, ମୃଦଙ୍ଗ, ମାଦଲ, ତବଲା, ଢୋଲକ, ନାଲ୍ ମୋତେ କେହି ଶିଖାଇନାହିଁ, ଅନୁକରଣ ଓ ଅନୁସରଣୀୟ କଳା ମାଧ୍ୟମରେ ଏସବୁ ବାଦ୍ୟଯନ୍ତ୍ରଗୁଡ଼ିକୁ ମୁଁ ଅକ୍ତିଆରକୁ ଆଣିପାରୁଥିଲି । ତେଣୁ ନାଟକରେ ଖାସ୍ ସଂଚାରବାହାକ ଚରିତ୍ରରେ ଅଭିନୟକରିବାର ଆଗ୍ରହରୁ ହିଁ ବୁର୍ତି ନାଟକର କଳ୍ପନା କରାଯାଇଥିଲା । ବାରୁଦାଙ୍କ ସହ ମୋର ଘନିଷ୍ଠତା, ତାଙ୍କର ଗାୟନକଳା ପ୍ରତି ଦକ୍ଷତା ବୁର୍ତି ନାଟକର ସଫଳତାର ଚାବିକାଠି । ସିଭିକ୍ ସେଣ୍ଟର, ରାଉରକେଲାରେ ଅଭିନୀତ ବୁର୍ତି, ମୋ ଅଭିନୟ ଜୀବନର ଅନ୍ୟତମ ସର୍ବଶ୍ରେଷ୍ଠ କଳାକୃତି ବୋଲି ମୁଁ ମନେକରେଁ । ପାଳିଆ ଭୂମିକାରେ ବାରୁଦାଙ୍କ ଅଭିନୟ ଏବଂ ଆନ୍ତରିକ ସହଯୋଗ ପାଇଁ ଏତେଗୁଡ଼ିଏ ସ୍ଥାନରେ ବୁର୍ତି ନାଟକ ଅଭିନୀତ ହୋଇପାରିଲା । 'କଖଗ' ତରଫରୁ ବୁର୍ତି ବେତାରନାଟକ ଭାବରେ ରେକର୍ଡିଂ କରାଯାଇ ପ୍ରସାରିତ ହୋଇଥିଲା । ବୁର୍ତି ରେଡିଓରେ ପ୍ରସାରିତହେବା ପରେ ବହୁଶ୍ରୋତା ଏ ନାଟକକୁ ପ୍ରଶଂସା କରି ରେକର୍ଡସଂଖ୍ୟକ ପତ୍ର ଲେଖିଥିଲେ । ପଶ୍ଚିମ ଓଡ଼ିଶାର ବହୁ ସଂଚାରବାହାକ ଏ ନାଟକଶୁଣି ଗର୍ବ ଅନୁଭବ କରିଥିବାର ସମ୍ବାଦ ମଧ୍ୟ ସେତେବେଳେ

ଆମର ହସ୍ତଗତ ହୋଇଥିଲା । ରୁଦ୍ରବାହାକର ପୁଅଚରିତ୍ର ଭାବରେ ବିଭିନ୍ନ ମଞ୍ଚରେ ସୁରେଶ ତ୍ରିପାଠୀ, ସୌମେନ୍ ପୂଜାରୀ, ପ୍ରଦୀପ ପଣ୍ଡା, ସଂଜୀବ ମାଝି ଆଦି ବହୁ ବିଶିଷ୍ଟ କଳାକାର ଅଭିନୟ କରିଥିଲେ । ଠିକ୍ ସେହିଭଳି ନାୟିକା ଭାବରେ ଅଞ୍ଜଳୀ, ଇନ୍ଦିରା ଦାସ, ତୃପ୍ତି ପଣ୍ଡା, ଗୌନ୍ତିଆ ଚରିତ୍ରରେ ଅଶୋକ ପାଣିଗ୍ରାହୀ, ଉତ୍ତମ ବେହେରା ଆଦି କଳାକାରମାନେ ଅଂଶଗ୍ରହଣ କରିଥିଲେ । ତେବେ ମୋସହ ବାରୁଦା, ପ୍ରାୟ ସମସ୍ତଅଞ୍ଚଳରେ ଆମ ନିଜନିଜ ଭୂମିକାରେ ଅଭିନୟ କରିଥିଲୁ ।

ସୃଷ୍ଟିର ସୁନ୍ଦରସାଏ ଅସଫଳତାର ତାଲିକାରେ ଅନ୍ତର୍ଭୁକ୍ତ ହୋଇଯିବାପରେ ପରବର୍ତ୍ତୀବର୍ଷ ଗଙ୍ଗାଧର ମଣ୍ଡପ ଶୂନ୍ୟ ପଡ଼ିଥିଲା । ତେବେ ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦ ତରଫରୁ ବୁର୍ତି ନାଟକ ସଫଳତାର ସହ ମଞ୍ଚସ୍ଥ ଓ ପୁରସ୍କୃତ ହେବାପରେ ନିର୍ଦ୍ଦେଶକଭାବରେ ମୁଁ ଆଗ୍ରହାନ୍ୱିତ ହୋଇ ପରବର୍ତ୍ତୀ ବର୍ଷରେ ସୃଷ୍ଟି ତରଫରୁ ଏହି ନାଟକକୁ ଗଙ୍ଗାଧର ମଣ୍ଡପରେ ମଞ୍ଚସ୍ଥ କରିବାର ପ୍ରସ୍ତାବ ବାଢ଼ିଲି । ବାରୁଦା, ଉତ୍ତମ, ସଂଜୀବ ଆଦି କଳାକାରମାନେ ସମ୍ମତ ହେବାପରେ ଉଦ୍ୟମ ଆରମ୍ଭହୋଇଥିଲା । ତଫାତ୍, ଏହି ନାଟକ ଗୋଟିଏରାତି ପାଇଁ ଅଭିନୀତ ହେବ, ଖର୍ଚ୍ଚ କମ୍ ହେବ, ଆଗରୁ ମଞ୍ଚାୟନ ହୋଇଥିବାରୁ କଳାକାର ବଦଳ ହେଲେ ହେଁ କମ୍ ଦିନର ରିହାର୍ସାଲରେ ଏହାକୁ ପ୍ରଦର୍ଶିତ କରିହେବ । ମୋର ପ୍ରଥମ ଲକ୍ଷ୍ୟ ଥିଲା, ସୃଷ୍ଟିକୁ ପୁନଃସଂଗଠିତ କରିବା, ସୃଷ୍ଟିର ନାଟ୍ୟପ୍ରଦର୍ଶନ ପ୍ରକ୍ରିୟା ଜାରିରହିବା, ଥରେ ସଂଗଠିତ ହୋଇଗଲେ ଭବିଷ୍ୟତରେ ଆହୁରି ନାଟକକରିବାର ଆଗ୍ରହ ଜନ୍ମିବା । ଅଭିନେତା ଭାବରେ ନୁହେଁ, ଜଣେ ସଂଗଠକଭାବରେ ବୁର୍ତି ନାଟକ ମଞ୍ଚାୟନ କରିବାର ମୋର ଦୂରଦୃଷ୍ଟିକୁ ବାରୁଦା ଓ ଉତ୍ତମ ଭଲ ଭାବରେ ହୃଦୟଙ୍ଗମ କରିଥିଲେ ଏବଂ ହାର୍ଦ୍ଦିକତାର ସହ ସହଯୋଗ କରିଥିଲେ । ତାପରେ ବୁର୍ତି ନାଟକର ମୁଖ୍ୟ ଭୂମିକାରେ ମୁଁ ଓ ବାରୁଦା ମଞ୍ଚରେ ଓହ୍ଲାଉଥିବାରୁ ନାଟକର ସଫଳତା ଆମ ହାତ ମୁଠାରେ ରହିଥିଲା । ଉତ୍ତମ ବି ସେତେବେଳେ ଥଟ୍ଟାରେ କହୁଥିଲେ, ଏଥର ଅଙ୍କଲଙ୍କ ପାଳି ! ! ଅର୍ଥାତ୍ ମୁଖ୍ୟ ଚରିତ୍ରରେ ଅଭିନୟ କରୁଥିବାରୁ ନାଟକଟିକୁ ସଫଳତାର ଶୀର୍ଷକୁ ନେବାର ଦାୟିତ୍ୱଥିଲା ମୋର । ସୁନ୍ଦରସାଏ ଭଳି ଖର୍ଚ୍ଚାନ୍ତ ହେବାକୁ ପଡିବନାହିଁ, ଅନେକ କଳାକାରମାନଙ୍କ ଉପରେ ନିର୍ଭରଶୀଳ ହେବାକୁ ପଡିବନାହିଁ ।

ଯୋଜନାନୁସାରେ ଗଙ୍ଗାଧର ମଣ୍ଡପରେ ଆୟୋଜନ ଆରମ୍ଭହେଲା । ବିଶେଷ କିଛି ଟେନ୍‌ସନ୍ ଉଠାଇବାକୁ ପଡ଼ିଲାନାହିଁ । ଆମ ପ୍ରସ୍ତାବ ଓ ଅନୁରୋଧରେ ବନ୍ଧୁ ତଥା ନଗରପାଳ ସୁରେଶ ପୂଜାରୀ ମଣ୍ଡପକୁ ମରାମତି କରି ତା ଉପରେ ଟିଣଛାଉଁଣି

ବ୍ୟବସ୍ଥା କରିଦେଲେ । ତେଣୁ ଲୁହାପାଇପ୍ ଆଣି ପୋତି ମଞ୍ଚତିଆରି କରିବାର ପରିଶ୍ରମର ଆଉ ଆବଶ୍ୟକତା ପଡିଲା ନି । କିଛି ଦିନ ତଳେ ସମ୍ବଲପୁରଠାରେ ରଙ୍ଗମଞ୍ଚର ଆବଶ୍ୟକତା ଉପରେ ଅଲୋଚନା କରିଥିଲି । ଭୁଖାକୁ ବାଦ୍‌ଦେଲେ ସୃଷ୍ଟିର ବାକି ସମସ୍ତନାଟକ ଗଙ୍ଗାଧର ମଣ୍ଡପରେ ହିଁ ଅଭିନୀତ ହୋଇଛି । ତେବେ, ଏକାଅଶୀର ଉଖୀ ନାଟକ ପରେ ଏକାନବେରେ ବୁର୍ଚି ନାଟକବେଳେ ଯାଇ ମଞ୍ଚରେ ସ୍ଥାୟୀ ଛାଉଣିଟିଏ ମିଳିବାର ସୁଯୋଗ ମିଳିଥିଲା । ତେବେ ସମସ୍ତ ଆୟୋଜନ ସତ୍ତ୍ୱେ ବୁର୍ଚି ନାଟକ ମଞ୍ଚାୟନସମୟରେ ଏଭଳି ଏକ ଘଟଣା ଘଟିଲା, ଯାହା ବୁର୍ଚିର ସମସ୍ତ କଳାକାରମାନଙ୍କ ସଙ୍ଗେ ଦର୍ଶକମାନଙ୍କୁ ମଧ୍ୟ ଚକିତ କରିଥିଲା । ନାଟକ ଆରମ୍ଭ ହେଲା, ଦର୍ଶକମାନଙ୍କ ଦ୍ୱାରା ପରିପୂର୍ଣ୍ଣ ପ୍ରେକ୍ଷାଳୟ, ପ୍ରଥମ ଦୃଶ୍ୟରେ ହିଁ ମୋର ବାରୁଦାଙ୍କ ସଞ୍ଚାର ନୃତ୍ୟ । ଦର୍ଶକ ନାଟକର ପ୍ରତିଟି ଦୃଶ୍ୟସହ ଜଡ଼ିତହୋଇ ସାରିଥିଲେ । ହଠାତ୍ ମଣ୍ଡପକୁ ଲାଗି ହୀରାକୁଦ କଲୋନୀ ଆଡ଼କୁ ଯାଉଥିବା ରାସ୍ତାକୁ ଏକ ବରଯାତ୍ରୀଦଳ ବାଜାଗଜା ସହ ମୁଖ୍ୟଦ୍ୱାରରୁ ପ୍ରବେଶ କଲେ । ସେହି ସମୟରେ ମୋର ଏକ କରୁଣାତ୍ମକ ଦୃଶ୍ୟ ଚାଲିଥିଲା । ତ୍ରମ୍‌ବାଦ୍ୟ ସହ ବରଯାତ୍ରୀଙ୍କ ଉଶୃଙ୍ଖଳନୃତ୍ୟ ପ୍ରାୟ ପନ୍ଦରମିନିଟ୍ ଆମ ନାଟକର ପ୍ରବାହକୁ ସମ୍ପୂର୍ଣ୍ଣଭାବରେ ବ୍ୟାଘାତ ସୃଷ୍ଟି କରିଥିଲା । ଏ ଘଟଣା, ନା ପ୍ରାକୃତିକ, ନା ମଣିଷ କୃତ୍ୟ, ଏଭଳି ଘଟଣାକୁ ଭାଗ୍ୟଦୋଷ ବୋଲି କହିବା ନା କଣ କହିବା, ପାଠକେ ବିଚାର କରିବେ । ଗଙ୍ଗାଧର ମଣ୍ଡପରେ ନାଟକକଲେ ଏଭଳି ଅସୁବିଧାର ସମ୍ମୁଖୀନ ହେବାକୁପଡ଼ିଥାଏ । ପ୍ରେକ୍ଷାଳୟ ସମ୍ପୂର୍ଣ୍ଣଭାବରେ ଆଚ୍ଛାଦିତ ନ ହୋଇଥିଲେ, ମ୍ୟୁନିସିପାଟି ଛକର ହାଇମେକ୍ସ ଆଲୋକ ନାଟ୍ୟମଞ୍ଚରେ ପଡ଼ିବାମଧ୍ୟ ଏକ ଅସୁବିଧା । ମଞ୍ଚ ସମ୍ପୂର୍ଣ୍ଣ ଅନ୍ଧକାର ନହେଲେ ନାଟକ ପ୍ରଯୋଜନାରେ ବ୍ୟାଘାତ ଘଟିଥାଏ । ବୁର୍ଚିର ସଫଳତା ସୃଷ୍ଟିର ମନୋବଳ ଦ୍ୱିଗୁଣିତ କରିଥିଲା । ପରବର୍ଷେ ବଡ଼ନାଟକ କରିବାର ଆତ୍ମବିଶ୍ୱାସ ଜନ୍ମନେଲା ।

ନାଟ୍ୟୋତ୍ସବ-୮୮ ପରେ ଆର୍ଟିଷ୍ଟ ଫୋରମ୍ ସଂଗଠନ ମଧ୍ୟ ଦୁର୍ବଳ ହୋଇଗଲା । ଆଉ ସଂଗଠିତ ଭାବରେ ନାଟକୋତ୍ସବ ଆୟୋଜନ କରିବାର ଉଦ୍ୟମ ହେଲା ନାହିଁ । ବୁର୍ଚି ନାଟକ ପରେ ମୋର ଗବେଷଣାକାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ଜ୍ୟୋତିବିହାର ଯାଇ କୁମୁଦସାର୍‌ଙ୍କୁ ଦେଖାକଲି । ସାର୍ ମୋର ଅବହେଳାକୁ ମୃଦୁ କଟାକ୍ଷ କରି କହିଥିଲେ, ତମେ ତ କାଲି ନାଟକ କରୁଛ, ଆଉ ଥେସିସ୍ କେବେ ଲେଖିବ ? ସାର୍‌ଙ୍କର ଏଇ ପଦୁଟିଏ କଥା ମୋର ଅନୁସନ୍ଧିତ୍ସୁ ମନକୁ ସତ୍‌ସାହସ ପ୍ରଦାନ କଲା । ମୁଁ କୁମୁଦସାର୍‌ଙ୍କୁ କଥାଦେଲି, ଏବେ ଆଉ ବିଳମ୍ବ ହେବ ନାହିଁ ।

ଏପଟେ କଲେଜ, ଚିଚିଣ୍ଡାରେ ରହଣି, ସେପଟେ ସମ୍ବଲପୁରର ନାଟ୍ୟପରିବେଶ, ଏଭଳି ପରିବେଷ୍ଟନୀରେ ମୁଁ ଚିଚିଣ୍ଡାର ସେହି ଅସଜଡ଼ା କୋଠରୀରେ, ବାହ୍ୟପ୍ରଦୂଷଣ ସତ୍ତ୍ୱେ ସନ୍ଦର୍ଭଲେଖା ଆରମ୍ଭ କଲି । ଆଗରୁ କ୍ଷେତ୍ର ଅଧ୍ୟୟନ ସାରିଥିବାରୁ ଲେଖିବାରେ ଅସୁବିଧା ହେଲା ନାହିଁ । ଉଭୟ, ଘରକୁ ଆସିଲେ ଅଧ୍ୟୟନ କରିଥିବା ପୁସ୍ତକର ଟିପ୍ପଣି ଏବଂ ଚିଚିଣ୍ଡାରେ ଲୋକଗୀତଗୁଡ଼ିକର ବ୍ୟାଖ୍ୟା, ପରେ ପରିଚ୍ଛେଦ ଅନୁଯାୟୀ ଜ୍ୟୋତିବିହାର ଯାଇ ସାର୍‌ଙ୍କ ସହ ଆଲୋଚନା, ସୁଧାରଆଦି କାର୍ଯ୍ୟ ସମାନ୍ତରାଳଭାବରେ ଆଗେଇ ଚାଲିଲା । ତୃତୀୟ ପରିଚ୍ଛେଦ ଶେଷ ହେବାପରେ କୁମୁଦସାର୍‌ଙ୍କ ମୋ ପ୍ରତି ଆସ୍ଥା ଆସିଲା ଯେ, ଦ୍ୱାରିକା ନିଶ୍ଚୟ ଏ ନିବନ୍ଧ ଲେଖିପାରିବ । ତେୟାନବେ ମଧ୍ୟଭାଗରେ ମୁଁ ସମସ୍ତ ଲେଖା ସାର୍‌ଙ୍କ ସୁଧାରପରେ ଓତାରିବା ଆରମ୍ଭ କଲି । ହରି ହୋଟେଲ୍‌ର ସେହି ବିପର୍ଯ୍ୟସ୍ତ କୋଠରୀର ଗୁନ୍ଥୁଆ ଖଟରେ ବସି, ଦୁଇଜଂଘରେ କଳା ଛୋଟଏଟେଚିକୁ ପଟାଭାବରେ ବ୍ୟବହାରକରି କାର୍ବନ୍‌ଉପରେ କାର୍ବନ୍ ପକାଇ ଅବଶେଷରେ ଉପସ୍ଥାପନପାଇଁ ଚାରୋଟି କପି ପ୍ରସ୍ତୁତକଲି । ଜ୍ୟୋତିବିହାରର ଜନୈକ ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ଦ୍ୱାରା ବନ୍ଧାଇକାର୍ଯ୍ୟ ସମାପନପରେ ସାର୍‌ଙ୍କ ସାଟିଫିକେଟ ପାଇ କର୍ତ୍ତୃପକ୍ଷଙ୍କଠାରେ ଉପସ୍ଥାପନ କରିଦେଲି । ଏତେ ବଡକାମ, ମୋଦ୍ୱାରା ହୋଇପାରିବ କି ନା, ମୁଁ ନିଜେ ସନ୍ଦିହାନ୍ ଥିଲି । ତେବେ କାର୍ଯ୍ୟରେ ଏକନିଷ୍ଠତା, କାର୍ଯ୍ୟରେ ସମ୍ପୂର୍ଣ୍ଣ ମନୋନିବେଶ ପାଇଁ ହିଁ ଏହା ସମ୍ଭବ ହୋଇପାରିଥିଲା । ଶେଷତାରିଖର ଦିନକପୂର୍ବରୁ ଥେସିସ୍ ଉପସ୍ଥାପନ କରିଥିବାରୁ ମୁଁ ନିଜକୁ ଶତଧନ୍ୟବାଦ ଅର୍ପଣ କରିଥିଲି ।

ତେୟାନବେ ବେଳକୁ ମୁଁ ଚିଚିଣ୍ଡା ଧନୁଯାତ୍ରାରୁ ସମ୍ପୂର୍ଣ୍ଣ ଦୂରେଇ ଯାଇଥିଲି । ତେବେ ଜାନୁଆରୀ ମାସରେ ଧନୁଯାତ୍ରା ଚାଲିଥିବାବେଳେ ହଠାତ୍ ମୋ କୋଠରୀରେ ସଂଗଠକ ଗରୁଡ଼ବାବୁ ଆସି ଗୋଟିଏରାତି ପାଇଁ ରାଜମୁକୁଟ ପିନ୍ଧି କଂସ ଭୂମିକାରେ ଅବତୀର୍ଣ୍ଣ ହେବାକୁ ଅନୁରୋଧ କଲେ । ସେରାତି କେହିଜଣେ ବିଶିଷ୍ଟଅତିଥି ଧନୁଯାତ୍ରାକୁ ନିମନ୍ତ୍ରିତ ହୋଇଥିବାରୁ ତାଙ୍କ ପାଇଁ କଂସ ଭୂମିକାରେ ଅଭିନୟ କରୁଥିବା ଅଭିନେତା ସମ୍ପୂର୍ଣ୍ଣ ଅନଭିଜ୍ଞ ବୋଲି ସେ ମୋତେ ପ୍ରବର୍ତ୍ତାଇଥିଲେ । ମୁଁ ମୋର ସମ୍ମତି ଗୋଟିଏସର୍ତ୍ତରେ ଦେବି ବୋଲି କହିଲି । ସେ ମଧ୍ୟ ସେଥିରେ ରାଜି ହେବାରୁ ମୁଁ ତାଙ୍କୁ 'ହଁ' ଭରିଲି । ମୋ ସର୍ତ୍ତ ଥିଲା ଯେ, ଏବେ ଅଭିନୟ କରୁଥିବା କଳାକାର ଯଦି ସମ୍ମତ ହେବେ, ତେବେ ଯାଇ, ମୁଁ ବେଷଭୁଷାପାଇଁ ସମ୍ମତି ଦେବି ।

ମେକ୍‌ଅପ୍ ସମୟ ଉପନୀତ ହେବାପରେ ମୁଁ ଯାଇ ବେଶକୋଠରୀରେ ହାଜର୍ । ଅନ୍ଧାରୁବାବୁ ମୋତେ ଦେଖି ଖୁସି ଜାହିର କଲେ । ସେ ମୋତେ ସେଇ କଳାକାରଙ୍କ ସହ ପରିଚୟ କରାଇଲେ । ମୁଁ ନମ୍ରତାର ସହ ଦିନକପାଇଁ କଂସ ଭୂମିକାରେ ଅଭିନୟକରିବା ଅନୁମତି ମାଗିଲି । ସେ ମଧ୍ୟ ବିନମ୍ରହୋଇ ତାଙ୍କ ସମ୍ମତି ପ୍ରଦାନ କଲେ । ତାପରେ ବାଙ୍କା, ମୋର ମେକ୍‌ଅପ୍ ଓ ବେଷଭୂଷାରେ ବ୍ୟସ୍ତ ରହିଲା । ବେଶ ହେବା ବେଳେ ମୁଁ ଅନ୍ଧାରୁବାବୁଙ୍କ କହିଥିଲି, ଆଜ୍ଞା, ଆଜି ରାତି ମୋର କଂସ ଅଭିନୟ ଜୀବନର ଶେଷରଜନୀ । ଆଜି ହୃଦୟଖୋଲା ଅଭିନୟକରିବା, କେଜାଣି, ଆଉ ଭବିଷ୍ୟତରେ ଆମେଦୁହେଁ ମଞ୍ଚରେ ଏକାଠି ହେବା ନା ନାହିଁ । ଏ ଥିଲା ମୋର କଂସାଭିନୟର ସପ୍ତମ ବର୍ଷର ଶେଷ ରାତି ।।



ଭିଖାନାଟକ ପରେପରେ ସମ୍ବଲପୁରୀ ନାଟକର ଦ୍ରୁତ ବିକାଶକୁ ଦୃଷ୍ଟିରେରଖି ନବେମସିହାରେ ଝାଡ଼ୁଆପଡାର ଆରଣ୍ୟକମଞ୍ଚରେ 'ସୃଷ୍ଟି' ସଂସ୍ଥା ତରଫରୁ ସମ୍ବଲପୁରୀ ନାଟକର ସୁବର୍ଣ୍ଣଯୁଗ ନାମରେ ଏକ ଦ୍ୱି-ଦିବସୀୟ ଉତ୍ସବ ଆୟୋଜିତ ହୋଇଥିଲା । ଡ. ଶ୍ରଦ୍ଧାକର ସୁପକାରଙ୍କ ଭଳି ବିଜ୍ଞବ୍ୟକ୍ତିଙ୍କ ଗହଣରେ ପ୍ରଥମଦିବସ ସମଲେଶ୍ୱରୀ ମନ୍ଦିରରୁ କୀର୍ତ୍ତନ, ଦୁଲଦୁଲି ବାଦ୍ୟସହ ଏକ ଶୋଭାଯାତ୍ରା ଝାଡ଼ୁଆପଡାର ଆରଣ୍ୟକ ମଣ୍ଡପ ପର୍ଯ୍ୟନ୍ତ ଆସିଥିଲା ଏବଂ ପରେପରେ ସଭାକାର୍ଯ୍ୟ ଆରମ୍ଭହୋଇଥିଲା । ସଭାପରେ ସୁନ୍ଦରଗଡର ନବଜୀବନ ଅନୁଷ୍ଠାନ ତରଫରୁ 'ବଏଠା' ନାଟକ ମଞ୍ଚସ୍ଥ ହୋଇଥିଲା । ଏ ନାଟକକୁ ପ୍ରଦୀପ ଭୋଳ ରଚନାକରିବା ସଂଗେ ନିର୍ଦ୍ଦେଶନା ମଧ୍ୟ ଦେଇଥିଲେ । ନାଟକଟି ସୁନ୍ଦରଗଡର ବେତ୍‌ରା ସମ୍ପ୍ରଦାୟ, ଯେଉଁମାନେ ବାଉଁଶର ବିଭିନ୍ନ ଘରକରଣା ସାମଗ୍ରୀ ତିଆରିକରି ଜୀବିକାର୍ଜନ କରି ବଞ୍ଚୁଛନ୍ତି, ତାଙ୍କ ଦୈନନ୍ଦିନ ଜୀବନର କଥାଉପରେ ଆଧାରିତ ଥିଲା । ପ୍ରଦୀପ ଭୋଳଙ୍କୁ ଏହି ଅବସରରେ ପ୍ରଥମ ସ୍ୱର୍ଗତ ନିର୍ମଳଚନ୍ଦ୍ର ପାଢ଼ୀ ସ୍ମୃତିପୁରସ୍କାର ପ୍ରଦାନ କରାଯାଇଥିଲା । ପରଦିନ ଦିନବେଳା ଆଲୋଚନାଚକ୍ର ଆୟୋଜିତ ହେବା ସହ ସମ୍ବଲପୁରୀ ନାଟକ ସମ୍ବନ୍ଧରେ ବିଭିନ୍ନ ବକ୍ତା ଆଲୋକପାତ କରିଥିଲେ । ଶେଷରାତିରେ ମନୋରଞ୍ଜନ କାର୍ଯ୍ୟକ୍ରମରେ 'କଖଗ' ଅନୁଷ୍ଠାନ 'ସରଗ୍‌କେ ସିଡି' ନାମରେ ଏକ ହାସ୍ୟରସାତ୍ମକ ସମ୍ବଲପୁରୀ ନାଟକ ପରିବେଷଣ କରିଥିଲେ । ଏହି ନାଟକରେ ସ୍ୱର୍ଗତ ଉମା ପାଣିଗ୍ରାହୀ ଏକ ଗୁରୁତ୍ୱପୂର୍ଣ୍ଣ ଚରିତ୍ରରେ ଅଭିନୟ କରିଥିଲେ ।

ଏକାନବେ, ବୟାନବେବେଳକୁ ସମ୍ବଲପୁର ସରକାରୀ ମହିଳା ମହାବିଦ୍ୟାଳୟରେ ଖାତା ଦେଖାବେଳେ ବହୁ ବର୍ଷ ପରେ ବନ୍ଧୁ କେଶରଞ୍ଜନ ପ୍ରଧାନଙ୍କ ସହ ଦେଖାହେଲା । ଉପାଧ୍ୟାୟତ୍ତର ପାଠ ଶେଷହେବା ପରଠାରୁ ତାଙ୍କ ସହ ଆଉ ଭେଟ ହୋଇନଥିଲା । ପ୍ରଥମରେ ଉଭୟେ ଅତୀତର କିଛି ଘଟଣା ରୋମନ୍ଥନ କରିଥିଲୁ । ହୀରାକୁଦ ଇଣ୍ଡଲ କ୍ଲବର ଏକାଙ୍କିକା ପ୍ରତିଯୋଗିତାରେ ଇଂରାଜୀ ବିଭାଗ ତରଫରୁ କେମିତି କେଶରଞ୍ଜନଙ୍କ ରଚିତ ଓଡ଼ିଆ ନାଟକ 'ମନବିହଙ୍ଗ' ଅଭିନୀତ ହୋଇଥିଲା, ଦ୍ୱିତୀୟବର୍ଷ ପ୍ରମୋଦଙ୍କ ରଚିତ 'ପକ୍ଷୀରାଜ ଘୋଡ଼ା ସମ୍ପର୍କରେ' ନାଟକ ମଞ୍ଚସ୍ଥ ହୋଇଥିଲା । ସବୁପ୍ରସଙ୍ଗ ସମୁଦ୍ରର ଉର୍ମିଭଳି କଥାପ୍ରବାହରେ ବହିଚାଲିଥାଏ । ସବୁକଥାର ଆଧାରଥିଲା କିନ୍ତୁ ନାଟକ । ଉଭୟେ ଉଭୟଙ୍କୁ ଭଲ ଭାବରେ ବୁଝିଯାଇଥିଲୁ ଯେ ଦୁହେ ସେ ଯାଏଁ ନାଟକ ସହ ଘନିଷ୍ଠ ଭାବରେ ଜଡ଼ିତ ଥିଲୁ । ପରେପରେ ଆପେଆପେ ଆସିଗଲା ସମ୍ବଲପୁରୀ ନାଟକର କଥା । ସେ ଯେହେତୁ ଦୀର୍ଘ ବର୍ଷ ସାଲେପୁର କଲେଜରେ ରହିଗଲେ, ସମ୍ବଲପୁରୀ ନାଟକର ଗତି ଓ ପ୍ରକୃତି ସମ୍ପର୍କରେ ତାଙ୍କର ଧାରଣା ପ୍ରାୟତଃ ନଥିଲା । ତେବେ ଉଖୀ ପରବର୍ତ୍ତୀ ସମ୍ବଲପୁରୀ ନାଟକର ସ୍ଥିତି ଓ ବିକାଶ ବାବଦରେ ମୋମୁହଁରୁ ଶୁଣି ପ୍ରଥମେ ବିସ୍ମୟଭାବ ପ୍ରକଟନ କରିଥିଲେ, ପରେ କିନ୍ତୁ ତାଙ୍କ ବିଚାରଧାରାରୁ ଅନୁମାନ କରିଥିଲି, କେଶରଞ୍ଜନ ଦିନେ ସମ୍ବଲପୁରୀ ନାଟକର ମଙ୍ଗ ଧରି ତା'ର ଧ୍ୱଜାକୁ ଆହୁରି ଉର୍ଦ୍ଧ୍ୱକୁ ଟୋଳିଧରିବେ । ତାଙ୍କରଚିତ ମନବିହଙ୍ଗ ନାଟକଟି ନବେଦଶକରେ କୌଣସି ଏକ ଉତ୍ସବ ଅବସରରେ ପଞ୍ଚାନନ ମିଶ୍ରଙ୍କ ନିର୍ଦ୍ଦେଶନାରେ ନାରୀ ସେବା ସଦନରେ ମଞ୍ଚସ୍ଥ ହୋଇଥିଲା, ଯେଉଁଥିରେ ମୁଁ ପ୍ରଫେସର ଏବଂ ଅଧ୍ୟାପକ ନରେନ୍ଦ୍ର ମିଶ୍ର ବୈଜ୍ଞାନିକ ଭୂମିକାରେ ଅଭିନୟ କରିଥିଲେ । ସାଲେପୁରରୁ ପଦ୍ମପୁରର ଅଞ୍ଚଳ ମହାବିଦ୍ୟାଳୟରେ ଯୋଗ ଦେବା ପରେ ଆମଭିତରେ ନାଟକକୁ ନେଇ ପ୍ରାୟ ଯୋଗାଯୋଗ ରହିଚାଲିଥିଲା । ପଦ୍ମପୁରରେ ଏକ ନାଟ୍ୟାନୁଷ୍ଠାନ କେଶରଞ୍ଜନଙ୍କ ଭାଇ ରବିରଞ୍ଜନଙ୍କ ନିର୍ଦ୍ଦେଶନାରେ 'ବାଞ୍ଛାର ବାଏର୍' ନାଟକଟି ମଞ୍ଚସ୍ଥ ହେବାର ଥାଏ, କେଶ ମୋତେ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରଣକଲେ ସେହି ଉତ୍ସବପାଇଁ । ନାଟକଟି ମୂଳ ବଙ୍ଗଳା ନାଟକ ବାଞ୍ଛାରାମେର୍ ବାଗାନ୍ ର ସମ୍ବଲପୁରୀ ଅନୁବାଦ, ନିଜେ ରବିରଞ୍ଜନ ଅନୁବାଦକ ଥିଲେ । ସଭାପରେ ନାଟକକୁ ସମ୍ପୂର୍ଣ୍ଣଭାବରେ ଦର୍ଶକମଣ୍ଡଳୀରୁ ଦେଖିବାର ସୁଯୋଗ ମିଳିଲା । ସେହି ନାଟକରେ ଅଭିନୟକରିଥିବା କଳାକାରମାନଙ୍କ ଅଭିନୟଚାତୁର୍ଯ୍ୟ ମୋତେ ବିସ୍ମିତ ତଥା ମନ୍ତ୍ରମୁଗ୍ଧ କରିଥିଲା । ଅଶୀବର୍ଷର ବୁଢ଼ା ବାଞ୍ଛା ଚରିତ୍ରରେ

ଅଭିନୟ କରିଥିବା ଅଭିନେତା ଚମତ୍କାର ଅଭିନୟ କରିଥିଲେ । ଏହି ନାଟକ ଦେଖିବାବେଳେ ମୁଁ ଆମ ସୃଷ୍ଟିର ଉତ୍ତମ ବେହେରା ଏହି ଚରିତ୍ରପାଇଁ ଯୋଗ୍ୟ ବୋଲି ମନେମନେ ଆକଳନ କରିସାରିଥିଲି । ନାଟକପରେ ସେହି ରାତି ପଦ୍ମପୁରରେ ବିଶ୍ରାମ ନେଇ ପରଦିନ ସମ୍ବଲପୁର ଫେରିବାବେଳେ ମୁଁ ସୃଷ୍ଟିର ପରବର୍ତ୍ତୀ ନାଟକ ଭାବରେ ବାଞ୍ଛାର ବାଏର୍ ନାଟକକୁ ନିର୍ବାଚିତ କରିସାରିଥିଲି । ବସ୍‌ରେ ଆସିବାବେଳେ ମୋ ଆଖିରେ ଝଲସିଯାଉଥିଲା ସୃଷ୍ଟିର କଳାକାରମାନଙ୍କ ଦ୍ୱାରା ଅଭିନୀତହେଉଥିବା ଏହି ନାଟକର ପ୍ରତିଟି ଦୃଶ୍ୟ ।

ସମ୍ବଲପୁର ଫେରିବା ପରେ ଅବିଳମ୍ବେ ମୁଁ ଉତ୍ତମ ସହ ଭେଟପଡ଼ି 'ବାଞ୍ଛାର ବାଏର୍' ନାଟକ ବାବଦରେ ମୋର ମତାମତ ବିନିମୟ କଲି, ବାଞ୍ଛା ଚରିତ୍ର ପାଇଁ ତମେ ଯୋଗ୍ୟତମ କଳାକାର ବୋଲି ପ୍ରବର୍ତ୍ତାଇଲି, ନାଟକର କାହାଣୀ ବଖାଣିଲି, ପଦ୍ମପୁର କଳାକାରମାନଙ୍କ ଭୂରିଭୂରି ପ୍ରଶଂସା କଲି । ଆମ ଦୁହିଙ୍କ ଆଲୋଚନା ପରେ ବନ୍ଧୁ କେଶରଞ୍ଜନଙ୍କ ସହ ସମ୍ପର୍କରଖି ନାଟକଟିର ପାଣ୍ଡୁଲିପି ମଗାଇଲି । ପାଣ୍ଡୁଲିପି ପାଇବାପରେ ସମ୍ପୂର୍ଣ୍ଣ ନାଟକଟିକୁ ନିଜେ କାଗଜକଲମରେ ଓତାରି ପୁଣି ଫେରାଇଦେଲି । ପାଣ୍ଡୁଲିପି ହାତକୁ ଆସିଯିବାପରେ ସୃଷ୍ଟିର ସମସ୍ତ ଆଗ୍ରହୀ କଳାକାରମାନଙ୍କୁ ଡକାଇ ନାଟକବାବଦରେ ସମସ୍ତଙ୍କୁ ବୁଝାଇଲି, ପଢ଼ି ଶୁଣାଇଲି, ସମସ୍ତେ ନାଟକକୁ ପସନ୍ଦ କରିବା ପରେ 'ସୃଷ୍ଟି' ତରଫରୁ ଏହାର ମଞ୍ଚାୟନପାଇଁ ଉଦ୍ୟମ ଆରମ୍ଭହୋଇଗଲା ।

'ବାଞ୍ଛାର୍ ବାଏର୍' ନାଟକର ରିହାର୍ସାଲ୍ ଆରମ୍ଭ ହୋଇଗଲା ସାଧାରଣ ପଠନ ଶୈଳୀରେ । ଉତ୍ତମ ସହ ତୃପ୍ତି, ସଂଜୀବ ମାଝି, ବାରୁଦା, ମୋହିନୀ ମିଶ୍ର, ଦିଲୀପ ପାଣି, ଜ୍ୟୋତି ତ୍ରିପାଠୀ, ମାନସୀ ନନ୍ଦଙ୍କ ସହ ମୁଁ ମଧ୍ୟ ଏକ ଛୋଟଭୂମିକାରେ ଅଭିନୟ କରିଥିଲି । ନିର୍ବିଘ୍ନରେ ଏହି ନାଟକଟି ଗଙ୍ଗାଧର ମଣ୍ଡପରେ ଗୋଟିଏ ରାତି ପାଇଁ ପୂର୍ଣ୍ଣ ପେକ୍ଷାଳୟରେ ଅଭିନୀତ ହେଲା । ଛ'ଶହ ସିଟ୍ ବିଶିଷ୍ଟ ପ୍ରେକ୍ଷାଳୟର ପ୍ରତିଟି ଦର୍ଶକ ନାଟକଟିକୁ ମନଭରି ଉପଭୋଗ କଲେ । ତୃପ୍ତି, ବାରୁଦା, ମୋହିନୀ ସମସ୍ତେ ଉଚ୍ଚକୋଟୀର ଅଭିନୟକରି ନାଟକକୁ ସଫଳ କରିଥିଲେ । ମୁଖ୍ୟ ଚରିତ୍ର ବାଞ୍ଛା ଭୂମିକାରେ ଉତ୍ତମଙ୍କ ସ୍ୱାଭାବିକ ତଥା ଜୀବନ୍ତ ଅଭିନୟ ଦର୍ଶକମାନଙ୍କୁ ଆକୃଷ୍ଟ କରିଥିଲା । ଏହି ନାଟକର ସଫଳତାପରେ 'ସୃଷ୍ଟି' ତାର ପୂର୍ବ ଖ୍ୟାତିକୁ ଅକ୍ଷୁର୍ଣ୍ଣ ରଖିଥିଲା ଏବଂ ବଡ଼ନାଟକ କରିବାର ଆତ୍ମବିଶ୍ୱାସ ଲାଭ କରିଥିଲା । ସହରରେ ମାସାଧିକାଳ ଏହି ନାଟକର ଚର୍ଚ୍ଚା ଜାରିରହିଥିଲା ।

ଏହି ନାଟକ ପରେ ପରେ ଆକାଶବାଣୀ ସମ୍ବଲପୁରର କାର୍ଯ୍ୟକ୍ରମ ଅଧିକାରୀ ପଦ୍ମଲୋଚନ ଦାସଙ୍କ ଉଦ୍ୟମରେ ଆକାଶବାଣୀ ତରଫରୁ ନାଟ୍ୟତରଙ୍ଗ ନାମରେ ଏକ ଉତ୍ସବ ଗଙ୍ଗାଧର ମଣ୍ଡପରେ ଆୟୋଜିତ ହୋଇଥିଲା । ଏହି ଅବସରରେ ଆକାଶବାଣୀ ତରଫରୁ ସୃଷ୍ଟିକୁ ଏକ ନାଟକ ପରିବେଷଣ କରିବାର ଆମନ୍ତ୍ରଣ ଆସିଲା । ପୁଣି ଏକ ଆହ୍ୱାନ, ଆଉ ତ ପରମାଣପୁର ଯାଇ ମଙ୍ଗଳୁଚରଣ ବିଶ୍ୱାଳଙ୍କ ନିକଟକୁ ନାଟକ ଲେଖେଇବା ମାନସିକତାରେ ମୁଁ ନଥିଲି । ତାପରେ ସେତେବେଳେ ମଙ୍ଗଳୁବାବୁ ଅବସର ନେଇ ନିଜ ସଂସାରସହ ମଜ୍ଜିଯାଇଥିଲେ । ତେଣୁ ଆଉ କୌଣସି ନାଟ୍ୟକାରମାନଙ୍କ ପାଖକୁ ନଯାଇ ମୁଁ ନିଜେ ମୋର ପ୍ରାରମ୍ଭିକ ନାଟ୍ୟଲେଖାର ଅଭ୍ୟାସକୁ ପୁନର୍ଜୀବନ ଦେଇ ନାଟକ ଲେଖାରେ ମନୋନିବେଶ କଲି । ଖୁବ୍ କମ୍‌ସମୟ ମଧ୍ୟରେ ଲେଖାଟିକୁ ଶେଷକରି ସୃଷ୍ଟିର ନିର୍ବାଚିତ କଳାକାରମାନଙ୍କୁ ଖବରଦେଇ ତାଙ୍କସମ୍ମୁଖରେ ଉପସ୍ଥାପନ କଲି । ସମସ୍ତେ ନାଟକକୁ ପସନ୍ଦକଲେ, ପରେପରେ ସିଧାସଳଖ ରିହାର୍ସାଲ୍ ଆରମ୍ଭ ହୋଇଗଲା । ଏହି ନାଟକଟି ଥିଲା 'ମନ ଖୋଜୁଥାଏ ଯାହା' । ଏହା ଏକ ପାରିବାରିକ ହାସ୍ୟରସାତ୍ମକ ନାଟକ । ଏଥିରେ ଅଭିନୟ କଲେ ଉତ୍ତମ, ତୃପ୍ତି, ବାରୁଦା, ଜ୍ୟୋତି, ଦିଲୀପ ପାଣି, ମାନସୀ ନନ୍ଦ ଆଦି କଳାକାରମାନେ । ଏହି ନାଟକକୁ ମଧ୍ୟ ଦର୍ଶକମାନେ ପସନ୍ଦ କରିଥିଲେ । ପରେ ଏହି ନାଟକଟି ବେତାର ନାଟକ ଭାବରେ ପ୍ରସାରିତ ହୋଇଥିଲା । ସୁନ୍ଦରସାଏ, ବୁର୍ଚି ନାଟକ ପରେ ବନ୍ଧୁ ଦିଲୀପ ପାଢ଼ୀ ତାଙ୍କ କେମେରା ସହ ସୃଷ୍ଟି ସହିତ ଯୋଡ଼ିହୋଇଯାଇଥିଲେ । ଦର୍ଶକମଣ୍ଡଳୀର ଆଗଧାଡ଼ିରେ ତାଙ୍କ ଉପସ୍ଥିତି କଳାକାରଙ୍କୁ ଉତ୍ସାହିତ କରୁଥିଲା । ସେହିପରି ବନ୍ଧୁ ଜୀତେନ୍ ଦାସ 'ଭୁଖା' ନାଟକ ସହ ସୃଷ୍ଟିର ସଂଗଠନ ସହିତ ଯୋଡ଼ିହୋଇ ସହଯୋଗର ହାତ ବଢ଼ାଇଥିଲେ । ସୁନ୍ଦରସାଏର ବିପର୍ଯ୍ୟସ୍ତ ପ୍ରଯୋଜନା ପରେ ବନ୍ଧୁ ଶତ୍ରୁଘ୍ନଲାଲ ସାହା ନୂତନ ଟେଣ୍ଟ ହାଉସ୍ ତରଫରୁ ମଞ୍ଚଗଠନ ଦିଗରେ ତାଙ୍କ ସହଯୋଗର ହାତବଢ଼ାଇ ସୃଷ୍ଟି ସହ ଯୋଡ଼ି ହେଲେ । ଏମିତି ଅନେକ ବନ୍ଧୁ ସମୟସମୟରେ ଆମ ସହ ପାଦମିଳାଇ ଆମକୁ ଆଗକୁ ବଢ଼ିବାରେ ସାହାଯ୍ୟ କରିଥିଲେ । ସେମାନଙ୍କ ସହଯୋଗ ମିଳି ନଥିଲେ ସୃଷ୍ଟି ଆହୁରି ଦୁଃଖ ଭୋଗିଥାଆନ୍ତା ।

ତେୟାନବେରେ ଉପସ୍ଥାପନ କରିଥିବା ଥେସିସ୍‌ର ସାକ୍ଷାତକାର ପାଇଁ ଚୌରାନବେରେ ଡାକରା ଆସିଲା । ମୁଁ ମୋର ମାର୍ଗନିର୍ଦ୍ଦେଶକ କୁମୁଦସାର୍‌ଙ୍କ ନିକଟକୁ ଯିବାଆସିବା କରିବାବେଳେ ବାରୁଦା ମଧ୍ୟ ବୈରାଗୀ ଜେନା ସାର୍‌ଙ୍କ ନିକଟକୁ ତାଙ୍କ ଗବେଷଣା କାର୍ଯ୍ୟପାଇଁ ଯା'ଆସ କରୁଥିଲେ । ସେ ନାଟ୍ୟକାର କାଳୀଚରଣଙ୍କ ନାଟକ

ଉପରେ ଗବେଷଣା କରୁଥିଲେ । ମୋ ପୂର୍ବରୁ ତାଙ୍କ ସାକ୍ଷାତକାର ଅନୁଷ୍ଠିତ ହୋଇଥିଲା, ଡିଗ୍ରୀ ହାସଲ କରିଥିଲେ । ପରେ ମୋର ସକ୍ଷାତକାର ବିଶ୍ୱବିଦ୍ୟାଳୟର ଅତିଥି ଭବନରେ ଆୟୋଜିତ ହୋଇଥିଲା । ଡ. କାହ୍ନୁଚରଣ ମିଶ୍ର ଏବଂ ଡ. କୃଷ୍ଣପ୍ରସାଦ ମିଶ୍ର ବାହ୍ୟପରୀକ୍ଷକ ଭାବରେ ଆସିଥିଲେ । କିଛି ପ୍ରଶ୍ନର ଯଥାଯଥ ଉତ୍ତର ପାଇବା ପରେ ମୋର କ୍ଷେତ୍ର ଅଧ୍ୟୟନକୁ ଭୂୟସୀ ପ୍ରଶଂସା କରିଥିଲେ । ସାକ୍ଷାତକାର ପରେ କୁମୁଦସାର୍‌ଙ୍କ ବାସଗୃହରେ ମୋ ତରଫରୁ ଆୟୋଜିତ ମଧ୍ୟାହ୍ନଭୋଜନରେ ସମସ୍ତେ ଯୋଗଦେଇଥିଲେ । ଆମ କଲେଜ୍‌ର ରାଜନୀତିବିଜ୍ଞାନର ଅଧ୍ୟାପକ ରତନଲାଲ ଶର୍ମାଙ୍କ ସହଯୋଗ ଭୁଲିବାର ନୁହେଁ । ବନ୍ଧୁ ସନ୍ତୋଷ ନାୟକ ମଧ୍ୟ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାରେ ସହଯୋଗ କରିଥିଲେ । ସାକ୍ଷାତକାରର ଦୁଇତିନିଦିନ ପରେ ଏଥି ସମ୍ବନ୍ଧୀୟ ଫଳାଫଳ ପତ୍ର ମୋର ହସ୍ତଗତ ହେଲା । ସମ୍ବଲପୁର ବିଶ୍ୱବିଦ୍ୟାଳୟ ମୋର ସନ୍ଦର୍ଭ ଅନୁସାରେ ପିଏଚଡି ଡିଗ୍ରୀ ପ୍ରଦାନ କଲା । ଡକ୍ଟରେଟ୍ ଡିଗ୍ରୀ ମୋ ପାଇଁ ଏକ ସମ୍ମାନଜନକ ଉପାଧି ଥିଲା, ଖାସ୍ ମୋର ସଙ୍କଳ୍ପର ଆଧାରରେ ଏହି ଉପାଧି କେବଳ ମୋର ନୁହେଁ, 'ଭୁଖା'ର ଅସୀମ ଚରିତ୍ରର ବିଜୟ, ସମ୍ବଲପୁରୀ ଭାଷା, ସାହିତ୍ୟ ଓ ଲୋକ ସଂସ୍କୃତିର ବିଜୟ । ମୁଁ ନିଜେ ଏଥିପାଇଁ ମୋର ବିଶେଷ ଖୁସି ଜାହିର କରିଥିଲି, କାରଣ ମୋ ଥେସିସ୍ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରଥମ ଥେସିସ୍, ଯାହାର ଶୀର୍ଷକରେ ସମ୍ବଲପୁରୀ ଶବ୍ଦ ଯୋଡ଼ି ହୋଇଥିଲା । ମୋର ମାର୍ଗନିର୍ଦ୍ଦେଶକ ଡ. କୁମୁଦରଞ୍ଜନ ପଣିଗ୍ରାହୀ ଏଥିପାଇଁ ସମ୍ପୂର୍ଣ୍ଣ ଭାବରେ ଶ୍ରେୟଦାର, ତାଙ୍କ ବଳିଷ୍ଠ ପଥପ୍ରଦର୍ଶନ ନପାଇଥିଲେ, ମୁଁ ଏହି ଉପାଧିରୁ ବଞ୍ଚିତ ହୋଇଥାନ୍ତି ।

ପ୍ରୋଭିଜିନାଲ୍ ସାର୍ଟିଫିକେଟ ପାଇବାପରେ ତାକୁନେଇ ପ୍ରଥମେ ଆମ କଲେଜ୍‌ର ଭାରପ୍ରାପ୍ତ ଅଧ୍ୟକ୍ଷ ଚୋପଦାରବାବୁଙ୍କ ନିକଟରେ ବ୍ୟକ୍ତିଗତ ଭାବରେ ଅଫିସରେ ଭେଟି ପ୍ରଦାନ କରିଥିଲି । ଭାବୁଥିଲି, ଚାକିରୀ ଜୀବନରେ ଏହାର ମହତ୍ତ୍ୱ ରହିବ, ତେବେ ମୋ ବ୍ୟକ୍ତିଗତ ଫାଇଲରେ ଏଯାଏଁ ସେ ସାର୍ଟିଫିକେଟ୍‌ର ଜେରକ୍ସକପି ରହିଛି ଯେ ରହିଛି । କିନ୍ତୁ ପରେ କଟକର ଓଡ଼ିଶା ବୁକ୍ ଷ୍ଟୋର ତାକୁ ପ୍ରକାଶିତକରି ଲୋକଲୋଚନକୁ ଆଣି ସାର୍ବଜନୀନ କରିଥିଲା । ସମ୍ବଲପୁର ପୁସ୍ତକମେଳା ଅବସରରେ ଓଡ଼ିଶା ବୁକ୍ ଷ୍ଟୋରର କର୍ତ୍ତୃପକ୍ଷ ତାର ରୟାଲଟି ବାବଦରେ କିଛି ଅର୍ଥ ଆଣି ମୋ ପକେଟରେ ଭର୍ତ୍ତି କରିଦେଇଥିଲେ । ମୋତେ ଲାଗିଲା, ମୋର ଚାକିରୀ ଜୀବନଠାରୁ ମଧ୍ୟ ଏ ଅର୍ଥ ଅଧିକ ସମ୍ମାନ ପ୍ରଦାନକରିଛି ମୋର ପ୍ରତିଭାକୁ । ବହି ଛପାଇବାରେ ବନ୍ଧୁ ରଣଜୀତ୍ ପଟ୍ଟନାୟକଙ୍କ ସହଯୋଗ ଭୁଲିବାର ନୁହେଁ ।

ଚୌରାନବେରେ ପଶ୍ଚିମ ଓଡ଼ିଶାର ଲୋକସଂସ୍କୃତି ଉପରେ ଗବେଷଣା କରି ଡକ୍ଟରେଟ୍ ପାଇବାପରେ ସମ୍ବଲପୁର ତଥା ଅନ୍ୟାନ୍ୟ ଅଞ୍ଚଳରେ ଆଞ୍ଚଳିକ ଲୋକସଂସ୍କୃତି ସମ୍ପର୍କରେ ଏକ ଅନ୍ତର କରେଣ୍ଟ ପ୍ରବାହିତ ହେଉଥିଲା, ଭବିଷ୍ୟତରେ ଏହାର ସଂରକ୍ଷଣ ଓ ପ୍ରସାର ପାଇଁ ବିଧିବଦ୍ଧ ଯୋଜନା ହେବାର ନୀରବ ଆନ୍ଦୋଳନଟିଏ ଗଜୁରିଥିଲା ।

ସିଦ୍ଧି ଆସେ ସାଥିରେ ୪ଡବତାସକୁ ସାଥିରେ ନେଇ, ତାହା ଅନୁଗୃହିତ ହେବା ପରେ ସେ ତା'ର ତା'ର ଫେରିଯାଇଥାଏ । ତା'ର ସୀମିତସମୟର ଉପସ୍ଥିତିରେ ବିଚଳିତ ନ ହୋଇ ଫେରିବାର ପଥକୁ ଉନ୍ମୁକ୍ତ କରିଦେଲେ ସିଦ୍ଧି ଆପଣଛାଏଁ ଆସେ ଓ ଚିରନ୍ତନ ହୋଇପଡେ । ଏକାସାଙ୍ଗରେ ନାଟକ ଓ ଗବେଷଣା କାର୍ଯ୍ୟ ଚାଲୁଥିବାବେଳେ ଏହା ଥିଲା ମୋର ଜୀବନାନୁଭୂତିର ଉପଲବ୍ଧି । କୁମୁଦରଞ୍ଜନ ପାଣିଗ୍ରାହୀଙ୍କ ସଠିକ୍ ମାର୍ଗପ୍ରଦର୍ଶନ ଫଳରେ ଚିଚିଣ୍ଡା ଭଳି ଏକ ଆଭ୍ୟନ୍ତରୀଣ ଅଞ୍ଚଳର କଲେଜରେ ଚାକିରୀକରିବା ସତ୍ତ୍ୱେ ଚାରିଜଣ ଗବେଷକଙ୍କୁ ତାଙ୍କ ସନ୍ଦର୍ଭପାଇଁ ଡକ୍ଟରେଟ୍ ଡିଗ୍ରୀପାଇଁ ତତ୍ତ୍ୱାବଧାରକ ଭାବରେ ସହଯୋଗ କରିବା ମୋର ସୌଭାଗ୍ୟର ବିଷୟ । ଏହା ମୋପାଇଁ ସବୁଠାରୁ ବଳି ଆତ୍ମସନ୍ତୋଷ ପ୍ରଦାନ କରିଥିବା ପ୍ରସଙ୍ଗ । ଲକ୍ଷ୍ୟ ଯଦି ସଠିକ୍ ଓ ସ୍ୱଚ୍ଛ, ତାହା ପ୍ରାପ୍ତି ହେବାରେ ବ୍ୟାଘାତ ଆସେ ନାହିଁ । ହେଲେ ମୋ ଅଲକ୍ଷ୍ୟରେ ହାତ ପାଆନ୍ତା ପ୍ରାପ୍ୟ, ହାତଛଡ଼ା ହେବା ଦୁର୍ଦ୍ଦିନର ଅଭିଶାପ କହିଲେ କଣ ଭୁଲ୍ ହେବ ! !



**କ**ଥାରେ ଅଛି, ଯେ ଦେଶେ ଯାଇ, ସେ ଫଳ ଖାଇ । ଆଜନ୍ମ ସହରାଞ୍ଚଳରେ ବଢ଼ିଉଠି ଜୀବନ ଅତିବାହିତ ହେବାପରେ ପରମାଣପୁର ଓ ଚିଚିଣ୍ଡା ଭଳି ଗ୍ରାମୀଣ ପରିବେଶରେ ଚାକିରୀ ଜୀବନ କଟାଇବା ଯଦିଚ ମୋ ପକ୍ଷରେ ପ୍ରଥମ ପର୍ଯ୍ୟାୟରେ କିଛି ଅସୁବିଧା ସୃଷ୍ଟି ହେଉଥିଲା, ପରେପରେ କିନ୍ତୁ ପଲ୍ଲୀର ପାଣିପବନ ସହ ସଙ୍ଗାତବସି ଆଗକୁ ଯିବାକୁ ପଡିଥିଲା । ପରମାଣପୁର ପର୍ଯ୍ୟାୟ ଅତିକ୍ରାନ୍ତ ହେବାପରେ ତାଠାରୁ ଆହୁରି ଗାଉଁଲି ପରିବେଷ୍ଟନୀରେ ରହିବାକୁ ପଡିଲା ଚିଚିଣ୍ଡାରେ । ବାସ୍ତବତଃ, ଗାଉଁଲି ପରିବେଶ ମୋପାଇଁ ଆମୋଦକର ଥିଲା, ସକାଳୁ ଉଠିବାଠାରୁ ରାତି ନିଦେଇଯିବା ଯାଏଁ ମୁଁ ପ୍ରତିଟି ମୁହୂର୍ତ୍ତକୁ ଉପଭୋଗ କରୁଥିଲି । ପାନସିଗାରେଟ୍ ଦୋକାନକୁ ଯିବା, ତା' ସହ କଥାବାର୍ତ୍ତାହୋଇ ତା'ଜୀବନକୁ ନିରେଖିବା, ସେହି ଦୋକାନକୁ ଆସୁଥିବା ବିଭିନ୍ନ ଗ୍ରାମର ଆଗନ୍ତୁକମାନଙ୍କ କଥାବାର୍ତ୍ତା ଶୈଳୀକୁ ନିରୀକ୍ଷଣ କରିବା, ସେମାନଙ୍କ



ଉଚ୍ଚାରିତ ଶବ୍ଦ ଓ ଧ୍ୱନୀକୁ ପର୍ଯ୍ୟବେକ୍ଷଣ କରିବା, ସେହିଭଳି ହୋଟେଲରେ, ସେଲୁନ୍‌ରେ, ରାସ୍ତାରେ ଭେଟୁଥିବା ପରିଚିତ, ଅପରିଚିତ ବ୍ୟକ୍ତିମାନଙ୍କ ସହ ସମ୍ପର୍କ ବାଢ଼ିବାଆଦି ଥିଲା ମୋର ଚିରାଚରିତ କାର୍ଯ୍ୟକଳାପ । ସେଥିରୁ ମୁଁ ମୋ ନାଟକପାଇଁ ଚରିତ୍ର ପାଉଥିଲି, ସଂଳାପ ପାଉଥିଲି, ବେଳେବେଳେ ଉପଗଳ୍ପ ମଧ୍ୟ ମିଳିଯାଉଥିଲା । ମୁଁ ଯେଉଁ ଅଧ୍ୟାପକମାନଙ୍କ ସହ ରହୁଥିଲି, ସେମାନଙ୍କ ଭିତରୁ ଅଧିକାଂଶ ଗ୍ରାମୀଣ ପରିବେଶରୁ ଆସିଥିଲେ । ତେଣୁ ମୋର ପର୍ଯ୍ୟବେକ୍ଷଣର ପରିଧି ଭିତରକୁ ସେମାନେ ମଧ୍ୟ ଆସିଯାଇଥିଲେ । 'ଭୁତିଆର୍ ହଥିୟାର୍' ନାଟକକୁ ଯେତେବେଳେ ଭୁତି ନାମରେ ରାଉରକେଲା ଲୋକନାଟକ ମହୋତ୍ସବକୁ ପଠାଗଲା, ସେତେବେଳେ ମାଙ୍ଗ୍ରା ଓରାମ ନାମରେ ଏକ କନେଷ୍ଟବଲ ଚରିତ୍ରମୁହଁରେ ଏକ ସଂଳାପ ଦିଆଯାଇଥିଲା, ଯାହାକୁ କହିବା ସେହି ଚରିତ୍ରର ଗୋଟେପ୍ରକାର ମେନିଆ । ତା'ର ପ୍ରତ୍ୟେକ କଥାର ଶେଷରେ ସେ ମର୍ ଘାଣ୍ଟି ହ' ବୋଲି କହିଥାଏ, ଯାହା ଦର୍ଶକମାନେ ହାସ୍ୟରସର ଏକ ଶୈଳୀବୋଲି ଗ୍ରହଣ କରିଥିଲେ । ବାସ୍ତବରେ ଏହିଉକ୍ତିଟି ଆମ ସାଙ୍ଗରେ ରହୁଥିବା ଷ୍ଟେନୋଗ୍ରାଫିର ପ୍ରଦର୍ଶକ ତେଜରାଜ ବାଗ୍‌ବାବୁଙ୍କର ମୁହଁର ପ୍ରତ୍ୟହ କହୁଥିବା ଉକ୍ତି । ଏହା କେବଳ ଏକ ଉଦାହରଣ ମାତ୍ର । ଏଭଳି ଅନେକ ନାଟକର ଉଦାହରଣ ଦିଆଯାଇପାରେ ।

ଚିଚିଣ୍ଡାରେ ରହଣିକାଳରେ ଏମିତି ଅନେକ ଘଟଣାକୁ ମୁଁ ଜାଣିଶୁଣି ସମ୍ମୁଖିନ କରୁଥିଲି, କେବଳ ନାଟକ ପାଇଁ ଉପାଦାନ ସଂଗ୍ରହପାଇଁ । ନବେବୟାନବେ ଭିତରେ କଲେଜ୍ ସରକାରଙ୍କ ଅନୁଦାନ ଅନ୍ତର୍ଭୁକ୍ତ ହେଲା । ପୂର୍ବରୁ ତତ୍କାଳୀନ ଶିକ୍ଷା ନିର୍ଦ୍ଦେଶକ ଅମୂଲ୍ୟକୃଷ୍ଣ ମିଶ୍ର କଲେଜକୁ ଗସ୍ତକରି ସମସ୍ତ କାଗଜପତ୍ର ତନଖିକରି ଏବଂ ଅନୁଦାନ ସହ ଯୋଡ଼ିବାକୁ ପ୍ରତିଶ୍ରୁତି ଦେଇଥିଲେ । ମୋର ମନେଅଛି, ସମସ୍ତ କାର୍ଯ୍ୟ ସମାପ୍ତକରି ଯେତେବେଳେ ସେ କଲେଜ୍‌ର ମୁଖ୍ୟଦ୍ୱାରରେ ଗାଡ଼ିରେବସି ଯିବାକୁ ଉଦ୍ୟତ ହେଉଥିଲେ, ଅଧକ୍ଷ ଚୋପଦାରବାବୁ ଓ ମୁଁ ଗାଡ଼ି ନିକଟକୁ ବିଦାୟ ଦେବାପାଇଁ ଆସିଥିଲୁ । ସେଠାରେ ମୁଁ ହାତଯୋଡ଼ି ଆମ କଲେଜ୍ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବାପାଇଁ ଅନୁରୋଧ କରିଥିଲି, ଯଦିଓ, ମୋର ପଦବୀର ସେହି ଅନୁଦାନସହ କୌଣସି ସମ୍ପର୍କ ନଥିଲା । ଅମୂଲ୍ୟବାବୁ ଓଡ଼ିଆ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ ଗାଳ୍ପିକ ଦୟାନିଧି ମିଶ୍ରଙ୍କ ଯୋଗ୍ୟପୁତ୍ର, ବରଗଡ଼ର ଲୋକ, ସେଥିପାଇଁ ସେଥିଲା ମୋର ସ୍ୱତନ୍ତ୍ର ଅନୁରୋଧ । ଠିକଣା ସମୟରେ ଅନୁଦାନ ଆସି ପହଞ୍ଚିଲା, ପଦବୀ ଅନୁସାରେ ସମସ୍ତ ପ୍ରଥମ ପଦଗୁଡ଼ିକ ଅନୁଦାନ ଭିତରକୁ ଆସିଥିଲା, ତା'ସହ ଜଣେ କିରାଣୀ ଏବଂ ଚାରିଜଣ

ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ନାମରେ ଅନୁଦାନ ଆସିଲା । ପରିଚାଳନା ସମିତିର ଭ୍ରାନ୍ତଧାରଣା ଥିଲା, ସେହି ଅନୁଦାନରାଶି ପରିଚାଳନା କମିଟି ନିଜହାତକୁ ଆଣି ତାଙ୍କ ନିଜ ଇଚ୍ଛାନୁସାରେ କର୍ମଚାରୀମାନଙ୍କୁ ବିତରଣ କରିବେ । ଏଥିପାଇଁ କଲେଜକୁ ଆସି, ସଭାଡାକି ଅଧ୍ୟକ୍ଷଙ୍କୁ କୈଫିୟତ୍ ମଧ୍ୟ ମାଗିଥିଲେ । କର୍ମଚାରୀଙ୍କ ବ୍ୟକ୍ତିଗତ ନାମରେ ଆସିଥିବା ଅର୍ଥ ସେମାନଙ୍କ ନିଜର, ଅଧ୍ୟକ୍ଷଙ୍କ ନାମରେ ଆସିଥାଏ ଏବଂ ଅଧ୍ୟକ୍ଷ ସରକାରୀ ନିୟମ ଅନୁସାରେ ଆସିଥିବା ରାଶି ବଣ୍ଟନକରିଥାନ୍ତି । ଏହି ନିୟମପ୍ରତି ଧ୍ୟାନ ନଦେଇ ନିଜ ପ୍ରଭୁତ୍ୱ ଜାହିର୍‌କରି ସେହି ଅର୍ଥରାଶିକୁ ପରିଚାଳନା ସମିତିର ହିସାବ୍‌ଖାତାକୁ ନେଇଯିବାର ପ୍ରୟାସ କରିଥିଲେ । ଏପରି କି ଅଧ୍ୟକ୍ଷଙ୍କ ପ୍ରତି ଅସଦାଚରଣ ଏବଂ ହିଂସାତ୍ମକ ଆଚରଣକରିବାକୁ ମଧ୍ୟ ପଛାଇ ନଥିଲେ । ଏଭଳି ପରିସ୍ଥିତିରେ ମୁଁ ବ୍ୟକ୍ତିଗତ ଭାବରେ ଅଧ୍ୟକ୍ଷଙ୍କୁ ସୁରକ୍ଷା ବଳୟକୁ ଆଣି ତାଙ୍କ ମର୍ଯ୍ୟାଦା କଲେଜ୍‌ର ସ୍ୱାର୍ଥଦୃଷ୍ଟିରୁ ଆଣିପାରିଥିଲି । ଏଭଳି ପରିସ୍ଥିତିରେ ଅନେକ କଲେଜ୍‌ର ଅଧ୍ୟାପକମାନେ ବିଚିତ୍ର ଅନୁଭୂତି ରଖିଥିବେ । ତେବେ ଆମ କଲେଜ୍‌ର ପରିଚାଳନା କମିଟିର ଯୁବସଦସ୍ୟଙ୍କ ଔଦ୍ଧତ୍ୟ ମୋ ଆଖିଦେଖା କଥା । ପରେ ଶୁଣିଲି, ଅଧ୍ୟକ୍ଷ ତାଙ୍କପ୍ରତି ହୋଇଥିବା ଆକ୍ରମଣପାଇଁ ମୋତେ ଦାୟୀ କରିଥିଲେ ଓ ମୋ ବିରୁଦ୍ଧରେ ପଦକ୍ଷେପ ନେବାପାଇଁ ଆଗଭର ହୋଇଥିଲେ । ମୁଁ ଏକଥା ଜାଣିବାପରେ ଭାବୁଥିଲି, ପୃଥିବୀରେ ଏମିତିବି ଲୋକ ଅଛନ୍ତି, ମୋପାଇଁ ତ ବଡ଼ ନାଟକୀୟ ! !

ପରମାଣପୁର ପରି ଚିଚିଣ୍ଡା କଲେଜ ମଧ୍ୟ ଆର୍ଥିକ ଅଭାବରେ ଚଳୁଥାଏ । ତେବେ ଫରକ୍ ହେଲା ପରମାଣପୁର ଏକ ଗରିବ ଗ୍ରାମ, ଚିଚିଣ୍ଡା ଏକ କୃଷିବିକଶିତ ଅଞ୍ଚଳ । ଗାଁ ଗାଁ ଭିତରେ କଲେଜ ପ୍ରତିଷ୍ଠା ବେଳେ ଯେଉଁ ସଂହତି ଥିଲା, ପରେପରେ ସେଥିରେ ବ୍ୟତିକ୍ରମ ଦେଖାଦେଇଥିଲା । ସେହି ପରସ୍ପର ବିରୋଧାତ୍ମକ ସମ୍ବନ୍ଧଦୃଷ୍ଟିରୁ କଲେଜ୍ ପାଣ୍ଠିକୁ ଅନୁଦାନ ଆସିବାର ସ୍ରୋତ ପ୍ରାୟତଃ ବନ୍ଦହୋଇଗଲା । ଧନୁଯାତ୍ରାରୁ ଆସୁଥିଲା ନା ନାହିଁ, ମୁଁ ସମ୍ପୂର୍ଣ୍ଣ ଅଜ୍ଞ, ସେତେବେଳର ଅଧ୍ୟକ୍ଷ ଜାଣିଥିବେ । ତେବେ କ୍ରମାଗତଭାବରେ ଦରମା ନ ମିଳୁଥିବାରୁ ଥରେ ଆମେ ଆନ୍ଦୋଳନକୁ ଓହ୍ଲାଇଥିଲୁ । ଆନ୍ଦୋଳନ ଯୋଗୁଁ କଲେଜ୍‌ରେ ଦିନେ ଦୁଇଦିନ ପାଠପଢ଼ା ବନ୍ଦ ହୋଇଯାଇଥିଲା । ଏଭଳି ସମୟରେ ମୋର ମନେ ଅଛି, ପରିଚାଳନା ସମିତିର କିଛିସଭ୍ୟ ଆମକୁ ଧମକ୍ ଦେଇଥିଲେ କଲେଜରୁ ବହିଷ୍କାର କରିଦେବା ପାଇଁ । ପୃଥିବୀର ସବୁ ଆନ୍ଦୋଳନ ଏମିତି ଶାସକର ହିଂସ୍ରଆଚରଣରେ ଭିଜିଗଲା ତାଳଫୋଟକା ପରି ଫୁସ୍ କରିଯାଏ । ସେହି ସମୟରେ ମୁଁ ଇସ୍ତଫା ଦେଇ କଲେଜ୍ ଛାଡ଼ି ଚାଲି ଯିବାପାଇଁ



ଇଚ୍ଛା ପ୍ରକଟନ କରିଥିଲି । ତେବେ କିଛି ଛାତ୍ରବନ୍ଧୁ, ବରିଷ୍ଠ ଗ୍ରାମବାସୀଙ୍କ ଅନୁରୋଧରେ ମୁଁ ମୋର ନିଷ୍ପତ୍ତିରୁ ଓହରିଯାଇଥିଲି । ମୁଁ ଜାଣୁଥିଲି, ଏଭଳି ବିଶୃଙ୍ଖଳାପାଇଁ ପରିଚାଳନା ସମିତି ଯେତେ ଦାୟୀ, ତା'ଠୁ ବଳି ଅଧ୍ୟକ୍ଷ ବେଶୀ ଦାୟୀ । ଚୋପଦାରବାବୁଙ୍କ ଦୁର୍ବଳ ପ୍ରଶାସନିକ ଦକ୍ଷତାକୁ ସମିତିର ସଦସ୍ୟମାନେ ଉପଲବ୍ଧିକରି ମଝିରେ ଜ୍ୟୋତିବିହାରର ଅବସରପ୍ରାପ୍ତ ପ୍ରଫେସର ଡ. ପାଣିଙ୍କୁ ଅଧ୍ୟକ୍ଷ ଭାବରେ ନିଯୁକ୍ତ କରିଥିଲେ । ତେବେ ବୟସାଧିକ୍ୟ ପାଇଁ ସେ ମଧ୍ୟ କିଛିମାସ ପରେ ବିଦାୟ ନେଇଥିଲେ ।

ପ୍ରଥମ ପଦବୀଗୁଡ଼ିକ ଅନୁଦାନ ଅନ୍ତର୍ଭୁକ୍ତ ହେବାପରେ ଅନୁଦାନପ୍ରାପ୍ତ ଅଧ୍ୟାପକଙ୍କ ସମସ୍ୟା ପ୍ରାୟ ଦୂରୀଭୂତ ହୋଇଗଲା । ସମସ୍ତଙ୍କ ସ୍ୱପ୍ନ ଥାଏ, ଚାକିରୀ କରିବି, ରୋଜଗାର କରିବି, ନିଜ ଗୋଡରେ ନିଜେ ଠିଆ ହେଲା ପରେ ବାହାସାହା ହୋଇ ସଂସାର କରିବି । ସେହି ପରମ୍ପରାରେ ଚୋପଦାରବାବୁ କିଛି ବର୍ଷ ତଳେ ବାହା ହୋଇ ଦିଓଟି ସନ୍ତାନର ବାପ ହୋଇସାରିଥିଲେ । ଏହା ମୋ ଆସିବାପୂର୍ବର ଘଟଣା । ବାକି ସିଦ୍ଧାର୍ଥ ସାହୁ କଲେଜ ଛାଡ଼ି ଭୁକ୍ତା କଲେଜକୁ ଚାଲିଗଲେ । ମୋ ବାହାଘର ତ ଏକାଅଶୀରୁ ସମାପନ ହୋଇସାରି ମୁଁ ଗୋଟିଏ ସନ୍ତାନର ବାପା ହୋଇସାରିଥିଲି, ପରେ ଛୟାଅଶୀରେ ଝିଅଟିଏ ମଧ୍ୟ କୋଳକୁ ଆସିଗଲା । ବାକି ରହିଲେ ଅର୍ଥନୀତି ଅଧ୍ୟାପକ କିର୍ତ୍ତନ୍ୟ ବିଶି, ପ୍ରଥମେ ତାଙ୍କ ବାହାଘର ହେଲା, ବିଶିବାବୁ ରେଙ୍ଗାଲିକେମ୍ପ ପାଖ ଜହ୍ନାପଡା ଗ୍ରାମର, ବାହା ହେଲେ ଛକ ଆରପାଖ ଗାଁ ହିଲ୍ଲିପାଲି ଗାଁରେ । ମୁଁ ଏହି ବିଭାଘରର ସମସ୍ତ ଦୃଶ୍ୟକୁ ମନଭରି ଉପଭୋଗ କରିଛି । ଜହ୍ନାପଡା, ଇରମ୍ମା କେଲଜର ଅଧ୍ୟାପକ ଉପେନ୍ଦ୍ର ପ୍ରଧାନଙ୍କ ଗାଁ, ନାଟୁଆ ଗାଁ । ହିଲ୍ଲିପାଲି ମଧ୍ୟ ବିଶିଷ୍ଟ କଳାକାର ଦେବେନ୍ଦ୍ର ବିଶ୍ୱାଳଙ୍କ ଗାଁ, ଯେ ବର୍ଷେପାଇଁ ବରଗଡର ଧନୁଯାତ୍ରାରେ କଂସଭୂମିକାରେ ଅଭିନୟ କରିଥିଲେ ଏବଂ ତାଙ୍କ ନେତୃତ୍ୱରେ ସମଲେଶ୍ୱରୀ ଗଣନାଟ୍ୟ ଗାଁଗାଁରେ ନାଟକ ପରିବେଷଣକରି ଖ୍ୟାତିଅର୍ଜନ କରିଥିଲେ, ଏହି ଗ୍ରାମର ସୁବୋଧ ଦାସ ଆମ କଲେଜ୍‌ରେ କିଛିବର୍ଷ ଇତିହାସବିଭାଗର ଅଧ୍ୟାପକଭାବରେ ଅଧ୍ୟାପନା କରିଥିଲେ । ତାପରେ ଗଜାନନ ପଣ୍ଡାଙ୍କ ପାଳି, ସେ ବାହା ହେଲେ ପାହାଡଶ୍ରୀଗିଡ଼ା ଗାଁ ପାଖର ଖରମୁଣ୍ଡା ଗ୍ରାମରେ । ତାଙ୍କର ଶ୍ୱଶୁରଘର ଲୋକଙ୍କସହ ମୋର ପୂର୍ବରୁ ପରିଚୟ ଥିଲା । ଏହି ବରଯାତ୍ରୀ ଦଳରେ ଆମେ ସମସ୍ତ ଅଧ୍ୟାପକ ଲୁନା, ଫଟ୍‌ଫଟି ଆଦିରେ ଚିଚିଣ୍ଡାରୁ ସିଧା ଖରମୁଣ୍ଡା ଯାଇଥିଲୁ, ରାତିସାରା ବାହାଘର ଶେଷପର୍ଯ୍ୟନ୍ତ ରହି ବାହାଘରର ପ୍ରତ୍ୟେକ ଦୃଶ୍ୟକୁ ଅବଲୋକନ କରି ଆନନ୍ଦିତ ହୋଇଥିଲୁ । ପରଦିନ



ଠିକ୍ ସେଇଭଳି ପଣ୍ଡା ବାବୁଙ୍କ ପୈତୃକ ଗ୍ରାମ ସିନ୍ଦୂରପୁର ଯାଇ ଭୋଜିରେ ସମ୍ମିଳିତ ହୋଇଥିଲୁ । ପଣ୍ଡାବାବୁଙ୍କ ଶ୍ୱଶୁରଘର ମୋର ଧନୁପାଲିର ଅନ୍ତରଙ୍ଗ ବନ୍ଧୁ ଶାନ୍ତନୁ ହୋତାଙ୍କ ସମ୍ପର୍କୀୟ ଅଟନ୍ତି, ପୁଟିବନ୍ଧର ଶେଷଦେବ ମିଶ୍ରଙ୍କ ଆତ୍ମୀୟ ଅଟନ୍ତି । ଏବେ ପଣ୍ଡାବାବୁ ବରଗଡରେ ଘରଦ୍ୱାର କରି ରହିଲେଣି, ଚିଚିଣ୍ଡାରୁ ବଦଳିହୋଇ ଭେଡେନ୍ କଲେଜ୍‌ର ଅଧ୍ୟକ୍ଷ ଭାବରେ ସେବାରତ ଅଛନ୍ତି । ଦି'ଝିଅ ବାହାହେଲେଣି, ଦୁଇଝିଅଙ୍କ ବାହାଘରରେ ଉପସ୍ଥିତରହି ନିଜକୁ ଭାଗ୍ୟବାନ ମନେକରିଛି । ବଡଝିଅର ଶ୍ୱଶୁର ମୋର ବଡ଼ଭାଇଙ୍କ ସମ୍ପର୍କୀୟ । ସାନଝିଅର ଶ୍ୱଶୁର ମୋର ଅନ୍ତରଙ୍ଗ ଅନୁଜ, ଲରମ୍ଭା ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ଜନାର୍ଦ୍ଦନ ପାଣିଗ୍ରାହୀ । ଏହି ବାହାଘରବେଳେ ମଧ୍ୟ ଉଭୟପଟର ଉତ୍ସବରେ ମୁଁ ଉପସ୍ଥିତ ଥିଲି । ଆମ କଲେଜର ଓଡ଼ିଆଅଧ୍ୟାପିକା ପଙ୍କଜିନୀ ମିଶ୍ର ବାହାହେଲେ ତାଙ୍କ ଗ୍ରାମ ଛାଲୁକୁଣ୍ଡା ନିକଟସ୍ଥ ରେସମ୍ ଗ୍ରାମର ମହାନ୍ତିବାବୁଙ୍କୁ । ସେ ମଧ୍ୟ କିଛିବର୍ଷ ଭେଡେନ୍ ମହାବିଦ୍ୟାଳୟର ଅଧ୍ୟକ୍ଷା ପଦବୀରେ ଅଧିଷ୍ଠିତ ଥିଲେ । ଏବେ ଅବସରନେଇ ଭେଡେନ୍‌ପାଖ ଏକ ବସ୍ତିଅଞ୍ଚଳ, ଅମଲିପାଲିରେ ଘରଦ୍ୱାର କରି ରହୁଛନ୍ତି ।

ଷ୍ଟେନୋଗ୍ରାଫର୍ ତେଜରାଜ ବାବୁଙ୍କ ଗ୍ରାମ ଦନ୍ତା ଓ ଜିରା ନଇ ପାରିହେଲେ ପଡେ, ବରପାଲି ନିକଟସ୍ଥ ସିକିର୍ଡି ଗ୍ରାମ, ଶିକ୍ଷିତ ଗାଁ । ତାଙ୍କ ବାହାଘର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମୁଁ ଯୋଗଦେଇ ମନଭରି ମଜା ଉଠେଇଛି । ବାଗବାବୁଙ୍କ ସହ ଅତି ଅନ୍ତରଙ୍ଗ ହେବାପରେ ଆମେ ତୁ, ତା ସମ୍ବୋଧନରେ ଅନୁବନ୍ଧିତ ହୋଇଯାଇଛୁ । ତାଙ୍କ ବାହାଘର ଠିକ୍ ହେଲା ବରପାଲି ପାରିହୋଇ ବଲାଙ୍ଗିର ସୀମା ସାହାଜବାହାଲ ଗ୍ରାମରେ । ବସ୍‌ଯୋଗେ ଯାଇ ସେଇ ନିପଟ ଗାଉଁଲି ପରିବେଶରେ ସେଇ ଗାଁ ପାଇବାକୁ ଆମକୁ ଦେଢ଼ରୁ ଦୁଇଘଣ୍ଟା ଲାଗିଯାଇଥିଲା । ଅନ୍ଧାର ଗିଳିଗିଳି ପରିବେଶ ବରଯାତ୍ରୀ ଦଳ ବାଜାଗଜା ସହ କନ୍ୟାଘରକୁ ଯିବାର ଉପକ୍ରମ କରୁକରୁ କୌଣସି କାରଣରୁ ଗୋଳମାଳ ଆରମ୍ଭ ହୋଇଗଲା । ସେ ବିଶୃଙ୍ଖଳା ଏତେଦୂର ଲମ୍ବିଗଲା ଯେ ଅଧାରୁ ଅଧିକ ବରଯାତ୍ରୀ ନଖାଇନପିଇ ସେଠାରୁ ଛତ୍ରଭଙ୍ଗ ଦେଇ ପଳେଇଆସିଲେ । ମୁଁ କିନ୍ତୁ ଧୈର୍ଯ୍ୟସହକାରେ ବାଗ୍‌ସହ ରହିଲି । ସମ୍ମାନପାଇଁ ମୁଁ ମଧ୍ୟ ଖାଇଲିନାହିଁ, ତେବେ ସକାଳୁ ବରକନ୍ୟାଙ୍କୁ ଧରି ସିକିର୍ଡିରେ ତାଙ୍କଘରେ ପହଞ୍ଚି ଗଲାପରେ ମୁଁ ଚିଚିଣ୍ଡାକୁ ଫେରିଥିଲି ଏବଂ ତା ପରଦିନ ଅନ୍ୟ ଅଧ୍ୟାପକମାନଙ୍କ ସହ ସାଇକଲରେ ସିକିର୍ଡିଯାଇ ଭୋଜିଭାତରେ ସାମିଲ ହୋଇଥିଲି । ଥଟ୍ଟାରେ ବାଗ୍‌କୁ ସବୁବେଳେ ମୁଁ କହୁଥାଏ, ଦେଖ୍ ଧୋତି ନଦେଲେ ମୁଁ ତୋ ବାହାଘରକୁଯିବାର ପ୍ରଶ୍ନ ଉଠୁନାହିଁ ।



ବାରମ୍ବାର ମୋ ମୁହଁରେ ଏହି କଥା ବାହାରିବା ସମସ୍ତଙ୍କମେଳରେ ହାସ୍ୟରୋଳ ସୃଷ୍ଟିକରୁଥିଲା । ଭୋଜିଭାତ ଖାଇ, ପାନସିଗାରେଟ୍ ପରେ ଚିଚିଣ୍ଡା ଫେରିବାକୁ ଯେତେବେଳେ ଉଦ୍ୟତ ହେଉଛି, ଦେଖିଲି ଗୋଟାଏ ବେଗ୍, ମିଠାଖଜାରେ ଭର୍ତ୍ତି, ମୋ ସାଇକଲେର ହେଣ୍ଡେଲରେ ଝୁଲାଯାଇଛି । ଚିଚିଣ୍ଡାଆସି ନିଜ କୋଠରୀରେ ବେଗ୍‌ଖୋଲିବାରୁ ଦେଖାଗଲା, ଭିତରୁ ଗୋଟିଏ କୁମ୍ଭପକା ଗାମୁଛା ଜରିଭିତରେ ମହଜୁଦ ଥିଲା । ଏମିତି ଥିଲା ଆମ ସମ୍ପର୍କ, ଅଛି ମଧ, କିଛି ବର୍ଷ ତଳେ ତାର ଝିଅର ବାହାଘରକୁ ମଧ ଯାଇ ମୁଁ ଉଲ୍ଲସିତ ହୋଇଥିଲି । ବାକି ରହିଗଲେ ଶିକ୍ଷା ବିଭାଗର ଅଧାପକ ସାଧୁଚରଣ ସାହୁ, ଯେ ସିକିର୍ଡି ନିକଟସ୍ଥ ସତଲମା ଗ୍ରାମର ।

ଏହି ବାହାଘରମାନଙ୍କରେ ନିଜକୁ ସାମିଲକରି ବହୁ ପରିମାଣରେ ଆନନ୍ଦିତ ହୋଇଥିଲି, ମଜା ଲୁଟିଥିଲି, ସହଯୋଗୀ ଭାବରେ ମହଜୁଦ୍ ରହିଥିଲି । ଏକାଏକା ଚିଚିଣ୍ଡାରେ ରହି ସମୟର ସଦୁପଯୋଗ କରିଥିଲି, ବନ୍ଧୁତାକୁ ନିବିଡ଼କରିବାରେ ସମର୍ଥ ହୋଇଥିଲି । ଛାତିକୁ ଯାହା ଛୁଇଁଲା, ଲେଖିଲି, ଯାହା ଛୁଇଁ ନଥିଲା, ସବୁ ଉହ୍ୟ ହୋଇଗଲା ।



ଚୌରାନବେରୁ ପଞ୍ଚାନବେଭିତରେ ତୁହୀନକାନ୍ତ ପାଣ୍ଡେ ସମ୍ବଲପୁର ଜିଲ୍ଲାପାଳ ଥିଲେ । ଆର୍ଟିଷ୍ଟ ଫୋରମ ତରଫରୁ ଏକ ପ୍ରତିନିଧି ଦଳ ଜିଲ୍ଲାପାଳଙ୍କୁ ସାକ୍ଷାତକରି ପଶ୍ଚିମଓଡ଼ିଶାର ଲୋକନୃତ୍ୟ, ଲୋକଗୀତ, ଲୋକବାଦ୍ୟର ଯଥାଯଥ ସଂରକ୍ଷଣ ପାଇଁ ଏକ ମହୋତ୍ସବ ଆୟୋଜନ କରାଯିବାର ପ୍ରସ୍ତାବ ଲିଖିତଭାବରେ ଜଣେଇଥିଲେ । ଆର୍ଟିଷ୍ଟ ଫୋରମର ଆବାହକ ଅଶୋକ ମିଶ୍ରଙ୍କ ନେତୃତ୍ୱରେ ଆଗରୁ ଏଭଳି ସମ୍ମେଳନ କରାଯିବା ନେଇ ପୌରଭବନରେ ଏକାଧିକ ବୈଠକ ଅନୁଷ୍ଠିତହୋଇ ଅଲୋଚନା କରାଯାଇଥିଲା । ଜିଲ୍ଲାପାଳ ମହାଶୟ ଏଥିପାଇଁ ଠିକଣା ସମୟରେ ଉପଯୁକ୍ତ ପଦକ୍ଷେପ ନିଆଯିବାର ପ୍ରତିଶ୍ରୁତି ଦେଇଥିଲେ । ସେହି ସ୍ମାରକପତ୍ରକୁ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗକୁ ଜିଲ୍ଲାପାଳଙ୍କ ମାଧମରେ ପଠାଯାଇଥିଲା । ତେବେ, ଶ୍ରୀ ପାଣ୍ଡେ ଏବାବଦରେ କୌଣସି କାର୍ଯ୍ୟାନୁଷ୍ଠାନ ନେବା ପୂର୍ବରୁ ତାଙ୍କ ବଦଳିଆଦେଶ ଆସିଗଲା । ପଞ୍ଚାନବେ ମସିହାରେ ସମ୍ବଲପୁର ଜିଲ୍ଲାପାଳ ଭାବରେ ନରେନ୍ଦ୍ର କୁମାର ମିଶ୍ର ଯୋଗ ଦେଲେ ଏବଂ ସେହି ବର୍ଷ ସମ୍ବଲପୁର ଷ୍ଟାଡିୟମରେ କ୍ରୀଡ଼ାବିଭାଗ ତରଫରୁ ଯୁବମହୋତ୍ସବ ଆୟୋଜିତ ହୋଇଥିଲା । ଏହି ଉତ୍ସବରେ ସମ୍ବଲପୁରର ବହୁଅନୁଷ୍ଠାନ ସମ୍ବଲପୁରୀ

ଲୋକଗୀତ, ଲୋକନୃତ୍ୟ ଆଦି ପରିବେଷଣ କରିଥିଲେ, ମୁଖ୍ୟଅତିଥି ଭାବରେ ଯୋଗଦେଇଥିବା ଜିଲ୍ଲାପାଳ ନରେନ୍ଦ୍ର ମିଶ୍ରଙ୍କୁ ପ୍ରଭାବିତ କରିଥିଲା । ଏହି ଯୁବ ଉତ୍ସବର ବିଚାରକଭାବରେ ମୋସହ ଅରୁଣପ୍ରସନ୍ନ ସେଠ, ରଣଜିତ୍ ନାଗ ତଥା ରାଉରକେଲାର ଅଳକା ଚାନ୍ଦ୍ ପ୍ରମୁଖ ଯୋଗ ଦେଇଥିଲୁ । ଜିଲ୍ଲାପାଳ ଶ୍ରୀଯୁକ୍ତ ମିଶ୍ର ବିଜୟୀ ପ୍ରତିଯୋଗୀମାନଙ୍କୁ ପୁରସ୍କାର ବିତରଣୀ ପରେ ସଂକ୍ଷିପ୍ତ ଭାଷଣରେ ସମ୍ବଲପୁରୀ ନୃତ୍ୟଗୀତକୁ ଭୂୟସୀ ପ୍ରଶଂସାକରିଥିଲେ ଏବଂ ଏହାର ବିକାଶଦିଗରେ ଉଚିତ୍ ପଦକ୍ଷେପ ନିଆଯିବ ବୋଲି ନିଜ ପ୍ରତିବଦ୍ଧତା ପ୍ରକାଶକରିଥିଲେ ।

ଏହି ପ୍ରସଙ୍ଗ ବନ୍ଧୁ ଅଶୋକଙ୍କ ସହ ଆଲୋଚନାକରି ଜିଲ୍ଲାପାଳଙ୍କୁ ସାକ୍ଷାତ କରିବାପାଇଁ ନିଷ୍ପତ୍ତି ନେଇଥିଲୁ । ପରେ ଜିଲ୍ଲାପାଳଙ୍କ ସମ୍ମତିପରେ ତାଙ୍କ ବାସଭବନରେ ଆମେ ଦୁହେଁ ସାକ୍ଷାତକରି ଆର୍ଟିଷ୍ଟ ଫୋରମ୍ ପକ୍ଷରୁ ପ୍ରଦତ୍ତ ସ୍ମାରକପତ୍ର ସମ୍ପର୍କରେ ଅବଗତ କରିଥିଲୁ । ଆମର ପ୍ରତ୍ୟେକଟି ପ୍ରସ୍ତାବକୁ ସେ ଗମ୍ଭୀରତାର ସହ ଗ୍ରହଣକରିଥିଲେ ଏବଂ ଆଉଦିନେ ଆସି ଏ ସମ୍ପର୍କରେ ବିଧିବଦ୍ଧ ପ୍ରସ୍ତାବ ଦେବାପାଇଁ ପରାମର୍ଶ ଦେଇଥିଲେ । ଜିଲ୍ଲାପାଳଙ୍କଠାରୁ ସବୁଜସଙ୍କେତ ପାଇବାପରେ ଅଶୋକ ଓ ମୁଁ ଉତ୍ସାହିତହୋଇ ବାରମ୍ବାର ଆଲୋଚନାକରି ଲୋକଗୀତ ଓ ଲୋକନୃତ୍ୟଗୁଡ଼ିକୁ ନେଇ ସମ୍ବଲପୁରଠାରେ ଏକ ମହୋତ୍ସବର ପରିକଳ୍ପନା କରାଗଲା ଏବଂ ସେହି ମହୋତ୍ସବର ସମସ୍ତ ରୂପରେଖ ଲିଖିତରୂପରେ ଜିଲ୍ଲାପାଳଙ୍କୁ ଦେବାର ବ୍ୟବସ୍ଥା କରିଥିଲୁ । ସମସ୍ତ କାଗଜପତ୍ର ସହ ଛୟାନବେ ଗ୍ରୀଷ୍ମାବକାଶବେଳେ ଅଶୋକ ଏବଂ ମୁଁ ପୁଣିଥରେ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟକୁଯାଇ ନରେନ୍ଦ୍ରବାବୁଙ୍କୁ ଦେଖାକରି ଖୋଲାଖୋଲି ଆଲୋଚନା କରିଥିଲୁ । ଆମ ଆଲୋଚନାର ଏହି ପର୍ଯ୍ୟାୟରେ ମହୋତ୍ସବର ନାମ କିଭଳି ହେବ, ତାହା ପ୍ରାୟତଃ ନିଷ୍ପତ୍ତି ନିଆଯାଇଥିଲା । ଜିଲ୍ଲାପାଳଙ୍କ ପ୍ରସ୍ତାବଅନୁସାରେ ଏହି ପ୍ରସ୍ତାବିତ ମହୋତ୍ସବକୁ ଓଡ଼ିଶା ଲୋକସଂଗୀତ ଓ ଲୋକନୃତ୍ୟ ମହୋତ୍ସବ ବୋଲି ନାମକରଣ କରାଯାଇଥିଲା । ଏତଦ୍‌ବ୍ୟତିତ ସାଂଗଠନିକ କ୍ଷେତ୍ରରେ କେତୋଟି ସବ୍‌କମିଟି ରହିବ, କି କି କମିଟି ରହିବ, ସବୁ ପୁଙ୍ଖାନୁପୁଙ୍ଖ ଆଲୋଚନା ହେବାପରେ ନରେନ୍ଦ୍ରବାବୁ ଆମ ଦୁହିଙ୍କ ଉପରେ ବିଭିନ୍ନ କମିଟିଗୁଡ଼ିକର ଆବାହକଭାବରେ କେଉଁମାନେ ରହିବେ, ତାର ଏକ ସମ୍ଭାବ୍ୟ ତାଲିକା ପ୍ରସ୍ତୁତକରି ଯଥାଶୀଘ୍ର ତାହା ପ୍ରଦାନକରିବାକୁ କହିଲେ । ପରେ ଅଶୋକ ଓ ମୁଁ ଦୁଇଜଣ ଏକାନ୍ତରେ ବସି ବିଭିନ୍ନ କମିଟିର ଆବାହକ କେଉଁମାନେ ହେଲେ ଶୃଙ୍ଖଳିତଭାବରେ ମହୋତ୍ସବ ଆୟୋଜିତ ହୋଇପାରିବ, ତାହାର ଏକ ତାଲିକା

ପ୍ରସ୍ତୁତକରି ଜିଲ୍ଲାପାଳଙ୍କୁ ପ୍ରଦାନକରିଥିଲୁ । ସେହି ତାଲିକା ପାଇବା ପରେପରେ ହିଁ ଆଉ ସମୟ ନଷ୍ଟ ନକରି ଆବାହକମାନଙ୍କ ଏକ ବୈଠକ ଡକାଇଥିଲେ, ଯେଉଁଥିରେ ସର୍ବସମ୍ମତିରେ ପ୍ରସ୍ତାବିତ ଓଡ଼ିଶା ଲୋକସଂଗୀତ, ଲୋକନୃତ୍ୟ ମହୋତ୍ସବ ଆୟୋଜନ କରାଯିବାର ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ବିଭିନ୍ନ କମିଟିର ଆବାହକମାନଙ୍କୁ ନିଜ ନିଜ ସୁବିଧାଅନୁସାରେ କମିଟିର ବାକିସଭ୍ୟମାନଙ୍କୁ ସାମିଲ୍‌କରି ମହୋତ୍ସବ ନିମିତ୍ତ ନିଷ୍ପତ୍ତି ଗ୍ରହଣକରି କାମକୁ ଆଗେଇନେବାର ପରାମର୍ଶ ଦେଇଥିଲେ । ସମସ୍ତ କମିଟି ଜିଲ୍ଲା ସଂସ୍କୃତି ପରିଷଦ ଅଧିନରେ କାର୍ଯ୍ୟକରିବାର ପ୍ରସ୍ତାବ ମଧ୍ୟ ଗୃହିତ ହୋଇଥିଲା । ମୁଁ ସ୍ମରଣିକା, ଅଶୋକ ସାଂସ୍କୃତିକଦଳ ଚୟନ, ସଂଜୟ ମିଶ୍ର ମଞ୍ଚ ଓ ପ୍ରେକ୍ଷାଳୟ, ପ୍ରଫୁଲ୍ଲ ହୋତା ଖାଦ୍ୟ, ଦିଲୀପ ପାଢ଼ୀ ଡକ୍ୟୁମେଣ୍ଟେସନ୍, ସୁଧୀର ପୂଜାରୀ ଯାତାୟତ ଓ ରହଣୀ, ଏଭଳି ବିଭିନ୍ନ କମିଟିର ଆବାହକମାନେ ଖୁବ୍‌ଶୀଘ୍ର ନିଜନିଜ କମିଟି ସମ୍ପ୍ରସାରିତ କରିଥିଲେ । ଅଶୋକ ଓ ମୁଁ ଦୁଇଟି କମିଟିର ଆବାହକ ଥିବା ସତ୍ତ୍ୱେ ସାମଗ୍ରିକ ସାଂଗଠାନିକ ପ୍ରକ୍ରିୟା ବୁଝାବୁଝି କରୁଥିଲୁ । ପ୍ରଥମବର୍ଷ ହୋଇଥିବାରୁ ସଂଯୋଜକ ପଦବୀ ସୃଷ୍ଟି ହୋଇନଥିଲା ।

ଛୟାନବେ ଦଶହରା ବେଳକୁ ପ୍ରଥମ ଓଡ଼ିଶା ଲୋକ ସଂଗୀତ ଓ ଲୋକନୃତ୍ୟ ମହୋତ୍ସବର ରୂପରେଖ ଟାଉନ୍ ହଲ୍‌ରେ ଠିକଣା ହୋଇସାରିଥିଲା ଏବଂ ପ୍ରତ୍ୟେକ କମିଟି ସ୍ଥାନୀୟ ବୀର ସୁରେନ୍ଦ୍ରସାଏ ପ୍ରକୋଷ୍ଠରେ ବୈଠକମାନ ଆୟୋଜନକରି ବାରମ୍ବାର ଚର୍ଚ୍ଚାକରୁଥିଲେ । ସାରା ସମ୍ବଲପୁରରେ ଏହି ମହୋତ୍ସବକୁ ନେଇ ଚର୍ଚ୍ଚା ଆରମ୍ଭ ହୋଇଗଲା । ମାତ୍ର କେତେଜଣ ଆବାହକଙ୍କ ପଛରେ ସାରା ସମ୍ବଲପୁରର ସଂସ୍କୃତିସମ୍ପନ୍ନ ଯୁବଶକ୍ତି ଏକହୋଇ ମହୋତ୍ସବର ସଫଳତାପାଇଁ ଏକତ୍ରିତ ହୋଇଗଲେ । ପୂର୍ବରୁ ଏହି ମହୋତ୍ସବ ଟାଉନହଲ୍ ପରିସରରେଥିବା ଗଙ୍ଗାଧର ମଣ୍ଡପରେ ଆୟୋଜନ କରାଯିବାର ନିଷ୍ପତ୍ତି ଗୃହିତହୋଇଥିଲା । ମାସାଧିକକାଳ ପ୍ରଚଣ୍ଡ ପରିଶ୍ରମକରିଆରେ ବିଭିନ୍ନ ଆବାହକମାନେ ପ୍ରସ୍ତୁତ ହୋଇଗଲେ । ମୁଁ ମଧ୍ୟ ସ୍ମରଣିକାକମିଟିର ଆବାହକଭାବରେ ବିଭିନ୍ନ ଗବେଷକ, ଲେଖକମାନଙ୍କ ସହ ଯୋଗାଯୋଗ ରଖି ପ୍ରବନ୍ଧ ସଂଗ୍ରହରେ ଲାଗିପଡିଥିଲି । ସମଗ୍ର ମହୋତ୍ସବର ଏକ ଲୋଗୋପାଇଁ ମୋ' ଘରପାଖରେ ରହୁଥିବା ବନ୍ଧୁ ପ୍ରଦୀପ ବେହେରାଙ୍କୁ 'ନିଷାଣ'କୁ ଆଧାରକରି ଏକ ଚିତ୍ର ଆଙ୍କିବାପାଇଁ ଅନୁରୋଧ କରିଥିଲି । ସେ ମଧ୍ୟ ଯଥାଶୀଘ୍ର ଲୋଗୋ ତିଆରିକରି ମୋତେ ଦେଇଥିଲେ । ମୁଁ ତାକୁନେଇ ଦିଲୀପ ପାଢ଼ୀଙ୍କ ନିକଟକୁ ଯାଇ ତାଙ୍କ କମ୍ପ୍ୟୁଟରରେ ମାର୍ଜିତକରିବାର ଅନୁରୋଧ କଲି ଓ ପରେ

ଅଶୋକ ସମେତ ସମସ୍ତେ ଲୋଗୋକୁ ସର୍ବସମ୍ମତିରେ ଗ୍ରହଣ କରିଥିଲେ। ପଶ୍ଚିମଓଡ଼ିଶାର କୋଣ ଅନୁକୋଣରେ ଲୁଚିରହିଥିବା ଲୋକଶିଳ୍ପୀମାନଙ୍କୁ ନିମନ୍ତ୍ରଣ କରିବାପାଇଁ ଅଶୋକଙ୍କ ଉଦ୍ୟମରେ ତିନିଚାରୋଟି ଦଳ ଗଠନକରାଯାଇ ବିଭିନ୍ନ ସ୍ଥାନକୁ ପଠାଯାଇଥିଲା। ମୁଁ ଅନ୍ୟତମ ସଭ୍ୟ ଅରବିନ୍ଦ ନାୟକଙ୍କ ସହ ବରଗଡ, ବଲାଙ୍ଗିର, କଳାହାଣ୍ଡି ଆଦି ଜିଲ୍ଲା ଗସ୍ତରେଯାଇ ଘୁଡକା, ଘୁମରା, ଡାଲଖାଇ, ବଜାଶାଲ ଆଦି ନୃତ୍ୟଦଳମାନଙ୍କୁ ଆମନ୍ତ୍ରଣ ଜଣାଇଲୁ। ନାରୀସେବା ସଦନରେ ଚିତ୍ରକଳା ପ୍ରଦର୍ଶନୀ, ସୁରେନ୍ଦ୍ର ସାଏ ପ୍ରକୋଷ୍ଠରେ ଆଲୋଚନାଚକ୍ର, ନାରୀସେବା ସଦନର ଖୋଲା ସ୍ଥାନରେ ଖାଦ୍ୟପେୟର ବ୍ୟବସ୍ଥା, ବିଭିନ୍ନ ସାଂସ୍କୃତିକ ଦଳଙ୍କ ରହଣିପାଇଁ ଧର୍ମଶାଳା ଆଦିର ବ୍ୟବସ୍ଥା କରାଗଲା। ପ୍ରଚାରପାଇଁ ବଡ ହୋର୍ଡିଂ, ପୋଷ୍ଟର, ତୋରଣ ଆଦି ଲଗାଯିବା ପରେ, ପୂର୍ବରୁ ପ୍ରସ୍ତାବିତ ଜାନୁଆରୀ ୪, ୫, ୬ ଏଭଳି ତିନିଦିନ ବ୍ୟାପି ମହୋତ୍ସବର ରୂପରେଖ ସ୍ପଷ୍ଟ ହେଲାପରେ ଓଡ଼ିଶା ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ଉଦ୍‌ଘାଟକଭାବରେ ଯୋଗଦାନ କରିଥିଲେ। ଉଦ୍‌ଘାଟନୀ ଅବସରରେ ବ୍ରଜେନ୍ଦ୍ରର ସଂଗୀତ ନିର୍ଦ୍ଦେଶନାରେ ଗଙ୍ଗାଧରଙ୍କ ରଚିତ ବିଶ୍ୱଦେଖ ମଧୁମୟ ଗୀତଟିକୁ ପୃଷ୍ଠପଟରେ ସମବେତ କଣ୍ଠଗାନ କରାଯାଇଥିଲା। ଉଦ୍‌ଘାଟନୀ ପରେ ପ୍ରଥମେ ଲୋକଗୀତ ଓ ପରେ ଲୋକନୃତ୍ୟ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା। ଏହି ମହୋତ୍ସବ ପାଇଁ ମୋ'ସହ କଲ୍ୟାଣୀ, ପ୍ରଦୀପ ପଣ୍ଡା, କମଳା ସାହୁ ଉଦ୍‌ଘୋଷକ ଭାବରେ କାର୍ଯ୍ୟକୁ ପରିଚାଳନା କରିଥିଲେ। ମୋର ମନେଅଛି, ଏଥିପାଇଁ ମୁଁ ନିଜକୁ ସୁରେନ୍ଦ୍ରସାଏଙ୍କ ବେଶରେ ମଞ୍ଚକୁ ଉଦ୍‌ଘୋଷକଭାବରେ ଓହ୍ଲାଇଥିଲି।

ସମସ୍ତ ଆବାହକଙ୍କ ମାତ୍ରାଧିକ ପରିଶ୍ରମ ଫଳରେ ପ୍ରଥମ ଲୋକମହୋତ୍ସବ ସଫଳତାର ଶୀର୍ଷକୁ ପହଞ୍ଚିପାରିଥିଲା। ମହୋତ୍ସବର ଶେଷରେ ଗିରିଧାରୀ ଗମାଙ୍ଗୋଙ୍କ ଢାପ୍‌ବାଦ୍ୟର ତାଳେତାଳେ ଜିଲ୍ଲାପାଳ ନରେନ୍ଦ୍ର ମିଶ୍ରଙ୍କ ସହ ସମସ୍ତ ଆବାହକ, ସଭ୍ୟମାନଙ୍କ ସମ୍ମିଳିତନୃତ୍ୟ ସମ୍ବଲପୁରର ଏକତାର ବାର୍ତ୍ତା ପ୍ରଚାରକରିବାରେ ସହାୟକ ହୋଇଥିଲା। ସାରାଓଡ଼ିଶାକୁ ସମ୍ବଲପୁର ଲୋକମହୋତ୍ସବ ନୂତନ ଦିଗଦର୍ଶନ ଦେଲା, ଧୀରେଧୀରେ ସମଗ୍ର ଓଡ଼ିଶାରେ ଜିଲ୍ଲାସ୍ତରୀୟ ଲୋକମହୋତ୍ସବମାନ ଆୟୋଜିତ ହେଲା, ଲୋକସଂସ୍କୃତି ବାବଦରେ ଲୋକେ, ବୁଦ୍ଧିଜୀବୀ ତଥା ଗବେଷକମାନେ ଚେତନ୍ୱିତ ହେଲେ, ଅବଲୁପ୍ତ ଅନେକ ଲୋକନୃତ୍ୟ ପୁନର୍ବିନ୍ୟାସ ହେଲା, ଦୁଲଦୁଲି, ମାଦଳ, ଢାପ, ଘୁମୁରା ଆଦି ଲୋକବାଦ୍ୟର ଲୋକପ୍ରିୟତା ବୃଦ୍ଧିହେଲା, ଡାଲଖାଇ,

ରସରକେଲୀ, ମାଏଲାଜଡ ନାଚିବାପାଇଁ ଭଲ ଘର ଝିଅମାନେ ଆଗ୍ରହୀ ହେଲେ, ଅନେକ ନୂତନ ଲୋକନୃତ୍ୟ ଅନୁଷ୍ଠାନମାନ ଗଠିତହୋଇ ସମ୍ବଲପୁରୀ ଲୋକନୃତ୍ୟ ଉପରେ ଗବେଷଣାତ୍ମକ ପ୍ରଦର୍ଶନମାନ ପରିବେଷିତ ହେଲା, ଏମିତି ଆହୁରି ଅନେକ ଲକ୍ଷ୍ୟ ସାଧିତ ହୋଇପାରିଲା ।

ସମ୍ବଲପୁର ଲୋକମହୋତ୍ସବ ଆରମ୍ଭହେବାର ଆଜକୁ ପ୍ରାୟ ବାଇଶ, ତେଇଶ ବର୍ଷ ହୋଇଗଲାଣି । ବହୁ ପ୍ରତିକୂଳ ପରିସ୍ଥିତିସତ୍ତ୍ୱେ ଏହା ପ୍ରତ୍ୟେକ ବର୍ଷ ସରକାରୀ, ବେସରକାରୀ ସଂସ୍ଥାଗୁଡ଼ିକର ମିଳିତ ଉଦ୍ୟମରେ ଆୟୋଜିତ ହେବାରେ ଲାଗିଛି । ଗଙ୍ଗାଧର ମଣ୍ଡପରୁ ଡେଇଁ ଗଙ୍ଗାଧର ମୁକ୍ତମଞ୍ଚ, ପରେ ଗଙ୍ଗାଧର ମେହେର ମହାବିଦ୍ୟାଳୟ ପ୍ରାଙ୍ଗଣ ଏବଂ ସମ୍ପ୍ରତି ଅଏଁଠାପାଲି ସ୍ଥିତ ପିଏଚଡି ପଡ଼ିଆ ବା ବୀର୍ସାମୁଣ୍ଡା ପଡ଼ିଆରେ ନିର୍ମିତ ବିରାଟମଞ୍ଚରେ ଆୟୋଜିତ ହେଉଛି । ପ୍ରଥମବର୍ଷର ଦୁଇତିନି ହଜାର ଦର୍ଶକ ବଦଳରେ ହଜାରହଜାର, ଅଗଣିତ ଦର୍ଶକମାନଙ୍କ ଉପସ୍ଥିତିରେ ମହୋତ୍ସବ ତା'ର ନାମକରଣର ସାର୍ଥକତା ପ୍ରତିପାଦନ କରୁଛି, ମଞ୍ଚକଳା ସହ, ପଲ୍ଲୀଶ୍ରୀ ମେଳା, ବିରାଟ କଳା ପ୍ରଦର୍ଶନୀ, ଆଲୋଚନାଚକ୍ରମାନ ଦର୍ଶକମାନଙ୍କୁ ଆକୃଷ୍ଟ କରୁଛି । ମହୋତ୍ସବ, ମେଳାରେ ରୂପାୟିତ ହୋଇଯାଇଛି ।

ମୋ ଥେସିସ୍ ଉପସ୍ଥାପନ କଲାବେଳେ, ଏଭଳି ସ୍ୱପ୍ନ ନଥିଲା ସତ, କିନ୍ତୁ ଲୋକ ସଂସ୍କୃତିର ଗବେଷଣା ଦିଗ ପ୍ରତି ଅଧ୍ୟାପକମାନଙ୍କୁ ଆକର୍ଷିତ କରିଥିଲା । ମୋ ପରେପରେ ଆହୁରି ସଂଖ୍ୟାଧିକ ଗବେଷକ ଲୋକସଂସ୍କୃତି ବିଷୟରେ ଗବେଷଣାକରି ବହୁ ଲୁକ୍କାୟିତ ତଥ୍ୟକୁ ଲୋକଲୋଚନକୁ ଆଣିବାରେ ସମର୍ଥ ହୋଇଛନ୍ତି । ନାଟକଗୁଡ଼ିକରେ ଲୋକସଂସ୍କୃତିର ଛାପ ଅଦ୍ୟାବଧି ପରିଲକ୍ଷିତ ହେଉଛି । ସମସ୍ତ ସନ୍ଦର୍ଭଗୁଡ଼ିକୁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ପ୍ରକାଶନର ବ୍ୟବସ୍ଥା କରିପାରିଲେ ପାଠକ ଆହୁରି ନୂତନ ତଥ୍ୟସହ ଜଡ଼ିତ ହୋଇପାରନ୍ତେ ।

ନାଟକ ମୋର ନିଶା ଥିବାବେଳେ, ଲୋକସଂସ୍କୃତି ମୋର ଅଧ୍ୟବସାୟର ବିଷୟବସ୍ତୁ । ଉଭୟ ପ୍ରସଙ୍ଗରେ କଳା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ତେଣୁ ଜୀବନସହ ନାଟକ ଓ ଲୋକସଂସ୍କୃତି ସମାନ୍ତରାଳ ଭାବରେ ଗତିକରିଥିବା ହେତୁ ଭାରବୁହା ଭାବରେ ମୁଁ ଅବିଶ୍ରାନ୍ତ ଗତିକରି ଚାଲିଛି । ଗୋଟିଏ ଡାଲାରେ ନାଟକ, ଅନ୍ୟ ଡାଲାରେ ଲୋକକଳା, ଏଭଳି ଭାରୋତ୍ତୋଳନ କରିବା କଣ କମ୍ ଭାଗ୍ୟର କଥା ! ଏହି ଯାତ୍ରାରେ ପରମାଣପୁର, ଚିଚିଣ୍ଡା, ସବୁ ପାଶୋରି ହୋଇଯାଇଛି, ଆଗକୁ ଦିଶୁଛି କେବଳ ଦୂରଦିଗନ୍ତର ନୀଳିମା, ଅସ୍ତରାଗର ରଙ୍ଗରେ ରଞ୍ଜିତ ପଶ୍ଚିମଦିଗନ୍ତ, ତାରି ବକ୍ଷରେ

ଏବେବି ଭାସମାନ ଆଶାର ଶୁଭ୍ରବାଦଲ, ଦୂରଆକାଶରେ ମିଞ୍ଜିମିଞ୍ଜି ଜଳି ଆସୁଥିବା କୁଆଁତାରା ଭଳି ଲକ୍ଷ୍ୟସ୍ଥଳ ।।



ସତାନବେର ପ୍ରାରମ୍ଭରେ ସମ୍ବଲପୁରର ଟାଉନ୍‌ହଲ୍ ପରିସର ସ୍ଥିତ ଗଙ୍ଗାଧର ମଣ୍ଡପ ପଶ୍ଚିମଓଡ଼ିଶାର ଲୋକଗୀତ, ଲୋକନୃତ୍ୟ, ଲୋକବାଦ୍ୟର ସାଂଗୀତିକଲହରରେ ଉଚ୍ଛୁଳିଉଠୁଥିବା ବେଳେ ବର୍ଷପ୍ରାନ୍ତରେ ଝାଡୁଆପଡାର ଆରଣ୍ୟକ ମଣ୍ଡପ ନିନାଦିତ ହୋଇଉଠିଲା ସମ୍ବଲପୁରୀ ଭାଷାର ସୁଲଳିତ ଧ୍ୱନିରେ । ସମଗ୍ର ଓଡ଼ିଶାକୁ ବିଂଶଶତାବ୍ଦୀର ପଶ୍ଚିମ ଓଡ଼ିଶାର ସର୍ବଶ୍ରେଷ୍ଠ ଅବଦାନଭାବରେ ପ୍ରଥମତଃ ଲୋକମହୋତ୍ସବ ଥିବାବେଳେ ଦ୍ୱିତୀୟରେ ଆସେ ସ୍ୱର ଓ ଯୁବ ଉଦୟନ ଦ୍ୱାରା ମିଳିତଭାବରେ ଆୟୋଜିତ ବୀର ସୁରେନ୍ଦ୍ରସାଏ ରାଜ୍ୟସ୍ତରୀୟ ସମ୍ବଲପୁରୀ ନାଟକ ପ୍ରତିଯୋଗିତା, ଯାହାର ପ୍ରଥମ ପ୍ରଦର୍ଶନ ହୋଇଥିଲା ସତାନବେ ଡିସେମ୍ବର ଶେଷ ସପ୍ତାହରେ । ସ୍ୱରର ମୁଖ୍ୟ ପଞ୍ଚାନନ ମିଶ୍ରଙ୍କ ମାନସକନ୍ୟା ଭାବରେ ଜନ୍ମିତ ସମ୍ବଲପୁରୀ ନାଟକ ପ୍ରତିଯୋଗିତା ସମଗ୍ର ପଶ୍ଚିମଓଡ଼ିଶାର ଭାଷାସାହିତ୍ୟର ବିକାଶ କ୍ଷେତ୍ରରେ ଏକ ମାଇଲଖୁଣ୍ଟ ଭାବରେ ପରିଚିତ । ଆରଣ୍ୟକ ମଣ୍ଡପ ଭଳି ଖୋଲାମଣ୍ଡପରେ ଏକ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତା ଆୟୋଜନ କରିବାଭଳି ଅଭିନବ ପରିକଳ୍ପନା, ପରେପରେ ସଫଳତାର ଶୀର୍ଷକୁ ପହଞ୍ଚି ତାର ରଜତ ଜୟନ୍ତୀ ପାଳନ କରିବାକୁ ଯାଉଛି । ଖୋଲାମଣ୍ଡପରୁ ଆରଣ୍ୟକ ମଣ୍ଡପ ଏବେ ବାତାନୁକୂଳିତ ପ୍ରେକ୍ଷାଳୟରେ ରୂପାୟିତ ହୋଇଛି, ଏଭଳି ନବନିର୍ମାଣ ପଛରେ ବି ରହିଛି ସମ୍ବଲପୁରୀ ନାଟକ ପ୍ରତିଯୋଗିତାର ନୀରବ ସମର୍ଥନ ।

ଲୋକମହୋତ୍ସବ ପରି ଆଞ୍ଚଳିକ ସ୍ୱାଭିମାନରେ ପରିପୂର୍ଣ୍ଣ ମାନସିକତାରେ, ସମ୍ବଲପୁରୀ ଭାଷାର ସାହିତ୍ୟକୁ ନାଟକ ମାଧ୍ୟମରେ ଆହୁରି ପ୍ରସାରିତ, ବିକଶିତ କରିବାର ସ୍ୱପ୍ନ ଦେଖୁଥିବା କେଇଜଣ ନାଟ୍ୟପ୍ରେମୀ ଯୁବକମାନଙ୍କ କଠିନ ପରିଶ୍ରମର ସଫଳଚିତ୍ର ଆଜି ସ୍ପଷ୍ଟ ପରିଲକ୍ଷିତ ହେଉଛି । ପ୍ରଥମବର୍ଷର ଉତ୍ସୁକତା ଆଜି ବି ନିଛକ ଦିଶେ, କେବଳ ଆୟୋଜକମାନଙ୍କ ମୁହଁ ଓ ହୃଦୟରେ ନୁହେଁ, ନାଟକ ଦେଖିଆସୁଥିବା ପ୍ରତିଟିଦର୍ଶକଙ୍କ ନାଟ୍ୟପିପାସୁ ଆଖିରେ । ସତାନବେରୁ କ୍ରମାଗତଭାବରେ କେବଳ ସମ୍ବଲପୁରୀ ଭାଷାର ନାଟକ ପ୍ରତିଯୋଗିତା ଆୟୋଜନକରି ଆୟୋଜକ ଅନୁଷ୍ଠାନ ସମଗ୍ର ଓଡ଼ିଶାକୁ ସୁନ୍ଦର ବାର୍ତ୍ତାଟିଏ ଦେବାର ହକ୍ ପାଇଛନ୍ତି ଯେ, ସମ୍ବଲପୁରୀ ଏକ

ସ୍ୱତନ୍ତ୍ର, ସ୍ୱୟଂସମ୍ପୂର୍ଣ୍ଣ ଭାଷା, ଯେଉଁଭାଷାରେ ଏକଦା ସ୍ୱାଧୀନତା ପୂର୍ବରୁ ଏ ଅଞ୍ଚଳର ମହାମନିଷୀ ଡ. ଜନାର୍ଦ୍ଦନ ପୂଜାରୀ, 'ରାଏତ୍‌କଣା' ନାଟକ ବଙ୍ଗଳାରୁ ଅନୁବାଦକରି ସମ୍ବଲପୁରୀ ଭାଷାର ଲିଖିତ ସ୍ୱରୂପର ଭିତ୍ତି ସ୍ଥାପନକରିଥିଲେ, ଶଶୀଭୂଷଣ ମିଶ୍ରଶର୍ମା 'ଗୌନ୍ତିଆ' ନାଟକ ରଚନାକରି ମଞ୍ଚାୟନ କରିବାର ଯୋଜନା କରିଥିଲେ, ମୁରାରୀ ପ୍ରସାଦ ମିଶ୍ର, କୃଷ୍ଣ ପ୍ରସାଦ ମିଶ୍ର ଓ ଶିବ ପ୍ରସାଦ ମିଶ୍ର ମିଳିତଭାବରେ 'ଗୌନ୍ତିଆବାବୁ' ନାଟକ ରଚନାକରି, ତାକୁ ଷାଠିଏ ଦଶକରେ ଓଡ଼ିଶା ସଂସ୍କୃତି ଏକାଡେମୀର ସମ୍ବଲପୁର ଅଧିବେଶନ ଅବସରରେ ନାରୀସେବା ସଦନ ମଞ୍ଚରେ ମଞ୍ଚସ୍ଥକରି ଭାଷାର ଧ୍ୱଜା ଉତ୍ତୋଳନ କରିଥିଲେ, ଅଟଳବିହାରୀ ପଣ୍ଡା 'ଫଟାକପାଲ୍' ନାଟକକୁ ମଞ୍ଚାୟନସହ ପ୍ରକାଶିତକରି ସମ୍ବଲପୁରୀ ଭାଷାକୁ ଲିଖିତ ଅବସ୍ଥାରୁ ଛାପିତ ସ୍ୱରୂପକୁ ବୀରଦର୍ପରେ ଆଣିପାରିଥିଲେ, ଭାଷାସାହିତ୍ୟର ଜନକ ସତ୍ୟନାରାୟଣ ବହିଦାର ଷାଠିଏ, ସତୁରୀ ଦଶକରେ ବୌଦ୍ଧଭିକ୍ଷୁଙ୍କ ଭଳି ଶବ୍ଦସଂଗ୍ରହ କରି ସମ୍ବଲପୁରୀ ଭାଷାର ବ୍ୟାକରଣ ରଚନାକରି ତାହାର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ କରିଥିଲେ, ନବେଦଶକର ପ୍ରାରମ୍ଭରେ ବିନୋଦ ପସାୟତ, ମଙ୍ଗଳୁଚରଣ ବିଶ୍ୱାଳ ଭଳି ଆଗଧାଡ଼ିର ଗୀତିକବିମାନେ ବଳିଷ୍ଠ ସମ୍ବଲପୁରୀ ନାଟକ ରଚନାକରି ନିଜକୁ ସଫଳ ନାଟ୍ୟକାର ଭାବରେ ପରିଚିତ ହୋଇଥିଲେ, ଭାଷାତତ୍ତ୍ୱବିତ୍ ଡ. ପ୍ରଫୁଲ୍ଲ ତ୍ରିପାଠୀଙ୍କ ସମ୍ବଲପୁରୀ-ଓଡ଼ିଆ ଭାଷାକୋଷକୁ ଓଡ଼ିଶା ସାହିତ୍ୟ ଏକାଡେମୀ ବାଧହେଲା ପ୍ରକାଶକରିବା ପାଇଁ । ନବେଦଶକରୁ ଏକବିଂଶ ଶତାବ୍ଦୀର ପ୍ରଥମଦଶକ ପର୍ଯ୍ୟନ୍ତ ସୃଷ୍ଟି, ସ୍ୱର, ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦ, କଖଗ, ଧର୍ମାମ୍ବା କଲ୍‌ଚରାଲ୍, ଏସୋସିଏସନ, ବହୁମୁଖୀ ଶ୍ରମମଙ୍ଗଳକେନ୍ଦ୍ର ଆଦି ନାଟ୍ୟାନୁଷ୍ଠାନମାନେ କ୍ରମାଗତ ଭାବରେ ସମ୍ବଲପୁରୀ ନାଟକ ରାଜ୍ୟର ବିଭିନ୍ନ ସ୍ଥାନରେ ଅଭିନୀତକରି କେବଳ ନାଟକ ନୁହେଁ, ଭାଷା ଓ ସାହିତ୍ୟର ପ୍ରଚାର-ପ୍ରସାର କ୍ଷେତ୍ରରେ ମଧ୍ୟ ତୃଣମୂଳରୁ ବୈପ୍ଳବିକତା ପ୍ରଚେଷ୍ଟା କରିଥିଲେ, ତାହାର ବିଜୟବାର୍ତ୍ତାକୁ ସମଗ୍ର ବିଶ୍ୱର ରଙ୍ଗମଞ୍ଚ ପର୍ଯ୍ୟନ୍ତ ଘେନିଯାଇପାରିଥିଲେ ।

ପ୍ରଥମ କିଛିବର୍ଷ ପରେ ଯଦିଓ ସ୍ୱର ଆୟୋଜନରୁ ନିଜକୁ ଦୂରେଇ ରଖିଲା, ପରେପରେ କିନ୍ତୁ ଯୁବଉଦୟନର ଯୁବ ସଦସ୍ୟମାନେ ଏହାକୁ ଏକ ଆହ୍ୱାନଭାବରେ ଗ୍ରହଣକରି ଆଜିଯାଏଁ ପ୍ରତିଯୋଗିତାକୁ ଅତ୍ୟନ୍ତ ସଫଳଭାବରେ ଆୟୋଜନ କରିଚାଲିଛନ୍ତି ।

ବାସ୍ତବରେ, କବିତା ଓ ଗୀତିକବିତା ପରେ ନାଟ୍ୟ ସାହିତ୍ୟ ହିଁ ଏହି ଭାଷା ଆନ୍ଦୋଳନର ନେତୃତ୍ୱ ନେଇଛି । ମୁଁ ଏହି ପ୍ରତିଯୋଗିତାରେ କିଛିବର୍ଷ ବିଚାରକ ଭାବରେ ଯୋଗ ଦେଇଥିଲି, ଦର୍ଶକ ଭାବରେ ପ୍ରାୟ ପ୍ରତ୍ୟେକବର୍ଷର ଅର୍ଦ୍ଧାଧିକ ନାଟକ ଦେଖିଛି । ଏପରିକି କିଛିବର୍ଷ ପରେ ନାଟ୍ୟକାର, ସଂଗୀତ ନିର୍ଦ୍ଦେଶକ ତଥା ନିର୍ଦ୍ଦେଶକ ଭାବରେ ଅଂଶଗ୍ରହଣ କରିଛି । ପ୍ରଥମ ଦଶବର୍ଷରୁ କିଛି ଅଧିକବର୍ଷ ପଶ୍ଚିମଓଡ଼ିଶାର ବହୁ ଜିଲ୍ଲାରୁ ନାଟ୍ୟଦଳଗୁଡ଼ିକ ଆସି ବିଭିନ୍ନ ସ୍ୱାଦର ନାଟକ ଏହି ପ୍ରତିଯୋଗିତାରେ ନାଟକ ମଞ୍ଚସ୍ଥକରି ପ୍ରଶଂସିତହୋଇ ନିଜକୁ ପ୍ରତିଷ୍ଠା କରିଛନ୍ତି । ଏବେ ବି ଦର୍ଶକ ଡିସେମ୍ବର ଶେଷସପ୍ତାହକୁ ଅପେକ୍ଷା କରିଥାନ୍ତି ନାଟକ ଦେଖିବାପାଇଁ, ନଭେମ୍ବର ଆସିଲେ ସହରର ଚର୍ଚ୍ଚା ଆରମ୍ଭ ହୋଇଯାଏ କେଉଁ କେଉଁ ଦଳ ଏଥର କି କି ନାଟକ ନେଇଆସୁଛନ୍ତି ।

ପ୍ରଥମ ବର୍ଷର ନାଟ୍ୟ ମାହୋଲ୍ ବହୁତ ସରଗରମ୍ ଥିଲା । ସେମିତି ତ ଓଡ଼ିଶାରେ ଅନେକ ନାଟକ ପ୍ରତିଯୋଗିତା ଆୟୋଜିତ ହେଉଛି, ତେବେ ରାଜ୍ୟର ଇତିହାସରେ ପ୍ରଥମଥର ପାଇଁ ଓଡ଼ିଆକୁ ଛାଡ଼ି ଅନ୍ୟଏକ ଭାଷାର ନାଟକ ପ୍ରତିଯୋଗିତା ହେଲା ବୀର ସୁରେନ୍ଦ୍ରସାଏ ନାଟକ ପ୍ରତିଯୋଗିତା । ତେଣୁ, ଯେ କୌଣସି ଦର୍ଶକ ଏହି ପ୍ରତିଯୋଗିତା ବେଳେ ପ୍ରେକ୍ଷାଳୟ ଭିତରକୁ ପ୍ରବେଶକରେ, ତାର ମାନସିକତାରେ କେବଳ ନାଟକର ମନୋରଞ୍ଜନର ଲକ୍ଷ୍ୟ ନଥାଏ, ତା'ସହ ଥାଏ ସମ୍ବଲପୁରୀ ଭାଷାପ୍ରତି ଆଯାଚିତ ମମତା, ଶ୍ରଦ୍ଧା । ସୁନ୍ଦରଗଡ, କଳାହାଣ୍ଡି, ସୋନପୁର, ବଲାଙ୍ଗିର, ଦେବଗଡ, ବୌଦ୍ଧ, ବରଗଡ, ସମ୍ବଲପୁର ଆଦି ଜିଲ୍ଲାମାନଙ୍କରୁ ବହୁ ବିଶିଷ୍ଟ ନାଟ୍ୟଦଳ, ଏହି ପ୍ରତିଯୋଗିତାରେ ଅଂଶଗ୍ରହଣକରି ନିଜକୁ ଭାଗ୍ୟବାନ ମନେକରନ୍ତି । ପାଞ୍ଚଶହରୁ ଅଧିକ ସମ୍ବଲପୁରୀ ନାଟକ ପ୍ରଦର୍ଶିତ ହୋଇଥିବା ଏହି ଆରଣ୍ୟକ ମଣ୍ଡପରୁ ସଂଖ୍ୟାଧିକ ନାଟ୍ୟକାର, ନିର୍ଦ୍ଦେଶକ, ଅଭିନେତା, ଅଭିନେତ୍ରୀ, ସଂଗୀତକାର, ମଞ୍ଚଶିଳ୍ପକାର ମଞ୍ଚକୁ ଓହ୍ଲାଇ ପୁରସ୍କୃତ ହେବାସହ ଖ୍ୟାତିଅର୍ଜନ କରିଛନ୍ତି । ଗତାନୁଗତିକ ଧାରାର ନାଟକ ସହିତ ଭିନ୍ନ ସ୍ୱାଦର ନାଟକ ମଧ୍ୟ ଏଠାରେ ମଞ୍ଚାୟନହୋଇ ବହୁ ପରୀକ୍ଷାନିରୀକ୍ଷା ମଧ୍ୟ କରାଯାଇଛି ଏହିମଞ୍ଚରେ । ଖଡିଆଳ ସାଂସ୍କୃତିକ ଅନୁଷ୍ଠାନ, ସାରଥୀ, ଭବାନୀପାଟଣା, ଅବର୍ଣ୍ଣଗୁଡ଼ା, ଲୁ, ପଦ୍ମପୁର, ଆତ୍ମପ୍ରକାଶ, ବରଗଡ, ନବଜୀବନ, ସୁନ୍ଦରଗଡ, କାରୁଣ୍ଡ କଳାମଞ୍ଚ, ଭବାନୀପାଟଣା, ଜନନାଟ୍ୟ ମଞ୍ଚ, ରା' ନାଟୁଆ ଡେରା, ବରଗଡ, ମୁନ୍ଲାଇଟ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ଚେତନା, ମଞ୍ଚନାୟକ, ଧନୁପାଲି ଭଳି ଆହୁରି ଅନେକ

ନାଟ୍ୟାନୁଷ୍ଠାନ ଏହି ପ୍ରତିଯୋଗିତାରେ ନିଜନିଜ ସର୍ବଶ୍ରେଷ୍ଠ କଳାକୃତି ପ୍ରଦର୍ଶନକରି ଖ୍ୟାତିଅର୍ଜନ କରିଛନ୍ତି । ରବିରଞ୍ଜନ ପ୍ରଧାନ, ଜୀତେନ୍ ପଟ୍ଟନାୟକ, ପ୍ରଦୀପ ଭୋଳ, ଶଙ୍କର ମହାନନ୍ଦ, ପ୍ରଦୀପ ପଣ୍ଡା, ଅଶୋକ ବହିଦାର, କେଶରଞ୍ଜନ ପ୍ରଧାନ, ପ୍ରଦୀପ ଡି. ମାଝି, ରାକେଶ ମୁଣ୍ଡା, ରାଜେଶ କେରିଆ, ନକୁଳ ବାଦୀ ଭଳି ନାଟ୍ୟକାର, ରବିରଞ୍ଜନ ପ୍ରଧାନ, କେଶରଞ୍ଜନ ପ୍ରଧାନ, ପ୍ରଦୀପ ଭୋଳ, ଅଶୋକ ବହିଦାର, ନକୁଳ ବାଦୀ, ଚୂଡ଼ାମଣି ରଥ, ପ୍ରଦୀପ ଡି ମାଝି, ପରମେଶ୍ୱର ମୁଣ୍ଡ ଭଳି ନିର୍ଦ୍ଦେଶକମାନଙ୍କ ସର୍ବଶ୍ରେଷ୍ଠ ନାଟକ ଏହି ପ୍ରତିଯୋଗିତାର ଉତ୍କର୍ଷତାକୁ ପ୍ରତିପାଦିତ କରିଛି । ଲେଟନୀ ବାଗ, ମୀନା ବୋଷ୍, ସୁଶୀଲା ନାୟାର, ମମତା ଦୀପ, କନକ ତନସେନା, ମମତା ପଣ୍ଡା, ସାଧଣା ବହିଦାର ଭଳି ଖ୍ୟାତିସମ୍ପନ୍ନ ଅଭିନେତ୍ରୀ ଏହି ମଞ୍ଚକୁ ଆସି ନିଜ କଳାପାଟବତାରେ ଦର୍ଶକଙ୍କୁ ଆପ୍ୟାୟିତ କରିଛନ୍ତି । ଠିକ୍ ସେହି ଭଳି, ଅନେକ ଅଭିନେତା, ଅଭିନେତ୍ରୀ, ସହଯୋଗୀ କଳାକାର, ଶିଶୁ ଶିଳ୍ପୀମାନଙ୍କ ଅଭିନୟରେ ମୋହିତ ହୋଇଛନ୍ତି ଏଠାକାର ଦର୍ଶକମଣ୍ଡଳୀ, କେଶରଞ୍ଜନଙ୍କ କୁଇଲିକୁଇଲି କିଏ ରଜା, ଗଧର୍ କଥା, ରବିରଞ୍ଜନଙ୍କ ଉପାସୀର୍ ଚିଠି, ପ୍ରଦୀପ ଭୋଳଙ୍କ ଚିଠି, ଚିନି, ଅଶୋକ ବହିଦାଙ୍କ ବା, ଘା, ଲୁହୁର୍ ରଙ୍ଗ୍, ପ୍ରଦୀପ ଡି. ମାଝିଙ୍କ ବନାଗୁଦା, ଟୋକିମାରା, ପରମେଶ୍ୱରଙ୍କ ମିଗ୍‌ନୀନା, ତମେ ଅଛ ବଲି, କେତେ ଦୂରେ ମୋର୍ ଆକାଶ୍, ବୈଷ୍ଣବ ଜନତୋ ଆଦି ସର୍ବକାଳୀନ ନାଟକ । କୋଡିଏ, ବାଇଶ୍‌ବର୍ଷର ଇତିହାସ ରଚନାପାଇଁ କାଗଜକଲମ ଶେଷ ହୋଇଯାଇପାରେ, ହେଲେ କଳାତ୍ମକ ଉପାଦାନର ଅଭାବ ରହିବନାହିଁ ।

୨୦୦୮ରୁ ୧୧ ଯାଏଁ ମୋର କିଛି ନାଟକ ଏହି ପ୍ରତିଯୋଗିତାରେ ଅଂଶଗ୍ରହଣ କରିଥିଲା ଦୁଇଟି ଅନୁଷ୍ଠାନ ତରଫରୁ । ଆଠ ମସିହାରେ ତମେ ଅଛ ବୋଲି, ସମ୍ବର୍ଦ୍ଧନା, ନଅ ମସିହାରେ କେତେ ଦୂରେ ମୋର୍ ଆକାଶ୍ ଓ ବଣ୍ଟିର ବା, ଚୁମ୍‌କୀର୍ ମାଁ, ଏଭଳି ଦୁଇବର୍ଷ ଭିତରେ ମୋରଚିତ ଚାରୋଟି ନାଟକ ଅଭିନୀତ ହୋଇଥିଲା । ଚାରୋଟିଯାକ ନାଟକର ନାଟ୍ୟକାର ଭାବରେ ଯଦିଓ ଅଂଶଗ୍ରହଣ ଥିଲା, ତଥାପି ତମେ ଅଛ ବଲି ଓ କେତେ ଦୂରେ ମୋର୍ ଆକାଶ୍ ନାଟକ ଦୁଇଟି ମୋର ମନପସନ୍ଦର ନାଟକ ଥିଲା, ଯେଉଁଥିନ୍ତ୍ର ମୁଁ ମଞ୍ଚରେ କିଛି ପରୀକ୍ଷା କରିବାର ସୁଯୋଗ ପାଇଥିଲି । ତମେ ଅଛ ବଲି ନାଟକଟିରେ ସ୍ୱାମୀ ଓ ସ୍ତ୍ରୀ ଏଭଳି ଦୁଇଟି ମାତ୍ର ଚରିତ୍ର ଥିଲା, ଆରମ୍ଭରୁ ଶେଷ ବିନା ଦୃଶ୍ୟ ବିଭାଜନରେ ନାଟକ ଅଭିନୀତ ହୋଇଥିଲା । ମଞ୍ଚରେ ଦୁଇଟି ଚରିତ୍ର ଥିଲା, ଅନ୍ୟ ତିନୋଟି ଚରିତ୍ର ଉହ୍ୟ ଥିଲେ

ହେଁ ଫୋନ୍ ମାଧ୍ୟମରେ ତାଙ୍କ ଉପସ୍ଥିତି ଦର୍ଶକ ଅନୁଭବ କରିଥିଲେ । ପ୍ରଦୀପ ପଣ୍ଡା ଓ ମମତା ପଣ୍ଡା ଏହି ନାଟକର ଦୁଇ ଚରିତ୍ରରେ ଅଭିନୟ କରିଥିଲେ । ମମତାଙ୍କୁ ନେଇ ପ୍ରଥମେ ମୁଁ ଦ୍ୱନ୍ଦରେ ଥିଲି, ମୋର ସନ୍ଦେହ ଥିଲା, ମମତା ଠିକ୍ ଭାବରେ ଚରିତ୍ରକୁ ମଞ୍ଚରେ ଥୋଇପାରିବେ ନା ନାହିଁ ! ! ତେବେ, ମୁଁ ନିଜପ୍ରତି ଆତ୍ମବିଶ୍ୱାସ ଜନ୍ମେଇ ତାଙ୍କୁ ନାଟକର ମୀନାକ୍ଷୀ ଚରିତ୍ରପାଇଁ ନିର୍ବାଚିତ କରିଥିଲି । ପ୍ରଦୀପ, ପୂର୍ବରୁ ମୋର ଅନ୍ୟ ଏକ ନାଟକ ମନ୍ ଜାନି ମୁନୁଷ୍‌ରେ ଅଭିନୟକରି ଶ୍ରେଷ୍ଠଅଭିନେତା ଭାବରେ ପୁରସ୍କୃତ ହୋଇଥିଲେ । ତେବେ, ତମେ ଅଛ ବଲି ତାଙ୍କ ପାଇଁ ମଧ୍ୟ ଥିଲା ଏକ ଆହ୍ୱାନ । ସେ ବର୍ଷ ବଲାଙ୍ଗିରର ଜଗଦାନନ୍ଦ ଛୁରିଆ, ପ୍ରଦୀପ ଡି. ମାଝି ଏବଂ ରାଉରକେଲାର କେଦାର ଆଚାର୍ଯ୍ୟ ପ୍ରମୁଖ ବିଚାରକ ଥିଲେ । କିଛି ଶାବ୍ଦିକ ବିଶୃଙ୍ଖଳା ବ୍ୟତିତ ନାଟକଟି ସଫଳତାର ସହ ମଞ୍ଚସ୍ଥ ହେଲା । ନାଟକ ପ୍ରଦର୍ଶନପରେ ଉପସ୍ଥିତ ଦର୍ଶକ ନାଟକକୁ ଭୂୟସୀ ପ୍ରଶଂସା କରିଥିଲେ । ତେବେ, ପ୍ରଦୀପ ଦ୍ୱିତୀୟ ଶ୍ରେଷ୍ଠ ପୁରସ୍କାର ପାଇବା ଘଟଣା ନାଟକର ଲେଖକ ଭାବରେ ମନ ଭିତରେ କିଛି କ୍ଷୋଭ ରହିଗଲା । ପ୍ରଦୀପଙ୍କ ନାମ ନିର୍ଦ୍ଦେଶକ ତାଲିକାରେ ଥିଲେ ହେଁ ନାଟକର ଆମୂଳଚୂଳ ପ୍ରଯୋଜନାକୁ ମୁଁ ନିୟନ୍ତ୍ରଣ କରୁଥିଲି । ପ୍ରତିଯୋଗିତାରେ ହାର୍‌ଜିତ୍ ଚାଲେ, ହେଲେ ଶ୍ରେଷ୍ଠକୃତି ଚୟନ କରିବାର ବିଚାରକମାନଙ୍କ ରଚି ଉପରେ ନିର୍ଭର କରେ । ଏଭଳି ପରିସ୍ଥିତି ନାଟ୍ୟକଳା ପରିଷଦର ପ୍ରତିଯୋଗିତାରେ ମଧ୍ୟ ମୁଁ ଆଗରୁ ସମ୍ମୁଖୀନ ହୋଇଛି । ଆଗରୁ ଯେହେତୁ ମୁଁ ଏହି ପ୍ରତିଯୋଗିତାର ବିଚାରକ ଭାବରେ ତିନିବର୍ଷ କାମ କରିଛି, ପ୍ରତିଯୋଗୀମାନଙ୍କର କ୍ଷୋଭକୁ ସାମ୍ନା କରିଛି । ତେଣୁ ନୀରବରେ ପରବର୍ତ୍ତୀବର୍ଷକୁ ଅପେକ୍ଷାକରିବାର ଶାନ୍ତ୍ୱନାର ବାଣୀ ଶୁଣାଇଥିଲି ପ୍ରଦୀପକୁ । କହିବା ବାହୁଲ୍ୟ, ଯା ପରେ 'ତମେ ଅଛ ବଲି' ନାଟକଟି ଓଡ଼ିଶାର ପ୍ରାୟ ମୁଖ୍ୟ ସହରମାନଙ୍କ ମଞ୍ଚସ୍ଥହୋଇ ବହୁପୁରସ୍କାରରେ ମଣ୍ଡିତ ହୋଇଥିଲା । ଏକା ମୁଁ ତିନୋଟି ସ୍ଥାନରେ ଶ୍ରେଷ୍ଠ ନାଟ୍ୟକାର, ଚାରୋଟି ସ୍ଥାନରେ ଶ୍ରେଷ୍ଠ ସଂଗୀତନିର୍ଦ୍ଦେଶକ ଭାବରେ ପୁରସ୍କୃତ ହୋଇଥିଲି । ପ୍ରଦୀପ ଓ ମମତା ମଧ୍ୟ ସଂଖ୍ୟାଧିକ ସ୍ଥାନରେ ଶ୍ରେଷ୍ଠଅଭିନେତା ଓ ଅଭିନେତ୍ରୀ ଭାବରେ ପୁରସ୍କୃତ ହେଲେ । ପୁରସ୍କାର ଅବଶ୍ୟ ବଡ଼କଥା ନୁହେଁ, ସବୁଠାରୁ ବଡ଼କଥା ହେଲା ଦର୍ଶକୀୟ ସ୍ୱୀକୃତି ।

ପରବର୍ଷ ନ' ମସିହାର ପ୍ରତିଯୋଗିତା ଯେତେବେଳେ ପାଖେଇ ଆସିଲା, ପ୍ରଦୀପ ପୁଣି ମନେପକାଇ ଦେଲେ ଯୁବଉଦୟନର ପ୍ରତିଯୋଗିତା କଥା । ମୁଁ ନାଟକର କଥାବସ୍ତୁ କିଛି ଚିନ୍ତା ନକରି କେବଳ ନାଁଟି ତାଙ୍କୁ କହିଦେଲି, ଯାଅ, ମଞ୍ଚ ନାୟକର ନାଟକର

ନାଁ 'କେତେ ଦୂରେ ମୋର୍ ଆକାଶ୍' ବୋଲି ଆୟୋଜକମାନଙ୍କୁ ଜଣାଇଦିଅ । ପରେ ଯେତେବେଳେ ରିହାର୍ସାଲ ଦିନ ଆସିଗଲା, ପ୍ରଦୀପ ମୋତେ ପାଣ୍ଡୁଲିପି ମାଗିଲେ । ମୁଁ ତ ଲେଖି ନାହିଁ ବୋଲି ଉତ୍ତର ଦେବାରୁ ତାଙ୍କମନ ଖଟା ହୋଇଗଲା । କହୁକହୁ କହି ସିନା ଦେଲି, ହେଲେ ମନ ଭିତରେ ଜ୍ୱଳନ ଥାଏ, **କୁହୁଳୁଥାଏ,** ତେବେ ଲାର୍ଭା ଭାବରେ ନିର୍ଗତ ହେବାର ବାକିଥାଏ । ତାଙ୍କୁ ଆଶ୍ୱାସନା ଦେଲି, ଆସନ୍ତାକାଲି ନାଟକର ପାଣ୍ଡୁଲିପି ନେବ, ରିହାର୍ସାଲ ମଧ୍ୟ କରିବ । ଏ ଚର୍ଚ୍ଚା ବୋଧହୁଏ, କଟକରାସ୍ତାର ଶାନ୍ତିର ଚା' ଦୋକାନର ପିଣ୍ଡାରେ ବସି ସମାପନ ହୋଇଥିଲା । ପରେ ସେଇଠି ଭେଟପଡି ସମଗ୍ର ପାଣ୍ଡୁଲିପି ସେଇଠାରେ ବସି ଚା', ସିଗାରେଟ୍ ସହ ପଢ଼ିଥିଲି । ନାଟକରେ ଥିଲା କେବଳ ଗୋଟିଏ ଚରିତ୍ର, ମନମୋହନ ମହାପାତ୍ର, ଜଣେ ସେଡିସ୍ଟ ଚରିତ୍ର । ଏହି ଏକକ ଚରିତ୍ରବିଶିଷ୍ଟ ନାଟକକୁ ମଞ୍ଚରେ ପ୍ରଦର୍ଶିତକରିବା କେତେ ଯେ କଠିନ ବ୍ୟାପାର, ପ୍ରଦୀପ ମର୍ମେମର୍ମେ ଅନୁଭବ କରିଥିଲେ । ହେଲେ ମୋ ଭରସା, ତାଙ୍କ ଆତ୍ମବିଶ୍ୱାସ ନାଟକକୁ କିଭଳି ସଫଳ କଲା, ତାହା ପରେ ଆଲୋଚନା କରିବି । ତେବେ, ମୋର ଭବିଷ୍ୟବାଣୀ ପୁଣି ସତ୍ୟ ହେଲା, ପ୍ରଦୀପ ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହେଲେ, ମୁଁ ଶାନ୍ତିର ଦୀର୍ଘଶ୍ୱାସଟିଏ ଛାଡ଼ି ପରବର୍ତ୍ତୀ ନାଟକର କଳ୍ପନାରେ ନିଜକୁ ମଜ୍ଜାଇ ରଖିଲି ।

ଏଇ ତ ନାଟକର କରିସ୍ମା ।।



**ଲୋ**କମହୋତ୍ସବ, ସମ୍ବଲପୁରୀ ନାଟକ ପ୍ରତିଯୋଗିତାପରି ସମ୍ବଲପୁର ପୁସ୍ତକମେଳା ମଧ୍ୟ ସମ୍ବଲପୁରର ଏକ ସମ୍ମାନଜନକ ସମାରୋହ । ସତାନବେରେ ଜ୍ୟୋତିବିହାର ଓ ସମ୍ବଲପୁର ସହରର କେତେକ ବୁଦ୍ଧିଜୀବୀମାନଙ୍କ ଉଦ୍ୟମରେ ପ୍ରତିଷ୍ଠିତ ସେତୁ ଅନୁଷ୍ଠାନ ପ୍ରଥମବର୍ଷ କେତେକ ଶିକ୍ଷା ସମ୍ବନ୍ଧୀୟ ଆଲୋଚନାଚକ୍ର ଆୟୋଜନ ଭିତରେ ନିଜକୁ ସୀମିତ ରଖିଥିଲା । ପରେ ଅନୁଷ୍ଠାନର ଉପଦେଷ୍ଟା ଡ. କୁମୁଦରଞ୍ଜନ ପାଣିଗ୍ରାହୀଙ୍କ ମାନସସନ୍ତାନ ଭାବରେ ଅନେଶତ ମାର୍ଚ୍ଚମାସରେ ଆୟୋଜିତ ହୋଇଥିଲା ପ୍ରଥମ ସମ୍ବଲପୁର ପୁସ୍ତକମେଳା । ଫାଟକପଟକୁ ଲାଗିଥିବା ଗଙ୍ଗାଧର ମେହେର ମହାବିଦ୍ୟାଳୟର ପଢ଼ିଆରେ ମାତ୍ର ତିରିଶଟି ଷ୍ଟଲ୍‌କୁ ନେଇ ଏହା ରାଉରକେଲାର ଏକ ପୁସ୍ତକସଂସ୍ଥା ସହ ମିଳିତଭାବରେ ଆୟୋଜିତ ହୋଇଥିଲା । ସାତଦିନ ବ୍ୟାପୀ ଏହି ମେଳାର ପ୍ରଥମ ଓ ଶେଷରାତିକୁ ଛାଡ଼ିଦେଲେ ବାକି ପାଞ୍ଚ ରାତିଗୁଡ଼ିକରେ ସାହିତ୍ୟଆଲୋଚନା ସଭାମାନ ରଖିବା ମୋର ପ୍ରସ୍ତାବକୁ

ସେତୁ କମିଟି ଗ୍ରହଣ କରିଥିଲା ଓ ସର୍ବଶେଷରେ ମୋ ଉପରେ ହିଁ ସେଗୁଡ଼ିକର ପରିଚାଳନା ଦାୟିତ୍ୱ ନ୍ୟସ୍ତକଲା ।

ମୁଁ ପ୍ରାୟତଃ ବିଭିନ୍ନ ସଭାମାନଙ୍କେ କହେ, ଲୋକମହୋତ୍ସବ ଆମ ଅତୀତର କଥା କହେ, ସମ୍ବଲପୁରୀ ନାଟକ ପ୍ରତିଯୋଗିତା ସମସାମୟିକ ସମାଜର ଦର୍ପଣ ଭଳି କାମ କରେ ଓ ପୁସ୍ତକମେଳା ଭବିଷ୍ୟତର କାର୍ଯ୍ୟସୂଚୀ ନିର୍ଣ୍ଣୟ କରିଥାଏ । ସମ୍ବଲପୁରରେ ବୌଦ୍ଧିକ, ସାହିତ୍ୟିକ ତଥା ସାଂସ୍କୃତିକ ପରିବେଶ ସୃଷ୍ଟି କରିବାରେ ପୁସ୍ତକ ମେଳାର ଅଦ୍ୱିତୀୟ ଅବଦାନ ରହିଛି । ତିରିଶଟି ମାତ୍ର ଷ୍ଟଲସହିତ ସଜ୍ଜିତହେଲେ ହେଁ କଟକର ବାଲୁବଜାରସ୍ଥିତ ଖ୍ୟାତିସମ୍ପନ୍ନ ପୁସ୍ତକପ୍ରକାଶକମାନଙ୍କ ଉପସ୍ଥିତି ମେଳାର ଶୋଭାବର୍ଦ୍ଧନ କରିଥିଲା । ପ୍ରଥମଥର ଆୟୋଜିତ ହେଉଥିବାରୁ ସମ୍ପାଦକ ନିମାଇଁଚରଣ ପଣ୍ଡା, ଅଧ୍ୟାପକ ଅଶୋକ ଦାସ, ଶିକ୍ଷକ ବାଳକୃଷ୍ଣ ମିଶ୍ରଙ୍କ ସହ ମୁଁ ମଧ୍ୟ କଟକ ଯାଇ କଟକର ପ୍ରକାଶମାନଙ୍କୁ ସମ୍ବଲପୁର ପୁସ୍ତକମେଳାକୁ ଆସିବାପାଇଁ ନିମନ୍ତ୍ରଣ କରିଥିଲୁ । ସାତଦିନର ମେଳାରେ ଆରମ୍ଭ ଓ ଶେଷ ରାତିକୁ ବାଦ୍ ଦେଲେ ବାକି ପାଞ୍ଚଦିନ ରାତିବେଳା ସାହିତ୍ୟର ବିଭିନ୍ନ ବିଷୟଉପରେ ଆଲୋଚକମାନଙ୍କୁ ନିମନ୍ତ୍ରଣକରି ଆସରମାନ ଅନୁଷ୍ଠିତ ହୋଇଥିଲା । ସବୁଠାରୁ ବେଶି ଆକର୍ଷଣୀୟ ହୋଇଥିଲା ଶେଷରାତିର ହାସ୍ୟକବି ସମ୍ମେଳନ । ପୁସ୍ତକମେଳାରେ ହାସ୍ୟକବିତା ପଠନକରିବା ପରମ୍ପରା ସମ୍ବଲପୁର ପୁସ୍ତକମେଳାର ସମଗ୍ର ଓଡ଼ିଶାକୁ ବିଶିଷ୍ଟ ଅବଦାନ କହିଲେ ଭୁଲ୍ ହେବ ନାହିଁ । କେବଳ ନିର୍ବାଚିତ ଓ ନିମନ୍ତ୍ରିତ କବିମାନେ ହିଁ ଏହି ଆସରରେ କବିତା ପଠନ କରୁଥିଲେ । ମନୋରଞ୍ଜନ ସାହୁ, ସୁଶୀଲ ମିଶ୍ର, ଦୁର୍ଗା ମାଧବ ପଣ୍ଡା, ଜ୍ଞାନ ହୋତା, ସତ୍ୟାନାଶ, ଅଚ୍ୟୁତ ପୁରୋହିତ, ଶାନ୍ତନୁ ପାଣିଗ୍ରାହୀ, ରାଧୁ ମିଶ୍ର ପ୍ରମୁଖ ବାରମ୍ବାର ଏହି ଆସରରେ ଯୋଗଦେଇ କେବଳ ପାଠୋତ୍ସବକୁ ସଫଳ କରିଥିଲେ, ତାହା ନୁହେଁ, ନିଜକୁ ମଧ୍ୟ ପ୍ରତିଷ୍ଠିତ କରିପାରିଥିଲେ । ଆଲୋଚନାଚକ୍ରଗୁଡ଼ିକର ପରିଚାଳନା ଭାର ଯେହେତୁ ମୋଉପରେ ନ୍ୟସ୍ତ ଥିଲା, ସବୁ କାର୍ଯ୍ୟକ୍ରମକୁ ମୁଁ ହିଁ ସଂଯୋଜନା କରୁଥିଲି । ମୁଁ ସ୍ୱାଧିନ ଭାବରେ ବକ୍ତା, କବି, ବିଷୟାଦି ଚୟନ କରୁଥିଲି, ସମ୍ପୂର୍ଣ୍ଣ କାର୍ଯ୍ୟକ୍ରମର ତାଲିକାକୁ କେବଳ କୁମୁଦସାର୍‌ଙ୍କୁ ଦେଖାଇ ଆଗକୁ ବଢୁଥିଲି । ନିମନ୍ତ୍ରିତ ଅତିଥିମାନଙ୍କ ଆତିଥ୍ୟ, ଆପ୍ୟାୟନ, ରହିବାଖାଇବା, ଯିବାଆସିବା ସମସ୍ତ କାର୍ଯ୍ୟ ମୋତେ ହିଁ ବୁଝିବାପାଇଁ ପଡୁଥିଲା । ଏଥି ସହ, ଦୂରଦୂରାନ୍ତରୁ ଆସୁଥିବା ପ୍ରକାଶକମାନଙ୍କ ପାଇଁ ରହିବାବ୍ୟବସ୍ଥା ମଧ୍ୟ ବେଳେବେଳେ ବୁଝିବାକୁ ପଡୁଥିଲା ।



ପ୍ରତ୍ୟହ ଦିନ ଦୁଇଟାରେ ମେଳାପରିସର ଖୋଲୁଥିଲା ଓ ରାତି ନ' ଟାରେ ତାଲା ପଡୁଥିଲା । ଶନିବାର, ରବିବାରକୁ ଛାଡ଼ି ଦେଲେ ବାକିଦିନ ମୁଁ କଲେଜରୁ ସିଧା ଗଙ୍ଗାଧର ମେହେର କଲେଜରେ ବସ୍‌ରୁ ଓହ୍ଲାଇ ମେଳା ପ୍ରାଙ୍ଗଣକୁ ଚାଲି ଆସୁଥିଲି । ସନ୍ଧ୍ୟା ନଇଁଆସୁଥିବା ବେଳେ ମାଇକ୍ରୋଫୋନ୍‌ରେ ସାହିତ୍ୟସମ୍ବନ୍ଧୀୟ ବକ୍ତବ୍ୟମାନ ଅନର୍ଗଳ ନାଟକୀୟ ଶୈଳୀରେ ଉପସ୍ଥାପନ କରି ମୁଁ ଦର୍ଶକମାନଙ୍କ ଭିତରେ ସାହିତ୍ୟ ଓ ପୁସ୍ତକପଠନ, ପୁସ୍ତକକ୍ରୟ ବାବଦରେ ସଚେତନତା ସୃଷ୍ଟି କରୁଥିଲି । ଅନେକ ଦର୍ଶକ କେବଳ ମୋର ସେହି ଧାରାବିବରଣୀମୂଳକ ନାଟକୀୟ ବକ୍ତବ୍ୟ ଶୁଣିବାପାଇଁ ବହୁରାତି ଯାଏଁ ପରିସର ମଧ୍ୟରେ ରହୁଥିଲେ । ତା'ରି ମାଧ୍ୟମରେ ଅନେକଙ୍କ ସହ ବ୍ୟକ୍ତିଗତ ସମ୍ପର୍କ ମଧ୍ୟ ପ୍ରତିଷ୍ଠା ହେଉଥିଲା, ପୁସ୍ତକମେଳା ସହ ଜନସାଧାରଣଙ୍କ ସମ୍ପର୍କ ମଜବୁତ ହେଉଥିଲା । ସେତୁର ସଭାପତି ସ୍ୱର୍ଗତ କ୍ଷୀରୋଦ ମିଶ୍ରଙ୍କ ଦୂରଦୃଷ୍ଟି, ଉପସ୍ଥିତ ବୁଦ୍ଧିଫଳରେ ଅନେକ କଠିନକାର୍ଯ୍ୟ ମଧ୍ୟ ସୂଚାରୁରୂପେ ସମ୍ପନ୍ନ ହେଉଥିଲା । କ୍ଷୀରୋଦ୍‌ବାବୁ ମୋତେ ବହୁତ ସ୍ନେହ କରୁଥିଲେ, ମୋର ସାଂଗଠାନିକ ଦକ୍ଷତାପ୍ରତି ଉଭୟ କ୍ଷୀରୋଦବାବୁ ଓ କୁମୁଦସାର୍‌ଙ୍କ ପ୍ରଚଣ୍ଡ ଆସ୍ଥା ଥିଲା । ଉତ୍ସାହୀ କ୍ଷୀରୋଦବାବୁ ହାସ୍ୟକବିତା ପାଠୋତ୍ସବରେ ସ୍ୱରଚିତ କବିତାପାଠ କରି ଦର୍ଶକମାନଙ୍କୁ ଆପ୍ୟାୟିତ କରୁଥିଲେ । କୁମୁଦସାର୍ ମୋତେ ଭାଇଠୁ ବଳି ଭଲପାଆନ୍ତି, ମୋର ନାଟ୍ୟପ୍ରତିଭାର ସେ ଜଣେ ପ୍ରଶଂସକ ଥିଲେ, ଚିଚିଣ୍ଡା ଧନୁଯାତ୍ରା ଦେଖିବାପରେ ସେ ମୋର ଅଭିନୟ କୁଶଳତାକୁ ଭୂୟସୀ ପ୍ରଶଂସା କରିଥିଲେ । ତାଙ୍କ ପ୍ରତି ମୋର ସମ୍ମାନବୋଧ ପାଇଁ ହିଁ ମୁଁ ପୁସ୍ତକମେଳାର ଆୟୋଜନପାଇଁ ଲାଗୁଥିଲି ।

କଲେଜରୁ ବସ୍ ଯୋଗେ ଫେରିବାବାଟରେ ପୁସ୍ତକମେଳାକୁ ଚାଲିଯାଇ ବିଭିନ୍ନ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା, ରାତି ନ'ଟାରେ ତାଲା ପଡିବାପରେ ଘରକୁ ସାଢ଼େ ନ' ରୁ ଦଶ'ଟା ଭିତରେ ପହଞ୍ଚି ଘରଲୋକଙ୍କୁ ହଇରାଣ କରିବା ଆଦି ଘଟଣାମାନ ସମ୍ମୁଖୀନ କରି ବେଳେବେଳେ ଆୟୋଜନରୁ ଓହରି ଯିବାର ଇଚ୍ଛା ମନଭିତରେ ଜାଗରିତ ହେଉଥାଏ । ତିରିଶରୁ ଦେଢ଼ଶହ ପର୍ଯ୍ୟନ୍ତ ଷ୍ଟଲ୍ ବୃଦ୍ଧି ପାଇବାପରେ କାର୍ଯ୍ୟବୋଝ ବଢ଼ିବାରେ ଲାଗିଲା, ଶରୀର ଆଉ ସମର୍ଥ ହେଲାନାହିଁ ଏତେ କାମ ମୁଣ୍ଡାଇବାରେ । ୨୦୦୩ ମସିହାରେ ସେତୁକମିଟି ନିର୍ମଳ ପାଢ଼ୀ ସ୍ମୃତିପୁରସ୍କାର ପାଇଁ ମୋ ନାମ ମନୋନୀତ କଲା, ମୁଁ ତାକୁ ତୀବ୍ର ବିରୋଧ କରିଥିଲି । ନିଜ ସଂସ୍ଥାରୁ ନିଜେ ପୁରସ୍କାର ଗ୍ରହଣ କରିବା ପକ୍ଷରେ ମୁଁ ନଥିଲି । ସଭାପତି, ଉପସଭାପତି ସମସ୍ତଙ୍କୁ ମୋର ବ୍ୟକ୍ତିଗତ ମତଜଣାଇ ପୁରସ୍କାର ଗ୍ରହଣ ନ କରିବାକୁ ଜିଦ୍ ଧରିଥିଲି । ତେବେ

ବରିଷ୍ଠ ଗୁରୁସ୍ଥାନୀୟ ବ୍ୟକ୍ତିମାନଙ୍କ ଚାପରେ ମଞ୍ଚରୁ ମୋତେ ଏହି ପୁରସ୍କାର ଗ୍ରହଣ କରିବାକୁ ପଡିଥିଲା ଭିଜାଭିଜା ଆଖିରେ। କେହି ମୋର ପ୍ରତିବାଦକୁ ଗ୍ରହଣ କରି ନଥିଲେ, ଲୋକଲଜ୍ଜାରୁ ମୁକ୍ତି ପାଇବାର କୌଣସି ବାଟ ଆଉ ଖୋଲା ନଥିଲା, କେହି ମୋର ମାନମର୍ଯ୍ୟାଦା ପ୍ରତି ଭୃକ୍ଷେପ କରି ନଥିଲେ। ଏହା ମୋର ସମ୍ପୂର୍ଣ୍ଣ ବ୍ୟକ୍ତିଗତ ମତ, ନିଜ ଅନୁଷ୍ଠାନରୁ ନିଜ ପୁରସ୍କାର ଗ୍ରହଣକରିବା ପରମ୍ପରାକୁ ମୁଁ ନିଜେ ବିରୋଧ କରିଥାଏ। ତେବେ ଅନ୍ୟମାନଙ୍କ ପ୍ରତି ମୋର ସମ୍ମାନବୋଧ ନିକଟରେ ମୁଁ ସମ୍ପୂର୍ଣ୍ଣ ପରାଜୟ ବରଣ କରିଥିଲି।



ଚିଚିଣ୍ଡା ରହଣିକାଳରେ ବାଙ୍ଗିପାଲି ଛକର ହରିହୋଟେଲ୍ ବାମପଟକୁ ଥିବା ଦି' ବଖରା ଖପରଛୁଆଁ ଅସଜଡ଼ା କୋଠରୀରେ ଜୀବନ ଜୀଉଁଥିବାବେଳେ ଚିଚିଣ୍ଡା ଗାଁ ଭିତର କୋଡ଼ିଏବାଇଶ ବର୍ଷର ପିଲାଟିଏ ମୋ ପାଖକୁ ଆସୁଥିଲା, ମୋ ନାଟକ ବାବଦରେ ଆଲୋଚନା କରୁଥିଲା, ଗୀତଗାଇ ଜାଣୁଥିଲା, ନାଚୁଥିଲା ପ୍ରବଳ, କଥାରେ କଥାରେ ଦାଏକା ଟିପୁଥିଲା, ଚିଚିଣ୍ଡାର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଭାଗ ନେଉଥିଲା, ଛୋଟ ଛୁଆମାନଙ୍କୁ ନାଚ ଶିଖାଉଥିଲା, ଦେଖିବାକୁ ଗୁଲୁଗୁଲିଆ, ଡଉଲଡାଉଲ ଦିଶୁଥିଲା, ତାରି ନାଁ ହେଲା ବୁଦ୍ଧଦେବ ଦାସ। ତାର ନାଟ୍ୟରଚନା ପ୍ରତି ପ୍ରବଳଆଗ୍ରହ ଦେଖି, ତାର ଭଦ୍ରୋଚିତ ବ୍ୟବହାରରେ ଆକୃଷ୍ଟହୋଇ ରେଡିଓ ପାଇଁ କିଛି ନାଟକ, ଦଶ କୋଡ଼ିଏ ମିନିଟ ଅବଧିର ନାଟକ ରଚନାକରି ମୋତେ ଦେଖାଇବାପାଇଁ କହିଥିଲି। ସେ ମୋଠୁ ସବୁଜ ସଙ୍କେତ ପାଇ, ଆଗ୍ରାହାନ୍ୱିତ ହୋଇ 'ଦୁଲାରୀ' ନାମରେ ଛୋଟନାଟକଟିଏ ଆଣି ଦେଖାଇଲା। ମୋର ସ୍ୱଳ୍ପଜ୍ଞାନ ବଳରେ ସେଇ ପାଣ୍ଡୁଲିପିଟି ଆଣି ମୋହାତରେ ଧରାଇଦେଲା। ପରେ ପଲ୍ଲିଶ୍ରୀ ମହାବିଦ୍ୟାଳୟର ନାଟ୍ୟସଂସଦ ତରଫରୁ ସେହି ନାଟକଟି ଆକାଶବାଣୀ ସମ୍ବଲପୁରର ଘରସଂସାର କାର୍ଯ୍ୟକ୍ରମ ପାଇଁ କେବଳ ନାରୀଚରିତ୍ର, ଅର୍ଥାତ୍ କେବଳ ଛାତ୍ରୀମାନଙ୍କ ଅଂଶଗ୍ରହଣରେ ରେକର୍ଡିଂହୋଇ ପ୍ରସାରିତ ହୋଇଥିଲା। ଏଥିରେ ସେ ସମୟର ଛାତ୍ରୀ ମହଲେ ଗାଁର ମୋହିନୀ ହୋତାଙ୍କ ସମେତ ଆହୁରି ଚାରିପାଞ୍ଚଜଣ ଅଂଶଗ୍ରହଣ କରିଥିଲେ। ଏ ନାଟକଟି ଏ ଯାଏଁ ସେହି ଘରସଂସାର କାର୍ଯ୍ୟକ୍ରମରେ ବାଜୁଛି।

ଦୁଲାରୀ ନାଟକର ସଫଳତା ନାଟ୍ୟକାର ବୁଦ୍ଧଦେବ ଦାସଙ୍କ ଆଗ୍ରହକୁ ଦ୍ୱିଗୁଣିତ କରିଥିଲା। ପରେପରେ ଲାଗ୍‌ଲାଗ୍ ଆହୁରି ତିନିଚାରୋଟି ଛୋଟ ନାଟକ ରଚନା

କରିଥିଲେ ମୋ ଅନୁରୋଧରେ, ମୁଁ ସେହି ନାଟକଗୁଡ଼ିକୁ ଆକାଶବାଣୀ ସମ୍ବଲପୁରର ବିଭିନ୍ନ କାର୍ଯ୍ୟକ୍ରମପାଇଁ ପ୍ରସ୍ତୁତ କରିଥିଲି ଓ ସେଗୁଡ଼ିକ ପ୍ରସାରିତ ହୋଇଥିଲା । ବେତାର ନାଟକ ପରେ ବୁଦ୍ଧଦେବଙ୍କଠାରୁ ମଞ୍ଚପାଇଁ ନାଟକଟିଏ ଲେଖାଇବାର ମୋର ପ୍ରବଳ ଆଗ୍ରହ ଥିଲା । ମୋ ନିଜ ଆଗ୍ରହ ମଧ୍ୟ ଥିଲା, ନୂତନ ନାଟ୍ୟକାରମାନଙ୍କ ସହ କାମକରିବାର । ସମ୍ବଲପୁରର ନନ୍ଦପଡାସ୍ଥିତ ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦର କଳାକାରମାନେ କଟକରେ ବିଶିଷ୍ଟ ନାଟ୍ୟକାର କାର୍ତ୍ତିକ ରଥଙ୍କ ଦ୍ୱାରା ଆୟୋଜିତ ହେବାକୁଥିବା ଜାତୀୟ ନାଟକ ପ୍ରତିଯୋଗିତାରେ ଅଂଶଗ୍ରହଣ କରିବାପାଇଁ ମୋତେ ଅନୁରୋଧ କରିଥିଲେ । ପୂର୍ବରୁ ତାଙ୍କପାଇଁ ଅନେକବର୍ଷ ଧରି ନାଟକ କରିଥିବାରୁ ମୋ ଉପରେ ସେମାନଙ୍କ ଯଥେଷ୍ଟ ଆସ୍ଥା ଓ ବିଶ୍ୱାସ ଥିଲା । ଏହି ସୁଯୋଗରେ ଚିଚିଣ୍ଡାଆସି ବୁଦ୍ଧଦେବଙ୍କୁ ମୋ କୋଠରୀକୁ ଡକାଇ ବସ୍‌ରେ ଚିନ୍ତା କରିଥିବା ଏକ କଥାବସ୍ତୁ ଉପରେ ଆଲୋଚନା କଲି ଏବଂ ନାଟକରେ କେତୋଟି ଚରିତ୍ର, ଦୃଶ୍ୟ ରହିବ, କ୍ଲାଇମେକ୍ସ କିଭଳି ହେବ, ସବୁଯାକ ତନ୍ନତନ୍ନ କରି ବୁଝାଇ ଦେବାପରେ ଯେତେଶୀଘ୍ର ହେବ ଲେଖା ମୋ ପାଖରେ ଆଣିଦେବାକୁ କହିଥିଲି । ବୁଦ୍ଧଦେବ ମୋର ସମସ୍ତ ଆଲୋଚନାକୁ ମନଦେଇ ଶୁଣି ଦୃଶ୍ୟପରେ ଦୃଶ୍ୟ ଲେଖିଆଣି ମୋତେ ଦେଖାଉଥିଲେ, ମୋର ସୁଧାର ପରେ ପୁଣି ତାକୁ ପୁନର୍ଲିଖନ କରୁଥିଲେ । ଏହି ପ୍ରକ୍ରିୟାରେ ଖୁବ୍ କମ୍ ଦିନ ଭିତରେ ପାଣ୍ଡୁଲିପିଟି ପ୍ରସ୍ତୁତ ହୋଇଗଲା, ଯାହାର ନାଁ ଥିଲା 'କରମସାନୀ' । ପାଣ୍ଡୁଲିପିଟି ନେଇ ନନ୍ଦପଡାର କଳାକାରମାନଙ୍କ ସହ ପଠନକ୍ରିୟାରେ ଚର୍ଚ୍ଚା କଲି । ଏହା ଥିଲା କେବଳ ବିଧିରକ୍ଷା, ମୁଁ ଯାଚିଥିବା ପାଣ୍ଡୁଲିପିକୁ ଭଲ ହୋଇ ନାହିଁ ବୋଲି କହିବାର ଭୁଲ୍ କରୁ ନଥିଲେ, ଯେଉଁଭଳି 'ଉଡଲାପତର୍ ବୁଡ୍‌ଲାଡଙ୍ଗା' ବେଳେ କହିଥିଲେ ।

ଏଥରର ବ୍ୟତିକ୍ରମ ଥିଲା ପ୍ରଥମକରି ମୁଁ ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦର ନାଟକରେ ନାୟକର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲି । ନାୟକ ଏଇଥିପାଇଁ ଯେ ନାୟକ ଚରିତ୍ରଟି ଜଣେ ମାଦଳିଆ ଯୁବକ ଥିଲା ଏବଂ ନାଟକରେ ନାୟିକାସହ ନୃତ୍ୟଦୃଶ୍ୟ ମଧ୍ୟ ଥିଲା । ରିହାର୍ସାଲ ଆରମ୍ଭହେଲା ମୋ ନିର୍ଦ୍ଦେଶନାରେ, ପୁଣିଥରେ ଏକାସାଥିରେ ଅଭିନୟସହ, ନୃତ୍ୟ, ନାଟ୍ୟ ନିର୍ଦ୍ଦେଶକ ଏବଂ ନାଟକର ପ୍ରଚ୍ଛଦସଂଗୀତ, ତିନୋଟି ଦାୟିତ୍ୱ ବହନ କରିବାକୁ ପଡିଲା । ନାୟିକାଭାବରେ ତୃପ୍ତି ପଣ୍ଡା, ଅନ୍ୟ ଚରିତ୍ରଗୁଡ଼ିକ ପାଇଁ ସନ୍ତୋଷ ମିଶ୍ର, ସଂଜଓବ ମାଝି, ମୋହିନୀ ମିଶ୍ର ଆଦି କଳାକାରମାନେ ଅଭିନୟ କଲେ । ରିହାର୍ସାଲପରେ କଟକଯାଇ ନାଟକ ମଞ୍ଚାୟନ ଦିନ ପାଖେଇ ଆସିଲା । ଭଲ

ରିହାର୍ସାଲ ହୋଇଥିବାରୁ ନାଟକର ସଫଳ ମଞ୍ଚାୟନକୁ ନେଇ ମୁଁ ପୂରାପୁରୀ ଆତ୍ମବିଶ୍ୱାସୀ ଥିଲି । ବସ୍‌ଯୋଗେ କଟକଯାଇ ବାରବାଟୀ ଷ୍ଟେଡିୟମରେ ଦେଇଥିବା ଆସ୍ଥାନକୁ ଯାଇ ବିଶ୍ରାମ ନେଲୁ ଏବଂ ସେହି ରାତିରେ କଟକ କଳାବିକାଶକେନ୍ଦ୍ର ମଞ୍ଚରେ ନାଟକ ହେବାକୁ ଆଖିରେ ରଖି ପୁଣିଥରେ ସେହି ବିଶ୍ରାମସ୍ଥଳରେ ଆଉ ଥରେ ଆମୂଳଚୂଳ ରିହାର୍ସାଲ କରିପକାଇଲୁ । ବହୁଦିନ ପରେ ମଞ୍ଚକୁ ଓହ୍ଲାଉଥିବାରୁ ମନଭିତରେ ବି ଉତ୍ସୁକତା ଭରିଥିଲି । ଆମ ସହ ନାଟ୍ୟକାର ବୁଦ୍ଧଦେବ ଦାସ ମଧ୍ୟ ଯାଇଥିଲେ, ପ୍ରତ୍ୟେକ କାର୍ଯ୍ୟରେ ସହଯୋଗ ମଧ୍ୟ କରିଥିଲେ । ନାଟକ ଆରମ୍ଭହେଲା, ମାଇକଟି, ପ୍ରଚଣ୍ଡ ଥଣ୍ଡା ଯୋଗୁଁ ଦବି ଯାଇଥିବାରୁ ନାଚବେଳେ ଭଲ ଶୁଭିଲା ନାହିଁ । ତଥାପି ଅଭିନୟ ଦୃଷ୍ଟିରୁ, ପ୍ରଯୋଜନା ଦୃଷ୍ଟିରୁ ନାଟକଟି ଭଲ ଭାବରେ ମଞ୍ଚସ୍ଥ ହେଲା, ତୃପ୍ତି ଖୁବ୍ ଭଲ ଅଭିନୟ କରିଥିଲେ । ନାଟକଟି ପଶ୍ଚିମଓଡ଼ିଶାର ଲୋକବିଶ୍ୱାସଉପରେ ଆଧାରିତ ଥିଲା, ନିପୁତ୍ରିକେ ପୁତ୍ରଦାନୀ, କରମା ଫଂକ୍ସିଟିର ଯଥାର୍ଥତା ଥିଲା କରମସାନୀ ନାଟକର ସାରବସ୍ତୁ । ରାତିରେ ସେହି ବାରବାଟୀ ଷ୍ଟେଡିୟମର ହଲ୍‌ରେ ବିଶ୍ରାମ ନେଇ ସକାଳ ଗାଡ଼ିରେ ସମ୍ବଲପୁର ଫେରିଆସିଥିଲୁ । ଯାତ୍ରା ଥିଲା ମନୋରମ ପ୍ରଫୁଲ୍ଲିତ ଚିତ୍ତ, ସମସ୍ତଙ୍କ ଆଖିରେ ଆଖିଏ ଲେଖାଏଁ ନିଦରେ କେତେବେଳେ ଯେ ସମ୍ବଲପୁରର ମାନେଶ୍ୱରର ମାନଧାତା ବାବାଙ୍କ ମନ୍ଦିର ଆସିଯାଇଥିଲା, ଜଣା ପଡ଼ିଲା ନାହିଁ ।

ପୂର୍ବବର୍ଷ ବୃର୍ତି ନାଟକର ପୂର୍ଣ୍ଣାଙ୍ଗ ସଫଳତା ପରେ ସେହିବର୍ଷ ପୁଣି ଥରେ ରାଉରକେଲାର ସ୍ୱପନ ଆୟୋଜିତ ବହୁଭାଷୀ ନାଟକ ପ୍ରତିଯୋଗିତାରେ ଯୋଗଦେବାର ଇଚ୍ଛା ଜାଗ୍ରତହେବାରୁ ସେମାନଙ୍କ ଅନୁରୋଧରେ ବୃଦ୍ଧଦେବଙ୍କ କରମସାନୀ ନାଟକକୁ ବଢ଼ାଇ ପୂର୍ଣ୍ଣାଙ୍ଗ ନାଟକର ସ୍ୱରୂପଦେଇ ପଠାଯିବାର ଯୋଜନା କରାଗଲା । ପୁନଶ୍ଚ ବୃଦ୍ଧଦେବଙ୍କ ସହ ଆଲୋଚନାକରି ଆଉ ଗୋଟିଏ ଭିକାରୀ ଚରିତ୍ରସହ ନାଟକକୁ ବଢ଼ାଇବାର ରାସ୍ତା ଚିହ୍ନଟ କରିଦେଲି । ବୃଦ୍ଧଦେବ ମଧ୍ୟ ମୋ ମାନସକୁ, କଳ୍ପନାକୁ ଉପଯୁକ୍ତ ଭାବରେ ଅଧ୍ୟୟନ କରି ମୋ'କହିବା ଅନୁସାରେ ଆଉ ଦଶ ପୃଷ୍ଠା ଲେଖିଆଣି ମୋ'ପାଖରେ ଉପସ୍ଥାପନ କଲେ । ମୁଁ ସେହି ବର୍ଦ୍ଧିତ ପାଣ୍ଡୁଲିପିକୁ ନେଇ ସଂସ୍କାର କଳାକାରମାନଙ୍କୁ ଦେଲି । ପରେ ସେହିବର୍ଷ ଡିସେମ୍ବରରେ କରମସାନୀ ନାଟକକୁ ଅଭିନୀତ କରିବାପାଇଁ ଆମନ୍ତ୍ରଣ ଆସିଗଲା । ଏହି ପ୍ରତିଯୋଗିତାରେ ଆମେ ଓ ଆମ ନାଟକ କେବେ ବିଫଳ ହୋଇନାହିଁ । ଉଡଲାପତର୍ ବୃଢ଼ଲାଡଙ୍ଗା, ଭୁଥିଆର ହଥିଯାର, ଦଦରା ଦର୍ପନ୍, ବୃର୍ତି ଆଦି ସମସ୍ତ ନାଟକ ଉଭୟ ପୁରସ୍କୃତ ଓ ପ୍ରଶଂସିତ ହୋଇଥିବାଯୋଗୁଁ ନିର୍ଦ୍ଦେଶକ ଭାବରେ ମୋର

ଦାୟିତ୍ୱ ବେଶୀ ବଢ଼ିଯାଇଥିଲା । ଭିକାରୀ ଚରିତ୍ରରେ ବାରୁଦାଙ୍କୁ ଅନୁରୋଧ କରାଗଲା । ସେ ମଧ ଆଗ୍ରହ ସହକାରେ ସମ୍ମତି ପ୍ରଦାନ କଲେ । ଏଥର ମୁଁ ଆଉ ଅଭିନୟ ନକରି କେବଳ ନିର୍ଦ୍ଦେଶନା, ସଂଗୀତ ନିର୍ଦ୍ଦେଶକର ଦାୟିତ୍ୱ ନିଭାଇଛି । ଏଥରମଧ ବୁଦ୍ଧଦେବ ଆମସହ ରାଉରକେଲା ଗଲେ, ମୋ ନାଟକ କରିବାର ସମସ୍ତ ଶୈଳୀ ଅନୁଧ୍ୟାନ କରିଥିଲେ, ସାଧାରଣ ସଦସ୍ୟଙ୍କ ଭଳି ନାଟକର ପ୍ରଯୋଜନାରେ ସହାୟତା କଲେ । ରେଳ ଯୋଗେ ରାଉରକେଲା ଯାଇ ସେଠାକାର ଚୌଦନମ୍ବର ସେକ୍ଟରରେଥିବା ସୋସିଆଲ କମ୍ୟୁନିଟି ସେଣ୍ଟରରେ ରହିଲୁ, ବିଶ୍ରାମ ନେଲୁ । ଚିତ୍ରସେନ ଆଦି ସଭ୍ୟମାନେ ଆଗରୁ ଯାଇ ମଞ୍ଚସଜ୍ଜାରେ ବ୍ୟସ୍ତ ରହିଲେ । ବିଶ୍ରାମଜାଗାରେ ପ୍ରଚ୍ଛଦ ସଂଗୀତର ରିହାର୍ସାଲ୍ ପୁଣିଥରେ ଦେଖିଦେଲୁ । ନାୟକ ଭୂମିକାରେ ସଂଜୀବ ମାଝି, ନାୟିକା ଭାବରେ ତୃପ୍ତି ପଣ୍ଡାଙ୍କ ସହ ଅନ୍ୟାନ୍ୟ ଚରିତ୍ରମାନଙ୍କରେ ସନ୍ତୋଷ ମିଶ୍ର, ପିଲୁ, ମୋହିନୀ, ବାରୁଦା ଆଦି କଳାକାରମାନେ ଅଭିନୟ କରିଥିଲେ । ଏହି ନାଟକଟିର ମଞ୍ଚାୟନ ପରେ ରାଉରକେଲାର ଦର୍ଶକମାନେ ଏହାକୁ ଜବରଦସ୍ତ ନାଟକ ବୋଲି ଭୂୟସୀ ପ୍ରଶଂସା କରଥିଲେ । ସେହି ରାତିରେ ହିଁ ପୁରସ୍କାର ବିତରଣୀ ଥିବାରୁ ଆମେ ସମସ୍ତେ ଫଳାଫଳପରେ ପ୍ରଯୋଜନା, ନିର୍ଦ୍ଦେଶନା, ଅଭିନେତା, ଅଭିନେତ୍ରୀ, ସଂଗୀତ ନିର୍ଦ୍ଦେଶକ ଭଳି ପୁରସ୍କାର ଗ୍ରହଣକରି ଆନନ୍ଦରେ ଗୀତାବାଦ୍ୟ ସହ ସକାଳେ ସମ୍ବଲପୁର ଫେରିଆସିଥିଲୁ । 'କରମସାନୀ' ପରେ ଏହି ପ୍ରତିଯୋଗିତାରେ ଆଉ ଏହି ସଂସଦ ଯୋଗଦେଇ ନଥିଲା ।

ସୃଷ୍ଟି ଅନୁଷ୍ଠାନରୁ ମନାନ୍ତର ପାଇଁ ଓହରି ଆସିବାପରେ ମୁଁ ସୃଷ୍ଟି ତରଫରୁ ଆଉ ମଞ୍ଚନାଟକ ମଞ୍ଚାୟନ କଲି ନାହିଁ । ତେବେ ନାଟକ କରିବାର ବନ୍ଦ କରିନଥିଲି । ତେୟାନବେରୁ ସତାନବେ ମଧ୍ୟରେ ରଙ୍ଗରଜନୀ ନାମରେ ଗଙ୍ଗାଧର ମଣ୍ଡପରେ ତିନିଚାରିବର୍ଷ କେତୋଟି ବାହ୍ୟ ନାଟ୍ୟଦଳଙ୍କୁ ନିମନ୍ତ୍ରଣ କରି ମଞ୍ଚସ୍ଥ କରାଇଛି । ନାଟକ ସହ ସମ୍ବଲପୁରୀ ନୃତ୍ୟକୁ ମଧ ନୂଆଁ ରୂପ ଦେବାର ଯୋଜନାକରି ମଞ୍ଚରେ ପ୍ରଦର୍ଶନ କରାଇଛି । ତା'ସହ ସୃଷ୍ଟିର 'ଉଖୀ' ନାଟକର ରଜତ ଜୟନ୍ତୀ ଉପଲକ୍ଷେ ସମସ୍ତ କଳାକରମାନଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା, ରଙ୍ଗବତୀ ଗୀତର ରଚୟିତାଙ୍କୁ ମଧ ଗୋଟିଏ ରାତିରେ ସମ୍ମାନୀତ କରାଯାଇଥିଲା । ଏଥିସହ ନାଟ୍ୟକାର ପ୍ରମୋଦ ତ୍ରିପାଠୀଙ୍କୁ ମଧ ନାଟକପ୍ରତି ଅବଦାନପାଇଁ ସମ୍ବର୍ଦ୍ଧିତ କରାଯାଇଥିଲା । ପ୍ରଥମ ରଙ୍ଗରଜନୀ ଅବସରରରେ ବନ୍ଧୁ କେଶରଞ୍ଜନ ପ୍ରଧାନଙ୍କ ନାଟକ 'ଅସୁର୍' ଖୁବ୍ ସଫଳତାରସହ ମଞ୍ଚସ୍ଥ ହୋଇଥିଲା । କେଶରଞ୍ଜନ ନିଜେ ତାଙ୍କର ଲୁ' ନାଟ୍ୟ ସଂସ୍ଥାର କଳାକାରମାନଙ୍କ ସହ ସମ୍ବଲପୁର

ଆସିଥିଲେ ଅସୁର୍ ମଞ୍ଚାୟନ ନିମିତ୍ତ । ସେତେବେଳକୁ ଯୁବଉଦୟନର ପ୍ରତିଯୋଗିତା ଆରମ୍ଭ ହୋଇ ନଥାଏ । 'ଅସୁର୍' ନାଟକକୁ ଉପସ୍ଥିତଦର୍ଶକ ଗମ୍ଭୀରତାସହ ଗ୍ରହଣ କରିଥିଲେ । ପରବର୍ତ୍ତୀ ବର୍ଷମାନଙ୍କରେ ବୁଦ୍ଧଦେବଙ୍କ 'କରମସାନୀ' ନାଟକ ମଧ୍ୟ ନନ୍ଦପଡାରେ କଳାକାରମାନଙ୍କ ଦ୍ୱାରା ମୋ ନିର୍ଦ୍ଦେଶନାରେ ଅଭିନୀତହୋଇ ପ୍ରଶଂସିତ ହୋଇଥିଲା ।

ରଙ୍ଗରଜନୀକୁ ଗଙ୍ଗାଧର ମଣ୍ଡପକୁ ଆଣିବା ପୂର୍ବରୁ ଗୋପାଳଜୀ ମଠ ପ୍ରକୋଷ୍ଠରେ କିଛି ବର୍ଷ, କବିତା ପାଠ ମାଧ୍ୟମରେ ଆସର ଆୟୋଜିତ ହୋଇଥିଲା, ଯା ଫଳରେ ସାହିତ୍ୟ କ୍ଷେତ୍ରରେ ଥିବା ସମ୍ବଲପୁରର ସ୍ଥାଣୁତ୍ୱକୁ ରୋକାଯାଇ ଚଳଚଞ୍ଚଳ କରାଯାଇଥିଲା । ଉଭୟ ଓଡ଼ିଆ ଓ ସମ୍ବଲପୁରୀ ଭାଷାର ଦଶଟି ଲେଖାଏଁ କବିତାପାଠ କରାଗଲା । ଏହି ଆସରରେ ପ୍ରଥମକରି ଅଭିନେତା ସୁଶୀଳ ମିଶ୍ର ହାସ୍ୟକବି ଭାବରେ ଗାଈ ଓ କୁକୁର କବିତା ପାଠକରି ପ୍ରଶଂସିତ ହୋଇଥିଲେ । ରାମକୃଷ୍ଣ ସାହୁ, ମନୋରଞ୍ଜନ ସାହୁ, ଗୋପାଳକୃଷ୍ଣ ରଥ, ଭାଗୀରଥି ମିଶ୍ର, ଦେବୀଦାସମିଶ୍ର, ବିନୋଦ ପଶାୟତ ଆଦି କବିମାନେ ଏହି ଆସରରେ ନିୟମିତ କବି ଥିଲେ । ମୋର ମନେଅଛି, ଏଭଳି ଏକ ଅବସରରେ ନାଟ୍ୟକାର ମୁରାରୀ ପ୍ରସାଦ ମିଶ୍ରଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା ଏବଂ ବନ୍ଧୁ ଦିଲୀପ ପାଢ଼ୀଙ୍କ ସହାୟତାରେ ନିର୍ମଳ ଚନ୍ଦ୍ର ପାଢ଼ୀ ସ୍ମୃତିପୁରସ୍କାର ଜଣେ ସମ୍ବଲପୁରୀ ନାଟ୍ୟକାରଙ୍କୁ ଦେବାର ପରମ୍ପରା ଆରମ୍ଭ ହୋଇଥିଲା ।

ଚୌରାନବେ ପରେ ମୋ ଡକ୍ଟରେଟ କାର୍ଯ୍ୟ ଶେଷ ହେବାପରେ ମୁଁ ବାଞ୍ଜିପାଲିର ଅସଜଡ଼ା କୋଠରୀ ଛାଡ଼ି ପ୍ରତ୍ୟହ ସମ୍ବଲପୁରରୁ ଚିଚିଣ୍ଡା ଯିବାଆସିବା ଆରମ୍ଭ କରିଥିଲି ଏବଂ ଅବସରଯାଏଁ ତାହା ବଳବତ୍ତର ରହିଥିଲା । ତେଣୁ ବୁଦ୍ଧଦେବଙ୍କ ସହ ଏଭଳି ସମ୍ପର୍କ ରଖିହେଲାନି । ପଞ୍ଚାନବେ ପରେ ଏମିତି ଦିନେ କଲେଜ୍ ଆସି ଶୁଣିଲି, ବୁଦ୍ଧଦେବଙ୍କ ଦେହାନ୍ତର ସମ୍ବାଦ । ସରପଞ୍ଚ ନିର୍ବାଚନ ପାଇଁ ଖରାରେ ଖଟିଥିବାରୁ ଦୁର୍ବଳତାର ଶିକାର ହୋଇଗଲେ ବୁଧ । ସଂସ୍କୃତି କ୍ଷେତ୍ରରେ ସେ ଥିଲେ ଚିଚିଣ୍ଡା ଗ୍ରାମର ମଉଡମଣି । ତାଙ୍କ ଦେହାନ୍ତପରେ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ବୁଦ୍ଧଦେବ ସାଂସ୍କୃତିକ ଅନୁଷ୍ଠାନ ଗଢ଼ାଯାଇ କିଛି ବର୍ଷ ବିଭିନ୍ନ କାର୍ଯ୍ୟକ୍ରମମାନ ଆୟୋଜିତ ହେଲା । ପ୍ରଥମବର୍ଷ ମୁଁ ମଧ୍ୟ ଏଥିରେ ଅତିଥି ଭାବରେ ଯୋଗଦେଇ ଯୁବକମାନଙ୍କ ଉଦ୍ୟମକୁ ପ୍ରଶଂସା କରିଥିଲି । ପରେ ଶୁଣିଲି, ଏବେ ଆଉ ସେମିତି କାର୍ଯ୍ୟକ୍ରମ ଅନୁଷ୍ଠିତ ହେଉନାହିଁ । ତଥାପି, ବୁଦ୍ଧଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ କିଛି ନା କିଛି କାର୍ଯ୍ୟକ୍ରମ ହେବା ଉଚିତ୍ ।

ପ୍ରଫୁଲ୍ଲ ମେହେର, ବୁଦ୍ଧଦେବ ଦାସଙ୍କ ଭଳି ନାଟ୍ୟ ପ୍ରତିଭାମାନଙ୍କ ସ୍ୱର୍ଗବାସ ପରେ ମୋର ସ୍ପୃହା ମଧ୍ୟ କମିକମି ଆସିଲା ଓ ସମ୍ବଲପୁରର ନାଟ୍ୟ ମାହୋଲ ସହ ସମ୍ପର୍କ ଦୃଢ଼ିଭୂତ କରିବାରେ ଲାଗିଲି । ଚିଚିଣ୍ଡାଛାଡ଼ି ସମ୍ବଲପୁରରୁ କଲେଜ୍‌କୁ ଯିବାଆସିବା କରିବାର ରୋମାଞ୍ଚକର ଅନୁଭୂତି ଲେଖିବସିଲେ ଅଲଗା ଗୋଟିଏ ଗ୍ରନ୍ଥ ହେବ । ସମ୍ବଲପୁରରେ ଆକାଶବାଣୀର ଅବସରପ୍ରାପ୍ତ ଡିଡିଜି ତଥା କବି, ବାଗ୍ମୀ ଅଭୟ ପାଢ଼ୀ ବନ୍ଧୁମେଳରେ ଥଟ୍ଟାରେ କହିଥାନ୍ତି, ଦ୍ୱାରିକା ଚିଚିଣ୍ଡାକୁ ଜଳ, ସ୍ଥଳ ଓ ଆକାଶ ପଥରେ ଯିବାଆସିବା କରନ୍ତି । ସମ୍ବଲପୁରର ମୋର ଅନ୍ତରଙ୍ଗ ବନ୍ଧୁମାନେ ମୋର ଜଳପଥରେ ମହାନଦୀ ଟପି ଆର ପାରିକୁ ପ୍ରତ୍ୟହ ଯିବାଆସିବା ଶୁଣି ଆଶ୍ଚର୍ଯ୍ୟ ପ୍ରକଟ କରିଥାନ୍ତି । ସମ୍ବଲପୁରଠାରୁ ବରଗଡ ଯା'ଆସ କରୁଥିବା ବସ୍‌ଗୁଡ଼ିକର କଣ୍ଡକ୍ଟରମାନେ ମୋ ପ୍ରତି ଦୟାଶୀଳ ହୋଇ ବେଳେବେଳେ ଟିକଟର ପଇସା ନିଅନ୍ତି ନାହିଁ, ବାଧ୍ୟ କଲେ ଧାର୍ଯ୍ୟ ମୂଲ୍ୟରୁ ଯଥେଷ୍ଟ କମ୍ ନିଅନ୍ତି, ବେଳେବେଳେ ବସ୍ ନପାଇଲେ ପରଦିନ ଶୀଘ୍ର କ୍ଲାସ୍ ଥଲେ ବରଗଡରେ ରହୁଥିବା ଆମ ଇଂରାଜୀ ଅଧ୍ୟାପକ ରାମଚନ୍ଦ୍ର ସାହୁଙ୍କ ଘରେ ରାତ୍ରି ରହଣି ବେଳେ ଗରମଗରମ ପରଠା ଖାଇବାକୁ ମିଳିଥାଏ, ଏମିତି କେତେ ଯେ ଇତିହାସ ଅଲିଖିତ ଭାବରେ ରହିଯାଇଛି, ତାହାର ହିସାବ ନାହିଁ ।

ତଥାପି ଅବସରଯାଏଁ ଜୀବନ ଉତ୍ଥାନପତନ ଭିତରେ ଜୀଇଁ ଥିଲା ଚିଚିଣ୍ଡାର ମର୍ମାନ୍ତିକ ସ୍ପର୍ଶରେ । ଏବେ ଆଖି ଖୋଲିଲେ ସମ୍ବଲପୁରର ସବୁଜ ସୂର୍ଯ୍ୟ ଝକ୍ କରୁଛି, ଆଖି ବନ୍ଦକଲେ ଚିଚିଣ୍ଡାର ଜହ୍ନ ତା' ଜ୍ୟୋତ୍ସ୍ନାରେ ମୋତେ ମୋ ଅଜାଣତରେ ଭିଜାଇ ଦେଉଛି । ଦିବସରେ ସମ୍ବଲପୁର ମହାନଦୀର କୋମଳ ବକ୍ଷ ହାତଠାରି ଡାକୁଛି, ଶୈଶବରେ ମାଁକୁ ଟାଇଫଏଡ୍ ଆଉ ମୋ ଭଙ୍ଗାହାତ, ଏଭଳି ଅବସ୍ଥାରେ ଅଜା ମୋ କାନ୍ଦ ରୋକିବା ପାଇଁ ଘେନି ଯାଉଥିଲେ ମହାନଦୀର ବକ୍ଷକୁ, କହୁଥିଲେ ବାବୁ ଡଙ୍ଗା ବ', ଦୁଃଖିଧନରେ ଡଙ୍ଗା ବ', ହୁଲିଡଙ୍ଗାରେ ଘେରାଏ ବୁଲାଇ ଆଣିଲେ ମୁଁ କାନ୍ଦ ବନ୍ଦକରି ହସିଦେଉଥିଲି, ହସିଲେ କୁଆଡ଼େ ମୁଁ ଦିଶୁଥିଲି କୃଷ୍ଣଙ୍କ ହସ ପରି ।। ଏବେ ଦେ'ଗାଁର ଘାଟରୁ ଯେତେବେଳେ ଘଟୁଆଲ୍ ପଞ୍ଚମ୍‌ର ଯନ୍ତ୍ରଚାଳିତ ଡଙ୍ଗାରେ ବସି ଉଦେପୁର ଦେଇ ଚିଚିଣ୍ଡା ଯାଉଥିଲି, ଅଜାଙ୍କ ସେଇ ପଦକ କଥା ସବୁବେଳେ ପ୍ରତିଧ୍ୱନିତ ହେଉଥିଲା, ରେ ଦୁଃଖିଧନ, ବାବୁ, ଡଙ୍ଗା ବ' ।। ଉଦେପୁର ଘାଟରେ ଡଙ୍ଗାରୁ ଓହ୍ଲାଇବା ବେଳେ ମୋ ଛାତିଥରା ହସ ଶ୍ରୀକୃଷ୍ଣଙ୍କ ଶେଷହସ ପରି ଜଣା ପଡୁନଥିଲା ତ ।।।



ନିବେରୁ ଦୁଇ ହଜାର, ପ୍ରାୟତଃ ନାଟକଭିତରେ ହିଁ ମଜ୍ଜିରହିଥିଲି । ସୃଷ୍ଟିପାଇଁ ମଙ୍ଗଳୁଚରଣ ବିଶ୍ୱାଳଙ୍କଠାରୁ ଆହୁରି ଦୁଇଟିନାଟକ ଲେଖାଇ ପ୍ରସ୍ତୁତକରି ରଖିଥିଲି । 'ଭୁଡି' ନାଟକର ଅର୍ଦ୍ଧସଫଳତା ପରେ ଏକ ପୂର୍ଣ୍ଣାଙ୍ଗ ସଫଳ ନାଟକର ସନ୍ଧାନରେ ମୋ ମନ ବିଚରଣ କରୁଥିଲା । ଚିଚିଣ୍ଡାରେ ଥାଇ ସୁଦ୍ଧା ମୁଁ ସମୟ ସଞ୍ଚୟକରି ମଙ୍ଗଳୁବାବୁଙ୍କ ବାରଡୁମରିସ୍ଥିତ ବାସଭବନକୁ ଯାଇ ବାରୁଦାଙ୍କ ମୁଖ୍ୟ ଚରିତ୍ର ଓ ମୁଁ ନିଜେ ହସଯୋଗୀଚରିତ୍ରରେ ଅଭିନୟକରିବା ଲକ୍ଷ୍ୟରେ 'ଛଏଲୀ' ନାମରେ ଏକ ନାଟକ ଲେଖାଇ ପ୍ରସ୍ତୁତ କରିଥିଲି । କାରଣ ଉତ୍ତମ ସେତେବେଳେ ନିଜ ବୃତ୍ତିରେ ନିଜକୁ ନିମଜ୍ଜିତ କରି ରଖୁଥିଲେ, ମୁଁ ମଧ୍ୟ ତାଙ୍କ ବୃତ୍ତିରେ ନାଟକକୁନେଇ ବ୍ୟାଘାତ ଦେବାପାଇଁ ଚାହୁଁ ନଥିଲି । ତେବେ, ସୃଷ୍ଟିଭିତରେ ମନାନ୍ତର, ମତାନ୍ତର ଯୋଗୁଁ ଏ ନାଟକ ରାଉରକେଲା ଲୋକନାଟକ ମହୋତ୍ସବକୁ ପଠାଯାଇ ପାରିଲାନି । ଚିଚିଣ୍ଡାରେ ରହୁଥିବାରୁ ମୁଁ ମଧ୍ୟ ଅନନ୍ୟୋପାୟ ଥିଲି । ପରେ 'ବୀରସା ଭଗବାନ' ନାମରେ ସ୍ୱାଧୀନତା ସଂଗ୍ରାମୀ ଶହୀଦ୍ ବୀରସାମୁଣ୍ଡାଙ୍କ ଜୀବନଉପରେ ଆଧାରିତ ଏକ ନାଟକ ମଧ୍ୟ ସୃଷ୍ଟି ଆନୁକୂଲ୍ୟରେ ଅଭିନୀତ କରିବାର ମୋ ଯୋଜନାଥିଲା । ତାହାମଧ୍ୟ ବିଭିନ୍ନ ନକାରାତ୍ମକ ଚିନ୍ତାଧାରା ଯୋଗୁଁ ସମ୍ଭବ ହୋଇପାରିଲା ନାହିଁ । ପରେ ଚିଚିଣ୍ଡା ଧନୁଯାତ୍ରା ଦ୍ୱାରା ପ୍ରଭାବିତ ହୋଇ ସମ୍ବଲପୁରରେ ସୃଷ୍ଟି ତରଫରୁ ଏକ ପୌରାଣିକ ନାଟକ କରିବାର ବିସ୍ତାରିତ ଚିନ୍ତା କରିଥିଲି, ଯାହା ଏକ ମେଗା ବା ବୃହତ୍ ନାଟକଭାବରେ ସାରା ଓଡ଼ିଶାରେ ଖ୍ୟାତି ଅର୍ଜନ କରିଥାନ୍ତା । ରମାକାନ୍ତ ରଥଙ୍କ ଶ୍ରୀରାଧା କାବ୍ୟର ଅନୁସରଣରେ ଅଚ୍ୟୁତାନନ୍ଦଙ୍କ ହରିବଂଶ, ଭୂପତି ପଣ୍ଡିତଙ୍କ ମଥୁରା ମଙ୍ଗଳ କାବ୍ୟ ଆଧାରରେ ରାଧା ଚରିତ୍ରକୁ କେନ୍ଦ୍ରକରି ଏକ ନାଟକ ରଚନାପାଇଁ ଅନୁରୋଧ କଲି ଘେଁସ୍‌ର ବିଶିଷ୍ଟକବି ଅମୃତଲାଲ ସାହୁଙ୍କୁ । କେବଳ ଏଇଥିପାଇଁ ଘେଁସ୍‌ସ୍ଥିତ ତାଙ୍କ ବାସଭାବନକୁ ଯାଇ 'ରାଧା' ନାଟକର କଥାବସ୍ତୁ, ଚରିତ୍ରଚୟନ, ଦୃଶ୍ୟ ବିଭାଜନ ଆଦି ବିଭିନ୍ନପ୍ରସଙ୍ଗରେ ଆଲୋଚନା କରିଥିଲି । ଦଶପନ୍ଦର ଦିନ ଅନ୍ତରାଳରେ ଅମୃତବାବୁ ସମ୍ପୂର୍ଣ୍ଣ ନାଟକଟିଧରି ସମ୍ବଲପୁର ଆସିଥିଲେ, ମୋ'ହାତରେ ପାଣ୍ଡୁଲିପିଟି ହସ୍ତାନ୍ତରକରି ନାଟକର ସଫଳ ମଞ୍ଚାୟନପାଇଁ ଶୁଭକାମନା ଜଣାଇଥିଲେ । ପାଣ୍ଡୁଲିପିଟି ପାଇଲା ପରେ ତାକୁ ଚାରିପାଞ୍ଚ ଥର ପଢ଼ିବାପରେ ସାମାନ୍ୟ କିଛି ପରିବର୍ତ୍ତନ ସହ କେତୋଟି ଦୃଶ୍ୟରେ ଅଧିକ ସଂଳାପର ଆବଶ୍ୟକତା ଅନୁଭବକରି ତାକୁ ପରେ ଠିକ୍ କରାଯାଇପାରେ ବୋଲି ଚିନ୍ତାକରି ସୃଷ୍ଟିର ଆଗଧାଡ଼ିର କଳାକାରମାନଙ୍କ ସହ ଏ ବାବଦରେ ଆଲୋଚନା କରିଥିଲି । ତେବେ, ସୁନ୍ଦର ସାଏ

ନାଟକପରି ଏକ ମେଗାନାଟକର ବିଫଳତାପରେ ମୋ'ପ୍ରତି ସମସ୍ତଙ୍କ ଆସ୍ଥା କ୍ରମଶଃ ତୁଟି ଯାଇଥିବାରୁ ଆଉ ଥରେ 'ରାଧା' ନାଟକ ଭଳି ବିରାଟ ଯୋଜନା କରିହେଲା ନାହିଁ। ଆଉ କେତେଜଣ ପୌରାଣିକ ନାଟକକରିବା ବିରୋଧରେ ମତପ୍ରଦାନ କରିଥିଲେ। ଆଉଏକ କାରଣ ମଧ୍ୟ ହୋଇପାରେ, ଏଥିରେ ମୁଁ ସମ୍ପୂର୍ଣ୍ଣ ନୂତନ କଳକାରମାନଙ୍କୁ ସୁଯୋଗ ଦେବାର ମନସ୍ଥ କରିଥିଲି, ହୁଏତ ମୋର ଏହି ଚିନ୍ତାଧାରାକୁ କେତେକ ପସନ୍ଦ କରି ନଥିଲେ। ବନ୍ଧୁ ସ୍ୱର୍ଗତ ଜିତେନ୍ ଦାସ କିନ୍ତୁ ରାଧା ନାଟକର ମଞ୍ଚାୟନକୁ ନେଇ ଖୁବ୍ ଆଗ୍ରହ ପ୍ରକାଶ କରିଥିଲେ। ଏତେ ସବୁ ନକାରାତ୍ମକ ଘଟଣାପରେ ମୁଁ ସୃଷ୍ଟିରୁ ସ୍ୱତଃପ୍ରବୃତ୍ତ ଭାବରେ ଓହରିଗଲି ଏବଂ ରାଧା ସହ, ଲୁରା, ବୀରସା ଭଗବାନ, ଛଏଲୀ ଆଦି ନାଟକମାନ ଆକାଶବାଣୀ ସମ୍ବଲପୁର ମାଧ୍ୟମରେ ରେକର୍ଡିଂକରି ପ୍ରସାରିତ କରିବାର ବ୍ୟବସ୍ଥା କରିଥିଲି। ସମ୍ବଲପୁରୀ ନାଟକକୁ ଏକ ଭିନ୍ନ ମୋଡ଼ ଦେବାପାଇଁ ଏକ ଅଭିନବ ବିଷୟବସ୍ତୁ ଚିନ୍ତାକରି ମୁଁ ମଙ୍ଗଳୁବାବୁଙ୍କ ସହିତ ଚର୍ଚ୍ଚାକରି ଆଉ ଏକ ନାଟକ ଉଲଗୁଲାନ୍ ଲେଖାଇଥିଲି, ଯଦିଓ ଏ ନାଟକଟି କୌଣସି ସଂସ୍ଥାପାଇଁ ନଥିଲା। ଏଭଳି ଏକ ନାଟକର କଥାବସ୍ତୁ ମୋଠାରୁ ଶୁଣି ବନ୍ଧୁ କେଶରଞ୍ଜନ ପ୍ରଧାନ ପାଣ୍ଡୁଲିପିଟି ନେଇ ପଦ୍ମପୁରଠାରେ ତାକୁ ମଞ୍ଚସ୍ଥ କରିଥିଲେ। ପରେ ଏହି ନାଟକକୁ ମଧ୍ୟ ଆକାଶବାଣୀ ସମ୍ବଲପୁର ମାଧ୍ୟମରେ ମୋ ନିର୍ଦ୍ଦେଶନାରେ ପ୍ରସାରିତ ହୋଇଥିଲା, ଯେଉଁଥିରେ ମୁଁ ସାତଶହ ବର୍ଷର ଏକ ବାବା ଚରିତ୍ରରେ ଅଭିନୟ କରିଥିଲି। ବାସ୍ତବତଃ ଏତେସବୁ ନାଟକଗୁଡ଼ିକ ବିଭିନ୍ନ କାରଣରୁ ସମ୍ବଲପୁରରେ ଅଭିନୀତ ହୋଇପାରି ନଥିଲା।

ଇତି ମଧ୍ୟରେ ଧନୁପାଲିର ଚେତନା ସାଂସ୍କୃତିକ ଅନୁଷ୍ଠାନର ନୂତନ ପିଢ଼ୀ ସୃଷ୍ଟିହୋଇ ନାଟକ ପାଇଁ ନୂତନ ଆଗ୍ରହ ପ୍ରକାଶ ପାଇଲା। ଏହି ପିଢ଼ୀର କେନ୍ଦ୍ରବିନ୍ଦୁ ଥିଲେ ନାଟ୍ୟକାର ପ୍ରଶାନ୍ତ ମାଝୀ। ପ୍ରଶାନ୍ତ ସେତେବେଳେ ଗଙ୍ଗା ଉଲଟିଗଲା ନାମରେ ଏକ ସମ୍ବଲପୁରୀ ବ୍ୟଙ୍ଗ ନାଟକ ରଚନାକରି ତାକୁ କେନ୍ଦୁଝର କାସାଣ୍ଡା ସଂସ୍ଥା ଆୟୋଜିତ ନାଟକ ପ୍ରତିଯୋଗିତାରେ ଯୋଗ ଦେବାପାଇଁ ଆଗ୍ରହପ୍ରକାଶ କଲେ। ଏହି ନୂତନପିଢ଼ୀର କଳାକାରମାନଙ୍କ ଭିତରେ ଥିଲେ କୁନା ପାଢ଼ୀ, ସଂଜୟ ମିଶ୍ର, ପ୍ରବୀର ମିଶ୍ର, ରୂପେଶ ପଟେଲ ସହ ଆଉ କିଛି ଆଗ୍ରହୀ ଯୁବକ। ଏଥି ପାଇଁ ମୋତେ ନିର୍ଦ୍ଦେଶକଭାବରେ ଦାୟିତ୍ୱ ନେବାପାଇଁ ଅନୁରୋଧ କରିଥିଲେ। ନୂତନ ନାଟ୍ୟକାରମାନଙ୍କ ସହିତ କାମ କରିବାର ଇଚ୍ଛା, ପୁଣି ମୋ ଧନୁପାଲିର, ମୁଁ କେମିତି ବା ମନା କରିଥାନ୍ତି। ମୋର ସହମତିପରେ ପାଣ୍ଡୁଲିପିଟିକୁ ସମ୍ପୂର୍ଣ୍ଣ ଭାବରେ ପଢ଼ି

ଆବଶ୍ୟକ ମାର୍ଜନାକରି କେନ୍ଦୁଝରପାଇଁ ପ୍ରସ୍ତୁତି ଆରମ୍ଭ କରିଦେଲୁ । ଖାଲି ନିର୍ଦ୍ଦେଶକ ନୁହେଁ, ମୁଁ ଏକ ହାସ୍ୟରସର ଚରିତ୍ରରେ ଅଭିନୟ ମଧ୍ୟ କଲି । ନାଟକର କଥାବସ୍ତୁ, ଏତେ ସ୍ୱଭାବକବି ଗଙ୍ଗାଧର ପୃଥିବୀ ପୃଷ୍ଠକୁ ଅବତରଣ କଲେ କଣ ଦେଖିବାକୁ ପାଇବେ, ତାର ଏକ ବ୍ୟାଙ୍ଗାତ୍ମକ ଚିତ୍ର ଏହି ନାଟକରେ ଚିତ୍ରିତ । ନାଟକକଟି କେନ୍ଦୁଝରର କଳାମଣ୍ଡପରେ ମଞ୍ଚସ୍ଥ ହେଲା, ପରେ କଟକର କଳାପରିଷଦ ରଙ୍ଗମଞ୍ଚରେ ମଧ୍ୟ ଅଭିନୀତ ହେଲା । ଉଭୟ ମଞ୍ଚରେ ସାଧାରଣ ଭାବରେ ଏହି ନାଟକଟି ଅଭିନୀତ ହେଲାପରେ ନାଟ୍ୟରଚନା ପ୍ରତି ପ୍ରଶାନ୍ତ ମାଝୀଙ୍କ ଆଗ୍ରହ ବୃଦ୍ଧିପାଇବାରେ ଲାଗିଲା । 'ଗଙ୍ଗା ଉଲଟିଗଲା' ନାମକୁ ପରିବର୍ତ୍ତନ କରି ମୁଁ ଏହାର ନାଁ 'ସରଗ୍ ନରକ୍' ବୋଲି ଦେବାପରେ, ବିଭିନ୍ନ ଅଞ୍ଚଳରେ ଏହା ମଞ୍ଚସ୍ଥ ହୋଇଥିଲା । ଝାଡୁଆପଡାର ଆରଣ୍ୟକ ମଞ୍ଚରେ ଯେତେବେଳେ ସମ୍ବଲପୁରୀ ନାଟକ ପ୍ରତିଯୋଗିତାରେ ଅଭିନୀତ ହେଲା, 'ବାୟାଧର' ଚରିତ୍ର ପାଇଁ ସଂଜୀବ ପାଢ଼ୀ ଓରଫ କୁନା ସର୍ବଶ୍ରେଷ୍ଠ ହାସ୍ୟଅଭିନେତା ଭାବରେ ପୁରସ୍କୃତ ହୋଇଥିଲେ, ଜଣେ ହାସ୍ୟଅଭିନେତା ଭାବରେ ସଂଜୀବ ପାଢ଼ୀଙ୍କ ପ୍ରତିଷ୍ଠା ଏହି ନାଟକରୁ ଆରମ୍ଭ ହୋଇଥିଲା । ପରେ ପ୍ରଶାନ୍ତ ରାମରାଏଜ୍ ନାମରେ ଅନ୍ୟ ଏକ ନାଟକ ରଚନା କରିଥିଲେ, ଯାହା ମୋ ନିର୍ଦ୍ଦେଶନାରେ ବିଭିନ୍ନମଞ୍ଚରେ ସଫଳତାର ସହ ଅଭିନୀତ ହୋଇଥିଲା । ପ୍ରଶାନ୍ତର ରଚନାରେ ଚଳନ୍ତି ସମାଜପାଇଁ ବାର୍ତ୍ତା ସ୍ପଷ୍ଟ ଭାବରେ ଉଲ୍ଲେଖିତ ଥାଏ । ପରେପରେ ସେ ଆହୁରି ଅନେକ ସମ୍ବଲପୁରୀ କ୍ଷୁଦ୍ରନାଟକ ରଚନା କଲେ, ଯାହା ଚେତନା ଅନୁଷ୍ଠାନ ଦ୍ୱାରା ବିଭିନ୍ନ ପ୍ରତିଯୋଗିତାରେ ମଞ୍ଚସ୍ଥ ହୋଇଥିଲା । ମା ନିଷାଦ୍, ସତ୍ୟ ମେ ବି ଜୟତେ, କାଲ୍, ରାମଦାସର କଥାନୀ ଆଦି ନାଟକମାନ ମୋ ସହ ପ୍ରଦୀପ ପଣ୍ଡା, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଅଶୋକ ପଟ୍ଟନାୟକ ଆଦି ନିର୍ଦ୍ଦେଶକମାନଙ୍କ ଦ୍ୱାରା ନିର୍ଦ୍ଦେଶିତ ହୋଇଥିଲା ।

କାଲ୍, ପ୍ରଶାନ୍ତଙ୍କ ରଚିତ ଏକ ପୂର୍ଣ୍ଣାଙ୍ଗ ସମ୍ବଲପୁରୀ ନାଟକ, ଯାହାର କଥାବସ୍ତୁ ସହ ମୁଁ ବ୍ୟକ୍ତିଗତ ଭାବରେ ଜଡ଼ିତ । ରାଉରକେଲା ଲୋକନାଟକ ମହୋତ୍ସବରେ ଉତ୍ତମ ବେହେରାଙ୍କୁ ସର୍ବଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ କରାଇବା ମୋର ଆନ୍ତରିକ ଇଚ୍ଛାଥିଲା । ଉଖୀ, ଭୁଖା, ଭୁତି ଆଦି ନାଟକ ସଫଳ ହେବା ସତ୍ତ୍ୱେ ଉତ୍ତମ ଦ୍ୱିତୀୟ ଶ୍ରେଷ୍ଠ ପୁରସ୍କାରରେ ଅଟକିଯାଇଥିଲେ । ତେବେ, ଉତ୍ତମଙ୍କ ଯୋଗ୍ୟତା ଅନୁସାରେ ତାହା ଯଥେଷ୍ଟ ନଥିଲା ମୋ ଦୃଷ୍ଟିରେ । ତେଣୁ ଉତ୍ତମ ବେହେରାଙ୍କୁ ଶ୍ରେଷ୍ଠ ଅଭିନେତା ଭାବରେ ଦେଖିବାର ସ୍ୱପ୍ନକୁ ସାକାର କରିବା ଉଦ୍ଦେଶ୍ୟରେ 'କାଲ୍'

ନାଟକର କଥାବସ୍ତୁର ଜନ୍ମ । ପ୍ରଶାନ୍ତ ଜଣେ ଅତି ସାଧାରଣ, ସରଳ ସ୍ୱଭାବର ଯୁବଶିଳ୍ପୀ, ଜଣେ ତୀକ୍ଷ୍ଣ ସୃଜନଶୀଳ ବ୍ୟକ୍ତିତ୍ୱ । ମୋ' ଭାଇ ଭଳି, ଘରକୁ ଏବେ ବି ଅବାଧ ପ୍ରବେଶ ଅଛି ତା'ର, ପ୍ରତ୍ୟେକ କଥାରେ ମୋର ପରାମର୍ଶ ଲୋଡେ ସେ, ତାର ସାବଲୀଳ ଚାଲିଚଳନ ଯୋଗୁଁ ମୁଁ ମଧ୍ୟ ତାଙ୍କୁ ପ୍ରତ୍ୟେକ କଥାରେ ସାହାଯ୍ୟ କରିବାକୁ ଆଗଭର ହୋଇଥାଏ । 'କାଲ୍' ନାଟକର କଥାବସ୍ତୁ ସହ ପ୍ରତ୍ୟେକଟି ଚରିତ୍ର, ଦୃଶ୍ୟ ବିଭାଜନ, ସଂଳାପ ସହ ମୁଁ ସଂଶ୍ଳିଷ୍ଟ । 'କାଲ୍' ନାଟକଟି ରଚିତହେବା ପରେ ଅନେକ ମାର୍ଜନାପରେ ପାଣ୍ଡୁଲିପିଟି ମୋ ପାଖରେ ରହିଲା ।

କାଲ୍ ନାଟକର ପାଣ୍ଡୁଲିପି ଶେଷ ହେବାଯାଏଁ ଉତ୍ତମ ବେହେରାଙ୍କୁ ଏ ବାବଦରେ କିଛି ସୂଚନା ଦେଇ ନଥିଲି । ଏହି ନାଟକର ମୁଖ୍ୟ ଚରିତ୍ର ବାଲମୁକୁନ୍ଦ ପାଇଁ ଚେତନା ଅନୁଷ୍ଠାନରେ ସେମିତି ଯୋଗ୍ୟ ଅଭିନେତାର ଅଭାବ ଥିବାରୁ ଉତ୍ତମଙ୍କୁ ମୁଁ ହିଁ ଚୟନ କରିଥିଲି ସମସ୍ତଙ୍କ ସମ୍ମତିରେ । ପାଣ୍ଡୁଲିପି ଧରି ଯେତେବେଳେ ମୁଁ ଉତ୍ତମ ବେହେରାଙ୍କ ଅଶୋକା ଟକିଜ ସାମ୍ନାରେ ଥିବା ତାଙ୍କ ସିନିୟର ମହାନ୍ତିବାବୁଙ୍କ ଓକିଲାତି ଚେମ୍ବରକୁ ଗଲି, ମୋ ହାତରେ ପାଣ୍ଡୁଲିପି ଦେଖି ଉତ୍ତମ ଆସିବାର ଉଦ୍ଦେଶ୍ୟ ପଚାରିଲେ । ମୁଁ କାଲ୍ ନାଟକର କାହାଣୀକୁ ତାଙ୍କ ସମ୍ମୁଖରେ ବଖାଣିଲି, ବାଲମୁକୁନ୍ଦ ଚରିତ୍ର ସେ ଅଭିନୟ କରନ୍ତୁ ବୋଲି ମୋ ଆନ୍ତରିକ ଇଚ୍ଛା ପ୍ରକଟ କଲି । ମୋ କଥାଶୁଣି ଉତ୍ତମ କହିଲେ, ଅଙ୍କଲ, ବାଘଛୁଆକେ ଶିକାର ଚହଁରଉଛ ।। ବେଶ୍, ତାଙ୍କ ହାର୍ଦ୍ଦିକ ସମ୍ମତି ପାଇବାପରେ ଘଟଣା ଆଗକୁ ବଢ଼ିଲା । ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଚରିତ୍ରପାଇଁ ସଂଜୀବ ମାଝୀ, ସୁରେଶ ତ୍ରିପାଠୀ, ତୃପ୍ତି ପଣ୍ଡା, ଅଜୟ ନାଥ, ସଂଜୟ ମିଶ୍ର, ସଂଜୀବ ପାଢ଼ୀ ଆଦି କଳାକାରମାନେ ମନୋନୀତ ହେଲେ, ଧନୁପାଲି ସ୍କୁଲରେ ରିହର୍ସାଲ ଆରମ୍ଭ ହେଲା, ଏଥିରେ ମଧ୍ୟ ନିର୍ଦ୍ଦେଶନା ସହ ପ୍ରଚ୍ଛଦ ସଂଗୀତର ଦାୟିତ୍ୱ ମୁଁ ନିଜେ ହିଁ ବହନକଲି । ତୃପ୍ତି ପଣ୍ଡାଙ୍କ ସହଯୋଗ ଭୁଲିବାର ନୁହେଁ । ସବୁ କଳାକାରଙ୍କ ଆନ୍ତରିକଙ୍କ ସହଯୋଗ ଫଳରେ ରିହର୍ସାଲ ଆଗେଇ ଚାଲିଲା ପୁରାଦମ୍‌ରେ । ରାଉରକେଲା ଯାଇ ସିଭିକ୍ ସେଣ୍ଟରରେ ଭଲଭାବରେ ଅଭିନୀତ ହେଲା ନାଟକଟି । ନାଟକ ଶେଷରେ ବିଧି ଦୃଷ୍ଟିରୁ ବିଚାରକ ଭାବରେ ଯୋଗ ଦେଇଥିବା ନାଟ୍ୟକାର ପ୍ରମୋଦ ତ୍ରିପାଠୀ, ପ୍ରଦୀପ ଭୌମିକଙ୍କୁ ସାକ୍ଷାତ କଲୁ । ଲୋକନାଟକ ମହୋତ୍ସବର ଶେଷରାତିରେ ଫଳାଫଳ ଘୋଷଣା ହୋଇଥିଲା, ଉତ୍ତମ ବେହେରା ସର୍ବଶ୍ରେଷ୍ଠ ଅଭିନେତା ଓ ତୃପ୍ତି ପଣ୍ଡା ଶ୍ରେଷ୍ଠ ଅଭିନେତ୍ରୀ ଭାବରେ ପୁରସ୍କୃତ ହେଲେ, ଅନେକ ଦିନର ମନସ୍କାମନା ମୋର ପୂରଣ ହୋଇଥିଲା ।

ମୋର ଏକ ବ୍ୟକ୍ତିଗତ ଲକ୍ଷ୍ୟ ଓ ଅଭିଳାଷ ଥାଏ, ଯେଉଁ ନାଟକ ବାହାରେ ପୁରସ୍କୃତ ହେବ, ତାକୁ ସମ୍ବଲପୁରରେ ନିଶ୍ଚୟ ମଞ୍ଚସ୍ଥ କରାଯିବ । ସମ୍ବଲପୁରର ଦର୍ଶକମାନଙ୍କୁ ଅବହେଳା କରି କେବଳ ପୁରସ୍କାର ପାଇଁ ବାହାରେ ନାଟକ ପ୍ରଦର୍ଶନ କରିବା ବିରୁଦ୍ଧରେ ଥିଲି ମୁଁ, ଏହି ଲକ୍ଷ୍ୟପୂରଣ ପାଇଁ ମୋର ପ୍ରାୟତଃ ସମସ୍ତ ପୁରସ୍କୃତ ନାଟକକୁ ସମ୍ବଲପୁରର ବିଭିନ୍ନ ମଣ୍ଡପରେ ବିଭିନ୍ନ ଅବସରରେ ଅଭିନୀତ କରିଛି । ସେହି ପରମ୍ପରାକୁ ସମ୍ମାନ ଦେଇ 'କାଲ୍' ନାଟକକୁ ମଧ ତା ପରବର୍ଷ ଗଙ୍ଗାଧର ମଣ୍ଡପରେ ମହାଆଡମ୍ବର ସହ ଅଭିନୀତ କରାଯାଇଥିଲା । ଯଦିଓ, ରାଉରକେଲା ପରି ଅଭିନୟ ଦୃଷ୍ଟିରୁ ଉତ୍ତମଙ୍କ ପ୍ରଦର୍ଶନ ସେତେଟା ଆକର୍ଷଣୀୟ ହୋଇପାରି ନଥିଲା । ପ୍ରଶାନ୍ତ, ପରେପରେ ରାମ ଦାସର କଥାନୀ ନାଟକ ରଚନାକରିଥିଲେ, ଯାହା ଅଭିନେତା ପ୍ରଦୀପ ପଣ୍ଡାଙ୍କ ନିର୍ଦ୍ଦେଶନାରେ ସେହି ଲୋକନାଟକ ମହୋତ୍ସବରେ ପ୍ରଦର୍ଶିତ ହୋଇ ସଂଖ୍ୟାଧିକ ପୁରସ୍କାରରେ ମଣ୍ଡିତହୋଇ ବିଶେଷ ସୁନାମ ଅର୍ଜନ କରିଥିଲା । ଜଣେ ନାଟ୍ୟକାରଭାବରେ ପ୍ରଶାନ୍ତ ନିଜକୁ ପ୍ରତିଷ୍ଠିତ କରିବା ସଙ୍ଗେସଙ୍ଗେ ସମ୍ବଲପୁରୀ ନାଟକର ଧାରାକୁ ଆଗେଇ ନେବାରେ ସହାୟକ ହୋଇଥିଲେ ।

ପ୍ରମୋଦ ତ୍ରିପାଠୀ, ବିନୋଦ ପଶାୟତ, ମଙ୍ଗଳୁଚରଣ ବିଶ୍ୱାଳ, ବ୍ରଜେନ୍ଦ୍ର ନାୟକ, ପ୍ରଶାନ୍ତ ମାଝୀ, ବୁଦ୍ଧଦେବ ଦାସ, ଅମୃତଲାଲ ସାହୁ, ପ୍ରଫୁଲ୍ଲ ମେହେର ଆଦି ସଂଖାଧିକ ନାଟ୍ୟକାରମାନଙ୍କ ସହ ଜଡ଼ିତହୋଇ ମୁଁ ମୋ ନାଟ୍ୟଜୀବନକୁ ଧନ୍ୟମଣିଛି, ସମ୍ବଲପୁରୀ ନାଟ୍ୟସାହିତ୍ୟର ସେବାରେ ନିଜକୁ ନିୟୋଜିତକରି ଅପାର ଆନନ୍ଦ ପ୍ରାପ୍ତ ହୋଇଛି, ନବୀନ ସୃଜନଶୀଳ ବ୍ୟକ୍ତିତ୍ୱମାନଙ୍କ ସହ ନିବିଡ଼ ସମ୍ବନ୍ଧ ରଖିପାରିଛି, କାହାଠାରୁ ଶ୍ରଦ୍ଧା ପାଇଛି, କାହାକୁ ସ୍ନେହ ମମତାର ଡୋରିରେ ବାନ୍ଧିରଖିବାରେ ସଫଳ ହୋଇଛି, ଗାଳିଖାଇଛି ଯେତେ, ଦର୍ଶକଙ୍କ ତାଳିପାଇଛି । ତା'ଠାରୁ ଶତାଧିକ ଗୁଣ ଅଧିକ, ବିଭିନ୍ନ ପିଢ଼ିର କଳାକାରମାନଙ୍କ ସହ ସମ୍ପର୍କିତ ହୋଇଛି, ସହଯୋଗର ପରଶ ପାଇଛି ସେମାନଙ୍କ ହାର୍ଦ୍ଦିକତାର, ମଞ୍ଚକୁ କେନ୍ଦ୍ରକରି ଜୀବନ ଅଭିନୀତ ହୋଇଛି, ଜୀବନକୁ ନେଇ ମଞ୍ଚ ସଜ୍ଜିତ ହୋଇଛି ହସରେ, କାନ୍ଦରେ, କ୍ରୋଧରେ, ସ୍ମିହାରେ, ବିତସ୍ପୃହତାରେ, ଗାଳିରେ, ତାଳିରେ, ଆନନ୍ଦରେ, ଲୁହରେ, କେବେ ନୀରବତାରେ, ଆଉ କେବେ ହାସ୍ୟରୋଳରେ, ବଡ଼ ରହସ୍ୟମୟ ଏ ବିଶ୍ୱମଞ୍ଚ, କୁହେଳିକାମୟ ତା' ବକ୍ଷରେ ବିଚରଣ କରୁଥିବା ଚରିତ୍ରମାନେ ।।।



ନାଟକର ଶେଷ କାହିଁ? ସମ୍ବଲପୁରର ଦିବଙ୍ଗତ ବୟୋଜ୍ୟେଷ୍ଠ ନାଟ୍ୟଶିଳ୍ପୀ ତଥା ଅନ୍ୟତମ ନାଟ୍ୟପ୍ରେମୀ ଆର୍ତ୍ତତ୍ରାଣ ନନ୍ଦ ଅଶୀଦଶକରେ ଚେତନା, ଧନୁପାଲିର ଏକ ସମ୍ବର୍ଦ୍ଧନାର ଉତ୍ତରରେ କହିଥିଲେ ପରା, ନ ଅଟକ ନାଟ୍‌କ, ଅଟ୍‌କି ଗଲେ ପରେ ନାଟ୍‌କ ଶେଷ।। 'ଉତଲାପତର୍ ବୁଡ଼ଲାଡଙ୍ଗା' ନାଟକର ଶେଷରେ ମୁଖ୍ୟ ଚରିତ୍ର ବୁଢ଼ା ରିକ୍ସାବାଲା କଷ୍ଟୁ ମୁହଁରେ ନାଟ୍ୟକାର ମଙ୍ଗଳୁଚରଣ ସଂଳାପଟିଏ ଦେଇଥିଲେ, "ଯାଉ ଥିବାର୍ ନାଁ ଜୀବନ୍ ଆଏରେ ବାବୁ, ଯାହିଁ ଭଲିଯିମା, ତାହିଁ ଶେଷ୍।!"

କହିବାର ତାତ୍ପର୍ଯ୍ୟ, ଯେଉଁମାନେ ନାଟକପ୍ରିୟ ବା ନାଟକ ଯେଉଁମାନେ କରନ୍ତି, ସେମାନଙ୍କ ନାଟକ କରିବା ନିଶା ଜୀବନର ଶେଷପର୍ଯ୍ୟନ୍ତ ଫାଟି ନଥାଏ। ତେଣୁ ନାଟୁଆମାନେ ପ୍ରାୟତଃ ଯଶପ୍ରିୟ, ଖ୍ୟାତିପ୍ରିୟ, ସୁନାମପ୍ରିୟ, ତାଳିପ୍ରିୟ। ସେଥିପାଇଁ ଅଧିକରୁ ଅଧିକ ନାଟକକରିବାର ଦୁର୍ବାର ଇଚ୍ଛାକୁ ସେମାନେ ସହଜରେ ଦମନ କରିପାରନ୍ତି ନାହିଁ। ବିଶେଷତଃ ସୌଖିନ ରଙ୍ଗମଞ୍ଚ ସହ ଯେଉଁମାନେ ଜଡ଼ିତ, ସେମାନେ ନାଟକର କଣ୍ଟଦ୍ୱାରା ସବୁବେଳେ ଆକ୍ରାନ୍ତ। ସୁଯୋଗ ପାଇଲାକ୍ଷଣି ମୁହଁରେ ରଙ୍ଗବୋଳି ମଞ୍ଚକୁ କୁଦି ପଡ଼ନ୍ତି।

ମୋ ଜୀବନର ନାଟ୍ୟ କ୍ଷେତ୍ରରେ ପଚିଶବର୍ଷ ପୂର୍ତ୍ତି ଉପଲକ୍ଷେ ପଞ୍ଚାନବେରେ ସୃଷ୍ଟି, କଖଗ, ପଣ୍ଡିତ ଲକ୍ଷ୍ମୀନାରାୟଣ ସାଂସ୍କୃତିକ ସଂସଦ ଓ ଚେତନା, ଧନୁପାଲିର ମିଳିତ ଉଦ୍ୟମରେ ଏକ ଉତ୍ସବ ନନ୍ଦପଡାର ଚିତ୍ରୋତ୍ପଳା ମଣ୍ଡପରେ ଆୟୋଜିତ ହୋଇଥିଲା। ଏହି ଚାରୋଟିଯାକ ନାଟ୍ୟାନୁଷ୍ଠାନର କଳାକାରମାନଙ୍କ ସହ ମୋର ଘନିଷ୍ଠତା ଥିବାରୁ, ଏହି ଅନୁଷ୍ଠାନର ଅନେକ ନାଟକର ପ୍ରଯୋଜନାସହିତ ମୁଁ ଅଙ୍ଗାଙ୍ଗୀଭାବରେ ଜଡ଼ିତ ଥିବାରୁ, ଏହି ଉତ୍ସବ ଆୟୋଜନ ପଛରେ ଏମାନଙ୍କ ଆନ୍ତରିକତା ଭରିରହିଥିଲା। ଏହି ଅବସରରେ ପ୍ରତ୍ୟେକ ଅନୁଷ୍ଠାନ ଗୋଟିଏଲେଖାଏଁ ନାଟକ ସେହି ଗୋଟିଏ ରାତିରେ ଅଭିନୀତ କରିଥିଲେ। ଉତ୍ସବ ଆରମ୍ଭରେ ଚାରୋଟି ଯାକ ଅନୁଷ୍ଠାନର ସମସ୍ତ କଳାକାର ସମବେତ କଣ୍ଠସ୍ୱରରେ ଗାନକରିଥିଲେ ଏକ କଳାତ୍ମକ ସଂଗୀତ, ଆମେ ସୃଷ୍ଟି, ଆମେ ଚେତନା, ଆମେ ପ୍ଲାଙ୍କା, ଆମେ କଖଗ, ଅମେ କଳାକାର, ଭାଇ ବ୍ରଜେନ୍ଦ୍ରର ସ୍ୱରସଂଯୋଜନାରେ ଏହି ଗୀତଟିର ପରିବେଷଣ ସମସ୍ତ କଳାକାରମାନଙ୍କ ମଧ୍ୟରେ ଏକତାର ବାର୍ତ୍ତା ପ୍ରକଟ କରିଥିଲା। ପରେ ବରିଷ୍ଠ ନାଟ୍ୟଶିଳ୍ପୀ ରାଜେନ୍ଦ୍ରପ୍ରସାଦ ପଣ୍ଡା ଓ ମୋର ନାଟ୍ୟଜୀବନର ପଥପ୍ରଦର୍ଶକ

ସତ୍ୟନାରାୟଣ ତ୍ରିପାଠୀଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଆନୁଷ୍ଠାନିକ ଆରମ୍ଭ ପରେ ଚେତନା, ଧନୁପାଲି ପକ୍ଷରୁ ପ୍ରଶାନ୍ତ ମାଝିଙ୍କ ରଚିତ 'ସରଗ୍ ନରକ୍', ପଣ୍ଡିତ ଲକ୍ଷ୍ମୀ ନାରାୟଣ ସାଂସ୍କୃତିକ ସଂସଦ ତରଫରୁ ସେହି ପ୍ରଶାନ୍ତଙ୍କ 'ରାମ ରାଏଜ', ସୃଷ୍ଟି ତରଫରୁ ମୋ ରଚିତ 'ଭ୍ରୁକୁଟି' ଓ କଖଗ ଅନୁଷ୍ଠାନ ତରଫରୁ ବ୍ରଜେନ୍ଦ୍ରର ଲିଖିତ 'ଉଲଟ୍‌ପାଲଟ୍' ନାଟକ । ଏହି ଚାରୋଟିଯାକ ନାଟକରେ ମୁଁ ବିଭିନ୍ନ ଭୂମିକାରେ ଅଭିନୟ କରିଥିଲି । ସରଗନରକରେ କଲେଜ ଅଧ୍ୟକ୍ଷ ବାୟାଧର ଧର, ରାମ ରାଏଜରେ ସିଆଇଡି ପୋଲିସ ଅଫିସର୍, ଭ୍ରୁକୁଟିରେ ନାୟକ ଓ ଉଲଟପାଲଟରେ ପ୍ରଫେସର, ଏଭଳି ଗୋଟିଏ ରାତିରେ ଅଭିନୀତ ଚାରୋଟି ନାଟକରେ ଅଭିନୟ କରିବାର ନିଆରା ଅନୁଭୂତି ସାଉଁଟି ନିଜକୁ ଧନ୍ୟ ମନେକରିଥିଲି । ରାମ ରାଏଜ୍ ଓ ଭ୍ରୁକୁଟି ନାଟକର ରିହାର୍ସାଲ ନନ୍ଦପଡାରେ, ଧନୁପାଲିରେ ଚେତନାର ନାଟକ ଏବଂ କଖଗର ନାଟକ ଝାଡୁଆପଡାରେ ହେଉଥିଲା ବିଭିନ୍ନସମୟରେ । ମୁଁ କଲେଜ୍‌ରୁ ଆସି ସାଇକଲ୍ ଯୋଗେ ଏହି ତିନୋଟି ସ୍ଥାନ ଠିକଣାସମୟରେ ପହଞ୍ଚି ରିହାର୍ସାଲରେ ଯୋଗ ଦେଉଥିଲି । କଖଗ'ର ନାଟକକୁ ବାଦ୍‌ଦେଲେ, ବାକି ତିନୋଟି ନାଟକକୁ ମୁଁ ନିଜେ ନିର୍ଦ୍ଦେଶନା ଦେଇଥିଲି । ଭ୍ରୁକୁଟି ନାଟକଟି ନନ୍ଦପଡାର ଏକ ନୂଆଁଖାଇଭେଟ୍ ଉତ୍ସବରେ ଆଗରୁ ମଞ୍ଚସ୍ଥ ହୋଇଥିଲା । ଏ ନାଟକରେ ଚିତ୍ରସେନ ମିଶ୍ରଙ୍କ ନନ୍ଦପଡିଆ ଭାଷାର ମଜାଦାର ସଂଳାପ, ବାରୁଦାଙ୍କ ଯୁବା ମାଇଚିଆ ନୃତ୍ୟ ନିର୍ଦ୍ଦେଶକର ଅଭିନୟ, ତାଙ୍କସହ ସ୍ୱର୍ଗତ ଲକ୍ଷ୍ମୀ ନାରାୟଣ ପ୍ରଧାନଙ୍କ ବୁଢ଼ା ମାଇଚିଆ ବେଶରେ ଢୁଲିଆ ଚରିତ୍ରର ହାସ୍ୟରସର ଅଭିନୟ, ସଂଜୀବ ମାଝିଙ୍କ ଶିଶୁଶିଳ୍ପୀ ମାନସୀ ନନ୍ଦଙ୍କ ସହ ଆଧୁନିକ ଶୈଳୀର ନୃତ୍ୟ, ଘରଣୀ ଭୂମିକାରେ ତୃପ୍ତିଙ୍କ ସ୍ୱାଭାବିକ ଅଭିନୟ ନାଟକଟିକୁ ସଫଳକରିବାରେ ସହାୟକ ହୋଇଥିଲା, ଆରମ୍ଭରୁ ଶେଷପର୍ଯ୍ୟନ୍ତ ଦର୍ଶକ ନାଟକଟିକୁ ଉପଭୋଗ କରିଥିଲେ । ଏହି ଉତ୍ସବର ସଫଳତା ଏବେବି ମାନସପଟରେ ଉଜ୍ଜିବୀତ ହୋଇରହିଛି ।

ସୃଷ୍ଟି ଅନୁଷ୍ଠାନର ଦଶବର୍ଷ ଉପଲକ୍ଷେ ନାରୀସେବା ସଦନ ମଞ୍ଚରେ ଏକ ଉତ୍ସବ ଅନୁଷ୍ଠିତ ହୋଇଥିଲା, ଯେଉଁ ଉତ୍ସବରେ ଆକାଶବାଣୀ ସମ୍ବଲପୁରର ତତ୍କାଳୀନ କେନ୍ଦ୍ର ନିର୍ଦ୍ଦେଶକ ଅଭୟ ପାଢ଼ୀ ଓ ବରଗଡର ବିଶିଷ୍ଟ ଅଭିନେତା ବିଭୂତିଭୂଷଣ ପାଢ଼ି ଅତିଥିଭାବରେ ଯୋଗଦେଇଥିଲେ । ଆନୁଷ୍ଠାନିକ ସଭାପରେ ପୁଣିଥରେ ସୃଷ୍ଟି ଅନୁଷ୍ଠାନର କଳାକାରମାନେ ମୋ ନିର୍ଦ୍ଦେଶନାରେ ହାସ୍ୟରସାତ୍ମକ ନାଟକ ଭ୍ରୁକୁଟି ମଞ୍ଚସ୍ଥ କରିଥିଲେ । ମୂଳତଃ ଏହି ନାଟକରେ ବାରଗୋଟି ଚରିତ୍ର ଥିଲା, ଆଉ ଛ'ଟି

ଚରିତ୍ର ଯୋଗ କରାଯାଇ ଅଠରଟି ଚରିତ୍ରର ସମ୍ମେଳନରେ ନାଟକଟି ଅଭିନୀତ ହେଲା । ଏଥିରେ ମୋ ସହ ରାଜେନ୍ଦ୍ର ପ୍ରସାଦ ପଣ୍ଡା, ଉତ୍ତମ ବେହେରା, ରଣଜିତ୍ ଗୁରୁ, ବିପିନ୍ ଦାସ, ପୁଷ୍ପାରଣୀ ବେହେରା, ସଂଜୀବ ମାଝି, ମାନସୀ ନନ୍ଦ, ନରେନ୍ଦୁ ରାୟଗୁରୁ ଆଦି କଳାକାରମାନେ ବିଭିନ୍ନ ଚରିତ୍ରରେ ଅଭିନୟ କରିଥିଲେ । ନନ୍ଦପଡାର ନାଟକରେ ମୋର ବର୍ଷିକିଆ ସନ୍ତାନ ଭାବରେ ମୋ' ପୁଅ ପଞ୍ଚମ ଓ ନାରୀ ସେବାସଦନରେ ମଞ୍ଚସ୍ଥ ନାଟକରେ ସେହି ଚରିତ୍ରରେ ଝିଅ ପୁନମ୍ ମଞ୍ଚକୁ ଓହ୍ଲାଇଥିଲେ । ସଂଜୀବ ମାଝି ଅଭିନୟ କରିଥିବା ମୋ ପୁତୁରାର ଭାବୀଶ୍ୱଶୁର ଭୂମିକାରେ ଉତ୍ତମ ବେହେରା ଅଭିନୟ କରିଥିଲେ । ଏହି ଭୂମିକାରେ ଅଭିନୟ ଅପେକ୍ଷା ଦଶଗୋଟି ରସଗୋଲା ସମସ୍ତଙ୍କୁ ଚହଁରାଇ ଖାଇବା ଦୃଶ୍ୟର ଅଧିକ ଗୁରୁତ୍ୱ ଥିଲା । ରଣଜୀତ ଗୁରୁଙ୍କ ବୁଢ଼ାଅଜା ଭୂମିକାରେ ସଂଳାପମାନ ଦର୍ଶକମାନଙ୍କୁ ଭରପୁର ଆପ୍ୟାୟିତ କରିଥିଲା ।

ମୋର 'ମନ ଖୋଜୁଥାଏ ଯାହା' ନାଟକଟି ଆକାଶବାଣୀର ନାଟ୍ୟତରଙ୍ଗ ଉତ୍ସବରେ ମଞ୍ଚସ୍ଥ ହେବାପରେ ଚେତନା, ଧନୁପାଲି ତରଫରୁ କେନ୍ଦୁଝରଠାରେ କାସାଣ୍ଡ୍ରା କ୍ଲବ୍ ଆୟୋଜିତ ନାଟକ ପ୍ରତିଯୋଗିତାରେ ମଞ୍ଚସ୍ଥ ହୋଇଥିଲା । ଏହି ପ୍ରତିଯୋଗିତାରେ ସୁରେଶ ତ୍ରିପାଠୀ ଓ ତୃପ୍ତି ପଣ୍ଡା ଯଥାକ୍ରମେ ଶ୍ରେଷ୍ଠ ଅଭିନେତା ଓ ଶ୍ରେଷ୍ଠ ଅଭିନେତ୍ରୀ ଭାବରେ ପୁରସ୍କୃତ ହୋଇଥିଲେ । ଦୁଇହଜାର ଛ'ସାତ ବେଳକୁ ଅଭିନେତା ପ୍ରଦୀପ ପଣ୍ଡା ଝାଡୁଆପଡାର ଯୁବଉଦୟନ ଆୟୋଜିତ ସମ୍ବଲପୁରୀ ନାଟକ ପ୍ରତିଯୋଗିତାରେ ଯୋଗଦେବା ପାଇଁ ପାଣ୍ଡୁଲିପିଟିଏ ଚାହିଁଲେ । ଖାସ୍ ତାଙ୍କ ପାଇଁ ମୁଁ 'ମନଖୋଜୁଥାଏ ଯାହା' ନାଟକକୁ ସମ୍ବଲପୁରୀରେ ଅନୁବାଦ କଲି 'ମନ୍‌ଜାନି ମୁନୁଷ୍' ନାଁରେ । ପ୍ରଦୀପ ତାଙ୍କ ନିଜ ନିର୍ଦ୍ଦେଶନାରେ ଏହି ନାଟକଟିକୁ ଅଭିନୀତ କଲେ ଓ ପ୍ରତିଯୋଗିତାରେ ସର୍ବଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହୋଇଥିଲେ । ପରେ ମୋ ସମ୍ପାଦିତ 'ଭରନି' ପତ୍ରିକାରେ ଏହା ପ୍ରକାଶିତ ହୋଇଥିଲା ।

ପ୍ରଦୀପ, ଦେବଗଡ଼ରେ ଥିବାବେଳେ ହେମନ୍ତ ମହାପାତ୍ରଙ୍କ ନିର୍ଦ୍ଦେଶନାରେ ଭୁଖା ନାଟକ ମଞ୍ଚସ୍ଥ ହୋଇଥିଲା ସିନେମାହଲ୍ ମଞ୍ଚରେ । ଏଥିରେ ପ୍ରଦୀପ ହାଡୁ ଚରିତ୍ରରେ ଚମତ୍କାର ଅଭିନୟ କରିଥିଲେ । ସେ ସତସ୍ତରୀ ସାଲ୍‌ରେ ଧନୁପାଲି ଦୁର୍ଗାପୂଜାର ମୂର୍ତ୍ତି ତିଆରିଥିବା କାରିଗର ଚମାର ପଣ୍ଡାଙ୍କ ବଡ଼ପୁଅ, କଳାକାରର ପୁଅ, କଳାକାର ହିଁ ହେବ, ତାକୁ ଶତପ୍ରତିଶତ ପ୍ରମାଣକରିଛନ୍ତି ଅଭିନେତା ପ୍ରଦୀପ ପଣ୍ଡା ।

ପ୍ରଦୀପ ପଣ୍ଡାଙ୍କ ଭାଇ ପ୍ରକାଶ ପଣ୍ଡା ମଧ୍ୟ ଜଣେ ଖ୍ୟାତନାମା ନୃତ୍ୟନିର୍ଦ୍ଦେଶକ, ଏବେ ସେ ବରଗଡର ବିକାଶ ଶିକ୍ଷାଅନୁଷ୍ଠାନରେ କର୍ମରତ ।

ନାଟକକ୍ଷେତ୍ରରେ ସୃଷ୍ଟି ଅନୁଷ୍ଠାନ ଧିମେଇ ଯାଇଥିବା ବେଳେ ମୁଁ ରଙ୍ଗରଜନୀ ସାଂସ୍କୃତିକ ଉତ୍ସବ ଆୟୋଜିତ କରି ବିଭିନ୍ନ ପ୍ରତିଷ୍ଠିତ ନାଟ୍ୟାନୁଷ୍ଠାନଗୁଡ଼ିକୁ ନିମନ୍ତ୍ରଣକରି ଗଙ୍ଗାଧର ମଣ୍ଡପରେ ସେଗୁଡ଼ିକ ପ୍ରଦର୍ଶନ କରାଉଥିଲି । ଏଭଳି ଉତ୍ସବରେ କେଶରଞ୍ଜନଙ୍କ 'ଅସୁର' ସହ ରେମେଣ୍ଡାର ଅଧ୍ୟାପକ ଝସକେତନ ପ୍ରଧାନଙ୍କ ରଚିତ ତଥା ଛବିଲ ପ୍ରଧାନଙ୍କ ନିର୍ଦ୍ଦେଶିତ ଓ ଅଭିନିତ ସମ୍ବଲପୁରୀ ନାଟକ 'ତସ୍ମୈଶ୍ରୀ ଗୁରବେ ନମଃ', ବେଲପାହାଡ଼ର ମିରର୍ ଥିଏଟର୍ ସୁବାଷ ପ୍ରଧାନଙ୍କ ନିର୍ଦ୍ଦେଶିତ ନାଟକ 'ଖୁଲା ଝର୍କା', ବଲାଙ୍ଗିର ର ଭୂମିକା ଅନୁଷ୍ଠାନର ସୁରେଶ ସାହୁ ନିର୍ଦ୍ଦେଶିତ ଅଭିନବ ନାଟକ 'ହେଟା ହେନ୍ତା ହେବାନ' ଆଦି ସଫଳତାର ସହ ପ୍ରଦର୍ଶିତ ହୋଇଥିଲା । ବନ୍ଧୁ, ମୋ ଜିଲ୍ଲାସ୍କୁଲର ସହପାଠୀ ଶତ୍ରୁଘ୍ନଲାଲ ସାହାଙ୍କ ପୃଷ୍ଠପୋଷକତା ପାଇଁ ଏହି ରଙ୍ଗରଜନୀ ଉତ୍ସବ ସଫଳତାର ଶୀର୍ଷକୁ ପହଞ୍ଚିପାରିଥିଲା ।

ନାଟକକରିବା, ସାଂଗଠାନିକ କାର୍ଯ୍ୟରୁ ମୁକ୍ତହୋଇ କିଛିବର୍ଷ ମୁଁ ବିଭିନ୍ନ ନାଟକ ପ୍ରତିଯୋଗିତାର ବିଚାରକ ଭାବରେ ଯୋଗ ଦେଇଥିଲି । ଦୁଇ ହଜାର ଚାରିରୁ କ୍ରମାଗତ ଭାବରେ ରାଉରକେଲା ସ୍ୱସ୍ତିଝଙ୍କାର ଆୟୋଜିତ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ବନ୍ଧୁ ତଥା କବି ରାଜୀବ ପାଣିଙ୍କ ଅନୁରୋଧରେ ଛ' ବର୍ଷ ଧରି ବିଚାରକ ଭାବରେ ଯୋଗଦେଇ ଓଡ଼ିଶାର ବହୁପ୍ରତିଷ୍ଠିତ ନାଟ୍ୟାନୁଷ୍ଠାନର ନାଟକମାନ ଦେଖିବାର, ପରଖିବାର ସୁଯୋଗ ପାଇଥିଲି । ଛ' ବର୍ଷର ପ୍ରାୟ ଚାଳିଶଟି ନାଟକମଧ୍ୟରେ ମୋତେ କେନ୍ଦ୍ରାପଡ଼ାର ତୁଳସୀ ନାଟ୍ୟସଂସଦର ନାଟକ 'କୁରୁକ୍ଷେତ୍ରର ଠିକଣା' ଓ ଉଦଳାର 'ରାଜା' ନାଟକ ଦୁଇଟି ଖୁବ୍ ଆକର୍ଷଣୀୟ ଲାଗିଥିଲା । କୁରୁକ୍ଷେତ୍ରର ଠିକଣା ନାଟକଟିକୁ ରଚନା କରିଥିଲେ ବିଶିଷ୍ଟ ଗାଳ୍ପିକ ରାମଚନ୍ଦ୍ର ବେହେରା । କଳାକାରମାନଙ୍କ ଜୀବନ୍ତ ଅଭିନୟ ନାଟକକୁ ସଫଳତାର ଶୀର୍ଷକୁ ଘେନିଯାଇଥିଲା । ଛ' ବର୍ଷ ଧରି ବିଚାରକ ଭାବରେ ଯୋଗଦେବା ପରେ ସ୍ୱସ୍ତିଝଙ୍କାର ଅନୁଷ୍ଠାନ ନ'ମସିହାରେ ମୋତେ ସ୍ୱସ୍ତି ନାଟ୍ୟସମ୍ମାନରେ ସମ୍ବର୍ଦ୍ଧିତ କରିଥିଲା । ଏହି ସମ୍ବର୍ଦ୍ଧନାର ଉତ୍ତରରେ ମୁଁ ମୋର ଭାଷଣ ପ୍ରସଙ୍ଗରେ କହିଥିଲି, ବିଚାରକ ଭାବରେ ଛ' ବର୍ଷ ମୋର ସେବା ଯୋଗାଇଲି, ଏବେ ଆଗାମୀ ବର୍ଷ ମୁଁ ମୋ ଯୋଗ୍ୟତାକୁ ପ୍ରତିଯୋଗିତାରେ ଯୋଗଦେଇ ପରଖିବାପାଇଁ ଚାହେଁ । କଥା ଦେଇଥିଲି, ଆଗାମୀ ବର୍ଷ, ବିଚାରକ ଭାବରେ ନୁହେଁ, ଜଣେ ପ୍ରତିଯୋଗୀ ଭାବରେ ମୁଁ ଏହି ଉତ୍ସବରେ

ଯୋଗଦେବି । ପ୍ରକୃତରେ, ପରବର୍ତ୍ତୀ ବର୍ଷ ଅର୍ଥାତ୍ ଦୁଇହଜାର ଦଶରେ ଏହି ପ୍ରତିଯୋଗିତାରେ ମଞ୍ଚସ୍ଥ ହୋଇଥିଲା ମୋ ରଚିତ ସମ୍ବଲପୁରୀ ନାଟକ 'ତମେ ଅଛ ବଲି' । ଯେଉଁମାନଙ୍କ ସଙ୍ଗରେ ମୁଁ ବିଚାରକ ଆସନରେ ବସୁଥିଲି, ସେମାନଙ୍କ କଲମକୁ ଛାଡ଼ିଦେଲି ମୋର ନାଟ୍ୟଜୀବନର ଅଗ୍ନି ପରୀକ୍ଷା । ଅବସରପ୍ରାପ୍ତ ଓଡ଼ିଆ ପ୍ରଧ୍ୟାପକ ନିରଞ୍ଜନ ଷଡଙ୍ଗୀ, ପିତାମ୍ବର ପୁହାଣ ଆଦିଙ୍କ ସମ୍ମୁଖରେ ଅଭିନୀତ ହୋଇଥିଲା ମୋର ପ୍ରିୟ ନାଟକ 'ତମେ ଅଛ ବଲି' ।

ଏଭଳି ବହୁ ବିଚିତ୍ର ପରିବେଶ ସୃଷ୍ଟିକରି, ସେଗୁଡ଼ିକୁ ନାଟକୀୟଭାବରେ ଉପଭୋଗ କରିବା ମୋ ନାଟ୍ୟଜୀବନର ଭିନ୍ନ ଏକ ପର୍ଯ୍ୟାୟ । ପରିଣାମର ସକାରାତ୍ମକ ଫଳର ବିଶ୍ୱାସରେ ମୁଁ ନାଟକ କରେ, ମନ ଭିତରେ କେବେ ବି ନକାରାତ୍ମକ ମନୋଭାବକୁ ମୁଁ ସ୍ଥାନିତ କରି ନାହିଁ । ମୋ ଅନୁଷ୍ଠାନସହ, ମୋ ନାଟକସହ ଅନ୍ୟ ଅନୁଷ୍ଠାନ ଓ ଅନ୍ୟ ନାଟ୍ୟକାର, ନିର୍ଦ୍ଦେଶକମାନଙ୍କ ନାଟକର ମୁଁ ସଦାସର୍ବଦା ସଫଳତା କାମନା କରୁଥିଲି, ଏବେ ମଧ୍ୟ କରୁଛି । ଏଇ ପିଢ଼ୀର ବ୍ରଜେନ୍ଦ୍ର ନାୟକ, ସତ୍ୟରଞ୍ଜନ ବେହେରା, ଆତୀଶ ଶତପଥୀ, ପ୍ରଶାନ୍ତ ମହାରଣା ଆଦି ନାଟ୍ୟଶିକ୍ଷୀମାନଙ୍କ ନାଟକ ବେଳେବେଳେ ଭାରି ଭଲଲାଗୁଛି, ଆବଶ୍ୟକ ପଡିଲେ ଆଲୋଚନା, ସମାଲୋଚନା କରିବାକୁ ମୁଁ କୁଣ୍ଠାବୋଧ କରେ ନାହିଁ । ଅନେକ ଅଭିନେତା, ଅଭିନେତ୍ରୀମାନେ ମଧ୍ୟ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ବୋଲି ପ୍ରତ୍ୟେକବର୍ଷ ପ୍ରମାଣିତ କରୁଛନ୍ତି । ଏହା ଥିଏଟର ଜଗତପାଇଁ ଶୁଭ ଖବର । ବର୍ଷ ଭିତରେ କେତେ ନାଟକ ହେଲା, ବଡ଼ କଥା ନୁହେଁ, ବରଂ କେତୋଟି ଗୁଣାତ୍ମକ, ସାହିତ୍ୟିକ ମୂଲ୍ୟବୋଧ ସମ୍ପନ୍ନ ନାଟକ ହେଲା, ସେଇଟା ବଡ଼କଥା ।

ନାଟକ ବଞ୍ଚେ ନୂଆପିଢ଼ୀର କଳାକାରମାନଙ୍କ ଦ୍ୱାରା, ବିକଶିତ ହୁଏ ପ୍ରବୀଣ ନାଟ୍ୟଶିକ୍ଷୀମାନଙ୍କ ଦ୍ୱାରା, ତେବେ ବିକାଶ ଓ ବିବର୍ଦ୍ଧନର ଲଗାମ୍ ରହେ ନାଟ୍ୟକାରମାନଙ୍କ କଲମରେ, ସେମାନଙ୍କ ଦୂରଦୃଷ୍ଟିରେ ନାଟକ ପରିମାର୍ଜିତ ହୁଏ, ନୂତନ ମୋଡ଼ ନେଇଥାଏ ପ୍ରତି ଦଶବର୍ଷରେ, ସେମାନଙ୍କ ଚିନ୍ତା ଓ ଚେତନାକୁ ସାକାରକରନ୍ତି ନିର୍ଦ୍ଦେଶକମାନେ । ତେଣୁ ନାଟକ ଏକ ଯୌଥ ପ୍ରଦର୍ଶନମୂଳକ କଳା ହୋଇଥିବାରୁ ସମଭାବାପନ୍ନ ନାଟଶିକ୍ଷୀଙ୍କ ଏକତ୍ରିତ ହେବା ଏବଂ ମଞ୍ଚକଳାର ପୂଜା କରିବା ଧ୍ୟେୟହେବା ଆବଶ୍ୟକ ।



ଅତୀତର କଥା ସଦାସର୍ବଦା ମାଧୁର୍ଯ୍ୟରେ ଭରିଦିଏ, ସ୍ମୃତି ସବୁବେଳେ ମଧୁମୟ, ସେ ସୁଖଦ ହେଉ ଅବା ଦୁଃଖଦ । ଆଲ୍‌ବମ୍‌ର ପୃଷ୍ଠା ଭଳି ସ୍ମୃତିର ପୃଷ୍ଠାସବୁକୁ ଓଲଟାଇ ଦେଖିଲେ କେତେଯେ ଘଟଣାମୟ ହୋଇଯାଇଥିଲା ଏଇ କଳାକାରୀ ଜୀବନ, ଭାବିବସିଲେ ନିଜକୁ ବିସ୍ମିତ ହେବାକୁ ପଡେ । ଏକାଏକା ଅଶ୍ୱାରୋହୀ ଭଳି ମାଡ଼ିଚାଲିଥିଲି ଆଗକୁ ଆଗକୁ, ବାଟରେ ଯେତେ ସମଭାବାପନ୍ନ ସାଥୀ ଭେଟିଲେ, ସମସ୍ତଙ୍କୁ ସାଙ୍ଗରେ ଧରି ଏକ ମହାନ୍ ଲକ୍ଷ୍ୟକୁ ହାସଲ କରିବାର ପ୍ରୟାସରୁ କେବେ ହଟିନାହିଁ, ଏବେ ବି ହଟୁନାହିଁ । କିଛି ପୂରଣ ହେବା ଭଳି ଅନୁଭବ ହେଉଛି, ଆଉ କିଛି ଏବେ ବି ଅପୂରଣୀୟ ରହିଯାଇଛି, ଇତିହାସ କହିବ, ଭାଷାସାହିତ୍ୟର ଭବିଷ୍ୟତ କଣ ହେବ ! ।

ସେତେବେଳେ ସେ ପଦ୍ମଶ୍ରୀ ଭାବରେ ସମ୍ବୋଧିତ ହେଉ ନଥିଲେ, ଏପରି କି ଲୋକକବି ଭାବରେ ପରିଚିତ ମଧ୍ୟ ହୋଇ ନଥିଲେ । ସେ ଥିଲେ ଜଣେ ଗ୍ରାମୀଣ କବି, ନୂଆଁ ନୂଆଁ କବିତା ଲେଖୁଥିଲେ, ତାଙ୍କ ପାଇଁ ହିଁ ବରଗଡ ଜିଲ୍ଲା ସ୍ୱାଧୀନତା ସଂଗ୍ରାମର ପୀଠ ଘେଁସ୍‌ରେ ଏକାନବେ, ବୟାନବେରେ ଜନ୍ମ ନେଲା ଅଭିମନ୍ୟୁ ସାହିତ୍ୟ ସଂସଦ, ସୁବାସ ମେହେର, ଅଶୋକ ପୂଜାହାରୀ, ଅମୃତଲାଲ ସାହୁ ଭଳି ସାହିତ୍ୟ ପ୍ରେମୀଙ୍କ ସଦିଚ୍ଛା ଥିଲା, ତାଙ୍କୁ କବି ଭାବରେ ପ୍ରତିଷ୍ଠିତ କରାଇବା, ଏହି ମହାନ୍ ଲକ୍ଷ୍ୟ ହାସଲ କରିବାପାଇଁ ଏଇମାନେ ତାଙ୍କ ଗୀତିକବିତାକୁ କବିତାର ସ୍ୱରୂପ ପ୍ରଦାନ କଲେ, ସେ ଭାବସନ୍ନିବେଶିତ ସମ୍ବଲପୁରୀ ଭାଷାରେ କବିତା ରଚନାକରି ସମ୍ବଲପୁରରୁ ପ୍ରହଲ୍ଲାଦ ଦାସଙ୍କ ସମ୍ପାଦନାରେ, ସଂଜୟ ସୂପକାରଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ 'ଆର୍ଟ ଏଣ୍ଡ ଆର୍ଟିଷ୍ଟ' ପତ୍ରିକାକୁ ପ୍ରକାଶନ ନିମିତ୍ତ କାଠ୍‌ଗୋଡ୍, ଢଡୋ ବର୍‌ଗଛ୍ ଆଦି ପଠାଇଥିଲେ, ଯାହା ସମ୍ବଲପୁରୀ ଭାଷାପ୍ରେମୀ ପ୍ରହଲ୍ଲାଦ ଦାସ ଅନାୟାସରେ ପ୍ରକାଶ କରିଥିଲେ, ଏହା ସେତେବେଳେ ପାଠକମାନଙ୍କ ଦୃଷ୍ଟି ଆକର୍ଷିତ କରିଥିଲା । ଏହି କବି ହେଉଛନ୍ତି ଲୋକକବି ପଦ୍ମଶ୍ରୀ ହଳଧର ନାଗ । ତେୟାନବେରେ, ଆର୍ଟ ଏଣ୍ଡ ଆର୍ଟିଷ୍ଟ ପ୍ରତିଭା ତରଫରୁ କବି ହଳଧର ନାଗଙ୍କୁ ସମ୍ବର୍ଦ୍ଧିତ କରିବା ଅବସରେ ସର୍ବପ୍ରଥମେ ମୋର ଦେଖାହୁଏ ହଳଧରବାବୁଙ୍କ ସହ ଜନୈକ ସାଧାରଣଦର୍ଶକ ଭାବରେ । ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ ଶ୍ରୀମତୀ ଲିଭନେସ୍ କିଣ୍ଡୋ । ସମ୍ବର୍ଦ୍ଧନାପରେ ହଳଧରଙ୍କ କଣ୍ଠରୁ ଢଡ଼ୋ ବରଗଛ୍ ସହ ଆଉ ତିନୋଟି କବିତା ଶୁଣିବାପରେ ମୁଁ ଗଭୀରଭାବରେ ପ୍ରଭାବିତ ହୋଇଥିଲି । ହଳଧରବାବୁଙ୍କ କବିତା ଶୁଣିବାବେଳେ ହିଁ ତାଙ୍କୁନେଇ ଅନେକ ସ୍ୱପ୍ନ ଦେଖିଥିବା

ଆରମ୍ଭ କରିଦେଇଥିଲି । ଭାବୁଥିଲି, ଏତେ ଦିନ ପରେ, ଠିକଣାସମୟରେ ଉଚିତ୍ ପ୍ରତିଭା ଜଣେ ସକାଳର ସୂର୍ଯ୍ୟ ଭଳି ଭାଷାର ଆକାଶରେ ଉଦିତ ହୋଇଛନ୍ତି । ଏହି କବିଙ୍କୁନେଇ ଏ ମାଟି ଦିନେ ନା ଦିନେ ଗର୍ବ କରିବ, ଏଇ କବି ଦିନେ ସମ୍ବଲପୁରୀ ଭାଷାର ଧ୍ୱଜାକୁ ଊର୍ଦ୍ଧ୍ୱରେ ଟେକି ଧରିବାରେ ସମର୍ଥହେବେ ।

ଶିକ୍ଷକ ତଥା ସାହିତ୍ୟ ପ୍ରେମୀ ଶିବନାରାୟଣ ଶତପଥୀଙ୍କ ଉଦ୍ୟମରେ ଚୌରାନବେ ମସିହାରେ ସମ୍ବଲପୁରୀ ସାହିତ୍ୟ, ସଂଗୀତ, ନାଟକ ଏକାଡେମୀ ନାମରେ ଏକ ସଂଗଠନ ଗଢ଼ାଯାଇ ତା' ତରଫରୁ ହଳଧର ନାଗଙ୍କ କ୍ଷୁଦ୍ର କବିତାଗୁଡ଼ିକୁ ନେଇ ଏକ ସଙ୍କଳନ 'ସୁରୁତ୍'ର ଉନ୍ମୋଚନ ଅବସରରେ ପୁଣି ହଳଧରବାବୁଙ୍କ ସହ ଦେଖାହେଲା, ଏଥର କଥାଭାଷା ମଧ ହୋଇଥିଲା । ଲ' କଲେଜ ନିକଟସ୍ଥ ଉର୍ଦ୍ଦୁ ବିଦ୍ୟାଳୟର ଏକ ପ୍ରକୋଷ୍ଠରେ ଏହି ଆସର ଆୟୋଜିତ ହୋଇଥିଲା । ଏଥିପାଇଁ ନାଟ୍ୟକାର ମଙ୍ଗଳୁଚରଣ ବିଶ୍ୱାଳ, ବିନୋଦ ପଶାୟତ, ମୁରାରୀ ପ୍ରସାଦ ମିଶ୍ର ପ୍ରମୁଖ ଅତିଥି ଭାବରେ ଯୋଗଦେଇଥିଲେ । ସୁରୁତ୍ ପୁସ୍ତକ ଉନ୍ମୋଚନ ପରେ ହଳଧରବାବୁ ତାଙ୍କ ରଚିତ 'ଅଛିଆ' କାବ୍ୟଟି ସମ୍ବଲପୁରରେ ସର୍ବ ପ୍ରଥମେ ଆବୃତ୍ତିକରି ଉପସ୍ଥିତ ଦର୍ଶକମାନଙ୍କ ସହ ଅତିଥିମାନଙ୍କୁ ମଧ ଚମତ୍କୃତ କରିଦେଇଥିଲେ । ହଳଧରବାବୁଙ୍କ ଆବୃତ୍ତିସମୟରେ ବାରମ୍ବାର କରତାଳି ପ୍ରକମ୍ପିତ ହୋଇ ଉଠୁଥିଲା ପ୍ରକୋଷ୍ଠଟି, କେତେବେଳେ ସମସ୍ତଙ୍କ ଆଖିରୁ ବୋହିଯାଉଥିଲା ଧାରଧାର ଲୁହ । ମୋର ହୃଦୟକୁ ରୋମାଞ୍ଚିତ କରିପକାଉଥାଏ ସେହି ବାତାବରଣ । କାବ୍ୟପାଠ ବେଳେ ଦେଖିଲି, ପାଖରେ ବସି କାବ୍ୟାବୃତ୍ତିରେ ମୋହିତ ହୋଇପଡିଥିବା ମଙ୍ଗଳୁବାବୁ ତାଙ୍କ ଧୋତି କାନିରେ ଆଖିର ଲୁହ ପୋଛିପୋଛି ଓଦା କରି ଦେଇଥିଲେ । କାବ୍ୟପାଠ ଶେଷହେବା ପରେ ମଙ୍ଗଳୁବାବୁ ନିଜସ୍ଥାନରୁ ଉଠିପଡି ହଳଧରଙ୍କ ପାଦଛୁଇଁ, ଗୋଡ଼ତଳେ ପଡ଼ି ସ୍ୱତଃପ୍ରବୃତ୍ତ ଭାବରେ କହିପକାଇଥିଲେ, "ତମେ ଆମ ଭାଷାର ମହତ୍ ରଖବ ହୋ ହଳଧର, ଆମର୍ ମାନ୍ ରଖିବ" । ମୋର ବିସ୍ମୟର କାରଣ, ଜଣେ ତୃତୀୟ ଶ୍ରେଣୀ ପାଠ ପଢ଼ିଥିବା ଲୋକ, ବିନା ପାଣ୍ଡୁଲିପିର ସହାୟତାରେ କେମିତି ଏତେବଡ଼ କାବ୍ୟକୁ ଆବୃତ୍ତି କରିପାରିଲେ !! 'ଅଛିଆ' କାବ୍ୟରେ ସଂସ୍କୃତ ଭାଷାର କାବ୍ୟଭଳି ଏମିତି ଅଳଙ୍କାର, ଅନୁପ୍ରାସ, ରୂପକଙ୍କ ସ୍ଥାନିତ ହେଲା କିପରି ? ନିପଟ ଗାଉଁଲି ପରିବେଶରେ ଶାଗପଖାଳ ଖାଇ, ବିନା ଜୋତାମୋଜାରେ, କୁର୍ତ୍ତାପେଣ୍ଟରେ ଜୀବନ ଜୀଉଁଥିବା କବିଟିଏ ବର୍ତ୍ତମାନ ସମୟର ଜଣେ ବିସ୍ମୟ । ଏହି ଭାବନା ମୋତେ ସେହି କାବ୍ୟ ଶୁଣିଲାପରଠୁ ହିଁ ଅସ୍ତବ୍ୟସ୍ତ କରିପକାଉଥିଲା । ଏଭଳି କବିଙ୍କ ସାହିତ୍ୟର ପ୍ରସାରପାଇଁ ନିହାତି ଉଦମହେବା ଆବଶ୍ୟକ ।

ସେହି ଚୌରାନବେ, ପଞ୍ଚାନବେରେ କଟକରେ ରହୁଥିବା ବନ୍ଧୁ ରଣଜୀତ୍ ପଟ୍ଟନାୟକଙ୍କ ସହ ମୁଁ ଯୋଗାଯୋଗ ସ୍ଥାପନକରି ତାଙ୍କସଂଯୋଜନାରେ ଦୂରଦର୍ଶନରେ ପ୍ରସାରିତ ହେଉଥିବା ଦର୍ଶକଦରବାର କାର୍ଯ୍ୟକ୍ରମ ପାଇଁ ହଳଧରବାବୁଙ୍କୁ ଡକାଇବାର ପ୍ରସ୍ତାବ ଦେଲି, ଯାହାକୁ ସେ ଆନନ୍ଦ ସହକାରେ ଗ୍ରହଣ କରିଥିଲେ । ଫୋନରେ ହଳଧରବାବୁଙ୍କ ବିସ୍ମୟକର ପ୍ରତିଭା ସମ୍ପର୍କରେ ତାଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲି । ରଣଜିତ୍ ନିଜଆଗ୍ରହରେ ଭୁବନେଶ୍ୱର ଯାଇ ଦୂରଦର୍ଶନ କର୍ତ୍ତୃପକ୍ଷଙ୍କ ସହ କଥାଲାଗି ରେକର୍ଡିଂର ତାରିଖ ନିର୍ଣ୍ଣୟକରି ମୋତେ ଖବର ଦେଇଥିଲେ । ମୁଁ ଠିକ୍ ସେହି ଯୋଜନା ଅନୁସାରେ ଅଶୋକ ପୂଜାହାରୀଙ୍କ ମାଧ୍ୟମରେ ହଳଧରବାବୁଙ୍କ ସମ୍ବଲପୁର ଆସିବା ଯୋଜନା କରିଥିଲି । ହଳଧରବାବୁ ସମ୍ବଲପୁର ଆସି ଆମଘରେ ବିଶ୍ରାମନେଲେ, ଉଭୟ ଆମଘରେ ଖାଦ୍ୟପେୟ ସମାପନକରି ରାତିରେ ଧନୁପାଲିରୁ ହିଁ ଭୁବନେଶ୍ୱର ଅଭିମୁଖେ ଯାତ୍ରାକରିଥିଲୁ । ରାସ୍ତାରେ ଏକାସାଥିରେ ଯିବାବେଳେ, ତାଙ୍କ କବିପ୍ରତିଭାର ବିସ୍ମୟକର ଆବିର୍ଭାବ ଓ ଲେଖାଲେଖିରେ ସାହଯ୍ୟ କରୁଥିବା ତାଙ୍କ ଅନ୍ତରଙ୍ଗମାନଙ୍କ ସମ୍ପର୍କରେ କଥାବାର୍ତ୍ତା କରିଥିଲି । ଏଭଳି ଜଣେ ପ୍ରତିଭାଙ୍କ ସାଙ୍ଗରେ ଯାତ୍ରା କରୁଥିବାରୁ ମୁଁ ନିଜକୁ ଭାଗ୍ୟବାନ ମନେକରୁଥିଲି ।

ଭୁବନେଶ୍ୱର ପହଞ୍ଚି ଆଚାର୍ଯ୍ୟବିହାରରେ ଓହ୍ଲାଇ ସେଠାରୁ ସିଧା ଦୂରଦର୍ଶନ ଷ୍ଟୁଡିଓକୁ ଯାଇଥିଲୁ । ସେଠାରେ ଗେଷ୍ଟରୁମ୍‌ରେ ନିତ୍ୟକର୍ମ ଶେଷକରି କାର୍ଯ୍ୟକ୍ରମପାଇଁ ପ୍ରସ୍ତୁତ ହୋଇଥିଲୁ । କିଛିସମୟ ପରେ ରଣଜିତ୍ କଟକରୁ ଆସି ପହଞ୍ଚିଗଲେ । ମୁଁ ତାଙ୍କସହ କିଛି ପଚରାପଚରି କଲାପରେ ମୋ'କଥାକୁ ବିଶ୍ୱାସ କରିଥିଲେ ଏବଂ କାର୍ଯ୍ୟକ୍ରମରେ ଦର୍ଶକମାନଙ୍କ ଗହଣରେ ବସିବାକୁ ଅନୁରୋଧ କରିଥିଲେ । ସେହି କାର୍ଯ୍ୟକ୍ରମରେ ହଳଧରଙ୍କ ସହ ଆଉଜଣେ ବିଶିଷ୍ଟ ଅତିଥି ନିମନ୍ତ୍ରିତ ହୋଇଥିଲେ । ସେ ହେଉଛନ୍ତି ବାରିପଦାର ବିଶିଷ୍ଟ ସଂଗୀତନିର୍ଦ୍ଦେଶକ ରାଧାକୃଷ୍ଣ ଭଞ୍ଜ, ଯେ 'ଅଭିମାନ' ଚଳଚ୍ଚିତ୍ରର ସହ-ସଂଗୀତ ନିର୍ଦ୍ଦେଶକ । ରଣଜିତ ପଟ୍ଟନାୟକଙ୍କ ସହିତ ଅସୀମା ପଣ୍ଡା ମଧ୍ୟ ସେହି କାର୍ଯ୍ୟକ୍ରମର ସଂଯୋଜିକା ଭାବରେ ପ୍ରଶ୍ନାବଳୀ ଉପସ୍ଥାପନ କରୁଥିଲେ । କାର୍ଯ୍ୟକ୍ରମର ସୁଟିଂ ଆରମ୍ଭ ହେଲା, ସଂଯୋଜକମାନଙ୍କ ବିଭିନ୍ନ ପ୍ରଶ୍ନର ଉତ୍ତର ଦେବାଛଳରେ ରାଧାକୃଷ୍ଣବାବୁ ବାରିପଦାର ଝୁମର୍ ଲୋକଗୀତ ଗାନକରି ସମସ୍ତଙ୍କୁ ସ୍ତବ୍ଧ କରିଥିଲେ । ପରେ ହଳଧରବାବୁଙ୍କ ପାଳିଆସିବା ପରେ ସମସ୍ତେ ତାଙ୍କ ବେଶଭୂଷାରେ ଆଶ୍ଚର୍ଯ୍ୟ ହୋଇପଡିଥିଲେ । ବିଭିନ୍ନ ପ୍ରଶ୍ନର ଉତ୍ତର ସେ ସମ୍ବଲପୁରୀ ଭାଷାରେ ଦେଉଥିବାରୁ ସମସ୍ତଙ୍କୁ କୌତୁହଳ ଲାଗିଥିଲା । ସେ ଉତ୍ତର

ପ୍ରଦାନକରି ତାଙ୍କ ଶିକ୍ଷାଗତ ଯୋଗ୍ୟତା, ତାଙ୍କଘରେ ରେଡିଓ ନାହିଁ, ଟିଭି ନାହିଁ, ଖବର କାଗଜ ଆସେ ନାହିଁ, ସେ ଚପଲ ପିନ୍ଧନ୍ତି ନାହିଁ, ଜାମା ଲଗାନ୍ତିନାହିଁ ଆଦି ସ୍ପଷ୍ଟୀକରଣରେ ଉପସ୍ଥିତ ଦର୍ଶକ ସ୍ତମ୍ଭୀଭୂତ ହୋଇପଡିଥିଲେ । ପରେ ଅନୁରୋଧ ଆସିବାରୁ ହଳଧରବାବୁ ସ୍ୱରଚିତ କିଛି କବିତା ଆବୃତ୍ତି କରିଥିଲେ । ତାଙ୍କ ଆବୃତ୍ତିଶୈଳୀ, ସ୍ମୃତି ଶକ୍ତି ଏବଂ କବିତାର ଭାବପ୍ରସଙ୍ଗରେ ସମସ୍ତେ ବିହ୍ୱଳିତ ହୋଇପଡିଲେ । ମୁଁ ଦର୍ଶକମାନଙ୍କ ଭିତରେ ବସି ମାଁ ସମଲେଶ୍ୱରୀଙ୍କୁ ଧନ୍ୟବାଦ ଅର୍ପଣ କରୁଥିଲି, ନିଜକୁ ଆତ୍ମସନ୍ତୋଷ ମନେ କରୁଥିଲି କାର୍ଯ୍ୟକ୍ରମରେ ହଳଧରବାବୁଙ୍କ ସଫଳତାକୁ ନେଇ । ସ୍ୱର୍ଗତ ରତିରଞ୍ଜନ ମିଶ୍ର ଥିଲେ କାର୍ଯ୍ୟକ୍ରମର ପ୍ରଯୋଜକ । ସୁଟିଂ ଶେଷହେବା ପରେ ପ୍ରାୟତଃ ସମସ୍ତେ ହଳଧରବାବୁଙ୍କୁ ଘେରିଗଲେ ତାଙ୍କବିଷୟରେ ଅଧିକ ଜାଣିବାପାଇଁ । ଏପରି କି ଦୂରଦର୍ଶନର ଉଚ୍ଚ ପଦାଧିକାରୀ ମଧ୍ୟ ତାଙ୍କୁ ନିଜକକ୍ଷକୁ ଡକାଇ ଆପ୍ୟାୟିତ କରାଇଥିଲେ । କାର୍ଯ୍ୟକ୍ରମର ସଫଳତା ରଣଜିତ୍‌ଙ୍କ ମାନସମ୍ମାନକୁ ମଧ୍ୟ ବୃଦ୍ଧି କରିଥିଲା । ପରେ ରଣଜିତ୍‌ଙ୍କ ଅନୁରୋଧରେ ଆମେ [illegible] ଯାଇ ରଣଜୀତ୍‌ଙ୍କ ବାଖରାବାଦ୍ ସ୍ଥିତ ଭଡ଼ାଘରେ ବିଶ୍ରାମ ନେଇ ତାଙ୍କଘରେ ଭୋଜନ ଆଦି କାର୍ଯ୍ୟ ସମାପନକରି କଟକରୁ ସମ୍ବଲପୁର ଅଭିମୁଖେ ଗସ୍ତ ଆରମ୍ଭ କରିଥିଲୁ ।

ଏହି କାର୍ଯ୍ୟକ୍ରମ ପରେ ହଳଧରବାବୁଙ୍କ ସହ ମୋର ସମ୍ପର୍କ ନିବିଡ଼ ହେବାରେ ଲାଗିଲା, ଗେଁସ୍‌ର ଅଭିମନ୍ୟୁ ସାହିତ୍ୟ ସଂସଦର ବିଭିନ୍ନ କାର୍ଯ୍ୟକ୍ରମ ଯୋଗଦେବା ସମୟରେ ତାଙ୍କ ସହ ଦେଖାହୁଏ, କଥାବାର୍ତ୍ତା ହୁଏ, ସାହିତ୍ୟ ସମ୍ପର୍କିତ ଚର୍ଚ୍ଚା ହୁଏ । ପରେପରେ ଦର୍ଶକଦରବାର କାର୍ଯ୍ୟକ୍ରମ ଦେଖି ହଳଧରବାବୁଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟର ପ୍ରଚାରପ୍ରସାର ଦ୍ରୁତଗତିରେ ବିସ୍ତାରିତ ହେବାରେ ଲାଗିଲା । ତାଙ୍କ ମାଧ୍ୟମରେ ସମ୍ବଲପୁରୀ ଭାଷା ସାହିତ୍ୟର ପ୍ରଚାର ପାଇଁ ବ୍ୟକ୍ତିଗତ ଉଦ୍ୟମରେ ତାଙ୍କ ସହ ମୁଁ ରାଉରକେଲା, ଭୁବନେଶ୍ୱର, କଟକ ଆଦି ବିଭିନ୍ନ ସ୍ଥାନକୁ ଯାଇଥିଲି । ସମ୍ବଲପୁରରେ ଏକ ସାକ୍ଷାତ ଅବସରରେ ତାଙ୍କଠାରୁ ଉନ୍ନତମାନର ସମ୍ବଲପୁରୀ କାବ୍ୟ ଆଶା ରଖି ରାମାୟଣର ଅବହେଳିତ 'ଉର୍ମିଳା' ଚରିତ୍ର ସମ୍ପର୍କରେ ଚର୍ଚ୍ଚାକରି ସେହି ଚରିତ୍ରଆଧାରରେ ଏକ କାବ୍ୟରଚନା କରିବାପାଇଁ ଅନୁରୋଧ କରିଥିଲି । 'ଅଛିଆ' ପରେ 'ମହାସତୀ ଉର୍ମିଳା' କାବ୍ୟ ହଳଧରବାବୁଙ୍କ ଅନ୍ୟତମ ଶ୍ରେଷ୍ଠ ରଚନା, ଏହାର ରଚନା ଶୈଳୀ ମଧ୍ୟ ଅଭିନବ ଧରଣର । ସାବିତ୍ରୀ, ସୀତା, ଅନୁସୟା ଆଦି ନାରୀଚରିତ୍ରମାନଙ୍କ ସହ ଏକ ତୁଳନାତ୍ମକ ଦୃଷ୍ଟିରେ ସେ ଉର୍ମିଳାଙ୍କୁ ସତୀମାନଙ୍କ ମଧ୍ୟରେ ମହାସତୀ ବୋଲି ପ୍ରମାଣ କରିବାର

ସତ୍‌ସାହସ କରିଥିଲେ । ମୋର ଚର୍ଚ୍ଚାଠାରୁ ଆହୁରି ଅଧିକ ଉନ୍ନତମାନର ହୋଇପାରିଥିଲା ଏହି କାବ୍ୟଟି । ପରେ ସୃଷ୍ଟିସଂସ୍ଥା ତରଫରୁ ଏହି ପୁସ୍ତକଟି ପ୍ରକାଶିତ ହୋଇ ଲୋକଲୋଚନକୁ ଆଣିବାର ଉଦ୍ୟମ କରାଯାଇଥିଲା ।

ହଳଧରବାବୁଙ୍କୁ ସମ୍ବଲପୁରର ଯୁବଉଦୟନ ବୟାନବେରେ ଏବଂ ଓଡ଼ିଶା ସାଂସ୍କୃତିକ ସମାଜ ସତାନବେରେ ସମ୍ବଲପୁରୀ ସାହିତ୍ୟ ପ୍ରତି ତାଙ୍କ ଅବଦାନପାଇଁ ସମ୍ବର୍ଦ୍ଧିତ କରିଥିଲେ । ମୋର ଭାରି ଇଚ୍ଛା ଥିଲା, ହଳଧର ନାଗଙ୍କୁ ଥରେ କଟକର ସର୍ବପୁରାତନ ସାହିତ୍ୟ ପୀଠ ଶ୍ରୀରାମଚନ୍ଦ୍ର ଭବନରେ ଠିଆ କରେଇ କଟକର ବରିଷ୍ଠ କବିମାନଙ୍କ ସମ୍ମୁଖରେ ତାଙ୍କ କାବ୍ୟକବିତା ଆବୃତ୍ତି କରାଇ ତାଙ୍କ ପ୍ରତିଭାକୁ ପରିଚିତ କରାଇବା । ତେଣୁ ପୁଣି ଥରେ ବନ୍ଧୁ ରଣଜୀତଙ୍କସହ ଫୋନ୍‌ରେ କଥାବାର୍ତ୍ତା ଲାଗି ଶ୍ରୀରାମଚନ୍ଦ୍ର ଭବନରେ ପ୍ରୟୋଗ ଅନୁଷ୍ଠାନ ତରଫରୁ ହଳଧରଙ୍କ ପାଇଁ ଏକ ସମ୍ବର୍ଦ୍ଧନା ସଭାର ଆୟୋଜନ ଯୋଜନା କରାଗଲା । ଏଥିପାଇଁ ତାରିଖ ଠିକଣା ହୋଇଗଲା ସତାନବେ, ମାର୍ଚ୍ଚ ସାତ ତାରିଖ । କଟକର ଆୟୋଜନପାଇଁ ରଣଜୀତ ଓ ସମ୍ବଲପୁରରୁ କଟକ ଯିବାଆସିବା ଦାୟିତ୍ୱ ମୁଁ ନିଜେ ଗ୍ରହଣ କରିଥିଲି । ହଳଧର ନାଗଙ୍କ ଏହା କଟକ ଯାତ୍ରାକୁ ଐତିହାସିକ ଓ ସ୍ମୃତି ସମ୍ପନ୍ନ କରିବାପାଇଁ ମୁଁ ପ୍ରାଣପଣେ ଉଦ୍ୟମ ଆରମ୍ଭ କରିଦେଲି । ସମ୍ବଲପୁର ଲୋକମହୋତ୍ସବର ପୂର୍ଣ୍ଣ ସଫଳତାପରେ ସମ୍ବଲପୁର ଜିଲ୍ଲାପାଳ ନରେନ୍ଦ୍ର ମିଶ୍ରଙ୍କ ସହ ମୋର ଘନିଷ୍ଠତା ବୃଦ୍ଧି ପାଇଥିବାରୁ ପ୍ରଥମେ ତାଙ୍କ ବାସଭବନକୁ ଯାଇ ଏ ସମ୍ପର୍କରେ ଆଲୋଚନା କଲି । ସେ ମତେ ଏକ ଗାଡ଼ି ଯୋଗାଇ ଦେବାର ନିର୍ଭର ପ୍ରତିଶ୍ରୁତି ଦେଇଥିଲେ । ଜିଲ୍ଲାପାଳଙ୍କଠାରୁ ଏଭଳି ପ୍ରତିଶ୍ରୁତି ପାଇବା ପରେ ମୁଁ କଟକ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବାରେ ଲାଗିପଡ଼ିଲି । ଏଥର ଏକା ନଯାଇ ବନ୍ଧୁମାନଙ୍କ ଗହଣରେ ଯିବାର ନିଷ୍ପତ୍ତି ନେଇ ପଦ୍ମପୁରରୁ କେଶରଞ୍ଜନ ପ୍ରଧାନ, ଘେଁସରୁ ଅଶୋକ ପୂଜାହାରୀ, ବଲାଙ୍ଗିରରୁ ସୁଶୀଲ ମିଶ୍ର, ସମ୍ବଲପୁରରୁ ବନ୍ଧୁ ଶାନ୍ତନୁ ହୋତା ଆଦିଙ୍କୁ ଅନୁରୋଧ କରିଥିଲି ଏହି ଐତିହାସିକ ଯାତ୍ରାରେ ସାମିଲ ହେବାପାଇଁ । ସମସ୍ତେ ଆନନ୍ଦରେ ସହମତ ହେଲେ । ନିର୍ଦ୍ଧାରିତ ତାରିଖ ସକାଳୁ ଜିଲ୍ଲାପାଳଙ୍କ ପ୍ରଦତ୍ତ ଏକ ସରକାରୀ ଜିପ୍ ଯୋଗେ ହଳଧରବାବୁଙ୍କ ସହ ଆମ ଯାତ୍ରା ଆରମ୍ଭ ହେଲା ।

ଏହି ଯାତ୍ରା ଆଜିଯାଏଁ ଗତି କରୁଛି, କାଲି ମୁଁ ଥିଲି, ଆଜି ମୋ ସ୍ଥାନରେ ଅନ୍ୟକେହି ସେହି ଦାୟିତ୍ୱ ନିଭାଉଛି । ହଳଧରୀୟ ସାହିତ୍ୟ ଆଜି ଗାଁ ଗାଁରେ, ସହର ମଫସଲରେ, ପ୍ରତ୍ୟେକ ସାହିତ୍ୟ ପ୍ରେମୀଙ୍କ ନିକଟରେ ଲୋକପ୍ରିୟତା ହାସଲ କରିଛି ।

କଟକର ସେହି କର୍ଯ୍ୟକ୍ରମରେ ହଳଧରବାବୁଙ୍କୁ ଲୋକକବି ସମ୍ମାନରେ ସମ୍ବର୍ଦ୍ଧିତ କରାଯାଇଥିଲା । ଦୂରଦର୍ଶନର କାର୍ଯ୍ୟକ୍ରମ ଅଧିକାରୀ ରତିରଞ୍ଜନ ମିଶ୍ର ତାଙ୍କ ଭାଷଣପ୍ରସଙ୍ଗରେ ସେହି ସଭାରେ କହିଥିଲେ, ତାଙ୍କର ଅଲୌକିକ ପ୍ରତିଭା ବିଷୟରେ ପ୍ରଥମେ କିଛି ଜାଣି ନଥିଲେ । ପରେ ଜାଣିଲି ଯେ କବି ଗଙ୍ଗାଧର ମେହେରଙ୍କ ପରେ କବିତା ମାଧ୍ୟମରେ ପଶ୍ଚିମ ଓଡ଼ିଶାର ଲୋକଙ୍କୁ ସ୍ତମ୍ଭୀଭୂତ କରିଦେଇଛନ୍ତି କବି ହଳଧର ନାଗ । ଦୂରଦର୍ଶନର ଦର୍ଶକଦରବାରରେ ରେକର୍ଡ ସଂଖ୍ୟକ ଦର୍ଶକଙ୍କ ଚିଠି ତା'ର ଜ୍ୱଳନ୍ତ ପ୍ରମାଣ ଦିଏ ! ! !



ସମ୍ବଲପୁରଠାରୁ କଟକକୁ ଯାତ୍ରାକରିବା ଗୋଟାଏ ବଡ଼କଥା ନୁହେଁ, ତେବେ ହଳଧର ନାଗଙ୍କୁ ସାଥିରେ ନେଇ ଆମେ ବନ୍ଧୁବର୍ଗ ଜିଲ୍ଲାପାଳ ନରେନ୍ଦ୍ର ମିଶ୍ରଙ୍କ ଆମପ୍ରତି ସୌହାର୍ଦ୍ଦ୍ୟପୂର୍ଣ୍ଣ ସହଯୋଗ ପ୍ରତୀକସ୍ୱରୂପ ଯେଉଁ ସରକାରୀ ଗାଡ଼ିଟିଏରେ ଏକତ୍ରବସି କଟକର ଶ୍ରୀ ରାମଚନ୍ଦ୍ର ଭବନକୁ ଯାତ୍ରା କରିଥିଲୁ, ତାହା ଏକ ଐତିହାସିକ ଗୁରୁତ୍ୱ ବହନ କରିଥିଲା, ସେଥିରେ ତିଳେମାତ୍ର ସନ୍ଦେହ ନଥିଲା । ହଳଧର ଆମସହ ଯାଇଥିଲେ କବି ହଳଧର ଭାବରେ, ଫେରିଲେ ଲୋକକବିର ମୁକୁଟ ପିନ୍ଧି, ଏକ ଜାତିର, ଏକ ସଂସ୍କୃତିର, ଏକ ସ୍ୱତନ୍ତ୍ର ଲାଳିତ୍ୟପୂର୍ଣ୍ଣ ଭାଷାର ପ୍ରତିନିଧିସ୍ଥାନୀୟ ସ୍ୱୀକୃତିପ୍ରାପ୍ତ ଲେଖକଭାବରେ । ସନ୍ଥକବିଙ୍କ ବଂଶଧରଭଳି ଦେଖାଯାଉଥିବା, ଝୁମ୍ପୁରୁଝାମ୍ପୁରୁ ମୁକୁଳା କେଶରାଶି, କୃଷ୍ଣକଳାର ଚମରେ ସଜ୍ଜିତ ରୂପ, ଆଣ୍ଠୁଏପର୍ଯ୍ୟନ୍ତ ମୋଟାସୂତାର ଧୋତି, ପିଠି ଲୁଚୁ ନଥିବା ଗଞ୍ଜି, ବେକରେ ସମ୍ବଲପୁରୀ କୁମ୍ଭଗାମୁଛା, ଖୋଲାପାଦର ଆସ୍ତରଣ, ମୁହଁରେ ନିର୍ଭୟ ହସର ଫୁଆରା, ଆମ ସମସ୍ତଙ୍କ ଗହଣରେ ଯେତେବେଳେ ଶ୍ରୀରାମଚନ୍ଦ୍ର ଭବନର ମୁଖ୍ୟଦ୍ୱାର ଡେଇଁ ପ୍ରାଙ୍ଗଣକୁ ଛୁଇଁଲୁ, ଦେଖିଲି, ଓଡ଼ିଶାର ତଥା ଓଡ଼ିଆଜାତିର କ୍ରାନ୍ତିପୁରୁଷଙ୍କ ଆବକ୍ଷ ପ୍ରତିମୂର୍ତ୍ତିମାନ ଯେଭଳି ହସହସ ମୁଖରେ ସ୍ୱାଗତ କରୁଥିଲେ ଆଉ ଜଣେ ମହାନ୍ ସ୍ରଷ୍ଟାପୁରୁଷଙ୍କୁ, ଯେ ଆସିଛନ୍ତି ଗଙ୍ଗାଧରଙ୍କ ମାଟିରୁ, ସ୍ୱଭାବକବିଙ୍କ ଭାବଭୂମିରୁ, ହୀରାଖଣ୍ଡର ହୀରାଭଳି ଉଦ୍‌ଭାଷିତ ଯାହାଙ୍କ ଲେଖନୀ, ବସୁନ୍ଧରାର କଳାହୀରାଭଳି କଳାମଚମଚ ଦେହରେ ମାଁ ସମଲେଶ୍ୱରୀଙ୍କ ଗଳାରେ ଶୋଭିତ ଲାଲ୍ ଗୁଫାମନ୍ଦାରର ପାଖୁଡ଼ାଭଳି ମୁଖରେ ସ୍ପଷ୍ଟ ଶବ୍ଦଝଙ୍କାର ! !

ଯେଉଁଠୁ ପ୍ରେକ୍ଷାଳୟକୁ ପ୍ରବେଶ କରନ୍ତି, ସେଇଠି ହଳଧରବାବୁ ମୋତେ ପାଣି କେଉଁଠିଅଛି ବୋଲି ପଚାରିଥିଲେ । ପାଖରେ ଥିବା ମାଠିଆରୁ ପାଣିମଗେ

ନେଇ ଏକ ଫୁଲଗଛ ମୂଳେ, ଅଣ୍ଟିରୁ ଗୁଡ଼ାଖୁଡବା ବାହାରକରି ତୁରନ୍ତ ମୁଳିଆଙ୍ଗୁଠିରେ ଧାରେଆଣି ଦାନ୍ତରଗଡ଼ି ସଙ୍ଗେସଙ୍ଗେ ପ୍ରସ୍ତୁତ ହୋଇଗଲେ ସଭାକୁ ଯିବାପାଇଁ । ମୁଁ ଲକ୍ଷ୍ୟ କରୁଥାଏ, ଜଣେ ମଫସଲି ମଣିଷର ବୃତ୍ତି ଓ ପ୍ରବୃତ୍ତିକୁ । ଆମେ ସମସ୍ତେ ଯାଇ ଆଗଧାଡ଼ିରେ ହଳଧରବାବୁଙ୍କ ସହ ବସିପଡିଲୁ । ରଣଜିତ୍ ମଞ୍ଚକୁଯାଇ ଜଣାଜଣାକରି ସଭାକୁ ଡାକିଲେ । ସଭାପତିତ୍ୱ କରିଥିଲେ, ବିଶିଷ୍ଟକବି ଅନନ୍ତ ପଟ୍ଟନାୟକଙ୍କ ପୁଅ କବି ଅମରେଶ ପଟ୍ଟନାୟକ, ମୁଖ୍ୟଅତିଥି ଭାବରେ ନିମନ୍ତ୍ରିତ ହେଲେ ଦୈନିକ ସମାଜର ପ୍ରାକ୍ତନ ସମ୍ପାଦିକା କବି ମନୋରମା ମହାପାତ୍ର, ପରେ ସଭାର ମୁଖ୍ୟ ଆକର୍ଷଣ କବି ହଳଧର ନାଗ ଓ ସମ୍ବଲପୁରକୁ ପ୍ରତିନିଧିତ୍ୱ କରିଥିବା ହେତୁ ମୋତେ ସଭାଆରମ୍ଭରୁ ହିଁ ମାନପତ୍ର ଓ ଉପାୟନ ଦ୍ୱାରା ଲୋକକବି ସମ୍ମାନରେ ସମ୍ବର୍ଦ୍ଧିତ କରାଗଲା ହଳଧରବାବୁଙ୍କୁ, ତାଙ୍କ ଜୀବନ ଓ କବିପ୍ରତିଭା ସମ୍ପର୍କରେ ମୁଁ ସମ୍ୟକ୍ ସୂଚନାପ୍ରଦାନ କରିବାପରେ ସମସ୍ତଙ୍କ ଅନୁରୋଧରେ ହଳଧରବାବୁଙ୍କୁ କୁହାଗଲା ତାଙ୍କ କାବ୍ୟକବିତା ଆବୃତ୍ତି କରିବାପାଇଁ । ମୋ ସାମାନ୍ୟ ସଂଯୋଜନାରେ କବି ଦୁଇତିନୋଟି କ୍ଷୁଦ୍ରକବିତା ଆବୃତ୍ତି କଲାପରେ ବଡ଼କାବ୍ୟ ଅଛିଆ ଆବୃତ୍ତି ଆରମ୍ଭ କରିଥିଲେ । ସମ୍ବଲପୁରୀ ଭାଷାରେ ରଚିତ ହୋଇଥିଲେ ହେଁ ହଳଧରବାବୁଙ୍କ ଆବୃତ୍ତିଶୈଳୀ ଏବଂ ସ୍ମୃତିଶକ୍ତିର ସହାୟତାରେ ଅନର୍ଗଳ ଆବୃତ୍ତିକରିବା ଦେଖି ଉପସ୍ଥିତ ବିଜ୍ଞ ଦର୍ଶକଗଣ ସ୍ତମ୍ଭୀଭୂତ ହୋଇଗଲେ । ରାମାୟଣର ଏକ ଗୌଣଚରିତ୍ର ଶବରୀକୁ ନେଇ ଯେ ଏକ ବଡ଼କାବ୍ୟ ଲେଖାଯାଇପାରେ, ତାଙ୍କ ଆକଳନ ଭିତରେ ନଥିଲା । ତା'ସହ ହଳଧରଙ୍କ ପଦଉଚ୍ଚାରଣରେ ସ୍ପଷ୍ଟତା, ଲାଳିତ୍ୟପୂର୍ଣ୍ଣ ଶବ୍ଦର ଗୁନ୍ଥନ, ଉଭୟ ଆବୃତ୍ତିଧର୍ମିତା ଓ ଗାନଧର୍ମିତା ଆଭୂଷଣରେ ସମସ୍ତେ ମନ୍ତ୍ରମୁଗ୍ଧ ହୋଇପଡିଥିଲେ । ପ୍ରଥମେ ପ୍ରଥମେ ଚେହେରାକୁ ଦେଖି ଯେଉଁମାନେ ନିରାଶ ହୋଇପଡିଥିଲେ, ସେମାନେ ଶୁଖିଲାଗଛରେ ପତ୍ର କଅଁଳିଲାପରି ହଠାତ୍ ସତେଜ୍ ହୋଇପଡିଥିଲେ । ସମ୍ପୂର୍ଣ୍ଣ କାବ୍ୟଟି ଶୁଣିସାରିବା ପରେ ଆରମ୍ଭ ହୋଇଥିଲା ପ୍ରଶଂସାର ସୁଅ । ଦର୍ଶକ ମଣ୍ଡଳୀରେ ଉପସ୍ଥିତଥିବା ଗାଳ୍ପିକ କିଶୋରୀ ମୋହନ ଦାସ, ନାଟ୍ୟକାର ରତିରଞ୍ଜନ ମିଶ୍ର, କବି କୈଳାଶ ଲେଙ୍କା, ସାମ୍ବାଦିକ ବିଜୟ ମଲ୍ଲ, ସମସ୍ତେ ହଳଧରଙ୍କ କବିପ୍ରତିଭାର ପ୍ରଶଂସାରେ ଶତମୁଖ ହୋଇପଡିଲେ । ମୁଖ୍ୟଅତିଥି ଶ୍ରୀମତୀ ମନୋରମା ମହାପାତ୍ର ତାଙ୍କ ଭାଷଣ ପ୍ରସଙ୍ଗରେ ଆଭାଷ ଦେଇଥିଲେ, ହଳଧରଙ୍କ ଭାଷାରେ ମୌଳିକତା ରହିଛି, ଓଡ଼ିଆ ଭାଷାରେ କିଛି ସମ୍ବଲପୁରୀଛୁଙ୍କ ଦେଇଦେଲେ ଯେ ତାହା ସମ୍ବଲପୁରୀ ହୋଇଯିବ, ହଳଧରବାବୁ ସେହି ଭ୍ରାନ୍ତଧାରଣାକୁ ଭୁଲ୍ ପ୍ରମାଣିତ

କରିଦେଲେ । ଦିନ ଆସିବ, ଖୁବ୍ ଶୀଘ୍ର ହଳଧରବାବୁଙ୍କ ଫଟୋଚିତ୍ର ଏହି ଭବନର କାନ୍ଥରେ ଅନ୍ୟ ମହାନ୍ କର୍ଷି ଲେଖକମାନଙ୍କ ସହିତ ଶୋଭାପାଇବ । ପ୍ରଖ୍ୟାତକବି କୈଳାସ ଲେଙ୍କା ତାଙ୍କ ବକ୍ତବ୍ୟରେ କହିଲେ, ମୁଁ ଏ ସଭାକୁ ଆସି ନଥିଲେ ହଳଧରଙ୍କ ସାନ୍ନିଧ ପାଇବାର ଏକ ବଡ଼ ସୁଯୋଗ ହରାଇଥାନ୍ତି । ଋଷିପ୍ରତିମ ହଳଧର ନାଗ ଆଜି ସମ୍ବଲପୁରୀ ସାହିତ୍ୟ ଓ ସଂସ୍କୃତିର ବାର୍ତ୍ତାବହ । ଶେଷରେ ସଭାପତି ଆସନ ଅଳଙ୍କୃତ କରିଥିବା କବି ଅମରେଶ ପଟ୍ଟନାୟକ ହଳଧରବାବୁଙ୍କୁ ସାମ୍ପ୍ରତିକ ସାହିତ୍ୟର ଜଣେ ବିସ୍ମୟ ବୋଲି ଅଭିହିତ କରିଥିଲେ ।

ପରେପରେ ହଳଧର ପାଲଟିଗଲେ ସର୍ବସାଧାରଣଙ୍କ ପ୍ରିୟ ଲୋକକବି । ବିଂଶଶତାବ୍ଦୀର ଶେଷଭାଗରେ ବରଗଡ଼ ସୌଖିନ କଳାକାର ସଂଘର ମଣ୍ଡପରେ ଅନ୍ୟତମ ବିଶିଷ୍ଟ କବି ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ଜୟନ୍ତୀ ସଭାରେ ମୁଖ୍ୟବକ୍ତା ଭାବରେ ଯୋଗଦେଇ ମୁଁ ସମ୍ବଲପୁରୀ ଭାଷାର ତିନିଜଣ ଶ୍ରେଷ୍ଠକବିଙ୍କୁ ନିଜ ବକ୍ତବ୍ୟରେ କିଛି ମତ ଉପସ୍ଥାପନ କରିଥିଲି, ଯାହା ସେଠାରେ ଉପସ୍ଥିତ ଦର୍ଶକମାନେ ବିପୁଳ କରତାଳିରେ ସମର୍ଥନ କରିଥିଲେ । ମହାଭାରତର କବି ଡ. ନୀଳମାଧବ ପାଣିଗ୍ରାହୀଙ୍କୁ କ୍ଲାସିକ୍ କବି, ହେମଚନ୍ଦ୍ର ଆଚାର୍ଯ୍ୟଙ୍କୁ କ୍ଲାସ ଓ ମାସ୍‌ର କବି ଏବଂ ହଳଧରଙ୍କୁ ମାସ୍ ବା ସର୍ବସାଧାରଣଙ୍କ କବିଭାବରେ ଆଖ୍ୟାୟିତ କରିଥିଲି । କିଛିବର୍ଷ ତାଙ୍କସହ ଲଗାୟତ ବିଭିନ୍ନ ସଭାସମିତିରେ ଭେଟ୍‌ଘାଟ୍‌ହେବା ଫଳରେ ହଳଧରବାବୁଙ୍କ ସହ ମୋର ସମ୍ବନ୍ଧ ନିବିଡ଼ରୁ ନିବିଡ଼ତର ହୋଇଯାଇଥିଲା । ଘେଁସ୍‌ଠାରେ ଅଭିମନ୍ୟୁ ସାହିତ୍ୟ ସଂସଦ ତରଫରୁ ଆୟୋଜିତ କବିଙ୍କ ଏକ ଜୟନ୍ତିସଭାରେ ଏକଥା ମଧ୍ୟ ସୂଚନା ଦେଇଥିଲି, ହଳଧର ମୋ ବଡ଼ଭାଇ ସଦୃଶ, ଯେହେତୁ ମୋ ନାମ ଶ୍ରୀକୃଷ୍ଣଙ୍କ ନାମରେ ନାମିତ, ଦ୍ୱାରିକା ନାଥ ଏବଂ କୃଷ୍ଣଙ୍କ ବଡ଼ଭାଇ ସ୍ୱୟଂ ବଳରାମ, ଯାହାଙ୍କ ଅନ୍ୟନାମ ହଳଧର, ସେହି ସୂତ୍ରରେ ନିୟତି ଆମକୁ ଆମ ସମ୍ପର୍କକୁ ଯୋଡ଼ିଛି ବଡ଼ଭାଇ, ସାନଭାଇ ଭାବରେ । ମୁଁ ମଧ୍ୟ ସେହିସଭାରେ ସଙ୍କଳ୍ପ କରିଥିଲି, ପାରୁଥିବା ଯାଏଁ ବଡ଼ଭାଇଙ୍କ ସେବାରେ, ବିଶେଷତଃ ତାଙ୍କ ସାହିତ୍ୟର ପ୍ରଚାରପ୍ରସାରରେ ନିଜକୁ ନିୟୋଜିତ କରିବା ଜାରିରଖିଥିବି । ଆଜିଯାଏଁ ମୁଁ ସେହି କାମରେ ହିଁ ଲାଗିରହିଛି ।

ଦୁଇହଜାର ମସିହାରେ ବର୍ଷତମାମ୍ ହଳଧରଙ୍କ ଗ୍ରନ୍ଥାବଳୀରେ ନିଜକୁ ନିୟୋଜିତ କରି ବର୍ଷଶେଷରେ ଯେମିତି ଉନ୍ମୋଚିତ ହେବ, ତାର ବ୍ୟବସ୍ଥା କରିଥିଲି । ଏହି ଗ୍ରନ୍ଥାବଳୀରେ ହଳଧରଙ୍କ ଲିଖିତ ଛ'ଟି ବଡ଼କାବ୍ୟ ସ୍ଥାନିତ କରିବା ଲକ୍ଷ୍ୟରେ ପ୍ରକାଶିତ, ଅପ୍ରକାଶିତ ଛଅଗୋଟି କାବ୍ୟସଂଗ୍ରହ କରି କଟକର ଫ୍ରେଣ୍ଡସ୍ ପବ୍ଲିସର୍ସର ସହଦେବ

ବାବୁଙ୍କ ସାନପୁଅ ସୁଧାଂଶୁ ସହିତ କଥାବାର୍ତ୍ତାକରି ପାଣ୍ଡୁଲିପିମାନ ତାଙ୍କ ଜିମାରେ ଦେଇଥିଲି । ସେ ମଧ ମୋତେ କଥା ଦେଇଥିଲେ, ନିଶ୍ଚୟ ଛାପିବା । ବନ୍ଧୁ ରଣଜିତ ପଟ୍ଟନାୟକଙ୍କ ସାହାଯ୍ୟ ଏ ଦିଗରେ ଖୁବ୍ ସହାୟକ ହୋଇଥିଲା । କିଛି ଦିନର ଅନ୍ତରାଳରେ ଡାକଯୋଗେ ପାଣ୍ଡୁଲିପିର ସମସ୍ତ ଡିଟିପି ମୋ ନିକଟକୁ ଆସିଗଲା । ଡିଟିପି କପିମାନ ଦେଖି ମୋ ଛାତି କୁଣ୍ଢେଇମୋଟ ହୋଇଯାଉଥିଲା । ଆଉ ବିଳମ୍ବ ନକରି, କଲେଜ ଯିବା ବନ୍ଦକରି ମୁଁ ଡିଟିପି କପି ସବୁକୁ ସୁଧାରିବାରେ ଲାଗିଲି । ଏମିତି ଦୁଇଥର ସୁଧାରପରେ ଫୋନ୍ ଯୋଗେ ମୁଁ ସୁଧାଂଶୁଙ୍କ ସହ ଯୋଗାଯୋଗ ରଖି ବହିଆସିବାର ତାରିଖ ଜାଣି ବାରୁଦାଙ୍କୁ ଏ ବାବଦରେ ସୂଚନାଦେଇ ଉନ୍ମୋଚନ ଆସରର ଯୋଗାଡ଼ଯନ୍ତ୍ରରେ ଲାଗି ପଡ଼ିଲି । ଦୁଇ ହଜାର ଡିସେମ୍ବର ମଧଭାଗରେ ଉନ୍ମୋଚନ ଦିବସର ପ୍ରାତଃକାଳରେ କଟକ ବସ୍‌ରେ ପଚାଶ ଖଣ୍ଡ ହଳଧର ଗ୍ରନ୍ଥାବଳୀ ବହି ଆସି ପହଞ୍ଚିଗଲା । ସମସ୍ତ ବହିର ପେକେଟ ପ୍ରଥମେ ଘରକୁ ନେଇ ପରେ ଗୋପାଳଜୀ ମଠକୁ ଆଣିଥିଲି ଏଇଥିପାଇଁ ଯେ ପରିଶ୍ରମର ଫଳକୁ ପ୍ରଥମେ ସ୍ୱଚକ୍ଷୁରେ ଦେଖିବାର ଲୋଭ ସମ୍ବରଣ କରି ପାରିନଥିଲି । ଉନ୍ମୋଚନ ଉତ୍ସବକୁ ନିମନ୍ତ୍ରିତ ହୋଇ ଆସିଥିଲେ ଡ. କୁମୁଦରଞ୍ଜନ ପାଣିଗ୍ରାହୀ, ମୁରାରୀ ପ୍ରସାଦ ମିଶ୍ର, ମଙ୍ଗଳଚରଣ ବିଶ୍ୱାଳ, ମଠ ମହନ୍ତ ପଣ୍ଡିତ ହୃଷୀକେଶ ଦାସ, ଅଧାପକ ଡ. ସରୋଜ ସୁଆର, ଡ. ଶ୍ୟାମସୁନ୍ଦର ଧର, ଅଭିମନ୍ୟୁ ସାହିତ୍ୟ ସଂସଦର କର୍ମକର୍ତ୍ତାମାନେ, ତାଙ୍କ ଭିତରେ ଥିଲେ ଡ. ସୁବାସ ମେହେର, ଅଶୋକ ପୂଜାହାରୀ, ଯାହାଙ୍କ ସହ କବି ହଳଧର ଘେଁସ୍‌ରୁ ସମ୍ବଲପୁର ଆସିଥିଲେ । ଆମ ଆୟୋଜକମାନଙ୍କ ଭିତରେ ଥିଲେ ଭାଇ ଦିଲୀପ ପାଢ଼ୀ, ରଞ୍ଜନ ପଣ୍ଡା, ଆହୁରି ଅନେକ । ଡ. କୁମୁଦରଞ୍ଜନ ପାଣିଗ୍ରାହୀ ହଳଧର ଗ୍ରନ୍ଥାବଳୀକୁ ଉନ୍ମୋଚନ କରିଥିଲେ, ସମସ୍ତ ଅତିଥି ହଳଧରଙ୍କ କବିପ୍ରତିଭାର ଗୁଣଗାନ କରିଥିଲେ । ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡକୁ ଦିଲୀପ ପାଢ଼ୀ ହଜାରେ ଟଙ୍କାଦେଇ କ୍ରୟ କରିଥିଲେ । ହଳଧରଙ୍କ କିଛି କ୍ଷୁଦ୍ରକବିତା ଆବୃତ୍ତି ପରେ ସଭା ସମାପନ ହୋଇଥିଲା ଏବଂ ଭୁରି ଭୋଜନର ମଧ ବ୍ୟବସ୍ଥା ହୋଇଥିଲା ।

ହଳଧରଙ୍କ ଗ୍ରନ୍ଥାବଳୀ ପ୍ରକାଶିତ ହେବା ଏବଂ ଲୋକ ଲୋଚନକୁ ଆସିବା ସମ୍ବଲପୁରୀ ଭାଷା ଓ ସାହିତ୍ୟ ପାଇଁ ଗର୍ବ ଓ ଗୌରବର ବିଷୟ । କୌଣସି ସାହିତ୍ୟ ମୁଖରେ ରହିଗଲେ ତାହା ସମୟକ୍ରମେ ମାନସପଟରୁ ଉହ୍ୟ ହୋଇଯାଏ, ତେବେ ପ୍ରକାଶିତହେଲେ ତାହା ସଂରକ୍ଷିତହୋଇ ରହିବା ସଙ୍ଗେ ତାହାର ସାହିତ୍ୟିକ ମୂଲ୍ୟବୃଦ୍ଧି ଘଟିଥାଏ । ଯଦିଓ, ମୋର ଏହି ବ୍ୟକ୍ତିଗତ ଉଦ୍ୟମ ଏକ ଛୋଟ ପ୍ରୟାସ, ତଥାପି

ପରେପରେ ହଳଧରଙ୍କ କାବ୍ୟକବିତା ପ୍ରକାଶନ ନିମିତ୍ତ ପ୍ରକାଶକମାନଙ୍କ ଅଭାବ ଦେଖାଯାଇ ନଥିଲା । ଏତିକିରେ ମନ ତୁଷ୍ଟ ନହେବାରୁ ଏକବିଂଶ ଶତାବ୍ଦୀର ଆରମ୍ଭରୁ ହିଁ ଲୋକକବି ହଳଧର ନାଗଙ୍କ ଜୟନ୍ତୀଉତ୍ସବ ମହାସମାରୋହରେ ଆୟୋଜନ କରିବାର ପରମ ଇଚ୍ଛାକୁ ଦମନ ନକରିପାରି ସମ୍ବଲପୁରର ଗଙ୍ଗାଧର ମଣ୍ଡପରେ ଲାଗ୍‌ଲାଗ୍ ଚାରିପାଞ୍ଚବର୍ଷ ମାର୍ଚ୍ଚ ଏକ୍ତିରିଶ ତାରିଖ ସନ୍ଧ୍ୟାରେ ଆୟୋଜିତ ହେବାରେ ଲାଗିଲା ଲୋକକବି ହଳଧର ଜୟନ୍ତୀ, ବନ୍ଧୁ ଶତ୍ରୁଘ୍ନଲାଲ ସାହାଙ୍କ ପୃଷ୍ଠପୋଷକତାରେ । ଜୟନ୍ତୀ ପାଳନ ଏକ ଗତାନୁଗତିକ ଧାରା ହୋଇପାରେ, ହେଲେ ମୋର ଲକ୍ଷ୍ୟ ଥିଲା, ପ୍ରତିବର୍ଷ ଏହି ଜୟନ୍ତୀ ପାଳନ ଅବସରରେ ହଳଧରବାବୁଙ୍କ କଣ୍ଠରୁ ନୂତନକାବ୍ୟ ନିସୃତହୋଇ ସମ୍ବଲପୁରବାସୀଙ୍କୁ କାବ୍ୟରସରେ ଆପ୍ୟାୟିତ କରିବା ସଙ୍ଗେ ସମ୍ବଲପୁରୀ ଭାଷାସାହିତ୍ୟର ପ୍ରସାର କରିବା ।

ଗଙ୍ଗାଧର ମଣ୍ଡପରେ ହଳଧରୀୟ କାବ୍ୟ, କେତେ ସୁନ୍ଦର ଶୁଭୁଛି ପଦଟାଏ, ଏଭଳି ସ୍ୱପ୍ନକୁ ସାକାର କରି ତାର ମଧୁପାନ କରିବାରେ ଯେଉଁ ଆତ୍ମତୃପ୍ତି, ସେଗୁଡ଼ିକ ବର୍ଣ୍ଣନା ପାଇଁ ଏବେ ମୋ ପାଖରେ ଭାଷା କାହିଁ ! ! ! ରକ୍ତେରକ୍ତେ ଗୁମ୍ଫିହୋଇଗଲା 'ମହାସତୀ ଉର୍ମିଳା'ର ଶବ୍ଦସଜ୍ଜା, ଶିରାପ୍ରଶିରାରେ ବହି ଲହୁକୁ ରଡ୍‌ନିଆଁ ଭଳି ତାଜା ରଖିଦେଉଥିଲା 'ସୁନ୍ଦର ସାଏ' କାବ୍ୟର ପଂକ୍ତିମାନ, କୃଷ୍ଣ ଭକ୍ତିରେ ମୋହିତ ହୋଇଯାଉଥିଲା ହୃଦୟତନ୍ତ୍ରୀମାନ 'ପ୍ରେମ୍ ପହେଚାନ୍' କାବ୍ୟର ସୁଲଳିତ ପଦଶ୍ରବଣରେ, 'ଅଛିଆ' ଶବରୀକାଖରେ ପାଇ' ହେବାର ଭକ୍ତିରସାପ୍ଲୁତ ଭାବରେ ଲୀନ ହୋଇଯାଉଥିଲା ତନୁମନ, ସର୍ବାଙ୍ଗ ଶରୀର ! ! !



ସାହିତ୍ୟ, ସଂଗୀତ ଓ ନାଟକ, ସଂସ୍କୃତିର ଏହି ତିନୋଟି କ୍ଷେତ୍ରକୁ ଏକତ୍ରିତକରି ଦର୍ଶକଙ୍କ ନିକଟରେ ଉପସ୍ଥାପନକରିବାର ଏକ ମହାନ୍ ପ୍ରଦର୍ଶନମୂଳକ ସାଂସ୍କୃତିକ କାର୍ଯ୍ୟକ୍ରମର ଲକ୍ଷ୍ୟନେଇ ଆୟୋଜିତ ହେଉଥିଲା ଲୋକକବି ହଳଧର ଜୟନ୍ତୀ । ୨୦୦୨ରୁ ପାଞ୍ଚ ମସିହା ପର୍ଯ୍ୟନ୍ତ ପ୍ରାୟ ଚାରିପାଞ୍ଚବର୍ଷ ଲାଗଲାଗ୍ ଏହି ଉତ୍ସବ ସମ୍ବଲପୁର ସହରରେ ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି କରିଥିଲା । ପ୍ରଥମ କିଛିବର୍ଷ ଟାଉନ୍‌ହଲ୍ ପଡ଼ିଆସ୍ଥିତ ଗଙ୍ଗାଧର ମଣ୍ଡପରେ ଆୟୋଜିତ ହେବାପରେ ଶେଷବର୍ଷ ଝାଡ଼ୁଆପଡାର ଆରଣ୍ୟକ ମଣ୍ଡପରେ ଅନୁଷ୍ଠିତ ହୋଇଥିଲା । କୌଣସି ସଭା ବା ବୈଠକ ନୁହେଁ, ହଳଧରଙ୍କ ଜନ୍ମଦିବସ ପାଳିତହେଉଥିଲା ମାଟିର ସନ୍ତାନ ଭାବରେ । ଦୁଇବର୍ଷ ସମ୍ବଲପୁରର ପୌର ସଂସ୍ଥାର ତତ୍କାଳୀନ ଭାଇସ୍ ଚେୟାରମ୍ୟାନ ମୈଥିଳୀ ମହାପାତ୍ରଙ୍କୁ

ନିମନ୍ତ୍ରିତ କରାଯାଇଥିଲା ହଳଧରଙ୍କ ମାଁର ଭୂମିକାରେ, ମଞ୍ଚରେ ଅବତୀର୍ଣ୍ଣହୋଇ ତାଙ୍କୁ ବନ୍ଦାପନା କରିବାପାଇଁ । ଉତ୍ସବଆରମ୍ଭରେ ମଞ୍ଚରେ ଉପସ୍ଥିତ କବି ହଳଧରଙ୍କୁ ସିନ୍ଦୁର, ଚନ୍ଦନ ଲଗାଇ, ମିଠା ଖୁଆଇ, କିଛି ଟଙ୍କା ଉପହାର ସ୍ୱରୂପ ହାତରେ ଧରାଇ ହୁଳହୁଳିରେ ବନ୍ଦାଉଥିଲେ ଏବଂ ଶେଷରେ ହଳଧରଙ୍କ ମାଁ ଭଳି ଶ୍ରୀମତୀ ମହାପାତ୍ରଙ୍କ ଗୋଡ଼ତଳେ ପଡି ଆଶିର୍ବାଦ ଭିକ୍ଷା କରୁଥିଲେ । ମାଁଙ୍କ ଆଶିର୍ବାଦ ପ୍ରାପ୍ତିପରେ ହଳଧରବାବୁ ସିଧା ମାଇକ୍ରୋଫୋନ୍ ପାଖକୁ ଯାଇ ତାଙ୍କ ନବରଚିତ କାବ୍ୟ ଆବୃତ୍ତିକରି ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରୁଥିଲେ । ଏହି ଅବସରରେ ବିଭିନ୍ନ ବର୍ଷ ହଳଧରବାବୁ ମହାସତୀ ଉର୍ମିଳା, ସୁନ୍ଦରସାଏ, ପ୍ରେମ ପେହେଚାନ୍ ଆଦି କାବ୍ୟମାନ ଆବୃତ୍ତି କରିଥିଲେ । ଦୁଇହଜାର ତିନି ମସିହାରେ ହଳଧରବାବୁ ନୀଳମାଧବ ପାଣିଗ୍ରାହୀଙ୍କୁ ସମ୍ମାନୀତ କରିଥିଲେ । ଚାରିରେ ମଙ୍ଗଳୁଚରଣ ବିଶ୍ୱାଳଙ୍କୁ ହଳଧରଙ୍କ ସହ ସମ୍ବଲପୁରର ଚବିଶଟି ଅନୁଷ୍ଠାନ ସମ୍ବର୍ଦ୍ଧିତକରି ପ୍ରଥମକରି ବେସରକାରୀ ଭାବରେ ନାଗରିକସମ୍ମାନ ପ୍ରଦାନ କରାଯାଇଥିଲା । ଏହିବର୍ଷ ହଳଧରବାବୁଙ୍କ ସମ୍ବଲପୁର ଆଗମନକୁ ସମଲେଶ୍ୱରୀ ମନ୍ଦିରଠାରୁ ଗଙ୍ଗାଧର ମଣ୍ଡପ ପର୍ଯ୍ୟନ୍ତ ବିଭିନ୍ନ ପଡାର ଅନୁଷ୍ଠାନମାନେ ରାସ୍ତାରେ ରଙ୍ଗୋଲୀ ଅଙ୍କନକରି, ଉତ୍ତରୀୟ ଓ ଫୁଲମାଳରେ ସ୍ୱାଗତ କରିଥିଲେ ।

ସୁନ୍ଦରସାଏ କାବ୍ୟପାଠ ପୂର୍ବରୁ ହଳଧରବାବୁଙ୍କୁ ମଧ ବିଭିନ୍ନ ଅନୁଷ୍ଠାନଦ୍ୱାରା ସମ୍ମାନୀତ ହେବାପରେ, ସମଲେଶ୍ୱରୀ ମନ୍ଦିରରୁ ବିଶେଷ ଭାବରେ ଅଣାଯାଇଥିବା ମନ୍ଦାର ମାଳ ପିନ୍ଧାଇବାପରେ ହଳଧରବାବୁ ପ୍ରଥମକରି ସ୍ୱରଚିତ ନୂଆଁକାବ୍ୟ ସୁନ୍ଦରସାଏ ଆବୃତ୍ତି କରିଥିଲେ । ଶହଶହ ଦର୍ଶକମାନଙ୍କ ଉପସ୍ଥିତିରେ ଜାତୀୟ ବୀର ସୁରେନ୍ଦ୍ରସାଏଙ୍କ ସଙ୍ଘର୍ଷମୟ ଜୀବନକୁ ଏଭଳି ଭାବରେ ଉପସ୍ଥାପନ କରିଥିଲେ, ଯାହା ସମସ୍ତଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ମଥାରେ ମନ୍ଦିରର ସିନ୍ଦୁର ଟୀକା, ଗଳାରେ କୋଡିଏରୁ ଅଧିକ ଫୁଲମାଳ, କାନ୍ଧରେ ସେହି ପରିମାଣର ଉତ୍ତରୀୟ, କଣ୍ଠରେ ଶତସିଂହର ଶକ୍ତି, ଚକ୍ଷୁରେ ଜଳଜଳ ଅତୀତର ସଂଗ୍ରାମୀ ଦୃଶ୍ୟ, ମୁଖରେ ସମ୍ବଲପୁରୀଭାଷାରେ ବର୍ଣ୍ଣିତ ସୁରେନ୍ଦ୍ରଙ୍କ ଲହୁଆ ଜୀବନର ଚିତ୍ର, ଶବ୍ଦସବୁ ସିଂହୋଡ଼ା ଘାଟିର ଶିଖରରୁ ଇଂରେଜ ସୈନ୍ୟବାହିନୀଙ୍କ ଉପରେ ଖସି ପଡୁଥିବା ବଡ଼ବଡ଼ ପ୍ରସ୍ତର ଖଣ୍ଡର ଧ୍ୱନୀପରି ଜଣାପଡୁଥିଲା । ସ୍ୱଭାବ କବି ଗଙ୍ଗାଧରଙ୍କ ନାମରେ ନାମିତ ମଣ୍ଡପରେ ବୀର ଦର୍ପରେ ଦଣ୍ଡାୟମାନ ହୋଇ ରକ୍ତେରକ୍ତେ ସୁନ୍ଦରସାଏଙ୍କ ଆତ୍ମା ଶରୀରରେ ହଳଧରଙ୍କ ଭିତରେ ଜୀଇଁରହିଛନ୍ତି ।। ସେ କାର୍ଯ୍ୟକ୍ରମ ଯେ ଦେଖୁଛି,

ସେ ନିଶ୍ଚୟ ମୋ'ସହ ଏକମତ ହେବ ଯେ ଏହା କଦାଚିତ୍ ଅତିରଞ୍ଜନ ବର୍ଣ୍ଣନା ନୁହେଁ । ହଳଧରଙ୍କ କାବ୍ୟାବୃତ୍ତିରେ ପ୍ରତିଧ୍ୱନିତ ହୋଇଉଠିଥିଲା ସମଗ୍ର ଟାଉନ୍‌ହଲ୍ ଅଞ୍ଚଳଟି । ବାଟରେ ଯିବା ଆସିବା କରୁଥିବା ସାଧାରଣଲୋକ ମଧ୍ୟ ଏଥିରେ ଆକର୍ଷିତ ହୋଇ କାବ୍ୟପାଠର ଶେଷ ପଦପର୍ଯ୍ୟନ୍ତ ଠିଆ ହୋଇ ଶୁଣୁଥିଲେ ।

ପାଞ୍ଚ ମସିହାରେ ପୁନରାୟ ନୂତନ କାବ୍ୟପାଠରେ ଅନୁଷ୍ଠିତ ହୋଇଥିଲା ହଳଧର ଜୟନ୍ତୀ । ବାସ୍ତବତଃ ମୁଁ ହଳଧରଙ୍କ କଲମରୁ ଶ୍ରୀକୃଷ୍ଣଙ୍କ ଜନ୍ମଠାରୁ ଜାରାଶବର ଦ୍ୱାରା ଶରାହତ ହେବାଯାଏଁ, ସମସ୍ତ ପ୍ରସଙ୍ଗକୁ ନେଇ ଏକ ବିରାଟ କାବ୍ୟ ରଚନାକରିବାକୁ ଅନୁରୋଧ କରିଥିଲି । ଏଥିପାଇଁ, ତାଙ୍କ ସହିତ ମୋର ଦୁଇତିନିଥର ଆଲୋଚନା ମଧ୍ୟ ହୋଇଥିଲା । ତେବେ, କବି ହଳଧର, ସେତେବେଳକୁ ଜଣେ ପରିପକ୍ୱ କବିଭାବରେ ନିଜକୁ ପରିଚିତ କରିସାରିଥିଲେ । ତେଣୁ, ମୋର ନିର୍ବାଚିତ ପ୍ରସଙ୍ଗକୁ ସାମାନ୍ୟ ପରିବର୍ତ୍ତନକରି ସେ ପୁରାଣର କିଛି ଚରିତ୍ରମାନଙ୍କ ଦୃଷ୍ଟିରେ ଭଗବାନ ଶ୍ରୀକୃଷ୍ଣ  କି' କି' ରୂପରେ ଆବିର୍ଭାବ ହୋଇ ସେମାନଙ୍କୁ ନିଜ ପ୍ରେମବନ୍ଧନରେ ବାନ୍ଧିରଖିଲେ, ତାହାକୁ ନେଇ ଲେଖିଲେ 'ପ୍ରେମ ପହେଚାନ୍' କାବ୍ୟ । ସୁନ୍ଦରସାଏ ପରି ଏହି କାବ୍ୟଟି ମଧ୍ୟ ଉପସ୍ଥିତ ଦର୍ଶକମାନଙ୍କୁ ବହୁଳ ଭାବରେ ପ୍ରଭାବିତକରିଥିଲା । ସୁନ୍ଦରସାଏ, ସମସ୍ତଙ୍କୁ ସ୍ୱାଭିମାନ ଓ ଦେଶଭକ୍ତିର ଭାବରେ ବିହ୍ୱଳ କରିଥିବା ବେଳେ ପ୍ରେମ ପହେଚାନ୍ ସମସ୍ତଙ୍କୁ ଆଧ୍ୟାତ୍ମିକତାର ରସରେ ରସାପ୍ଳୁତକରି ରଖିବାରେ ସଫଳ ହୋଇଥିଲା । ଏହି କାବ୍ୟରେ ବର୍ଣ୍ଣିତ ଏକ ପ୍ରସଙ୍ଗର ବର୍ଣ୍ଣନା ବିଶେଷଭାବରେ ଆକର୍ଷିତ କରିଥିଲା । କୃଷ୍ଣଙ୍କ ଜନ୍ମପରେ ତାଙ୍କୁ ଆକାଶମାର୍ଗରୁ ଆସିଥିବା  ଅଗଣିତ ଦେବତା, ବିଭିନ୍ନ ମୁନିଋଷିମାନଙ୍କ ଆଗମନର ନାମ ଓ ଦର୍ଶନ ଆଦି ଦୃଶ୍ୟଗୁଡ଼ିକର ଚମତ୍କାର ବର୍ଣ୍ଣନା ଏବଂ ହଳଧରଙ୍କ କଣ୍ଠରୁ ନିଃସୃତ ଅନର୍ଗଳ ପଦଗୁଡ଼ିକର ଶାବ୍ଦିକ ଉଚ୍ଚାରଣଶୈଳୀ ସମସ୍ତଙ୍କ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ସମସ୍ତେ ଅନୁଭବ କରୁଥିଲେ, ଏହି ଉତ୍ସବ କେବଳ ଜଣେ କବିର ଜୟନ୍ତୀ ନୁହେଁ, ବରଂ ସମ୍ବଲପୁରୀ କାବ୍ୟସାହିତ୍ୟର ଏକ ଉଚ୍ଚାଙ୍ଗପ୍ରଦର୍ଶନର ଅବସର । ଏହି ଅବସରରେ ଅସୀମ ପ୍ରଧାନଙ୍କ ନୃତ୍ୟ ନିର୍ଦ୍ଦେଶନାରେ ସମ୍ବଲପୁରୀ ନୃତ୍ୟ ମଧ୍ୟ ପ୍ରଦର୍ଶିତ ହୋଇଥିଲା । ଶେଷବର୍ଷରେ ଆରଣ୍ୟକ ମଣ୍ଡପରେ ହଳଧରଙ୍କ ରଚିତ ଅଛିଆ କାବ୍ୟର ନୃତ୍ୟନାଟିକା ପ୍ରଦର୍ଶିତ ହୋଇଥିଲା ଉକିଆ ଅନୁଷ୍ଠାନର କଳାକାରମାନଙ୍କ ଦ୍ୱାରା । ଏହାର ନୃତ୍ୟନିର୍ଦ୍ଦେଶନା ଦେଇଥିଲେ ରଞ୍ଜନ ସାହୁ । ଏହାଦ୍ୱାରା କାବ୍ୟଭିତ୍ତିକ ସମ୍ବଲପୁରୀ ନୃତ୍ୟନାଟିକାର ଯୁଗଟିଏ ଆରମ୍ଭ ହୋଇଗଲା । ହଳଧରଙ୍କ ରଚିତ ଏକ



ରେକର୍ଡିଂ ଗୀତ, ଝାରଢଙ୍ଗଲର ତାଳେତାଳେ ନୃତ୍ୟକରିଥିଲେ ଅସୀମ ପ୍ରଧାନ ଓ ଶ୍ରୀବତ୍ସ ନାୟକ । ଆରଣ୍ୟକ ମଣ୍ଡପରେ ଆୟୋଜିତ ଜୟନ୍ତୀ ଉତ୍ସବରେ ଡ. ରାସେଶ୍ୱରୀ ପଣିଗ୍ରାହୀ ମାଁ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ହଳଧର ସାଂସ୍କୃତିକ ପରିଷଦର ସଭାପତି ତଥା ବନ୍ଧୁ ଶତ୍ରୁଘ୍ନଲାଲ ସାହାଙ୍କ ଆନ୍ତରିକ ଉଦ୍ୟମଫଳରେ ହଳଧର ଜୟନ୍ତି ଉତ୍ସବ ପୂର୍ଣ୍ଣମାତ୍ରାରେ ସଫଳ ହୋଇଥିଲା ।

ହଳଧର ଥିଲେ ଜଣେ ମାଧମ କେବଳ, ସମ୍ବଲପୁରୀ ଭାଷା ସାହିତ୍ୟର ବିକାଶକୁନେଇ ଏଇଭଳି ପ୍ରୟାସ, ପରବର୍ତ୍ତୀ କାଳରେ ଏହି ଅଣସ୍ୱୀକୃତ ଭାଷାର କବିଙ୍କୁ ପଦ୍ମଶ୍ରୀ ଓ ସାହିତ୍ୟ ଏକାଡେମୀର ଭାଷାସମ୍ମାନ ପୁରସ୍କାର ମିଳିବା ମୋର ସ୍ୱପ୍ନର ବାହାରେ ଥିଲା । ଏହାବାହାରେ ଅଧିକରୁ ଅଧିକ ସାହିତ୍ୟ ସର୍ଜନା ହେବା, ଅଧିକରୁ ଅଧିକ କବି ଲେଖକ ସୃଷ୍ଟି ହେବେ, ଆମ ସ୍ୱାଭିମାନ ଓ ସାଂସ୍କୃତିକ ପରିଚୟର ସ୍ୱାତନ୍ତ ଭାବରେ ଆମ ଭାଷା ଗଣସ୍ୱୀକୃତ ହେବ, ପୁସ୍ତକ ପ୍ରକାଶିତ ହେବ, ପାଠ୍ୟକ୍ରମରେ ଲାଗୁହେବ, ଏସବୁ ଲକ୍ଷ୍ୟ ଥିଲା ହଳଧରୀୟ ଜୟନ୍ତୀକୁ ନେଇ । ପରବର୍ତ୍ତୀ ସମୟରେ ହଳଧରଙ୍କ ନାମରେ ଏକ ଅନୁଷ୍ଠାନ ଜନ୍ମନେଲା ଲୋକକବି ହଳଧର ସାଂସ୍କୃତିକ ପରିଷଦ ନାମରେ, ଶତ୍ରୁଘ୍ନଲାଲ ସାହା, ଦିଲୀପ ପାଢ଼ୀ, ଶ୍ୟାମସୁନ୍ଦର ଧର ଆଦିଙ୍କ ସହ ଏହି ଅନୁଷ୍ଠାନତରଫରୁ ବିଭିନ୍ନ କାର୍ଯ୍ୟକ୍ରମମାନ କାର୍ଯ୍ୟକାରୀ ହେଲା । ତେବେ, ଦିଲୀପ ପାଢ଼ୀଙ୍କ ସୁଜାତା ହୋଟେଲରେ ତାଙ୍କ ସହ ମୋର ଏକ ଆଳାପ ଆଲୋଚନା ଭିତରେ ମୁଁ ଦିଲୀପ ସାମ୍ନାରେ ଏକ ସମ୍ବଲପୁରୀ ମାନକପତ୍ରିକା ପ୍ରକାଶକରିବାର ପ୍ରସ୍ତାବ ରାଢ଼ିଥିଲି । ପତ୍ରିକା ପ୍ରକାଶ କରିବା ଓ ତାକୁ ସମ୍ବଲପୁର ଭଳି ଏକ ଛୋଟସହରର ଆର୍ଥିକ ଦୂରାବସ୍ଥା ଭିତରେ ବଞ୍ଚେଇ ରଖିବା କେତେ କଠିନ କାର୍ଯ୍ୟ, ତାହା ଜାଣିସୁଦ୍ଧା ଦିଲୀପ ମୋ ପ୍ରସ୍ତାବରେ ତତ୍କ୍ଷଣାତ୍ ହଁ ଭରିଦେଲେ ଓ ଏଥି ପାଇଁ ବିଧିବଦ୍ଧ ଭାବରେ ବାରୁଦା, ବିଜୟ ପ୍ରଧାନ, ଶତ୍ରୁଘ୍ନଲାଲ ସାହା ଆଦିଙ୍କୁ ଡକାଯାଇ ସେହି ହୋଟେଲ ପରିସରରେ ବୈଠକ କରାଯାଇ ନିଷ୍ପତ୍ତି ନିଆଗଲା ଏକ ତ୍ରୈମାସିକ ସମ୍ବଲପୁରୀ ସାହିତ୍ୟ ପତ୍ରିକା ପ୍ରକାଶିତ ହେବ 'ଭରନି' ନାମରେ, ଲୋକକବି ହଳଧର ସାଂସ୍କୃତିକ ପରିଷଦ ତରଫରୁ । 'ଭରନି'ର ପ୍ରଥମ ସଂଖ୍ୟା ପ୍ରକାଶନ ପୂର୍ବରୁ ହଳଧରବାବୁଙ୍କ ସହ ମୁଁ ବିଭିନ୍ନ ସାହିତ୍ୟ ଉତ୍ସବମାନଙ୍କରେ ଯୋଗଦାନ କରିଥିଲି । ରାଉରକେଲା ଛେଣ୍ଡରେ ଥିବା ଗୋପବନ୍ଧୁ ପାଠାଗାରର ଏକ ଉତ୍ସବରେ ହଳଧରଙ୍କ କାବ୍ୟାବୃତ୍ତିରେ ଆପ୍ୟାୟିତ ହୋଇଥିଲେ ରାଉରକେଲାବାସୀ ।

ପରେପରେ ସେ ବାରବାର ରାଉରକେଲାକୁ ନିମନ୍ତ୍ରିତ ହୋଇ ଯାଇଛନ୍ତି, ବିଭିନ୍ନ ଟିଭି ଚେନାଲକୁ ଯାଇ ସାକ୍ଷାତକାର ଦେଇଛନ୍ତି, କଳିଙ୍ଗ ସାହିତ୍ୟ ଉତ୍ସବରେ ଯୋଗ ଦେଇଛନ୍ତି, କଲିକତା, ବିଶ୍ୱଭାରତୀ, ଏଲ୍ଲାବାଦ, ମୁମ୍ବାଇ, ବାଙ୍ଗାଲୋର, ନୂଆଦିଲ୍ଲୀ ଆଦି ସର୍ବଭାରତୀୟ ସାହିତ୍ୟ ଆସର, ନୂଆଁଖାଇଭେଟ୍ ଆଦି ସାହିତ୍ୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗଦେଇଛନ୍ତି, ପଶ୍ଚିମ ଓଡ଼ିଶାର ପ୍ରତ୍ୟେକ ସହର ତଥା ମଫସଲ ଅଞ୍ଚଳକୁ ଯାଇ ଲକ୍ଷ ଲକ୍ଷ ସମ୍ବଲପୁରୀ ଭାଷାପ୍ରେମୀଙ୍କୁ, ସାହିତ୍ୟ ପ୍ରେମୀଙ୍କୁ ନିଜ କାବ୍ୟପ୍ରତିଭାର ପରିଚୟ ପ୍ରଦାନକରିଛନ୍ତି । ବଲାଙ୍ଗିର ଭୂମିକାର ଏକ କାର୍ଯ୍ୟକ୍ରମବେଳେ ଉତ୍ସବ ଶେଷରେ ସାରା ରାତି ମୋ ସହ ସୁଶୀଳ ମିଶ୍ର, ସୁରେଶ ସାହୁ, ଚିତ୍ତରଞ୍ଜନ ଦାସ, ବିଦ୍ୟୁତ୍, ରୁଦ୍ର ଆଦିଙ୍କ ମେଳରେ ହଳଧରବାବୁ ତାଙ୍କ କାବ୍ୟ ପାଠକରି ଆମକୁ ଆପ୍ୟାୟିତ କରିଥିଲେ । ଏହି ସମସ୍ତ ଉଦ୍ୟମ ପଶ୍ଚାତ ପଟରେ ଥିଲା ଏକମହତ୍ ଲକ୍ଷ୍ୟ, ସମ୍ବଲପୁରୀ ଭାଷାର ସ୍ୱାତନ୍ତ୍ର୍ୟକୁ ପ୍ରତିବାଦିତ କରିବା, ଏକ ମୌଖିକ ଭାଷାକୁ ଲିଖିତ, ଛାପିତ ଭାଷାରେ ରୂପାୟିତ କରିବା, ଜାତୀୟ ସ୍ତରରେ ଗୋଟାଏ ସ୍ୱୀକୃତିପ୍ରାପ୍ତ ଭାଷା ରୂପେ ଅଷ୍ଟାଦଶ ପରିଚ୍ଛେଦରେ ଅନ୍ତର୍ଭୁକ୍ତ କରାଇବା । ।

ସୌଭାଗ୍ୟବଶତଃ, ଏହି କାଳରେ ଡ. ନୀଳମାଧବ ପାଣିଗ୍ରାହୀ, ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ଭଳି କବିମାନଙ୍କର କଲମରୁ ମହାଭାରତ, ରାମାୟଣ ଭଳି ମହାକାବ୍ୟର ସମ୍ବଲପୁରୀ ଅନୁବାଦ ନିଜସ୍ୱ ଶୈଳୀରେ ସୃଷ୍ଟି ହେଲା, ଅମୃତଲାଲ ସାହୁ, ସୁବାସ ମେହେର, ଉତ୍ପନ୍ନ ଭୋଇ, ଧନପତି ମହାପାତ୍ର, କୁମୁଦ ଦାସ, ଶାଶ୍ୱତ ସାହୁ, ପ୍ରହଲ୍ଲାଦ ଦାସ, ଅନୀଲ ଦାସଙ୍କ ଭଳି କବି ତଥା ସଂଗଠକଙ୍କ ଆବିର୍ଭାବ ଘଟିଲା, ସେମାନଙ୍କ ସହ ଅଗଣିତ କବି, ନାଟ୍ୟକାର, ଔପନ୍ୟାସିକ, ଗାଳ୍ପିକ ଆଦି ସ୍ରଷ୍ଟାମାନେ ଏହି ଲକ୍ଷ୍ୟ ପୂରଣ ପାଇଁ ଏଯାଏଁ ସଂଗ୍ରାମ ଜାରିରଖିଛନ୍ତି । ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ରାମରାହା, ନୀଳମାଧବଙ୍କ ମହାଭାରତ, ପୂର୍ଣ୍ଣଚନ୍ଦ୍ର ସାହୁଙ୍କ ଭାଗବତ, ଇନ୍ଦ୍ରମଣି ସାହୁଙ୍କ ରାମାୟଣ ଲକ୍ଷ୍ୟରେ ପହଞ୍ଚିବାପାଇଁ ଆୟୁଧ ପାଲଟିଗଲା । ଗୋଟାଏ ବର୍ଷ ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ଉପସ୍ଥିତିରେ ତାଙ୍କ ଗର୍ଭଣାରେ ଆୟୋଜିତ ଜୟନ୍ତୀ ସଭାରେ ମୋତେ ହେମଚନ୍ଦ୍ରସମ୍ମାନରେ ସମ୍ମାନୀତ କରାଯାଇଥିଲା । ସେହିସଭାରେ ଦୁର୍ବଳ ସ୍ୱାସ୍ଥ୍ୟ ଯୋଗୁଁ ହେମଚନ୍ଦ୍ର ବାବୁ ମଣ୍ଡପତଳେ ଏକ ଚୌକୀରେ ବସିଥାନ୍ତି ଓ ମୁଁ ଅତିଥି ଭାବରେ ମଞ୍ଚଉପରେ । ଭାବୁଥିଲି, ଏହି ତଳେବସିଥିବା କବିଟି ସତରେ ମୋ ଠାରୁ କେତେ ଉର୍ଦ୍ଧ୍ୱରେ, ଆଉ ତାଙ୍କ ସାମ୍ନାରେ, ତାଙ୍କ ନାମରେ ନାମିତ ସମ୍ମାନ ଗ୍ରହଣ କରିଥିବା

ମୋ'ପରି ଜଣେ ସାଧାରଣ ସଂଗଠକ କେତେ ନିମ୍ନରେ!! ଦୁର୍ଗାପୂଜା ଅବସରରେ ସପ୍ତମୀ ପ୍ରଭାତରୁ ଆକାଶବାଣୀ କଟକରୁ ରିଲେକରି ପ୍ରସାରିତ ହେଉଥିବା ଓଡ଼ିଆ ଚଣ୍ଡିପାଠ ପରି ସମ୍ବଲପୁରୀରେ କଣ କରି ହୁଅନ୍ତାନି? ଏହି ପ୍ରସ୍ତାବ ଆକାଶବାଣୀ କର୍ତ୍ତୃପକ୍ଷଙ୍କୁ ଜଣାଇବାରେ ସେମାନେ ଏହାକୁ ଲେଖିବ କିଏ ବୋଲି ପ୍ରଶ୍ନ କରିଥିଲେ। ତତ୍କ୍ଷଣାତ୍ ମୋ ତୁଣ୍ଡରୁ ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ନାମ ବାହାରିଗଲା। ପରେ ମୋ ଉପରେ ହିଁ ଦାୟିତ୍ୱ ଦିଆଗଲା, ହେମ ଆଜ୍ଞାଙ୍କ ପାଖରୁ ପାଣ୍ଡୁଲିପି ଆଣିବା। ଖାସ୍ ଏଇଥି ପାଇଁ ମୁଁ ଗର୍ଭଣା ଯାଇ ହେମବାବୁଙ୍କ ସହ ଆଲୋଚନା କରିଥିଲି ଏବଂ ଲେଖାଟି କି ଧରଣର ହେବ, କେଉଁଠି ଗୀତ ରହିବ, ବର୍ଣ୍ଣନା କେତେସମୟ ଅବଧିର ହେବ, ଏ ସମସ୍ତ ବିଷୟ ଆଲୋଚନା କରିବାପରେ ସେ ସମ୍ମତ ହୋଇଥିଲେ। ଭାରୀ ସ୍ନେହାଳୁ, ଭଦ୍ର ମଣିଷ ଜଣେ ଥିଲେ ହେମଚନ୍ଦ୍ରବାବୁ। କିଛିଦିନ ପରେ ପୁନଶ୍ଚ ଗର୍ଭଣା ଯାଇ ହେମବାବୁଙ୍କ ପାଖରୁ ପାଣ୍ଡୁଲିପି ଆଣି ଆକାଶବାଣୀ କର୍ତ୍ତୃପକ୍ଷଙ୍କ ନିକଟରେ ଉପସ୍ଥାପନକଲି, ରେକର୍ଡିଂ ତାରିଖ ଠିକ୍‌ହେଲା, ଘରେ ମୁଁ ନିଜେନିଜେ ନିଜକୁ ଏଇଥି ପାଇଁ ପ୍ରସ୍ତୁତକଲି। ପାଟଧୋତି ଓ ଚୂଡ଼ିଦାର ପିନ୍ଧି ପକାଇଲି, ଠାକୁରକୋଠରୀ ଯାଇ ସଂକ୍ଷିପ୍ତ ପ୍ରାର୍ଥନାଟିଏ କରିପକାଇଲି, କପାଳରେ ସିନ୍ଦୂରଟୀକା ମାଖିବାପରେ ଆକାଶବାଣୀ ଷ୍ଟୁଡିଓ ଆଡ଼କୁ ଯାତ୍ରା ଆରମ୍ଭକଲି। ଆକାଶବାଣୀର ବନ୍ଧୁମାନେ ମୋର ଏହି ରୂପ ଦେଖି ବିସ୍ମୟ ପ୍ରକାଶ କଲେ ହେଁ ଉଦ୍ଦେଶ୍ୟ ଜାଣିବାପରେ ନୀରବ ସମର୍ଥନ କଲେ। ଷ୍ଟୁଡିଓରେ ଥାଆନ୍ତି କେବଳ ବେହେଲା ବାଦକ ପୂର୍ଣ୍ଣଚନ୍ଦ୍ର ସ୍ୱାଇଁ, ରେକର୍ଡିଂ କରିଥିଲେ ସ୍ୱର୍ଗତ ପ୍ରଭୁଦତ୍ତ ପ୍ରଧାନ। ପୂର୍ଣ୍ଣବାବୁ ମୋର ଅଧିକାଂଶ ନାଟକରେ ପୃଷ୍ଠଦସଂଗୀତରେ ସାହାଯ୍ୟ କରିଛନ୍ତି, ତାଙ୍କ ସହ ମୋର ଖୁବ୍ ଭଲ ମେଳକ ଖାଏ। ମୋର ବର୍ଣ୍ଣନାର ଲୟ, ସୁରରେ ସେ ବେହେଲା ସଙ୍ଗତକଲେ। ମୁଁ ଏକାଧ୍ୟାନରେ ହେମଚନ୍ଦ୍ରଙ୍କ ଲିଖିତ ସମସ୍ତ ବର୍ଣ୍ଣନାକୁ ନିଜସ୍ୱ ଶୈଳୀରେ କଣ୍ଠଦାନ କଲି। ପରେ ଆଉଦିନେ ପାଣ୍ଡୁଲିପିର ସମସ୍ତ ଗୀତମାନ ରେକର୍ଡିଂ ହେଲା ପ୍ରଭୁଦତ୍ତ ଆଜ୍ଞାଙ୍କ ନିର୍ଦ୍ଦେଶନାରେ। ଜିତେନ୍ଦ୍ରିୟ ହରିପାଲ, ବିଭୂତି ପଟ୍ଟନାୟକ ଭଳି ବିଶିଷ୍ଟ ଗାୟକମାନେ ଏଥିରେ ଅଂଶଗ୍ରହଣ କରିଥିଲେ। ମୁଁ ନିଜକୁ ଭାଗ୍ୟବାନ ମନେକରୁଥିଲି, ଯାହାପଛେ ହେଉ, ଆଉଜଣେ ମହାନ୍ କବିଙ୍କ ସହ ମୁଁ ମୋର ପ୍ରଦର୍ଶନକଳା ସହ ଯୋଡ଼ିହୋଇଗଲି। 'ଜୟ ମାଁ ସର୍ବେଶ୍ୱରୀ ଦୁର୍ଗା' ନାମିତ ଏହି କାର୍ଯ୍ୟକ୍ରମଟି ପ୍ରସାରିତ ହେବାପରେ ଶ୍ରୋତାମଣ୍ଡଳୀଙ୍କ ଅନାବିଳଦାୟକ ସ୍ୱୀକୃତିପରେ ମୁଁ ଆଶ୍ୱସ୍ତ ହୋଇଥିଲି। ସମ୍ବଲପୁରୀ ଭାଷାରେ ଚଣ୍ଡିପାଠ ଥିଲା ଏକ ପରୀକ୍ଷା, ଏହାର ସଫଳତା ସମ୍ପୂର୍ଣ୍ଣ ଭାବରେ ହେମଚନ୍ଦ୍ର ଆଜ୍ଞାଙ୍କ ପାଇଁ

ସମ୍ଭବ ହେଲା, ପରେ ଶୁଣିଲି, ସେ ତାଙ୍କ ଗାଁରେ ବହୁବର୍ଷ ଧରି ଚଣ୍ଡିପାଠ କରୁଥିଲେ । କବି ହେମଚନ୍ଦ୍ର ଏବଂ ସଂଗୀତ ନିର୍ଦ୍ଦେଶକ ପ୍ରଭୁଦତ୍ତ ଆଜ୍ଞା, ଆଜି ଉଭୟେ ସ୍ୱର୍ଗବାସୀ, ଏ ଦୁହେଁ ବିରଳ ପ୍ରତିଭା ।



ପୂର୍ବପ୍ରସଙ୍ଗକୁ ପୁଣି ଫେରୁଛି, ଚୌରାନବେରେ ମୋର ଥେସିସ୍ ସମ୍ବଲପୁର ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ନିକଟରେ ଉପସ୍ଥାପନକରିବା ପରେ ଆମ ରାଜନୀତି ବିଭାଗର ଅଧ୍ୟାପକ ବନ୍ଧୁ ରତନଲାଲ ଶର୍ମାଙ୍କ କଥାନୁସାରେ ମୁଁ ଆଉ ଚିଚିଣ୍ଡାରେ ନରହି ସମ୍ବଲପୁରରୁ ପ୍ରତ୍ୟହ କଲେଜକୁ ଯିବାଆସିବା କଲି । ପ୍ରଥମେ ରେଙ୍ଗାଲିକେମ୍ପକୁ ବରଗଡ ବସ୍‌ରେ ଆସି ସେହିଠାରୁ ଆଉଏକ ବସ୍‌ଯୋଗେ ଚିଚିଣ୍ଡାଯାଇ କ୍ଲାସସରିବା ପରେ ପୁଣିସେହି ବାଟଦେଇ, କିମ୍ବା ପିଲାଙ୍କସହ ସାଇକଲରେ ଡୁରୁମ ରାସ୍ତାର ଗର୍ଭନା ଛକକୁ ଆସି ସୋନପୁର-ବିନକାଦେଇ ଆସୁଥିବା ସମ୍ବଲପୁର ବସ୍‌ରେ ଫେରୁଥିଲି । ଏଇବାଟ ଦେଇ ସମ୍ବଲପୁର ଫେରିଲେ ପ୍ରାୟ ସନ୍ଧ୍ୟା ଛ'ସାତ ହୋଇଯାଏ । କିଛିଦିନ ଶର୍ମାବାବୁ, ଯେ ତାଙ୍କ ଭେସ୍ପା ଏଲ୍‌ଏମ୍‌ଏଲ୍ ସ୍କୁଟରରେ ଚିଚିଣ୍ଡା ଯିବାଆସିବା କରୁଥିଲେ, ତାଙ୍କସହ କଲେଜକୁ ଆସି, କାମ ସାରିଲେ ପୁଣି ତାଙ୍କସହ ବୁର୍ଲା କିମ୍ବା ପିସିବ୍ରିଜ ଛକକୁ ଆସି ବୁର୍ଲାବାଟ ଦେଇ ସମ୍ବଲପୁର ଫେରୁଥିଲି । ଗଲାବେଳେ ମଧ୍ୟ ଠିକ୍ ସେହିପରି ସମ୍ବଲପୁରରୁ ବୁର୍ଲାବସ୍‌ରେ ଶର୍ମାବାବୁଙ୍କ ଘରପର୍ଯ୍ୟନ୍ତ ଆସିବାପାଇଁ ପଡୁଥିଲା । ତେବେ ମଝିରେ ତାଙ୍କ ଲରମ୍ବା କଲେଜ୍‌କୁ ବଦଳି ହୋଇଯିବାପରେ ଏହି ବ୍ୟବସ୍ଥା ଆପେଆପେ ବନ୍ଦହୋଇଗଲା । ମନେଅଛି, ଶର୍ମାବାବୁଙ୍କ ସହ ଥରେ କଲେଜରୁ ଫେରିବାବେଳେ ଗୋଶାଳାପାଖରେ ଜାତୀୟ ରାଜପଥରେ ରାସ୍ତାରେ ମୋବିଲ୍ ପଡିଥିବାରୁ ଆମ ସ୍କୁଟର ପିଛୁଳିଯିବାରୁ ଉଭୟେ ସ୍କୁଟରସହ ପଡିଯାଇଥିଲୁ । ସ୍କୁଟର ଧିରବେଗରେ ଥିବାରୁ ସାମାନ୍ୟ ଆହତ ହେବାଛଡ଼ା ବେଶିକିଛି ହୋଇ ନଥିଲା ।

ପୂର୍ବରୁ ଇତିହାସ ବିଭାଗର ଅଧ୍ୟାପକ ବୃନ୍ଦାବନ ମିଶ୍ର ତାଙ୍କ ଗାଁ ଦେଶଭଟଲିରୁ ସ୍କୁଟରେ ଯିବାଆସିବା କରୁଥିଲେ । ତେଣୁ ତାଙ୍କ ଗାଁରୁ ତାଙ୍କସହ ସ୍କୁଟରରେ କଲେଜ୍‌ଯାଇ କାମ ଶେଷହେଲେ ପୁଣି ତାଙ୍କଗାଁ ପର୍ଯ୍ୟନ୍ତ ଆସି ପତି ଟ୍ରାଭେଲ୍ସର ବସ୍‌ରେ ବସି ସିଧା ଗୋଡଭଗା ବାଟଦେଇ ସମ୍ବଲପୁର ଫେରୁଥିଲି । ସେ ଯେଉଁ ଦିନ ଯାଉ ନଥିଲେ ଭେଡେନରୁ ସନ୍ଧ୍ୟା ପାଞ୍ଚଟାବେଳେ ପପଙ୍ଗାଛକ ପହଞ୍ଚୁଥିବା ଶକ୍ତିବସ୍‌ରେ ବସି ବା ସିଟ୍ ନଥିଲେ ଠିଆହୋଇ ଗୋଡଭଗା ପର୍ଯ୍ୟନ୍ତ ଆସି, ସେଠାରୁ ବରଗଡ-

ସମ୍ବଲପୁର ବସ୍ ଧରି ସମ୍ବଲପୁର ଆସିବାକୁ ହେଉଥିଲା । ଶକ୍ତି ବସ୍ ଗୋଡଭଗାରେ ପହଞ୍ଚେ ପ୍ରାୟ ସନ୍ଧ୍ୟା ସାତଟାରେ, ତେଣୁ ଘରକୁ ପହଞ୍ଚୁ ପହଞ୍ଚୁ ରାତି ନ'ସାଢ଼େ ନ' ହେଉଥିଲା । ଏହି ପହଞ୍ଚିବାସମୟ ନିର୍ଦ୍ଧାରିତ ହେଉଥିଲା ଲକ୍ଷ୍ମୀଟକିଜ୍ ଛକରେ ଧନୁପାଲିକୁ ଟେମ୍ପୋ ମିଳିବା ଉପରେ, ନ ହେଲେ କେବେକେବେ ରାତି ଦଶଟା ହୋଇଯାଉଥିଲା । ଗଲାବେଳେ ବୃନ୍ଦାବନଙ୍କ ଗାଁକୁ ଯିବାପାଇଁ ହେଲେ ପୁଣି ନ'ଟା ସୁଦ୍ଧା କୌଣସିମତେ ବସ୍, ଟ୍ରେକର୍ ଧରିବାକୁ ପଡୁଥିଲା । ସମୟଆସିଲା ଯେତେବେଳେ ବୃନ୍ଦାବନ ମଧ୍ୟ ସମ୍ବଲପୁରରେ ରହି ଯିବାଆସିବା କଲେ । ବେଳେବେଳେ ପରିସ୍ଥିତି ଆସେ ମୋତେ ସମ୍ବଲପୁରରୁ ଘଣ୍ଟେଶ୍ୱରୀ ବସ୍‌ରେ ବରଗଡ ଯାଇ ଆମ ଇଂରାଜୀବିଭାଗର ଅଧ୍ୟାପକ ରାମଚନ୍ଦ୍ର ସାହୁଙ୍କ ଶକ୍ତିନଗରସ୍ଥିତ ଭଡାଘରକୁ ଯିବାକୁ ପଡୁଥିଲା । ମୁଁ ପହଞ୍ଚିଲାବେଳେ ରାମବାବୁ ପ୍ରାୟ ପିଲାଙ୍କୁ ଟିଉସନ୍ କରୁଥାନ୍ତି । ଟିଉସନ୍ ସରିବାପରେ ସେ ଖାଇ ପି' ସାରି କଲେଜ୍ ଯିବାପାଇଁ ପ୍ରସ୍ତୁତହେଲେ ଯାଇ ତାଙ୍କସାଥିରେ ସ୍କୁଟରରେ ଭେଡେନ୍ ବାଟଦେଇ ବାଘପାଲିର ଦନ୍ତାପୋଲ ଡେଇଁ ଚିଚିଣ୍ଡା ଯିବାକୁ ହେଉଥିଲା । ପୁଣି ତାଙ୍କ ସହ ରେମୁଣ୍ଡା ଭାୟା ଦେଇ ତୋରାବାଟରେ ବରଗଡ ଘରୋଇ ବସ୍‌ଷ୍ଟାଣ୍ଡ ଯିବାକୁ ହେଉଥିଲା । ମୋତେ ଓହ୍ଲାଇ ରାମବାବୁ ତାଙ୍କ ଗୃହଅଭିମୁଖେ ଗଲାପରେ ମୁଁ ବରଗଡ-ଭୁବନେଶ୍ୱର ଲମ୍ବା ରାସ୍ତାଦେଇ ଯାଉଥିବା ବସ୍‌ରେ ବସି ସମ୍ବଲପୁର ବସ୍‌ଷ୍ଟାଣ୍ଡ ପର୍ଯ୍ୟନ୍ତ ଆସୁଥିଲି । ଏମିତି ବ୍ୟବସ୍ଥାରେ ଯିବାଆସିବା କଲେ ରାତିଏଗାରଟା ବେଳେ ଘରେ ପହଞ୍ଚୁଥିଲି । ପୁଣି ସକାଳୁ ଆଠଟା ଖଡିଆଳ କିମ୍ବା ବରଗଡ ବସ୍‌କୁ ଆଶ୍ରା । ଧନ୍ୟ ଆମ ରାମବାବୁ, ମୋ ଭଳିଆ ଅପନ୍ତରା ଅଧ୍ୟାପକକୁ କିଛିମାସ ତାଙ୍କଗାଡ଼ିରେ ନେବାଆଣିବା କରିଥିଲେ । ତାଙ୍କସହ ଗଲାବେଳେ ମଝିରେ ମୁଁ ଘଟଣାବଶତଃ କଲେଜ୍‌ର ଅଧ୍ୟକ୍ଷ ଦାୟିତ୍ୱରେ ତିନିମାସ କାଳ ଥିଲି । ମୋତେ ସେତେବେଳେ ରାମବାବୁ ଆସିବାବାଟରେ କହୁଥିଲେ, ତାଙ୍କ ସେ ସ୍କୁଟରରେ ସରୋଜ ସୁଆର, ଯଜ୍ଞେଶ୍ୱର ମେହେର, ଚୋପଦାରବାବୁ ଭଳି ଅଧ୍ୟକ୍ଷମାନେ ଯିବାଆସିବା କରିଛନ୍ତି । ଆପଣ ବି ଅଧ୍ୟକ୍ଷ ଭାବରେ ଦାୟିତ୍ୱରେ ଅଛନ୍ତି, ମୋର ଭାଗ୍ୟ, ପ୍ରାୟ ପାଞ୍ଚଜଣ ଅଧ୍ୟକ୍ଷ ବରଗଡରୁ ଚିଚିଣ୍ଡାଯାଏଁ ମୋର ଏହି ଭେସ୍ପା ସ୍କୁଟରରେ ଯାତାୟାତ କରିଛନ୍ତି । ଏଭଳି କଥାଶୁଣି ମୁଁ ନିଜକୁ ଧନ୍ୟମଣେ ।

ଆଗରୁ କହିଛି, ସକାଳର କ୍ଲାସ୍‌ନେବା ପାଇଁ କଲେଜ ପହଞ୍ଚିବାରେ ବିଳମ୍ବ ହୋଇପାରେ ବୋଲି କେତେ ରାତି ରାମବାବୁଙ୍କ ସେହି ଭଡା ଘରେ ରହିଯିବାକୁ ପଡୁଥିଲା । ରାମବାବୁଙ୍କ ସହଧର୍ମିଣୀଙ୍କ ରନ୍ଧା ରାତ୍ରିଭୋଜନ ବହୁଥର ଖାଇବାର



ସୌଭାଗ୍ୟ ମିଳିଛି, ତା ସହ ରାମବାବୁଙ୍କ ଆତିଥ୍ୟ ମଧ୍ୟ । ବୃନ୍ଦାବନଙ୍କୁ ଧନ୍ୟକହିବି, ସେ ସମ୍ବଲପୁରରେ ରହିବାପୂର୍ବରୁ ମୋତେ ମହାନଦୀ ଡେଇଁ ଦେଓଗାଁ ଦେଇ ସମ୍ବଲପୁର ଯିବାପଥକୁ କଲମ୍ବସଙ୍କ ଆମେରିକା ଆବିଷ୍କାର କରିବାଭଳି ରାସ୍ତାଟିଏ ଦେଖାଇଦେଲେ, ଯା'ଫଳରେ ଗୋଡଭଗାଦେଇ ଚିଚିଣ୍ଡାକୁ ଯେଉଁ ଅଡଷଠୀ କିଲୋମିଟର ଲାଗୁଥିଲା, ସେହି ବାଟ କମିଯାଇ ପଇଁଚାଳିଶ କିଲୋମିଟର ଲାଗିଲା । ବେଶ୍, ଏତେସବୁ ଯନ୍ତ୍ରଣାମୟ ଯାତ୍ରାରୁ ମୁକ୍ତିମିଳି ଗୋଟେ ପ୍ରକାର ସହଜସାଧ ହୋଇଯିବ ଅସାଧ ଯାତ୍ରା, ମୁଁ ଭାବିନଥିଲି । ଏଭଳିବ୍ୟବସ୍ଥାରେ ନା ମୋତେ ଧନୁପାଲିରୁ ସମ୍ବଲପୁର ଲକ୍ଷ୍ମୀଟକୀଜ୍ ଛକକୁ ଟେମ୍ପୋରେ ଯିବାକୁ ପଡିବ, ନା ସେଠାରୁ ବରଗଡ କିମ୍ବା ରେଙ୍ଗାଲିକେମ୍ପ କିମ୍ବା ଗୋଡଭଗା ଯିବାକୁ ପଡିବ । ବେଶ୍, ଧନୁପାଲିରୁ ବସ୍ ଧରି, ଦେ'ଗାଁରେ ଓହ୍ଲାଅ, ସେଇଠୁ ଡଙ୍ଗାରେ ବସି ଭାସିଭାସି ଯାଅ ନଦୀ ଆରଖଣ୍ଡି, କିଛି ଦୂର ପଦରଜରେ ଗଲେ ଉଦେପୁର ରାସ୍ତାମୋଡ, ସେଠୁ ଶକ୍ତିବସ୍ ଧରି ସିଧା ପପଙ୍ଗାଛକ, କଲେଜପାଖ । ଏଇଠୁ ଆରମ୍ଭହେଲା ସ୍ଥଳପଥସହ ଜଳପଥଦେଇ କଲେଜ ଯିବାଆସିବା ।

ଛକକୁ ଯାଇ ସାଢ଼େ ପାଞ୍ଚଟା ପଡିବସ୍‌ରେ ବସି ଛ', ଛ' ଟା ପନ୍ଦର ପାଖାପାଖି ଦେଗାଁ, ସେଇଠୁ ଓହ୍ଲାଇ ଚାଲି ଚାଲି ନଦୀଘାଟ, ସେଇଠୁ ଯାତ୍ରୀଜମିଲେ ଯାଇ ହାତବାହୁଲା ଡଙ୍ଗାରେ ବସି ଆରପାରିକୁ ଭାସମାନ ଯାତ୍ରା, ଆରପାରି ନଈବାଲିରେ ଡଙ୍ଗାରୁ ଓହ୍ଲାଇ ବାଲିବାଲିରେ ପାହୁଣ୍ଡପାହୁଣ୍ଡ ପକାଇ ପ୍ରାୟ ଏକକିଲୋମିଟର ଗଲାପରେ ଯାଇ ଉଦେପୁର ରାସ୍ତା ମୋଡ଼ ଆସେ, ସେଠି ସୁନାରୀ ବାପପୁଅଙ୍କ ଗୁଡ଼ିଆଦୋକାନ, ପୁରୀ, ଚଣାଝୋଳ ପ୍ରସ୍ତୁତ ଥାଏ, ତିନିଚାରିପଟ ପୁରୀ ସହ ଗରମ ଜିଲାବି ଗିଳୁଗିଳୁ ଶକ୍ତିବସ୍‌ର ଶକ୍ତିଶାଳୀ ଆଗମନ ହୁଏ, ବସ୍‌ଭର୍ତ୍ତି ଯାତ୍ରୀ ଭିଡ଼ଭିତରେ ମାଷ୍ଟର କିଏ, ଆଶାକର୍ମୀ କିଏ, ଏଏନ୍‌ଏମ୍ କିଏ, ପ୍ରିନ୍ସିପାଲ କିଏ, ମିସ୍ତିରୀ କିଏ, ରେଜା କିଏ, କିଛି ଜଣାପଡେ ନି, ସମ୍ପୂର୍ଣ୍ଣ ଗଣତାନ୍ତ୍ରିକ ପଦ୍ଧତିରେ ଭିଡ଼ଭିତରେ କେଞ୍ଚିପେଲି ଠିଆ ହୋଇ ପପଙ୍ଗାଛକ ପର୍ଯ୍ୟନ୍ତ ଯିବାକୁପଡେ, ପରେ ଯାଇ ଅଧ୍ୟାପକଙ୍କ କମନରୁମ୍‌କୁ ଯାଇ କେଉଁ କ୍ଲାସଅଛି ଜଣାପଡୁଥିଲା । ଏଗାରଟାରେ ଥିବା କ୍ଲାସ୍‌ପାଇଁ ସକାଳ ଚାରିଟାରୁ ଉଠି କେତେ ଉତ୍ଥାନପତନ ଦେଇ ଯିବାକୁହେଉଥିଲା କଲେଜ୍, 'ଏ ଜୀବନ ପଛେ ନର୍କେ ପଡିଥାଉ, କଲେଜ୍ ଉଦ୍ଧାର ହେଉ' ଜପିଜପି ସମୟ ତା'ରତା'ର ବିତିଯାଉଥିଲା । ଏହି ଦେଗାଁ ବାଟଦେଇ ଯିବାର ପ୍ରଥମ ବର୍ଷର ଘଟଣା, ଏଇ ବାଟଦେଇ ଯା'ଆସ କରିବା ଭିତରେ ବସ୍ କଣ୍ଡକ୍ଟର, ଡଙ୍ଗା ଘଟୁଆଳମାନଙ୍କ ସାଙ୍ଗେ ଗୋଟେ ପ୍ରକାର ମଧୁରସମ୍ପର୍କରେ ବାନ୍ଧି ହୋଇଯାଇଥିଲି ମୁଁ । ଡଙ୍ଗାଘାଟରେ ବିଶେଷତଃ ସେସମୟରେ

ଦି' ଜଣ ଘଟୁଆଲ୍ ପାଳିପାଳି କରି ଡଙ୍ଗା ବାହୁଥିଲେ । ଜଣେ ପଞ୍ଚମ ଡନସେନା, ଆଉ ଜଣେ ମଗନୀ । ଉଭୟେ ମୋର ଅନ୍ତରଙ୍ଗ ପାଲଟିଗଲେ କିଛିଦିନ ମଧ୍ୟରେ । ସକାଳର ପ୍ରଥମ ପାଳିରେ ହିଁ ଯିବାକୁ ପଡୁଥିବାରୁ ମୋ ସହ ଡଙ୍ଗାରେ କାଠିପତ୍ର, କାଠ, ବାଉଁଶ, କୋଇଲା ଆଦି ସାମଗ୍ରୀ ଆରପାରିକୁ ନେଇ ବ୍ୟବସାୟକରୁଥିବା ପୁରୁଷ, ମହିଳା ସମସ୍ତେ ବସୁଁ, ଆରପାରିରେ ଜଣଜଣକରି ଓହ୍ଲାଉ, ପୁଣି ଯେ ଯାହା ବାଟ ଧରିଥାଉଁ । ମୋର ବ୍ୟଗ୍ରତା ଥାଏ, ଶୀଘ୍ର ଯାଇ ଉଦେପୁରଠାରେ ଜଳଖିଆ ଖାଇ ଶକ୍ତିବସ୍‌କୁ ଧରିବାକୁ ହୁଏ । ସେ ବସ୍ ନ'ପାଇଲେ ଦିନସାରା ଆଉ ଚିଚିଣ୍ଡାକୁ ସେବାଟେ ବସ୍ ନଥାଏ, ଏବେ ବି ନାହିଁ । ତେଣୁ ଡଙ୍ଗାରୁ ଓହ୍ଲାଇବାକ୍ଷଣି ମୁଁ କ୍ଷୀପ୍ରବେଗରେ ବାଲିଉପରେ ଚାଲିବା ଆରମ୍ଭ କରିଥାଏ । ମୋର ଚାଲିକୁ ଦେଖି କାଠିପତ୍ରବାଲୀମାନେ ଥଟ୍ଟାରେ ଇଙ୍ଗିତ କରୁଥିବାର ମୁଁ ଶୁଣିଛି ।

ମଗନୀ, ଅତ୍ୟନ୍ତ ଭଦ୍ର ଓ ସାହାଯ୍ୟକାରୀ ଘଟୁଆଳ ଥିଲା । ଶୀତସକାଳରେ, ଚତୁର୍ଦ୍ଦିଗ ଯେତେବେଳେ କୁହୁଡ଼ିମୟ ହୋଇଯାଇଥିବ, ସିଂହାସନ ପର୍ବତମାଳା ବି ଘୋଡିହୋଇ ଶୋଇପଡ଼ିଥିବ କୁହୁଡ଼ିର ଚାଦର ଓଢ଼ି, ମଗନୀ କିନ୍ତୁ ନଦୀ ଘାଟରେ ମୋତେ ଅପେକ୍ଷା କରିରହେ, ଲେକଚରର୍ ଆଜ୍ଞା ଆଏବେ, କଲେଜ୍ ଯିବେ । ମୁଁ ମଧ୍ୟ ଭାରି ବିଶ୍ୱାସ କରୁଥିଲି ଯେ ମଗନୀ ନିଶ୍ଚୟ ଘାଟକୁ ଆସିସାରିଥିବ, ମୋତେ ଟାକିଥିବ । ମୁହଁକୁମୁହଁ ଦିଶୁ ନଥିବ, ନଦୀର ପାଣି ପାଖକୁଆସି ପହଞ୍ଚିଲାବେଳେ ଦେଖିବି ଯେ ମଗନୀ ଡଙ୍ଗାରୁ ପାଣି ଛେଦାଉଥିବ । ଆଜ୍ଞା ଆଏଲେ ବୋଲି କହି ଡଙ୍ଗାର ଶିକୁଳୀ ଖୋଲିଦେଇ ପ୍ରସ୍ତୁତ ହୋଇଯିବ ବାହିବାପାଇଁ । ମୁଁ ବସିସାରିବା ପରେ କାତମାରି ଡଙ୍ଗା ବାହିବା ଆରମ୍ଭ କରିଦେବ ମଗନୀ । କୁହୁଡ଼ି ଭିତରେ ପହଁରିପହଁରି ଯିବାପରି, ଦିବସରେ ସ୍ୱପ୍ନ ଦେଖିବାଭଳି, ପରୀରାଇଜରେ ଭାସୁଥିବାଭଳି ଡଙ୍ଗା ଶୂନ୍ୟତାରେ ଭାସିଭାସି ଚାଲେ, ବେଳେବେଳେ ମୁଁ ଭାବେ, ଏ ମହାନଦୀ ସହ ପୂର୍ବଜନ୍ମରେ ବୋଧହୁଏ କିଛିନାକିଛି ସମ୍ବନ୍ଧରେ ନିଶ୍ଚୟ ବାନ୍ଧି ହୋଇଥିବି ।। ପିଲାଟି ବେଲୁ, ସେ ମୋ ସାଥିରେ ଅଛି ଯେ ଅଛି, ସୁଖରେ ବି ଦୁଃଖରେ ବି ।। ବାଟରେ ପଡେ ଚୂରାଖାଇ ଟାଙ୍ଗର, ଏଇଠି କୁଆଡ଼େ, ପୂର୍ବେ ଶ୍ରମଜୀବୀମାନେ ଆରପାରିକୁ କୃଷିକାର୍ଯ୍ୟ ଉଦ୍ଦେଶ୍ୟରେ ଯାଇ ଫେରିବାବାଟରେ ଏଇ ଟାଙ୍ଗରଉପରେ ବିଶ୍ରାମନେଇ ଗଣ୍ଠିଲିରେ ବାନ୍ଧିଥିବା ଚୂଡ଼ାଗୁଡ଼ ଆଦି ଖାଇସାରି ପୁଣି ଦେଗାଁକୁ ଆସି ନିଜନିଜ ଘରକୁ ଫେରୁଥିଲେ । ତେଣୁ ଏହାର ନାଁ ଚୂରାଖାଇ ଟାଙ୍ଗର, ବିରାଟ ପ୍ରସ୍ତରର ଚଟ୍ଟାଣ ଖଣ୍ଡିଏ, ଜଳମଧ୍ୟରେ ହ୍ରଦ ଭଳି । ଏହି ସ୍ଥଳଟି ଅଛି ନଦୀର ଉଭୟ ପଟର ମଧ୍ୟସ୍ଥଳ । ଏଠାରେ

କାତକାତ ପାଣି, କେବେ ଶୁଖେ ନାହିଁ ବୋଲି ଲୋକେ କହନ୍ତି । ଏଇ ଟାଙ୍ଗରଟି ପାରି ହେଲେ ପୁନର୍ଜୀବନ ପାଇଲାଭଳି ଲାଗେ । ମଗନୀ ଜଣେ ସରଳ, ନିଷ୍କପଟ ସ୍ୱଭାବର ଲୋକ । ଆରପାରିକୁ ପହଞ୍ଚିଗଲେ ଯଦି ମୁଁ କୌଣସିଦିନ ଯୋତାମୋଜା ପିନ୍ଧି ଯାଇଥିବି, ମଗନୀ ମୋତେ ତାହା ଖୋଲିବାପାଇଁ ମନା କରିଥାଏ । ସମସ୍ତେ ଓହ୍ଲାଇବାପରେ ସେ ମୋତେ ତା' କାନ୍ଧରେ ଲାଉ କଲାଭଳି ଟେକିନେଇଯାଏ ଶୁଖିଲା ବାଲିଯାଏଁ, ଯେପରି ମୋ ଯୋତାମୋଜା ନ'ଭିଜିବ । ତା'ର ଏଭଳି ସତ୍କାର ପାଇଲେ ବେଳେବେଳେ ତା' ସାମ୍ନାରେ ମୋ ମୁଣ୍ଡ ନଇଁଯାଏ । ଖରା, ବର୍ଷା, ଶୀତ, ସବୁ ଋତୁରେ ଏଇ ମଗନୀ ଆଉ ପଞ୍ଚମ, ଥିଲେ ମୋର ସାରଥୀ, ଜଳବାହନର । ପଞ୍ଚମ ମୋର ପୁଅର ଡାକନାମ ହୋଇଥିବାରୁ ପଞ୍ଚମ ମୋତେ ମିତବାପାର ସମ୍ମାନ ଆଜିଯାଏଁ ଦେଇଆସୁଛି । ମୋ ପୁଅଝିଅଙ୍କ ବାହାଘର ବେଳେ ସେ ଯୋଗଦେଇଥିଲା, ଏଇ ଗତବର୍ଷ ତା'ପୁଅର ବାହାଘରକୁ ମଧ୍ୟ ମୁଁ ବୃନ୍ଦାବନ ସାଙ୍ଗରେ ଯାଇଥିଲି । ସମ୍ପର୍କର ଆକର୍ଷଣ ଏମିତି, ବଡ଼ ବିଚିତ୍ର ।

ଏମିତିକା ଏକ ବର୍ଷାଭିଜା ସକାଳରେ ପତିବସ୍‌ରେ ସବୁଦିନପରି ଦେଗାଁ ଯାଇ ଘାଟକୁ ଡଙ୍ଗା ଧରିବା ପାଇଁ ଗଲାବେଳେ ଡଙ୍ଗାରେବସି ଦେଖିଲି, ଦେଗାଁ ପଟ ନଦୀଘାଟର ଅନତିଦୂରରେ କାହାର ଚିତା ଜଳି ଶେଷଅବସ୍ଥାକୁ ଆସିଯାଇଛି । ଡଙ୍ଗାବାହୁଥିବା ପଞ୍ଚମକୁ ପଚାରିଲି, କିଏ ଗଲେ ବୋଲି । ପଞ୍ଚମ ଯାହା କହିଲା, ମୋର ଛାତିର ସ୍ପନ୍ଦନ ବୃଦ୍ଧି ପାଇବାରେ ଲାଗିଲା । ପଞ୍ଚମ କହିଲା, କାଲିସକାଳେ ମଗନୀ ଏକ ରାସ୍ତାଦୁର୍ଘଟଣାରେ ଚାଲିଗଲା । ମୁଁ ତା କଥା ଶୁଣି ସ୍ତବ୍ଧ ହୋଇଗଲି । ସେ ପୁଣି କହିଲା, କାଲି ସକାଳେ ମଗନୀ ତା' ଛୁଆଙ୍କ ପାଇଁ ବହିପତ୍ର କିଣିବାପାଇଁ ଧମାକୁ ସାଇକଲ୍ ଯୋଗେ ଯାଉଥିଲା । ସେତେବେଳକୁ ଖୁବ୍‌ଯୋର୍ ବର୍ଷା ହେଉଥିଲା । ଗୋଟାଏ ହାତରେ ଛତା, ଆର ହାତରେ ହେଣ୍ଡଲ୍ । ଅଜଣାଗାଡ଼ିଟିଏ ଦ୍ରୁତଗତିରେ ଆସି ତାକୁ ପଛପଟରୁ ବାଡ଼େଇ ଆଖିପିଛୁଳାକେ ଅଦୃଶ୍ୟ ହୋଇଗଲା । ସେଇଠି ଟଳିପଡିଲା ମଗନୀ !

ସକାଳୁ ଏମିତିଏକ ଦୁଃସମ୍ବାଦ ମୋର ଅନ୍ତସ୍ଥଳକୁ ମନ୍ଥିତ କରିପକାଇଲା । କଲେଜ୍ ଗଲି ସିନା ବାଧ୍ୟବାଧକତାରେ, ତେବେ ମଗନୀ ଚିତାରୁ ନିର୍ଗତ ଶେଷ କେଇ କୁଣ୍ଡଳୀ ଧୂଆଁରେ ମୁଁ ଅଣନିଶ୍ୱାସୀ ପାଇଟିଯାଉଥିଲି । କିଛିଦିନର ସମ୍ପର୍କ, ଦିନ କେଇଟାରେ ଶେଷ ହୋଇଗଲା, ତା' ଭାଇ ହର ପଛକୁ ଡଙ୍ଗାବାହିବା କାମକଲା । ହେଲେ ମଗନୀଭଳି ଅନ୍ତରର ମଣିଷକୁ ହରାଇ ମୁଁ ନିଜକୁ କିଛିଦିନ ଅସହାୟ ଅନୁଭବ କରିଥିଲି ।

ସେହିବର୍ଷ ଆକାଶବାଣୀ ସମ୍ବଲପୁରରେ କାର୍ଯ୍ୟକ୍ରମ ନିଷ୍ପାଦକ ଭାବରେ ବନ୍ଧୁ ଅଶୋକ ପାଣିଗ୍ରାହୀ କାର୍ଯ୍ୟରତ ଥାଆନ୍ତି । ତାଙ୍କ ଡାକରାପାଇ ଦେଖାକରିବା ପାଇଁ ଷ୍ଟୁଡିଓକୁ ଗଲି, ସେ ମୋତେ କେନ୍ଦ୍ର ସରକାରଙ୍କ ଏକ ନିର୍ଦ୍ଦେଶନାମା ଦେଖାଇ, ସରକାରଙ୍କ ପକ୍ଷରୁ ଲାଗୁକରାଯାଇଥିବା କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମ ସମ୍ପର୍କରେ ଅବଗତ କରାଇଲେ ଓ ଏହି ବିଷୟମାନଙ୍କ ଆଧାରରେ ଧାରାବାହିକ ନାଟକ ରଚନା କରିବାପାଇଁ ଅନୁରୋଧ କଲେ । ମୁଁ ତାଙ୍କ ଅନୁରୋଧକୁ ସମ୍ମାନ ଜଣାଇ ମୋର ସମ୍ମତି ପ୍ରଦାନକଲି ଏବଂ ନାଟକ ରଚନା ଆରମ୍ଭକଲି ଦେଗାଁର ମଗନୀ ଚରିତ୍ରକୁ କେନ୍ଦ୍ରକରି, ଯେ ସମ୍ପୂର୍ଣ୍ଣ ଧାରାବାହିକରେ ଉତ୍ସ୍ୟଚରିତ୍ର ଭାବରେ ରହିବ ଏବଂ ତାର ଦୁର୍ଘଟଣା ଜନିତ ମୃତ୍ୟୁକୁ ଆଧାରକରି ସମଗ୍ର ଧାରାବାହିକଟି ଲେଖାଯିବ । ମୋର ଏହି ଯୋଜନା ସଫଳହେଲା, ଯେତେବେଳେ ଧାରାବାହିକର ପ୍ରଥମ ନାଟକ ଠିକଣା ସମୟରେ ଲେଖି ଆକାଶବାଣୀ କର୍ତ୍ତୃପକ୍ଷଙ୍କଠାରେ ଉପସ୍ଥାପନ କଲି ଯାହାର ନା ଥିଲା, 'ନୂଆଁ ଜୀବନ୍' । ।

ଏମିତି, ସମ୍ବଲପୁରଠାରୁ ଚିଚିଣ୍ଡାଯିବା ରାସ୍ତାରେ ଘଟିଥିବା ଅନେକ ଘଟଣାଭିତରୁ ଏଇ ଥିଲା ଗୋଟାଏ, ମଗନୀ ଚରିତ୍ରଟି ବାସ୍ତବରୁ ମୋ କଳ୍ପନା ରାଜ୍ୟକୁ ଆସିଗଲା ନାଟକୀୟ ଭାବରେ । ରେକର୍ଡିଂ ପରେ ପ୍ରତ୍ୟେକ ସପ୍ତାହରେ ସନ୍ଧ୍ୟା ସାତଟାରେ ସମଗ୍ର ଦେଗାଁର ଲୋକେ ଅପେକ୍ଷା କରୁଥିଲେ ନୂଆଁଜୀବନ୍ ନାଟକ ଶୁଣିବାପାଇଁ, ଯେହେତୁ ଏଇ ଧାରାବାହିକ ଥିଲା ତାଙ୍କ ଗାଁର ଘଟଣା ଉପରେ ପର୍ଯ୍ୟବେକ୍ଷିତ । ପଥାନୁଭୂତିର ରସାଳତା, ମୋ ନାଟ୍ୟଜୀବନକୁ ରସାପ୍ଲୁତ କରିଛି, ରୋମାଞ୍ଚକର କରିଛି, ରୋମନ୍ଥିତ କରିଛି, କଳ୍ପଲୋକର ଦେଗାଁକୁ କରିଛି ମହନୀୟ, ମଗନୀ ସେ ଚିନ୍ତାଧାରାର ଭାବବାହକ । । ।



ଏହି ଘଟଣା ଏକବିଂଶ ଶତାବ୍ଦୀର ପହିଲିବର୍ଷର, ୨୦୦୧ର ନୂଆଁଜୀବନ୍ ସମ୍ବଲପୁରୀ ଧାରାବାହିକ ନାଟକର ପ୍ରଥମ ଭାଗ ସେହି ଏକ' ମସିହାର ଅଗଷ୍ଟ ବାର ତାରିଖ ରେକର୍ଡିଂହୋଇ ପ୍ରସାରିତ ହୋଇଥିଲା ସେହି ମାସ ଉଣେଇଶ ତାରିଖ ସନ୍ଧ୍ୟାରେ । ଏହିଭଳି ପ୍ରତ୍ୟେକ ସପ୍ତାହ ଗୋଟିଏଲେଖାଏଁ ଏପିସୋଡ୍ ରେକର୍ଡିଂ ହୋଇ ପରବର୍ତ୍ତୀ ସପ୍ତାହରେ ପ୍ରସାରିତ ହୋଇଥିଲା କ୍ରମାଗତ ବାରସପ୍ତାହ ଯାଏଁ । ପ୍ରତ୍ୟେକ ଏପିସୋଡ୍ କେନ୍ଦ୍ରସରକାରଙ୍କ ସାମାଜିକ ସହାୟତା ଯୋଜନା ଉପରେ ଆଧାରିତଥିଲା ଆରମ୍ଭରୁ ଶେଷ ଏପିସୋଡ୍ । ସମସ୍ତ ଏପିସୋଡର କାହାଣୀ

ଅନ୍ତର୍ସଂଯୋଜିତ ଥିଲା, ଅର୍ଥାତ୍ ସାମଗ୍ରିକଭାବରେ ସମଗ୍ର କାହାଣୀଭାଗ ଗୋଟିଏ ହିଁ ଗାଁର ଘଟଣା ଓ ଚରିତ୍ରସମୂହ ଉପରେ ପର୍ଯ୍ୟବେସିତ ଥିଲା । ମଗନୀ ଘଟୁଆଲ୍‌ର ଦୁର୍ଘଟଣାଜନିତ ମୃତ୍ୟୁକୁ ମୁଖ୍ୟଘଟଣା ଭାବରେ ଗ୍ରହଣକରି ତା'ର ସ୍ତ୍ରୀ, ଗାଁର ନେତୃସ୍ଥାନୀୟ ଲୋକ, ଖଳ ପ୍ରକୃତିର ଲୋକ, ସାଧାରଣ, ଭଣ୍ଡାରୀ, ଧୋବା, କୃଷକ ଆଦି ବିଭିନ୍ନ ଚରିତ୍ର ସମାହାରରେ 'ନୂଆଁ ଜୀବନ' ଧାରାବାହିକଟିର ମୂଳକାହାଣୀ ସହ ଜଡ଼ିତଥିଲେ । କାଳ୍ପନିକ ଘଟଣାର ଆଶ୍ରୟରେ ମଗନୀର ବିଧବା ସ୍ତ୍ରୀ ଗାଁର ବିକାଶ ଦିଗରେ ନେତୃତ୍ୱ ନେଇଛି ଏବଂ ଗାଁ ଲୋକେ ଶେଷରେ ସରପଞ୍ଚ ନିର୍ବାଚନରେ ତାକୁ ହିଁ ବହୁ ପରିମାଣରେ ଭୋଟ୍ ଓ ସମର୍ଥନ ଦେଇ ନିର୍ବାଚିତ କରିଛନ୍ତି । ସବାଶେଷ ଏପିସୋଡ୍‌ରେ ଗାଁ ଲୋକଙ୍କୁ ଧନ୍ୟବାଦଦେବା, ଗାଁଲୋକେ ତାକୁ ବିପୁଳ ସମ୍ବର୍ଦ୍ଧନାଦେବା ସଭାରେ କାନ୍ଦକାନ୍ଦ କଣ୍ଠର ବକ୍ତବ୍ୟରେ ସମଗ୍ର ଏପିସୋଡର ପରିସମାପ୍ତି ଘଟିଛି, ଏହି ଏପିସୋଡ୍‌ରେ ଲଛମୀ ଭୂମିକାରେ କଣ୍ଠଦାନକରିଥିବା କଳାକାର ସୁଦେଷ୍ଣା ମିଶ୍ରଙ୍କ ପରିଶ୍ରମ ଓ ପ୍ରଦର୍ଶନ, ଅବିସ୍ମରଣୀୟ । ତେବେ, ଏହି ଏପିସୋଡ୍‌ଟି ଏଯାଏଁ ପ୍ରସାରିତ ହୋଇପାରି ନାହିଁ, କାରଣ ସେତେବେଳର କେନ୍ଦ୍ର ନିର୍ଦ୍ଦେଶକ ରାହାସ ବିହାରୀ ମିର୍ଦ୍ଧାଙ୍କ ସହ କୌଣସି ଘଟଣାକୁନେଇ କାର୍ଯ୍ୟକ୍ରମର ପ୍ରଯୋଜକ ଅଶୋକ ପାଣିଗ୍ରାହୀଙ୍କର ମନାନ୍ତର ଘଟିବାରୁ ଅଶୋକବାବୁ ଅତିଶୀଘ୍ର ସମ୍ବଲପୁରରୁ ବଦଳି ହୋଇଗଲେ ଏବଂ ନୂଆଁଜୀବନ୍ ଧାରାବାହିକର ଶେଷ ଏପିସୋଡ ସେମିତି ଅପ୍ରସାରିତ ହୋଇ ରହିଗଲା ।

ଏହି ନାଟକରେ କୃଷଚନ୍ଦ୍ର ଆଚାର୍ଯ୍ୟ, ସୁଦେଷ୍ଣା ମିଶ୍ର, କମଳା ସାହୁ, ଅଶୋକ ବେହେରା, ଜ୍ୟୋତିରଞ୍ଜନ ତ୍ରିପାଠୀ, ବୃନ୍ଦାବନ ମିଶ୍ର, ରାମଚନ୍ଦ୍ର ସାହୁ, ମନୋଜୀତ୍ ମଜୁମଦାର୍, ବିବେକା ବେହେରା ଆଦି କଳାକାରମାନେ ଅଂଶଗ୍ରହଣ କରିଥିଲେ । ବରଗଡର ଅଶୋକ ବେହେରାଙ୍କ ସହ ଅଶୋକ ପାଣିଗ୍ରାହୀ ମୋ ନିକଟରେ ପରିଚିତ କରାଇ ଦେଇଥିଲେ, ସେଇ ଦିନଠାରୁ ଅଶୋକ ମୋର ଜଣେ ପ୍ରିୟ କଳାକାର ପାଲଟିଗଲେ । ପ୍ରତ୍ୟେକ ସପ୍ତାହର ରବିବାର ସକାଳେ ରେକର୍ଡିଂସମୟ ଧାର୍ଯ୍ୟ ହେଉଥିବାରୁ ଅଶୋକ ତାଙ୍କ ବାଇକ୍‌ରେ ବରଗଡରୁ ସମ୍ବଲପୁର ଆସୁଥିଲେ ରେକର୍ଡିଂପାଇଁ । ଜ୍ୟୋତି, ବୃନ୍ଦାବନ, କୃଷ୍ଣ ଆଚାର୍ଯ୍ୟ, ସୁଦେଷ୍ଣା, କମଳା, ବିବେକା ଆଦି କଳାକାରମାନଙ୍କ ସହ ପ୍ରତ୍ୟେକ ସପ୍ତାହରେ ଭେଟପଡ଼ିବା ଯୋଗୁଁ ଆମଭିତରେ ଏକପ୍ରକାର ଏକପରିବାରତ୍ୱ ସମ୍ବନ୍ଧ ଗଢ଼ିଉଠିଥିଲା । ମଜାର କଥା, ମୁଁ ଏ ନାଟକର ରଚୟିତା ବାବଦରେ ଏକ ଏପିସୋଡ୍‌ରେ ମୋ ନିଜକୁ ଅଧ୍ୟାପକ ଚରିତ୍ରକୁ ମଧ୍ୟ ଚିତ୍ରିତ

କରିଥିଲି । ସେଇ ସମାନ୍ ଦୃଶ୍ୟ, କୁହୁଡ଼ିମୟ ଶୀତସକାଳ, ମୁଁ ଦେଗାଁର ମହାନଦୀ ଘାଟରୁ ଡଙ୍ଗାରେ ଆର ପାରିକୁ ଯାଉଛି, ଡଙ୍ଗା ବାହୁଛି ମଗନୀ, ତା'ସହ ଅଧ୍ୟାପକଙ୍କ ଆଳାପଆଲୋଚନାର ଦୃଶ୍ୟକୁ ନାଟ୍ୟରୂପ ଦେଇଥିଲି । ତେବେ, ମୁଁ ଏହି ଭୂମିକାରେ କଣ୍ଠଦାନ କରି ନଥିଲି, ଅଧ୍ୟାପକ ଭୂମିକାରେ ଅଭିନୟ କରିଥିଲେ ଆମ କଲେଜ୍‌ର ଇଂରାଜୀ ଅଧ୍ୟାପକ ପପଙ୍ଗାପାହାଡ଼ ତଳେ ଥିବା କୁଦୋପାଲି ଗାଁର ରାମଚନ୍ଦ୍ର ସାହୁ । ଗାଁ ମୁଖିଆ ଉଜାଗର ଭୂମିକାରେ ବରିଷ୍ଠ କଳାକାର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ସ୍ୱାଭାବିକ ସଂଳାପ ଉଚ୍ଚାରଣ ଶୈଳୀ ନାଟକଗୁଡ଼ିକୁ ଖୁବ୍ ଜୀବନ୍ତ କରିଥିଲା । ଉଜାଗରର ସ୍ତ୍ରୀ ମାଲତୀ ଭୂମିକାରେ କମଳା ସାହୁ ଓ ମଗନୀର ସ୍ତ୍ରୀ ଲଛମୀ ଭୂମିକାରେ ସୁଦେଷ୍ଣା ମିଶ୍ର ସାମଗ୍ରିକ ଭାବରେ ଧାରାବାହିକର ସଫଳତାର ମେରୁଦଣ୍ଡ ଥିଲେ । ପ୍ରଯୋଜକ ଅଶୋକ ପାଣିଗ୍ରାହୀ ମୋ'ଉପରେ ସମ୍ପୂର୍ଣ୍ଣ ସ୍ୱାଧୀନତା ଅର୍ପଣକରିଥିଲେ ପରିଚାଳନା ଓ ନିର୍ଦ୍ଦେଶନା କ୍ଷେତ୍ରରେ । ମୁଁ ସବୁ ଏପିସୋଡ୍‌ର ରେକର୍ଡିଂ ଠାରୁ ସମ୍ପାଦନା ପର୍ଯ୍ୟନ୍ତ ନିଜକୁ ମହଜୁଦରଖି ପ୍ରଯୋଜନାରେ ସହାୟତା କରିଥିଲି । ଏଥିରେ ଅଂଶଗ୍ରହଣ କରିଥିବା କଳାକାରମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ରେଡିଓ ପାଇଁ ନବାଗତ । ତେବେ ପରବର୍ତ୍ତୀ କାଳରେ ସେମାନେ ଜଣେଜଣେ ଆକାଶବାଣୀର ସ୍ୱୀକୃତିପ୍ରାପ୍ତ କଳାକାର ଭାବରେ ସୁନାମଅର୍ଜିଲେ । ନୂଆଁଜୀବନ୍, ବାସ୍ତବରେ କେତେକ ନାଟ୍ୟଶିକ୍ଷୀଙ୍କୁ କଳା କ୍ଷେତ୍ରରେ ନବଜୀବନ ପ୍ରଦାନ କରିଥିଲା ।

ଆକାଶବାଣୀ ସମ୍ବଲପୁର ତରଫରୁ ଅନେକ ନାଟକରେ କଣ୍ଠଦାନ କରିଥିଲେ ହେଁ କେତୋଟି ନାଟକ ଶ୍ରୋତୃମଣ୍ଡଳୀଙ୍କ ଚର୍ଚ୍ଚାକୁ ଆସିପାରିଥିଲା । ତନ୍ମଧ୍ୟରୁ ଶରତ ବେହେରାଙ୍କ 'ରାଜାଠାରୁ କଟୁଆଳ ପର୍ଯ୍ୟନ୍ତ', ଅଶୋକ ବହିଦାରଙ୍କ 'ସୁରିଖିଆ ପାର୍ଟି', ମଙ୍ଗଳୁ ବିଶ୍ୱାଳଙ୍କ 'ଭୁଖା', 'ଛଏଲୀ', 'ଉଲଗୁଲାନ୍', 'ସୁନ୍ଦରସାଏ', ବିନୋଦ ପଶାୟତଙ୍କ 'ଉଖୀ', ରମାପଦ ନନ୍ଦଙ୍କ 'ସେଇ କଳାପଥର', ବ୍ରଜେନ୍ଦ୍ର ନାୟକଙ୍କ 'ବୃତି', ପ୍ରମୋଦ ତ୍ରିପାଠୀଙ୍କ 'ଏଇ ପଥ' ଆଦି ରେଡିଓପ୍ରସାରିତ ନାଟକମାନ ଏବେମଧ୍ୟ ଚର୍ଚ୍ଚାକୁ ଆସିଥାଏ । ମୋ ନିଜରଚନା 'ମନ ଖୋଜୁଥାଏ ଯାହା', 'ଭଗ୍ନାଂଶ', 'ଝଡ଼' ନାଟକଗୁଡ଼ିକୁ ମଧ୍ୟ ଶ୍ରୋତା ଭଲପାଇଥିଲେ । ଧାରାବାହିକ ନାଟକ ଭାବରେ ଏକ ବେସରକାରୀ କାର୍ଯ୍ୟକ୍ରମ ଭାବରେ ଓଡ଼ିଆ, ସମ୍ବଲପୁରୀ ନାଟକ ସମୂହ ମଧ୍ୟ ରେଡିଓରୁ ଏକା ସାଙ୍ଗରେ ସମ୍ବଲପୁର, ବଲାଙ୍ଗିର, ରାଉରକେଲା, ଭବାନୀପାଟଣା ଆଦି କେନ୍ଦ୍ରରୁ ପ୍ରସାରିତ ହୋଇଥିଲା । ଏହି ଧାରାବାହିକଟି ଏଡ୍ସ ରୋଗ ସମ୍ପର୍କରେ ଲୋକଙ୍କୁ ସଚେତନକରିବା ଉଦ୍ଦେଶ୍ୟରେ ପ୍ରଥମତଃ ଜୟପୁର କେନ୍ଦ୍ରର ନାଟ୍ୟକାର ଅଶୋକ

ମିଶ୍ର ଦେଶିଆ ଭାଷାରେ ରଚନା କରିଥିଲେ ଏବଂ ସେଗୁଡ଼ିକ ଜୟପୁର କେନ୍ଦ୍ରରୁ ଆଗରୁ ପ୍ରସାରିତ ହୋଇସାରିଥିଲା । ପ୍ରଯୋଜକ ଭାବରେ ସମ୍ବଲପୁରର ମାନବସମ୍ବଳ ବିକାଶର ମୁଖ୍ୟ ମୁକ୍ତକଣ୍ଠ ପ୍ରଧାନ ଥିବାବେଳେ ପଦ୍ମଲୋଚନ ଦାସଙ୍କ ସହାୟତାରେ ପ୍ରାୟ ଛବିଶଟି ଏପିସୋଡ ଏହି କ୍ରମରେ ଫାର୍ମରୋଡ୍ ସ୍ଥିତ ଏକ ଘରୋଇ ଷ୍ଟୁଡିଓରେ ରେକର୍ଡିଂହୋଇ ଆକାଶବାଣୀ ସମ୍ବଲପୁରର ଏକ କାର୍ଯ୍ୟକ୍ରମରେ ପ୍ରସାରିତ ହୋଇଥିଲା । ସବୁଯାକ ଏପିସୋଡ୍‌କୁ ଦେଶିଆରୁ ସମ୍ବଲପୁରୀକୁ ଅନୁବାଦ କରିବାସହ କଳାକାରମାନଙ୍କୁ ନିର୍ଦ୍ଦେଶନା ଦେବା ଦାୟିତ୍ୱଥିଲା ମୋର । ଏହି ଧାରାବାହିକରେ ମଧ୍ୟ ଅଶୋକ ବେହେରା, ବୃନ୍ଦାବନ ମିଶ୍ର, ବିବେକା ବେହେରା, ମମତା ପଣ୍ଡା ଆଦି କଳାକାରମାନେ କଣ୍ଠଦାନ କରିଥିଲେ । ମମତା ପଣ୍ଡାଙ୍କ ସହ ଏହି ଧାରାବାହିକରେ ମୋର ପ୍ରଥମ ପରିଚୟ । ପରେ ସେ ଆକାଶବାଣୀର ଜଣେ ଉଦ୍‌ଘୋଷିକା, ନାଟକ ବିଭାଗର କଳାକାର ଓ ଜଣେ ସଫଳ ମଞ୍ଚଅଭିନେତ୍ରୀ ଭାବରେ ସୁନାମ ଅର୍ଜନକରିଥିଲେ ।

ସିପାହୀ ବିଦ୍ରୋହର ଦେଢ଼ଶହ ବର୍ଷ ପୂର୍ତ୍ତି ଉପଲକ୍ଷ୍ୟେ ଆକାଶବାଣୀର ନାଟକ ବିଭାଗର କାର୍ଯ୍ୟକ୍ରମ ନିଷ୍ପାଦକ ପଦ୍ମଲୋଚନ ଦାସଙ୍କ ଅନୁରୋଧରେ ରାଜ୍ୟସ୍ତରୀୟ ପ୍ରସାରଣ ପାଇଁ ମୋ ଉପରେ ଦାୟିତ୍ୱ ନ୍ୟସ୍ତହେଲା ସମ୍ବଲପୁରର ସମ୍ବଲବୀର ବୀର ସୁରେନ୍ଦ୍ରସାଏଙ୍କ ଜୀବନୀଭିତ୍ତିକ ଧାରାବାହିକ ନାଟକ ରଚନା କରିବାପାଇଁ । ଏହା ୨୦୧୭ ମସିହାର ଘଟଣା ଓ ମୋ'ପାଇଁ ଏ ଥିଲା ମସ୍ତବଡ଼ ଆହ୍ୱାନ । ପଦ୍ମଲୋଚନଙ୍କ ପରାମର୍ଶ ଥିଲା ନାଟକଟି ସୁରେନ୍ଦ୍ର ସାଏଙ୍କ ଜୀବନୀ ଉପରେ ତଥ୍ୟଭିତ୍ତିକ ହେବା ବିଧେୟ । ସେଥିପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ଅବସର ପ୍ରାପ୍ତ ପ୍ରଫେସର ଚିତ୍ତରଞ୍ଜନ ମିଶ୍ରଙ୍କୁ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା ପାଣ୍ଡୁଲିପିଗୁଡ଼ିକୁ ସମୀକ୍ଷା କରି ରିପୋର୍ଟ ପ୍ରଦାନ କରିବାପାଇଁ । ଦଶଗୋଟି ଅଧ୍ୟାୟ ବିଶିଷ୍ଟ ଏହି ଧାରାବାହିକର ପ୍ରଥମ ପାଞ୍ଚଟି ଏପିସୋଡ ପାଇଁ ଡ. ପଞ୍ଚାନନ ମିଶ୍ର ଏବଂ ଶେଷପାଞ୍ଚଟି ପାଇଁ ବରିଷ୍ଠ ଅଭିନେତା ରାଜେନ୍ଦ୍ରପ୍ରସାଦ ପଣ୍ଡା ନିର୍ଦ୍ଦେଶକ ଭାବରେ ଅନୁବନ୍ଧିତ ହେଲେ । ରେକର୍ଡିଂତାରିଖ ପାଖେଇ ଆସୁଥିବାବେଳେ ମୁଁ ତତ୍ପର ହୋଇପଡିଲି, ଲେଖିବାପୂର୍ବରୁ ଶିବପ୍ରସାଦ ଦାସଙ୍କ ସମ୍ବଲପୁର ଇତିହାସ, ଅନିରୁଦ୍ଧ ଦାସଙ୍କ ବୀର ସୁରେନ୍ଦ୍ରସାଏ, ଚିତ୍ତରଞ୍ଜନ ମିଶ୍ରଙ୍କ **Freedom Struggle of Western Orissa**, ଭଗବାନ ସାହୁଙ୍କ ବୀର ସୁରେନ୍ଦ୍ରସାଏ ଚୌହାନ ନାଟକ ଆଦି ପୁସ୍ତକମାନ ପଢାପଢ଼ିକରି ମାନସିକ ସ୍ତରରେ ନିଜକୁ ପ୍ରସ୍ତୁତ କରିଥିଲି । ଏହି ଧାରାବାହିକର ବିଭିନ୍ନ ଚରିତ୍ରପାଇଁ ପ୍ରାୟ ସମସ୍ତ

ଉଚ୍ଚକୋଟୀର କଳାକାରମାନଙ୍କୁ ଅଭିନୟପାଇଁ ଆକାଶବାଣୀ ତରଫରୁ ଅନୁବନ୍ଧିତ କରାଯାଇଥିଲା । ବୀର ସୁରେନ୍ଦ୍ରସାଏ ପାଇଁ ବରିଷ୍ଠ ଅଭିନେତା ମାନଭଞ୍ଜନ ହୋତାଙ୍କ ସହ ସୁଶୀଳ ମହାପାତ୍ର, ସତ୍ୟନାରାୟଣ ବେହେରା, ଦେବଗଡର ହେମନ୍ତ ମହାପାତ୍ର, ପ୍ରଦୀପ ପଣ୍ଡା, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, କୁଚିଣ୍ଡାର ସୁରଥ ନାୟକ, ସୁରେଶ ତ୍ରିପାଠୀ, ଅଶୋକ ମିଶ୍ର, ଜୀବର୍ଦ୍ଧନ ବାରିକ, ପ୍ରଫୁଲ୍ଲ ନାଥ, ବଲାଙ୍ଗିରର ସୁଧାଂଶୁଶେଖର ପଟ୍ଟନାୟକ, ବୃନ୍ଦାବନ ମିଶ୍ର, ରାମଚନ୍ଦ୍ର ସାହୁ, ପ୍ରଦ୍ୟୁମ୍ନ ଦାସ, ଅଜୟ ନାଥ, ପ୍ରଶାନ୍ତ ମହାରଣା, ସୁନ୍ଦରଗଡର ଦୁର୍ଗାପ୍ରସାଦ ଭୋଇ, କମଳା ସାହୁ, ନୂପୁର ଘୋଷ ଆଦି ନାଟ୍ୟଶିଳ୍ପୀମାନେ ବିଭିନ୍ନ ଚରିତ୍ରରେ ଅଂଶଗ୍ରହଣ କରିଥିଲେ । ଦଶଟି ଭାଗ ପାଇଁ ଦଶସପ୍ତାହର ରେକର୍ଡିଂ, ଦଶଟି ନାଟକପାଇଁ ଦଶ ସକାଳର ମାନସିକ ପରିଶ୍ରମର ଫଳ ସ୍ୱରୂପ ନାଟକମାନ ରେକର୍ଡିଂ ହୋଇ, ସମ୍ପାଦିତ ହୋଇ, ସଂଗୀତ ସଂଯୋଜିତ ହୋଇ ପ୍ରସାରଣ ଆରମ୍ଭହୋଇଗଲା । ପଞ୍ଚାନନ ମିଶ୍ରଙ୍କ ନିର୍ଦ୍ଦେଶନାରେ ପ୍ରଥମ ପାଞ୍ଚଟି ନାଟକ ପ୍ରସାରିତ ହେବା ପରେ ରାଜୁଦା ନିର୍ଦ୍ଦେଶନା ଦାୟିତ୍ୱ ଗ୍ରହଣକରିଥିଲେ । ରେକର୍ଡିଂ ସମୟରେ ଉପସ୍ଥିତ ରହିବା, ସନ୍ଦେହ ଦୂରିଭୁତ କରିବା, ରେକର୍ଡିଂକୁ ତ୍ୱରାନ୍ୱିତ କରିବା ଦାୟିତ୍ୱ ଥିଲା ମୋର । ଶ୍ରୋତାମାନଙ୍କ ବିପୁଳ ସମର୍ଥନରେ ନାଟକଗୁଡ଼ିକ ଉଚ୍ଚପ୍ରଶଂସିତ ହେବାରେ ଲାଗିଲା । ଶେଷ ଦୁଇ ଏପିସୋଡ୍ ପୂର୍ବରୁ ମୁଁ ନିଜେ ଚିନ୍ତା କରିଥିଲି, ଏତେ କଳାକାରଙ୍କ ଗହଣରେ ମୁଁ ମଧ୍ୟ ଏଭଳି ସ୍ମରଣୀୟନାଟକରେ ଭୂମିକାଟିଏରେ କଣ୍ଠ ଦିଅନ୍ତି । ଏଇଲୋଭରେ ପ୍ରଯୋଜକ ପଦ୍ମଲୋଚନଙ୍କ ସହ ଆଲୋଚନାକରି ତାଙ୍କ ସମ୍ମତିଆଣି ମୋ'ପାଇଁ ଏକ ଚରିତ୍ର ସୃଷ୍ଟିକରିଥିଲି, ଅସୀରଗଡ଼ ଦୁର୍ଗର ଜଗୁଆଳୀ ରୂପେ, ଯେଉଁଠି ସୁରେନ୍ଦ୍ରସାଏ ଜୀବନର ଶେଷପର୍ଯ୍ୟାୟରେ ଉପନୀତ ହୋଇଥାନ୍ତି । ମୁଁ ମୋ'ପାଇଁ ଏଭଳି ଏକ ଚରିତ୍ର ସୃଷ୍ଟିକରିବା ପଛରେ ଆଉଏକ ଭାବପ୍ରବଣତାର କାରଣ ମଧ୍ୟ ନିହିତ । ତାହାହେଲା ବରିଷ୍ଠ କଳାକାର ମାନଭଞ୍ଜନ ହୋତାଙ୍କ ସହ ନାଟକରେ ଅଂଶଗ୍ରହଣ କରି ଘଟଣାକୁ ସ୍ମରଣୀୟ କରିବା । ଶେଷଦିନର ରେକର୍ଡିଂବେଳେ, ଷ୍ଟୁଡିଓରେ ଥିଲୁ, ମାନବାବୁଙ୍କ ସଙ୍ଗେ ନିର୍ଦ୍ଦେଶକ ରାଜେନ୍ଦ୍ର ପ୍ରସାଦ ପଣ୍ଡା, ମୁଁ ଓ ପଦ୍ମଲୋଚନ ଦାସ । ପ୍ରଥମେ ରିହାର୍ସାଲ ହେଲା, ମାନବାବୁଙ୍କ ଆଖିରେ ଲୁହ କେବେ ଦେଖିନଥିଲି, ସୁରେନ୍ଦ୍ରସାଏଙ୍କ ମୃତ୍ୟୁ ବେଳର ସଂଳାପମାନ ଏତେ ଭାବପ୍ରବଣାତ୍ମକ ଓ ଜୀବନ୍ତ ଶୈଳୀରେ ଉଚ୍ଚାରଣକଲେ, ତାହା ବର୍ଣ୍ଣିବା ଅସମ୍ଭବ । ରାଜୁଦାଦାଙ୍କୁ ଆଉ କିଛି କହିବାପାଇଁ ପଡ଼ିନଥିଲା । ଜଗୁଆଳୀ ଚରିତ୍ରରେ ସୁରେନ୍ଦ୍ରସାଏଙ୍କ ସହ ଶେଷ କେଇ ପଦ କଥୋପକଥନ, ଏଯାଏଁ ମୋର ମନେ ଅଛି, ଅଶ୍ରୁଛଳଛଳ ନୟନରେ ମାନବାବୁ

ପ୍ରାୟ କାନ୍ଦକାନ୍ଦହୋଇ ସଂଳାପଗୁଡ଼ିକୁ ନିଜସ୍ୱଶୈଳୀରେ କହି ଶେଷଦୃଶ୍ୟ ସମାପନ କରିଥିଲେ । ସୁରେନ୍ଦ୍ରସାଏଙ୍କ ମୃତ୍ୟୁଦୃଶ୍ୟ ଯେଉଁ ଶ୍ରୋତାମାନେ ରେଡିଓରେ ଶୁଣିଥିବେ, ସେମାନେ ମଧ୍ୟ ଭାବଛଳଛଳ ହୋଇପଡିଥିବେ ।

ରେକର୍ଡିଂପରେ ମାନବାବୁ ମୋତେ କୁଣ୍ଢେଇପକାଇ କ୍ରନ୍ଦିତସ୍ୱରରେ କହିଥିଲେ, ଦ୍ୱାରିକା, ଭଲ ଲେଖିଛ, ସଂଳାପମାନ ଉଚ୍ଚକୋଟୀର ହୋଇଛି, ଆହୁରି ଲେଖ, ଆହୁରି ଲେଖ । ଏ ଧାରାବାହିକର ଅନେକ କଳାକାର ଆଜି ସ୍ୱର୍ଗବାସୀ ମାନବାବୁ, ସୁଶୀଳ ମହାପାତ୍ର, ଦୁର୍ଗାପ୍ରାସଦ ଭୋଇ, ସତ୍ୟନାରାୟଣ ବେହେରା, ପ୍ରଫୁଲ୍ଲ ନାଥ, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ମାର୍ଗନିର୍ଦ୍ଦେଶକ ପ୍ରଫେସର ଚିତ୍ତରଞ୍ଜନ ମିଶ୍ର, ନିର୍ଦ୍ଦେଶକ ରାଜେନ୍ଦ୍ର ପ୍ରସାଦ ପଣ୍ଡା । ସମସ୍ତେ ଆଜି ଆମ ଗହଣରୁ ଅନେକ ଦୂରେ ଅଲେହେଁଟା ପକ୍ଷୀପରି ଉଡ଼ିଗଲେ ଆରପାରିକୁ, ସମସ୍ତେ ମୋର ସ୍ମରଣୀୟ ।

ଉଲଗୁଲାନ୍ ପୁସ୍ତକଟି ଦୁଇହଜାର ଦଶ ମସିହାରେ ସ୍ଥାନୀୟ ପାନ୍ଥନିବାସ ପ୍ରକୋଷ୍ଠରେ ଉଭୟ ମାନବାବୁ ଓ ରାଜେନ୍ଦ୍ର ପଣ୍ଡା ଏକାସାଥିରେ ଉନ୍ମୋଚନ କରିଥିଲେ । ଏ ପୁସ୍ତକର ମୁଖପୃଷ୍ଠରେ ଡ. ମିଶ୍ର ଲେଖିଛନ୍ତି, ନାଟକଟିର ଭାଷା ସରଳ, ଅଥଚ ଭାବରେ ଉଚ୍ଚାଙ୍ଗ, ଏହା ଯେ କୌଣସି ପାଠକର ହୃଦବୋଧ ହେବ । କାରଣ, ସ୍ୱଚ୍ଛହୃଦୟରୁ ସୃଷ୍ଟି ହୋଇଥିବା ଯୋଗୁଁ, ଏହା ସିଧାସଳଖ ପାଠକଙ୍କ ହୃଦୟକୁ ସ୍ପର୍ଶକରିବ । ଶୈଳୀ ଓ ପରିବେଷ୍ଟନୀ ଦୃଷ୍ଟିରୁ ଏହି ନାଟକଟି ଲେଖକଙ୍କ ଏକ ଅବିସ୍ମରଣୀୟ ସୃଷ୍ଟି । ଏସବୁ ଘଟଣାମାନ ମୋ'ପାଇଁ ଉତ୍ସାହପ୍ରଦ, ଅଞ୍ଚଳପାଇଁ ଐତିହାସିକ ଗୁରୁତ୍ୱ ବହନ କରିବା ସ୍ୱାଭାବିକ । ମନେରଖିଲା ଭଳି ଘଟଣାମାନ ଏବେବି ଜୀବନ୍ତ ହୋଇଉଠେ, ସେବେଳର ପରିଶ୍ରମ, ଚିନ୍ତନ, ଯେତିକି କୌତୂହଳମୟ, ସେତିକି ରୋମାଞ୍ଚକର ! ! !



ଆକାଶବାଣୀ ସମ୍ବଲପୁରସହ ସମ୍ପୃକ୍ତହେବା ଦିନଠାରୁ ଏହି ଅନୁଷ୍ଠାନର କୌଣସି କର୍ମକର୍ତ୍ତାଙ୍କସହ କିମ୍ବା ପଦସ୍ଥ ଅଧିକାରୀଙ୍କ ସହ କେବେବି କୌଣସି ମନାନ୍ତର, ମତାନ୍ତର ହୋଇନାହିଁ ଆଜିଯାଏଁ । ଆକାଶବାଣୀର ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶଗ୍ରହଣକରି ମୁଁ ଅପାର ଆନନ୍ଦ ପାଉଛି । ବିଭିନ୍ନ କାର୍ଯ୍ୟକ୍ରମଅଧିକାରୀମାନେ ମଧ୍ୟ ମୋ ପ୍ରତିଭାକୁ ନେଇ ବହୁ ପରୀକ୍ଷାନୀରିକ୍ଷା କରି ସଫଳହୋଇଛନ୍ତି । ଅଣାଅଶୀ ମସିହାରେ ପ୍ରଥମକରି ନାଟକବିଭାଗର ଜନୈକ ସ୍ୱୀକୃତିପ୍ରାପ୍ତ କଳାକାର ହେବା

ପୂର୍ବରୁ ମୁଁ ହାଇସ୍କୁଲ ଛାତ୍ର ଭାବରେ କିଶୋରସଂସାର, କଲେଜଛାତ୍ର ଭାବରେ ଯୁବବାଣୀ ଏବଂ ପରେ ନାଟ୍ୟଶିଳ୍ପୀ ଭାବରେ ନାଟକ ବିଭାଗରେ ଅଂଶଗ୍ରହଣ କରିଛି । ତେଣୁ ଆକାଶବାଣୀ ସମ୍ବଲପୁରସହ ମୋର ସମ୍ପର୍କ ଅର୍ଦ୍ଧଶତାବ୍ଦୀରୁ ଅଧିକ କହିଲେ ଭୁଲହେବ ନାହିଁ । ନାଟକଗୁଡ଼ିକରେ କଣ୍ଠଦାନ ସହ ନାଟ୍ୟକାର ଭାବରେ ନାଟକ, ସଂଗୀତ ନାଟକ, ସଂଗୀତ ରୂପକ, ବିଭିନ୍ନ ସଂଗୀତ ଧାରାବାହିକର ବର୍ଣ୍ଣନା ରଚୟିତା, ଲୋକସାହିତ୍ୟର ଗବେଷକ ଭାବରେ ଗବେଷଣାତ୍ମକ କାର୍ଯ୍ୟକ୍ରମର ଲେଖକ, ଶୀତଳଷଷ୍ଠୀ, ଗଙ୍ଗାଧର ଜୟନ୍ତୀଭଳି କାର୍ଯ୍ୟକ୍ରମର ପ୍ରତ୍ୟକ୍ଷଦର୍ଶୀ ଧାରାବିବରଣୀର ଉଦ୍‌ଘୋଷକ, ଘରୋଇ ନାଟ୍ୟପ୍ରଯୋଜକ, ନାଟ୍ୟନିର୍ଦ୍ଦେଶନା, ଆକାଶବାଣୀ ବାର୍ଷିକ ପୁରସ୍କାରପାଇଁ ଯାଉଥିବା କାର୍ଯ୍ୟକ୍ରମପାଇଁ ଲେଖାସହ କଣ୍ଠଦାନ, ମଞ୍ଚକାର୍ଯ୍ୟକ୍ରମର ଉଦ୍‌ଘୋଷକଭଳି ଅନେକ ସ୍ୱାଦର କାର୍ଯକ୍ରମରେ ନିଜକୁ ନିୟୋଜିତକରି ଅସୀମ ଆତ୍ମସନ୍ତୋଷ ପାଇପାରିଛି । ତେଣୁ, ମୋର ସାଂସ୍କୃତିକ ଜୀବନରେ ଆକାଶବାଣୀର ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଭୂମିକାରହିଛି, ଏହା ଅକୁଣ୍ଠ ଚିତ୍ତରେ ମୁଁ ସ୍ୱୀକାର କରୁଛି ।

ରାଉରକେଲା, ବଲାଙ୍ଗିର, କଳାହାଣ୍ଡି, ସୋନପୁର, ସମ୍ବଲପୁର ଆଦି ସହରର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେଇଥିଲେ, କାର୍ଯ୍ୟକର୍ତ୍ତାମାନେ ମୋର ପରିଚୟ ଦେବାବେଳେ ଆକାଶବାଣୀର ବିଶିଷ୍ଟକଳାକାର ଭାବରେ ପରିଚିତ କରାଇଥାନ୍ତି, ଯାହା ଶୁଣିଲେ ସେହିଅଞ୍ଚଳରେ ଆକାଶବାଣୀ ସମ୍ବଲପୁରର କେତେକ ଲୋକପ୍ରିୟତା ଅଛି, ତାହା ମୁଁ ଅନୁଭବ କରିଥାଏ । ପଦ୍ମଲୋଚନ ଦାସ ନବେଦଶକରେ କାର୍ଯ୍ୟକାରୀ ନିଷ୍ପାଦକ ଭାବରେ ଅଧିଷ୍ଠିତ ଥିବା ବେଳେ ମୋ ରଚିତ ସମ୍ବଲପୁରୀ ସଂଗୀତ ରୂପକ 'ମାଟିପାନିର୍ କଥା' ନାମରେ ଏକ ସାଂଗୀତିକ କାର୍ଯ୍ୟକ୍ରମ ରେକର୍ଡିଂ ହୋଇ ଆକାଶବାଣୀ ବାର୍ଷିକ ପୁରସ୍କାରପାଇଁ ମନୋନୀତ ହୋଇ ଜୁରୀମାନଙ୍କ ସ୍ୱତନ୍ତ୍ର ପୁରସ୍କାର ପାଇଥିଲା । ପି.ଏଚ.ଡି. ଡିଗ୍ରୀ ପାଇଁ କ୍ଷେତ୍ରଅଧ୍ୟୟନ ସମୟରେ ସଂଗ୍ରହକରିଥିବା କେତେକ ଲୋକଗୀତଗୁଡ଼ିକୁ ନେଇ ତାକୁ ନାରୀ ଜୀବନର ଶୈଶବଠାରୁ ଜୀବନର ଅନ୍ତିମକାଳ ପର୍ଯ୍ୟନ୍ତ ଗ୍ରାମୀଣ ଜୀବନରେ ଘଟୁଥିବା ବିଭିନ୍ନ ଘଟଣାକୁ ଏହି କାର୍ଯ୍ୟକ୍ରମରେ ନାଟିକା ମାଧ୍ୟମରେ ପ୍ରଦର୍ଶିତ କରାଯାଇଥିଲା । ନାଟକରେ ମିତବାପାର ଭୂମିକାରେ ଉତ୍ତମ ବେହେରା ଓ ନାତୁଣୀ ଭୂମିକାରେ ମାନସୀ ନନ୍ଦ କଣ୍ଠଦାନ କରିଥିଲେ । କାହାଣୀଟି ଶଗଡ଼ରେ ବସି ମିତବାପା ଓ ନାତୁଣୀ ଯାଉଥିବା ବେଳର ହୋଇଥିବା କାର୍ଯ୍ୟକ୍ରମ ପାଇଁ ଶଗଡ଼ଯାଉଥିବା ଶବ୍ଦର ଆବଶ୍ୟକତା ପଡ଼ିଥିଲା । ପଦ୍ମଲୋଚନଙ୍କ ଅନୁରୋଧରେ ମୁଁ ତାଙ୍କୁ ସଙ୍ଗରେ ନେଇ ଆମ ଗାଁ

ପଡ଼ିଆବାହାଲ ରାସ୍ତାର କେନଘାଟିପାଖରେ ପଣ୍ଡୁପାଲିକୁ ଯାଇ, ଆମ ଜମି ଯାହାକୁ କରଖଟିବା ପାଇଁ ଦିଆଯାଇଥିଲା, ତାକୁ କହିବୋଲି ଶଗଡ଼ ବାହାର କରାଯାଇଥିଲା ଏବଂ ପଦ୍ମ ଟେପ ରେକର୍ଡର ଧରି ଶଗଡ଼ ଉପରେ ବସି ବଳଦଙ୍କ ବେକର ଘୋଗଡ଼ ଶବ୍ଦ ସହ ଚକଗଡ଼ିବାର ଶବ୍ଦଗ୍ରହଣ କରିଥିଲେ । ଆମେ ଦୁହେଁ ଶଗଡ଼ ବସିବାର ମଜା ଭି ଲୁଟିଥିଲୁ । ଏହି କାର୍ଯ୍ୟକ୍ରମର ସଂଗୀତଗୁଡ଼ିକ ପାଇଁ ଫକୀର ପଟ୍ଟନାୟକ, ଜିତେନ୍ଦ୍ରୀୟ ହରିପାଲ, ବିଭୂତିଭୂଷଣ ପଟ୍ଟନାୟକ, ଶଙ୍କର ଦତ୍ତ, କ୍ରିଷ୍ଣା ପଟେଲ ଭଳି ଉଚ୍ଚକୋଟିର କଳାକାରମାନେ କଣ୍ଠଦାନ କରିଥିଲେ । ବିଭୂତି ପଟ୍ଟନାୟକ ଓ ଜିତେନ୍ଦ୍ରୀୟ ହରିପାଲ ଗାଇଥିବା ଦ୍ୱୈତକଣ୍ଠର ନଟନିଆ ଗୀତ ଆଜି ବି ମନେ ଅଛି, ଖୁବ୍ ଜମାଣିଆ ହୋଇଥିଲା । କାର୍ଯ୍ୟକ୍ରମର ସଂଗୀତ ନିର୍ଦ୍ଦେଶକ ଥିଲେ ସ୍ୱର୍ଗତ ପ୍ରଭୁଦତ୍ତ ପ୍ରଧାନ । ଏହାପରେ ଆଉ ଗୋଟାଏ ବର୍ଷରେ ବଦ୍ରିନାରାୟଣ ମିଶ୍ରଙ୍କ ଅନୁରୋଧରେ ଅନ୍ୟଏକ କାର୍ଯ୍ୟକ୍ରମପାଇଁ ଶିଶୁଶ୍ରମିକ ବିଷୟରେ ଲେଖାଟିଏ ଚାହିଁଲେ । ତାଙ୍କପାଇଁ ଲେଖିଲି, 'ସେବ୍ତୀ' ଶୀର୍ଷକରେ ଏକ କ୍ଷୁଦ୍ରନାଟିକା । ଏଥିରେ ମଧ୍ୟ ଦୁଇଚାରିଟା ଗୀତ ଥିଲା । ଶିଶୁଶ୍ରମିକ ସେବ୍ତୀ ଚରିତ୍ରପାଇଁ ପ୍ରାଚୀ ଦାସ, ନାଟ୍ୟନିର୍ଦ୍ଦେଶକ ଭବାନୀଶଙ୍କର ଦାସଙ୍କ ଝିଅ ବହୁସୁନ୍ଦର ଅଭିନୟ କରିଥିଲେ । ପ୍ରଭୁଦତ୍ତ ଆଜ୍ଞାଙ୍କ ସଂଯୋଜିତ ସ୍ୱରର ଗୀତମାନ ଖୁବ୍ ସୁନ୍ଦର ହୋଇଥିଲା । ସେବ୍ତୀ, ସେହିବର୍ଷ ଜାତୀୟସ୍ତରରେ ଆକାଶବାଣୀ ବାର୍ଷିକପୁରସ୍କାରରେ ଦ୍ୱିତୀୟ ଶ୍ରେଷ୍ଠପୁରସ୍କାରରେ ମଣ୍ଡିତ ହୋଇଥିଲା । ସେବ୍ତୀ ପୁରସ୍କୃତ ହେବାପରେ ବିଭିନ୍ନ ବର୍ଷମାନଙ୍କରେ ଅଧିକାରୀମାନେ ମୋ'ରଚିତ ଲେଖାମାନ ଚାହିଁଲେ ଓ ସେମାନଙ୍କ ରଚିମୁତାବକ ମୁଁ ସଂଗୀତ ନାଟକ, ସଂଗୀତ ରୂପକମାନ ଲେଖି ଜଣେ ଗୀତିକାରର ମାନ୍ୟତା ପାଇବା ସଂଗେ ସଂଗୀତନାଟକର ରଚୟିତା ଭାବରେ ପରିଚିତ ହୋଇଗଲି ।

ମୋ ରଚିତ 'ନୂଆଁ ଜନମ୍' ଶୀର୍ଷକର ଏକ କ୍ଷୁଦ୍ର ନାଟକ ପ୍ରଯୋଜକ ବଦ୍ରିନାରାୟଣ ମିଶ୍ରଙ୍କ ପରିଚାଳନାରେ ପ୍ରସାରିତ ହୋଇଥିଲା, ଏହା ମଧ୍ୟ କୃଷି ବିଭାଗର ଏକ କାର୍ଯ୍ୟକ୍ରମ ଭାବରେ ଜାତୀୟ ସ୍ତରରେ ଦ୍ୱିତୀୟ ଶ୍ରେଷ୍ଠ ପୁରସ୍କାର ପାଇଥିଲା । ବାର୍ଷିକ ପୁରସ୍କାର ପାଇଁ ତ ସେମିତି ଅନେକ ଲେଖାଲେଖିଛି । ତେବେ ପ୍ରଦୀପ୍ତ ଶ୍ରୀଚନ୍ଦନଙ୍କ ପାଇଁ ଲେଖିଥିବା 'ଆଁଖଲ୍', ଶୀର୍ଷକର ସଂଗୀତ ରୂପକ ଜାତୀୟସ୍ତରରେ ସର୍ବଶ୍ରେଷ୍ଠ ପୁରସ୍କାର ପାଇବା ମୋ ଆକାଶବାଣୀ ଜୀବନର ଏକ ବଡ଼ଘଟଣା ବୋଲି ମୁଁ ମନେକରେ । ଶ୍ରୀଚନ୍ଦନବାବୁ ଜଣେ ସର୍ଜନଶୀଳ ବକ୍ତିତ୍ୱ, ତାଙ୍କସହ ମୋର ନିବିଡ଼ସମ୍ପର୍କ କେବଳ କାର୍ଯ୍ୟକ୍ରମ ପ୍ରସ୍ତୁତିକୁ ନେଇ ଗଢ଼ିଉଠିଥିଲା । ସମ୍ବଲପୁରୀ

ଭାଷାକୁ ଭଲ ପାଉଥିବା ଶ୍ରୀଚନ୍ଦନବାବୁ ନଭେମ୍ବର ଆସିଗଲେ ମୋତେଡାକି ତାଙ୍କ ଚିନ୍ତାଧାରା ଓ ରୁଚିର କଥା, ସେ କେଉଁ ପ୍ରକାର ଲେଖା ଚାହୁଁଛନ୍ତି, ସମସ୍ତବିଷୟରେ ମୋ ସହ ଆଲୋଚନାକରି ଲେଖା ଚାହୁଁଥିଲେ । ମୁଁ ତାଙ୍କ ମାନସିକତାକୁ ସମ୍ମାନ ପୂର୍ବକ ତାଙ୍କ କଳ୍ପନାସହ ମୋର ସର୍ଜନଶୀଳ ଚିନ୍ତାର ସମ୍ମିଶ୍ରଣରେ ସଂଗୀତ ରୂପକ ରଚନା କରୁଥିଲି । ଶ୍ରୀଚନ୍ଦନବାବୁଙ୍କ ପ୍ରଯୋଜିତ ସମସ୍ତ କାର୍ଯ୍ୟକ୍ରମର ମୂଳରୁ ସମ୍ପାଦନାର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ନିଜର ଉପସ୍ଥିତି ଦେଉଥିଲି । 'ଆଁଖଲ' ରୂପକଟି ନାରୀଜୀବନର ଯନ୍ତ୍ରଣାଦଗ୍ଧ କାହାଣୀ ଉପରେ ଆଧାରିତ ଏକ ଅଭିନବ କାର୍ଯ୍ୟକ୍ରମ ଥିଲା । ସଂଗୀତ ନିର୍ଦ୍ଦେଶକ ବନ୍ଧୁ ପ୍ରଫୁଲ୍ଲ ମିତ୍ରଙ୍କ ସ୍ୱରସଂଯୋଜନାରେ ଏହି କାର୍ଯ୍ୟକ୍ରମ ଗୀତମାନ ଚମତ୍କାର ହୋଇଥିଲା । ନାରୀ ଜୀବନରେ କ୍ରନ୍ଦନର ଭୂମିକା ବିଷୟରେ ଏକ ଅଭିନବ କାର୍ଯ୍ୟକ୍ରମ ହୋଇପାରେ, ଏହା ଅସମ୍ଭବ ମନେହେଉଥିଲେ ହେଁ 'ଆଁଖଲ୍' ରୂପକଟି ତାହାର ସଫଳତମ ଜ୍ୱଳନ୍ତ ଉଦାହରଣ । ଆକାଶବାଣୀ ସମ୍ବଲପୁରର ସୁବର୍ଣ୍ଣଜୟନ୍ତୀ ଉତ୍ସବ ବେଳେ ଏହି କାର୍ଯ୍ୟକ୍ରମର ମାନପତ୍ର ତତ୍କାଳୀନ ଜିଲ୍ଲାପାଳ ବଲୱନ୍ତ ସିଂଙ୍କ ହସ୍ତରୁ ଗ୍ରହଣକରିଥିଲି । ପୁରସ୍କାର ପାଇ ନଥିବା ମୋ ଲେଖା 'ସହନୀ', 'ଦୃଷ୍ଟିକୋଣ', 'ଘାତ୍', 'ଶକ୍ତିମୟି' ଆଦି ଆହୁରି ସଂଖ୍ୟାଧିକ କାର୍ଯ୍ୟକ୍ରମ ମଧ୍ୟ ଶ୍ରୋତାମାନଙ୍କ ସମର୍ଥନ ପାଇଥିଲା । ସହନୀ ଓ ଘାତ୍‌ର ଗୀତଗୁଡ଼ିକୁ ବନ୍ଧୁ ପ୍ରଫୁଲ୍ଲ ମିତ୍ର ଖୁବ୍‌ସୁନ୍ଦର ଭାବରେ ସଜାଇଥିଲେ । ବିଶେଷ ଭାବରେ 'ତତେ ମୁଇଁ ଛିନି ଆନମି', ଗୀତଟି ରେକର୍ଡିଂ ହେଲାବେଳୁ ମୋ ତୁଣ୍ଡରେ ରହିଯାଇଛି । ଏହାକୁ ଗାଇଥିଲେ ଗଗନ ବାଗ ଓ ମୀନତି ପାଣିଗ୍ରାହୀ ।

କାର୍ଯ୍ୟକ୍ରମ ନିଷ୍ପାଦକ ମୁରଲୀଧର ପଣ୍ଡା ମଧ୍ୟ ମୋର କିଛି ଲେଖା ପୁରସ୍କାର ପାଇଁ ପଠାଇଥିଲେ । ନାଟକ 'କେତେ ଦୂରେ ମୋର ଆକାଶ', ମଙ୍ଗଳୁଚରଣଙ୍କ 'ଛଏଲୀ' ଆଦି ଏହି ପୁରସ୍କାର ପାଇଁ ପ୍ରସ୍ତୁତ ହୋଇଥିଲା । ପୂର୍ବରୁ ସହକାରୀ କେନ୍ଦ୍ର ନିର୍ଦ୍ଦେଶକ ଶ୍ରୀ ଚୌଧୁରୀ, ସନ୍ତୋଷ ପିଙ୍ଗ, ମୁରଲୀଧର ପଣ୍ଡା, ପଦ୍ମଲୋଚନ ଦାସ, ବଦ୍ରିନାରାୟଣ ମିଶ୍ରଙ୍କ ସହ ଏହିଭଳି ବିଭିନ୍ନ କାର୍ଯ୍ୟକ୍ରମରେ ନିଜକୁ ସାମିଲକରି ମୁଁ ଧନ୍ୟହୋଇଛି ।

ପଞ୍ଚାନନବେରେ ଅଭୟ ପାଢ଼ୀ କେନ୍ଦ୍ର ନିର୍ଦ୍ଦେଶକ ଥିବାବେଳେ ପ୍ରଥମକରି ମୁଁ ସମ୍ବଲପୁରରେ ଆୟୋଜିତ ବିରାଟ ଶୀତଳଷଷ୍ଠୀ ଯାତ୍ରାର ପ୍ରତ୍ୟକ୍ଷଦର୍ଶୀ ଧାରାବିବରଣୀର ଉଦ୍‌ଘୋଷକ ଭାବରେ ମନୋନୀତ ହୋଇଥିଲି ଏବଂ କ୍ରମାଗତ ଭାବରେ ବାଇଶ ବର୍ଷ ଏହିକାର୍ଯ୍ୟରେ ଲିପ୍ତ ରହିଥିଲି । ଆରମ୍ଭବର୍ଷ ପ୍ରଫେସର ମଧୁସୂଦନ ପତି, ଗୁରୁ

ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ଡ. କିରଣବାଳା ରଥଙ୍କ ସହିତ ଶୀତଳଷଷ୍ଠୀର ଧାରାବିବରଣୀ ପ୍ରଦାନ କରିଥିଲି । କେବେ ଗୋଲବଜାର ଛକସ୍ଥିତ ଦୁର୍ଗାମଣ୍ଡପ ଉପର ବେଲକନୀ, କେବେ ପୀରବାବା ଛକ ସ୍ଥିତ ମନ୍ଦିରଉପର, କେବେ ତା ସାମ୍ନାର ମୁସଲମାନ ଅନାଥ ଧର୍ମଶାଳା ଉପର, କେବେ ବୈଦ୍ୟନାଥଛକ ଧର୍ମଶାଳା ଉପରେ, ପୁଣି କେବେ ଗୋଲବଜାର ଆରାଧନା ଲଜ୍‌ର ବେଲକନୀ ଆଦି ସ୍ଥାନରେ ପ୍ରଚଣ୍ଡ ଗ୍ରୀଷ୍ମରେ ମଧ୍ୟ ଏଭଳି ଧାରାବିବରଣୀ ପ୍ରଦାନ କରିବାକୁ ପଡିଛି ।

ଶଶୀଭୂଷଣ ଦାସ, ପଦ୍ମଲୋଚନ ଦାସ, ଭାଗିରଥି ମିଶ୍ର, ମୁରଲୀଧର ପଣ୍ଡା, ଲକ୍ଷ୍ମଣ ପଣ୍ଡା, ପ୍ରଦୀପ୍ତ ଶ୍ରୀଚନ୍ଦନ, ଇଂଜିନିୟର ଶ୍ରୀ ରାଓ, ବଦ୍ରିନାରାୟଣ ମିଶ୍ର, ପ୍ରଫୁଲ୍ଲ ମାଝୀ, ରନ୍ଦିପ ପ୍ରଧାନ ଆଦି ଅଧିକାରୀମାନଙ୍କ ସହ ଏହି କାର୍ଯ୍ୟକ୍ରମକୁ ନେଇ ସମ୍ମିଳିତଭାବରେ କରିଥିବା ଧାରାବିବରଣୀ ଭଳି ପ୍ରସାରଣରେ ବିପୁଳ ଆନନ୍ଦ ମିଳିଛି । ବର୍ଷେ ଅତିଶୟ ବର୍ଷା ହେବାରୁ ଯାତ୍ରା ସମ୍ଭବ ହୋଇ ନଥିଲା । କେନ୍ଦ୍ର ନିର୍ଦ୍ଦେଶକ ଥିଲେ ଅଭୟ ପାଢ଼ୀ ମହାଶୟ । ମୋ ସହ ଉଦ୍‌ଘୋଷକ ଥିଲେ ପ୍ରଫେସର ମଧୁସୂଦନ ପତି, ନାରାୟଣ ପୃଷେଠ, କିରଣବାଲା ମେଡମ, ଗୋବିନ୍ଦ ଉଦ୍‌ଗାତା ସାର୍ । ଆଗରୁ ଚୁକ୍ତିବଦ୍ଧ ହୋଇଥିବାରୁ ରେଡିଓ ପ୍ରସାରଣକୁ ବନ୍ଦ କରାଯାଇପାରିଲା ନାହିଁ । ପାଢ଼ୀ ବାବୁଙ୍କ ପ୍ରସ୍ତାବ ଅନୁସାରେ ଆମେ ସମସ୍ତେ ଷ୍ଟୁଡିଓକୁ ଯାଇ ଶୀତଳଷଷ୍ଠୀର ଐତିହ୍ୟ ସମ୍ପର୍କରେ ଆଲୋଚନା କରିଥିଲୁ, ଯାହା ସିଧା ପ୍ରସାରଣ ହୋଇଥିଲା । ଆଉବର୍ଷେ ପ୍ରଚଣ୍ଡଗ୍ରୀଷ୍ମ ଯୋଗୁଁ ଜିଲ୍ଲାପାଳଙ୍କ ନିର୍ଦ୍ଦେଶ ଅନୁସାରେ ଶୀଘ୍ର ଧାରାବିବରଣୀ ସାରିବା ନିର୍ଦ୍ଦେଶ ପାଇଥିଲୁ । ସେହି ବର୍ଷ ମୋ ସହ ଡ. ପଞ୍ଚାନନ ମିଶ୍ର ମଧ ଥାଆନ୍ତି । ଆମ ଆଖିଆଗରେ ଅଂଶୁଘାତରେ ଟଳି ପଡୁଥିଲେ ଲୋକେ । ସେଦିନ ରାଜଘାଟରେ ସତେଇଶଟି ଶବ ସତ୍କାର ହୋଇଥିବାର ଜଣାପଡିଥିଲା । ସାଢ଼େ ଏଗାରଟା ସୁଦ୍ଧା ପ୍ରସାରଣ କାର୍ଯ୍ୟ ସମାପନକରି ଯଥାଶୀଘ୍ର ଘରକୁ ପଳେଇଯାଇଥିଲୁ । ଦୁଇହଜାର ତିନି କି ଚାରି ବର୍ଷରେ ଧାରାବିବରଣୀ କାର୍ଯ୍ୟ ଘରକୁ ଫେରିବା ବେଳେ ମୁଁ ମଧ ସାମାନ୍ୟ ଅଂଶୁଘାତର ଶିକାର ହୋଇଥିଲି । ସୁସ୍ଥ ହେବାପାଇଁ ଦୁଇଦିନ ସମୟ ଲାଗିଗଲା । ଚଳିତବର୍ଷ ମଧ କରୋନା ପାଇଁ ଧାରାବିବରଣୀ କାର୍ଯ୍ୟ ବନ୍ଦ ରହି ଷ୍ଟୁଡିଓ ଭିତରେ ଏକ ସଂଗୋଷ୍ଠୀ ଆୟୋଜିତ ହୋଇଥିଲା । ମୋ ସହ ଡ. ଶ୍ୟାମସୁନ୍ଦର ଧର ଓ ଡ. ପଞ୍ଚାନନ ମିଶ୍ର ଏଥିରେ ଅଂଶଗ୍ରହଣ କରିଥିଲେ । ମୋ ପୂଜ୍ୟ ଗୁରୁ ଡ. ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କ ଠାରୁ ଆରମ୍ଭକରି ବିଭିନ୍ନବର୍ଷରେ ପ୍ରଫେସର ମଧୁସୂଦନ ପତି, ନାରାୟଣ ପୃଷେଠ, ମଙ୍ଗଳଚରଣ ବିଶ୍ୱାଳ, ଡ. ଆଦିକନ୍ଦ ସାହୁ, ଅଶୋକ ଦାସ, ଭରତ ପୂଜାରୀ,

ଶିବନାରାୟଣ ଶତପଥୀ, ଡ. କିରଣବାଲା ରଥ, ପ୍ରଭାତୀ ରଥ, ସ୍ୱର୍ଣ୍ଣମୟୀ ପୁରୋହିତ, ଶ୍ୟାମସୁନ୍ଦର ଧର, ପ୍ରଦୀପ ପଣ୍ଡା, ବବ୍ରୁବାହନ ମହାପାତ୍ର, ସଂଘମିତ୍ରା ମିଶ୍ର, ତୁଳସୀ ରଥ, ଗୌରୀଦାସ ପ୍ରଧାନ ଆଦି ସହ-ଉଦ୍‌ଘୋଷକମାନଙ୍କ ସହିତ ଧାରାବିବରଣୀ ପ୍ରଦାନଭଳି ମୁହୂର୍ତ୍ତମାନଙ୍କୁ ଉପଭୋଗ କରିବାର ସୁଯୋଗକୁ ହାତଛଡା କରିନି, ଧାରାବିବରଣୀରେ ମୋର ଦକ୍ଷତାକୁ ସମ୍ମାନପୂର୍ବକ ପରିଚାଳନା ଦାୟିତ୍ୱରେ ଥିବା ଅଧିକାରୀମାନେ ମୋତେ ଉଦ୍‌ଘୋଷଣା ଆରମ୍ଭ ଓ ଶେଷ କରିବାକୁ କହୁଥିଲେ । ଶୀତଳଷଷ୍ଠୀ ଧାରାବିବରଣୀ ମୋ ପରିଚୟକୁ ମାର୍ଜିତ କରିଛି, ଗାମ୍ଭିର୍ଯ୍ୟପୂର୍ଣ୍ଣ କରିଛି, ମୋ ସ୍ୱତଃସ୍ଫୂର୍ତ୍ତ ଭାଷାଦଖଲକୁ ଆହୁରି ସ୍ୱଚ୍ଛ ତଥା ପରିମାର୍ଜିତ କରିଛି ।

ପଦ୍ମଲୋଚନ ଦାସ ସଂଗୀତ ବିଭାଗର କାର୍ଯ୍ୟକ୍ରମ ଅଧିକାରୀ ଥିବାବେଳେ ସ୍ଥାନୀୟ ଅଶୋକା ଟକିଜ୍ ପ୍ରେକ୍ଷାଳୟରେ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଜୟନ୍ତୀ ପାଳିତ ହୋଇଥିଲା । ଏହି କାର୍ଯ୍ୟକ୍ରମରେ ଗଙ୍ଗାଧରଙ୍କୁ ନେଇ ଏକ ନାଟିକା, ଆଉ ରାଉରକେଲାରୁ ଆସିଥିବା ଏକ ସାଂସ୍କୃତିକ ଦଳଙ୍କ ନୃତ୍ୟନାଟକ ପରିବେଷିତ ହୋଇଥିଲା । ପଦ୍ମ ଚାହିଁଲେ ଏହି ସମଗ୍ର କାର୍ଯ୍ୟକ୍ରମର ସିଧାପ୍ରସାରଣ । ତେଣୁ ଏଇଥିପାଇଁ ମୋତେ ଅନୁବନ୍ଧିତକଲେ ରେଡିଓ ଉଦ୍‌ଘୋଷକ ଭାବରେ । ଏହି ଅନୁଭୂତିଥିଲା ନିଆରା ଓ ଶିକ୍ଷଣୀୟ । ପରଦା ପଛପଟେ ରହି ମଞ୍ଚରେ ପରିବେଷିତ ସମସ୍ତ କାର୍ଯ୍ୟକ୍ରମକୁ ବର୍ଣ୍ଣନା ମାଧ୍ୟମରେ ଉପସ୍ଥାପନ କରିବାର ଦାୟିତ୍ୱଥିଲା ମୋର । କାର୍ଯ୍ୟକ୍ରମ ଆରମ୍ଭ ମୋ'ଠାରୁ ଏବଂ ଶେଷ ମଧ୍ୟ ମୋ'ଠାରେ । ଆକାଶବାଣୀ ପରିବେଷିତ କାର୍ଯ୍ୟକ୍ରମରେ ଗଙ୍ଗାଧରଙ୍କ ଭୂମିକାରେ ଅଭିନୟ କରୁଥିଲେ ସ୍ୱୟଂ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ଏବଂ ଅନ୍ୟ ଚରିତ୍ରରେ କବି ଦେବୀଦାସ ମିଶ୍ର । ଏଭଳି ଏକ ଅଭିନବ ଦାୟିତ୍ୱକୁ ସଫଳ ଭାବରେ ଉପସ୍ଥାପନ କରିବାରୁ ପଦ୍ମଲୋଚନ ଖୁବ୍ ଆଶ୍ୱସ୍ତ ହୋଇଥିଲେ । ସିଧାପ୍ରସାରଣର ଏହି ନିଆରା ତଥା ସ୍ମରଣ ଯୋଗ୍ୟ ଅନୁଭୂତି ମୋର ସାଂସ୍କୃତିକ ଜୀବନକୁ ବଳିଷ୍ଠ କରିପାରିଥିଲା ।

ମଙ୍ଗଳୁଚରଣ ବିଶ୍ୱାଳଙ୍କ ରଚିତ ମଞ୍ଚନାଟକ ସୁନ୍ଦରସାଏର ରେକର୍ଡିଂପରେ କାର୍ଯ୍ୟକ୍ରମ ଅଧିକାରୀ ବନ୍ଧୁ ଭାଗିରଥୀ ମିଶ୍ରଙ୍କ ସହିତ ଏ ନାଟକର ସମ୍ପାଦନା କାର୍ଯ୍ୟ ପ୍ରାୟ ପାଞ୍ଚୋଟି ସକାଳ ଲାଗିଥିଲା । ଆମେ ଦୁହେଁ ଷ୍ଟୁଡିଓରେ ଅଧିକରୁ ଅଧିକ ସମୟ ବିନିଯୋଗକରି ଏଭଳି ସମ୍ପାଦନା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲୁ । ଭାଗିରଥିଙ୍କ ପ୍ରଚଣ୍ଡ ପରିଶ୍ରମ ଓ ଧୈର୍ଯ୍ୟର ଫଳସ୍ୱରୂପ ସୁନ୍ଦରସାଏ ନାଟକଟି ସଫଳତାର ଶୀର୍ଷ ସ୍ଥାନକୁ ଉନ୍ନିତ ହୋଇପାରିଥିଲା । ପ୍ରତ୍ୟେକ ବର୍ଷ ସୁରେନ୍ଦ୍ରସାଏଙ୍କ ଜୟନ୍ତୀ ତିଥିରେ

ଏହି ନାଟକ ଏ ଯାଏଁ ପ୍ରସାରିତ ହୋଇ ଶ୍ରୋତାମାନଙ୍କ ମନୋରଞ୍ଜିତ କରୁଛି । ଏହି ନାଟକଟି ମୋ ରେଡିଓ ଜୀବନର ଅନ୍ୟତମ ଶ୍ରେଷ୍ଠ ପ୍ରଯୋଜନା ବୋଲି ମୁଁ ମନେକରେ । ଏଥିରେ ମୁଁ ଏକ ବ୍ରିଟିଶ୍ କେପ୍‌ଟେନ୍ ଭୂମିକାରେ କଣ୍ଠଦାନ କରିଥିଲି, ଯାହା ମଞ୍ଚନାଟକରେ ନଥିଲା ।

ଆକାଶବାଣୀ ସହ ମୋର ମର୍ଯ୍ୟାଦାସମ୍ପନ୍ନ ସମ୍ପର୍କ ମୋର କଣ୍ଠସ୍ୱରକୁ, ଭାଷାଜ୍ଞାନକୁ, ଲେଖନୀପ୍ରକ୍ରିୟାକୁ, ସୃଜନଶୀଳତାକୁ ଋଦ୍ଧିମନ୍ତ କରିଛି, ଅନେକ ପରୀକ୍ଷାରେ ଉତ୍ତୀର୍ଣ୍ଣହେବାରେ ସହାୟକ ହୋଇଛି, ନୂତନ କଳାକାର ସୃଷ୍ଟିକରିବାରେ ବନ୍ଧୁଭଳି ହାତବଢ଼ାଇଛି, ପ୍ରତିଭାସମ୍ପନ୍ନ ବ୍ୟକ୍ତିବିଶେଷଙ୍କ ସହ ପରିଚିତ କରେଇଛି, ମୋ ମୁଣ୍ଡ ଉପରେ ଆକାଶ ଭଳି ଛତ୍ରଉଢ଼ାଇ ସମ୍ଭାଳିରଖିଛି, ମୁଖରେ ବାଣୀଦେଇଛି, ତାକୁ ଶତସଲାମ୍ ! !

❀ ❀

ସମ୍ବଲପୁରୀ ଭାଷାସାହିତ୍ୟର ବିକାଶ ନିମିତ୍ତ ଏକ ସମ୍ଭ୍ରାନ୍ତ, ସୁଦୃଶ୍ୟପତ୍ରିକାର ଅଭାବ ସମସ୍ତେ ଅନୁଭବ କରୁଥିଲେ । ଖବରକାଗଜ, ଚଟିବହି କ୍ଷୁଦ୍ରପତ୍ରିକାଗୁଡିକର ମଧ୍ୟ ଆବଶ୍ୟକତା ରହିଛି, ତେବେ ଅନ୍ୟଭାଷାର ସମକକ୍ଷ ହେବାପାଇଁ, ଆଜିକାଲିର ପ୍ରତିଯୋଗିତାମୁଖୀ ପରିବେଶରେ ନିଜକୁ ପ୍ରତିଷ୍ଠିତ କରିବାକୁହେଲେ ଏମିତି ଉଚ୍ଚ ଚିନ୍ତାଧାରାକୁ ସାକାର କରିବାକୁହେବ । ଏଭଳି ସ୍ୱପ୍ନକୁ ସାକାର କରିବାପାଇଁ ମୁଁ ସୁଜାତା ହୋଟେଲର ରିସେପ୍‌ସନ୍ କାଉଣ୍ଟରରେ ବସିଥିବା ଦିଲୀପ ପାଢ଼ୀ, ସ୍ୱର୍ଗତ ନିର୍ମଳଚନ୍ଦ୍ର ପାଢ଼ୀଙ୍କ ବଡପୁଅଙ୍କ ସହ ଭେଟହେବାବେଳେ ଦୁଇହଜାର ଚାରି ମସିହା ବସନ୍ତର ଏକ ମଧୁରସକାଳରେ ପ୍ରସ୍ତାବଟିଏ ବାଢ଼ିଥିଲି । ଏ ପ୍ରସ୍ତାବପାଇଁ ବିଗତରାତିରୁ ମୁଁ ବହୁ ମାନସିକ ଘଣ୍ଟାଚକଟା ଭିତରେ ଗତିକରିଥିଲି, ଏପରିକି ପତ୍ରିକାର ନାମସୁଦ୍ଧା ମନେମନେ ନିର୍ଣ୍ଣୟ କରିସାରିଥିଲି । ଦିଲୀପଙ୍କ ଏକ ଭଲଗୁଣ, ମୁଁ ଯାହାକହୁଥିଲି, ସବୁଥିରେ ସମ୍ମତିପ୍ରଦାନ କରୁଥିଲେ । ପତ୍ରିକାପ୍ରକାଶନ ପ୍ରସ୍ତାବକୁ ମଧ୍ୟ ସେ ହଁ ଭରିବେ, ଏ କଥା ମଧ୍ୟ ମୁଁ ଜାଣିଥିଲି । ତେଣୁ, ତାଙ୍କ ପରିବାରର ଦୀର୍ଘ ଅନୁଭୂତି ରହିଛି, ବିତରଣକ୍ଷେତ୍ରରେ ମଧ୍ୟ ତାଙ୍କ ସହାୟତା ଆବଶ୍ୟକ, ଆର୍ଥିକଦୃଷ୍ଟିରୁ ମଧ୍ୟ ସେ ଆମଭିତରେ ସୁସ୍ଥ, ସକ୍ଷମ ଥିଲେ ।

ମୋ ପ୍ରସ୍ତାବ ଶୁଣିଲାକ୍ଷଣି ସେ ଖୁସିରେ ହଁ କହିଲେ ଓ ମୋର ଯୋଜନାସମ୍ପର୍କରେ ଆହୁରି ଅଧିକ ଜାଣିବାକୁ ଚାହିଁଲେ । ମୁଁ ମୋର ସୀମିତଜ୍ଞାନ ସମୟ ଓ ଅନୁଭୂତିକୁ

ଆଗ୍ରାକରି ତାଙ୍କ ସହଯୋଗ ଚାହିଁଲି ଏବଂ ଏଥିପାଇଁ ବାରୁଦା, ବନ୍ଧୁ ଶତ୍ରୁଘ୍ନଲାଲ ସାହା ଆଦିଙ୍କ ସହଯୋଗ ନେବାବୋଲି କହିଥିଲି । ସେ ବିଜୟ ପ୍ରଧାନ, ଶିବ ପ୍ରସାଦ ମେହେର ଆଦିଙ୍କୁ ସାମିଲ୍‌କରିବାକୁ କହିଲେ । ଆଗରୁ ଘନ ଓରଫ୍ ଶତ୍ରୁଘ୍ନଲାଲଙ୍କ ସହ ମିଶି ଦୁଇବର୍ଷ ହଳଧର ଜୟନ୍ତୀ ପାଳନ କରିଥିବାରୁ ତାଙ୍କ ଆବଶ୍ୟକତା ଅଧିକବୋଲି ମୁଁ ଅନୁଭବ କରିଥିଲି । କିଛିଦିନ ପରେ ସେହି ସୁଜାତା ହୋଟେଲରେ ଏକ ବୈଠକ ଡକାଗଲା, ସେଠାରେ ସମସ୍ତେ ସମ୍ମିଳିତହୋଇ ନିଷ୍ପତ୍ତି ନେଇଥିଲୁ ଏକ ସମ୍ବଲପୁରୀ ତ୍ରୈମାସିକ ପତ୍ରିକା ପ୍ରକାଶନର ଯାହାର ନାମ ମୋର ପୂର୍ବସ୍ୱୀକୃତ 'ଭରନି' ରଖାଗଲା । ହଳଧର ସାଂସ୍କୃତିକ ପରିଷଦ ଗଠନକରାଯାଇ ତା'ରି ଆନୁକୂଲ୍ୟରେ 'ଭରନି' ପ୍ରକାଶନର ମଧ୍ୟ ନିଷ୍ପତ୍ତି ନିଆଯାଇଥିଲା । ମୁଖ୍ୟସଂପାଦକ ଭାବରେ ବିଶିଷ୍ଟସାହିତ୍ୟିକ ମଙ୍ଗଳୁଚରଣ ବିଶ୍ୱାଳ ରହିବେ, ସଂପାଦକଭାବରେ ମୁଁ ପରିଚାଳନା କରିବି, ସହସଂପାଦକ ଭାବରେ ସିଦ୍ଧାର୍ଥ ପଣ୍ଡା ଓ ପ୍ରଶାନ୍ତ ମାଝୀ ମୋତେ ସଂପାଦନାକାର୍ଯ୍ୟରେ ସହଯୋଗ କରିବେ, ସଂପାଦନା ମଣ୍ଡଳୀରେ ରହିବେ ଶତ୍ରୁଘ୍ନଲାଲ ସାହା, ଶ୍ୟାମସୁନ୍ଦର ଧର, ଶିବପ୍ରସାଦ ମେହେର, ବିଜୟ ପ୍ରଧାନ, ଦିଲୀପ ପାତ୍ରୀ ଏବଂ ପଦ୍ମପୁରର କେଶରଞ୍ଜନ ପ୍ରଧାନ, ବଲାଙ୍ଗିରର ସୁଶୀଳ ମିଶ୍ରଙ୍କ ନାମ ସମ୍ମାନରସହ ସଂପାଦନା ମଣ୍ଡଳୀରେ ରହିବେ ।

ଏଭଳି ଭାବରେ ବହୁ ଚର୍ଚ୍ଚାବିଚର୍ଚ୍ଚା ଭିତରେ ନିଷ୍ପତ୍ତିକୁ ବିଜ୍ଞାପନମାଧ୍ୟମରେ ଖବରକାଗଜଗୁଡ଼ିକୁ ପ୍ରକାଶନ ପାଇଁ ଦେଇଦିଆଗଲା । ମୋ ଠିକଣାରେ ଡାକଯୋଗେ ବହୁ ଲେଖାଆସିଲା, କବିତା, ଗଳ୍ପ, ପ୍ରବନ୍ଧମାନ ସମଗ୍ର ଓଡ଼ିଶାର ବିଭିନ୍ନ କୋଣଅନୁକୋଣରୁ ଆସିବାରେ ଲାଗିଲା । ଏ ସମସ୍ତ ଲେଖାର ବର୍ଗୀକରଣ ପାଇଁ ପୁଣିଥରେ ମୁଖ୍ୟ ସଂପାଦକ ମଙ୍ଗଳୁବାବୁଙ୍କ ନିକଟକୁ ସମସ୍ତେ ଯାଇ ଉପଶୀର୍ଷକମାନ ସଂଗ୍ରହ କଲୁ । ନିଜ ସଂପାଦକୀୟକୁ ଛରା, ଗଳ୍ପ ବିଭାଗକୁ କଥାକଥାନୀ, ଆଧୁନିକ କବିତାକୁ ଏଭର୍ କବିତା, ପାରମ୍ପରିକ କବିତାକୁ କବିତା ରୋଜ୍‌ରୋଜ୍, ବ୍ୟଙ୍ଗ ରଚନାକୁ କହେଲେ ମଲ, ନାଟକକୁ ନାଟ୍, ପ୍ରବନ୍ଧକୁ ପ୍ରବନ୍ଧଘରା, ଏମିତି ସୁନ୍ଦର ନାମକରଣରେ ଆମେ ଉତ୍ସାହିତ ହୋଇଥିଲୁ । ଏହି ସମସ୍ତ ସାହିତ୍ୟଜଡ଼ିତ ବିଭାଗସହ ଖବରଟବର, ବହିପରିଚୟ, ଅଡିଓଭିଡିଓ ଚର୍ଚ୍ଚାଆଦି ଅଣୁ ବିଭାଗ ମଧ୍ୟ ରହିଲା ।

ସମସ୍ତ ଲେଖାର ମନୋନୟନ କରି ଡିଟିପି କାର୍ଯ୍ୟ ଆରମ୍ଭହେଲା ପରେ ବାରବାର ବୈଠକମାନ ଆୟୋଜିତ ହୋଇ ପ୍ରଥମସଂଖ୍ୟାକୁ ସେ ବର୍ଷ ନୂଆଁଖାଇ ଅବସରରେ ଉନ୍ମୋଚନ କରିବାର ଯୋଗାଡ଼ଯନ୍ତ୍ରରେ ଲାଗିପଡିଲୁ । ଦିଲୀପ ସମସ୍ତ



ଡିଟିପିକୁ ନିଜ କମ୍ପ୍ୟୁଟରକୁ ଆଣି ତା'ର ସୁଧାର କରିଥିଲେ, ପୃଷ୍ଠାଡିଆରିରେ ପ୍ରଶାନ୍ତ କରିଥିବା ଚିତ୍ରଗୁଡିକୁ ସଠିକ୍‌ପୃଷ୍ଠାରେ ସ୍ଥାନିକ କଲେ, ଶେଷରେ ମଲାଟ୍‌ର ଡିଜାଇନକରି ମୋତେ ଦେଖାଇଥିଲେ । ସବୁ କାର୍ଯ୍ୟ ସମାପନପରେ ଇମ୍‌ପ୍ରେସନ୍ସ ମୁଦ୍ରକର ରାଜା କେଡିଆଙ୍କୁ ଡକାଇ ତାଙ୍କୁ ଛପାଇବାରେ ଦାୟିତ୍ୱଦେବା ସହ ଉନ୍ମୋଚନର ତାରିଖ ମଧ୍ୟ ଜଣାଇଦେଲେ । ସେହି ସମୟଅବଧି ମଧ୍ୟରେ ଯେମିତି ଆମପାଖକୁ ପତ୍ରିକା ଆସେ, ସେ ସମ୍ପର୍କରେ ସତର୍କ କରିଦେଇଥିଲେ ।

'ଭରନି', ଦୁଲଦୁଲି ବାଜାର ଏକ ପାର୍ ର ନାମ, ଯାହା ଆବଶ୍ୟକ ସ୍ଥଳେ ଷୋହଳପ୍ରକାର ତାଳରେ ବଜାଯାଏ । ମଣିଷ ଭିତରେ ଦେବତା ଯେଉଁ ବାଦ୍ୟର ସହାୟତାରେ ପ୍ରବେଶକରି ତାଙ୍କୁ ଅତିଭୌତିକ ମାନସିକତା ଆଡକୁ ଘେନିଯାଇଥାଏ, ସେହି ପାର୍‌ର ନାମ ଭରନି । ମଣିଷ ଶରୀରରେ ଦେବତାଭରିବା ଅର୍ଥରେ ଏହା ବ୍ୟବହୃତ ହୋଇଥାଏ । ଦେବତାଭରିଲେ ତାକୁ ବରୁଆ କୁହାଯାଏ । ଷୋହଳଭରନିର ପ୍ରଥମ ଆଠୋଟି ପାର୍ ବାଜିଲେ ଦେବତା ଚଢେ, ପରବର୍ତ୍ତୀ ଆଠଟି ପାର୍ ବାଜିଲେ ପୁଣି ଦେହରୁ ଦେବତା ଉତୁରିଯାଇଥାଏ । କଲାସୀ ଯାତ୍ରାରେ, ବିଭିନ୍ନ ଜୀଉଁତିଆ ଅବସରରେ, କରମ୍‌ସାନୀ ପୂଜାବେଳେ ଏଭଳି ଭରନିପାର୍ ଶୁଣିବାକୁ ମିଳେ, କରମାବେଳେ ମାନ୍ଦଲ୍‌ରେ ଭରନିପାର୍ ବଜାଯାଇଥାଏ । ଭରନି ନାମକରଣର ଯଥାର୍ଥତା ସେଇଠି, ଏହି ପତ୍ରିକାର ସାହିତ୍ୟପାଠ ପରେ ପାଠକମନରେ ଐଶ୍ୱରୀୟ ଉପଲବ୍ଧି ଅନୁଭବ କରିପାରିବେ, ଏହି ମହାନ୍‌ଲକ୍ଷ୍ୟରେ ଚିନ୍ତିତ, ବହୁ ପ୍ରତିକ୍ଷିତ ତ୍ରୈମାସିକ ସମ୍ବଲପୁରୀ ସାହିତ୍ୟପତ୍ରିକା ଅବଶେଷରେ ଦୁଇହଜାର୍ ଚାରି ମସିହା ନୂଆଁଖାଇ ଅବସରରେ ପ୍ରଥମେ ମାଁ ସମଲେଶ୍ୱରୀଙ୍କଠାରେ ପୂଜାପରେ ଉପହାର ହୋଟେଲରେ ଉନ୍ମୋଚିତ ହେଲା ତତ୍କାଳୀନ ମନ୍ତ୍ରୀ ଜୟନାରାୟଣ ମିଶ୍ରଙ୍କ ଦ୍ୱାରା । ସମସ୍ତଙ୍କ ମୁହଁରେ ଗୋଟିଏ କଥା ଶୁଣାଗଲା, ଅବଶେଷରେ ଏକ ଭଲ ସମ୍ବଲପୁରୀ ସାହିତ୍ୟପତ୍ରିକା ପାଠକମାନଙ୍କ ପାଖକୁ ଆସିଲା ।

ଉନ୍ମୋଚିତ ହେବା ପ୍ରଥମ ଦୁଇବର୍ଷ ଭିତରେ ଭରନିମାଧ୍ୟମରେ ବହୁ ଅସାଧ୍ୟକାର୍ଯ୍ୟ ସାଧିତ ହେଲା । ଏ ଅଂଚଳର କବିମାନେ, ଯେଉଁମାନେ ଓଡ଼ିଆଭାଷାରେ କବିତା ଲେଖି ରାଜ୍ୟସ୍ତରରେ ପ୍ରତିଷ୍ଠିତ, ସେମାନେ ମଧ୍ୟ ସମ୍ବଲପୁରୀ ଭାଷାରେ କବିତା ଲେଖିଲେ, ଆଧୁନିକ ଶୈଳୀରେ ଲେଖି ସମ୍ବଲପୁରୀ କବିତାକୁ ନୂଆଁ ମୋଡ ଦେବାରେ ସମର୍ଥ ହେଲେ । ପ୍ରଦୀପ ପଣ୍ଡା, ଅଶ୍ୱିନୀ ମିଶ୍ର, ସୌଭାଗ୍ୟ ବନ୍ତ ମହାରଣା, ଭାଗିରଥୀ ମିଶ୍ର, ଏପରିକି କ୍ରମେ ରାଜେନ୍ଦ୍ରକିଶୋର ପଣ୍ଡାଙ୍କ କବିତା

ମଧ୍ୟ ଭରନିରେ ପ୍ରକାଶିତ ହୋଇ ଅନ୍ୟ ନୂତନପିଢ଼ୀର କବିମାନଙ୍କୁ ଅନୁପ୍ରେରିତ କରିଥିଲା । ପ୍ରତ୍ୟେକ ସଂଖ୍ୟାରେ ଗୋଟାଏ କ୍ଷୁଦ୍ରନାଟକ, ନୂତନ ସ୍ୱାଦର ପ୍ରବନ୍ଧ, ଗଳ୍ପଆଦି ଭରନି ପୃଷ୍ଠାରେ ସ୍ଥାନିତ ହେବାଫଳରେ ସମ୍ବଲପୁରୀ ଭାଷାର ନୂତନପିଢ଼ୀର ଲେଖକମାନେ ସୃଷ୍ଟିହେଲେ । ମଲାଟ୍‌ପୃଷ୍ଠାରେ ପ୍ରବୀଣ ଲେଖକମାନଙ୍କ ଆଲୋକଚିତ୍ରମାନ ଦେବା ତାଙ୍କ ପ୍ରତିଭାକୁ ଉଚିତ୍ ସମ୍ମାନ ଦିଆଗଲା ବୋଲି ପାଠକମହଲରେ ଚର୍ଚ୍ଚାହେଲା । ହେବଚନ୍ଦ୍ର ଆଚାର୍ଯ୍ୟ, ସତ୍ୟନାରାୟଣ ବହିଦାର, ମଙ୍ଗଳୁଚରଣ ବିଶ୍ୱାଳ, ଖଗେଶ୍ୱର ସେଠ୍‌ଙ୍କ ଭଳି ପ୍ରତିଷ୍ଠିତ ଲେଖକଙ୍କ ସହ ନାଟ୍ୟକାର ପ୍ରଦୀପ ଭୋଳ, କେଶରଞ୍ଜନ ପ୍ରଧାନ, ଆଲୋଚକ ଉତ୍ପନ୍ନ ଭୋଇ, ନିମାଇଁ ପାଣିଗ୍ରାହୀ ଆଦିଙ୍କ ଫଟୋ ମଲାଟରେ ସ୍ଥାନିତକରି ସେମାନଙ୍କ ଅବଦାନକୁ ସମ୍ବର୍ଦ୍ଧିତ କରିବାସହ ସମ୍ମାନ କରାଗଲା । ଶେଷପୃଷ୍ଠାରେ ଲୋକକବି ହଳଧର ନାଗଙ୍କ ଗୋଟିଏ କବିତା ପ୍ରକାଶିତହେବାରୁ ହଳଧରୀୟ ସାହିତ୍ୟର ମଧ୍ୟ ପ୍ରସାର କରାଯିବାର ଉଦ୍ୟମ କରାଗଲା । ସମ୍ବଲପୁରୀ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ବିବେଚିତ ନାଟକକୁ ପ୍ରକାଶକରିବା ହେତୁ ନାଟ୍ୟକାରମାନେ ମଧ୍ୟ ଉତ୍ସାହିତହେଲେ । ପଶ୍ଚିମଓଡ଼ିଶାର ବିଭିନ୍ନସ୍ଥାନରେ, ବିଭିନ୍ନ ଅବସରରେ ପ୍ରତ୍ୟେକ ସଂଖ୍ୟାର ଉନ୍ମୋଚନ ଉତ୍ସବ ଆୟୋଜିତ ହେବାରୁ ଭରନି ବହୁସ୍ଥାନକୁ ପହଞ୍ଚିପାରିଥିଲା । ବଲାଙ୍ଗିରରେ ସାଧୁ ମେହେର, ବ୍ରଜରାଜନଗରଠାରେ ଗାଳ୍ପିକ ଜଗଦୀଶ ମହାନ୍ତି, ବରଗଡରେ ଧନୁଯାତ୍ରା ସମୟରେ କଂସ ମହାରାଜ ଭଳି ବ୍ୟକ୍ତିତ୍ୱମାନଙ୍କ ହସ୍ତରେ ଭରନିର ବିଭିନ୍ନସଂଖ୍ୟା ଉନ୍ମୋଚିତ ହୋଇଥିଲା । ସମ୍ବଲପୁର ସହ ବରଗଡ, ସୋନପୁର, ବଲାଙ୍ଗିର, ଭବାନୀପାଟଣା, ବୀରମହାରାଜପୁର, ରାଉରକେଲା, ସୁନ୍ଦରଗଡ, ଦେବଗଡ, କୁଚିଣ୍ଡା, ଝାରସୁଗୁଡ଼ା ଆଦି ସ୍ଥାନରେ ପତ୍ରିକାବିକ୍ରେତାମାନଙ୍କ ସହ ଯୋଗାଯୋଗକରି ସେମାନଙ୍କ ମାଧ୍ୟମରେ ଭରନି ବିକ୍ରୟର ବ୍ୟବସ୍ଥା କରାଗଲା ।

ଦୁଇବର୍ଷ ଭିତରେ ଭରନି ଏକ ସ୍ୱତନ୍ତ୍ର ମାନ୍ୟତାଯୁକ୍ତ ପତ୍ରିକାଭାବରେ ପାଠକମାନଙ୍କ ନିକଟରେ ପରିଚିତ ହୋଇଗଲା । ପ୍ରତ୍ୟେକବର୍ଷ ବାର୍ଷିକଉତ୍ସବମାନଙ୍କରେ ଗଳ୍ପ, କବିତା, ପ୍ରବନ୍ଧ, ନାଟକ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ପ୍ରତିଭାମାନଙ୍କୁ ପୁରସ୍କୃତକରିବାର ଯୋଜନାହୋଇ ତାକୁ ସାକାର କରାଗଲା । ପ୍ରଥମ ଦଶଗୋଟି ସଂଖ୍ୟାର ସଫଳତା ପରେ ପଶ୍ଚିମ ଓଡ଼ିଶାର ସମ୍ବଲପୁରୀ ଲେଖକମାନଙ୍କ ଏକ ସମ୍ମେଳନ ଉଦ୍ଦେଶ୍ୟରେ ଭରନି ସାହିତ୍ୟୋତ୍ସବର ଚିନ୍ତାକରାଯାଇ ତାକୁ ସାକାର କରାଗଲା । ଦୁଇଦିନବ୍ୟାପି ଏହି ଉତ୍ସବ ଝାଡୁଆପଡାର ଆରଣ୍ୟକ ମଣ୍ଡପରେ ସଫଳତାର ସହ

ଆୟୋଜିତ ହେଲା । ବହୁ ପ୍ରବୀଣ ଏବଂ ନବୀନ ଲେଖକମାନଙ୍କ ସମାବେଶରେ ସମ୍ବଲପୁରୀ ସାହିତ୍ୟର ବହୁ ବିଭିନ୍ନ ବିଭାଗ ସାମ୍ପ୍ରତିକସ୍ଥିତି ସମ୍ପର୍କରେ ଆଲୋଚନାମାନ ଆୟୋଜିତ ହୋଇଥିଲା । ଏହି ଅବସରରେ ଭରନିର ଏକଶହ ଷୋହଳ ପୃଷ୍ଠାର ସ୍ୱତନ୍ତ୍ରସଂଖ୍ୟା ପ୍ରକାଶିତ ହୋଇଥିଲା ।

ପରିବର୍ତ୍ତନଶୀଳ ସମୟ ଚକ୍ରରେ ଭରନି ପରିଚାଳନାକୁ ନେଇ ଅନେକ ପରିବର୍ତ୍ତନ ମଧ୍ୟ ଘଟିବାରେ ଲାଗିଲା । ସମୟ ଚକ୍ରରେ ବିପିନ ଆଚାର୍ଯ୍ୟ, ବୃନ୍ଦାବନ ମିଶ୍ର, ସତ୍ୟନାରାୟଣ ଠାକୁର ଆସି ସମ୍ପାଦନା ମଣ୍ଡଳୀରେ ଯୋଗ ଦେଲେ ।

ଭରନିର ସତରତମ ସଂଖ୍ୟା ବେଳକୁ ଆର୍ଥିକସଙ୍କଟରେ ପଡି ଭରନି ପ୍ରକାଶନ ବନ୍ଦ୍ ଅବସ୍ଥାକୁ ଆସିଗଲା । କେବଳ ଦିଲୀପ ଓ ମୋତେ ବାଦ୍‌ଦେଲେ ଆଉକେହି କାର୍ଯ୍ୟକର୍ତ୍ତା ଆଖପାଖରେ ରହିଲେ ନାହିଁ । ଚିଚିଣ୍ଡାରୁ ଯିବାଆସିବା କରି ଏତେ ବଡଦାୟିତ୍ୱ ମୋପାଇଁ ମଧ୍ୟ ବୋଝ ହୋଇପଡିଲା । ବିଭିନ୍ନ ଅଂଚଳକୁ ବାରମ୍ବାର ଗସ୍ତକରିବା ସତ୍ତ୍ୱେ ବହୁ ସ୍ଥାନରେ ଭରନିର ବିକ୍ରିଲବ୍ଧ ଅର୍ଥ ସଂଗୃହୀତ ହୋଇପାରିଲାନାହିଁ । ଏପରିକି ବିଜ୍ଞାପନର ଅର୍ଥ ସଂଗ୍ରହପାଇଁ ମଧ୍ୟ ଲୋକ ବାହାରିଲେ ନାହିଁ । ମୁଁ ଏକା କେତେଥର, କେତେ ସ୍ଥାନକୁ ଯିବି !! ଏତେକାମପାଇଁ ମୋରମଧ୍ୟ ସମୟ ଅଭାବ ଘଟିଲା । ଦିଲୀପ ସମ୍ବଲପୁରର ବିଭିନ୍ନ ଅନୁଷ୍ଠାନସହ ଜଡ଼ିତଥିବାରୁ ଅଧିକ ସମୟ ଭରନିପାଇଁ ଦେଇପାରି ନଥିଲେ । ଆମ ଭିତରେ ଆଲୋଚନା ଅପେକ୍ଷା ସମାଲୋଚନା ଅଧିକ ଶୁଣାଗଲା । କେତେଜଣଙ୍କ ସ୍ୱାର୍ଥ ମଧ୍ୟ ସାଧନ ହୋଇପରି ନଥିଲା । ଏମିତି କେତେ ବାଧାର ସମ୍ମୁଖୀନହୋଇ ଭରନି ପ୍ରକାଶନ ବନ୍ଦ ହୋଇଗଲା । ଚବିଶ ଘଣ୍ଟାର ପୂର୍ଣ୍ଣ ସମୟ ଦିଆନଗଲେ ସମ୍ବଲପୁରଭଳି ସ୍ଥାନରେ ପତ୍ରିକାଟିଏ ତିଷ୍ଠାଇରଖିବା କାଠିକର ପାଠ !!

କ୍ରମାଗତ ସତରଟି ସଂଖ୍ୟା ଚାରିପାଂଚ ବର୍ଷରେ ପ୍ରକାଶିତହୋଇ ସମଗ୍ର ପଶ୍ଚିମଓଡ଼ିଶାର ଯେଉଁ ମହତ୍ କାର୍ଯ୍ୟ କରିଥିଲା, ସେଥିପାଇଁ ମୁଁ ଗର୍ବିତ । ବନ୍ଦହେବାରେ ମୁଁ ତିଳେମାତ୍ର ବ୍ୟଥିତ ନଥିଲି, କାରଣ, ଭରନି ଠିକ୍ ସମୟର ତା'ର କାର୍ଯ୍ୟ କରିଛି, ଅନ୍ୟ ପତ୍ରିକାଗୁଡିକୁ ଦିଗ୍‌ଦର୍ଶନ ଦେଇଛି, ସମଗ୍ର ପଶ୍ଚିମ ଓଡ଼ିଶାରେ ସେ ସମୟରେ ଏକାଦିକ୍ରମେ ବାଇଶଗୋଟି ସମ୍ବଲପୁରୀ ପତ୍ରିକା ବାହାରିଗଲା, ଉନ୍ନତମାନର ଲେଖା, ସୁନ୍ଦର ଅଳଙ୍କରଣରେ ପତ୍ରିକାମାନ ପ୍ରକାଶିତ ହେବାରେ ଲାଗିଲା । ଭରନିର ଏତାଦୃଶ ଅବଦାନକୁ ଅସ୍ୱୀକାର କରାଯାଇନପାରେ । ଭରନି ତା' କାମ କରିଛି, ହଳଧରଙ୍କ ପରି କବିଙ୍କୁ ଲୋକଲୋଚନକୁ ଆଣି ଜାତିର କର୍ତ୍ତବ୍ୟସାଧନ କରିଛି, ଓଡ଼ିଆରେ

ରଚନାକରୁଥିବା ଅନେକ ଲେଖକଙ୍କୁ ମାତୃଭାଷାରେ ଲେଖିବାପାଇଁ ଅନୁପ୍ରେରିତ କରିଛି । ଭରନି ସ୍ଥାନରେ ଉଦିଆଁ, ନୂଆସକାଲ୍ ଆସିଛି, ଭରନିର ଦାୟିତ୍ୱ ସଂପାଦନ କରୁଛନ୍ତି । ଭରନି କଥା ଲେଖିଲାବେଳେ ଭାଇ ଦିଲୀପଙ୍କୁ ବହୁତ ମନେ ପଡୁଛି ।

ଭରନିର ମୃତ୍ୟୁ ହୋଇନାହିଁ, ଏହାର ଅପମୃତ୍ୟୁ ଘଟିଛି । ତା' ଆତ୍ମା ଏବେ ବି ଘୂରିବୁଲୁଛି ପ୍ରତିଟି ସମ୍ବଲପୁରୀ ସାହିତ୍ୟକଙ୍କ ହୃଦୟରେ ! ଏକ ନୂତନ ଭାଷାଭିତ୍ତିକ ଜାଗରଣ ସୃଷ୍ଟିକରିବାରେ ନିର୍ଦ୍ଦିଷ୍ଟ, ତଥା ଉପଯୁକ୍ତସମୟରେ ଭରନି ସଫଳ ହୋଇଛି, ଯାର ଫଳସ୍ୱରୂପ ଆଜି ଏହି ଭାଷା ସଂବିଧାନର ଅଷ୍ଟମ ଅନୁଚ୍ଛେଦରେ ଅନ୍ତର୍ଭୁକ୍ତ ହେବାକୁ ଆଉ ପାଦଟିଏର ଦୂରତାରେ ରହିଛି । କର୍ତ୍ତୃପକ୍ଷଙ୍କ ଭିତରେ ଐଶ୍ୱରୀୟ ଭାବ ପ୍ରବେଶକରାଇ ଭରନିର ମହାନ୍ ଲକ୍ଷ୍ୟକୁ ହାସଲ୍ କରାଯାଉ ! !



ମାନସିକ ସ୍ତରରେ ଯେତେବେଳେ ସୃଷ୍ଟିସମ୍ଭାର ସମୁଦ୍ରର ଢେଉଭଳି ମାଡିଆସୁଥାଏ, ସେତେବେଳେ ତାକୁ ରୋକିବାର ଶକ୍ତି କାହାର ନଥାଏ । ଆମ ଚତୁର୍ଦ୍ଦିଗର ପରିବେଶ ମାନସିକ ସ୍ଥିତିକୁ କେବେ ନିୟନ୍ତ୍ରଣ କରିପାରେ ନାହିଁ, ସେ ସୃଜନଶକ୍ତିର ପ୍ରବାହ ଏତେ କ୍ଷୀପ୍ର, ଦ୍ରୁତ ତଥା ଭାବଉଚ୍ଛୁଳା, ତାହା ସ୍ରଷ୍ଟାର ଲେଖନୀହେଉ, ତୂଳିକାହେଉ ଅବା ଯେ କୌଣସି ପ୍ରକାଶ ମାଧ୍ୟମହେଉ, ତାହା ପ୍ରକାଶ୍ୟକୁ ନଆସିବାଯାଏଁ, ସ୍ରଷ୍ଟା ଅଣାୟତ୍ତ ହୋଇପଡେ । ଏଭଳି ଅନେକ ଅନୁଭୂତିର ସାମ୍ନା କରିଛି ମୁଁ ମୋର ସ୍ରଷ୍ଟା ଜୀବନରେ ।

'ଉଖୀ' ପରେପରେ ଅନେକ ନାଟକ ମୋ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହୋଇଛି ରାଜ୍ୟ ତଥା ଜାତୀୟ ସ୍ତରରେ ବିଭିନ୍ନ ଅଞ୍ଚଳରେ । ନିର୍ଦ୍ଦେଶନାସହ ନାଟକଗୁଡିକର ମଞ୍ଚ ଓ ପ୍ରଚ୍ଛଦ ସଂଗୀତ ପରିଚାଳନାର ଦାୟିତ୍ୱ ମଧ୍ୟ ମୁଁ ନିଜେ ବହନ କରୁଥିଲି । ଅଭିନୟ ସହିତ ବାଦ୍ୟକାରର ଭୂମିକାରେ ମଞ୍ଚକୁ ଓହ୍ଲାଇଥିଲି ସଂଖ୍ୟାଧିକ ନାଟକରେ । ଉଖୀରେ ମାନ୍ଦଲ, କରମସାନୀ ଓ ବରୁଆରେ ମଧ୍ୟ ମାନ୍ଦଲ୍, ବୁର୍ଡିରେ ସଂଚାର ମୃଦଙ୍ଗ, ଖେଲଓ୍ୱାଲାରେ ଢ଼ପଲି ଆଦି ବାଦ୍ୟଯନ୍ତ୍ରମାନ ଥିଲା ମୋ ଭୂମିକାର ଗୁରୁତ୍ୱପୂର୍ଣ୍ଣ ଅଂଶବିଶେଷ । ଏ ସବୁ ଭୂମିକାରେ ପରଦାପଛରୁ ବାଦ୍ୟ ବଜାଯାଇଥିଲେ ଚରିତ୍ରର ସ୍ୱାଭାବିକ ସ୍ଥିତିରେ ବାଧା ସୃଷ୍ଟିହେବାର ସମ୍ଭାବନା ଥିଲା । ଦର୍ଶକ ମୋର ଏହି ଦ୍ୱୈତଗୁଣସମ୍ପନ୍ନ ଅଭିନୟକୁ ମନଭରି ଉପଭୋଗ କରିଥିଲେ । ଉଖୀ ପୂର୍ବରୁ ନାଟକରେ କଣ୍ଠସଂଗୀତର ପ୍ରଚୁର ପରିମାଣରେ ଅଭାବ ଦେଖା ଦେଇଥିଲା, ଏହା ପେଶାଦାର

ଥିଏଟରରେ ଶୋଭା ଦିଶେ, ନାଟ୍ୟକାରଙ୍କଠାରୁ ଆରମ୍ଭକରି ନିର୍ଦ୍ଦେଶକ ପର୍ଯ୍ୟନ୍ତ ସମସ୍ତେ ଏହି ଦିଗଟିକୁ ଅବହେଳା ପ୍ରଦର୍ଶନ କରୁଥିଲେ । ତେବେ ସଂଗୀତ ଓ ନୃତ୍ୟ, ନାଟକର ଗୋଟିଏଗୋଟିଏ ଅବିଚ୍ଛେଦ୍ୟ ଅଂଶବିଶେଷ, ଏହା ପ୍ରତ୍ୟେକ ନାଟ୍ୟଶିକ୍ଷୀର ଜ୍ଞାନରେ ରହିବା ଉଚିତ୍ ।

ଉଖୀନାଟକ ପଟେ ସୃଷ୍ଟିର ଭୁଖାରୁ ନାଟକରେ ସଂଗୀତକଳାକୁ ବିଶେଷ ଦୃଷ୍ଟି ଦିଆଗଲା । ନାଟକକୁ ଗୀତ ଓ ନୃତ୍ୟକଳା ପୁନଃ ପ୍ରବେଶକରି ଆଜିଯାଏଁ ତାହାର ଆସ୍ଥାନ ଜମେଇରଖିଛି । ଭୁଖାର ଦୁଇଟିଗୀତର ସ୍ୱରସଂଯୋଜନା ପଶ୍ଚିମଓଡ଼ିଶାର ଲୋକଗୀତ ଆଧାରିତ କରାଯାଇଥିଲା । ପ୍ରାରମ୍ଭରେ ଅନ୍ତରାଳରୁ ନାୟିକା କସ୍ତୁରୀର ଦୁଃଖ ଓ ଯନ୍ତ୍ରଣାମୟ ଜୀବନକୁ ଦୃଷ୍ଟିରେ ରଖି, ପାନିଥି ପତର କୁହୁ କି ନାଇଁ କୁହୁ, ଗୀତଟି ମାଳେଶିରୀ ରାଗଆଧାରିତ ଥିଲା, ଯାହାକୁ ଗାନ କରିଥିଲେ ସରିତା ପରିଛା । ଏହି ଗୀତଟି ସମଗ୍ର ଭୁଖା ନାଟକର କଥାବସ୍ତୁକୁ ପ୍ରତିନିଧିତ୍ୱ କରୁଥିଲା । କେବଳ କସ୍ତୁରୀ ନୁହେଁ, ମୁଖ୍ୟଚରିତ୍ର ଅଏଁଠା ଓ ସାମଗ୍ରିକ ଭାବରେ ସେହିପାଲିର ବଜନିଆ ଗୋଷ୍ଠୀର ଦରିଦ୍ରତାପୂର୍ଣ୍ଣ ଦୈନନ୍ଦିନ ଜୀବନର କରୁଣତାଉପରେ ଆଧାରିତ ଥିଲା । ଦ୍ୱିତୀୟଗୀତଟି ଥିଲା ଏକ ରୋମାଣ୍ଟିକ୍ ଦ୍ୱୈତକଣ୍ଠର, ଯାହାକୁ ଗାଇଥିଲେ ନବକିଶୋର ମହନ୍ତମ ଓ ସରିତା ପରିଛା । ଗବେଷକ ଅସୀମ ଓ ଅଏଁଠାର ଭଉଣୀ କସ୍ତୁରୀ ମଧ୍ୟରେ ସୃଷ୍ଟି ହୋଇଥିବା ଭଲପାଇବାର ପରିବେଶ ସହ ତାଳମେଳରଖି ଏହାର ସ୍ୱରସଂଯୋଜନା ପଶ୍ଚିମଓଡିଶାର ସବୁଠାରୁ ଆକର୍ଷଣୀୟ ରୋମାଣ୍ଟିକ୍ ସ୍ୱର, ଝୁମେର୍ ଉପରେ ଆଧାରିତ ଥିଲା । ଗୀତଟିଥିଲା, 'ତତେ ମୁଇଁ ଭୁଲମି କେନ୍ତା କରି, ଇ ମୋର ଜୀବନେ ତୁଇ କେତେ ଫଗୁନର୍ ଫଗୁ ଦେଇଛୁ ଭରିରେ, କୁରେ ଫୁଲର୍ କଅଁଳି କହର୍, ହୁରହୁରିଆ ଧୁକାଥି ଉଠୁଛେ ଥରିରେ' । ମାନ୍ଦଲ୍, ବଂଶୀର ସୁମଧୁର ସୁରେସୁରେ ଏହି ଗୀତଟିର ପ୍ରଚ୍ଛଦଧ୍ୱନୀ ନାୟକ ଭାବରେ ମୋତେ ଓ ନାୟିକା ଭାବରେ ପ୍ଲାବିନୀଙ୍କୁ ଅଭିନୟ କରିବାରେ, ମୁଖମଣ୍ଡଳୀୟ ପ୍ରକାଶଭଙ୍ଗୀ ଦେବାରେ ସହଜହୋଇଥିଲା । ମୁଁ ହାରମୋନିୟମ୍ କିମ୍ବା ଅରଗେନ୍ ଧରି ନିବୁଜ କୋଠରୀରେ ବସି ଏ ସ୍ୱରସଂଯୋଜନା କରି ନଥିଲି । ବରଂ ପରମାଣପୁର କଲେଜ୍‌କୁ ସାଇକଲରେ ଗଲାବେଳେ ରାସ୍ତାରେ ପଡୁଥିବା ଠେମରା ନିକଟସ୍ଥ ଧାନକ୍ଷେତର ସବୁଜିମା, ମାଲଗୁଣ୍ଡ୍ ଗାଁରେ ମଉଭୋଳ ହୋଇ ସମବେତ କରମାନାଚର ମାନ୍ଦଲିଆ ଗୀତର ଲହରୀ, ମଙ୍ଗଲୁଚରଣ ବିଶ୍ୱାଳଙ୍କ ଗାଁ ପାରିହେଲେ ଗୁମଲେଇ ଆଡ଼କୁ ଲମ୍ବି ଯାଉଥିବା ରାସ୍ତାର ଉଭୟପଟର ଘଞ୍ଚ ଜଙ୍ଗଲରେ ଉଡିବୁଲୁଥିବା ପକ୍ଷୀମାନଙ୍କ କାକଳୀ,

ଏମାନଙ୍କ ସଂସ୍ପର୍ଶରେ ଆସି ସାଇକଲ ପେଡଲ୍‌ମାରୁଥିବା ବେଳେ ହିଁ ଏହି ଗୀତର ସ୍ୱର ଆବିଷ୍କୃତ ହୋଇଥିଲା, ଯାହା ପରେ ମହନ୍ତମଙ୍କ ହାରମୋନିୟମ୍‌କୁ ସ୍ଥାନାନ୍ତରିତ ହୋଇଥିଲା ।

ଉଡଲାପତର୍ ବୁଡଲାଡଙ୍ଗା, ଭୁଥିଆର୍ ହଥିୟାର, ଦଦରା ଦର୍ପନ୍, ବରୁଆ ଆଦି ସମ୍ବଲପୁରୀ ନାଟକଗୁଡ଼ିକର ଗୀତମାନଙ୍କ ସ୍ୱରସଂଯୋଜନା ଅଧିକାଂଶ ସମ୍ବଲପୁରରୁ ଚିଚିଣ୍ଡା ଯାଉଥିବା ବେଳେ ବସ୍‌ଭିତ ଭିତରେ ହିଁ ସଂଯୋଜିତ ହୋଇଥିଲା । ଜାତୀୟ ରାଜପଥର ଶବ୍ଦ ପ୍ରଦୂଷଣ, ବସ୍‌ଭିତରର ଯାତ୍ରୀମାନଙ୍କ କୋଳାହଳ, ବସ୍‌ଚାଲିବାର ଇଞ୍ଜିନୀୟ କର୍କଶ ଶବ୍ଦର ପାରିବେଶିକ ସ୍ଥିତିଭିତରେ ମୁଁ ସୁନ୍ଦରସୁନ୍ଦର ଗୀତଗୁଡ଼ିକର ସ୍ୱର ମନେମନେ ଗୁଣୁଗୁଣୁ ହୋଇ ବାରମ୍ବାର ଦୋହରାଇ ପ୍ରଥମେ ସ୍ମୃତି ପୃଷ୍ଠକୁ ଆଣୁଥିଲି, ରିହାର୍ସେଲ୍ କୋଠରୀକୁ ପହଞ୍ଚିବାପର୍ଯ୍ୟନ୍ତ ସ୍ମୃତିର ରେକର୍ଡରରେ ଟେପ୍ କରୁଥିଲି । ସ୍ୱରମାନ, ଗାୟକ ଓ ଗାୟିକାମାନଙ୍କ ନିକଟରେ ଗାଇଶିଖାଇବା ପରେଯାଇ ସେହି ମାନସିକକଷ୍ଟରୁ ମୁକ୍ତି ପାଉଥିଲି । ଉଡଲାପତର୍ ବୁଡଲାଡଙ୍ଗାର 'ଖୁଟୁଲି ଜଲି କୁଇଲା ହେଲା ନୁଇଲା ଜଲି ହେଲା ଖାର୍', ଗୀତଟିକୁ ଗାଇଥିଲେ ବିଜୟ ମିଶ୍ର ପୁରୁଷକଣ୍ଠରେ ଏବଂ ଆରତୀ ମିଶ୍ର ନାରୀକଣ୍ଠରେ । ଏହା ସମ୍ବଲପୁରୀ ଥିଲେ ହେଁ ସମ୍ପୂର୍ଣ୍ଣ ଶାସ୍ତ୍ରୀୟ ଧାରାରେ ସଂଯୋଜିତ ହୋଇଥିଲା । ବସ୍‌ରେ ଗଲାବେଳେ କୌଣସି ଶାବ୍ଦିକ ପ୍ରଦୂଷଣ ମୋର ସୃଷ୍ଟିଶୀଳତାକୁ ବାଧା ଦେଉନଥିଲା । ଅନେକ କୋଳାହଳ ମଧ୍ୟ ମୋତେ ଲାଗୁଥିଲା ସମ୍ପୂର୍ଣ୍ଣ ନିବୁଜ କୋଠରୀର ନୀରବତା । ମୋତେ ମୋର ସ୍ୱରବାନ୍ଧିବା ମନ ହିଁ ବାନ୍ଧି ରଖୁଥିଲା । ଯେତେବେଳେ ସ୍ୱରଗଢ଼ା ଶେଷ ହେଉଥିଲା, ସେତେବେଳେ ପୁନଶ୍ଚ ରାସ୍ତାର ଗର୍ଜନ, ବସ୍‌ର କର୍କଶ ଧ୍ୱନୀ ମାଡ଼ିବସୁଥିଲା । ଏ ସମସ୍ତପ୍ରକ୍ରିୟା ମୁଁ ବାରମ୍ବାର ସମ୍ମୁଖୀନ ହୋଇଛି । ସଂଗୀତ ଭଳି ସୂକ୍ଷ୍ମକଳାକୁ ମଧ୍ୟ ମୁଁ ଏପରି ବିରୋଧାତ୍ମକ ପରିବେଶରେ ସାଧୁକରୁଥିଲି ।

'ତମେ ଅଛ ବଲି' ନାଟକର ଶୀର୍ଷକ ସଂଗୀତପାଇଁ ମୋତେ ମାସାଧିକାଳ ମାନସିକ ପରିଶ୍ରମ କରିବାକୁ ପଡ଼ିଥିଲା । ଆକାଶବାଣୀ ସମ୍ବଲପୁରରୁ ନାଟକସପ୍ତାହରେ ପ୍ରସାରିତ ମୋ ରଚିତ ଓଡ଼ିଆ ନାଟକ 'ଭଗ୍ନାଂଶ' ନାଟକକୁ ସମ୍ବଲପୁରୀ ଭାଷାରେ ଅନୁବାଦ କଲାବେଳଠୁ ହିଁ ଏହାର ଶୀର୍ଷକ ଗୀତର ସ୍ୱରକୁ ନେଇ ମୁଁ ବ୍ୟକ୍ତିଗତ ଭାବରେ ବହୁ ମୁସ୍କିଲ ପରିସ୍ଥିତିର ସମ୍ମୁଖୀନ ହୋଇଥିଲି । ମାତ୍ର ଦୁଇଧାଡ଼ିର ପଦଟିକୁ ବିଭିନ୍ନସ୍ୱରରେ ନିଜକଣ୍ଠରେ ଗାଇଗାଇ ମନେରଖିବାର ଚେଷ୍ଟା କରୁଥିଲି, ପୁଣି

ପରମୁହୂର୍ତ୍ତରେ ଭୁଲିଯାଉଥିଲି । ଏହି ଗୀତର ଚାରିପାଞ୍ଚଟି ସ୍ୱର ମୋର ପ୍ରାତଃ ଭ୍ରମଣରେ ହିଁ ସୃଷ୍ଟିହୋଇଥିଲା ଝାଡୁଆପଡାର ଆରଣ୍ୟକ ମଞ୍ଚପାଇଁ ପ୍ରସ୍ତୁତ ହେବାଯାଏଁ । ମୁଁ ମୋ ନିଜ ସ୍ୱରର ଥଳକୂଳ ପାଉ ନଥିଲି । ସେତେବେଳେ ମୋର ପ୍ରାତଃଭ୍ରମଣ ସକାଳ ଚାରିଟାରୁ ଆରମ୍ଭ ହେଉଥିଲା, ଧନୁପାଲିରୁ ମାଳତୀଯୋରର ପୋଲ ପର୍ଯ୍ୟନ୍ତ । ପ୍ରତ୍ୟହ ସକାଳରେ ଘରୁବାହାରିବାଠାରୁ ଘରେପହଞ୍ଚିବା ପର୍ଯ୍ୟନ୍ତ ତମେ ଅଛ ବଲି ଗୀତକୁ ବାରମ୍ବାର ଧୀରକଣ୍ଠରେ ଗାଉଥିଲି ଓ ମନେରଖିବାର ଚେଷ୍ଟାକରୁଥିଲି । ଏହିଭଳି ପନ୍ଦରକୋଡିଏ ଦିନ ଅତିକ୍ରାନ୍ତ ହେଲାପରେ ଯେଉଁସ୍ୱରକୁ ମୁଁ ଠିକ୍ ବୋଲି ନିର୍ଣ୍ଣୟକଲି, ସେହିଦିନ ତାକୁ ମନେମନେ ଗାଇଗାଇ ପହଞ୍ଚିଗଲି ଗାୟକ ବୈଷ୍ଣବ ପାଢୀଙ୍କ ଘରକୁ ଓ ମୋର ସମସ୍ୟା ତାଙ୍କଠାରେ ବଖାଣିଲି । ସେ ମୋର ଉତ୍କଣ୍ଠାକୁ ଅନୁଭବ କରି ତାଙ୍କଗାଡି ବାହାରକଲେ ଓ ବିନାଖଣ୍ଡିସ୍ଥିତ ତାଙ୍କ ଜଣେ ଛାତ୍ରୀଙ୍କ ଘରକୁ, ତତ୍କାଳୀନ ଏସ୍‌ଡିଓଙ୍କ ନାତୁଣୀଙ୍କ ନିକଟକୁ ନେଇଗଲେ । ତାଙ୍କ ଘରକୁ ପହଞ୍ଚିବାକ୍ଷଣି ସଙ୍ଗେସଙ୍ଗେ ହାରମୋନିୟମ୍ ପାଖରେ ବସି ମୋତେ ଗୀତଟି ଗାଇବାପାଇଁ ଅନୁରୋଧ କଲେ । ସେତେବେଳେ ପର୍ଯ୍ୟନ୍ତ ମୁଁ ସ୍ୱରଟିକୁ ମନେମନେ ଗାଇ ମନେରଖିବାର ପ୍ରୟାସ କରୁଥିଲି । ତେବେ, ଗାଇଲାବେଳେ ବୈଷ୍ଣବଙ୍କ ସାମ୍ନାରେ ନିର୍ଭୁଲ ଭାବରେ ଗାଇଦେଲି ପଦକ । ବୈଷ୍ଣବ ପ୍ରଥମେ ହାରମୋନିୟମ୍ ଓ ପରେ ତାଙ୍କ ଛାତ୍ରୀଙ୍କ କଣ୍ଠରେ ପଦଟିକୁ ଗୁଆଇ ତାଙ୍କ ମୋବାଇଲରେ ରେକର୍ଡ କରିଦେଲେ । ମୁଁ ଦୀର୍ଘଶ୍ୱାସଟିଏ ପକାଇ ଆଶ୍ୱସ୍ତହେଲି, ଏବେ ଏଇସ୍ୱର ସଞ୍ଚିତ ହୋଇ ରହିଲା, ଆଉ ହଜିବନାହିଁ, ଆଜିଯାଏଁ ଆଉ ହଜିଯାଇପାରି ନାହିଁ, ମୋ ମନର ପେଟିକାରେ ପ୍ରେମିକାଟି ଭଳି ରହିଛି, ତାକୁ ଆଉ ଯିବାକୁ ଦେବିନି କେବେ, ଏହାର ପଦଟି ଥିଲା :-

ତମେ ଅଛ ବଲି ମୁଁ ଅଛି,
ମୁଁ ଅଛି ବୋଲି ତମ ସ୍ମୃତିର ଛାୟା ! !

ଆଶ୍ଚର୍ଯ୍ୟର କଥା ଏହାର ଅନ୍ତରା ନାଟକର ରିହାର୍ସେଲ୍‌ରେ ହିଁ ଥରକରେ ଗଢ଼ାହେଲା, ଆଉ ସେଇଥରକରେ ହି ଯୋଡିହୋଇଗଲା ଘୋଷାସହ । ଏହି ନାଟକର ପ୍ରଥମପ୍ରଦର୍ଶନ ଆରଣ୍ୟକ ମଣ୍ଡପରେ ମଞ୍ଚସ୍ଥ ହୋଇଥିଲା । ଏଥିରେ କଣ୍ଠଦାନ କରିଥିଲେ ନିଜେ ବୈଷ୍ଣବ ପାଢ଼ୀ ଓ କବି ଉମାଶଙ୍କର ପଣ୍ଡାଙ୍କ ପୁଅ ବୁଲୁଙ୍କ ସହଧର୍ମିଣୀ ଅଧାପିକା ଡଲି ପଣ୍ଡା । ପରେ ପରେ ଏହି ନାଟକଟି ଦେବଗଡ, ଭବାନୀପାଟଣା, ପୁରୀ, ଭୁବନେଶ୍ୱର, ଢେଙ୍କାନାଳ, ରାଉରକେଲା ଆଦି ବିଭିନ୍ନ ସହରର ମଞ୍ଚସ୍ଥ

ହୋଇଥିଲା ଏବଂ ଅନେକ ଗାୟକଗାୟିକା ଏହି ଗୀତଟିକୁ ଅନ୍ତରାଳରୁ ପରିବେଷଣ କରିଥିଲେ । ସସ୍ମିତା ସାହୁ, ସୁନୀତି ବେହେରା, ମନୀଷା ଭାରତୀ, ଈଶ୍ୱରୀ, ତ୍ରିଲୋଚନ ତ୍ରିପାଠୀ, ରବି ପଣ୍ଡା ଆଦି କଳାକାରମାନେ ବହୁବିଭିନ୍ନ ମଞ୍ଚରେ ଏହାକୁ ପରିବେଷଣ କରିଥିଲେ ।

ସାଧାରଣ ମଞ୍ଚରେ ଦର୍ଶକମାନଙ୍କ ପାଇଁ ମଞ୍ଚରେ ଗୀତଗାଇବା ଓ ନାଟକର ପ୍ରଚ୍ଛଦରେ ଥାଇ ଦୃଶ୍ୟୋପଯୋଗୀ ସଂଗୀତ ପରିବେଷଣକରିବା ଅଲଗାଅଲଗା ବ୍ୟାପାର । ନାଟକର ବିଷୟବସ୍ତୁ, ଚରିତ୍ର, ନାଟକର ବିଷୟବସ୍ତୁ, ଚରିତ୍ରର ମାନସିକ ସ୍ଥିତି, ପରିବେଶକୁ ଚାହିଁ ନାଟକର ଗୀତମାନ ପରିବେଷିତହେବା ଉଚିତ, ଯାହା ନାଟକର ସାମଗ୍ରିକ ପ୍ରଯୋଜନାଗତ ମୂଲ୍ୟକୁ ବୃଦ୍ଧି କରିଥାଏ ।

ସେହିପରି ପ୍ରଶାନ୍ତ ମାଝୀଙ୍କ 'କାଲ୍' ନାଟକର ଶୀର୍ଷକ ଗୀତଟି ନାଟକର ପରଦା ଖୋଲିବାପରେ ହିଁ ଅନ୍ତରାଳରୁ ପରିବେଷିତ ହେବାରଥିଲା । ଗୀତଟି ଥିଲା -

ଆଉ କେତେ ସଜାଦେବା ଇ କାଲ୍,<br>
ମନ୍ ନେଲା, ସପନ ନେଲା,<br>
ନେବା ଆଉ କେତେ ସାଲ୍ ।

ନାଟକଟି ରାଉରକେଲାରେ ଲୋକନାଟକ ମହୋତ୍ସବରେ ମଞ୍ଚସ୍ଥ ହେଉଥିଲା । ରିହାର୍ସାଲ୍ ପର୍ଯ୍ୟନ୍ତ ସବୁ ଠିକ୍‌ଠାକ୍ ଚାଲିଲା, ତେବେ ନାଟକ ଯେତେବେଳେ ଆରମ୍ଭହେଲା, ସେତେବେଳେ ଗାୟକ ଗାଇଲେ, ଆଉ କେତେ 'ଦଶା' ଦେବା ଇ କାଲ୍ ।

'ସଜା' ସ୍ଥାନରେ 'ଦଶା' ଶବ୍ଦଟି ଗାୟକଙ୍କ କଣ୍ଠରୁ ତାଙ୍କଅଜାଣତରେ ବାହାରିପଡିବାରୁ ନିର୍ଦ୍ଦେଶକ ଭାବରେ ମୁଁ କିଛିକ୍ଷଣ ହନ୍ତସନ୍ତ ହୋଇପଡିଥିଲି । ନାଟକର ସମ୍ପୂର୍ଣ୍ଣ କଥାବସ୍ତୁ ଯେଉଁଗୀତରୁ ସ୍ପଷ୍ଟହେବାର କଥା, ତାହା ପ୍ରାରମ୍ଭରୁ ହିଁ ଗାୟକଙ୍କ ସାମାନ୍ୟ ଅସାବଧାନତା ଯୋଗୁ ବିଶୃଙ୍ଖଳିତ ହୋଇଗଲା, ଯଦିଓ ପରେପରେ ପୁଣି ନାଟକକୁ ସଠିକ୍ ଲୟରେ ପକାଗଲା । ସଂଗୀତଭଳି ନାଟକର ଏକ ନିର୍ଦ୍ଦିଷ୍ଟ ଲୟ ଓ ତାଳ ଥାଏ, ନାଟକର ନିର୍ଦ୍ଦେଶକ ସେହି ତାଳକୁ ନାଟକର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ନିଜହାତରେ ଘୋଡାର ଲଗାମ୍‌ଭଳି ଅକ୍ତିଆରରେ ରଖିଥାନ୍ତି । ଆଲୋକ, ଶବ୍ଦ, ମଞ୍ଚଶିଳ୍ପ ଭଳି ସଂଗୀତ, ଉଭୟ ମଞ୍ଚ ଓ ପରଦାପଛର, ନାଟ୍ୟପ୍ରଯୋଜନାର ଏକ ମହତ୍ତ୍ୱପୂର୍ଣ୍ଣ ଅଂଶବିଶେଷ, ଯାହା ମୋ ନାଟ୍ୟଜୀବନରେ ମୁଁ ଅଙ୍ଗେଅଙ୍ଗେ ନିଭାଇଛି । ପିଲାଟିବେଳୁ

ରେଡ଼ିଓ ଗୀତଶୁଣି ଟେବୁଲ୍ ବାଡ଼େଇବା, ଭବାନୀପାଟଣାରେ ନାଟ୍ୟମଞ୍ଚରେ ଥିବା ତବଲାକୁ ସମସ୍ତଙ୍କ ଅଗୋଚରରେ ବଜାଇବା, ହାଇସ୍କୁଲର ବିଭିନ୍ନ କାର୍ଯ୍ୟକ୍ରମରେ ଢୋଲକ ବଜାଇବା, କଲିକତାରୁ ହୀରୋ କମ୍ପାନୀର ମାଉଥ୍‌ଅର୍ଗେନ୍ କିଣି ତାକୁ ନିଜେ ଶିଖି ବଜାଇ ଭିଏମ୍ କଲେଜ୍‌ର ଯନ୍ତ୍ରସଂଗୀତ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ପ୍ରାପ୍ତ ହେବା ଆଦି ଅତୀତର ସବୁ ଅଭିଜ୍ଞତା, ପରିଶେଷରେ ନାଟ୍ୟପ୍ରଯୋଜନାରେ ହିଁ ବହୁ ଉପଯୋଗୀ ହୋଇପାରିଲା ।

କେତେ ଦୂରେ ମୋର ଆକାଶ୍, ବର୍ଣ୍ଣିର୍ ବା ଚୁମକୀର୍ ମାଁ ତଥା ସୂର୍ଯ୍ୟର୍ ଆରପାରି ନଦୀଟେ ଆଦି ମୋ ନିର୍ଦ୍ଦେଶିତ ନାଟକପାଇଁ ଉପଯୁକ୍ତ କଣ୍ଠଦାନ କରିବା ପ୍ରତିଭା ନମିଳିବାରୁ ମୁଁ ନିଜେ ସେ ଗୀତମାନ ପରଦା ପଛରେ ପରିବେଷଣ କରିଥିଲି, ଯାହା ଉପସ୍ଥିତ ଦର୍ଶକମଣ୍ଡଳୀଙ୍କୁ ଭଲଲାଗିଥିଲା । ଏଥିପାଇଁ ନାଟ୍ୟନିର୍ଦ୍ଦେଶକମାନଙ୍କୁ ଅଭିନୟ, ଆଲୋକ ସଂପାତ, ଶବ୍ଦ ଜ୍ଞାନସହିତ ଉଚ୍ଚମାନର ସଂଗୀତକଳାର ମଧ ଜ୍ଞାନ ରହିବାକଥା ।

ମୋ ନାଟ୍ୟଜୀବନକୁ ସଂଗୀତ ପରିପକ୍ୱ, ପରିପୁଷ୍ଟ ତଥା ପରିପୂର୍ଣ୍ଣ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛି, ଏହା ମୁକ୍ତକଣ୍ଠରେ ସ୍ୱୀକାର କରିବାରେ ଅସୁବିଧା ନାହିଁ ।



ଏ ମଣିଷ ଜୀବନଟା ଏକ ଅଙ୍କାବଙ୍କା ନଈ, କେବେ ଧୀର, କେବେ ଖର !! ସବୁ ସୁଖଯାକ ଏକାଥରକେ ଆସିଗଲେ, ସମ୍ଭାଳି ହୁଏନା, ଦୁଃଖଯାକ ପଛପଛକରି ଆସୁଥିଲେ, ସାମ୍ନାକରିବାର ବପୁ କୁଆଡେ ହଜିଯାଏ ଯେ, ଅଣ୍ଟାଳିଅଣ୍ଟାଳି ହାଲିଆ ହୋଇଗଲେ ମଧ ତ୍ରାହି ମିଳେନା । କଳାକାରମାନଙ୍କ ଜୀବନଦାଣ୍ଡରେ କୁଟୁମ୍ବର ଭୂମିକା କେତେ ଯେ ଗୁରୁତ୍ୱପୂର୍ଣ୍ଣ, ତାହା କେବଳ ଅନୁଭବୀ ହିଁ ପ୍ରକାଶ କରିପାରିବ । ବିଶେଷତଃ ଆମଭଳି ସୌଖୀନ କଳାକାର, ପରିବାରବର୍ଗଙ୍କ ସହ ଭାରସାମ୍ୟ ରକ୍ଷାକରି ଆଗକୁ ନବଢିଲେ ଦୋନାଆବୁଡିଆର ଫଳ ଭୋଗିବାକୁ ପ୍ରସ୍ତୁତ ଥିବା ଦରକାର । ପେଶାଦାର କଳାକାର ପେଟପାଇଁ କଳାର ସଦ୍‌ବ୍ୟବହାର କରେ, ହେଲେ ସୌଖିନ ଶିଳ୍ପୀ, ଖ୍ୟାତିପାଇଁ, ସମାଜପାଇଁ, କଳାର ବିକାଶପାଇଁ ମଞ୍ଚକୁ ଡେଇଁପଡେ । ଅତ୍ୟଧିକ କଳାନିଶା ଦୈନନ୍ଦିନ ଜୀବନର ସର୍ବସ୍ୱକୁ ଜଳାଞ୍ଜଳି ଦେଇ ଯେ ନାଟକଭଳି କଳାକୁ ଆପଣାଏ, ତା ଜୀବନରୁ ସୁଖଶବ୍ଦ ବିଲୁପ୍ତ ହୋଇଯାଏ, ଯେଉଁମାନେ ଭାବିବିଚାରି

ନିଜ କଳାର ସାଧନା ସହ ଦାୟିତ୍ୱବାନ୍ ମୁରବୀଭାବରେ ନିଜ ପରିଚୟର ସୁଖଦୁଃଖ ସହ ସାମିଲ୍‌ହୋଇ ଜୀବନର ଗତି ନିୟନ୍ତ୍ରଣ କରିଥାନ୍ତି, ସେମାନେ ହିଁ ସଫଳ କଳାକାର ବୋଲି ମୋର ଧାରଣା ।

ନାଟକନାଟକରେ ଜୀବନ ବିତିଯାଉଥିବାବେଳେ ଭଲପାଇବାର ନିଦର୍ଶନ ସ୍ୱରୂପ ନିଜେ ନିର୍ବାଚିତ, ପରିବାର ସ୍ୱୀକୃତ, ଯାହାଙ୍କ ହାତଧରି ଘରକୁ ବଧୂବେଶରେ ସସମ୍ମାନେ ଆଣି ସ୍ତ୍ରୀର ମର୍ଯ୍ୟାଦା ଦେବାସହ ପ୍ରଥମ ଲକ୍ଷ୍ୟ ପୂରଣକୁ ମୁଁ ଏକ ବଡ ସଫଳତାବୋଲି ମନେକରେ । ଆମ ପ୍ରେମର ସନ୍ତକ ସ୍ୱରୂପ ଚୌରାଅଶୀ ପ୍ରଥମ ଭାଗରେ ପୁଅଟିଏ କୋଳାଗ୍ରତ ହେଲା ପରେ ଛୟାଅଶୀର ମଧ୍ୟଭାଗରେ ଲକ୍ଷ୍ମୀସ୍ୱରୂପିଣୀ କନ୍ୟାରତ୍ନଟିଏକୁ କାଖେଇ ନେବାରେ ଯେଉଁ ଐଶ୍ୱରୀୟ ଆନନ୍ଦ, ତାହା ଆମେଦୁହେଁ ମର୍ମେମର୍ମେ ଉପଲବ୍ଧି କରିଛୁ । ପୁଅକୁ ସଜେଇଲୁ ସଂଗୀତର ସ୍ୱରରେ, 'ପଂଚମ୍' ଡାକନାମ ଦେଇ, ଝିଅର ଗୋଲଗାଲିଆ ମୁଖମଣ୍ଡଳକୁ ଚାହିଁ ଆପେଆପେ ତୁଣ୍ଡରୁ ନିଝିରଆସିଲା ପୁନେଇ ଜହ୍ନର ରୂପପରି ଦେଖାଯାଉଥିବାରୁ, ସେ 'ପୁନମ୍' ବୋଲି ଡକାହେଲା, ତାର ଲକ୍ଷ୍ମୀପାଦଯୋଡିକୁ ନେଇ ଭଲ ନାଁ ଦିଆଗଲା ଶ୍ରୀରୂପା, ଆଉ ମୋ ମାଁଙ୍କ ଇଛା ପୂରଣ ପାଇଁ ପୁଅର ସ୍କୁଲ ନାମ ରଖାଗଲା ଶ୍ରୀବତ୍ସ, ୟାଙ୍କ ବାପଘର ସଦସ୍ୟଙ୍କ ନାମାନୁସାରେ ପ୍ରଥମରୁ 'ଶ୍ରୀ' ଲାଗିବା ନିଧାର୍ଯ୍ୟ ଥିଲା । ମୁଁ କିନ୍ତୁ ଉଭୟଙ୍କ ଡାକନାମରେ ଶତପ୍ରତିଶତ ସନ୍ତୁଷ୍ଟ ଥିଲି, ସାଙ୍ଗୀତିକ ଶୁଭୁଥିବା ପଂଚମ୍ ଓ ପୁନମ୍ ନାଟକ ପାଇଁ ଏକ ଗୀତର ସୁର ସଜାଇଥିଲି, ଏମାନଙ୍କ ପାଇଁ ମଧ୍ୟ ଗୋଗୋପାଚି ଖେଳେଇବା ବେଳେ ମୁଁ ଆପେଆପେ ଗାଇ ପକାଉଥିଲି ପଦଟିଏ -

ପଞ୍ଚମ୍, ତୁଇ ମୋର୍ ଆଖିର ତାରା,<br>
ପୁନମ୍, ତୁଇ ମୋର ଦୁଖ୍ ପାଶୁରା ।

ଏଇ ପଦକ ଗୁଣୁଗୁଣେଇ ଗୁଣୁଗୁଣେଇ ସମୟର ଚକ ଏମିତି ଘୂରିଯାଉଥିଲା ଯେ ମୁଁ ହଜିଯାଉଥିଲି ଅନିର୍ଦ୍ଦିଷ୍ଟ ଏକ ଅପହଞ୍ଚ ଇଲାକାରେ । ପଞ୍ଚମ୍, ପିଲାବେଳେ, ଟନ୍‌ସିଲ୍ ପୀଡାକୁ ନେଇ କିଛିକଷ୍ଟ ପାଇଥିଲା, ହେଲେ ପୁନମ୍ ନା ନିଜେ କେବେ କଷ୍ଟପାଇଛି, ନା ବାପାମା'ଙ୍କୁ କେବେ ପୀଡାଦେଇଛି । ତା' ପାଇଁ ମୋତେ ବିଶେଷ ଚିନ୍ତା ମଧ୍ୟ କରିବାକୁ ପଡିନି । ଏମିତି କି, ମେଟ୍ରିକ ପରୀକ୍ଷାବେଳେ, ତାର ପରୀକ୍ଷାକେନ୍ଦ୍ର ଆମ ଘରସାମ୍ନା ଧନୁପାଲି ବାଳିକା ବିଦ୍ୟାଳୟରେ ପଡିଥିଲା । ନା, ତାକୁ କେନ୍ଦ୍ରକୁ ଛାଡିଯିବାପାଇଁ ପଡିଛି, ନା ବସ୍ ମଟର୍ କରିବାପାଇଁ ପଡିଛି ।

ପୁଅଝିଅ ଦୁହେଁ ସେମାନଙ୍କ ଶିକ୍ଷା ଜୀବନ ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନରେ ନର୍ସରୀରୁ ମେଟ୍ରିକ ପର୍ଯ୍ୟନ୍ତ କଟେଇଥିଲେ ସଫଳତାର ସହ । ଉଭୟେ ମେଟ୍ରିକରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ଭଲ ମାର୍କ୍ ସହ । ଏହି ଶିକ୍ଷାନୁଷ୍ଠାନ ଏମାନଙ୍କ କେବଳ ଶିକ୍ଷିତ କରିନାହିଁ, ବରଂ ତା'ସହ କରିଛି ସଂସ୍କୃତିସମ୍ପନ୍ନ, ଶୃଙ୍ଖଳିତ, ଦାୟିତ୍ୱବାନ୍, ଭଦ୍ର ଓ ଧୈର୍ଯ୍ୟଶୀଳ । ମୁଁ ତାଙ୍କପାଇଁ ବାପଭାବରେ ମୋର କର୍ତ୍ତବ୍ୟ କେବଳ ପାଳନ କରିଛି ସିନା, ହେଲେ ଶିକ୍ଷକ ଭାବରେ ମେଟ୍ରିକ ପରୀକ୍ଷାବେଳେ ସାହିତ୍ୟପାଠ ବି ଟିକେହେଲେ ପଢ଼ାଇ ପାରିନାହିଁ । ସେମାନେ ତାଙ୍କ ନିଜନିଜ ପ୍ରତିଭାର ସଫଳ ଉପଯୋଗରେ କୃତକାର୍ଯ୍ୟ ହୋଇଥିଲେ । ମୁଁ ପଢ଼ାଇ ନଥିଲେ ବି ସାହିତ୍ୟରେ ଉଭୟ ସତୂରୀରୁ ଅଧିକ ନମ୍ବର ଆଣିଥିଲେ । ମୁଁ ଭାବୁଥିଲି, ପଢେଇଥିଲେ, ଆଉ ଅଧିକ କେତେ ବା ନମ୍ବର ଆଣିଥାନ୍ତେ !! ପୁଅ ମେଟ୍ରିକ୍‌ପରେ ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ଯୁକ୍ତଦୁଇ ପଢିଲା ବିଜ୍ଞାନରେ, ଝିଅ ମହିଳା ମହାବିଦ୍ୟାଳୟରେ ପଢିଲା କଳାବିଭାଗରେ । ପୁଅକୁ ଜିଏମ୍ କଲେଜ୍‌ର କୋଠା ଦେଖାଇ କହୁଥିଲି, ଦେଖିଥା ଏଇ କୋଠାକୁ, ଏଠାରେ ତୋ ବାପା ମା, ତୋ ବଡ଼ବାପା, ବଡମା, ତୋ କାକା ସମସ୍ତେ ପଢିଛନ୍ତି, ତୋ ଆଉ ଜଣେ ଜେଜେବାବା, ଏହି ମହାବିଦ୍ୟାଳୟର ଛାତ୍ର ସଂସଦର ସର୍ବପ୍ରଥମ ସଭାପତି !! ତୋ ବାପା ଦିନେ ଏହି କଲେଜ୍‌ର ସଂଗୀତ ସଂସଦର ସମ୍ପାଦକ ଥିଲେ । ସମାନ କଥା ଦୋହରାଇଥିଲି, ଯେତେବେଳେ ଝିଅ ଯୁକ୍ତଦୁଇ ପାସ୍ ପରେ ଜିଏମ୍ ସିରେ ଭୂଗୋଳ ସମ୍ମାନର ଛାତ୍ରୀଭାବରେ ସ୍ନାତକ ପଢିଲା । ଆଉ ପୁଅ, ଯୁକ୍ତ ଦୁଇ ପାଠ୍ୟକ୍ରମରେ ଉତ୍ତୀର୍ଣ୍ଣ ହେବାପରେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ନିଜକୁ ନିୟୋଜିତ କରିଥିଲା, ଡାକ୍ତରୀ ପାଠ ପଢିବା ପାଇଁ ନିଜକୁ ପ୍ରସ୍ତୁତକଲା ସମ୍ବଲପୁରରେ କୋଚିଂ ଗ୍ରହଣକରି କହୁଥିଲା, ବାପା ମୁଁ ଡାକ୍ତର ହେବି, ନହେଲେ ପାନଦୋକାନ କରିବି । ପୁନମ୍, ତାର ମହିଳା ମହାବିଦ୍ୟାଳୟରେ ପଢିବା ପ୍ରଥମବର୍ଷ ହିଁ ଜାନୁଆରୀ ଛବିଶ, ନୂଆଦିଲ୍ଲୀର ଜାତୀୟ ପେରେଡ୍ ପାଇଁ ଏନ୍‌ସିସି ତରଫରୁ ମନୋନୀତ ହୋଇଗଲା । ଦିଲ୍ଲୀ ଯାଇ, ଅବଦୁଲ କଲାମ, ଅଟଳ ବାଜପେୟୀଙ୍କ ସମ୍ମୁଖରେ ପେରେଡ୍ ଓ ନୃତ୍ୟ ପରିବେଷଣକରି ପ୍ରଧାନମନ୍ତ୍ରୀ ସ୍ୱର୍ଣ୍ଣପଦକ ପାଇ ଆମ ପରିବାର ତଥା ସମ୍ବଲପୁର ପାଇଁ ଗୌରବ ଅର୍ଜନ କରିଥିଲା । ଦ୍ୱିତୀୟ ବର୍ଷରେ ଯୁକ୍ତଦୁଇ ସାଂସ୍କୃତିକ ସମ୍ପାଦକଭାବରେ ନିର୍ବାଚିତା ହୋଇଥିଲା ।

ପଞ୍ଚମ୍, ସଂଘର୍ଷର ଶେଷ ପାହାଚରେ ପାଦ ଦେଇସାରିଥିଲା । ପ୍ରଥମ ଓ ଦ୍ୱିତୀୟ ବର୍ଷ ମେଡିକାଲ୍ ସିଟ୍ ପାଇବାରୁ ବଂଚିତ ହେବାପରେ ଶେଷ ଥରପାଇଁ ହାତୁଡିର ଶେଷପ୍ରହାର ଦେବା ମାନସିକତାରେ ଯୁଦ୍ଧକ୍ଷେତ୍ରରେ ଓହ୍ଲାଇ ପଡିଲା । ତାର

ଇଚ୍ଛାନୁସାରେ ଭୁବନେଶ୍ୱରର ଆଇବୁକ୍‌କୁ ପଠେଇଲି କୋଚିଂପାଇଁ । ଅର୍ଥବାଧକ ଥିବା ସତ୍ତ୍ୱେ ତାକୁ ଖାତିର୍ ନକରି ବାପାର ଦାୟିତ୍ୱବୋଲି ମନେକରି ତାର ମନୋବଳକୁ ଦୃଢୀଭୂତ କରିଥିଲି, ଏପରିକି କାଉନ୍‌ସେଲିଂ ବେଳେ ତା'ସହ ପ୍ରଥମକରି ମୁଁ ଭୁବନେଶ୍ୱର ଯାଇଥିଲି କୃଷି ବିଶ୍ୱ ବିଂଦ୍ୟାଳୟର ଅଡିଟରିଅମ୍‌କୁ । ଧାଡିବାନ୍ଧି ଛାତ୍ରମାନେ ଜଣେ ପରେ ଜଣେ ମନୋନୀତ ହେଉଥାନ୍ତି । କଟକ, ବ୍ରହ୍ମପୁର ମେଡିକାଲ କଲେଜର ସିଟ୍ ସରିଯାଇଥାଏ । ବୁର୍ଲାର ନାମ ଉର୍ଚ୍ଚାରିତ ହେବାପରେ ତା ପାଇଁ ଦଶଜଣକରି ଧାଡିବାନ୍ଧିଲେ ଛାତ୍ରଛାତ୍ରୀମାନେ । ମୁଁ ସାନ୍ତ୍ୱନା ଦେଉଥାଏ ପଞ୍ଚମ୍‌କୁ, ଏଥର ନିଶ୍ଚୟ ତୋପାଳି ପଡିବ । ଏମିତି କାଉନ୍‌ସେଲିଂ ଧାରା ଚାଲିଥିବାବେଳେ ପଞ୍ଚମ୍‌ର ରେଙ୍କ୍ ରଖଥିବା ଛାତ୍ରଛାତ୍ରୀମାନଙ୍କୁ ଡକାଯାଇଥିଲା । ମୋର ଉତ୍କଣ୍ଠା ବଢିବାରେ ଲାଗିଲା, ଈଶ୍ୱରଙ୍କୁ କେବଳ ସ୍ମରଣ କରୁଥାଏ, ପଞ୍ଚମ୍ ଯେମିତି ତା' ଲକ୍ଷ୍ୟରେ ପହଞ୍ଚୁ । ପରେ ଧାଡିରେ ଠିଆହୋଇ ପଞ୍ଚମ୍ ମଧ୍ୟ କାଗଜପତ୍ର ତନଖି କରାଇଲା, ତାର ବୁର୍ଲା କଲେଜ୍‌ର ସିଟ୍ ହୋଇଗଲା । ସେ ଥାଏ ଧାଡିରେ, ମୁଁ ବସିଥାଏ ଗେଲେରୀରେ, ଆଖିରେ ଧାରଧାର ଲୁହ, ପୂର୍ଣ୍ଣତାର, ଆନନ୍ଦାଶ୍ରୁରେ ସିକ୍ତ ମୋ ହୃଦୟ, ପାଖରେ ବସିଥିବା ଆଉ ଜଣେ ଅଭିଭାବକ, ବାରିପଦାର, ମୋତେ କହିଲେ 'କାନ୍ଦୁଛନ୍ତି'? ମୁଁ ତାଙ୍କୁ ଉତ୍ତରିଥିଲି, ମୋତେ ସ୍ୱାଧୀନ ଭାବରେ ବହେ କାନ୍ଦିବାକୁ ଦିଅନ୍ତୁ, ଏଭଳି ମୌକା ସହଜରେ ମିଳେ ନାହିଁ । ମୋ ବାପାଙ୍କ ସ୍ୱପ୍ନ ଥିଲା, ଆମ ପରିବାରରୁ ଜଣେହେଲେ ଡାକ୍ତର ବାହାରନ୍ତୁ । ବାପାଙ୍କ ସେହି ଅଭିଳାଷ ପୂରଣହେଲା ସତ, ହେଲେ ତାଙ୍କ ଅବର୍ତ୍ତମାନରେ !!

ବେଶ୍ ପଞ୍ଚମ୍ ମେଡିକାଲ୍‌ପଢିଲା ବୁର୍ଲାରେ, ହଷ୍ଟେଲର ରହିଲା, ବେଳେବେଳେ ଘରୁ ନୂଆଁ ସାଇକଲଟିଏ କିଣି ଯିବାଆସିବା କଲା । ହାଉସ୍‌ସର୍ଜନ୍ ଶେଷବର୍ଷକୁ ବୁର୍ଲା ମେଡିକାଲ କଲେଜ୍ ତାର ସ୍ୱର୍ଣ୍ଣଜୟନ୍ତୀ ପାଳନ କରିଥିଲା, ସେହିବର୍ଷ ପଞ୍ଚମ୍ କଲେଜ୍‌ର ସାଂସ୍କୃତିକ ସମ୍ପାଦକ ଭାବରେ ନିର୍ବାଚିତହୋଇ ଜୟନ୍ତୀ ଉତ୍ସବର କାର୍ଯ୍ୟକ୍ରମ ପରିଚାଳନା କରିଥିଲା, ଅଣ୍ଟାରେ ନିଷାନ୍‌ଭିଡି ତା' ବଜାଇବା ରୂପଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି, ନିଜେ ନାଚିଲା, ଅପରକୁ ମଧ୍ୟ ନଚାଇଲା । ଆମେ ତିନିହେଁ ଯାଇଥିଲୁ ସେହି ସାଂସ୍କୃତିକ କାର୍ଯ୍ୟକ୍ରମ ଦେଖିବାପାଇଁ, ମନ ଭରି ଦେଖିଲୁ, ଆନନ୍ଦିତ ହେଲୁ । ସେପଟେ ଝିଅ କୃତିତ୍ୱର ସହ ଭୂଗୋଳସମ୍ମାନରେ ଟପ୍ପରହୋଇ ଉତ୍ତୀର୍ଣ୍ଣ ହେବା ପରେ ବାଣୀବିହାରରେ ପଢି ନିଜ ଆଉଟ୍ ଲୁକ୍‌କୁ ସମ୍ପ୍ରସାରିତକରିବାରେ ସଫଳ ହେଲା, ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ବିଇଡି ପାଇଁ ମନୋନୀତ ହୋଇଗଲା ଓ ସମ୍ବଲପୁର

ବିଇଡି କଲେଜ୍‌ରେ ପଢି ପାଠ୍ୟକ୍ରମ ଶେଷକରିଥିଲା । ବିଇଡି ଶେଷ ହେଉଣୁ ସରକାରୀ ଉଚ୍ଚ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଭାବରେ ଯୋଗ ଦେଲା ଆମ ଗାଁ ପାଖ ଜୟନ୍ତପୁର ହାଇସ୍କୁଲରେ । ଏବେ ତାର ପଦବୀ ପୂର୍ଣାଙ୍ଗପ୍ରାପ୍ତ ହୋଇ ସେ ପ୍ରଧାନ ଶିକ୍ଷୟିତ୍ରୀ ଦାୟିତ୍ୱ ସମ୍ଭାଳୁଛି, ଆମ ଗାଁର ପିତୃପୁରୁଷଙ୍କ ଋଣ ଶୁଝୁଛି ।

ସେପଟେ ପଞ୍ଚମ୍, ଏମ୍‌ବିବିଏସ୍ ଡିଗ୍ରି ହାସଲପରେ ପ୍ରଥମେ ଝାରସୁଗୁଡାଜିଲ୍ଲା ଲଇକେରା ଅନ୍ତର୍ଗତ ମୁଦ୍ରାଯୋର୍‌ର ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ରରେ ମେଡିକାଲ ଅଫିସର ଭାବରେ ଚାକିରୀ ଜୀବନ ଆରମ୍ଭକଲା । କିଛିବର୍ଷ ପରେ ତାର ଓ.ପି.ଏସ୍.ସି. ଯୋଗ୍ୟତା ଲାଭପରେ କଳାହାଣ୍ଡିର ଧର୍ମଗଡ ମଣ୍ଡଳର ବେହେରା ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ବଦଳି ହେଲା । ସେଠାରରେ ଦୁଇଅଢ଼େଇ ବର୍ଷ ପରେ ଉପାଧ୍ୟୁତ୍ତର ପାଠ୍ୟକ୍ରମ ପାଇଁ ତାର ପ୍ରସ୍ତୁତି ଆରମ୍ଭ କଲା ଓ ଶେଷରେ ଏଥିରେ ମଧ୍ୟ ସଫଳ ହୋଇ ବ୍ରହ୍ମପୁର ମେଡିକାଲ କଲେଜ୍‌ରେ ଶଲ୍ୟ ବିଭାଗରେ ସ୍ନାତକୋତ୍ତର ପାଠ୍ୟକ୍ରମ ଶେଷକରି ବର୍ତ୍ତମାନ ବଲାଙ୍ଗିର ଭୀମଭୋଇ ଭେଷଜ ମହାବିଦ୍ୟାଳୟର ସଦର ଡାକ୍ତରଖାନାରେ ଶଲ୍ୟ ବିଶେଷଜ୍ଞ ଭାବରେ କାର୍ଯ୍ୟରତ ।

ପୁଅଝିଅ, ଉଭୟଙ୍କ ଜୀବନ କ୍ଷେତ୍ରରେ ସଂସ୍ଥାପନ ହେବାରେ ମୋ ଭୂମିକାଅପେକ୍ଷା ମୁଁ ମନେକରେ, ସେମାନଙ୍କ ପ୍ରତିଭା ଅଧିକ ଉପଯୋଗୀ ହୋଇପାରିଛି । ଆମେ କେବଳ ବାପମା ଭାବରେ ଆମ ନୈତିକ ଦାୟିତ୍ୱ ନିଭାଇଛୁ । ମୋର ନାଆବୁଡା ଚାକିରୀ ଜୀବନରେ ପୁଅଝିଅଙ୍କ ଏହି ସଫଳତା ମୋତେ ବଞ୍ଚିବାର ଉଷନାକୀ ଦେଇଛି, ଜୀଇଁବାର ଖୋରାକ୍ ଯୋଗାଇଛି, ମନଭର୍ତ୍ତି ମନମତାଣିଆ ଗୀତଗାଇ, ହସିଖେଳି ସମୟ କଟାଇବାକୁ ମୌକା ଦେଇଛି । ଟନ୍‌ସିଲ୍‌ରେ ପୀଡିତ ପଞ୍ଚମ୍‌ର ଅନର୍ଗଳ କାଶକୁ ନେଇ ମୁଁ ତା'ପିଲାବେଳେ କେତେ ଚିନ୍ତା କରୁ ନଥିଲି, ଏବେ ମୁଁ ଖୁଁ କଲେ ସେ ମାଡିବସୁଛି ମୋତେ ଆରୋଗ୍ୟ ରଖିବାପାଇଁ । ଯେଉଁ ପୁନମ୍‌କୁ ତାର ଜନ୍ମଦିବସରେ ଭଲ ଜାମା ବା ଫ୍ରକ୍ ଖଣ୍ଡେ କିଣିବାକୁ ମୋ ପାଖରେ ଅର୍ଥ ନଥିଲା, ଏବେ ସେଇ ପୁନମ୍ ତା' ଝିଅ ମୁନ୍ ପାଇଁ ପ୍ରତ୍ୟେକ ସପ୍ତାହରେ ନୂଆଁଜାମା କିଣିବାରେ ସମର୍ଥା, ଏମାନଙ୍କ ସ୍କୁଲ୍‌ଫିଜ୍ ଭରିବା ପାଇଁ ମାସମାସ ଲାଗିଯାଉଥିଲା, ଏବେ ସେମାନେ ତାଙ୍କ ସନ୍ତାନଙ୍କ ପାଇଁ କନ୍‌ଭେଣ୍ଟ ସ୍କୁଲ୍ ଭଳି ଖର୍ଚ୍ଚାନ୍ତ ବିଦ୍ୟାଳୟରେ ନାମ ଲେଖାଇବାରେ ସମର୍ଥ ହୋଇଛନ୍ତି, ଏହା ମୋ ପାରିବାରିକ ଜୀବନର ସଫଳତାର ଏକ ଦିଗ ବୋଲି ମୁଁ ମନେକରେ । ମୋର ନାଟକକରିବା ଆଡୁଆଳରେ ଏମାନଙ୍କ ନୀରବ ସମର୍ଥନ ଥିଲା, ଧନୁଯାତ୍ରାବେଳେ ଏହି ଦୁଇଜଣଙ୍କୁ ଏଇଥିପାଇଁ ହାତୀ ଉପରେ ବସାଇ

କଂସମହାରାଜ ବେଶରେ ମଥୁରାକଟକ ଭ୍ରମଣାଇଥିଲି ଯେ, ମୁଁ ସିନା ମିଛରାଜା ହେଲି, ତୁମେମାନେ କିନ୍ତୁ ତମଜୀବନରେ ଅସଲି ରାଜା ଓ ରାଣୀ ହୁଅ, ସେଇ ଲକ୍ଷ୍ୟ ମୋର ସାର୍ଥକ ହୋଇଛି, ତାଙ୍କ ଜୀବନର ସଫଳତା, ମୁଁ ଆମ ସଂଘର୍ଷମୟ ଜୀବନର ପରୀକ୍ଷାର ଫଳ ବୋଲି ମୁଁ ପ୍ରତିମୁହୂର୍ତ୍ତରେ ଅନୁଭବ କରେ ।

ଘାତପ୍ରତିଘାତ ତ ଆସିବ ଜୀବନରେ, ତାକୁ କିଭଳି ସାମ୍ନା କରିବାକୁହେବ, ସେଇ ଶିକ୍ଷା ହିଁ ଜୀବନ ଶିକ୍ଷାୟତନର ଅସଲି ଶିକ୍ଷା, ଯାହା ଶ୍ରେଣୀକୋଠରୀରେ ନୂହେଁ, ବରଂ ପଢିହୁଏ ବାସ୍ତବଜୀବନର ବିସ୍ତାରିତ କ୍ଷେତ୍ରରେ, ଗୃହର ଚାରିକାନ୍ଥ ଭିତରେ ଆବଦ୍ଧହୋଇ ନୁହେଁ, ଆକାଶର ଛାତିକୁ ଆଲିଙ୍ଗନକରି, କେବଳ ମୁହଁର, ତୁଣ୍ଡର ସଂଳାପରେ ନୁହେଁ, ପ୍ରଚଣ୍ଡ ଧୀଶକ୍ତିଯୁକ୍ତ ମୁଖାଭିନୟନର ମିଛ ହସରେ ନୂହେଁ, ସତ କ୍ରନ୍ଦନର ପ୍ରତିଧ୍ୱନୀରେ, ଛଳନାର ଛାୟାରେ ନୁହେଁ, ଚିରନ୍ତନ ସତ୍ୟର ଅଦୃଶ୍ୟ କାୟାରେ, ଏଥିରେ ହିଁ ଜୀବନଯୁଦ୍ଧରେ ବିଜୟଲାଭ କରିହୁଏ, ଏହା ମୋର ସୂକ୍ଷ୍ମାତିସୂକ୍ଷ୍ମ ଉପଲବ୍ଧିର ନିର୍ଯ୍ୟାସ !!



**ସ**ମ୍ବଲପୁରଠାରୁ ବରଗଡ ଜିଲ୍ଲା ଭେଡେନ୍ ବ୍ଲକ୍ ଅନ୍ତର୍ଗତ ଚିଚିଣ୍ଡା ଗ୍ରାମକୁ କେତୋଟି ରାସ୍ତା ଦେଇ ଯାଇହୁଏ, ତାହା ମୋତେ ସେତେବେଳେ ଜଣାପଡିଲା, ଯେତେବେଳେ ମୁଁ ଥିଲି ସମ୍ପୂର୍ଣ୍ଣ ଭାବରେ ଅନ୍ୟାଶ୍ରୟୀ । ଆଗରୁ କହିଛି, ଚୌରାନବେରେ ମୋର ବାଞ୍ଜିପାଲିସ୍ଥିତ ଅସଜଡ଼ା ଭଡ଼ାଘର ଛାଡିବାପରେ ପ୍ରଥମେ ଆମ ରାଜନୀତି ବିଭାଗର ଅଧ୍ୟାପକ ରତନ ଶର୍ମାଙ୍କ ସହ ତାଙ୍କ ଭେସ୍ପା ଏଲ୍ଏମ୍ଏଲ୍ ସ୍କୁଟର୍‌ରେ ରେଙ୍ଗାଲୀ କେମ୍ପ ରାସ୍ତା ଦେଇ ସିଧା କେନାଲ୍ ପଥଦେଇ କଲେଜ୍ ଯାଉଥିଲି । ପରେ ତାଙ୍କ ବଦଳି ହେବାପରେ ବସ୍‌ରେ ଗୋଡଭଗା ବାଟଦେଇ ଅଧ୍ୟାପକ ବୃନ୍ଦାବନ ମିଶ୍ରଙ୍କ ଗାଁ ଦେଶଭଟଲି ବା ଅନତିଦୂରରେ ଥିବା ଉଦେପୁର ଛକରେ ତାଙ୍କୁ ଅପେକ୍ଷାକରି ଜଳଖିଆସାରି କଲେଜ୍ ଅଭିମୁଖେ ଯାତ୍ରା କରୁଥିଲୁ । ଏଠାରୁ ମଧ୍ୟ ଦୁଇଟି ବାଟ, ଗୋଟାଏ ଗର୍ଭନାରୁ ଡାହାଣକୁ କଟି ସିଧା ମହଲାକଟା, ଧାତୁକପାଲି, ଆଖିଫୁଟା, କଦଲୀପାଲି ଦେଇ ପପଙ୍ଗା ଛକ ଦେଇ, ଆଉ ଗୋଟିଏ, ବୈପୁରରୁ ଡାହାଣକୁ କଟି ମାନପୁର ଦେଇ ପୁଣି ଆଖିଫୁଟା ପହଞ୍ଚି ପପଙ୍ଗା ଛକଦେଇ କଲେଜ୍ ଯିବାକୁ ହେଉଥିଲା । ସେତେବେଳେ ଗର୍ଭନାରୁ ପପଙ୍ଗା ପର୍ଯ୍ୟନ୍ତ କଚ୍ଚାରାସ୍ତା ଥିଲା, ତେଣୁ ସାବଧାନତାର ସହ ନଗଲେ ଦୁର୍ଘଟଣା ଘଟିବାର ଯଥେଷ୍ଟ ସମ୍ଭାବନା ଥିଲା । ଆଉ ବୈପୁରଦେଇ ରାସ୍ତା ତ କେବଳ ଆଡିରାସ୍ତା । ଆଡି ତଳକୁ

ସାନକେନାଲ୍, ଥରେ ଅଧେ ସ୍କୁଟର୍‌ରୁ ପଡିବାର ମଧ୍ୟ ନଜୀର୍ ଅଛି । ପରେପରେ ବୃନ୍ଦାବନ ମଧ୍ୟ ସମ୍ବଲପୁର ମୁହାଁ ହେଲେ, ପିଲାଛୁଆଙ୍କ ପାଠପଢା ପାଇଁ ସମ୍ବଲପୁର ଚାଲି ଆସିଲେ ଏବଂ ସମ୍ବଲପୁରରୁ ଯିବାଆସିବା କଲେ ତାଙ୍କ ବଜାଜ୍ ସ୍କୁଟର୍‌ରେ । ଆଉ ଅନ୍ୟ ଉପାୟ ନଦେଖି କିଛିମାସ ଘରୁ ଏନ୍.ଗୁହାଲେନ୍‌କୁ ଟେମ୍ପୋରେ ଆସି ସେଇଠୁ ତାଙ୍କ ସାଙ୍ଗରେ ରିଂଗ୍‌ରୋଡ୍ ଦେଇ ଗୋଶାଳା, ଗୋଡଭଗା, ଲରମ୍ଭା, କାଦୋବାହାଲ୍ ଦେଇ ପୁଣି ଗର୍ଭନାରୁ କଟି ପପଙ୍ଗାରାସ୍ତା ଧରୁଥିଲୁ । ଅବଶ୍ୟ କାଦୋବାହାଲ୍ ପରେ ଟୁକୁରାଛକରେ ଯାତ୍ରାର ଗୋଟାଏ ବ୍ରେକ୍ ଲାଗୁଥିଲା, ସୁନାରୀ ପାନଦୋକନୀ ପାଖରେ, ଭାଇଠୁ ଚାହା ଓ  ଦାଦାଙ୍କ ଠାରୁ ସିଗାରେଟ୍ ପରେ ଦ୍ୱିତୀୟ ପର୍ଯ୍ୟାୟ ଚିଚିଣ୍ଡାଗସ୍ତ ଆରମ୍ଭ ହେଉଥିଲା । ଏଇ ବାଟରେ ମଧ୍ୟ ଭାଇ ବୃନ୍ଦାବନ ଦୁଇଟି ସୁଖଦ ପଥ ଆବିଷ୍କାର କରିଥିଲେ । ପ୍ରଥମଟି ଗୋଶାଳା ଛକରୁ ବାମକୁ କଟି ଚିପିଲିମା ରାସ୍ତାଦେଇ ଚାରପାଲି ଛକରୁ ଡାହାଣକୁ କଟି ଅନ୍ଧାରିପାଲି ଗାଁ ଭିତରଦେଇ ତିନି କିଲୋମିଟର କଚ୍ଚା ରାସ୍ତା ପାରିହେଲେ ଗମ୍ଭାରିପାଲି ଫାର୍ମ ପାଖରେ ଲରମ୍ଭାକୁ ସ୍ପର୍ଶ କରୁଥିଲା ରାଜ୍ୟ ରାଜପଥ । ଏଇ ବାଟଦେଇ ଗଲେ ଖୁବ୍ ଭଲ ଲାଗୁଥିଲା, ଅନ୍ଧାରିପାଲି ବାଟରେ ଖୁବ୍ ଆମ୍ବଗଛ, ଖରାଦିନେ ଗଲେ ଆମେ ପ୍ରଚୁର ଲେଟି ସଂଗ୍ରହ କରୁଥିଲୁ । ଏଇ ରାସ୍ତାର ପ୍ରାକୃତିକ ପରିବେଷ୍ଟନୀରେ ଆମେ ମୁଗ୍ଧ ହୋଇପଡୁଥିଲୁ, ଦଶହରାମାସର ଯାତ୍ରାରେ ତ ପାଟିରୁ ଖାଲି ରୋମାଣ୍ଟିକ୍ ଗୀତ ଉଛୁଳିପଡୁଥିଲା । ଅନ୍ୟ ବାଟଟି ହେଲା ଚାରପାଲି ଛକରୁ ବାମକୁ କଟିଲେ ବିରାଟ ବନ୍ଧାଡିରାସ୍ତା ପଡେ, ଏଇରାସ୍ତା ଡାଲବୀ ଦେଇ ଖୁଣ୍ଟଲିପାଲି ଛକରେ ଯାଇ ପଡେ । ପରେ ଗତାନୁଗତିକ ଭାବରେ ଉଦେପୁର ଛକଦେଇ କଲେଜ୍ ଯିବାକୁ ହେଉଥିଲା । ଡାଲବି,ବନ୍ଧୁ ଡ. କବୀରଦାସ ପୁରୋହିତଙ୍କ ପୈତୃକ ଗ୍ରାମ ।

ଉପରେ ବର୍ଣ୍ଣିତ ସମସ୍ତରାସ୍ତା ଆମେ ଯିବାଆସିବା କରିବାଭିତରେ ପ୍ରଧାନମନ୍ତ୍ରୀ ଯୋଜନାରେ ନବୀକରଣ ହୋଇଥିଲା, ଗୋଡଭଗାଠାରୁ ତୁରୁମଦେଇ ସୋନପୁରଯିବା ରାଜ୍ୟରାଜପଥ, ପରେପରେ ଉନ୍ନତମାନର ରାସ୍ତାରେ ରୂପାୟିତ ହୋଇଗଲା । ଏହି ପ୍ରକ୍ରିୟା ଦୁଇହଜାର୍ ଛ, ସାତ ପର୍ଯ୍ୟନ୍ତ ଚାଲିଲା । ପରେ ବଡକଷ୍ଟରେ ଜୀବନରେ ପ୍ରଥମ କରି, ଧାରବାଡି କରି ଗୋଟାଏ ହୋଣ୍ଡାପ୍ଲେଜର୍ ସ୍କୁଟର ମୋ ପାଇଁ କିଣାହେଲା । ଗାଡି ଚଢିଲେ କି ଘୋଡାକୁ ମନ ! ! ସମ୍ବଲପୁର ସହରରେ କାମଧାମ, ବୁଲାବୁଲି କରିବାପାଇଁ କିଣାଯାଇଥିବା ଆନନ୍ଦମୟ ପ୍ଲେଜର ଶେଷକୁ ବାଧ୍ୟ ହୋଇ ମୋତେ ଲଦି ଜଳପଥ, ସ୍ଥଳପଥକରି ଚିଚିଣ୍ଡାମୁହାଁ ହେବାକୁ ବାଧ୍ୟ ହେଲା । ଭାଇ

ବ୍ରଜେନ୍ଦ୍ରସହ ଏହି ଗାଡିଟି କିଣିଯାଇଥିଲୁ ପାଞ୍ଚଗୋଛିଆରେ ଥିବା ସୋ ରୁମ୍‌କୁ । ଏଥି ପୂର୍ବରୁ କବି ଦୁର୍ଗାପ୍ରସାଦ ପଣ୍ଡାଙ୍କ ସହ ଆଚାରବିଚାର ହୋଇଥିଲା, କାରଣ କିଛିମାସ ପୂର୍ବରୁ ସେ ମଧ୍ୟ ଏଭଳି ପ୍ଲେଜର ଟିଏ କିଣି ଆନନ୍ଦ ପାଇବା ସହ ସକରାତ୍ମକ ଟିପ୍ପଣୀ ଦେଇଥିଲେ । ଏଇ ଗାଡି କିଣିବାପୂର୍ବରୁ ସାଇକଲ୍ ହିଁ ଥିଲା ମୋର ସର୍ବେସର୍ବା । ସେଇ ସାଇକଲମାଡି ସାରା ସମ୍ବଲପୁର ଘୁରିଆସୁଥିଲି ଥରକେ, ବଡବଜାରରୁ ଫାଟକଯାଏ, ସେଇଥିରେ କଲେଜ୍, ସେଇଥିରେ ନାଟତମାସା, ସେଇଥିରେ ଲୋକମହୋତ୍ସବ, ପୁସ୍ତକମେଳା, ନାଟକ ପ୍ରତିଯୋଗିତା, ଭରନି ସାହିତ୍ୟୋତ୍ସବ, ବାହାଘର ଭୋଜି, ଗଙ୍ଗାଶ୍ରାଦ୍ଧ, ସବୁକିଛି । ଅବଶ୍ୟ ଏତେ ସାଂସ୍କୃତିକ କାମଭିତରେ ଗୋଟିଗୋଟିକରି ନଅଟି ସାଇକଲ୍ ବିଭିନ୍ନ ସ୍ଥାନରୁ ଚୋରିହୋଇଥିଲା, କିମ୍ୱା ଅଜାଣତରେ ହଜିଯାଇଥିଲା । ଜିଏମ କଲେଜ୍‌ରୁ ପ୍ରାୟ ଚାରୋଟି, ହଷ୍ଟେଲ୍ ଫଙ୍କସନ୍ ବେଳେ ଦୁଇଟି, ଧନୁପାଲି ଛକରୁ ଗୋଟିଏ, ଶେଷକୁ ଘରଦୁଆରୁ ଗୋଟାଏ, ଧନ୍ୟ କହିବ ମୋ ସାଇକଲ୍ କିଣା ଓ ହଜା'କୁ । ଶେଷକୁ ବାପାଙ୍କ ପୁରୁଣା ସାଇକଲ ମଧ୍ୟ କେଉଁବାପୁତାର ହାତରେ ପଡିଲା କେଜାଣି, କେତେଥର ଚେନ୍ ହିଟୁଥିବ, ଲଗାଇଥିବ, ତା କଥା ଭାବିଦେଲାକ୍ଷଣି ମୁହଁରେ ମୋର ନିର୍ଲଜହସ ଉଛୁଳି ପଡୁଥାଏ ।

ବେଶ୍‌ବେଶ୍, ପ୍ଲେଜର୍ କିଣିବାପରେ ସର୍ବପ୍ରଥମେ ମୁଁ, ମୋ ସହଧର୍ମିଣୀ ଓ ପୁନମ୍ ଗୋଟାଏ ଲଙ୍ଗ୍‌ଡ୍ରାଇଭ୍‌ରେ ଯାଇଥିଲୁ ଧନୁପାଲିରୁ ମାନେଶ୍ୱର ପର୍ଯ୍ୟନ୍ତ । ଗାଡି ପ୍ଲେଜର୍, ବସିଛୁ ତିନିଜଣ, ଏଥିରେ ଜାଗାକାହିଁ, ଏତେ ସପନକୁ ରାତିକାହିଁ ଭଳିଆ । ବଡକଷ୍ଟରେ ଆମ ପ୍ଲେଜର ନିଜେ କଷ୍ଟପାଇ ଆମକୁ ମାନେଶ୍ୱର ଯାଏ ପହଞ୍ଚାଇ ଦେବାର ପ୍ଲେଜର୍ ଦେଲା । ଖୁସିରେ ମାନେଶ୍ୱର ଛକର ଗୁଜୁରାଟୀ ହୋଟେଲ୍‌ରେ ମିଷ୍ଟାନ ଭୋଜନ କରି ଲଙ୍ଗ୍‌ଡ୍ରାଇଭ୍‌ରୁ ଫେରିଥିଲୁ । ପୁନମ୍ ଓ ତାଙ୍କୁ ପଛପଟେ ବସାଇବାପରେ ବାକି ସିଟ୍‌ଆଗରେ ଯେଉଁ କିଛି ସେଣ୍ଟିମିଟର୍ ଅଂଚଳ ଥିଲା, ସେଥିରେ ଆରୋହଣକରି ଧନୁପାଲିରେ ପହଞ୍ଚିବାକୁ ହେଲା । କିନ୍ତୁ ଏଇଗାଡିଟି ମୋତେ ସ୍ୱାଧୀନତା ଦେଲା, ମୁକ୍ତ କରିଥିଲା ସମସ୍ତ ବନ୍ଧନରୁ, ମୋତେ ଆତ୍ମନିର୍ଭରଶୀଳ କରିବାରେ ସମର୍ଥ ହେଲା । ଗଲାପଛେ ଅଧା ଦରମା ପେଟ୍ରୋଲ ଖର୍ଚ୍ଚରେ !! ପରେପରେ ବର୍ଷବର୍ଷ ଧରି ପାଉଥିବା ରାସ୍ତାନିର୍ଯ୍ୟାତନା, ଅନ୍ୟକୁ ଦେଇଥିବା ଅନିଚ୍ଛାକୃତ କଷ୍ଟରୁ ମୋ ସହ ସମସ୍ତେ ସ୍ୱାଧୀନ ଭାରତର ସ୍ୱାଧୀନନାଗରିକ ଭାବରେ ବିଚରଣ କରିବାର ସୁଯୋଗ ପ୍ରଦାନ କଲା ।

କ୍ରମେ ପ୍ଲେଜର୍‌ରେ ଗୋଡଭଗା ଦେଇ ଏକାଏକା କଲେଜ୍ ଗଲି । ପରେ ମୋର ସବୁଠାରୁ ପ୍ରିୟ ଦେଗାଁ ଦେଇ ମହାନଦୀ ପାରିହୋଇ ଉଦେପୁର ଛକର ଜଳଖିଆଖାଇ କଲେଜ୍ ଗଲି । ସାଙ୍ଗରେ ମଧ୍ୟାହ୍ନଭୋଜନର ପରଠା, ଭଜା ମଧ୍ୟ ଡିକିରେ ଲୋଡ୍ ହେଲା । ଦୁଇହଜାର୍ ଆଠ, ନ’ ବେଳକୁ ନଦୀରେ ଆଉ ଆହୁଲାମରା ଡ଼ଙ୍ଗା ନଥାଏ, ସେଥିରେ ମୋଟର୍ ଫିଟ୍ ହୋଇ ପାଲଟିଯାଇଥାଏ ଯନ୍ତ୍ରଚାଳିତ ଡଙ୍ଗାରେ । ସ୍କୁଟର ଡଙ୍ଗାରେ ଲୋଡ୍‌ହୁଏ, ଆରପାରିରେ ତାକୁ ଅଣ୍ଟା ପାଣିରେ ଓହ୍ଲାଇ ଦିଆଯାଏ, ପୁଣି ବାଲିବାଲିରେ ଫୁଲ୍ ଏକ୍ସଲେରେଟର୍‌ରେ ନଦୀହିଡ ପାରିହେଲେ ସ୍ୱାଭାବିକ ଗତିରେ ଚାଲେ । ଡଙ୍ଗାରେ ଏକାଥରକେ ପନ୍ଦରସତର ଗାଡିକୁ ଧରି ଡଙ୍ଗା ଚାଲୁଥିଲା । ଏଭଳି ଭାବରେ କିଛିମାସ ଗଲାପରେ ଦେବୀଦାସ ମିଶ୍ର କଲେଜ୍‌ର ଅଧ୍ୟକ୍ଷ ପଦ ସମ୍ଭାଳିଲେ । ସେ ସମ୍ବଲପୁରରୁ ଯିବାଆସିବା କଲେ । ବେଳେବେଳେ ତାଙ୍କୁ ଏନ୍ ଗୁହା ଛକରୁ ବସାଇ ଗୋଡଭଗା ବାଟରେ, ଆଉ ଅଇଁଠାପାଲିରେ ରହିବାପରେ ସେ ଧନୁପାଲି ଛକକୁ ଚାଲିଆସୁଥିଲେ ଟେମ୍ପୋରେ, ତାଙ୍କୁ ବସାଇ ନଦୀରାସ୍ତାରେ ବହୁଥର ଯିବାଆସିବା କରିଛୁ । ବାଟରେ ଦେବୀଦାସଙ୍କ କବିସୁଲଭ ପ୍ରକୃତିବର୍ଣ୍ଣନା ଶୁଣିଲେ ଆନନ୍ଦ ଲାଗୁଥିଲା । ଆରପାରି ପହଞ୍ଚିଲାପରେ ନଦୀପାଣିରେ ସ୍କୁଟର୍ ଠେଲି ଶୁଖିଲାଜାଗାକୁ ନେବାରେ ତାଙ୍କ ସହଯୋଗ ମିଳୁଥିଲା । ଘଟୁଆଲ୍ ପଞ୍ଚମ୍ କି ହର କି ବାରା ଥିଲେ ସ୍କୁଟର୍ ଲଦିବା, ଓତାରିବା କାମ ସହଜ ହେଉଥିଲା । ବେଳେବେଳେ ଅସୁବିଧାସମୟରେ ମୁଁ ବୃନ୍ଦାବନଙ୍କ ଏନ୍ ଗୁହାସ୍ଥିତ ଘରକୁଯାଇ ତାଙ୍କୁ ବସାଇ ଏକାସାଥିରେ କଲେଜ୍ ଯାଉଥିଲୁ । ସମୟ ଆସିଲା, ବୃନ୍ଦାବନ ସ୍କୁଟର୍ ସ୍ଥାନରେ ହୀରୋହୋଣ୍ଡା ଡିଲକ୍ସ କିଣିଲେ, ସେଥିରେ ଯିବାଆସିବା କଲେ । ମୁଁ ମଧ୍ୟ କିଛିଦିନ ତାଙ୍କ ବାଇକ୍‌ରେ ନଦୀ ବାଟରେ ଯାଆସ କରିଛି । ଦେବୀଦାସ ମୋ ପ୍ଲେଜର ଛାଡି ବୃନ୍ଦାବନଙ୍କ ସାଙ୍ଗ ଧରିବା ପରେ ପୁଣି ମୁଁ ମୋର ସ୍ୱାଧୀନ ଭାବରେ ଯିବାଆସିବା କଲି, ମଝିରେ ପୁଅ ବାହାଘର ପରେ ମୋ ପାଖକୁ ଏକ୍ଟିଭା ଧାଇଁଧାଇଁ ଆସି କହିଲା, ମୋ ପିଠିରେ ବସ, ଦେଖିବ, କିଛି କଷ୍ଟ ପାଇବ ନାହିଁ । ସତକୁ ସତ ଏକ୍ଟିଭାରେ ସବାର୍ ହେଲାପରେ ମୁଁ ନଦୀବାଟର ସାଙ୍ଗ ଛାଡିଲି, ଅବସରପର୍ଯ୍ୟନ୍ତ ସେହି ଏକ୍ଟିଭାରେ ଯାତାୟାତକରି ନିଜକୁ ସଦାସର୍ବଦା ଏକ୍ଟିଭ୍ ରଖିପାରିଥିଲି । ରାସ୍ତା ଭଲ ଥିଲା, ଗାଡି ଚୌକସ୍ ଥିଲା, ମଧୁର ଗତିରେ ପବନ ସହ କଥାବାର୍ତ୍ତା ହୋଇ ଗଲାବେଳେ ନୀଦମାଉସୀ ବେଳେବେଳେ ଆସି ଆଖିରେ ବସା ବାନ୍ଧୁଥିଲେ । ତଥାପି ଲକ୍ଷ୍ୟପଥରେ ମାଡିଯାଉଥାଏ ମୋର ସୁରେନ୍ଦ୍ର ସାଏଙ୍କ କର୍ଲାପାଟ୍ ଘୋଡାଭଳି ।

ମହାନଦୀର ବକ୍ଷରେ ହୀରାକୁଦର ଷାଠିଏ ଦ୍ୱାରଦେଇ ଜଳ ନିଷ୍କାସନ ହେବାବେଳେ ମଧ୍ୟ ଆହୁଲାମରା ଢଙ୍ଗାରେ କୁଟୁମୁଟୁହୋଇ ବସି ନଈ ପାରିହୋଇଛି । ଘଟୁଆଲ୍ ପଞ୍ଚମ୍‌ର ସମଲେଇ ମାଁ କି ଜୟ ଧ୍ୱନୀରେ ମୁଁ ମଧ୍ୟ ସାମିଲ୍ ହୋଇପଡୁଥିଲି, ଭଲଭାବେ ମାଁ ନଈ ପାରି କରିଦିଅ ବୋଲି ପ୍ରାର୍ଥନା କରୁଥିଲି । କେବେକେବେ ଫେରିବାର ଡେରିହେଲେ, ସଂଧ୍ୟା ନଇଁଆସୁଥିଲା, ମୋବାଇଲରେ ଗୀତଟିଏ ବଜାଉଥିଲି, 'ଶାମ୍ ଢଲେ ଯମୁନା କିନାରେ, ଆଜା ରାଧେ ଆଜା ତୁଝେ ଶ୍ୟାମ ପୁକାରେ' । ଗୀତ ଶୁଣିଶୁଣି ହାଲିଆ ହୋଇଥିବା ଦେହଟିମୋର ଭାବବିହ୍ୱଳ ହୋଇପଡେ ନୌକାରେ ବସି, ଆଖି ନିଦେଇଯାଉଥାଏ, ଡଙ୍ଗାରୁ ଓହ୍ଲାଇ ଧମାଯାଇ ସେଠାରେ ଚା' କପେ ପଡିଗଲେ, ପୁଣି ସତେଜ୍ ହୋଇପଡେ, ଧନୁପାଲି ପହଞ୍ଚିଯାଏ । ଶୀତସକାଳର କାକର, ଗ୍ରୀଷ୍ମର ଝାଞ୍ଜି, ବର୍ଷାର ଟପ୍‌ଟାପ୍ ତାଳଧ୍ୱନୀ, ନୌକାଯାତ୍ରାକୁ ରୋମାଞ୍ଚକର କରିଦେଉଥିଲା । ଏମିତି ଥରେ ବୃନ୍ଦାବନଙ୍କ ସହ ଚିଚିଣ୍ଡା ଯାଉଯାଉ ପପଙ୍ଗା ମିଲ୍ ପାଖରେ ସ୍କୁଟର୍ ସାମ୍ନାକୁ ଦୁଇଜଣ ଛୋଟପିଲା ଧାଇଁ ଆସିବାରୁ ଏକ ଛୋଟ ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲୁ, ଯା'ଫଳରେ ମୋର ବାମହାତର ଉପରିଭାଗର ଯୋଗାଯୋଗ ସ୍ଥାନରେ ଫାଟ ଦେଖା ଦେଲା, କିଛିଦିନ ବାମହାତ ଝୁଲି ରହିଲା ପଟିରେ, ଆଜିଯାଏଁ ସେ ପୀଡା ସେମିତି ରହିଯାଇଛି ।

କଷ୍ଟ, ଯନ୍ତ୍ରଣା ଭିତରେ ବି ଏହି ଯାତ୍ରାର ଏକ ଆକର୍ଷଣ ତ ଥିଲା । ଧମା ରାସ୍ତାର ପ୍ରାକୃତିକ ସୌନ୍ଦର୍ଯ୍ୟ ଭାରୀ ମନୋମୁଗ୍ଧକର ଥିଲା, ଆଖିଫୁଟା, ଖୁଣ୍ଟଲିପାଲି, ଦେଗାଁ ହାଟର ଗାଉଁଲିପଣର ସ୍ୱାଦଥିଲା ନିଆରା, ସଜଫୁଟା ଫୁଲକୋବି, ରସରସିଆ ବାଇଗଣ, ବାରିତୋଳା ସଜ ପୋଟଳର କୋମଳତା, ବାଡିରୁ ସଦ୍ୟ ସଂଗୃହୀତ ଧଳାକଟକଟ ମୂଳା, ନାଲି ଟହଟହ ପାତଳଘଟାର ମହକ, ବେଶ୍ ମନକୁ ପରିଚ୍ଛନ୍ନ ରଖୁଥିଲା । ବେଗ୍‌ଭର୍ତ୍ତି ହୋଇ ପହଞ୍ଚୁଯାଉଥିଲେ ସମସ୍ତେ । ବେଳେବେଳେ ବୃନ୍ଦାବନ ସହ ଖୁଣ୍ଟଲିପାଲିର ବଜାରୀ ଜଳଖିଆର ଗରମାଗରମ୍ ପିଆଜୀ, ଚାଉଳବରା, ଚଣାଘୋଳ, ଆଃ, କି ଆତ୍ମତୃପ୍ତି । ଟୁକୁରାର ମିକ୍ସଚର୍, ଗୋଶାଳା ଛକର ପକୋଡି ଖଟା ଓ ଶୁଖିଲା ଲାଲ୍‌ମିର୍ଚ୍ଚାର ଲୁଣଭିଜା ସୁଆଦ, ଗୋଡଭଗା ଛକର ଶସ୍ତାଦରର କଦଳୀ, ଧମାର ଗୋରସ ସର୍‌ସର୍ ଚାହା, ହୁମା ଛକର ଦେଶୀ ପକୋଡି, ଏଇମାନେ ତ ଥିଲେ ମୋ ସହ ସହଯାତ୍ରୀ, ସହଗାମିନୀ, ସଙ୍ଗୀ !!

ଖୁବ ମନେପଡନ୍ତି ଏମାନେ କରୋନାର ଏଇ ସଙ୍ଗରୋଧର କାରାବାସବେଳେ । ଆହୁରି ମଧ୍ୟ ମନେପଡନ୍ତି, ଲରମ୍ବା କଲେଜ୍‌ର ଅଧ୍ୟାପକ ଆନନ୍ଦବାବୁ, ମେହେରବାବୁ,

ଯେଉଁମାନେ ଗୋଡଭଗା ଛକରୁ ମୋ ଏକ୍ଟିଭାରେ ମୋ ସହ ଲରମ୍ବା ପର୍ଯ୍ୟନ୍ତ ଯାଉଥିଲେ, ଲରମ୍ବା କଲେଜ୍ ଛକ ଆସିବାପର୍ଯ୍ୟନ୍ତ ଗପସପରେ ମାତିଯାଉଥିଲୁ ଆମେ । ଚିଚିଣ୍ଡା କଲେଜ୍‌ରେ ଥାଇ ଅନେକଥର ଲରମ୍ବା କଲେଜ୍‌ର ବିଭିନ୍ନ ଉତ୍ସବକୁ ଯାଇଛି ବକ୍ତାଭାବରେ, ଅତିଥି ଭାବରେ, ସରୋଜ ସୁଆରଙ୍କ ବେଳେ, ଉପେନ୍ଦ୍ର ପ୍ରଧାନ, ଅଶୋକ ସାହୁଙ୍କ ଅଧକ୍ଷତା ସମୟରେ, ଅନେକ ଆନନ୍ଦ ପାଇଛି, ଆପ୍ୟାୟିତ କରିଛି ମଧ ସେତେ । ଏଥିସହିତ ଦେଶଭଟଲି, ମହୁଲପାଲି, ଖୁଣ୍ଟଲିପାଲି, କାଦୋବାହାଲ୍, ଧାତୁକପାଲି, ଗୋଡଭଗାର ବିଭିନ୍ନ ଶିକ୍ଷାନୁଷ୍ଠାନଗୁଡିକୁ ଯାଇଛି, ଆତିଥ୍ୟ ପାଇଛି, ମନୋରଂଜିତ କରିଛି ଭରପୁର୍ ।

ଯିବାଆସିବା ଜୀବନର ସବୁଠାରୁ ବଡ ଉପାଦେୟ ସମୟ, ଯେଉଁଥିରେ ଅଭିଜ୍ଞତା ସାଉଁଟା ହୁଏ, ବିଚାର ବିନିମୟ ହୁଏ, ଆଖିରେଆଖିରେ ଭାଷା ସୃଷ୍ଟି ହୁଏ, କାଗଜରେ ପ୍ରତିଫଳିତ ହେଲେ, ତାହା ରୂପାନ୍ତରିତ ହୋଇଯାଏ ସାହିତ୍ୟରେ ।।



ଗଲାବେଳେ ଚିଚିଣ୍ଡା, ଫେରିଲେ ସମ୍ବଲପୁର, ଏଇ ଦୁଇଅଞ୍ଚଳରେ ହିଁ ସୀମିତ ରହିଯାଇଥିଲା ମୋର ସାଂସ୍କୃତିକ କାର୍ଯ୍ୟକ୍ରମର ପ୍ରଦର୍ଶନ । ମଞ୍ଚରେ ରଙ୍ଗମାଖି ଅଭିନୟକରିବାର ଶେଷପ୍ରଦର୍ଶନ ଥିଲା ଓଡ଼ିଆ ନାଟକ 'ପିଣ୍ଡଦାନ' । ୧୯୯୫ରୁ ଆକାଶବାଣୀ ସମ୍ବଲପୁର ଆନୁକୂଲ୍ୟରେ ଆରମ୍ଭ ହୋଇଥିବା ନାଟ୍ୟତରଙ୍ଗ କାର୍ଯ୍ୟକ୍ରମର ଏ ଥିଲା ପଦ୍ମଲୋଚନ ଦାସଙ୍କ ଦ୍ୱାରା ପରିଚାଳିତ ଶେଷନାଟକ । ପ୍ରଥମବର୍ଷ 'ଭିକ୍ଷୁଣୀ', ଏଥିରେ ରାଜେନ୍ଦ୍ରପ୍ରସାଦ ପଣ୍ଡା, ସୁଦେଷ୍ଣା ମିଶ୍ର ଓ ସୁଶୀଳ ମହାପାତ୍ର, ଦ୍ୱିତୀୟବର୍ଷ 'ଶେଷଭେଟି', ଏଥିରେ ଉତ୍ତମ ବେହେରା ଓ ସଂଘମିତ୍ରା ମିଶ୍ର, ତୃତୀୟବର୍ଷ 'ଅସ୍ଥି ବିସର୍ଜନ', ଏଥିରେ ଦିଲୀପ ପଣ୍ଡା ଓ ମାନଭଞ୍ଜନ ହୋତା ଏବଂ ଅଠାନବେ ମସିହାରେ ମଞ୍ଚସ୍ଥ ପିଣ୍ଡଦାନ ନାଟକରେ ମୋ ସହ ନୂପୁର ଘୋଷ ଓ ଶିଶୁଶିଳ୍ପୀ ଶକ୍ତିପ୍ରସାଦ ପାଣିଗ୍ରାହୀ ଅଭିନୟ କରିଥିଲେ । ପ୍ରଥମ ତିନୋଟି ନାଟକର ରଚୟିତା ଥିଲେ ପଦ୍ମଲୋଚନ ଦାସ ଏବଂ ମୋ ଅଭିନୀତ ନାଟକ ପିଣ୍ଡଦାନର ଲେଖକ ଡ. ପଞ୍ଚାନନ ମିଶ୍ର । ଏହି ଚାରୋଟିଯାକ ନାଟକକୁ ନିର୍ଦ୍ଦେଶନା ଦେଇଥିଲେ ବରିଷ୍ଠ ନାଟ୍ୟଶିଳ୍ପୀ ମାନଭଞ୍ଜନ ହୋତା । ଏହି ଚାରୋଟିଯାକ ନାଟକର ବିଶେଷତ୍ୱ ହେଲା, ଏଗୁଡ଼ିକ ପ୍ରଥମେ ଆକାଶବାଣୀ ଷ୍ଟୁଡିଓରେ ରେକର୍ଡିଂହୋଇ ପ୍ରସ୍ତୁତ ହୋଇଥିଲା ଏବଂ ପରେ ସେହି ରେକର୍ଡ ହୋଇଥିବା ବେତାର ନାଟକ ଅନୁସାରେ ମଞ୍ଚରେ ଅନ୍ତରାଳରୁ ଟେପ୍‌ଯୋଗେ ବାଜୁଥିବା ନାଟକସହ ତାଳମେଳ ରଖି କେବଳ

ଓଠହଲାଇ ଅଭିନୟମାଧ୍ୟମରେ ମଞ୍ଚରେ ପ୍ରଦର୍ଶିତ ହୋଇଥିଲା ବିନାଶବ୍ଦ ସୃଷ୍ଟିକରି । ପ୍ରତ୍ୟେକ କଳାକାରଙ୍କ ପାଇଁ ଏଭଳି ମୂକାଭିନୟ କରିବା କଷ୍ଟକର ବ୍ୟାପାର ହୋଇଥିବା ସତ୍ତ୍ୱେ ଚାରୋଟିଯାକ ନାଟକ ସଫଳ ହୋଇଥିଲା ମାନବାବୁଙ୍କ ବଳିଷ୍ଠ ନିର୍ଦ୍ଦେଶନାରେ । ପିଣ୍ଡଦାନର ମୁଖ୍ୟନାୟକ ଭୂମିକାରେ ଅଭିନୟ କରି ମୁଁ ଯେଭଳି ମାନସିକ ଓ ଶାରୀରିକ ପୀଡ଼ା ପାଇଥିଲି, ତାହା ଏଯାଏଁ ଭୁଲିନାହିଁ । ନାଟକଟି ରେକର୍ଡିଂ ହେବାପରେ ଆକାଶବାଣୀପରିସରରେ ମାତ୍ର ଦୁଇଦିନ ରିହାର୍ସାଲ ହୋଇଥିଲା । ମୋ ସହ ଅଭିନୟକରିଥିଲେ ଅଭିନେତ୍ରୀ ନୂପୁର ଘୋଷ । ଯେ ମୋଠାରୁ ଅଧିକ ଓଜନଦାର । ଏହା ଏକ ରୋମାଣ୍ଟିକ ନାଟକ ହୋଇଥିବାରୁ ନିର୍ଦ୍ଦେଶକ ମାନବାବୁ କେତୋଟିଦୃଶ୍ୟରେ ଏଭଳି ଅନ୍ତରଙ୍ଗ କମ୍ପୋଜିସନ୍ ଦେଇଥିଲେ, ଯାହାକରିବା ସହଜ ମନେହେଉଥିଲେ ହେଁ ମୋ ଭଳିଆ ସାଂସାରିକ ବ୍ୟକ୍ତିଙ୍କପାଇଁ ଥିଲା ବଡ଼ ଆହ୍ୱାନ । ଏହା ସହିତ ନୂପୁର ଭଳିଆ ଓଜନଦାର ନାୟିକାଙ୍କୁ ମୋ ବାମହାତର ସାହାରାରେ ଦୀର୍ଘସମୟ ଧରି ଟେକି ଧରିବା ମୋ ପକ୍ଷରେ ଭାରୀ ପୀଡ଼ାଦାୟକ ଥିଲା । ଶେଷ ରିହାର୍ସାଲ୍‌ରେ ମୁଁ ବାମ ହାତରେ ପୀଡ଼ାପାଇଁ ବାଧ ହୋଇ ମାନବାବୁଙ୍କୁ ଅନୁରୋଧ କରିଥିଲି ଏହି ଭଙ୍ଗୀକୁ ବଦଳାଇବାପାଇଁ । ମୋ କଷ୍ଟ ଅନୁଭବକରି ମାନବାବୁ ସେହି ଭଙ୍ଗୀକୁ ବାମହାତ ବଦଳରେ ଡାହାଣହାତକୁ ବଦଳାଇବାପରେ ମୁଁ ଆଶ୍ୱସ୍ତହେଲି ଏବଂ ମଞ୍ଚାୟନ ରାତିରେ ବଡ଼କଷ୍ଟରେ ମଞ୍ଚକୁ ଓହ୍ଲାଇଥିଲି । ଏକ ଦିଗରେ ରେକର୍ଡହୋଇଥିବା ନାଟକର ସଠିକ୍‌ସଂଳାପ ଉଚ୍ଚାରଣର ଓଠଚଲା, ଅପରଦିଗରେ ରୋମାଣ୍ଟିକ୍ ଭଙ୍ଗୀର ଅଭିନୟପ୍ରଦର୍ଶନ, ଉଭୟ ଚିନ୍ତାରେ ମୁଁ ମା’ ସମଲେଶ୍ୱରୀଙ୍କୁ ସୁମରଣକରି ମଞ୍ଚକୁ ଉତୁରିଥିଲି । ନାଟକ ଦେଖିବାପରେ ସମ୍ବଲପୁରର ସାଧାରଣ ତଥା ବୁଦ୍ଧିଜୀବୀ ଦର୍ଶକ ଭୂରିପ୍ରଶଂସାରେ ମୋର ଅଭିନୟକୁ ପସନ୍ଦ କରିଥିଲେ । ମୁଁ ମଧ୍ୟ ମୋ ଅଭିନୟରେ ସନ୍ତୁଷ୍ଟ ଥିଲି, କିନ୍ତୁ ନାଟକପରେ ନିର୍ଦ୍ଦେଶକ ମାନବାବୁ ଯେତେବେଳେ ମୋ ପାଖକୁ ଆସି ଆନନ୍ଦରେ କୁଣ୍ଢେଇ ଗଦ୍‌ଗଦ୍ କଣ୍ଠରେ କହିଲେ, ଭଲ ଅଭିନୟ କଲ ଦ୍ୱାରିକା, ଅଭିନନ୍ଦନ ! ଆପେ ଆପେ ମୋ ମୁଣ୍ଡ ତାଙ୍କସାମ୍ନାରେ ନଇଁଯାଇଥିଲା ଓ ଯେଉଁ କଷ୍ଟ ସହ୍ୟକରି ନାଟକଟି କଲି, ତାହାର ସଫଳତା ଆଖିର ଅଶ୍ରୁ ଭାବରେ ମଞ୍ଚକୁ ଧୌତକରି ପକାଇଲା । ଜିଏମ କଲେଜର ନାଟକ ପଞ୍ଚସ୍ତରୀର ‘ଶୂନ୍ୟ ଆକାଶ ଆମର ଆଖି’ରେ ଏବଂ ‘ଦ୍ୱିତୀୟମୃତ୍ୟୁ’ ନାଟକ ସମୟର ତିକ୍ତତା ପରେ ଏ ଥିଲା ମାନବାବୁଙ୍କ ନିର୍ଦ୍ଦେଶନାରେ ମୋ ନାଟ୍ୟଜୀବନର ଶେଷ ଅଭିନୀତ ନାଟକ । ପଞ୍ଚାଦାଦାଙ୍କ ରଚନା, ମାନବବାବୁଙ୍କ ନିର୍ଦ୍ଦେଶନା ଓ

ମୋ ଅଭିନୟର ଯୁବଳବନ୍ଦୀ ସଫଳ ହେବା ଅନେକବର୍ଷ ପରେ ଦୁଇହଜାର୍ ସାତ ମସିହାରେ ପୁଣି ଆମେ ଏକତ୍ରିତହେଲୁ ନାଟକକୁ ନେଇ । ଏଥର କିନ୍ତୁ ଭିନ୍ନ ରୂପରେ, ଭିନ୍ନ ଭୂମିକାରେ । ଏଥର ମୋ ରଚିତ ଧାରାବାହିକ ନାଟକ ଉଲଗୁଲାନ୍‌ରେ ପଞ୍ଚାଦାଦାଙ୍କ ନିର୍ଦ୍ଦେଶନାରେ ମୁଖ୍ୟଚରିତ୍ର ବିପ୍ଳବୀ ସୁରେନ୍ଦ୍ରସାଏ ଭୂମିକାରେ ଅଭିନୟକଲେ ମାନଭଞ୍ଜନ ହୋତା । ତେବେ, ଏହି ନାଟକ ପରେ ବାମ ହାତର ପୀଡା ଏବଂ ଆଘାତପାଇଁ ମୋତେ ସାତଦିନ ଇଂଜେକ୍‌ସନ୍ ନେବାକୁ ପଡ଼ିଥିଲା ।

ଏମିତି ନାଟ୍ୟଜୀବନରେ ଅନେକ ବିଚିତ୍ର ଯୋଗାଯୋଗ ସମ୍ଭବ ହୋଇଥାଏ ନିୟତିର ନିର୍ଦ୍ଦେଶରେ । ଦୁଇ ହଜାର ଆଠରୁ ବାର ମଧ୍ୟରେ ମଞ୍ଚନାଟକକୁ ନେଇ ଯେଉଁ ଗୋଟାଏ ପର୍ଯ୍ୟାୟ ଗତି କରିଥିଲା, ତାହାପରେ ଆଉ ନାଟକ କରିବାର ସୁଯୋଗ ଆସିନାହିଁ ବା ମୁଁ ଇଚ୍ଛା ମଧ କରିନାହିଁ । ପିଣ୍ଡଦାନ ପରେ ଅଭିନୟକ୍ଷେତ୍ରରୁ ସିନା ଓହରିଗଲି, ହେଲେ ପରଦା ପଛ ପଟେ ଥାଇ ନିର୍ଦ୍ଦେଶନା ଓ ସଂଗୀତ ନିର୍ଦ୍ଦେଶନାରେ ପ୍ରାୟ ଆଠନଅବର୍ଷ ନିୟୋଜିତ କରିରଖିଥିଲି । ବିଶେଷତଃ ଆଠ ମସିହାରେ ଝାଡୁଆପଡାର ଆରଣ୍ୟକ ମଣ୍ଡପରେ ମଞ୍ଚସ୍ଥ ମୋ ରଚିତ ସମ୍ବଲପୁରୀ ନାଟକ ତମେ ଅଛ ବଲି ପରେ ଏକାଦିକ୍ରମେ ପାଞ୍ଚଟି ନାଟକଲେଖି ତାର ମଞ୍ଚାୟନପାଇଁ ଯତ୍ନବାନ୍ ହୋଇଥିଲି । ଏଥି ମଧ୍ୟରୁ ଦୁଇହଜାର ଦଶ ମସିହାରେ ମଞ୍ଚନାୟକ ସଂସ୍ଥା ତରଫରୁ ଆରଣ୍ୟକ ମଣ୍ଡପରେ ଅଭିନୀତ ହୋଇଥିଲା 'ସୂର୍ଯ୍ୟ ଆରପାରି ନଦୀଟେ' ନାଟକଟି । ଛାୟାନବେରେ 'ନାଟକ ହେବ' ନାଁ ରେ ମୋ ରଚିତ ଏକ ଓଡ଼ିଆ ନାଟକ ଆକାଶବାଣୀ ସମ୍ବଲପୁର କେନ୍ଦ୍ରରୁ ପ୍ରସାରିତ ହୋଇଥିଲା । ଏହି ନାଟକକୁ ମାର୍ଜନାକରି ପରିବର୍ଦ୍ଧିତ ରୂପରେ ଲେଖିଲି ସମ୍ବଲପୁରୀ ନାଟକ 'ସୂର୍ଯ୍ୟର ଆରପାରି ନଦୀଟେ' ।

'ତମେ ଅଛ ବଲି' ନାଟକଟି ଝାଡୁଆପଡାର ମଞ୍ଚରେ ଅଭିନୀତ ହେବା ପରେ ମଞ୍ଚନାୟକ ଅନୁଷ୍ଠାନ ତରଫରୁ ରାଜ୍ୟର ବିଭିନ୍ନସହରରେ ଆୟୋଜିତ ପ୍ରତିଯୋଗିତା ଓ ନାଟ୍ୟୋତ୍ସବରେ ସଫଳତାରସହ ମଞ୍ଚସ୍ଥହୋଇ ବାରମ୍ବାର ପୁରସ୍କୃତ ହୋଇଥିଲା । ଏ ସମସ୍ତ ପ୍ରଦର୍ଶନଭିତରେ ଭବାନୀପାଟଣା, ରାଉରକେଲା ଓ ବାଲେଶ୍ୱରଠାରେ ପ୍ରଦର୍ଶନ ମୋତେ ସମସ୍ତ ଦୃଷ୍ଟିରୁ ସଫଳବୋଲି ମନେହୋଇଥିଲା । ଅଭିନେତା ପ୍ରଦୀପ ପଣ୍ଡାଙ୍କ ଅଭିନୟ ଏଥି ପୂର୍ବରୁ 'ମନ୍ ଜାନି ମୁନୁଷ୍' ନାଟକରେ ଦେଖିଥିଲି, 'ସୁନ୍ଦରସାଏ'ରେ ତାଙ୍କୁ ନିର୍ଦ୍ଦେଶନା ଦେଇଥିଲି, ତାଙ୍କ ଅଭିନୟଦକ୍ଷତା ବାବଦରେ ମୁଁ ଜ୍ଞାତଥିବାରୁ ଓଡ଼ିଆ 'ଭଗ୍ନାଂଶ' ନାଟକକୁ ସମ୍ବଲପୁରୀ କଲାବେଳେ ମୋ ଦୃଷ୍ଟି

ପ୍ରଦୀପ ଉପରେ ହିଁ କେନ୍ଦ୍ରୀଭୂତ ଥିଲା । ତେବେ ନାଟକର ଅନ୍ୟତମ ଚରିତ୍ର ମୀନାକ୍ଷୀ ଭୂମିକାରେ କିଏ ଅଭିନୟ କରିବେ, ସେ ସମ୍ପର୍କରେ ଆମ ନିଷ୍ପତ୍ତି ଡେରିରେ ନିଆଯାଇଥିବାରୁ ଲେଖିବାବେଳେ ମମତା ପଣ୍ଡାଙ୍କ ପ୍ରଶ୍ନ ଉଠିନଥିଲା । ପରେ ଉକିଆ ଧାରାବାହିକରେ ମମତାଙ୍କ ସମ୍ପୃକ୍ତି, ତାଙ୍କ ଅଭିନୟ ଯୋଗ୍ୟତାକୁ ଦୃଷ୍ଟିରେ ରଖି ପ୍ରଦୀପ ଓ ମୁଁ, ଉଭୟ ତାଙ୍କ ନାମରେ ମୋହର ମାରିଥିଲୁ । ରିହାର୍ସାଲ୍ ବେଳେ ପ୍ରଦୀପ ଓ ମମତାଙ୍କ ହାର୍ଦ୍ଦିକ ସହଯୋଗ, ଶିଖିବାର ଇଚ୍ଛା, ଧୈର୍ଯ୍ୟ, ଶକ୍ତ ସାଧନା ଏହି ଦ୍ୱି-ଚରିତ୍ର ବିଶିଷ୍ଟ ନାଟକକୁ ସଫଳ କରିଥିଲା । ଅନ୍ତରଙ୍ଗ ଦୃଶ୍ୟମାନ ଶାଳୀନ ଓ ମାଧୁର୍ଯ୍ୟଭରା ଅଙ୍ଗଭଙ୍ଗୀରେ ସଜ୍ଜିତ ହୋଇଥିବାରୁ ଉଭୟ ଖୋଲାଖୋଲିଭାବରେ ମଞ୍ଚରେ ଅଭିନୟ କରିଥିଲେ । ବାଲେଶ୍ୱରରେ ତ କିଛି ଦର୍ଶକ ଉଭୟ ପଣ୍ଡା ଥିବାରୁ ସ୍ୱାମୀ ସ୍ତ୍ରୀ ବୋଲି ଧାରଣା କରିଥିଲେ, ଏଭଳି ଭ୍ରମରୁ ହିଁ ଉଭୟଙ୍କ ବଳିଷ୍ଠ ଅଭିନୟଦକ୍ଷତାର ପରିଚୟ ବହନ କରିଥିଲା । ମୁଁ ଏ ନାଟକର ପରଦା ଆଢୁଆଳରେ ଥାଇ ନିଜକୁ ସମ୍ପୂର୍ଣ୍ଣଭାବରେ ନିମଜ୍ଜିତ କରିଥିଲି । ପରବର୍ଦ୍ଧିତ ନାଟକରେ ମୁଁ ଆରମ୍ଭରୁ ଗୀତଟିଏ ମଧ୍ୟ ଗାଇଥିଲି । ଭବାନୀପାଟଣାର ଯୁବା ଶିଳ୍ପୀ ମନୀଷା ଭାରତୀଙ୍କ ସହିତ ଦ୍ୱୈତ କଣ୍ଠରେ ଗାଇଥିଲି,

ହେ ମୋର୍ ଖିଆଲି କବି,
ଝରୁଥିମି ମୁଇ. ତୁମର୍ ଲାଗି ସଥେ,
ତୁମର୍ କବିତା ହେଇ ।

ପ୍ରଶାନ୍ତ ବେଶନଙ୍କ ଅର୍ଗେନ୍ ଓ କପିଳ ବେହେରାଙ୍କ ତବଲା ବାଦ୍ୟରେ ତାଳେତାଳେ ନାଟକର ପ୍ରଚ୍ଛଦଗୀତ ଗାଇବାର ଯେଉଁ ମଧୁର ଅନୁଭୂତି, ତାହା ଚିରକାଳପାଇଁ ଅପାଶୋରା ହୋଇଗଲା । ଏ ନାଟକର ଚରିତ୍ରଭିତରକୁ ପ୍ରଦୀପ ଓ ମମତା ଏଭଳି ଭାବରେ ଗତିକରିଥିଲେ ଯେ, ରିହାର୍ସାଲ୍ ଆରମ୍ଭହେଲା ପରେ ଗୀତ ଗାଇଲାଭଳି ନାଟକର ସଂଳାପ ଓ ଅଭିନୟକୁ ମୁହେଁମୁହେଁ ଗଡେଇ ଦେଉଥିଲେ । ନାଟକରେ ପ୍ରଚ୍ଛଦ ସଂଗୀତକୁ ଜୀବନ୍ତ ଓ ସ୍ୱାଭାବିକ କରିବାରେ ମୋର ପ୍ରଚେଷ୍ଟାସବୁ ମଞ୍ଚରେ ସଫଳ ରୂପାୟନ ହୋଇଥିଲା । ମୋର ଅନୁପସ୍ଥିତିରେ ପ୍ରଦୀପ ରିହାର୍ସାଲ୍ କାର୍ଯ୍ୟ ସମ୍ଭାଳିନେଉଥିଲେ । ନାଟକପ୍ରତି ଉଭୟ ପ୍ରଦୀପ ଓ ମମତାଙ୍କ ପ୍ରତିବଦ୍ଧତା ହିଁ 'ତମେ ଅଛ ବଲି' ନାଟକକୁ ଉର୍ଦ୍ଧ୍ୱସ୍ତରକୁ ନେଇପାରିଥିଲା । ଯେଉଁ ଭାବାନୀପାଟଣାରେ ମୁଁ ଜୀବନରେ ପ୍ରଥମକରି ନାଟ୍ୟକଳା ପ୍ରତି ଆକୃଷ୍ଟ ହୋଇଥିଲି, ସେହି

ଭବାନୀପାଟଣାରେ ମୋ ନାଟକ ଦେଖି ସେତେବେଳର ଅଭିନେତା, ନାଟ୍ୟକାରମାନେ ମୋର କୃତିତ୍ୱର ଭୂୟସୀ ପ୍ରଶଂସା କରିଥିଲେ, ଏ ଥିଲା ମୋପାଇଁ ଏକ ଐଶ୍ୱରୀୟ ଅନୁଭବ । ଏଥିସହ ଏହିପର୍ଯ୍ୟାୟରେ ସମ୍ବର୍ଦ୍ଧନା ଓ ବଣ୍ଟିର୍ ବା' ଚୁମକୀର୍ ମା' ଏଭଳି ଦୁଇଟି ହାସ୍ୟରସାତ୍ମକ ନାଟକ ଲେଖିଥିଲି, ଯାହା ଆଠ ଓ ନଅ ମସିହାରେ ଧନୁପାଲିର ଚେତନା ନାଟ୍ୟ ଅନୁଷ୍ଠାନତରଫରୁ ମଞ୍ଚସ୍ଥ ହୋଇଥିଲା । 'ସମ୍ବର୍ଦ୍ଧନା' ନାଟକରେ ସଂଜୀବ ପାଢ଼ୀଙ୍କ ଅଭିନୟ ଅନ୍ୟମାନଙ୍କ ତୁଳନାରେ ବଳିଷ୍ଠ ଥିଲା । ରିହାର୍ସାଲ୍ ଅନୁସାରେ ଏଥିରେ ଅଭିନୟକରିଥିବା ଜୟକିଶୋର ଜାଲ, ସନ୍ତୋଷ ରାୟଗୁରୁ ଓ ସଂଜୟ ମିଶ୍ର ଆଶାନୁରୂପ ଅଭିନୟ କରିପାରି ନଥିଲେ । ତେଣୁ ନାଟକଟି ଯେତେ ପରିମାଣରେ ସଫଳ ହେଲା, ତାଠାରୁ ଆହୁରି ଅଧିକ ମନୋମୁଗ୍ଧକର ହୋଇପାରିଥାଆନ୍ତା । ତେବେ ସଂଜୀବ ପାଢ଼ୀ ଓରଫ୍ କୁନା ତାଙ୍କ ରିଓ୍ୱାର୍ଡ ପାଇଥିଲେ । କିନ୍ତୁ ବଣ୍ଟିର୍ ବା' ଚୁମକୀର୍ ମା' ନାଟକଟିରେ ଉଭୟ ସ୍ୱାମୀ ସ୍ତ୍ରୀ ଭୂମିକାରେ ଅଭିନୟ କରିଥିବା ସଂଜୀବ ଓ ମମତାଙ୍କ ଅଭିନୟ ଦର୍ଶକମାନଙ୍କୁ ଚମତ୍କୃତ କରିଥିଲା । ଏ ନାଟକଟି ଆଗରୁ ଦୂରଦର୍ଶନରେ 'ନୂଆଁ ବର୍ଷେ ନୂଆଁ ମନ୍' ନାମରେ ପ୍ରସାରିତ ହୋଇଥିଲା । ଏହାକୁ ମାର୍ଜନା ତଥା ମଞ୍ଚ ଉପଯୋଗୀ କରି 'ବଣ୍ଟିର୍ ବା ଚୁମକୀର୍ ମା' ନାଁରେ ଝାଡୁଆପଡାର ଆରଣ୍ୟକ ମଞ୍ଚରେ ମୋ ନିର୍ଦ୍ଦେଶନାରେ ଅଭିନୀତ ହୋଇଥିଲା ।

ମଞ୍ଚ ନାୟକର ନାଟକ 'ସୂର୍ଯ୍ୟର ଆରପାରି ନଦୀତେ' ନାଟକଟି ଦଶ' ମସିହାର ନଭେମ୍ବରରେ ଆରଣ୍ୟକ ମଣ୍ଡପରେ ଅଭିନୀତ ହୋଇଲା ପ୍ରଦର୍ଶନମୂଳକ ନାଟକ ଭାବରେ । ଏହା ଥିଲା ଏକ ପୂର୍ଣ୍ଣାଙ୍ଗନାଟକ । ଏଥିରେ ଯୁବାପିଢ଼ୀର ବହୁ ଅଭିନେତା ଅଂଶଗ୍ରହଣ କରିଥିଲେ । ପ୍ରଦୀପ ଓ ମମତା ନାୟକନାୟିକା ଭୂମିକାରେ ଏବଂ ଅନ୍ୟ ସହଯୋଗୀ ଚରିତ୍ରମାନଙ୍କରେ ଦିଲୀପ ଦେବ, ଆଡୀଶ ଶତପଥୀ, ସଂଜୀବ ପାଢ଼ୀ, ରାମାଶୀଷ ତ୍ରିପାଠୀ, ସୁରେଶ ତ୍ରିପାଠୀ ଆଦି ବିଶିଷ୍ଟ କଳାକାରମାନେ ଅଭିନୟ କରିଥିଲେ । ସୁରେଶ ଓ ଦିଲୀପଙ୍କ ଅଭିନୟ ଦର୍ଶକମାନଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା, ନାୟକ ଭୂମିକାରେ ପ୍ରଦୀପ ଓ ନାୟିକା ଭାବରେ ମମତା ତାଙ୍କ ନିଜନିଜ କ୍ଷେତ୍ରରେ ଚରିତ୍ରଗୁଡ଼ିକୁ ଜୀବନ୍ତ କରିଥିଲେ । ଏହି ନାଟକର ଏକ ରୋମାଣ୍ଟିକ୍ ଦୃଶ୍ୟରେ ଗୀତଟିଏ ଥିଲା, ଯାହାକୁ ମୁଁ ପଦ୍ମିନୀ ଦୋରାଙ୍କ ସହ ଗାଇଥିଲି । ଏଥି ସହ ନାଟକର ଶୀର୍ଷକଗୀତ ପାଇଁ ଉପଯୋଗୀ ଗାୟକ ନ ମିଳିବାରୁ ମୁଁ ନିଜେ ଗାଇଥିଲି । ଗୀତଟି ଥିଲା -

ସୂର୍ଯ୍ୟର୍ ତାତିଥି ଜଲିପୁଡିଗଲେ,

ଜଲନ୍ କଥା କହେମି କାହାକେ,

ଝାର୍ ଜଙ୍ଗଲ୍‌ସବୁ ଜଲିପୁଡିଗଲେ ଝରନ୍‌କଥା କହେମି କାହାକେ,

ମତେ ନେଇଯାରେ, ନେଇ

ଯାରେ, ନେଇଯାରେ ନେଇଯା,

ସୂର୍ଯ୍ୟର୍ ଆରପାରି ନଦୀକେ ।

ଗୀତ୍‌ଟି ସୁର ସୁଫୀ ସ୍ୱରାଶ୍ରୟୀ ଥିବାରୁ ସମ୍ବଲପୁରୀ ହେଲେ ହେଁ ଦର୍ଶକମାନଙ୍କୁ ଅଭିନବ ଲାଗିଥିଲା ।

ଏହି ପୂର୍ଣ୍ଣାଙ୍ଗ ନାଟକପରେ ମୁଁ ଆଉ ନାଟକ କରିନାହିଁ, କରିବାର ଉଦ୍‌ଯୋଗ ମଧ୍ୟ କରିନାହିଁ । ଶେଷ ଲିଖିତ ନାଟକ ଭାବରେ ସୁରେନ୍ଦ୍ର ସାଏଙ୍କ ମୃତ୍ୟୁ କାଳୀନ ମୁହୂର୍ତ୍ତକୁ ନେଇ, '୧୮୮୪ ଅସୀରଗଡ଼ର୍ ବିର ଗାଥା' ନାମରେ ଏକ ବେତାର ତଥା ମଞ୍ଚ ନାଟକ ଲେଖିଛି ଏବଂ ଅବସର ପରେ 'ବୟସ ଷାଠିଏ' ନାମରେ ଏକ ବେତାର୍ ନାଟକ ଲେଖି ଆକାଶବାଣୀକୁ ଦେଇଛି, ଯାହାର ସମ୍ବଲପୁରୀ ଅନୁବାଦ ଉଦିଆଁ ପତ୍ରିକାର ଗଲା ନୂଆଁଖାଇ ସଂଖ୍ୟାରେ ପ୍ରକାଶିତ ହୋଇଛି ।

ଶେଷ ପର୍ଯ୍ୟାୟରେ ଯୁବପିଢ଼ିଙ୍କ ସହ ନାଟକ କରିବାରେ ଭରପୂର ଆନନ୍ଦ ପାଇଛି, ସେମାନଙ୍କ ଅଭିନୟ ଦକ୍ଷତାକୁ ମଞ୍ଚକୁ ଆଣି ମାର୍ଜିତକରିବାର ପ୍ରଚେଷ୍ଟା କରିଛି, ନାଟକ ପ୍ରତି ସେମାନଙ୍କ ଆନ୍ତରିକତାକୁ ସ୍ୱୀକାର କରିଛି, ତାଙ୍କ ଅରଜିଥିବା ଖ୍ୟାତି ଓ ଯଶରେ ନିଜକୁ ସାମିଲ କରିବାରେ ପ୍ରଚୁର ଆତ୍ମସନ୍ତୋଷ ପାଇଛି, ଯାହା କେବେ ଭୁଲିବାର ନୁହେଁ ।



ଦୁଇହଜାର୍ ନଅ, ଦଶ ବେଳକୁ ଆମ ପଲ୍ଲିଶ୍ରୀ ମହାବିଦ୍ୟାଳୟରେ ଚାରୋଟିବିଷୟରେ ସମ୍ମାନଶ୍ରେଣୀ ଖୋଲିଲା । ଓଡ଼ିଆ ସହ ରାଜନୀତି ବିଜ୍ଞାନ, ଇତିହାସ ଓ ଶିକ୍ଷା, ଏପରି ଚାରୋଟିବିଷୟରେ ସମ୍ମାନଶ୍ରେଣୀ ଆରମ୍ଭ ହୋଇଯିବାପରେ ପିଲାଙ୍କୁ ପାଠପଢ଼ାଇବାର ଆଗ୍ରହ ମୋ'ଦଭିତରେ ବଢ଼ିବାରେ ଲାଗିଲା । ଯଦିଓ, ଯେତେ ପରିମାଣରେ ଯୋଗ୍ୟତାସମ୍ପନ୍ନ ଅଧ୍ୟାପକ ରହିବାକଥା, ସେତିକି ଆମ କଲେଜ୍‌ରେ ନଥିବାରୁ ଅଧିକ କାର୍ଯ୍ୟଭାର ଉଠାଇବାକୁ ପଡୁଥିଲା । ବିଶେଷତଃ ମୋ

ଓଡ଼ିଆବିଭାଗରେ ମୋତେ ବାଦ୍‌ଦେଲେ ଆଉ କେହିନଥିଲେ । ଇତିମଧ୍ୟରେ ଯୁକ୍ତଦୁଇ ପାଇଁ ଭେଡେନ ଜାମ୍‌ଡୋଲ୍ ଗ୍ରାମର ସନ୍ତୋଷ ତ୍ରିପାଠୀ ଅଧ୍ୟାପକଭାବରେ ଯୋଗଦେଲେ ଏବଂ ସେ ଯୁକ୍ତଦୁଇର ଶ୍ରେଣୀମାନ ସମ୍ଭାଳିଲେ ଓ ମୁଁ ସମ୍ପୂର୍ଣ୍ଣ ଭାବରେ ଯୁକ୍ତତିନି ପର୍ଯ୍ୟାୟର ସାହିତ୍ୟ, ଓଡ଼ିଆ ପାସ୍ ଏବଂ ଅନର୍ସ, ଏଭଳି ସ୍ନାତକଶ୍ରେଣୀର ସମସ୍ତକ୍ଲାସ୍ ନେଉଥିଲି ।

ଅନର୍ସ ଖୋଲିବା ମାନେ, ଛାତ୍ରଛାତ୍ରୀମାନଙ୍କ ବିଷୟଗତ ଜ୍ଞାନର ବିକାଶପାଇଁ ଆଲୋଚନାଚକ୍ର ବା ସମ୍ପାନମାନ ଆୟୋଜିତ ହେବାକଥା । ଏହାକୁ ଦୃଷ୍ଟିରେରଖି ଅଧ୍ୟକ୍ଷଙ୍କ ସହ ଆଲୋଚନାକରି ବିଭାଗୀୟ ସ୍ୱାତନ୍ତ୍ର୍ୟକୁ ଯୋର୍‌ଦେଇ ଆଲୋଚନାଚକ୍ରମାନ ପ୍ରଥମବର୍ଷରୁ ହିଁ ଆୟୋଜନ କରିବାର ପରମ୍ପରା ଆରମ୍ଭହୋଇଗଲା । ଓଡ଼ିଆ ଭାଷା ଓ ସାହିତ୍ୟବିଭାଗ ବୋଲି ନାମକରଣ କରାଯାଇ ଛାତ୍ରଛାତ୍ରୀମାନଙ୍କ ମଧ୍ୟରୁ ଜଣକୁ ସେମିନାର୍‌ସମ୍ପାଦକ ଭାବରେ ମନୋନୀତ କରାଗଲା ପ୍ରତ୍ୟେକ ବର୍ଷପାଇଁ, ସେହି ସମ୍ପାଦକଙ୍କ ନେତୃତ୍ୱରେ ବର୍ଷକପାଇଁ ବିଭାଗୀୟ କାର୍ଯ୍ୟକ୍ରମମାନ ଆୟୋଜିତ ହେଲା । ଏହି ସେମିନାର୍‌କ୍ଲାସ ପରମ୍ପରା ମୁଁ କଲେଜରେ ଯୋଗଦାନ କରିବା ପରେପରେ ଅଧ୍ୟକ୍ଷଙ୍କ ସହ ଆଲୋଚନାକରି ନିୟମିତ ସମୟସାରଣୀରେ ରଖାଯାଇଥିଲା । ଗୋଟିଏଦୁଇଟି ସେମିନାର୍‌ପରେ ପ୍ରଶାସନିକ ପ୍ରୋତ୍ସାହନର ଅଭାବରେ ତାହା ମୃତବତ୍ ପଡିରହିଥିଲା । ତେବେ ସୌଭାଗ୍ୟକୁ ସମ୍ମାନଶ୍ରେଣୀ ଆରମ୍ଭବେଳେ ବନ୍ଧୁ ଦେବୀଦାସ ମିଶ୍ର ଅଧ୍ୟକ୍ଷ ଦାୟିତ୍ୱରେ ଥିଲେ । ତାଙ୍କ ସହଯୋଗରେ ପ୍ରଥମେ ଓଡ଼ିଆବିଭାଗର ସେମିନାର୍ କାର୍ଯ୍ୟକ୍ରମ ଅନୁଷ୍ଠାନିକ ଭାବରେ ଆରମ୍ଭହେଲା । ସମ୍ମାନଶ୍ରେଣୀର ଗୁରୁତ୍ୱକୁ ଅନୁଭବକରି ପାଠପଢ଼ାଇବା ପାଇଁ ଆଉଜଣେ ଅଧ୍ୟାପିକା ଶ୍ରୀମତୀ ପଲ୍ଲବୀ ପାତ୍ର କଲେଜ୍‌ରେ ଯୋଗଦେଲେ । ସେମିନାର୍‌ଖର୍ଚ୍ଚ ଉଠାଇବାପାଇଁ ବିଭାଗର ସମ୍ମାନ ଛାତ୍ରଛାତ୍ରୀମାନଙ୍କ ଉପରେ ଅଳ୍ପ ଆର୍ଥିକଅନୁଦାନ ସେହି ପ୍ରଥମବର୍ଷରୁ ଆଦାୟ କରାଗଲା ସେମାନଙ୍କ ନାମଲେଖା ବେଳେ, ଯା'ଫଳରେ ଅଲୋଚନାଚକ୍ରମାନ ସୁରୁଖୁରୁ ଭାବରେ ଆୟୋଜିତ ହେଲା । ପ୍ରଥମେ ଓଡ଼ିଆବିଭାଗ ହିଁ ଏଭଳି ପ୍ରୟାସ ଆରମ୍ଭ କରିବାପରେ ବାକିବିଭାଗ ମଧ୍ୟ ଏହିଭଳି କାର୍ଯ୍ୟକ୍ରମକୁ ହାତକୁ ନେଇଥିଲେ । ଏହି ମହାବିଦ୍ୟାଳୟରେ ସମ୍ମାନ ଶ୍ରେଣୀ ଖୋଲିବାନେଇ ବହୁଆଗରୁ ଆବେଦନ ହୋଇଥିଲେ ହେଁ ପ୍ରଶାସନିକ ଅବହେଳା ଯୋଗୁଁ ତାହା ସମ୍ଭବ ହେଉନଥିଲା ।

ମୋର ମନେଅଛି, ସୁଦାମ ବିଶି ପ୍ରଥମ ବର୍ଷର ଆମ ଓଡ଼ିଆବିଭାଗର ସେମିନାର୍‌ସମ୍ପାଦକ ଭାବରେ କାର୍ଯ୍ୟଭାର ତୁଲାଇଥିଲେ। ତାଙ୍କସମୟରେ ସେମିନାର୍‌ସହ ବାର୍ଷିକ ବିଭାଗୀୟ ବଣଭୋଜି ମଧ୍ୟ ଆୟୋଜିତ ହୋଇଥିଲା। ସୁଦାମ, ପପଙ୍ଗା ଗାଁର ଛାତ୍ର, ଏବେ ଦେଶର ସିଆରପିଏଫରେ ନିୟୋଜିତ। ପରବର୍ତ୍ତୀ ବର୍ଷ ରାମଚନ୍ଦ୍ର ବର୍ଗେ, ତା ପରବର୍ଷ ଛାତ୍ରୀ ଡୋଲାବତୀ ଛନ୍ଦ ଏହି ଦାୟିତ୍ୱ ଖୁବ୍ ସଫଳତାର ସହ ନିଭାଇଥିଲେ। ଏହି ସେମିନାର୍‌ପାଇଁ ବିଭିନ୍ନ କଲେଜ୍‌ର ଅଧ୍ୟାପକମାନଙ୍କୁ ନିମନ୍ତ୍ରଣକରାଯାଇ ଏକ ନିର୍ଦ୍ଦିଷ୍ଟବିଷୟରେ ବକ୍ତବ୍ୟ ଉପସ୍ଥାପନ କରୁଥିଲେ, ପରେ ସେହି ବକ୍ତବ୍ୟ ଆଧାରରେ ପ୍ରଶ୍ନାବଳୀ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଉପସ୍ଥାପନ ହେଉଥିଲା, ଯାହାର ଯଥାଯଥ ଆଲୋଚନା ନିମନ୍ତ୍ରିତ ଅଧ୍ୟାପକଙ୍କ ଦ୍ୱାରା ସମାହିତ ହେଉଥିଲା। ପ୍ରତ୍ୟେକ ଆଲୋଚନା ସଭାପରେ ସାଧାରଣ ଜଳଖିଆରେ ସମସ୍ତଙ୍କୁ ଆପ୍ୟାୟିତ କରାଯାଉଥିଲା। ଗୋଟିଏଗୋଟିଏ ସେମିନାରରେ ଛାତ୍ରଛାତ୍ରୀଙ୍କ ରଚିତ ଲିଖିତପ୍ରବନ୍ଧ ପାଠ କରାଯାଉଥିଲା। ଏଭଳି ଉଦ୍ୟମ କରାଯିବାଦ୍ୱାରା ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବାହ୍ୟଜ୍ଞାନଜନିତ କାର୍ଯ୍ୟାବଳୀର ବିକାଶ ଘଟିଲା, ପାଠ୍ୟକ୍ରମ ବାହାର ସାହିତ୍ୟଜଗତ ସହ ପରିଚିତ ହୋଇପାରିଲେ, କବିତା, ଗଳ୍ପ ଆଦି ସର୍ଜନଶୀଳ ପ୍ରତିଭାର ବିକାଶକ୍ଷେତ୍ରରେ ସହାୟକ ହେଲା।

ଆଖପାଖରେ ଥିବା ବିଭିନ୍ନ କଲେଜର ଓଡ଼ିଆ ଅଧ୍ୟାପକମାନଙ୍କୁ ଏଥିପାଇଁ ଆମନ୍ତ୍ରିତ କରାଯାଉଥିବାରୁ ସାହିତ୍ୟର ବିଭିନ୍ନ ପ୍ରତିଭାମାନଙ୍କ ସହ ପରିଚିତ ହେଲେ, ଭାବ ବିନିମୟ କଲେ। ରେମଣ୍ଡାର ଝସକେତନ ପ୍ରଧାନ, ଲରମ୍ଭାର ଜନାର୍ଦ୍ଦନ ପାଣିଗ୍ରାହୀ, ପୁଷ୍ପ ମେହେର, କାଦୋବାହାଲର ମାନଭଞ୍ଜନ ପୁରୋହିତ, ଧମାର ସିଦ୍ଧାର୍ଥ ପଣ୍ଡା, ସମ୍ବଲପୁର ମନୋଜ ପଣ୍ଡା, ଗୌରିଦାସ ପ୍ରଧାନ, ଗୋଡଭଗାର ସ୍ୱର୍ଗତ ସୁଧାଂଶେଖର ଦନ୍ତା ଆଦି ଆହୁରି ଅନେକ ଅଧ୍ୟାପକ କଲେଜ୍‌କୁ ଆସି ଆନନ୍ଦ ସହକାରେ ସେମିନାର୍‌ରେ ଯୋଗଦାନ କରିଥିଲେ। ବାର୍ଷିକସେମିନାର୍ ବେଳେ ଭୋଜିଭାତର ମଧ୍ୟ ଆୟୋଜନ କରାଯାଇଥିଲା। ଅଧ୍ୟାପିକା ପଲ୍ଲବୀ ପାତ୍ର ଏବଂ ଅଧ୍ୟାପକ ସନ୍ତୋଷ ତ୍ରିପାଠୀଙ୍କ ପ୍ରତ୍ୟକ୍ଷ ସହଯୋଗରେ କଲେଜ୍‌ରେ ଓଡ଼ିଆଭାଷା ଓ ସାହିତ୍ୟବିଭାଗ ଏକ ସ୍ୱତନ୍ତ୍ରପରିଚୟ ସୃଷ୍ଟି କରିଥିଲା। ଛାତ୍ରଛାତ୍ରୀମାନଙ୍କ ଅକୁଣ୍ଠ ସହଯୋଗରେ ବିଭାଗର ପ୍ରତ୍ୟେକ କାର୍ଯ୍ୟକ୍ରମ ଶୃଙ୍ଖଳିତଭାବରେ ଅନୁଷ୍ଠିତ ହେଉଥିଲା। ବଣଭୋଜି ପାଇଁ କେବେ ଜୀରୋ ପଏଣ୍ଟ, କେବେ ଚିପିଲିମା, କେବେ ଦେବଝରନ୍ ଆଦି ପର୍ଯ୍ୟଟନସ୍ଥାନକୁ ନିର୍ବାଚିତ କରାଯାଉଥିଲା। ପ୍ରଥମବର୍ଷର ଛାତ୍ରଛାତ୍ରୀମାନଙ୍କୁ ନେଇ ଏକ ଷ୍ଟଡିଟୁର୍

ଭାବରେ ମନ୍ଦିରମାଳିନୀ ସୋନପୁରକୁ ନିଆଯାଇଥିଲା । ପରବର୍ତ୍ତୀବର୍ଷ ଟିଟିଲାଗଡ ନିକଟସ୍ଥ ଚୌଷଠୀଯୋଗିନୀ ମନ୍ଦିରକୁ ନିଆଯାଇଥିଲା । ଏଭଳି କାର୍ଯ୍ୟକ୍ରମପାଇଁ ଛାତ୍ରଛାତ୍ରୀମାନେ ଆଗ୍ରହ ପ୍ରକାଶକରିଥିଲେ ।

ମୋର ଅବସର ବର୍ଷର ପ୍ରାରମ୍ଭରେ ଆମ ଓଡ଼ିଆଭାଷା ଓ ସାହିତ୍ୟବିଭାଗ ତରଫରୁ ଏକ ଅଭିନବ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା । ଅତାବିରା ନିର୍ବାଚନମଣ୍ଡଳୀରେ ଥିବା ସମସ୍ତ କଲେଜ୍‌ର ଓଡ଼ିଆ ଅଧ୍ୟାପକମାନଙ୍କୁ ନେଇ ଆମ କଲେଜ୍‌ରେ ଓଡ଼ିଆ ଅଧ୍ୟାପକ ସମ୍ମେଳନ ଆୟୋଜିତ ହୋଇଥିଲା ମହାଆଡ଼ମ୍ବରରେ । ଆମ ଅଧ୍ୟକ୍ଷ ଦେବୀଦାସ ମିଶ୍ରଙ୍କ ସଭାପତିତ୍ୱରେ ଆୟୋଜିତ ଏହିସମାବେଶରେ ଭେଡେନ୍, ରେସମ, କାଦୋବାହାଲ, ଲରମ୍ବା, ଅତାବିରା, ରେମୁଣ୍ଡା, ପାହାଡଶ୍ରୀରିଡା, ଗୋଡଭଗା, କଲାପାଣି ଆଦି ମହାବିଦ୍ୟାଳୟର ଓଡ଼ିଆ ବିଭାଗର ଅଧ୍ୟାପକ, ଅଧ୍ୟାପିକାମାନେ ଅଂଶଗ୍ରହଣ କରି ସମାରୋହକୁ ସଫଳ କରିଥିଲେ । ଏଭଳି ଉଦ୍ୟମଫଳରେ ପରସ୍ପର ପରସ୍ପରକୁ ଚିହ୍ନିବାସହ ଭାବ ବିନିମୟ କରିଥିଲେ । ସମସ୍ତଙ୍କ ବକ୍ତବ୍ୟରେ ସମାରୋହଟି ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣରେ ସମାହିତ ହୋଇଥିଲା । ଏହି ସମାବେଶର ସଫଳତା ପ୍ରତ୍ୟେକବର୍ଷ ବିଭିନ୍ନ କଲେଜ୍‌ରେ ଆୟୋଜନ କରାଯିବାର ପ୍ରସ୍ତାବ ଗୃହୀତ ହୋଇଥିଲା ।

ମୋର ଅବସରପର୍ଯ୍ୟନ୍ତ ଆୟୋଜିତ ହୋଇଥିବା ପ୍ରତ୍ୟେକଟି କାର୍ଯ୍ୟକ୍ରମର ସଫଳତା ପଛରେ ଅଧ୍ୟାପକ ସନ୍ତୋଷ ତ୍ରିପାଠୀଙ୍କ ପ୍ରତ୍ୟକ୍ଷ ତଥା ଆନ୍ତରିକ ସହଯୋଗିତା କେବେ ଭୁଲିବାର ନୁହେଁ । ଏସବୁ ଲେଖୁଲାବେଳେ, ମୋର ମନେ ପଡ଼ିଯାଉଛି ପ୍ରତ୍ୟେକ କାର୍ଯ୍ୟକ୍ରମରେ ତିଆରି ହେଉଥିବା ଜଳଖିଆର ଇନ୍ତଜାମ୍, ଭୋଜିଭାତର ଆସର, ପକୋଡ଼ି, ଜିଲାବୀ, ବାଇଗଣିର ସମାହାର, ମାମିକୁ ଖିରି ଯାଚିବାର ଆଗ୍ରହ, ସବୁ ବିଭାଗର ଅଧ୍ୟାପକମାନଙ୍କ ଅକୁଣ୍ଠ ସହଯୋଗ, ଅରୁଣବାବୁ, ରାମବାବୁଙ୍କ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବକ୍ତବ୍ୟ, ଦେବୀଦାସଙ୍କ କବିସୁଲଭ ପ୍ରସ୍ତାବନା, ଭାଇନାର ହାତରନ୍ଧା ସାଦାରୋଷେଇର ଗରମାଗରମ୍ ପ୍ରସ୍ତୁତି !!

ସବାଶେଷରେ ଅବସରଜନିତ ବିଦାୟ ବେଳାରେ ସନ୍ତୋଷ ବାବୁ, ପଲ୍ଲବୀ ମେଡମ, ସବୁ ବର୍ଷର ଛାତ୍ରଛାତ୍ରୀଙ୍କ ଅଶ୍ରୁଛଳଛଳ ବିଦାୟବେଳାର ବିଚ୍ଛେଦମୁହୂର୍ତ୍ତ, କଲେଜ୍‌ରୁ ସିନା ସମ୍ପର୍କ ଛିଣ୍ଡାଇ ଦେଇଥିଲା, ହେଲେ ବ୍ୟକ୍ତିଗତ ଭାବରେ ଏବେ ବି ଯୋଡ଼ିହୋଇ ରହିଛି ସମସ୍ତଙ୍କ ସାଙ୍ଗରେ । ଏବେ ବି ଅଧ୍ୟାପକ ସନ୍ତୋଷ ବାବୁଙ୍କ ଫୋନ ଆସୁଛି । କେବେକେବେ ଭେଟ ପାଇଁ ଧାଇଁଆସୁଛନ୍ତି ଧନୁପାଲିକୁ । ଶୁଣୁଛି

ପଲ୍ଲବୀମେଡମ୍ ଆଉ ଆମ କଲେଜ୍‌ରେ ନାହାନ୍ତି । ଉଲୁଣ୍ଡାକୁ ଚାଲିଆସିଛନ୍ତି ସପରିବାର । ଭାବୁଛି, କଲେଜ୍ ଜଣେ ଭଲପ୍ରତିଭାକୁ ହାତଛଡ଼ା କଲା । ସୁଦାମ ଏବେ ବି ଫୋନ୍‌ରେ କଥା ଲାଗୁଛି, ଗୁରୁଦିବସର ପୂର୍ଣ୍ୟସକାଳରେ ଡୋଲବତୀ ପ୍ରଣାମକରେ ଫୋନ୍‌ରେ, ଏମିତି ସମ୍ପର୍କ ରହିଛି । ମୋର ଏହି ନିଜସ୍ୱ ସଂଳାପ ଅନେକ ପୂରାତନ ଛାତ୍ରଛାତ୍ରୀ ପଢୁଛନ୍ତି ଜାଣି ମୁଁ କୃତ୍ୟକୃତ୍ୟ ହୋଇପଡୁଛି, ସମସ୍ତଙ୍କୁ ମୋର ସ୍ନେହାଶିର୍ବାଦ ।

ଅବସର ନେଇ ନଥାଏ, ଥରେ କଲେଜ୍‌ରୁ ପପଙ୍ଗା, ଆଖିଫୁଟା ଦେଇ ଫେରିବାବେଳେ ପୁରାତନ ବିଭାଗୀୟ ଛାତ୍ରୀ ରଶ୍ମି ବାରିକ୍, ଗାଁ ବାଞ୍ଜିପାଲିରୁ ଶ୍ୱଶୁରଘର ଗୋଶାଳା ଯାଉଥିଲା ବାଇକ୍‌ରେ କାହା ସାଥିରେ ବସି । ହାତରେ ତାର କିଛିମାସର ସନ୍ତାନ, ମୋତେ ଦେଖି ବାଇକ୍‌ରଖି ଛୁଆକୁ ଧରି ଓହ୍ଲାଇପଡିଲା, ପ୍ରଣାମକରି ପ୍ରଥମବାକ୍ୟଟି କହିଲା, 'ସାର୍ ! ସେମିନାର୍ ହଉଛେ କି ନାଇଁ ?' ସଦ୍ୟ ମାଁ ସାଜିଥିବାର ଜଣେ ଛାତ୍ରୀଙ୍କ କଣ୍ଠନିଃସୃତ ଏହି ପ୍ରଥମ ବାକ୍ୟଟି ହିଁ ସେହି ପାଞ୍ଚବର୍ଷର ଆୟୋଜିତ ଆଲୋଚନାଚକ୍ର ସଫଳତାର ପରିଚାୟକ, ନୁହେଁ କି ! ! !



**କେ**ନ୍ଦ୍ର ସାହିତ୍ୟ ଏକାଡେମୀର ଓଡ଼ିଆ ଉପଦେଷ୍ଟା ମଣ୍ଡଳୀର ସଦସ୍ୟ ପଦ ମୋନିକଟକୁ କିଭଳି ଆସିଲା, ମୋ ପାଞ୍ଚବର୍ଷିଆ କାଳ ଶେଷ ହୋଇଯାଇଥିଲେ ମଧ ଏଯାଏଁ ଜାଣିପାରିନାହିଁ । ଦୁଇହଜାର ତେରରୁ ସତର ଡିସେମ୍ବର, ଏହି ପାଞ୍ଚବର୍ଷର କାର୍ଯ୍ୟକାଳ ଭିତରେ ଏକାଡେମୀର ଜଣେ ସଦସ୍ୟଭାବରେ ଯାହା କାର୍ଯ୍ୟକ୍ରମ ହୋଇଛି, ସେଥିପାଇଁ ମୁଁ ଏକା ଶ୍ରେୟନେବାଟା ଠିକ୍ ହେବନାହିଁ, କାରଣ, ମୁଁ ଉପଦେଷ୍ଟା ମଣ୍ଡଳୀର ସଭ୍ୟ ଥିଲେହେଁ, ପ୍ରଫେସର ଗୋପାଳକୃଷ୍ଣ ରଥ ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓଡ଼ିଆବିଭାଗର ପ୍ରଫେସର ବନ୍ଧୁ ଡ. କୃଷ୍ଣଚନ୍ଦ୍ର ପ୍ରଧାନ ସାଧାରଣ ପରିଷଦର ସଦସ୍ୟ ଥିଲେ, ଯାହା ଉପଦେଷ୍ଟା ମଣ୍ଡଳୀର ଉପରିସ୍ଥ କାର୍ଯ୍ୟକାରୀ ସମିତି, ଯେଉଁଠାରେ ସାରା ଭାରତବର୍ଷ ପାଇଁ ବିଭିନ୍ନ ଭାଷାସାହିତ୍ୟ ପାଇଁ ବିଭିନ୍ନ ଯୋଜନା ପ୍ରସ୍ତାବଭାବରେ କାର୍ଯ୍ୟକାରୀ ହୋଇଥାଏ । ତଥାପି, ଉପଦେଷ୍ଟା ମଣ୍ଡଳୀର ବୈଠକରେ ଓଡ଼ିଶାପାଇଁ ବର୍ଷକୁ ବର୍ଷ ଆୟୋଜିତ ହେବାକୁ ଥିବା ବିଭିନ୍ନ ସାହିତ୍ୟ ସମାବେଶ, ସଂଗୋଷ୍ଠୀ, ଆଲୋଚନାଚକ୍ର, ସମ୍ମେଳନ, କବି ପରିଚୟ ଆଦି ବିଭିନ୍ନ କାର୍ଯ୍ୟକ୍ରମର ରୂପରେଖ ନିର୍ଣ୍ଣୟ କରାଯାଏ । ଏଥିସହ ମନୋନୀତ ପୁସ୍ତକଗୁଡ଼ିକର ପ୍ରକାଶନ ନିମିତ୍ତ ପ୍ରସ୍ତାବମଧ ଗୃହୀତ ହୋଇଥାଏ । ତେଣୁ ଉପଦେଷ୍ଟାମଣ୍ଡଳୀର ସଦସ୍ୟମାନଙ୍କ ପ୍ରସ୍ତାବମାନ ଗମ୍ଭୀରତାର ସହ ନିଆଯାଇଥାଏ ।

ମୁଁ ଏହି ଉପଦେଷ୍ଟା ମଣ୍ଡଳୀର ସଦସ୍ୟ ହେବା ସମ୍ବଲପୁରର ବହୁ ବୁଦ୍ଧିଜୀବୀ ତଥା ମୋର ବନ୍ଧୁମହଲକୁ ବିସ୍ମିତ କରିଥିଲା । ତେବେ ଅନକାଂକ୍ଷିତ ଭାବରେ ମିଳିଥିବା ଏଭଳି ସମ୍ମାନଜନକ ଦାୟିତ୍ୱକୁ ମୁଁ କିନ୍ତୁ ଗମ୍ଭୀରତାର ସହ ଗ୍ରହଣ କରିଥିଲି । ସହସ୍ରାଧିକ ବନ୍ଧୁମାନଙ୍କ ଅଭିନନ୍ଦନ ପାଇବାପରେ ମୋର ଆତ୍ମବିଶ୍ୱାସ ବୃଦ୍ଧିପାଇଥିଲା ଏବଂ ମୁଁ ନିଜେ ଏଥିପାଇଁ ନିଜକୁ ମାନସିକସ୍ତରରେ ପ୍ରସ୍ତୁତ କରିଦେଲି । ବର୍ଷରେ ଥରଟିଏ ପାଇଁ ହୁଏ ମଣ୍ଡଳୀର ବୈଠକ । ମୋର ଏହି ପାଞ୍ଚବର୍ଷର କାର୍ଯ୍ୟକାଳଭିତରେ ପ୍ରଥମ ଦୁଇବର୍ଷ କଲିକତାର ଏକାଡେମୀ ଅଫିସରେ, ପରବର୍ଷ ଅର୍ଥାତ୍ ପନ୍ଦର ଓ ଷୋହଳରେ ଭୁବନେଶ୍ୱରର ଯଥାକ୍ରମେ ପାନ୍ଥ ନିବାସରେ ଏବଂ ହୋଟେଲ୍ ସ୍ୱସ୍ତି ପ୍ରିମିୟମ୍‌ରେ ଅନୁଷ୍ଠିତ ହୋଇଥିଲା । ଏ ସମସ୍ତ ବୈଠକରେ ସଭାପତିତ୍ୱ କରିଥିଲେ ଏକାଡେମୀର ସଚିବ ଶ୍ରୀନିବାସା ରାଓ । ରାଓବାବୁ ଜଣେ ସ୍ପଷ୍ଟବାଦୀ, ଜ୍ଞାନୀ ବ୍ୟକ୍ତିତ୍ୱ । ବଡ଼ ସମସ୍ୟାଗୁଡ଼ିକୁ ଅତି ସହଜରେ ସମାଧାନ କରିପକାଉଥିଲେ ନିଜ ବିଚକ୍ଷଣ ବୁଦ୍ଧି ଦ୍ୱାରା । ଉପଦେଷ୍ଟା ମଣ୍ଡଳୀର ସଦସ୍ୟମାନଙ୍କ ପ୍ରତ୍ୟେକ ପ୍ରସ୍ତାବ ଓ ଅଭିଯୋଗଗୁଡ଼ିକୁ ସେ ଧୈର୍ଯ୍ୟର ସହ ଶୁଣୁଥିଲେ । ତେର ମସିହାରେ ଅନୁଷ୍ଠିତ ପ୍ରଥମବୈଠକ ପାଇଁ ମୁଁ, ଗୋପାଳ ସାର୍ ଏବଂ କୃଷ୍ଣଚନ୍ଦ୍ରବାବୁ ଏକା ସାଥିରେ ସମଲେଶ୍ୱରୀ ଏକ୍ସପ୍ରେସରେ ହାଓଡା ଅଭିମୁଖେ ଯାତ୍ରାକରିଥିଲୁ । ସକାଳେ ନେହେରୁ ମ୍ୟୁଜିୟମ୍ ସାମ୍ନାରେ ଥିବା ବ୍ରିଟିଶ୍ ଅମଳର ଏକ ହୋଟେଲ, ଯାହା ସେ ସମୟରେ ଡେଲହାଉସୀଙ୍କ କୋର୍ଟ ଥିଲା, ସେଇଠାରେ ଆମକୁ ରହିବାକୁ ଦିଆଯାଇଥିଲା । କଲିକତାରେ ବୈଠକ ଆୟୋଜିତ ହେଲେ ସେଇଠାରେ ହିଁ ଆମର ବିଶ୍ରାମସ୍ଥଳ ଥିଲା । ଦଶଟା ହେଲେ, ଏକାଡେମୀର ଆଞ୍ଚଳିକ କାର୍ଯ୍ୟାଳୟ ଯିବାପାଇଁ ଗାଡିର ବ୍ୟବସ୍ଥା ହେଉଥିଲା । ହୋଟେଲରୁ ଏକାଡେମୀ କାର୍ଯ୍ୟାଳୟର ଦୂରତା ପ୍ରାୟ ଦଶପନ୍ଦର କିଲୋମିଟର ହେବ । ପ୍ରଥମବୈଠକରେ ସମସ୍ତ ସଦସ୍ୟଙ୍କୁ ପରିଚିତ କରାଇଥିଲେ ଆମ ଆବାହକ ଡ. ଗୌରହରି ଦାସ । ସଚିବ ରାଓବାବୁ ଆସିଲେ ତତ୍କ୍ଷଣାତ୍ ସଭାକାର୍ଯ୍ୟ ଆରମ୍ଭ ହେଉଥିଲା । ଦୁଇଅଢ଼େଇ ଘଣ୍ଟାର ବୈଠକପରେ ପ୍ରସ୍ତାବମାନ ଗୃହୀତ ହେଉଥିଲା । ପ୍ରଥମବୈଠକରେ ମୁଁ, ଗୋପାଳବାବୁ ଏବଂ କୃଷ୍ଣଚନ୍ଦ୍ରବାବୁ ମହଜୁଦ ଥିଲୁ । ମୁଁ ସମ୍ପୂର୍ଣ୍ଣ ନୂତନ ହୋଇଥିବାରୁ ପ୍ରଥମରୁ ପାଟି ନ ଖୋଲି ନୀରବରେ କେବଳ ବୈଠକର ଗତି ଓ ପ୍ରକୃତିକୁ ଲକ୍ଷ୍ୟ କରୁଥିଲି । ଆମ ଉପଦେଷ୍ଟା ମଣ୍ଡଳୀରେ ବହୁ ଜ୍ଞାନୀଗୁଣି ସଦସ୍ୟ ଥିଲେ । କବି ଅର୍ଚ୍ଚନା ମହାନ୍ତି, ପୀତବାସ ରାଉତରାୟ ଆଦି ସମସ୍ତେ ସେହି ବୈଠକରେ ଉପସ୍ଥିତ ଥିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ

ହେବାକୁଥିବା ସାହିତ୍ୟସଭା ଆଦି ଆଲୋଚନା ଭିତରେ ମିଟ୍ ଦି ଅଥର୍ କାର୍ଯ୍ୟକ୍ରମ ପାଇଁ ମୁଁ ହଠାତ୍ ପୂର୍ଣ୍ଣାନନ୍ଦ ଦାନୀଙ୍କ ନାମ ପ୍ରସ୍ତାବ ରଖିଥିଲି । ମୋର ଏହି ପ୍ରସ୍ତାବରେ କେହିବି କୌଣସି ମତ ଦେଇ ନଥିଲେ, ବରଂ ମୋ ପଟକୁ ଚାହିଁଲେ, ଯେଭଳି ମୁଁ ଏହି ପ୍ରସ୍ତାବ ଦେଇ ଗୋଟିଏ ଗର୍ହିତ ଅପରାଧ କରିପକାଇଛି । କିଛି ମୁହୂର୍ତ୍ତ ନୀରବତା ଭିତରେ ନିଜେ ଗୌରହରିବାବୁ କହିଲେ, କିଏ, କିଏ କହିବ ତାଙ୍କ ବାବଦରେ? ମୋ ମୁହଁରୁ ସ୍ୱତଃ ବାହାରିପଡିଲା ଡ. ପ୍ରଫୁଲ୍ଲ ତ୍ରିପାଠୀ ! ! ସାମାନ୍ୟ ହେଜିଟେସନ୍ ପରେ ମୋର ଏହି ପ୍ରସ୍ତାବଟି ଗୃହିତ ହୋଇଥିଲା । ଏଇଥିଲା, ଏକାଡେମୀ ବୈଠକରେ ମୋର ପ୍ରଥମ ପ୍ରସ୍ତାବ, ପ୍ରଥମ ଅନୁଭୂତି, ଯାହା ଗୃହିତ ହେବା ପରେ ବ୍ୟକ୍ତିଗତଭାବରେ ମୁଁ ଆଶ୍ୱସ୍ତ ଥିଲି । ତା ପରେପରେ ମୁଁ ଓ ଡ. କୃଷ୍ଣଚନ୍ଦ୍ର ପ୍ରଧାନ ଆଗରୁ ନିଜନିଜ ଭିତରେ ଚର୍ଚ୍ଚାକରି ଆମ ପ୍ରସ୍ତାବମାନ ପ୍ରସ୍ତୁତ କରିରଖିଥିଲୁ ।

ସମ୍ବଲପୁରୀବାସୀ, ବୁଦ୍ଧିଜୀବୀ ତଥା ସାହିତ୍ୟିକ ମହଲ ମୋର ଏହି ପ୍ରସ୍ତାବର କାର୍ଯ୍ୟକାରିତାକୁ ସ୍ୱଷ୍ଟ ଭାବରେ ଅବଲୋକନ କରିଥିଲେ ପାନ୍ଥନିବାସର ପ୍ରକୋଷ୍ଠରେ, ଯେଉଁଠି ମିଟ୍ ଦି ଅଥର୍ କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା । ଡ. ପ୍ରଫୁଲ୍ଲ ତ୍ରିପାଠୀ ବକ୍ତାଭାବରେ ଯୋଗଦେଇ ତାଙ୍କ ସମସାମୟିକ ଲେଖକ ସ୍ୱର୍ଗତ ପୂର୍ଣ୍ଣାନନ୍ଦ ଦାନୀଙ୍କ ଲେଖକୀୟ ଜୀବନ ଏବଂ ସୃଷ୍ଟିସମ୍ଭାର ବାବଦରେ ଘଣ୍ଟାଏକାଳ ସମ୍ବଲପୁରୀଭାଷାରେ ଭାଷଣ ଦେଇଥିଲେ । ଉପସ୍ଥିତ ସମସ୍ତ ଦର୍ଶକ ମନଭରି ଏହି କାର୍ଯ୍ୟକ୍ରମକୁ ଉପଭୋଗ କରି ପୂର୍ଣ୍ଣାନନ୍ଦଆତ୍ମାଙ୍କୁ ସ୍ମରଣ କରିଥିଲେ । ଏହି କାର୍ଯ୍ୟକ୍ରମର ସଫଳତାପରେ ମୁଁ ଆଉ ପଛକୁ ନ ଓଲଟି ଏକାଡେମୀର ଅନେକ କାର୍ଯ୍ୟକ୍ରମ କେବଳ ସମ୍ବଲପୁର ନୁହେଁ, ସୋନପୁରରେ, ବଲାଙ୍ଗିରରେ, ଝାରସୁଗୁଡ଼ାରେ, ସୁନ୍ଦରଗଡରେ, ସମ୍ବଲପୁର ବିଶ୍ୱବିଦ୍ୟାଳୟ ପରିସରରେ ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ସହ ଏକାସାଥିରେ ସଂଖ୍ୟାଧିକ କାର୍ଯ୍ୟକ୍ରମ ଆୟୋଜନ କରିଛୁ । ଏହି ପାଞ୍ଚବର୍ଷ ମଧ୍ୟରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ବିଜୁ ପଟ୍ଟନାୟକ ପ୍ରେକ୍ଷାଳୟରେ ଦୁଇଥର ବିଭିନ୍ନ ବିଷୟକୁ ନେଇ ଜାତୀୟ ସ୍ତରର ଆଲୋଚନାଚକ୍ର ଆୟୋଜିତ ହୋଇଥିଲା । ଆତ୍ମଜୀବନୀ ଓ ଭ୍ରମଣ କାହାଣୀ ବିଷୟକୁ ନେଇ ହୋଇଥିବା ସେମିନାରରେ ମୁଁ ମଧ୍ୟ ଏକ ପ୍ରବନ୍ଧ ଉପସ୍ଥାପନ କରିଥିଲି ।

ସ୍ଥାନୀୟ ଗଙ୍ଗାଧର ମେହେର ବିଶ୍ୱବିଦ୍ୟାଳୟର ପ୍ରକୋଷ୍ଠରେ ମଧ୍ୟ ଏକାଧିକବାର ବିଭିନ୍ନ କାର୍ଯ୍ୟକ୍ରମ ଆୟୋଜିତ ହୋଇଛି । ଡ. ଶ୍ରଦ୍ଧାକର ସୂପକାରଙ୍କ ଜନ୍ମ ଶତବାର୍ଷିକୀ କାର୍ଯ୍ୟକ୍ରମରେ ବିଶିଷ୍ଟ ଲେଖକ ହରପ୍ରସାଦ ଦାସ ମୁଖ୍ୟଅତିଥି

ଭାବରେ ଯୋଗଦେଇ ଶ୍ରଦ୍ଧାକରବାବୁଙ୍କ ସମ୍ପର୍କରେ ଭାବଗର୍ଭକ ଲେଖା ଉପସ୍ଥାପନ କରିଥିଲେ । ଏହି କାର୍ଯ୍ୟକ୍ରମରେ ଡ. ଶ୍ୟାମସୁନ୍ଦର ଧର ଭିତ୍ତିପ୍ରବନ୍ଧ ପାଠ କରିଥିଲେ । ଡ. ପ୍ରଦୀପ କୁମାର ପଣ୍ଡା, ଗୌରିଦାସ ପ୍ରଧାନ, ଡ. ଶ୍ୟାମ ଭୋଇ ଆଦି ଲେଖକମାନେ ଶ୍ରଦ୍ଧାକରବାବୁଙ୍କ ସୃଷ୍ଟିସମ୍ଭାରର ବିଭିନ୍ନ ଦିଗଉପରେ ଅଲୋକପାତ କରିଥିଲେ । ଏଠାରେ ଅନ୍ୟ ଏକବର୍ଷ ଓଡ଼ିଆସାହିତ୍ୟରେ ଲୋକସଂସ୍କୃତିର ଉପାଦାନ ବିଷୟରେ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା, ଏହି ସମ୍ମାନରେ ମୁଁ ଭିତ୍ତିପ୍ରବନ୍ଧ ପାଠ କରିଥିଲି । ଏହି ପ୍ରବନ୍ଧଟି ସେତୁର ସଭାପତି ଡ. ରମାବଲ୍ଲଭ ମିଶ୍ରଙ୍କୁ ଖୁବ୍ ଆକର୍ଷିତ କରିଥିଲା । ସେ ଏହାକୁ ସେତୁର ସ୍ମରଣିକାରେ ପ୍ରକାଶିତ କରିଥିଲେ । ପାନ୍ଥ ନିବାସର ସୁରେନ୍ଦ୍ରସାଏ ହଲ୍‌ରେ ଶେଷବର୍ଷରେ ନାଟକ ସମ୍ବନ୍ଧୀୟ ଏକ ବିଷୟରେ ମଧ୍ୟ ସମ୍ମାନ ଆୟୋଜିତ ହୋଇଥିଲା । ଏହି ସମ୍ମାନରେ ମଧ୍ୟ ମୁଁ ଭିତ୍ତିପ୍ରବନ୍ଧ ଉପସ୍ଥାପନ କରିଥିଲି ଏବଂ ଆଲୋଚନାରେ କେଶରଞ୍ଜନ ପ୍ରଧାନ, ସିଦ୍ଧାର୍ଥ ପଣ୍ଡାଙ୍କ ସହ ଆହୁରି ଅନେକ ଆଲୋଚକ ଅଂଶଗ୍ରହଣ କରିଥିଲେ । ଏହି ପ୍ରତ୍ୟେକ ସଭାର ଉଦ୍‌ଘାଟନୀ ଉତ୍ସବରେ ସାଧାରଣ ପରିଷଦର ସଦସ୍ୟ ଭାବରେ ଗୋପାଳକଷ୍ଟ ରଥ ଏବଂ ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ ସଭାପତିତ୍ୱ କରିଥିଲେ । ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ ଜଣେ ସୁବକ୍ତା ହେବାସହ ଉତ୍ତମ ସଂଗଠକ ମଧ୍ୟ । ତେଣୁ ଏହି ପାଞ୍ଚବର୍ଷର କାର୍ଯ୍ୟକାଳ ଭିତରେ ଅନୁଷ୍ଠିତ ପ୍ରତ୍ୟେକ କାର୍ଯ୍ୟକ୍ରମ ପଛରେ ପ୍ରଧାନବାବୁଙ୍କ କଠିନପରିଶ୍ରମ ଦାୟୀ କହିଲେ ଅତ୍ୟୁକ୍ତି ହେବନାହିଁ ।

ଡ. ଗୌରହରି ଦାସ, ଓଡ଼ିଆସାହିତ୍ୟର ଜନୈକ ଲୋକପ୍ରିୟ ଗାଳ୍ପିକ, ତାଙ୍କ ଆବାହକତ୍ୱରେ ଏକାଡେମୀ ପଶ୍ଚିମଓଡ଼ିଶାର ବିଭିନ୍ନ ସହରକୁ ପହଞ୍ଚିପାରିଥିଲା, ତଥାପି ଆହୁରି ଅନେକଅଞ୍ଚଳ ବାକି ରହିଯାଇଥିଲା । ତାଙ୍କ ସହଯୋଗରେ ଅନେକ କାର୍ଯ୍ୟକ୍ରମ ହୋଇଥିଲେ ହେଁ ମୋ ମନମୁତାବକ ଅନେକ ଅଭିନବ କାର୍ଯ୍ୟକ୍ରମ ହୋଇପାରି ନଥିବାରୁ କିଛି ଅବଶୋଷ ରହିଗଲା । ଅବଶ୍ୟ ଏବେ ଡ. ଶ୍ୟାମ ଭୋଇ ସଦସ୍ୟ ହେବାପରେ ଏହିଭଳି କାର୍ଯ୍ୟକ୍ରମର ଧାରା ଜାରିରହିଛି । ଓଡ଼ିଶାର ବିଶିଷ୍ଟ ନାଟ୍ୟକାର ତଥା ବନ୍ଧୁ ପ୍ରମୋଦ ତ୍ରିପାଠୀଙ୍କ ଅପ୍ରକାଶିତ ନାଟକଗୁଡ଼ିକୁ ଏକାଡେମୀ ପ୍ରକାଶ କରୁ ବୋଲି ପାଞ୍ଚଟିଯାକ ବୈଠକରେ ଦାବୀ ଉପସ୍ଥାପନ କରିଥିଲେ ହେଁ ତାକୁ ଗୁରୁତ୍ୱ ଦିଆଗଲା ନାହିଁ । ଆବାହକ ଗୌରହରିବାବୁ ଚାହିଁଥିଲେ, ଏତେବେଳକୁ ପ୍ରମୋଦଙ୍କ ରଚିତ ସମସ୍ତ ନାଟକ ପୁସ୍ତକ ଭାବରେ ଲୋକଲୋଚନକୁ ଆସିସାରନ୍ତାଣି !! ଓଡ଼ିଆ ନାଟ୍ୟସାହିତ୍ୟ ପ୍ରମୋଦଙ୍କ ନାଟ୍ୟସମୂହକୁ ଆଦରି ଗର୍ବ ଅନୁଭବ କରିସାରନ୍ତାଣି !!

ମୋର ଦୁର୍ଭାଗ୍ୟ, ମୁଁ ନିଜେ ସଭ୍ୟହୋଇ ସୁଦ୍ଧା ଏଭଳି ଉଦ୍ୟମରେ ସଫଳ ହୋଇପାରିଲି ନାହିଁ । ବର୍ତ୍ତମାନର ସଭ୍ୟ ଶ୍ୟାମବାବୁ ଲଢ଼ିଲେ ହୁଏତ ଏହି ସ୍ୱପ୍ନ ସାକାରହୋଇପାରିବ ।

ଅବଶ୍ୟ ଅନ୍ୟକେତୋଟି ପ୍ରସ୍ତାବ କାର୍ଯ୍ୟକାରୀ ହୋଇଥିବାରୁ ମୁଁ ଆଶ୍ୱସ୍ତି ଅନୁଭବ କରିଥିଲି । ବିଶେଷ ଭାବରେ ନାଟ୍ୟକାର ମଙ୍ଗଳୁଚରଣ ବିଶ୍ୱାଳଙ୍କ ସ୍ରଷ୍ଟା ଜୀବନ ଓ ସୃଷ୍ଟିସମ୍ଭାର ବାବଦରେ ଝାରସୁଗୁଡ଼ାରେ ଆୟୋଜିତ ସଭାରେ ତାଙ୍କ ଉପରେ ପିଏଚଡି କରିଥିବା ଡ. ଗୌରୀଦାସ ପ୍ରଧାନ ସାରଗର୍ଭକ ବକ୍ତବ୍ୟ ପ୍ରଦାନକରି ସଭାକୁ ସଫଳ କରିଥିବାରୁ ମୁଁ ଆତ୍ମସନ୍ତୋଷ ଲାଭକରିଥିଲି । ଉପଦେଷ୍ଟା ମଣ୍ଡଳୀର ବୈଠକରେ ବେଳେବେଳେ ପାଟିତୁଣ୍ଡ କରି ନିଜଦାବୀକୁ ହାସଲ କରିବାକୁ ପଡୁଥିଲା, କେବଳ ମୋତେ ନୁହେଁ, କୃଷ୍ଣଚନ୍ଦ୍ରବାବୁଙ୍କୁ ମଧ୍ୟ ଲଢ଼ିବାକୁ ପଡୁଥିଲା । ଏହି ସମୟଅବଧି ମଧ୍ୟରେ ଡ. ଶ୍ରଦ୍ଧାକର ସୁପକାର ଚୟନିକା ଏବଂ ତାଙ୍କ ଜନ୍ମଶତବାର୍ଷିକୀରେ ପଠିତ ସମସ୍ତ ପ୍ରବନ୍ଧମାନଙ୍କର ସଙ୍କଳନ ପ୍ରଧାନ ବାବୁଙ୍କ ସମ୍ପାଦନାରେ ଏକାଡେମୀ ପ୍ରକାଶିତ କରିଛି, ସେ ଆମ ଗର୍ବର ବିଷୟ ।

ଆମ ପୂର୍ବରୁ କେନ୍ଦ୍ର ସାହିତ୍ୟ ଏକାଡେମୀ, ଆମ ଅଞ୍ଚଳର ଏକ ପରିଚୟଶୂନ୍ୟ ଅନୁଷ୍ଠାନ ଥିଲା, ଏକାଡେମୀର କାର୍ଯ୍ୟକ୍ରମ ସମ୍ପର୍କରେ ଲେଖକମାନଙ୍କ ସାଧାରଣଜ୍ଞାନ ମଧ୍ୟ ନଥିଲା, ଯାହା ମୁଁ ଅନ୍ତତଃ ଅନୁଭବ କରୁଥିଲି । ତେବେ, ମୋ କାର୍ଯ୍ୟକାଳରେ ପାଞ୍ଚବର୍ଷ ଭିତରେ ଏହି ଏକାଡେମୀ ଅନେକ ଲେଖକଙ୍କୁ ଛୁଇଁଛି, ଆଗକୁ ଆଣିଛି, ବଡ଼ସଭାରେ ପରିଚିତ କରାଇଛି, ଗ୍ରାମାଞ୍ଚଳରୁ ଆଣି ସହରର ପ୍ରେକ୍ଷାଳୟକୁ ପହଞ୍ଚାଇବାରେ ସଫଳହୋଇଛି । ଏ କଥା ମଧ୍ୟ ସତ୍ୟ, ଆହୁରି ଅନେକ କରାଯାଇପାରିଥାନ୍ତା, ଏହି ପାଞ୍ଚବର୍ଷରେ ହୋଇପାରିଲା ନାହିଁ । ଏକାଡେମୀର କାର୍ଯ୍ୟ ଏକ ନିରନ୍ତର ବ୍ୟାପାର । ତେବେ ଏକାଡେମୀର ସହାୟତାରେ ଏକ ସୁନ୍ଦର ଭବିଷ୍ୟତଟିଏର ଭିତ୍ତି ଏହି ଅବଧିମଧ୍ୟରେ ସ୍ଥାପିତ ହୋଇଛି, ଏତିକି ଆଶ୍ୱାସନା ।

କାର୍ଯ୍ୟକାଳ ନସରୁଣୁ ପ୍ରଫେସର ଗୋପାଳକୃଷ୍ଣ ରଥଙ୍କ ଦେହାନ୍ତ ଆମକୁ ହତୋତ୍ସାହିତ କରିପକାଇଥିଲା । ଏତେଶୀଘ୍ର ଏତେବଡ଼ କବିଙ୍କ ତିରୋଧାନ ଘଟିବ, ଆମ ଚିନ୍ତାର ବାହାରେ ଥିଲା । ସେ ଏହି ପାଞ୍ଚବର୍ଷରେ ହିଁ ସାହିତ୍ୟ ଏକାଡେମୀର ମୁଖ୍ୟ ପୁରସ୍କାର ପାଇଥିଲେ ତାଙ୍କ 'ବିପୁଳ ଦିଗନ୍ତ' କବିତା ସଙ୍କଳନପାଇଁ । ଶେଷ ବୈଠକରେ ତାଙ୍କ ଅନୁପସ୍ଥିତି ଆମେ ସମସ୍ତେ ଅନୁଭବ କରିଥିଲୁ । ପୂର୍ବରୁ ରାସ୍ତା ଦୁର୍ଘଟଣାରେ ପୁତ୍ର ଓ ପୁତ୍ରବଧୂଙ୍କୁ ହରାଇ ସେ ମାନସିକଦୃଷ୍ଟିରେ ଦୁର୍ବଳ

ହୋଇପଡିଥିଲେ । ଗୋପାଳସାର୍ ଆଇନ୍ ମହାବିଦ୍ୟାଳୟରେ ମୋର ଶିକ୍ଷା ଗୁରୁ ଥିଲେ, ନାଟକର ଦିଗ୍‌ଦର୍ଶକ ଥିଲେ, ମୋର ଶୀତଳଷଷ୍ଠୀ ଧାରାବିବରଣୀର ପ୍ରଶଂସକ ଥିଲେ । ସେ ମୋର ଜୀବନକାଳର ପ୍ରତିଟି ମୁହୂର୍ତ୍ତରେ ମନେପଡିବେ ।

ଏକାଡେମୀର କାର୍ଯ୍ୟାବଳୀ ସମ୍ପର୍କରେ ଆହୁରି ଅନେକ ରସାଳଘଟଣା ରହିଛି । ଯାହାକୁ ଉପଯୁକ୍ତସ୍ଥାନରେ ବର୍ଣ୍ଣିବି । ସାହିତ୍ୟ ଏକାଡେମୀର ଉପଦେଷ୍ଟାମଣ୍ଡଳୀର କାର୍ଯ୍ୟକାଳ ନସରୁଣୁ ପୁଣି ଏକ ଦାୟିତ୍ୱ ଆସି ମୋ ଦୁଆରରେ ଦସ୍ତକ୍ ଦେଲା । ପନ୍ଦର, ଷୋହଳ, ସତର, ଏଭଳି ତିନୋଟି ବର୍ଷ ପାଇଁ ଇ.ଜେଡ୍.ସି.ସି. ଅର୍ଥାତ୍ ପୂର୍ବାଞ୍ଚଳୀୟ ସଂସ୍କୃତି ପରିଷଦର କାର୍ଯ୍ୟକାରିଣୀ କମିଟିର ସଦସ୍ୟତାର ପତ୍ର ଆସି ପହଞ୍ଚିଲା । ଅବସର ଯେତେ ପାଖେଇଆସୁଥିଲା, ଏଭଳି ବଡବଡ ଦାୟିତ୍ୱ ସେତେ ଆସି ମୋତେ ଆ' ଆ' ବୋଲି ଡାକୁଥିଲା । କେମିତି ବା ବାଟରୁ ଫେରାଇ ଦିଅନ୍ତି କୁହନ୍ତୁ ! ! !



ଦୁଇହଜାର୍ ଚୌଦ ମସିହାରେ ସୋନପୁର ଏବଂ ବଲାଙ୍ଗିରଠାରେ ଲାଗିଲାଗି ଦୁଇଦିନ ସାହିତ୍ୟ ଏକାଡେମୀର କାର୍ଯ୍ୟକ୍ରମ ଥିଲା । ପ୍ରଥମରାତିରେ ସୋନପୁରର ହୋଟେଲ ପ୍ରୋଗେସ୍ଇନ୍‌ର ପ୍ରକୋଷ୍ଠରେ ଯୁବ ଲେଖକମାନଙ୍କ କାର୍ଯ୍ୟକ୍ରମ ମୁଲାକାତ୍ ଏବଂ ତା'ପର ରାତିରେ ବଲାଙ୍ଗିରର ଏକ ହୋଟେଲରେ ନାରୀଚେତନା ଆଧାରିତ ଅସ୍ମିତା କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ଏଥିପାଇଁ କଲିକତାରୁ ଏକାଡେମୀ କାର୍ଯ୍ୟାଳୟରୁ ଆସିଥାନ୍ତି ଅଧିକାରୀ ମିହିର ସାହୁ । ସାହୁବାବୁ ଜଣେ ଓଡ଼ିଆ, ଖୋର୍ଦ୍ଧା ଅଞ୍ଚଳର ଲୋକ, ଶାନ୍ତିନିକେତନରେ ଓଡ଼ିଆରେ ଉପାଧ୍ୟୁତ୍ତର ପାଠ୍ୟକ୍ରମ ଶେଷହେବା ପରେ ଏକାଡେମୀରେ ନିଯୁକ୍ତିପ୍ରାପ୍ତ ହୋଇ ବହୁବର୍ଷଧରି କଲିକତାରେ ରହିଆସୁଛନ୍ତି । ସେ ସମ୍ବଲପୁର ପହଞ୍ଚିବା ପରେ ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ଘରକୁଯାଇ ସେଠାରୁ ଆମେ ତିନିଜଣ ସୋନପୁର ଅଭିମୁଖେ ଯାତ୍ରାକଲୁ । ମିହିର ସାହୁ ଜଣେ କୁହାଳିଆ ବ୍ୟକ୍ତି ଅଟନ୍ତି । ଅନାବଶ୍ୟକ କଥାକହି ଅନ୍ୟମାନଙ୍କ ନିକଟରେ ନିଜ ପ୍ରଭାବ ବିସ୍ତାରକରିବାରେ ଜଣେ ଧୁରନ୍ଧର ଲୋକ । ତେଣୁ ରାସ୍ତାସାରା ଏଭଳିକଥା ଶୁଣିଶୁଣି ମସ୍ତିଷ୍କ ଓଜନିଆ ଲାଗୁଥାଏ । ଆଗରୁ ସୋନପୁର ଯାଇ ପୂର୍ବପ୍ରସ୍ତୁତି ପାଇଁ ସମସ୍ତ ବ୍ୟବସ୍ଥା କରି ଆସିଥିଲି । ତେଣୁ ସୋନପୁର ପହଞ୍ଚିଲାପରେ ହୋଟେଲରେ ରହି ବିଶ୍ରାମନେଇ କେବଳ ସନ୍ଧ୍ୟାକୁ ଅପେକ୍ଷା କରିବାର ଥିଲା । ଏହି କାର୍ଯ୍ୟକ୍ରମ ପାଇଁ ସୋନପୁରର ଯୁବକବି ପ୍ରଦ୍ୟୁମ୍ନ ସାହୁଙ୍କ ସହ ଭବାନୀପାଟଣାର ସୁଧୀର ଧଙ୍ଗଡାମାଝି,

ରଞ୍ଜିତା ପଣ୍ଡା, ଏଭଳି ସମସ୍ତଙ୍କୁ ମିଶାଇ ଛ' ଜଣ ସ୍ୱରଚିତ କବିତା ଓ ଗଳ୍ପ ପାଠ କରିଥିଲେ । କୃଷ୍ଣଚନ୍ଦ୍ରବାବୁଙ୍କ ସଭାପତିତ୍ୱରେ ଆୟୋଜିତ ଏହି ମୁଲାକାତ୍ କାର୍ଯ୍ୟକ୍ରମକୁ ଏକାଡେମୀର ସଦସ୍ୟ ଭାବରେ ମୁଁ ସଞ୍ଚାଳନ କରିଥିଲି ।

କାର୍ଯ୍ୟକ୍ରମ ଶେଷରେ ଉପସ୍ଥିତ ଦର୍ଶକଙ୍କ ପାଇଁ ଜଳଖିଆର ବ୍ୟବସ୍ଥା ହୋଇଥିଲା ଏବଂ ବାହାରୁ ଆସିଥିବା ଅଂଶଗ୍ରହଣକରୀମାନଙ୍କ ପାଇଁ ରହିବା, ଖାଇବା ବ୍ୟବସ୍ଥା ହୋଇଥିଲା । ଏହି କାର୍ଯ୍ୟକ୍ରମ ପାଇଁ ବନ୍ଧୁ ପୁରୁଷୋତ୍ତମ ମିଶ୍ର ଏବଂ ବେଣୁଧର ପ୍ରଧାନଙ୍କ ସହଯୋଗ ଅବିସ୍ମରଣୀୟ । ସେମାନଙ୍କ ସହଯୋଗ ମିଳିବାରୁ ମୁଲାକାତ୍ କାର୍ଯ୍ୟକ୍ରମଟି ସୂଚାରୁଭାବରେ ଆୟୋଜିତ ହୋଇପାରିଲା । ଶେଷରେ ଡାଇନିଂ ପ୍ରକୋଷ୍ଠରେ ମୋ'ସହ କୃଷ୍ଣଚନ୍ଦ୍ରବାବୁ ଏବଂ ମିହିରବାବୁ ବସି ରାତ୍ରଭୋଜନ କରିବା ଆରମ୍ଭ କରୁଥିଲୁ, ମିହିରବାବୁ ଏଭଳି ବାଜେ ତଥା ଅଦରକାରୀ କଥା କହିଲେ, ଯାହାର ଆୟୋଜନ ସମ୍ପର୍କରେ କିଛି ସମ୍ପର୍କ ନଥିଲା, ଯାହା ମୋତେ ବିବ୍ରତ କରିବାସଙ୍ଗେ କ୍ରୋଧିତ କରିଥିଲା । ମୁଁ ଖାଇବା ସ୍ଥାନରୁ ଉଠିପଡିଥିଲି ଏବଂ ନଖାଇବାର ସଙ୍କଳ୍ପ ନେଇଥିଲି । ମୋର ଏଭଳି ରାଗଦେଖି କୃଷ୍ଣବାବୁ ମଧ୍ୟ ଚକିତ ହୋଇପଡିଥିଲେ । ତେବେ, ମିହରବାବୁଙ୍କ ବ୍ୟବହାରରେ ସେ ମଧ୍ୟ ଅତିଷ୍ଠ ହୋଇପଡିଥିଲେ । ପରେ ମିହିରବାବୁ ଖାଇସାରି ଉପରକୁ ମୋ ନିକଟକୁ ଆସି କ୍ଷମା ପ୍ରାର୍ଥନାକରି ଖାଇବାକୁ ଅନୁରୋଧ କରିଥିଲେ । ତେବେ, ମୋର ଜିଦ୍ ନିକଟରେ ସେ ହାର୍ ମାନିଥିଲେ । ରାତିଟି ଅଖିଆରେ କଟିଥିଲା ।

ସକାଳେ ପୁଣି କାର୍‌ରେ ବଲାଙ୍ଗିର ଯାଇ ସେଠାରେ ସିନେମାହଲ୍ ପାଖରେ ଏକ ହୋଟେଲର ବାତାନୁକୂଳିତ ପ୍ରକୋଷ୍ଠରେ ଅସ୍ମିତା କାର୍ଯ୍ୟକ୍ରମପାଇଁ ଯୋଗାଡ଼ଯନ୍ତ୍ର ଆରମ୍ଭ କରିଥିଲି । ସେଠାରେ ଅଧ୍ୟାପକ ସନ୍ତୋଷ ରଥ ଏବଂ ଯୁବଲେଖକ କ୍ଷେତ୍ରବାସୀ ନାୟକଙ୍କ ସହଯୋଗରେ ବଲାଙ୍ଗିରର ବୁଦ୍ଧିଜୀବୀ ତଥା ସାହିତ୍ୟିକମାନଙ୍କ ଗହଣରେ କାର୍ଯ୍ୟକ୍ରମଟି ଅନୁଷ୍ଠିତ ହୋଇଥିଲା । ତେବେ, ମିହରବାବୁଙ୍କ ବ୍ୟବହାରରେ ମୁଁ ଏତେଦୂର ଅତିଷ୍ଠ ହୋଇପଡିଥିଲି ଯେ ମୁଁ ସଭାମଞ୍ଚକୁ ଯିବାପାଇଁ ଅନିଚ୍ଛୁକ ହୋଇପଡିଲି, ବାହାରେଥାଇ ଦର୍ଶକମାନଙ୍କ ପାଇଁ ଚା'ପାନର ବ୍ୟବସ୍ଥା ଦେଖୁଥିଲି, ନିଜେ ଚା' ବାଣ୍ଟୁଥିଲି । କେବଳ ଏତିକିନୁହେଁ, ପରେପରେ ମୋର ସଦସ୍ୟତା ସମାପ୍ତ ହେବା ପର୍ଯ୍ୟନ୍ତ ମିହିରବାବୁଙ୍କ ଉପସ୍ଥିତିରେ କେବେ ସଭାମଞ୍ଚକୁ କେବେ ଯାଇନାହିଁ । ପରେ, ମୋ ସହ ଆମ ଆବାହକ ଗୌରହରିବାବୁ ମଧ୍ୟ ମିହିର ସାହୁଙ୍କ ଉପସ୍ଥିତି ଆଉ କୌଣସିସ୍ଥାନରେ ଚାହିଁ ନଥିଲେ । ତେଣୁ ପରେପରେ ଏକାଡେମୀ

କର୍ତ୍ତୃପକ୍ଷ ତାଙ୍କୁ ଆଉ କୌଣସି କାର୍ଯ୍ୟକ୍ରମ ପରିଚାଳନାପାଇଁ ଓଡ଼ିଶା ପଠାଇ ନଥିଲେ । ତେବେ ସୁଖର କଥା, ସୋନପୁର ଓ ବଲାଙ୍ଗିରଠାରେ ନିର୍ବିଘ୍ନରେ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ମୋ ସ୍ଥାନରେ ସନ୍ତୋଷବାବୁ ଅତିଥି ପରିଚୟ ପ୍ରଦାନ କରିଥିଲେ । ମଣିଷର ହୀନମନ୍ୟତା ତାକୁ ଖୁବ୍ ତଳକୁ ଘେନିଯାଇଥାଏ, ମିହିରବାବୁଙ୍କ ଭଳି ଲୋକମାନଙ୍କ କୁଣ୍ଠିତ ତଥା ହୀନମନ୍ୟ ସ୍ୱଭାବ ଯୋଗୁଁ ଏକାଡେମୀର ପରିଚାଳନାରେ ଓଡ଼ିଶାର କବିଲେଖକମାନେ ନିଜକୁ ଅପମାନିତ ବୋଧକରୁଥିଲେ । ମୁଁ ଆଶ୍ୱସ୍ତ ହେଲି ତଥା ମୋ ସହ ଆମ ଉପଦେଷ୍ଟା ମଣ୍ଡଳୀର ସମସ୍ତ ସଦସ୍ୟମାନେ ମଧ୍ୟ ଆଶ୍ୱସ୍ତ ହୋଇଥିଲେ, ଯେତେବେଳେ ଜଣାପଡିଥିଲା ଯେ ଏକାଡେମୀ କର୍ତ୍ତୃପକ୍ଷ ତାଙ୍କୁ ଆଉ ଓଡ଼ିଶା ପଠାଉନାହାନ୍ତି । ତାଙ୍କପରେ ପାଲ୍‌ବାବୁ, ଅନ୍ୟଜଣେ ବରିଷ୍ଠ ଅଧିକାରୀ ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ଆସିଥିଲେ ଏବଂ ପ୍ରତ୍ୟେକ କାର୍ଯ୍ୟକ୍ରମ ପାଇଁ ତାଙ୍କ ହାର୍ଦ୍ଦିକ ସହଯୋଗ ସମସ୍ତଙ୍କୁ ମିଳିଥିଲା ।

'ଲୋକ' ନାମରେ ମୋର ପ୍ରସ୍ତାବ ଅନୁଯାୟୀ ଭୁବନେଶ୍ୱରଠାରେ ନେସନାଲ୍ ବୁକ୍ ଟ୍ରଷ୍ଟର ଏକ ପ୍ରେକ୍ଷାଳୟରେ ଏକ କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା, ଯେଉଁଥିରେ ମୁଁ ମୋ'ସହ ବିଶିଷ୍ଟ ସଂଚାରବାହାକ ବରଗଡ ତାଲ୍‌ମେଣ୍ଡା ଗ୍ରାମର ଅଲେଖ ସାହୁ ଏବଂ ତାଙ୍କ ଅନ୍ୟଜଣେ ସାଥିଙ୍କୁ ସାଥିରେନେଇ ଭୁବନେଶ୍ୱର ଯାଇଥିଲି । ସେଠାରେ ହୋଟେଲ୍ ଅଶୋକାରେ ଆମ ରହଣି ବ୍ୟବସ୍ଥା ହୋଇଥିଲା । ଏଥିପାଇଁ କଲିକତାରୁ ପାଲ୍‌ବାବୁ ଆସିଥିଲେ କାର୍ଯ୍ୟକ୍ରମ ପରିଚାଳନା ପାଇଁ । ଦିନବେଳା ବିଶ୍ରାମନେଇ ରାତିରେ ଆମେସମସ୍ତେ ଗାଡିରେ ପ୍ରେକ୍ଷାଳୟ ଅଭିମୁଖେ ଯାଇଥିଲୁ । ସେଠାରେ ଭୁବନେଶ୍ୱରର ବିଜ୍ଞଲୋକମାନଙ୍କ ଗହଣରେ କାର୍ଯ୍ୟକ୍ରମଟି ଅନୁଷ୍ଠିତ ହେଉଥାଏ । ଆମ କାର୍ଯ୍ୟକ୍ରମ ପୂର୍ବରୁ ସେଇ ପ୍ରେକ୍ଷାଳୟରେ ମିଟ୍ ଦି ଅଥର୍ କାର୍ଯ୍ୟକ୍ରମରେ କବି ନୃସିଂହ ଷଡଙ୍ଗୀ ତାଙ୍କ ସ୍ୱରଚିତ କବିତାପାଠକରି ଦର୍ଶକମାନଙ୍କୁ ମୋହିତ କରୁଥାନ୍ତି । କ୍ଷେତ୍ରବାସୀ ନାୟକ, ସେତେବେଳକୁ ଦୈନିକ ସମ୍ବାଦରେ ସହସମ୍ପାଦକ ଭାବରେ ଯୋଗ ଦେଇଥିବାରୁ ସେ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଆମ କାର୍ଯ୍ୟକ୍ରମ ଆରମ୍ଭରେ ଆବାହକ ଡ. ଗୌରହରି ଦାସ କାର୍ଯ୍ୟକ୍ରମ ସମ୍ପର୍କରେ ସମ୍ୟକ ସୂଚନା ପ୍ରଦାନକରି ମୋତେ ସଂଚାର ଲୋକକଳା ବିଷୟରେ ପ୍ରବନ୍ଧଟି ପାଠ କରିବାକୁ ଅନୁରୋଧ କଲେ । ମୁଁ ପୂର୍ବପ୍ରସ୍ତୁତ ପ୍ରବନ୍ଧଟି ପାଠକରିଥିଲି ଏବଂ ଶେଷରେ ଅଲେଖ ସାହୁ ଏବଂ ତାଙ୍କ ସଥୀ ସଂଚାର ନୃତ୍ୟ ପରିବେଷଣ କରି ଉପସ୍ଥିତ ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରିଥିଲେ । ପାଲା ଓ ସଂଚାର ମଧ୍ୟରେ ଥିବା ପାର୍ଥକ୍ୟକୁ ଦର୍ଶକେ ଉଚିତ୍ ଭାବରେ ଅନୁଭବ

କରିଥିଲେ । ଆବାହକ ଗୌରହରିବାବୁ ମଧ୍ୟ ସଂଚାରକଳାକୁ ଭୂରିଭୂରି ପ୍ରଶଂସା କରିଥିଲେ ଏବଂ ଲେଖାଟି ମୋ ପାଖରୁ ନେଇ ସେହିବର୍ଷ ଦଶହରା ସଂଖ୍ୟା ବାର୍ଷିକ ସମ୍ବାଦରେ ପ୍ରକାଶିତ କରିଥିଲେ ।

ସାହିତ୍ୟ ଏକାଡେମୀର ପାଞ୍ଚବର୍ଷର କାର୍ଯ୍ୟକାଳର ସଦସ୍ୟତା ମୋତେ ଅନେକ ଦୃଷ୍ଟିରୁ ଆତ୍ମସନ୍ତୋଷ ଦେଇ ପାରିଥିଲା । ପ୍ରଥମତଃ, ଏହି ପାଞ୍ଚବର୍ଷରେ ବ୍ୟକ୍ତିଗତଭାବରେ ମୋର ମନୋନୀତ ତିନିଜଣ ଯୁବଲେଖକ ତିନିବର୍ଷ ଲାଗଲାଗ ଯୁବପୁରସ୍କାର ପାଇଥିଲେ, ଯେଉଁମାନେ ପଶ୍ଚିମଓଡ଼ିଶାର ଅଧିବାସୀ । ସେମାନେ ହେଲେ ବଲାଙ୍ଗିରର କ୍ଷେତ୍ରବାସୀ ନାୟକ, ବୌଦ ନୂର୍ପା ଗାମର ଯୁବକବି ନରେନ୍ଦ୍ର ଭୋଇ ଏବଂ ସେହି ବୌଦ ବାହିର ସୁଜୀତ ପଣ୍ଡା । କହିବା ବାହୁଲ୍ୟ ଯେ, କ୍ଷେତ୍ରବାସୀ ନାୟକଙ୍କ ପୁରସ୍କାର ପାଇବା ପୂର୍ବବର୍ଷ ସୁନ୍ଦରଗଡ଼ର ଗାଳ୍ପିକା ସୃଷ୍ଟିଶ୍ରୀ ନାୟକ ମଧ୍ୟ ଏହି ପୁରସ୍କାର ପାଇଥିଲେ । ତେଣୁ, ପଶ୍ଚିମଓଡ଼ିଶାର ଚାରିଜଣ ଯୁବଲେଖକ ଏହି ମର୍ଯ୍ୟାଦାଜନକ ପୁରସ୍କାର ପାଇବା ଆମପାଇଁ ଗର୍ବ ଓ ଗୌରବର ବିଷୟ । ଏଥିସହ ଏହି ପାଞ୍ଚବର୍ଷ ଭିତରେ ପ୍ରଫେସର ଗୋପାଳକୃଷ୍ଣ ରଥ ତାଙ୍କ 'ବିପୁଳ ଦିଗନ୍ତ' କବିତା ସଙ୍କଳନ ପାଇଁ ଏକାଡେମୀର ମୁଖ୍ୟପୁରସ୍କାର ପାଇବା ମଧ୍ୟ ଆମପାଇଁ ଗର୍ବର କଥା, ପରେପରେ ଗାଳ୍ପିକା ଗାୟତ୍ରୀ ସରାଫ୍ ମଧ୍ୟ ଏହି ପୁରସ୍କାର ଅଧିକାରିଣୀ ହେବା କମ୍ ଗୌରବର କଥା ନୁହେଁ । ପଶ୍ଚିମ ଓଡ଼ିଶାରେ କେବଳ ଆଞ୍ଚଳିକ ଭାଷାରେ ନୁହେଁ, ଓଡ଼ିଆ ଭାଷାର ମଧ୍ୟ ଦିଗ୍‌ଗଜ ଲେଖକଙ୍କ ସଂଖ୍ୟା କିଛି କମ୍ ନୁହେଁ, ଏହା ଦ୍ୱାରା ପ୍ରମାଣିତ ହେଉଛି । ନବଦ୍ୟୋତ ପ୍ରକ୍ରିୟାରେ ଯୁବକବି ଡୁଙ୍ଗୁରୀପାଲିର ସୁଜିତ୍ ଶତପଥୀଙ୍କ ଏକ କବିତା ସଙ୍କଳନ 'ଇଚ୍ଛାଭାଟି' ପୁସ୍ତକଟି ମଧ୍ୟ ମୋ ଉଦ୍ୟମରେ ଏକାଡେମୀ ପକ୍ଷରୁ ପ୍ରକାଶିତ ହୋଇଥିଲା । ଆହୁରି ଅନେକ ପ୍ରତିଭା ଅଛନ୍ତି, ଯେଉଁମାନେ ଏଭଳି ପୁରସ୍କାର ପାଇଁ ଯୋଗ୍ୟ, ତେବେ ଏକାଡେମୀର ଅବହେଳା ଯୋଗୁଁ ସେମାନେ ପୁରସ୍କାରରୁ ବଞ୍ଚିତ ହେଉଛନ୍ତି, ତଥାପି ଲେଖନୀ ଜାରିରଖିଛନ୍ତି । ବାଲ୍‌ସାହିତ୍ୟ ପୁରସ୍କାର ପାଇଁ ଟିଟିଲାଗଡର ବରିଷ୍ଠ ଶିଶୁସାହିତ୍ୟିକ ଯୁଗଲକିଶୋର ଷଡଙ୍ଗୀଙ୍କ ନାମ ପାଞ୍ଚବର୍ଷ ମଧ୍ୟରେ ଚାରିଥର ପଠାଇଥିଲେ ହେଁ ତାଙ୍କୁ ଏ ପୁରସ୍କାରୁ ବଞ୍ଚିତ କରାଗଲା, ଏହା ମୋ ପାଇଁ ଅବଶୋଷର ବିଷୟ । ଏଥିସହିତ ବନ୍ଧୁ ପ୍ରଦୀପ ରାୟଙ୍କ ନାମ ଅନୁବାଦ ପୁରସ୍କାରପାଇଁ ତିନିଥର ପଠାଇଥିଲି, ତାହା ମଧ୍ୟ ସମ୍ଭବ ହୋଇ ନଥିଲା ।

ଆମ ପରେ ନୂତନ ଭାବରେ ବିଜୟାନନ୍ଦ ସିଂଙ୍କ ଆବାହକତ୍ୱରେ ଗଠିତ ନୂତନ ଉପଦେଷ୍ଟା ମଣ୍ଡଳୀର କାର୍ଯ୍ୟକାଳର ପ୍ରଥମ ବର୍ଷ ହିଁ ଡ. ପ୍ରଫୁଲ୍ଲ ତ୍ରିପାଠୀ ଏବଂ ପଦ୍ମଶ୍ରୀ

ହଳାଧର ନାଗଙ୍କୁ ଭାଷା ସମ୍ମାନରେ ପୁରସ୍କୃତ କରିବା ଆମ ଭାଷା ପ୍ରତି ଏକାଡେମୀର ସ୍ୱୀକୃତିମୂଳକ ମନୋଭାବ ଅତୀବ ପ୍ରଶଂସନୀୟ ଅଟେ । ଅଚିରେ ସମ୍ବଲପୁରୀ ଭାଷାକୁ ସମ୍ବିଧାନର ଅଷ୍ଟମ ସୂଚୀରେ ସ୍ଥାନିତ କରିବାର ଏକ ସମ୍ଭାବନା ସୃଷ୍ଟି ହୋଇଛି, ଯାହା ଫଳବତୀହେଲେ ଏହାର କ୍ଷୀପ୍ର ବିକାଶ ସମ୍ଭବ ହୋଇପାରିବ ବୋଲି ମୋତ ଦୃଢ଼ଧାରଣା ।

ଆଞ୍ଚଳିକ ସ୍ୱାଭିମାନ ନେଇ ସାହିତ୍ୟ ଏକାଡେମୀକୁ ପ୍ରବେଶ କରିଥିଲି, ମୋ ଭଳି ଅନ୍ୟସଦସ୍ୟମାନେ ମଧ୍ୟ ଏଭଳି ମନୋଭାବ ନେଇ ଉପଦେଷ୍ଟାମଣ୍ଡଳୀ ବୈଠକରେ ପ୍ରସ୍ତାବମାନ ଆଗତ କରିଥାନ୍ତି । ତେଣୁ, ଏହି ଦୃଷ୍ଟିରେ, ଆମ ଅଞ୍ଚଳରେ ସାହିତ୍ୟସଭା କରିବାର ମନୋଭାବ ଏବଂ ପଦକ୍ଷେପ, ସଫଳ ହୋଇଛିବୋଲି ମୁଁ ମନେକରେ, ପଶ୍ଚିମଓଡ଼ିଶାରେ ଏକାଡେମୀର କାର୍ଯ୍ୟକଳାପକୁ ପରିଚିତ କରାଇବା, ଆମ ଅଞ୍ଚଳର କବିଲେଖକମାନଙ୍କୁ ଏକାଡେମୀର ବିଭିନ୍ନ କାର୍ଯ୍ୟକ୍ରମ ସହ ଯୋଡ଼ିବା କିଛିମାତ୍ରାରେ ସମର୍ଥ ହୋଇଥିଲା । ସମ୍ବଲପୁରୀ ଏକ ଅଣସ୍ୱୀକୃତ ଭାଷା, ତେଣୁ ଏ ବାବଦରେ ଅନେକ କିଛି କରିବାର ଆଗ୍ରହ ଥିଲେ ହେଁ ସମ୍ଭବ ହୋଇ ନଥିଲା, ଯାହା ମୋ ପାଇଁ କ୍ଷୋଭର ବିଷୟ ।

ଏକାଡେମୀର ପୃଷ୍ଠପୋଷକତାରେ ଆୟୋଜିତ କାର୍ଯ୍ୟକ୍ରମଗୁଡ଼ିକର ସଫଳତା ପାଇଁ ମୁଁ ଯେଭଳି ଦାୟୀ ନୁହେଁ, ବିଫଳତାର ଶ୍ରେୟ ମଧ୍ୟ ମୋ ନାମରେ ଯିବ ନାହିଁ । କାରଣ, ଏହା ମୋର କୃତିତ୍ୱ ତାଲିକା ନୁହେଁ, ବରଂ କାର୍ଯ୍ୟକ୍ରମ ହେବାର ତାଥ୍ୟକ ବିବରଣୀ, ଯାହା ମୋ ସଦସ୍ୟତା କାଳମଧ୍ୟରେ ଘଟିଥିଲା ।

ଏକାଡେମୀ ଭଳି ପୂର୍ବାଞ୍ଚଳ ସାଂସ୍କୃତିକ ପରିଷଦର ସଦସ୍ୟତା ମଧ୍ୟ ମୋ ପାଇଁ ଏକ ଅଚାନକ ଘଟଣା । ଅନେକ କିଛି ସ୍ୱପ୍ନ ଧରି ଇଜେଡ୍‌ସିସି କାର୍ଯ୍ୟାଳୟକୁ ପ୍ରବେଶ କରିଥିଲେ ହେଁ, ଏହାର କାର୍ଯ୍ୟ କରିବାର ଧାରାଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି ଯେତେ, ମର୍ମାହତ ହେଲି ସେତେ । ବହୁତ ବିଶିଷ୍ଟ ଅନୁଷ୍ଠାନଗୁଡ଼ିକର କାର୍ଯ୍ୟାବଳୀ ଭିତରେ ଥିବା ଗୁଢ଼ରହସ୍ୟ ଉଦ୍‌ଘାଟନ କରିବା ମୋପାଇଁ କାଠିକର ପାଠ ହୋଇତିଥିଲା । ସ୍ୱଷ୍ଟମତ ରଖୁଥିବା ବ୍ୟକ୍ତିପାଇଁ ଏଭଳି ଅନୁଷ୍ଠାନ କୌଣସି ଗୁରୁତ୍ୱ ଦିଏ ନାହିଁ, ମୋର ସଦସ୍ୟତା ତାର ଜ୍ୱଳନ୍ତ ଉଦାହରଣ ।



ପନ୍ଦର, ଷୋହଳ, ସତର, ଏଭଳି ତିନିବର୍ଷ ପାଇଁ ମୋତେ ପୂର୍ବାଞ୍ଚଳ ସଂସ୍କୃତି ପରିଷଦର କାର୍ଯ୍ୟକାରୀ କମିଟିର ସଦସ୍ୟ ଭାବେ ମନୋନୀତ କରାଯାଇଥିଲା । ମୋର ଏହି ସଦସ୍ୟତା ବାବଦରେ ମଧ୍ୟ ଆଗରୁ କୌଣସି ଧାରଣା ନଥିଲା, ପରେ ଜାଣିଲି, ରାଜଧାନୀ ସ୍ତରରେ ବା ସଚିବ ସ୍ତରରେ ଏହି ନିଷ୍ପତ୍ତି ନିଆଯାଇଥିଲା । ମୋ ସହ ଓଡ଼ିଶାରୁ ମନୋଜ ପଟ୍ଟନାୟକ, ପ୍ରଦୀପ ମିଶ୍ର ଏବଂ ଭୁବନେଶ୍ୱରର ଜଣେ ଓଡ଼ିଶୀ ନୃତ୍ୟଶିକ୍ଷୀ ମୀରା ଦାସ ଏହି କମିଟିକୁ ମନୋନୀତ ହୋଇଥିଲେ । ସଂସ୍କୃତି ପରିଷଦର ମୁଖ୍ୟ କାର୍ଯ୍ୟାଳୟ କଲିକତାର ସଲ୍ଟଲେକ୍ ଅଞ୍ଚଳରେ । କାର୍ଯ୍ୟକାରୀ କମିଟିର ସଦସ୍ୟଭାବରେ ପ୍ରଥମବୈଠକରେ ଯୋଗ ଦେବାପାଇଁ ଏକାଏକା ବାହାରିଲି ସମଲେଶ୍ୱରୀ ଏକ୍ସପ୍ରେସରେ । ଆଗରୁ କଲିକତା ଅଫିସର ଜଣେ କର୍ମଚାରୀ ମୋର ହାଓଡା ପହଞ୍ଚିବାର ସମୟ ପଚାରିଥିଲେ ଷ୍ଟେସନରେ ମୋତେ ପାଛୋଟି ନେବାପାଇଁ । ତାଙ୍କ ନାମ ସମ୍ଭୁନାଥ, ଜଣେ ଓଡିଆ ଲୋକ, ଖାସ୍ ମୋତେ ନେଇଗଲେ କଲିକତାର ସଲ୍ଟଲେକ୍ ଅଞ୍ଚଳର ଏକ ପଞ୍ଚତାରକା ହୋଟେଲ ପର୍ଯ୍ୟନ୍ତ, ଯେଉଁଠି ମୋର ରହିବା ବ୍ୟବସ୍ଥା ହୋଇଥିଲା । ପୂର୍ବସୂଚିତ କାର୍ଯ୍ୟକ୍ରମ ଅନୁସାରେ ଟ୍ରେନ ହାଓଡାରେ ପହଞ୍ଚିଲାକ୍ଷଣି ସମ୍ଭୁନାଥବାବୁ ଫୋନ୍‌ରେ ମୋର ବଗିନମ୍ବର୍ ପଚାରି ଠିକ୍ ତାର ଦ୍ୱାରପାଖରେ ମୋତେ ଅପେକ୍ଷା କରିଥିଲେ । ପ୍ରଥମଥର ଯାଉଥିବାରୁ କାଳେ କିଛି ଅସୁବିଧା ହେବ, ସେଇଥିପାଇଁ ବୋଧହୁଏ ଏଭଳି ସୁନ୍ଦରବ୍ୟବସ୍ଥା ହୋଇଥିଲା । ତେବେ ମୋର ଧାରଣା ସମ୍ପୂର୍ଣ୍ଣ ଭ୍ରମାତ୍ମକ ଥିଲା, ବାକି ଦୁଇବର୍ଷ ମଧ୍ୟ ପାଇଁ ସେଇ ସମ୍ଭୁନାଥବାବୁଙ୍କୁ ପାଛୋଟି ନେବାର ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ତେବେ ପ୍ରଥମବର୍ଷରେ ସେ ମୋତେ ମୋ'ପାଇଁ ଉଦ୍ଦିଷ୍ଟଗାଡ଼ିରେ ବସାଇ ସଲ୍ଟଲେକ୍ ମାର୍ଗକୁ ନେଇଗଲେ । ବହୁଥର କଲିକତା ବିଭିନ୍ନକାର୍ଯ୍ୟରେ ଯାଇଥିଲେ ମଧ୍ୟ ଏଇ ସଲ୍ଟଲେକ୍ ଏରିଆ ଦେଖି ନଥିଲି । ହାଓଡାରୁ ଏହି ଅଞ୍ଚଳ ପ୍ରାୟ ଷାଠିଏ, ସତୁରୀ କିଲୋମିଟର ହେବ । ଏହି ଅଞ୍ଚଳଟି ବେଶ୍ ପରିଚ୍ଛନ୍ନ, ପୁରାତନ କଲିକତା ଅପେକ୍ଷା । ଖୁବ୍ ବଡ଼ବଡ଼ ଅଟ୍ଟାଳିକାରେ ପରିପୂର୍ଣ୍ଣ, ରାସ୍ତାଘାଟ ସବୁଯାକ ସୁନ୍ଦରଭାବରେ ନିର୍ମିତ । ଏଠାରେ ବିଭିନ୍ନଦେଶର ଆଞ୍ଚଳିକ କାର୍ଯ୍ୟାଳୟ ମଧ୍ୟ ରହିଛି, ବିଭିନ୍ନ ରାଜ୍ୟର ଅତିଥି ଭବନଗୁଡ଼ିକ ମଧ୍ୟ ଅଞ୍ଚଳର ଶୋଭାବର୍ଦ୍ଧନ କରୁଛି । ସମ୍ଭୁନାଥବାବୁଙ୍କୁ ଅଫିସ୍ ତରଫରୁ ଯେଉଁ ହୋଟେଲରେ ମୋର ରହଣି ବାବଦରେ ସୂଚନା ଦିଆଯାଇଥିଲା, ସେ ସେହି ନିର୍ଦ୍ଦିଷ୍ଟନାମର ହୋଟେଲ୍ ସମ୍ମୁଖରେ ଗାଡ଼ିନେଇ ରଖିଲେ । ମୁଁ ସେ ହୋଟେଲର ପରିସରକୁ ଅନାଇଲି, ମୋ ମୁଣ୍ଡ ଯେତେ ଉପରକୁ ଟେକିଲେ ମଧ୍ୟ ଅଟ୍ଟାଳିକାଟିର

ଉପରମହଲାକୁ ଦେଖି ହେଉ ନଥିଲା । ମୁଁ ମନେମନେ ବିପଦ ଗଣିଲି, ମୋ'ପାଇଁ ଏତେବଡ଼ ହୋଟେଲ୍ ! ! ହଠାତ୍ ସେଇ ହୋଟେଲ୍‌ର ଜଗୁଆଳି ଆସି ଏମିତି ସେଲ୍ୟୁଟ୍ ମାରିଲା, ମୁଁ ହତଚକିତ ହୋଇଗଲି, ସେ ମୋ ବେଗ୍ ନେଇ ଭିତରକୁ ଯାଇ ଏମିତି ବାକ୍ସରେ ପକାଇଦେଲା, ଯାହା ସିଧା ମୋ'ପାଇଁ ଉଦ୍ଦିଷ୍ଟ କୋଠରୀପର୍ଯ୍ୟନ୍ତ ପହଞ୍ଚିଗଲା । ମୁଁ ସମ୍ଭୁନାଥବାବୁଙ୍କୁ ପଚାରିଲି ସନ୍ଦେହରେ, ଏଇଟା ବୋଧହୁଏ ମୋ ରହିବା ହୋଟେଲ୍ ହୋଇ ନଥିବ, ଆପଣ ପୁଣିଥରେ ଫୋନ୍ କରି ପଚାରନ୍ତୁ, ପ୍ରକୃତ ଠିକଣାଟା ଜାଣନ୍ତୁ । ମୋ କଥା ଶୁଣି ସେ ପୁଣିଥରେ ଫୋନ୍‌କଲେ, ପ୍ରକୃତରେ ମୋର ସନ୍ଦେହ ଠିକ୍ ଥିଲା । ସେ ମୋ ବେଗ୍ ସଂଗ୍ରହକରି ଗାଡ଼ିରେରଖି ସେଠାରୁ ଆଉ ପାଞ୍ଚକିଲୋମିଟର ଦୂର, ସେହି ନାମରେ ଅନ୍ୟଏକ ହୋଟେଲ୍‌କୁ ନେଇଗଲେ । ଏଇ ହୋଟେଲ୍‌ଟି ଅପେକ୍ଷାକୃତ ଛୋଟ ଏବଂ ଚାରିମହଲା ବିଶିଷ୍ଟ । ମୁଁ ନିଜକୁ ଆଶ୍ୱସ୍ତ ଅନୁଭବ କଲି, ପ୍ରଥମେ ଯାଇଥିବା ହୋଟେଲ୍‌ର ପ୍ରକାଣ୍ଡ ଅଟ୍ଟାଳିକା ଦେଖି, ମୁଁ ବିସ୍ମିତ ହୋଇପଡିଥିଲି, ହଠାତ୍ ନିଜକୁ କୌଣସି ଦେଶର ରାଷ୍ଟ୍ରଦୂତ ଭଳିଆ ଅନୁଭବରେ ଭ୍ରମରେ ପଡିଯାଇଥିଲି । ସେଠାରେ ତ ମୁଁ ହଜିଯାଇଥାନ୍ତି, ମୋ ଭାବନା ସମ୍ଭୁନାଥବାବୁଙ୍କୁ କହିବାରୁ ସେ ହସିହସି ବେଦମ୍ ହୋଇଯାଇଥିଲେ ।

ସେ ହୋଟେଲ୍‌ର ନାମ ରୟାଲ୍‌ଷ୍ଟାର୍ ନା କଣ, ସେଠାରୁ ଆଗରୁ ଆସି ମନୋଜ୍ ପଟ୍ଟନାୟକ, ପ୍ରଦୀପ ମିଶ୍ର ରହିସାରିଲେଣି । ତାଙ୍କ ସହ ସାକ୍ଷାତ୍ ହେଲାପରେ ମୁଁ ମଧ୍ୟ ମୋର ବୈଠକରେ ଉପସ୍ଥାପନ କରିବାକୁ ଥିବା ପ୍ରସ୍ତାବ ସମ୍ପର୍କରେ ଗମ୍ଭୀର ହୋଇଗଲି । ନିତ୍ୟକର୍ମସାରି ବୈଠକକୁ ଯିବାପାଇଁ ଗାଡ଼ିଆସି ପହଞ୍ଚିଗଲା, ସେଠାରୁ ଇ.ଜେଡ୍.ସି.ସି. କାର୍ଯ୍ୟାଳୟର ଦୂରତା ପ୍ରାୟ ପାଞ୍ଚସାତ କିଲୋମିଟର ହେବ । ସେଠାରେ ପହଞ୍ଚି କାର୍ଯ୍ୟାଳୟର ପରିସର ଏବଂ ସୌନ୍ଦର୍ଯ୍ୟ ଦେଖି ଭଲଲାଗିଲା । ଆମ ସହିତ ଧିରେଧିରେ ମଣିପୁର, ବିହାର, ଆସାମ, ଝାରଖଣ୍ଡ, ପଶ୍ଚିମବଙ୍ଗ, ତ୍ରିପୁରା ଆଦି ରାଜ୍ୟର ପ୍ରତିନିଧିମାନେ ଆସି ପହଞ୍ଚିଗଲେ । ଆମେ ପରିଷଦର ନିର୍ଦ୍ଦେଶକ ଓମପ୍ରକାଶ ଭାରତୀଙ୍କ ସହ ପରିଚିତ ହେଲୁ, ଓଡ଼ିଶା ଦାୟିତ୍ୱର କାର୍ଯ୍ୟକ୍ରମ ଅଧିକାରୀ ତାପସ ସାମନ୍ତରାୟଙ୍କ ସହ ପରିଚିତ ହେଲୁ । ସାମନ୍ତରାୟଙ୍କ ଘର ଖୋର୍ଦ୍ଧା ଅଞ୍ଚଳରେ । ଭାରି ସହଯୋଗୀ ମନୋଭାବର ଲୋକ ଭଳିଆ ଜଣାଯାଉଥିଲେ । ପରେପରେ ବୈଠକ ଆରମ୍ଭହେଲା ସୁନ୍ଦରଭାବରେ ସଜ୍ଜିତ ବୈଠକ ପ୍ରକୋଷ୍ଠରେ । ଭାରତୀବାବୁଙ୍କ ଅଧ୍ୟକ୍ଷତାରେ ବୈଠକ ଆରମ୍ଭହେଲା । ନୂତନ ଭାବରେ ଗଠିତ କାର୍ଯ୍ୟକାରୀ କମିଟିର ପ୍ରଥମ ବୈଠକ ହୋଇଥିବା ଯୋଗୁଁ ଭାରତୀବାବୁ ସମସ୍ତ ନୂତନ ସଦସ୍ୟମାନଙ୍କୁ

ସ୍ୱାଗତ କରିଥିଲେ ଉପାୟନଦ୍ୱାରା ଏବଂ ବିଭିନ୍ନ ରାଜ୍ୟପାଇଁ ଦାୟିତ୍ୱରେ ଥିବା କାର୍ଯ୍ୟକ୍ରମ ଅଧିକାରୀମାନଙ୍କ ସହ ପରିଚିତ କରାଇଦେଲେ । ପରେ ସଦସ୍ୟମାନେ ବିଭିନ୍ନ ପ୍ରସ୍ତାବମାନ ଆଗତ କରିଥିଲେ । ମନୋଜବାବୁ, ପ୍ରଦୀପବାବୁ, ଭୁବନେଶ୍ୱରପାଇଁ ବିଭିନ୍ନ ପ୍ରସ୍ତାବ ବାଢ଼ିଲେ, ମୁଁ ସମ୍ବଲପୁରରେ ନାଟକୋତ୍ସବ, ନାଟ୍ୟ ଆଲୋଚନାଚକ୍ର, ବଲାଙ୍ଗିରରେ ଲୋକନୃତ୍ୟ ସମ୍ମେଳନ, ରାଉରକେଲାରେ ଆଦିବିମ୍ବ ଆଦି ବିଭିନ୍ନ ପ୍ରସ୍ତାବ ଆଗତ କରିଥିଲି । ନାଟକୋତ୍ସବ ପାଇଁ ମନୋଜବାବୁ ପୁରୀକୁ ଅଧିକ ଗୁରୁତ୍ୱ ଦେଇଥିଲେ । ଏହି ବୈଠକପରେ ଆସାମରୁ ଆସିଥିବା ସଦସ୍ୟମାନଙ୍କ ସହ କଥାହୋଇ ସମ୍ପର୍କ ସ୍ଥାପନ କରିଥିଲି । କାରଣ, ସମ୍ବଲପୁର ଓ ସମ୍ବଲପୁରୀ ସଂସ୍କୃତିପ୍ରତି ସେମାନଙ୍କ ପରିଚୟ ଥିଲା, ଲେଖକ ଲକ୍ଷ୍ମୀନାଥ ବେଜବରୁଆଙ୍କ ମାଧ୍ୟମରେ ସମ୍ବଲପୁର ବାବଦରେ ସେମାନଙ୍କ କିଛି ଜ୍ଞାନଥିଲା । ମୁଁ ଶୀତଳଷଷ୍ଠୀ ଓ ଲୋକମହୋତ୍ସବରେ ବିହୁ ନାଚର ଲୋକପ୍ରିୟତା ସମ୍ପର୍କରେ ସେମାନଙ୍କୁ ଅବଗତ କରାଇଥିଲି । ସେମାନଙ୍କ ମଧ୍ୟରେ ଆକାଶବାଣୀ ଗୌହାଟିର ଜଣେ ଅବସରପ୍ରାପ୍ତ ସଂଗୀତ ନିର୍ଦ୍ଦେଶକ ଥିଲେ ରମେନ୍ ଚୌଧୁରୀ ନାମରେ । ସମ୍ବଲପୁରୀ ଲୋକଗୀତ ସହ ତାଙ୍କର ପରିଚିତ ଥିଲା । ବହୁ ସମ୍ଭାବନା ଓ କାର୍ଯ୍ୟକ୍ରମର କାର୍ଯ୍ୟକାରିତାର ଆଶା ନେଇ ମୁଁ ସେଠାରୁ ସମ୍ବଲପୁର ଫେରିଥିଲି । ଆସିଲା ପରେ ସେ ସମୟକୁ ଅପେକ୍ଷାକଲି, ଯେତେବେଳେ ମୋ ନିକଟକୁ ସମ୍ବାଦ ଆସିବ ପ୍ରସ୍ତାବଗୁଡ଼ିକର ଆୟୋଜନ ସମ୍ପର୍କରେ । ବର୍ଷ ବିତିଗଲା, ଓଡ଼ିଶାରେ କେଉଁକେଉଁଠି କାର୍ଯ୍ୟକ୍ରମ ହେଲା, କିଛି ଖବର ପାଇ ପାରିନଥିଲି । ହେଲା ନା ନାହିଁ, ତାହା ମଧ୍ୟ ଜାଣି ପାରିଲିନାହିଁ । ପରବର୍ତ୍ତୀ ବୈଠକପାଇଁ ଚିଠି ଆସିଗଲା, ଦ୍ୱିତୀୟ ବୈଠକପାଇଁ ପୁଣି ଗଲି, ଏଥର ପୁଣି ସମ୍ଭୁନାଥ ବାବୁ ଆସିଲେ, ଅପେକ୍ଷାକୃତ ଆଉ ଟିକିଏ ଛୋଟ ବିଶ୍ରାମ ଗୃହରେ ରହଣି, ବୈଠକ ଆରମ୍ଭ, ପୁଣି ପ୍ରସ୍ତାବ ଆଗତ ଓ ଗୃହିତ ହେବା ପ୍ରକ୍ରିୟାରେ ବୈଠକ ଶେଷ, ସେ ବର୍ଷ କିନ୍ତୁ ସମ୍ବଲପୁର ପାଇଁ ଜୋର୍ କରିଥିବାରୁ ସମଗ୍ର ପଶ୍ଚିମଓଡ଼ିଶା ପାଇଁ କେବଳ ଗୋଟାଏ କାର୍ଯ୍ୟକ୍ରମ, ଆଦିବାସୀ ନୃତ୍ୟ ସମ୍ମେଳନ 'ଆଦିବିମ୍ବ' କାର୍ଯ୍ୟକାରୀ ହୋଇଥିଲା ସମ୍ବଲପୁର କଳାପରିଷଦର ମଣ୍ଡପରେ ।

ଏହି ଗୋଟିଏ କାର୍ଯ୍ୟକ୍ରମ ପାଇଁ ଦୀର୍ଘ ତିନିବର୍ଷର ମେହେନତ୍ । ଓମ୍ପ୍ରକାଶ ଭାରତୀ ଏବଂ ତାପସ ସାମନ୍ତରାୟ ନିଜେ ଆସି ଏହି କାର୍ଯ୍ୟକ୍ରମ ପରିଚାଳନା କରିଥିଲେ । ମୋର ଭଗ୍ନସ୍ୱାସ୍ଥ୍ୟ ଯୋଗୁଁ ମୁଁ ଏ ଭିତରକୁ ବେଶି ଯାଇପାରି ନଥିଲି । ତଥାପି, ସମସ୍ତଙ୍କ ସହଯୋଗ ପାଇଁ କଳାପରିଷଦର ପ୍ରକୋଷ୍ଠରେ ବୈଠକ ଡାକି

କାର୍ଯ୍ୟକ୍ରମସମ୍ପର୍କରେ ସୂଚନା ପ୍ରଦାନ କରିଥିଲି । କାର୍ଯ୍ୟକ୍ରମର ଉଦ୍‌ଘାଟନୀ ଉତ୍ସବପାଇଁ ସମ୍ବଲପୁର ବିଧାୟିକା ଡ. ରାସେଶ୍ୱରୀ ପାଣିଗ୍ରାହୀଙ୍କୁ ଡକାଯାଇ ନଥିବାରୁ କିଛି ଯୁବକ ଅସନ୍ତୋଷ ବ୍ୟକ୍ତ କରିଥିଲେ । ଏ ବାବଦରେ ମୋତେ କିଛିସୂଚନା କର୍ତ୍ତୃପକ୍ଷ ଦେଇ ନଥିଲେ । ସେଥିପାଇଁ ମୁଖ୍ୟଅତିଥି ପ୍ରସନ୍ନ ଆଚାର୍ଯ୍ୟ ମଧ୍ୟ ଆସି ନଥିଲେ । ତେଣୁ ଶେଷରେ ଭାରତୀବାବୁଙ୍କ ସହ ମୁଁ କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରିଥିଲୁ । ସ୍ଥାନୀୟ ସମ୍ବଲପୁରୀ ନୃତ୍ୟ ସଂଗଠନଗୁଡ଼ିକ ମଧ୍ୟରେ ପ୍ରତିଭାଚୟନ ହୋଇଥିଲା । ଏଥିରେ ନ'ଟି ଦଳ ଅଂଶଗ୍ରହଣ କରିଥିଲେ । ପରେ ରାତିରେ ଦେଶର ବିଭିନ୍ନଅଞ୍ଚଳରୁ ଆସିଥିବା ଦଳଗୁଡ଼ିକ ସେମାନଙ୍କ ଆଦିବାସୀନୃତ୍ୟ ପରିବେଷଣ କରିଥିଲେ । ମୋ ଦୃଷ୍ଟିରେ ଏହି କାର୍ଯ୍ୟକ୍ରମ ଅବ୍ୟବସ୍ଥା ଭିତରେ ପରିଚାଳିତ ହୋଇଥିଲା । ଆହୁରି ଅଧିକ ସଫଳ କରାଯାଇପାରିଥାନ୍ତା । ସ୍ଥାନୀୟ ପ୍ରତିନିଧିଙ୍କୁ ଅବହେଳାର ପରିଣାମ ସ୍ୱରୂପ ଏହି କାର୍ଯ୍ୟକ୍ରମଟି ଅବ୍ୟବସ୍ଥିତ ଭାବରେ ଅନୁଷ୍ଠିତ ହୋଇଥିଲା ।

ଦ୍ୱିତୀୟ ବୈଠକରେ ମୁଁ ଏକ ସୁନ୍ଦରପ୍ରସ୍ତାବ ବାଢ଼ିଥିଲି, ସମ୍ବଲପୁରୀ ନୃତ୍ୟ ଏବଂ ବିହୁ ନୃତ୍ୟର ଶିକ୍ଷାକୁ ନେଇ ଏକ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମ ଥିଲା । ଆଦିବିମ୍ବ କାର୍ଯ୍ୟକ୍ରମର ଉଦ୍‌ଘାଟନୀ ଅବସରରେ ଏହା ଘୋଷଣା ମଧ୍ୟ କରାଯାଇଥିଲା । ସମ୍ବଲପୁରୀ ନୃତ୍ୟପାଇଁ ଏଠାରୁ ନିର୍ଦ୍ଦେଶକ ଯାଇ ଆସାମର ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦେଇଥାଆନ୍ତେ, ସେମିତି ଆସାମରୁ ବିହୁନୃତ୍ୟର ନିର୍ଦ୍ଦେଶକ ଆସି ସମ୍ବଲପୁରରେ ଏଠାକାର ଯୁବକଯୁବତୀମାନଙ୍କୁ ବିହୁନୃତ୍ୟ ଶିକ୍ଷା ପ୍ରଦାନ କରିଥାଆନ୍ତେ । ତେବେ, ସମସ୍ତ ପ୍ରକାର ପୂର୍ବପ୍ରସ୍ତୁତି ହେବା ସତ୍ତ୍ୱେ ଏହି କାର୍ଯ୍ୟକ୍ରମଟି ସାକାର ହୋଇପାରି ନଥିଲା । ବ୍ୟକ୍ତିଗତ ଭାବରେ ଏ ଥିଲା ମୋ'ପାଇଁ କ୍ଷୋଭର ବିଷୟ । ଲକ୍ଷଲକ୍ଷ ଟଙ୍କାର ବଜେଟ୍ ଥାଇ ଗୁଡାଏ କାର୍ଯ୍ୟକ୍ରମ ସମ୍ଭବ ନହେବା ପଛରେ କଣ କାରଣ ଥିଲା, ମୁଁ ଜାଣି ପାରିନଥିଲି । ତୃତୀୟ ବୈଠକକୁ ଯିବାପରେ ସେଠାରେ ଶୁଣିଲି, ନିର୍ଦ୍ଦେଶକ ଭାରତୀବାବୁଙ୍କୁ ଦୁର୍ନୀତି ଅଭିଯୋଗରେ କିଛିମାସ ଆଗରୁ ସରକାର ବରଖାସ୍ତ କରିଦେଇଥିଲେ । ତାଙ୍କ ସ୍ଥାନରେ ଉତ୍ତରପୂର୍ବ ସଂସ୍କୃତି ପରିଷଦର ନିର୍ଦ୍ଦେଶକ ଇ. ଜେଡ୍.ସି.ସି. ଦାୟିତ୍ୱରେ ରହିଥିଲେ । ତାଙ୍କ ଅଧ୍ୟକ୍ଷତାରେ ମୋ ସଦସ୍ୟତାର ଶେଷ ବୈଠକ ଅନୁଷ୍ଠିତ ହୋଇଥିଲା । ସଲ୍ଟଲେକ୍ ଷ୍ଟାଡିୟମର ଗେଲେରୀ ତଳେ ଥିବା ଏକ ଅତ୍ୟାଧୁନିକ ହୋଟେଲରେ ଆମ ରହଣି ବ୍ୟବସ୍ଥା ହୋଇଥିଲା । ଏ ସମୟରେ ମନୋଜବାବୁ ଏକ ସିରିୟସ୍ ଅଭିଯୋଗ ଆଣିଥିଲେ ସମ୍ବଲପୁର ବିରୁଦ୍ଧରେ । ଆଦିବିମ୍ବ ଉତ୍ସବସମୟରେ କୁଆଡ଼େ ସମ୍ବଲପୁରରେ ଭାରତୀବାବୁଙ୍କୁ

ଅସଦ୍ ବ୍ୟବହାର କରାଯାଇଥିଲା । ତାପସବାବୁ ମଧ୍ୟ ଏହାକୁ ସମର୍ଥନ କରିଥିଲେ । ତେଣୁ ସେବର୍ଷ ସମ୍ବଲପୁର ପାଇଁ ଆଉ ନୂତନ କାର୍ଯ୍ୟକ୍ରମ ଦିଆଗଲା ନାହିଁ । ମୁଁ ଏହାର ତୀବ୍ର ପ୍ରତିବାଦ କରିଥିଲି । ଭାରତୀବାବୁଙ୍କ ନିଜ ଭୁଲ୍‌ପାଇଁ ସମଗ୍ର ସମ୍ବଲପୁରକୁ ଦୋଷ କାହିଁକି ଦିଆଯିବ, ମନୋଜବାବୁ କି ଅଧିକାରରେ ଏହି ବିଷୟ ଆଲୋଚନା କରିବେ ! ସମ୍ବଲପୁର ଯେତେବେଳେ କୌଣସି ଦାବୀ କରିବ, ଏଭଳି ବିରୋଧର ସମ୍ମୁଖୀନ ହେବାକୁ ପଡେ । ଭାରତୀବାବୁ ଦୁର୍ନୀତି ଅଭିଯୋଗରେ ବରଖାସ୍ତହେବା ଘଟଣାରୁ ମୁଁ ଅନ୍ତତଃ ସ୍ୱଷ୍ଟ ହେଲି, ଏତେସବୁ ପ୍ରସ୍ତାବ କିଭଳି ଓ କାହିଁକି କାର୍ଯ୍ୟକାରୀ ନ ହୋଇ ପଡିରହିଲା । ଯେତିକି ପ୍ରସ୍ତାବ ଥିଲା, ଯାହା କାର୍ଯ୍ୟକାରୀ ହୋଇଥିଲେ, ଆମ ସାଂସ୍କୃତିକ ଚିତ୍ରପଟରେ ଖୁବ୍ ପରିବର୍ତ୍ତନ ଆସିଥାଆନ୍ତା ।

ଏଭଳି ଥିଲା ପୂର୍ବାଞ୍ଚଳ ସାଂସ୍କୃତି ପରିଷଦ ସହ ମୋର ତିନିବର୍ଷିଆ ସମ୍ପର୍କ । ସାହିତ୍ୟ ଏକାଡେମୀରେ ପ୍ରସ୍ତାବ ଦେଲେ, ତାହା ନିଶ୍ଚିତ ଭାବରେ କାର୍ଯ୍ୟକାରୀ ହେଉଥିଲା । ତେବେ ଏଠାରେ ପ୍ରସ୍ତାବ ଦେଲେ, ତାହା ବେଲୁନ୍ ପରି ହାୱାରେ ଉଡିଯାଇ ମୁଚାକୁଚା ହୋଇଯାଏ । ଅତି ଖୋଷାମଦକରି ଲାଗିଲେ, ଶହେ ଟଙ୍କାରେ ଅଧୁଲାଏ ଆସେ ନିଜଅଞ୍ଚଳକୁ । ଏଥିରେ ସାରାଦେଶର ବିଭିନ୍ନ ପରିଷଦର କାର୍ଯ୍ୟକ୍ରମମାନ କିଭଳି କାର୍ଯ୍ୟକାରୀ ହେଉଥିବ, ସହଜେ ଅନୁମେୟ । ଯା'ହେଉ, ବଡ୍ ଅଟ୍ଟାଳିକା ଦେଖେଇ ପରିଷଦ କେବଳ ମୋର ଉପସ୍ଥିତି ନେଇପାରିଥିଲା, ହେଲେ ମୋ'ପଛରେ ଏତେ ଖର୍ଚ୍ଚକରି ମୋ ମନକୁ କିଣିନେଇ ପାରିନଥିଲା ।

ଭବିଷ୍ୟତରେ ଏଭଳି ସଦସ୍ୟତା ଗ୍ରହଣ କରିବାପୂର୍ବରୁ ମୋତେ ଦୁଇଥର ଚିନ୍ତା କରିବାକୁପଡିବ । ଭୁବନେଶ୍ୱର, କଲିକତା, ଦିଲ୍ଲୀ ଉପରେ ନିର୍ଭର ନକରି ନିଜେ ନିଜ ଅଞ୍ଚଳର ସାଂସ୍କୃତିକ ଜାଗରଣ ବଜାୟ ରଖିପାରିଲେ, ଆମେ ବିଶ୍ୱବିଜେତା ହୋଇପାରିବା, ରଙ୍ଗବତୀ ପରି, ପଦ୍ମଶ୍ରୀ ହଳଧର ନାଗଙ୍କ ପରି ସାରା ବିଶ୍ୱର ମନକୁ ଜିଣିପାରିବା । ତେଣୁ ନିଜସଂସ୍କୃତି ବାବଦରେ ନିଜେ ସଚେତନହେବା ହିଁ ଜରୁରୀ, ନିଜ ଅଞ୍ଚଳର କଳାକାରମାନଙ୍କୁ ଉତ୍ସାହିତକରିବା ହିଁ ଆମ ପରି ସଂସ୍କୃତିସଚେତନ ବ୍ୟକ୍ତିମାନଙ୍କ ପବିତ୍ର ଦାୟିତ୍ୱ ।



ଅଭୟ ପାଢ଼ୀ ଏତେଶୀଘ୍ର ଆମଠୁ ବିଦାୟ ନେଇଯିବେ, ତାଙ୍କସହ ଆଉ ଏ ଜୀବନରେ ସାକ୍ଷାତ ହୋଇପାରିବ ନାହିଁ, ଏ କଥା ଅବିଶ୍ୱାସ୍ୟ ମନେହେଉଛି । ସମ୍ବଲପୁରସହରର ଜଣେକ ବିଜ୍ଞ, ଜ୍ଞାନୀ, ଗୁଣି, ବରିଷ୍ଠ ନାଗରିକମାନଙ୍କ ମଧ୍ୟରେ ଅଗ୍ରଣୀ, ବାଗ୍ମୀ ଭାବରେ ସମଗ୍ର ଭାରତରେ ସେ ପରିଚିତ ଥିଲେ । ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଅଗାଧ ଜ୍ଞାନର ଅଧିକାରୀ ଥିଲେ ଅଭୟଆଜ୍ଞା । ବରଗଡ଼ ପଞ୍ଚାୟତ ମହାବିଦ୍ୟାଳୟରୁ ଇଂରାଜୀ ବିଭାଗର ଅଧ୍ୟାପକ ଭାବରେ ବୃତ୍ତିଜୀବନ ଆରମ୍ଭକରି ପ୍ରସାରଭାରତୀର ଡିଡିଜି, ଡେପୁଟି ଡାଇରେକ୍ଟର ଜେନେରାଲ ପଦବୀରେ ଥାଇ ଅବସର ଗ୍ରହଣ କରିଥିଲେ । ତେଣୁ ସର୍ବଭାରତୀୟ କ୍ଷେତ୍ରରେ ଜଣେ ଉତ୍ତମ ପ୍ରଶାସକ ଭାବରେ ଖ୍ୟାତି ଅର୍ଜନ କରିଥିଲେ ଅଭୟଆଜ୍ଞା । ଏ କରୋନା ସମୟରେ କେବେକେବେ ସେ ଯାଇ ବରଗଡ଼ର ବିକାଶ ଡାକ୍ତରଖାନାରେ ଚିକିତ୍ସିତ ହେଉଥିଲେ, ଜଣାପଡ଼ି ନଥିଲା । ଚାରିପାଞ୍ଚ ଦିନ ତଳେ ଡେରାଡୁନରୁ ଅଭୟବାବୁଙ୍କ ବନ୍ଧୁ ଡ. ପ୍ରଫୁଲ୍ଲ ତ୍ରିପାଠୀ ମୋତେ ଫୋନ୍‌ଯୋଗେ କଥାହୋଇ ତାଙ୍କ କରୋନା ପ୍ରପିଡ଼ିତ ହେବା ସୂଚନା ଦେଇଥିଲେ । ପରେ ବନ୍ଧୁ ପ୍ରଦୀପ ପଣ୍ଡାଙ୍କ ନିକଟରୁ ଫୋନ୍ ମାଧ୍ୟମରେ ଅଭୟଆଜ୍ଞାଙ୍କୁ ଭେଣ୍ଟିଲେଟରରେ ରଖାଯାଇଥିବା ଖବର ପାଇଥିଲି । ହେଲେ, ନିୟତିର ଏ ଖେଳରେ ଅଭୟବାବୁ ଆଜି ପରାଜୟ ସ୍ୱୀକାରକରି ଦିବଙ୍ଗତ ପାଇଟିଗଲେ । ଏହି ଘଟଣା ସାମୂହିକଭାବରେ ଯେତିକି ଦୁଃଖଦ, ବ୍ୟକ୍ତିଗତଭାବରେ ମୋ ପାଇଁ ସେତିକି ମାର୍ମିକ ଥିଲା । ଦୁର୍ଭାଗ୍ୟ, କରୋନା ପାଇଁ ଶେଷଦର୍ଶନ କରିବା ମଧ୍ୟ ଅସମ୍ଭବ ହୋଇପଡ଼ିଲା ।

ଏଭଳି ଶୋକାବହ ପରିବେଶରେ ମୋର ଜୀବନାଭୂତିରେ ଅଭୟ ପାଢ଼ୀଙ୍କ ଭୂମିକା କିଛିକାଂଶରେ ରହିଛି, ଯାହା ଅନ୍ତତଃ ମୋ ପାଇଁ ଗୁରୁତ୍ୱ ବହନ କରେ । ୧୯୭୩ ମସିହାରେ ଭବାନୀପାଟଣାରେ ଯୁବଲେଖକ ସମ୍ମେଳନରେ ଯୋଗଦେବା ପାଇଁ ପ୍ରଫୁଲ୍ଲ ତ୍ରିପାଠୀ ଏବଂ ତାଙ୍କ ବନ୍ଧୁ ଅଭୟ ପାଢ଼ୀ ଏକ ଧଳା ଆମ୍ବାସଡର୍ କାର୍ ଯୋଗେ କଳାହାଣ୍ଡି ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ପ୍ରଫୁଲ୍ଲଦା'ଙ୍କ ସାନ ଭାଇ ପ୍ରମୋଦ ତ୍ରିପାଠୀଙ୍କୁ ଅଭୟବାବୁ ଓ ପ୍ରଫୁଲ୍ଲଦାଦା ଯିବାପାଇଁ କହିଲେ । ପ୍ରମୋଦ ମୋତେ ତାଙ୍କସଙ୍ଗରେ ଯିବାକୁ କହିଲେ । ଏଭଳି ଭାବରେ ସମ୍ବଲପୁରରୁ ଭବାନୀପାଟଣା ଯିବା ରାସ୍ତାରେ ହିଁ ଅଭୟବାବୁଙ୍କ ସହ ମୋର ପରିଚୟ । ତା ପରେପରେ ସେ ନିଜ ବୃତ୍ତିପାଇଁ ଦେଶର ବିଭିନ୍ନ ସହରରେ ଆକାଶବାଣୀ କେନ୍ଦ୍ରମାନଙ୍କରେ ନିଯୁକ୍ତିପାଇ ସମ୍ବଲପୁର ସହରରୁ ଦୂରେଇ ଯାଇଥିଲେ । ତେଣୁ

ତାଙ୍କସହ ସମ୍ପର୍କ ସ୍ଥାପନକରିବା ଅସମ୍ଭବ ଥିଲା । ବହୁ ବିଳମ୍ବରେ ଅଭୟ ପାଢ଼ୀ ସମ୍ବଲପୁରକୁ ଆସି ଆକାଶବାଣୀ ସମ୍ବଲପୁରର କେନ୍ଦ୍ରନିର୍ଦ୍ଦେଶକ ଭାବରେ ଯୋଗଦେଲେ ପ୍ରାୟତଃ ପଞ୍ଚାନବେ ମସିହାରେ । ସେତେବେଳେ ମୁଁ ଆକାଶବାଣୀ ସମ୍ବଲପୁରର କାର୍ଯ୍ୟକ୍ରମ ଉପଦେଷ୍ଟା ମଣ୍ଡଳୀର ସଦସ୍ୟ ଥିଲି । ପ୍ରତ୍ୟେକ ଦୁଇମାସରେ ଥରେ ଏହି କମିଟିର ବୈଠକ ବସେ । ଅଭୟ ପାଢ଼ୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ବୈଠକରେ ମୁଁ ଏକ ପ୍ରସ୍ତାବ ଆଗତ କରିଥିଲି । ତାହା ହେଲା, ପ୍ରତ୍ୟହ ସକାଳରେ ବନ୍ଦନା କାର୍ଯ୍ୟକ୍ରମରେ ପ୍ରସାରିତ ଭକ୍ତିସଂଗୀତରେ ଓଡିଆ ସହ ହିନ୍ଦୀ, ଗୁଜୁରାଟୀ ଆଦି ଭାଷାର ଗୀତ ପ୍ରସାରିତ ହେବାସ୍ଥଳେ ସମ୍ବଲପୁରୀ ଭାଷାର ଭକ୍ତିଗୀତ କାହିଁକି ବଜାଯାଉ ନାହିଁ, ଏହା ବଜାଗଲେ, ସମ୍ବଲପୁରୀ ଭାଷାର ପ୍ରସାର ସାଥିରେ କବି, ଗୀତିକବିମାନଙ୍କୁ ମାନ୍ୟତା ମିଳନ୍ତା, କାର୍ଯ୍ୟକ୍ରମର ଶେଷ ଗୀତଟି ସମ୍ବଲପୁରୀ ଭାଷାର ଭକ୍ତିଗୀତ ପ୍ରସାରିତ ହେଉ । ସମସ୍ତ ସଦସ୍ୟଙ୍କ ସହମତିରେ ମୋର ଏହି ପ୍ରସ୍ତାବକୁ ପାଢ଼ୀବାବୁ ତତ୍‌କ୍ଷଣାତ୍ ଗ୍ରହଣ କରିଥିଲେ ଏବଂ ତହିଁ ଆର ଦିନଠାରୁ ଏହି କାର୍ଯ୍ୟକ୍ରମର ଶେଷଗୀତଟି ସମ୍ବଲପୁରୀ ଭକ୍ତି ଗୀତ ପ୍ରସାରିତ ହେଉଛି । ଏଥି ସହିତ ମୋର ଅନ୍ୟ ଏକ ପ୍ରସ୍ତାବ ଥିଲା, ସମ୍ବଲପୁରୀ ଭାଷା ସାହିତ୍ୟର ବିକାଶ ପାଇଁ ଏକ ସ୍ୱତନ୍ତ୍ର ସାହିତ୍ୟପତ୍ରିକା କାର୍ଯ୍ୟକ୍ରମ ପ୍ରସାରିତ ହେଉ । ପରେ ଯୁବବାଣୀ କାର୍ଯ୍ୟକ୍ରମରେ ଏଭଳି ଏକ ସାହିତ୍ୟପତ୍ରିକା ପ୍ରସାରିତ ହୋଇଥିଲା । ସମ୍ବଲପୁରୀ ଭାଷାର ବିକାଶ କ୍ଷେତ୍ରରେ ଅଭୟବାବୁ ସ୍ୱତନ୍ତ୍ର ଦୃଷ୍ଟି ଦେଉଥିଲେ ।

ତାଙ୍କ ନିର୍ଦ୍ଦେଶକତ୍ୱ କାଳରେ ଅନ୍ୟ ଏକ ଘଟଣା ଘଟିଥିଲା । ସୃଷ୍ଟି ନାଟ୍ୟସଂସ୍ଥା ପ୍ରଯୋଜିତ ସମ୍ବଲପୁରୀ ନାଟକ 'ଭୁଖା' କିଛିବର୍ଷ ହେଲା ପ୍ରସାରିତ ହୋଇ ପାରିନଥିଲା । ଉପଦେଷ୍ଟା ମଣ୍ଡଳୀର ସଦସ୍ୟଭାବରେ ମୁଁ ଏ ବାବଦରେ ଲିଖିତ ଅଭିଯୋଗ ଉପସ୍ଥାପନ କରିଥିଲି । ପଛରେ ଜଣାପଡିଲା ଯେ ଏହି ନାଟକର ରେକର୍ଡେଡ୍ ସ୍ପୁଲ ଲାଇବ୍ରେରୀରେ ନାହିଁ । କିଏ ନେଲା, କାହିଁକି ନେଲା, ତାର ଉତ୍ତର କେହି ଦେଇପାରିନଥିଲେ । ତେଣୁ କେନ୍ଦ୍ର ନିର୍ଦ୍ଦେଶକ ଭାବରେ ସେ 'ଭୁଖା' ନାଟକକୁ ଆଉ ଥରେ ରେକର୍ଡିଂ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ପରେ ସୃଷ୍ଟି ସଂସ୍ଥାର ସମ୍ପାଦକଭାବରେ ପୁଣିଥରେ କଳାକାରମାନଙ୍କୁ ଏକତ୍ରିତକରି ଭୁଖା ରେକର୍ଡିଂ କରାଯାଇଥିଲା । ମୋ ଦୃଷ୍ଟିରେ ଅଭୟବାବୁଙ୍କ ବ୍ୟତୀତ ଆଉ କେହି ନିର୍ଦ୍ଦେଶକ ଥିଲେ, ଏହା ସମ୍ଭବ ହୋଇନଥାନ୍ତା । ମୁଁ ବ୍ୟକ୍ତିଗତ ଭାବରେ ଅଭୟବାବୁଙ୍କ ପ୍ରତି ସବୁଦିନ ପାଇଁ କୃତଜ୍ଞ, ଏଥିପାଇଁ ଯେ ତାଙ୍କ ଅମଳରେ ହିଁ ମୁଁ ଶୀତଳଷଷ୍ଠୀ ଯାତ୍ରାର

ପ୍ରତ୍ୟକ୍ଷଦର୍ଶୀ ଧାରାବିବରଣୀର ଉଦ୍‌ଘୋଷକ ଭାବରେ ମନୋନୀତ ହୋଇଥିଲି । ଏଥିପାଇଁ ମୋର ଆଗ୍ରହ ଜନ୍ମିବାରୁ ଏକ ସାଦା କାଗଜରେ ସାଧାରଣ ଏକ ଦରଖାସ୍ତ ଲେଖି ମୁଁ ଅଭୟବାବୁଙ୍କ ଟେବୁଲ୍‌ରେ ତାଙ୍କୁ ଦେଇଥିଲି । ସେ କିଛି ନକହି ମୋର ଦରଖାସ୍ତ ଉପରେ ଦସ୍ତଖତଟିଏ କରି ମୋତେ ଯିବାକୁ କହିଥିଲେ । ଆଶ୍ଚର୍ଯ୍ୟର ବିଷୟ, ସେହି ପଞ୍ଚାନବେରୁ ହିଁ ଲଗାୟାତ ବାଇଶବର୍ଷ ଧରି ମୁଁ ଏହି ଯାତ୍ରାର ଧାରାବିବରଣୀ କାର୍ଯ୍ୟ କରିଆସୁଥିଲି । ଦି' ବର୍ଷ ପରେ ପୁଣି ଚଳିତବର୍ଷ ମୋ ଉପରେ ସେହି ଦାୟିତ୍ୱ ନ୍ୟସ୍ତ ହୋଇଥିଲା । ତାଙ୍କ ସମୟରେ ପ୍ରତ୍ୟେକ ବର୍ଷ ଧାରାବିବରଣୀ ଶେଷ ହେବାପରେ ଅଭୟବାବୁ ଭୁଲ ତ୍ରୁଟି ବାବଦରେ ସିଧାସଳଖ ଆରୋପ କରୁଥିଲେ । ହେଲେ, ଆଜିଯାଏ ମୋ ଧାରାବିବରଣୀ ସମ୍ପର୍କରେ ସେ ପଦୁଟିଏ ସୁଦ୍ଧା କହିନଥିଲେ । ତାଙ୍କ ନୀରବତା ହିଁ ମୋ ପ୍ରତି ସମର୍ଥନର ଭାଷା ବୋଲି ମୁଁ ବିଚାର କରୁଥିଲି ।

ମଝିରେ ଏକ ସର୍ବଭାରତୀୟ ସିଧାପ୍ରସାରଣ ପାଇଁ ଅଭୟବାବୁ ମୋ ସହ ବାରୁଦାଙ୍କୁ ଷ୍ଟୁଡିଓକୁ ଡକାଇଥିଲେ । ଆମେ ହିନ୍ଦୀ ଭାଷାରେ ସମ୍ବଲପୁରୀ ଲୋକସଂସ୍କୃତି ବିଷୟରେ କିଛି ବକ୍ତବ୍ୟ ରଖିଥିଲୁ, ଯାହା ଜାତୀୟ ସ୍ତରରେ ସିଧାପ୍ରସାରିତ ହୋଇଥିଲା । ବାରୁଦା ଏବଂ ମୋପ୍ରତି ତାଙ୍କର ଏକ ସୂକ୍ଷ୍ମ ସ୍ନେହଭାବ ଥିଲା । ଭରନି ପ୍ରକାଶନକୁ ନେଇ ସେ ଯେତେ ଆନନ୍ଦିତ ହେଉଥିଲେ, ବନ୍ଦ ହୋଇଯିବାପରେ ସେତିକି ମର୍ମାହତ ମଧ୍ୟ ହୋଇଥିଲେ । କାରଣ, ସେ ଭରନିର ଜଣେ ପ୍ରଶଂସକ କେବଳ ନଥିଲେ, ଲଗାୟତ ଲେଖାଦେଇ ତାକୁ ସମୃଦ୍ଧ କରିଥିଲେ । ଆଜୀବନ ଗ୍ରାହକ ମଧ୍ୟ ଥିଲେ । ତାଙ୍କୁ ସମ୍ବଲପୁରୀ ଲେଖାର ଏକ ସ୍ୱାତନ୍ତ୍ର୍ୟ ଥିଲା, ଯାହା ପାଠକମାନଙ୍କୁ ଆକର୍ଷିତ କରୁଥିଲା । ଭରନି ସାହିତ୍ୟୋତ୍ସବରେ ସେ ଏତେ ମଜିଯାଇଥିଲେ ଯେ ନିଜେ ଆଗନ୍ତୁକମାନଙ୍କ ପାଇଁ ପକୋଡ଼ି ବାଢ଼ିଥିଲେ । ପରେ ସମ୍ବାଦର ଜୁଗାର୍ ପତ୍ରିକାରେ ତାଙ୍କ ଲେଖା କ୍ରମାନ୍ୱୟରେ ପ୍ରକାଶିତ ହୋଇଥିଲା, ଗୁପାଗୁନ୍ଦଲା କଥା, ପରେ ଏହା ପୁସ୍ତକଆକାରରେ ପ୍ରକାଶିତ ହୋଇଥିଲା ।

ପନ୍ଦର ମସିହାରେ ନବଗଠିତ ଅନ୍ୟା ସାହିତ୍ୟ ଅନୁଷ୍ଠାନର ସେ ଥିଲେ ଜଣେ ନିୟମିତ ଦର୍ଶକ, ଅତିଥି, ଅଂଶଗ୍ରହଣକାରୀ କବି । ଅନ୍ୟାର 'ଗୁଞ୍ଜନ' କାର୍ଯ୍ୟକ୍ରମରେ ତାଙ୍କପଠିତ କବିତା ଦର୍ଶକମାନଙ୍କୁ ସ୍ପର୍ଶ କରିଥିଲା । 'ଅନ୍ୟା' ଆୟୋଜିତ ସ୍ୱର୍ଗତ ଗୋପାଳକୃଷ୍ଣ ରଥଙ୍କ କବିତାସମଗ୍ର ଗ୍ରନ୍ଥ ଉନ୍ମୋଚନ ଉତ୍ସବରେ ଅଭୟବାବୁ ସଭାପତିତ୍ୱ କରି ସଭାରେ ନିଜ ସ୍ୱଭାବସୁଲଭ ପ୍ରଭାବ ବିସ୍ତାର କରିଥିଲେ । ଥରେ



ଆମମାନଙ୍କ ଗହଣରେ ସେ ତାଙ୍କ ଗାଡ଼ିରେ ମଙ୍ଗଳୁଚରଣ ବିଶ୍ୱାଳଙ୍କ ଗାଁ ବାରଡୁମରା ଯାଇ ତାଙ୍କସହ କିଛିସମୟ ଗପସପ କରି କଟାଇଥିଲୁ । ଗପକରି ଆସରକୁ ସରସିତ କରିବାରେ ପାଢ଼ୀବାବୁଥିଲେ ଓସ୍ତାଦ । ଏକ ସ୍ୱତନ୍ତ୍ର ମିଜାଜ୍‌ର ମଣିଷ ଥିଲେ ଅଭୟବାବୁ ।

ଲୋକକବି ହଳଧର ନାଗ, ପନ୍ଦର ମସିହା ଜାନୁଆରୀ ପଚିଶ୍ ତାରିଖରେ ପଦ୍ମଶ୍ରୀରେ ଭୂଷିତ ହେବା ଘୋଷଣା ହେବା ମାତ୍ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ତାଙ୍କ ଅଫିସରେ ହଳଧରବାବୁଙ୍କୁ ସମ୍ବର୍ଦ୍ଧିତ କରିବା ଅବସରରେ କବିଙ୍କ ଗାଁ ବରଗଡ ଜିଲ୍ଲା ଘେସ୍ ଠାରେ ହଳଧର ନାଗ୍ ସମ୍ବଲପୁରୀ-କୋଶଳୀ ଭାଷା ଗବେଷଣା ପ୍ରତିଷ୍ଠାନ ପ୍ରତିଷ୍ଠାର ଘୋଷଣା କରିଥିଲେ । ଏହି ଘୋଷଣାର କିଛି ମାସ ଅନ୍ତରାଳରେ ସଂସ୍କୃତି ସଚିବଙ୍କ ଡାକରାପାଇ ମୁଁ ଓ ଅଭୟବାବୁ ଏକା ସାଥିରେ ଭୁବନେଶ୍ୱର ଯାଇଥିଲୁ ସଚିବଙ୍କ ପ୍ରକୋଷ୍ଠରେ ହେବାକୁଥିବା ଏକ ପ୍ରସ୍ତୁତି ବୈଠକରେ ଯୋଗଦେବା ପାଇଁ । ପରେ ଜାଣିଲୁ, ସରକାର ଆମ ଦୁଇଜଣଙ୍କୁ ସେହି ପ୍ରତିଷ୍ଠାନ ପାଇଁ ଉଦ୍ଦିଷ୍ଟ ଉଚ୍ଚକ୍ଷମତାସମ୍ପନ୍ନ କମିଟିର ସଦସ୍ୟ ଭାବରେ ମନୋନୀତ କରିଥିଲେ । ଆମ ଦୁଇଜଣଙ୍କ ବ୍ୟତିତ ସଂସ୍କୃତି ନିର୍ଦ୍ଦେଶକ, ଓଡ଼ିଶା ସାହିତ୍ୟ ଏକାଡେମୀର ତତ୍‌କାଳୀନ ସଚିବ ଅଶ୍ୱିନୀ ମିଶ୍ର ଆଦି ଏହି କମିଟିର ସଦସ୍ୟ ଥାଆନ୍ତି । ଅନେକ ଚର୍ଚ୍ଚାସହ ଏହାର ସ୍ଥାପନା, ବାର୍ଷିକ ବଜେଟ୍ ମଧ୍ୟ ଏହି ବୈଠକରେ ସ୍ଥିରୀକୃତ ହୋଇଥିଲା । ଏହି ବୈଠକରେ ଅଭୟବାବୁଙ୍କ ଦୃଢ଼ ତଥ୍ୟ ସମ୍ବଳିତ ଯୁକ୍ତି, ପ୍ରଶାସକୀୟ ଢାଞ୍ଚା ଆଦି ସଚିବଙ୍କ ସହ ଉପସ୍ଥିତ ସମସ୍ତ ସଦସ୍ୟଙ୍କୁ ଚମତ୍କୃତ କରିଥିଲା । ଏହି ପ୍ରତିଷ୍ଠାନର ସମସ୍ତ କାଗଜପତ୍ର ପ୍ରସ୍ତୁତ କରିବାପାଇଁ ସଂସ୍କୃତିସଚିବ ଅଭୟବାବୁଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରିଥିଲେ । ଅଭୟବାବୁଙ୍କ ଭଳି ବ୍ୟକ୍ତିତ୍ୱ ସାଙ୍ଗରେ ଏକତ୍ରିତହୋଇ କାର୍ଯ୍ୟ କରିବାର ଅନୁଭୂତି ଅତୀବ ଶିକ୍ଷଣୀୟ ।

କିଛିବର୍ଷ ହେଲା, ସମ୍ବଲପୁର ସହରରେ ବିଭିନ୍ନ ବିଷୟର ବିଶେଷଜ୍ଞମାନଙ୍କ ଅଭାବ ପରିଲକ୍ଷିତ ହେଉଛି । ସାହିତ୍ୟ, ନାଟକ, ସଂସ୍କୃତିର ବିଭିନ୍ନ ପ୍ରସଙ୍ଗରେ ସଭାର ମୁଖ୍ୟଭାବରେ ଆସୀନ ହେବାଭଳି ଜ୍ଞାନୀ ମଣିଷଙ୍କ ଅନୁପସ୍ଥିତି ସମ୍ବଲପୁର ବୌଦ୍ଧିକ ପରିବେଶ ପ୍ରତି ବିପଦ ସୃଷ୍ଟି କରିପାରେ । ଗୋପାଳକୃଷ୍ଣ ରଥ ଥିଲେ, ସେ ଚାଲିଗଲେ, ଏବେ ଅନ୍ୟତମ ପ୍ରତିଭା ଅଭୟବାବୁ ମଧ୍ୟ ଆମ୍ଭମାନଙ୍କୁ ନିଶାଖା କରି ଚାଲିଗଲେ, ଏମିତି ଜଣଜଣକରି ଅସମୟରେ ଆମଠୁ ବିଦାୟ ନେଇଯିବେ, ତା'ହେଲେ ଆମ ସଂସ୍କୃତିର ରକ୍ଷକ ହେବ କିଏ ! ! ଥରେ ବିଶୃଙ୍ଖଳା ଯୋଗୁଁ ସମ୍ବଲପୁର ଲୋକମହୋତ୍ସବ

ପାଇଁ ସଂଯୋଜକ ମନୋନୟନ ନେଇ ନିଷ୍ପତ୍ତି ନିଆଯାଇପାରୁନଥିଲା । ସେ ସମୟରେ ତତ୍କାଳୀନ ଜିଲ୍ଲାପାଳ ଅଭୟବାବୁଙ୍କ ନେତୃତ୍ୱରେ ଏକ ସାର୍ବକମିଟି ଗଠନକରି ତାର ସମାଧାନ କରିବାରେ ସମର୍ଥ ହୋଇଥିଲେ । ଏଭଳି ଅନେକକ୍ଷେତ୍ରରେ ଅଭୟବାବୁ ଥିଲେ ଜଣେ ମୀମାଂସା ତୁଟାଇବା ଲୋକ ।

ତିନିଜଣ ପାଢ଼ୀ ଥିଲେ, ଭେଟ ପଡିଗଲେ ହୁଲ୍‌ସ୍ଥୁଲ୍ ହୋଇଯାଉଥିଲା । ଦିଲୀପ ପାଢ଼ୀ, ରବୀନ୍ଦ୍ର ପାଢ଼ୀ ଓ ଅଭୟ ପାଢ଼ୀ, ସମସ୍ତେ ଆଜି ସ୍ୱର୍ଗବାସୀ ।। ଅଭୟ ପାଢ଼ୀ ଆଜ୍ଞାଙ୍କ ଅମର ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଛି । ତା' ସହ ଆହୁରି ମଧ୍ୟ ବିନତି କରୁଛି, ସମ୍ବଲପୁର ପ୍ରତି ସହାୟହୋଇ ଆଉ ଆମକୁ ଅନାଥ ନକରନ୍ତୁ । ଆମ ଐତିହ୍ୟ, ସାଂସ୍କୃତିକ ଖାନ୍‌ଦାନୀପଣକୁ ଆମଠୁ କେହି ଛଡ଼େଇ ନନିଅନ୍ତି, ନିଦାଭଦ୍ରିରେ ଭର୍ତ୍ତି ଥିବା ଗୌରବାବହ ସମ୍ପତ୍ତିରୁ ଆମକୁ ବଞ୍ଚିତ ନକରନ୍ତୁ ।

ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡ଼ାଇବ ହେ...।।



ଚାକିରୀରୁ ଅବସର ନେବାପରେ ସମୟକୁ କେମିତି ବିନିଯୋଗ କରାଯିବ, ସାଂସ୍କୃତିକ ତଥା ସାହିତ୍ୟିକ କାର୍ଯ୍ୟକ୍ରମ ସହ କିଭଳି ନିଜକୁ ସଂଶ୍ଳିଷ୍ଟକରି ରଖିହେବ, ସେଇ ଚିନ୍ତାକରି କିଛି ସହଯୋଗୀ ଯୁବଲେଖକମାନଙ୍କ ସହଯୋଗରେ କୌଣସି ନାମ ନରଖି ଏକ ସାହିତ୍ୟ ଅନୁଷ୍ଠାନ ପନ୍ଦରମସିହାରୁ ହିଁ ଆରମ୍ଭ କରାଯାଇଥିଲା । ନାଟକ କରିବା ମୋ'ପାଇଁ ଆଉ ସମ୍ଭବ ହୋଇପାରୁନଥିବାରୁ ସାହିତ୍ୟକୁ ହିଁ ଆବୋରି ନେଇଥିଲି ସମୟର ସଦୁପଯୋଗ ନିମିତ୍ତ । ସେମିତି ସମ୍ବଲପୁରସହରରେ କେବଳ ସାହିତ୍ୟକୁନେଇ ଦୃଢ଼ସଂଗଠନର ଅଭାବ ବହୁ ଦିନରୁ ମୁଁ ଅନୁଭବ କରିଆସୁଥିଲି । ସାହିତ୍ୟର ବିସ୍ତାରିତ ଲକ୍ଷ୍ୟକୁ ସାଧିତ କଲାଭଳି ଆନୁଷ୍ଠାନିକ ଉଦ୍ୟମର ଆବଶ୍ୟକତା ରହିଛି । ବ୍ୟକ୍ତିଗତ ପ୍ରତିଭାର ଉପଯୋଗପାଇଁ ଲେଖକର ନିଜସ୍ୱ ଉଦ୍‌ଯୋଗ ସବୁବେଳେ ସଫଳ ହୁଏନାହିଁ । ଆନୁଷ୍ଠାନିକ ଉଦ୍ୟମରେ ସ୍ରଷ୍ଟା ସିଧାସଳଖଭାବରେ ପାଠକମାନଙ୍କସହ ସମ୍ପର୍କ ରଖିପାରେ, ଆଲୋଚନା, ପର୍ଯ୍ୟାଲୋଚନା ସ୍ତରକୁ ନେଇଯାଇପାରେ । ତେଣୁ ସାହିତ୍ୟର ଯୁଗୋପଯୋଗିତା ନିମିତ୍ତ ବାରମ୍ବାର ଲେଖକସମ୍ମେଳନ, ସମାବେଶର ଆବଶ୍ୟକତା ପଡିଥାଏ । କୌଣସି ଆଞ୍ଚଳିକ ସଂକୀର୍ଣ୍ଣତା, ଭାଷାଗତ ବିଦ୍ୱେଷ ନରଖି, ଏକ ବ୍ୟାପକହୃଦୟରେ ସାହିତ୍ୟକୁ ନିର୍ଦ୍ଦିଷ୍ଟଲକ୍ଷ୍ୟରେ, ଲେଖକମାନଙ୍କଭିତରେ ସାହିତ୍ୟିକ ଉନ୍ମାଦନା ସୃଷ୍ଟିକରିବା ଉଦ୍ଦେଶ୍ୟରେ ତଥା ଯୁବପିଢ଼ିଙ୍କ ଅନ୍ତରାତ୍ମାରେ ସାହିତ୍ୟର

ରସବୋଧ ଅନୁପ୍ରବେଶ କରାଇବାପାଇଁ ଏବଂ ସମ୍ବଲପୁରସହରର ସାହିତ୍ୟିକ ସ୍ଥାଣୁତାକୁ ଦୂରକରି ନୂତନ ପ୍ରାଣସଂଚାର କରିବା ଉଦ୍ଦେଶ୍ୟରେ ଅତି ନିରାଡ଼ମ୍ବରଭାବରେ ଆରମ୍ଭହେଲା ଅନାମିକାର ପରଶ ଭଳି ନାମହୀନ ସାହିତ୍ୟ ସଂଗଠନଟିଏ ପନ୍ଦର ମସିହାରେ । ଏହାର ପ୍ରଥମ ବୈଠକ ଆୟୋଜିତ ହେଲା ଜେଲ୍‌ଖାନା ନିକଟସ୍ଥ ଜ୍ୟୋତି କାର୍ଯ୍ୟାଳୟରେ ।

ଯୁବପିଢ଼ିର ସିଦ୍ଧାର୍ଥ ପଣ୍ଡା, ମନୋଜ ପଣ୍ଡା, ସତ୍ୟନାରାୟଣ ଠାକୁର, କର୍ମୀ କମଲଲୋଚନ ପଣ୍ଡା, ପ୍ରଶାନ୍ତ ମାଝୀ ଆଦି କେତେଜଣ ମୁଷ୍ଟିମେୟ ସାହିତ୍ୟପ୍ରେମୀମାନଙ୍କ ସହାୟତାରେ ଏହି ଅନାମ ସଂଗଠନର ପ୍ରଥମ ବୈଠକରେ କିଛି କବିତା, କିଛି ସାହିତ୍ୟଚର୍ଚ୍ଚା କରାଯାଇଥିଲା । ପ୍ରଥମ ବୈଠକରେ ସଭାମୁଖ୍ୟଭାବରେ ଯୋଗ ଦେଇଥିଲେ ଡ. ଶ୍ୟାମସୁନ୍ଦର ଧର ଓରଫ୍ ବାରୁଦା । ପ୍ରାୟ ତିନିଚାରୋଟି ସାହିତ୍ୟଚର୍ଚ୍ଚା ଜ୍ୟୋତି କାର୍ଯ୍ୟାଳୟରେ ଅନୁଷ୍ଠିତ ହୋଇଥିଲା । ଡ. ଗୌରୀଦାସ ପ୍ରଧାନ, ଡ. ଲକ୍ଷ୍ମୀନାରାୟଣ ପାଣିଗ୍ରାହୀ ଆଦି ବକ୍ତାମାନେ ସାହିତ୍ୟର ବିଭିନ୍ନପ୍ରସଙ୍ଗରେ ନିଜସ୍ୱ ବକ୍ତବ୍ୟ ଉପସ୍ଥାପନ କରିଥିଲେ । ରାମକୃଷ୍ଣ ସାହୁ, ଦୁର୍ଗାପ୍ରସାଦ ପଣ୍ଡା, ସରୋଜ ମହାନ୍ତି, ସୌଭାଗ୍ୟବନ୍ତ ମହାରଣା, ସୁଶୀଳ ପାଣିଗ୍ରାହୀଙ୍କ ସହ ଆହୁରି ସଂଖ୍ୟାଧିକ ଲେଖକ ଏହି ବୈଠକଗୁଡ଼ିକର ନିୟମିତ ଦର୍ଶକ ଥିଲେ । ଏପରିକି, ଗୋଟିଏ ବୈଠକରେ ସାହିତ୍ୟଏକାଡେମୀ ପୁରସ୍କୃତ ତିନି ଯୁବଲେଖକ, କ୍ଷେତ୍ରବାସୀ ନାୟକ, ନରେନ୍ଦ୍ର ଭୋଇ ଓ ସୁଜୀତ୍ ପଣ୍ଡା ଆଦିଙ୍କୁ ନିମନ୍ତ୍ରିତକରି ତିନିଜଣଙ୍କ ବକ୍ତବ୍ୟ ଗୋଟିଏ ମଞ୍ଚରୁ ଶୁଣିବାର ସୁଯୋଗ ସୃଷ୍ଟି କରାଯାଇଥିଲା । ଅଭୟ ପାଢ଼ୀ, ସୁଦର୍ଶନ ପୂଜାରୀ ମଧ ଧିରେଧିରେ ଏହି ଆସରଗୁଡ଼ିକର ନିୟମିତ ଦର୍ଶକ ପାଲଟିଗଲେ । ଜ୍ୟୋତି କାର୍ଯ୍ୟାଳୟ ବ୍ୟତିତ ଏକ ବୈଠକ ଚିତ୍ରଗୁପ୍ତ ମନ୍ଦିର ତଳେଥିବା ଏକ ପ୍ରକୋଷ୍ଠରେ ମଧ ଆୟୋଜିତ ହୋଇଥିଲା । ବନ୍ଧୁ ନାଟ୍ୟକାର କେଶରଞ୍ଜନ ପ୍ରଧାନ, 'ଭୁଖା, ଏକ କ୍ଲାସିକ୍ ନାଟକ', ବିଷୟରେ ସାରଗର୍ଭକ ଭାଷଣ ପ୍ରଦାନ କରିଥିଲେ । ଏହି ବୈଠକରେ ସମ୍ବଲପୁର ସରଲାକାନୀରେ ନିଜପାଇଁ ଗୃହନିର୍ମାଣରେ ବ୍ୟସ୍ତଥିବା ସଦ୍ୟ ଅବସରପ୍ରାପ୍ତ ଅଧ୍ୟାପକ ତଥା କବି ପ୍ରଦୀପ ପଣ୍ଡାଙ୍କ ଉପସ୍ଥିତି ଅନୁଷ୍ଠାନର ଭବିଷ୍ୟତ ରୂପଦେଖକୁ ବଦଳାଇବାରେ ସାହାଯ୍ୟ କରିଥିଲା । ମୁଁ ଆବାହକଭାବରେ ଏହି ସଂଗଠନକୁ ତାଙ୍କୁ ସ୍ୱାଗତ କରିଥିଲି । ଏ ପର୍ଯ୍ୟନ୍ତ ସମସ୍ତ ବୈଠକପାଇଁ ଦର୍ଶକମାନଙ୍କ ଉଦ୍ଦେଶ୍ୟରେ କେବଳ ଚା'ପାନର ବ୍ୟବସ୍ଥା ହେଉଥିଲା । ମାତ୍ର ଶହେ, ଦେଢ଼ ଶହ ଟଙ୍କା ଭିତରେ ରହୁଥିଲା ପ୍ରତ୍ୟେକ ବୈଠକର ବଜେଟ୍ । ଦର୍ଶକମାନଙ୍କ ସଂଖ୍ୟା କୋଡ଼ିଏ ତିରିଶ



ଭିତରେ ସୀମିତ ରହୁଥିଲା । ଜ୍ୟୋତି କାର୍ଯ୍ୟାଳୟ ଏବଂ ଚିତ୍ରଗୁପ୍ତ ପ୍ରେକ୍ଷାଳୟ ପାଇଁ ଡ. ପରେଶଚନ୍ଦ୍ର ଦାନୀଙ୍କ ସହଯୋଗ ଅତୁଳନୀୟ ।

ପ୍ରଦୀପ ପଣ୍ଡା ସପରିବାର ଝାରସୁଗୁଡ଼ା ପରିତ୍ୟାଗ କରି ନିଜେ ତିଆରିଥିବା ସରଲାକାନୀସ୍ଥ ବାସଭବନରେ ସ୍ଥାୟୀଭାବରେ ବସବାସ କଲେ, ପରେ ଗୌରୀଦାସ ପଧାନ ମଧ ଝାରସୁଗୁଡ଼ାଛାଡ଼ି ସମ୍ବଲପୁରରେ ରହିଲେ ଜଗନ୍ନାଥ କଲୋନୀର ଭଡ଼ାଘରେ । ଧୀରେ ଧୀରେ ଏହି ଅନାମଧେୟ ଅନୁଷ୍ଠାନର ସଦସ୍ୟସଂଖ୍ୟା ବଢ଼ିବାର ଆରମ୍ଭହେଲା, ସମଭାବାପନ୍ନ ସାହିତ୍ୟିକ ବନ୍ଧୁମାନଙ୍କ ମଧ୍ୟରେ ବ୍ୟାପକ ଭାବବିନିମୟ ସମ୍ଭବ ହୋଇପାରିଲା । ସାହିତ୍ୟ ଆସରର ସ୍ଥାନ ବଦଳି ପବ୍ଲିକ ଲାଇବ୍ରେରୀର ପ୍ରେକ୍ଷାଳୟରେ କାର୍ଯ୍ୟକ୍ରମମାନ ଆୟୋଜିତ ହେଲା । କପେ ଚା’ ସହ ଗରମଗରମ ସିଙ୍ଗଡ଼ା, ଜିଲେବି ଆସିବାରେ ଲାଗିଲା । ତେବେ ବିନାବେନର୍‌ରେ ସଭାମାନ ଆୟୋଜିତ ହେଉଥିବାରୁ ଗଣମାଧ୍ୟମର ପ୍ରତିନିଧିମାନେ ଅଭିଯୋଗ କରିବାରୁ ସଂଗଠନର ନାମସମ୍ପର୍କରେ ଚିନ୍ତା କରାଗଲା । ଯେହେତୁ ଅନ୍ୟ ସଂଗଠନ ସହ ତୁଳନା କଲେ ଏହାର କାର୍ଯ୍ୟକରିବାର ଶୈଳୀ ଟିକିଏ ଭିନ୍ନଧରଣର ଥିଲା, ସବୁବେଳେ ନୂତନସ୍ୱାଦର ସାହିତ୍ୟିକ ସମାବେଶ କରିବାର ଚିନ୍ତା କରାଯାଉଥିବାରୁ, ମୁଁ ‘ଅନ୍ୟା’ ନାମକରଣ କରିବାର ପ୍ରସ୍ତାବ ବାଢ଼ିଲି ବନ୍ଧୁ ପ୍ରଦୀପଙ୍କ ନିକଟରେ । ‘ଅନ୍ୟା’ ନାଁଟି ଶୁଣିଲାକ୍ଷଣି ସେ ରାଜେନ୍ଦ୍ର ପଣ୍ଡାଙ୍କ କବିତାପୁସ୍ତକ ଅନ୍ୟାର ସୂଚନା ପ୍ରଦାନ କରିଥିଲେ । ମୋ ଦୃଷ୍ଟିକୋଣ ଥିଲା ଭିନ୍ନ ଧରଣର, ପ୍ରଦୀପଙ୍କ ମନଭିତରେ ଅନ୍ୟା ନାମକରଣର ଗ୍ରହଣୀୟତା ବୃଦ୍ଧି ପାଇଥିଲା, ଯେହେତୁ, ତାଙ୍କ ପ୍ରିୟକବି ରାଜେନ୍ଦ୍ର ବାବୁଙ୍କ କବିତା ପୁସ୍ତକର ନାମସହ ଏହା ମେଳଖାଇଗଲା । ‘ଅନ୍ୟା’ ନାମକୁ ନେଇ ଉଭୟଙ୍କମଧ୍ୟରେ ସକାରାତ୍ମକ ଭାବନା ଦେଖାଦେବାରୁ ପରିଶେଷରେ ସଂଗଠନର ନାମ ‘ଅନ୍ୟା’ ରଖିବାକୁ ସ୍ଥିରୀକୃତ ହୋଇଥିଲା, ଅନ୍ୟ ସଦସ୍ୟମାନେ ମଧ୍ୟ ସାଦରେ ଏହି ନାମକରଣକୁ ସ୍ୱାଗତ କରିଥିଲେ ।

ପବ୍ଲିକ ଲାଇବ୍ରେରୀରେ ଅନ୍ୟାର ସଂଖ୍ୟାଧିକ ଆସର ଆୟୋଜିତ ହୋଇଛି । ଈଶ୍ୱର ନନ୍ଦ, ରାମକୃଷ୍ଣ, ପ୍ରଦୀପ ପଣ୍ଡା ଆଦିଙ୍କ ପୁସ୍ତକ ଉନ୍ମୋଚନଆସର ଆୟୋଜିତ ହୋଇଛି, କବି ରାଜେନ୍ଦ୍ର ପଣ୍ଡାଙ୍କ ଜନ୍ମଦିବସ ତାଙ୍କ ଅନୁପସ୍ଥିତିରେ ଅନୁଷ୍ଠିତ ହୋଇଛି । ଅନ୍ୟାର ପ୍ରଥମ ବାର୍ଷିକଉତ୍ସବରେ କବି ରାଜେନ୍ଦ୍ର କିଶୋର ପଣ୍ଡା ମୁଖ୍ୟଅତିଥି ଭାବରେ ଯୋଗ ଦେଇ ଆମ ଉଦ୍ୟମର ଭୂରିଭୂରି ପ୍ରଶଂସା କରିଥିଲେ । ଏହି କାର୍ଯ୍ୟକ୍ରମଟି ଓଡ଼ିଶା ସାଂସ୍କୃତିକ ସମାଜ ଭବନରେ ଆୟୋଜିତ ହୋଇଥିଲା । ଛୋଟଆସର ହେଲେ

ପବ୍ଲିକ ଲାଇବ୍ରେରୀ, ବଡ଼ କାର୍ଯ୍ୟକ୍ରମ ହେଲେ ଆରଣ୍ୟକ ମଣ୍ଡପ, ନ ହେଲେ ଜିଲ୍ଲା ପ୍ରେକ୍ଷାଳୟ, ତପସ୍ୱିନୀରେ ଆୟୋଜିତ ହେଲା ।

କୁମୁଦଚନ୍ଦ୍ର ଦାସ, ସୌଭାଗ୍ୟବନ୍ତ ମହାରଣା, ସାବିତ୍ରୀ ପୁରୋହିତ, ସୁନୀତି ବେହେରା, ନିବେଦିତା ପଣ୍ଡା, ସୁଶୀଳ ପାଣିଗ୍ରାହୀ, ଲକ୍ଷ୍ମୀ ପଣିଗ୍ରାହୀ, ଦେବାର୍ଚ୍ଚନ ଠାକୁର, ଗୋବିନ୍ଦ ମହରଣା, ରମେଶ ମିର୍ଦ୍ଧା, ଅରବିନ୍ଦ ମହାପାତ୍ର, ରଘୁନାଥ ମିଶ୍ର, ଗୋପରଞ୍ଜନ ଦୁବେ, ହୃଶିକେଷ ପୂଜାରୀ, ଶଙ୍କର ପଣ୍ଡା, ପ୍ରଦୀପ ପାଢ଼ୀ, ପ୍ରଶାନ୍ତ ମାଝୀ, ବୋଧରାମ ଦାସ ସମେତ ଆହୁରି ଅନେକ ସାହିତ୍ୟପ୍ରେମୀ ଅନ୍ୟାର ଆସରଗୁଡ଼ିକର ନିୟମିତଦର୍ଶକ ପାଲଟିଗଲେ ।

ଅନ୍ୟାର ଦ୍ୱିତୀୟବାର୍ଷିକ ଆସର 'ଗୁଞ୍ଜନ' ଆୟୋଜିତ ହୋଇଥିଲା ଝାଡୁଆପଡାର ଆରଣ୍ୟକ ମଣ୍ଡପଠାରେ । ଏହି କାର୍ଯ୍ୟକ୍ରମ ସମ୍ବଲପୁର ସହରପାଇଁ ଥିଲା ଅଭିନବ । ଚାରୋଟି ପ୍ରଦର୍ଶନମୂଳକ କଳାର ଏକତ୍ରପ୍ରଦର୍ଶନ ଥିଲା ଏହାର ବୈଚିତ୍ର୍ୟ, କବିତାପାଠ, ସଂଗୀତ, ନାଟକ ଓ ଚିତ୍ରକଳାର ମଧୁରସଙ୍ଗମ ଥିଲା 'ଗୁଞ୍ଜନ' । କବିମାନଙ୍କ ଦ୍ୱାରା ସ୍ୱରଚିତ କବିତାପାଠ ସହ, ସେହି କବିତାର ସାଂଗୀତିକ ପରିବେଷଣ, ତତ୍‌ସହିତ ସେହି କବିତାର ମର୍ମକୁ ନେଇ କଳାକାରମାନଙ୍କ ଦ୍ୱାରା କେନ୍‌ଭାସ୍‌ରେ ଚିତ୍ରକଳା ଅଙ୍କନ ଏବଂ ଏ ସମସ୍ତ କବିତାର ଭାବକୁ ଯୋଡୁଥିବା ସଂଳାପର ଅଭିନୟ ମାଧ୍ୟମରେ ନାଟ୍ୟପ୍ରଦର୍ଶନ । ଗୁଞ୍ଜନ ନାମରେ ପରିବେଷିତ ଏହି କାର୍ଯ୍ୟକ୍ରମରେ କୌଣସି ସଭାର ଆୟୋଜନ ହୋଇ ନଥିଲା । ବୟୋଜ୍ୟୋଷ୍ଠ କଳାକାର ଭୋଳାନାଥ ନାୟକଙ୍କ ପ୍ରଦୀପ ପ୍ରଜ୍ୱଳନ ପରେପରେ ହିଁ ଆରମ୍ଭ ହୋଇଥିଲା ସାରସ୍ୱତ କାର୍ଯ୍ୟକ୍ରମ । ଅନ୍ତରାଳରୁ ସମସ୍ତ କବିମାନଙ୍କର କବିତାକୁ ସଂଯୋଜନାକରିବା ଦାୟିତ୍ୱ ଥିଲା ମୋର, ପ୍ରଦୀପ ପଣ୍ଡାଙ୍କ ଲିଖିତ ବର୍ଣ୍ଣନାକୁ ମୁଁ ପାଠ କଲାପରେ କବିଙ୍କୁ ମଞ୍ଚକୁ ଆମନ୍ତ୍ରିତ କରୁଥିଲି । ନାଟକୀୟ ଆଲୋକର ବ୍ୟବସ୍ଥା ସହ ମଞ୍ଚକୁ ଆସୁଥିଲେ ଜଣଜଣ କରି କବି, ତାଙ୍କ କବିତା ପାଠ ପୂର୍ବରୁ ସଂଗୀତ ନିର୍ଦ୍ଦେଶକ ବ୍ରଜେନ୍ଦ୍ର ନାୟକଙ୍କ ସଂଯୋଜନାରେ ଗାୟକଗାୟିକାମାନେ କବିତାର ପ୍ରଥମ ପଂକ୍ତିକୁ ଗାନକରୁଥିଲେ, ପରେ କବି କବିତାପାଠ ଆରମ୍ଭ କଲେ ଚିତ୍ରଶିଳ୍ପୀ ସେହି ମଞ୍ଚରେ ହିଁ କେନ୍‌ଭାସ୍‌ରେ ଆଙ୍କୁଥିଲେ କବିତାର ଚିତ୍ରସ୍ୱରୂପ । ଏଥିରେ ଅଭୟ ପାଢ଼ୀ, ରାମକୃଷ୍ଣ, ଭାଗିରଥୀ ମିଶ୍ର, ପ୍ରହଲ୍ଲାଦ ଶତପଥୀ, ଦୁର୍ଗାପ୍ରସାଦ ପଣ୍ଡା, ପ୍ରଦୀପ ପଣ୍ଡା, ମନୋଜ ପଣ୍ଡା, ସରୋଜ, ଲକ୍ଷ୍ମୀ ନାରାୟଣ ହୋତା, ଶାଶ୍ୱତ ସାହୁ, ମୁକ୍ତକଣ୍ଠ ଆଦି ପନ୍ଦରଜଣ କବି ଅଂଶଗ୍ରହଣ କରିଥିଲେ । ଭୋଳାନାଥ ନାୟକ, କୁଲଜିତ୍ ସିଂ, ସଞ୍ଜୟ ସାହୁ ଆଦି ଚିତ୍ରଶିଳ୍ପୀମାନେ

ସଫଳତାର ସହ କବିତାଗୁଡ଼ିକୁ ଚିତ୍ରାୟିତ କରିଥିଲେ । କାର୍ଯ୍ୟକ୍ରମ ଶେଷରେ ଏହି ଚିତ୍ରଗୁଡ଼ିକ ମଧ୍ୟରୁ ପାଞ୍ଚଛ'ଟି ବିକ୍ରି ମଧ ହୋଇଥିଲା । ଉଭୟ ଓଡ଼ିଆ ଓ ସମ୍ବଲପୁରୀ କବିତାର ଏହି ଅଭିନବ କାର୍ଯ୍ୟକ୍ରମ ହଲ୍‌ଭର୍ତ୍ତି ଦର୍ଶକ ମନଭରି ଉପଭୋଗ କରିଥିଲେ । ଶେଷରେ ସମସ୍ତଙ୍କପାଇଁ ରାତ୍ରଭୋଜନର ବ୍ୟବସ୍ଥା କରାଯାଇଥିଲା । ଗୁଞ୍ଜନ କାର୍ଯ୍ୟକ୍ରମର ସଫଳତା ସମଗ୍ର ଓଡ଼ିଶାର ସାହିତ୍ୟ ପ୍ରେମୀମାନଙ୍କ ଉପରେ ପ୍ରଭାବ ପଡିଥିଲା । ପରେ ଏହି କାର୍ଯ୍ୟକ୍ରମର ଅନୁସରଣରେ ଆଉ କେତୋଟି ସହରରେ ଏଭଳି କାର୍ଯ୍ୟକ୍ରମ ଆୟୋଜିତ ହେବାର ଉଦ୍ୟମ ହେବାର ଶୁଣାଯାଇଥିଲା । ଗୁଞ୍ଜନ, ଆମ ସମନ୍ୱିତ ସର୍ଜନାର ସୁଦୃଷ୍ଟ ଉଦାହରଣ ।

ପବ୍ଲିକ ଲାଇବ୍ରେରୀରେ ଆୟୋଜିତ ଦୁଇଟି ଆସରରେ ଉତ୍ତର ଆଧୁନିକତା ସମ୍ପର୍କରେ ଡ. ପଞ୍ଚାନନ ମିଶ୍ର ଏବଂ କାଳିଦାସ ମିଶ୍ରଙ୍କ ବକ୍ତବ୍ୟ ଏବଂ ଔପନ୍ୟାସିକ ଜଗଦୀଶ ମହାନ୍ତିଙ୍କ ଉପରେ ଡ. କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ବକ୍ତବ୍ୟ, ସଚ୍ଚି ରାଉତରାୟଙ୍କ କବିତା ଉପରେ ସୁଦର୍ଶନ ପୂଜାରୀଙ୍କ ଭାଷଣ ଏବେ ସୁଦ୍ଧା ଦର୍ଶକମାନଙ୍କ ସ୍ମୃତିରେ ଉଜ୍ଜିବିତ ରହିଛି ।

ତପସ୍ୱିନୀ ପ୍ରେକ୍ଷାଳୟରେ ଅନ୍ୟା ତରଫରୁ ତିନୋଟି କାର୍ଯ୍ୟକ୍ରମ ଆୟୋଜିତ ହୋଇଛି, ସବୁଯାକ ଥିଲା ପୁସ୍ତକ ଉନ୍ମୋଚନ, ଡ. ଗୌରୀଦାସ ପଧାନଙ୍କ ପି.ଏଚ.ଡି. ସଂଦର୍ଭ ସାହିତ୍ୟସାଧକ ମଙ୍ଗଳଚରଣ : ଏକ ଅନୁଶୀଳନ, ହଳଧରଙ୍କ କାବ୍ୟର ଇଂରାଜୀ ଅନୁବାଦ ପୁସ୍ତକ କାବ୍ୟାଞ୍ଜଳୀ, ଯାହାକୁ ଅନୁବାଦ କରିଥିଲେ କଟକର ସୁରେନ୍ଦ୍ର ନାଥ ଏବଂ ଡ. ଗୋପାଳକୃଷ୍ଣ ରଥଙ୍କ କବିତା ସମଗ୍ର, ଯାହାକୁ ପ୍ରକାଶ କରିଥିଲେ ତାଙ୍କ ସହଧର୍ମିଣୀ ଡ. କୀରଣବାଳା ରଥ । ଗୌରୀଦାସ ଏବଂ ଗୋପାଳବାବୁଙ୍କ ପୁସ୍ତକ ଉନ୍ମୋଚନ ଆସରରେ କବି ରାଜେନ୍ଦ୍ର କିଶୋର ପଣ୍ଡା ମୁଖ୍ୟ ଅତିଥି ଭାବରେ ଯୋଗଦେଇ ଉନ୍ମୋଚନ କରିଥିଲେ । ସେଇ ଆସରରେ ଶାନ୍ତିନିକେତନର ଓଡ଼ିଆ ପ୍ରଫେସର କୈଳାସ ପଟ୍ଟନାୟକ ଏବଂ ତାଙ୍କ ସହଧର୍ମିଣୀ ଡ. ଗିରିବାଳା ମହାନ୍ତି ମଧ ଯୋଗଦାନ କରିଥିଲେ । ହଳଧର ନାଗଙ୍କ ଅନୁଦିତ ପୁସ୍ତକକୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଡ. ଦୀପକ ବେହେରା ଉନ୍ମୋଚନ କରିଥିଲେ । ଏହି ତିନୋଟି କାର୍ଯ୍ୟକ୍ରମର ପରିଚାଳନା ଅନ୍ୟାର ସଦସ୍ୟମାନେ ବହନ କରିଥିଲେ । ଏହି ବଡ଼ କାର୍ଯ୍ୟକ୍ରମଗୁଡ଼ିକର ସଫଳତା ଅନ୍ୟାର ସାଂଗଠାନିକ ଦକ୍ଷତା ବୃଦ୍ଧିକରିବାରେ ସହାୟକ ହୋଇଥିଲା । ତିନୋଟିଯାକ କାର୍ଯ୍ୟକ୍ରମରେ ଦର୍ଶକମାନଙ୍କ ପାଇଁ ରାତ୍ରଭୋଜନର ବ୍ୟବସ୍ଥା ହୋଇଥିଲା ।

ଅନ୍ୟା, ତଥାପି ବିଶ୍ୱାସ କରେ କ୍ଷୁଦ୍ର ଆସରର । ସାହିତ୍ୟିକମାନଙ୍କୁ ଏକତ୍ରିତକରି ସେମାନଙ୍କ ସୃଷ୍ଟି ସର୍ଜନାର ଚର୍ଚ୍ଚାରେ ନୂତନ ସାହିତ୍ୟିକ ବାତାବରଣ କରିବାର ଲକ୍ଷ୍ୟରେ ଅନ୍ୟା ଅଗ୍ରସର ହେଉଛି, କରୋନା ପାଇଁ ସ୍ଥଗିତ ରହିଛି ସମସ୍ତ ଆସର । କରୋନା ପରେ ପୁଣି ଅନ୍ୟା ମୁଣ୍ଡ ଟେକିବ, ଯୁବପିଢ଼ିଙ୍କ ପାଇଁ ନୂତନ ସନ୍ଦେଶ ଆଣିବ । ପୁଣି ଚଳଚଞ୍ଚଳ କରିବ କବି, ଲେଖକମାନଙ୍କୁ, ପୁଣି ଚା'ପାନରେ ଆପ୍ୟାୟିତ କରିବ ସୃଷ୍ଟିଶୀଳ ସୁଧୀଜନଙ୍କୁ । ।



ଅଧ୍ୟାପକୀୟ ଜୀବନରେ ଅଧ୍ୟୟନ ଯେଉଳି ଜରୁରୀ, ସମ୍ପାଦନ, ଆଲୋଚନାଚକ୍ର, ପ୍ରବନ୍ଧ, ନିବନ୍ଧ ଆଦି ରଚନା କରିବା ଭଳି କାର୍ଯ୍ୟ ମଧ୍ୟ ନିତାନ୍ତ ଆବଶ୍ୟକ ବୋଲି ମୁଁ ମନେକରେ । ବିଶେଷତଃ ସାହିତ୍ୟର ଅଧ୍ୟାପକ ପାଇଁ ଏଭଳି ପ୍ରବୃତ୍ତି ଜ୍ଞାନର ପରିସୀମା ବଢ଼ାଇବା ସଂଗେସଂଗେ ଅଧ୍ୟାପନା କାର୍ଯ୍ୟରେ ମଧ୍ୟ ସହାୟକ ହୋଇଥାଏ । ପିଲାଟି ବେଳୁ ବକ୍ତୃତା ପ୍ରତିଯୋଗିତାରେ ଅଂଶଗ୍ରହଣ କରିବା ଆଗ୍ରହ ଥିବାରୁ ସଭାସମିତିମାନଙ୍କରେ ବିଭିନ୍ନ ପ୍ରସଙ୍ଗରେ ଭାଷଣଦେବା ମୋର ସହଜାତ ପ୍ରବୃତ୍ତି ପାଇଟିଯାଇଥାଏ । କଲେଜ୍ ଛାତ୍ରାବସ୍ଥାରେ ନାଟକକରିବା, ପ୍ରବନ୍ଧ ପ୍ରତିଯୋଗିତାରେ ଯୋଗଦେବା ଆଦି ଅଭ୍ୟାସ ଥିବାରୁ ଅଧ୍ୟାପକ ଭାବରେ ବୃତ୍ତିଜୀବନ ଆରମ୍ଭ କରିବାପରେ ଏହି ଅଭ୍ୟାସ କ୍ରମଶଃ ଜୀବନର ଏକ ଅଙ୍ଗ ପାଲଟିଗଲା । ଅବଶ୍ୟ ଏଥିପାଇଁ ବ୍ୟକ୍ତିଗତ ଆଗ୍ରହ ଓ ରୁଚି ମଧ୍ୟ ଥିବା ନିହାତି ଆବଶ୍ୟକ । ଅନେକଙ୍କ ଅଭିଯୋଗ ଥାଏ ଯେ ସୁଯୋଗ ମିଳିଲା ନାହିଁ । ପ୍ରକୃତରେ ସୁଯୋଗ ତା'ର ତା'ର ଆସେ ନାହିଁ, ସୃଷ୍ଟି କରିବାକୁ ପଡେ, ପ୍ରତିଭା ଥିଲେ ସୁଯୋଗ ଆପେଆପେ ପାଖକୁ ଆସିଥାଏ । ତେବେ ସୁଯୋଗ ହାତଛଡ଼ା କଲେ, ପ୍ରତିଭାର ବିକାଶ ସମ୍ଭବ ହୁଏନାହିଁ । ପୋଥି ଓ ବାଡ଼ି, ଉଭୟ ଜ୍ଞାନର ସମ୍ମେଳନରେ ଏଭଳି ବୌଦ୍ଧିକ କାର୍ଯ୍ୟାବଳୀ ସମ୍ଭବ ହୋଇଥାଏ ।

ନାଟକ କରିବା ଯେଉଳି ମୋର ଆଜନ୍ମ ପ୍ରବୃତ୍ତି, ସଭାସମିତି ଆୟୋଜନ କରିବା ଠିକ୍ ସେହିଭଳି ଛାତ୍ରାବସ୍ଥାରୁ ଅଭ୍ୟାସରେ ପରିଣତ ହୋଇଯାଇଥିଲା । ବିଶେଷକରି ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ଓଡ଼ିଆ ଅନର୍ସ ନେବାପରେ ଏହା ଦାୟିତ୍ୱ ଭାବରେ ବିଚାରିବାକୁ ହେଲା । ବିଭାଗୀୟ ସେମିନାର୍, ଗଙ୍ଗାଧର ଜୟନ୍ତୀ, ବାର୍ଷିକ ଉତ୍ସବଗୁଡ଼ିକର ଆୟୋଜନ ଏ ସମ୍ବନ୍ଧୀୟ ଅନୁଭୂତି ଜମାଇବାରେ ସହାୟକ ହୋଇଥିଲା । ମୁଁ ନିଜକୁ ଭାଗ୍ୟବାନ ମନେ କରେ, ଗଙ୍ଗାଧର ମେହେର

ମହାବିଦ୍ୟାଳୟରେ ପ୍ରଥମବର୍ଷ ଡିଗ୍ରୀର ଛାତ୍ରହେବା ବର୍ଷଠାରୁ ଆଜିଯାଏଁ ପ୍ରତ୍ୟେକ ବର୍ଷର ଗଙ୍ଗାଧର ଜୟନ୍ତୀ ଅବସରରେ ମୁଁ କୌଣସି ନା କୌଣସି କାର୍ଯ୍ୟରେ ନିଜକୁ ନିୟୋଜିତ କରିଆସିଛି । ଚଳିତବର୍ଷ ଏହାର ବ୍ୟତିକ୍ରମ ହୋଇପାରେ ବୋଲି ମୋର ସନ୍ଦେହ ଉପୁଜିଥିଲା, ତେବେ ଠିକ୍ ସମୟରେ ସୋନପୁରର ମହାନଦୀ ସାହିତ୍ୟ ସଂସଦର ସଦସ୍ୟ ପୁରୁଷୋତ୍ତମ ମିଶ୍ରଙ୍କ ଫୋନ ଆସିଲା, ମୋବାଇଲ ମାଧ୍ୟମରେ ଜୟନ୍ତୀ ପାଳନ ହେବ, ଘରେଥାଇ ଗଙ୍ଗାଧରଙ୍କ ବାବଦରେ କିଛି ବକ୍ତବ୍ୟ ରଖିବାକୁ । ଆଶ୍ୱସ୍ତ ହେଲି, ଯାହା ହେଉ, ମୋର କ୍ରମାନ୍ୱୟତା ବଜାୟ ରହିଲା । ଆଗରୁ ଜୟନ୍ତୀଉତ୍ସବ ଆୟୋଜନ କରୁଥିଲି, ପ୍ରାରମ୍ଭିକ ସଂଗୀତ ଶିଖାଉଥିଲି, ଏବେ ବକ୍ତା ଭାବରେ ବିଭିନ୍ନ ଅନୁଷ୍ଠାନଯାଇ ଭାଷଣ ଦେଉଛି । ଆକାଶବାଣୀ ସମ୍ବଲପୁର ପ୍ରଯୋଜିତ କୀଚକବଧର ବର୍ଣ୍ଣନାଭାଗ ରଚନା କରିଛି, ଭୀମଭୋଇଙ୍କ ରଚନା ଉପରେ ଆଧାରିତ ସଂଗୀତ ରୂପକର ମଧ୍ୟ ବର୍ଣ୍ଣନା ଭାଗ ରଚନା କରିଛି, କିଛି ଧାରାବାହିକରେ କଣ୍ଠଦାନ ମଧ୍ୟ କରିଛି ।

ନାଟକ ଓ ଲୋକସାହିତ୍ୟ ମୋର ପ୍ରିୟ ପ୍ରସଙ୍ଗ, ତେଣୁ ଏ ବିଷୟଉପରେ କୌଣସି ଅନୁଷ୍ଠାନ ଉତ୍ସବ ବା ସେମିନାର ଆୟୋଜନ କରୁଥିଲେ, ମୁଁ ହାତଛଡ଼ା କରେନି । ମୁଁ ପ୍ରବନ୍ଧଉପସ୍ଥାପକ ଭାବରେ ଯୋଗଦେଇଥିବା ଆଲୋଚନା ଚକ୍ରଗୁଡ଼ିକ ମଧ୍ୟରେ କେତୋଟି ଏଯାଏଁ ଅବିସ୍ମରଣୀୟ ହୋଇ ରହିଛି । ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ କଲିକତାର ରବୀନ୍ଦ୍ର ସଦନରେ କେନ୍ଦ୍ର ସଂଗୀତନାଟକ ଏକାଡେମୀ ପକ୍ଷରୁ ପୂର୍ବଭାରତର ଆଞ୍ଚଳିକ ସଂଗୀତ ବିଷୟରେ ଏକ ପୂର୍ବଭାରତୀୟ ସ୍ତରର ସମ୍ମିଳନୀ ଆୟୋଜିତ ହୋଇଥିଲା । ଏଥିପାଇଁ ଓଡିଶୀ ସଂଗୀତ ପାଇଁ ଗୁରୁ ରାମହରି ଦାସ, ଦକ୍ଷିଣ ଓଡିଶାରୁ ପ୍ରହଲ୍ଲାଦ ନାଟକ ପାଇଁ ଶାନ୍ତନୁ ରଥ ଏବଂ ପଶ୍ଚିମ ଓଡିଶାର ଲୋକଗୀତ ପାଇଁ ମୁଁ ମନୋନୀତ ହୋଇଥିଲି । ଏହି ମନୋନୟନର ସୂତ୍ରଧର ଥିଲେ ଗୁରୁ ଦାମୋଦର ହୋତା । ପଶ୍ଚିମଓଡ଼ିଶାର ଏଭଳି ଜଣେ ବକ୍ତାଙ୍କ ସନ୍ଧାନରେ ଥିବାବେଳେ ଆକାଶବାଣୀର ପଦ୍ମଲୋଚନ ଦାସଙ୍କ ସହିତ ଯୋଗାଯୋଗ କରିଥିଲେ ଫୋନ୍‌ରେ । ପଦ୍ମଲୋଚନ ଏହା ଜାଣିପାରି ମୋତେ ଫୋନ୍‌କଲେ ଓ ମୋର ସମ୍ମତିନେଇ ସିଧାସଳଖ ହୋତାବାବୁଙ୍କ ସହ ମୋତେ ଫୋନ୍‌ରେ ଯୋଡ଼ିଦେଲେ । ପରେ ଏକାଡେମୀ ତରଫରୁ ଲିଖିତ ପତ୍ରପ୍ରାପ୍ତି ହେଲି ଏବଂ କଲିକତା ଯାଇ ଏ ସମ୍ମିଳନୀରେ ଯୋଗଦେବାର ସମସ୍ତପ୍ରସ୍ତୁତି ଆରମ୍ଭ କରିଦେଲି । ସେହିଦିନ ପହଞ୍ଚି ତହିଁ ଆରଦିନ ଫେରିବାର କାର୍ଯ୍ୟକ୍ରମ ରଖିଥିଲି । କଲିକତାର ଖ୍ୟାତନାମା

ରବୀନ୍ଦ୍ରସଦନରେ ଆୟୋଜିତ ଏହି ଆଲୋଚନାଚକ୍ରର ଦ୍ୱିତୀୟ ଅଧିବେଶନରେ ମୋର ପ୍ରବନ୍ଧପାଠ କାର୍ଯ୍ୟକ୍ରମ ଥିଲା । ମୁଁ ଆୟୋଜକମାନଙ୍କୁ ମୋର ପରିଚୟ ଓ ନିମନ୍ତ୍ରଣପତ୍ର ଦେଖାଇବା ମୋତେ ସେମାନେ ସେଠାକାର ଅତିଥି ଭବନରେ ନିତ୍ୟକର୍ମ ସାରି ଆସିବାର ସମସ୍ତବ୍ୟବସ୍ଥା କରିଦେଲେ । ମୁଁ ଆଗରୁ ପ୍ରସ୍ତୁତ ପ୍ରବନ୍ଧଟି ଧରି ବାତାନୁକୂଳିତ ପ୍ରକୋଷ୍ଠକୁ ପ୍ରବେଶ କଲି ଓ ପ୍ରଥମ ଅଧିବେଶନ ଶେଷ ହେବା ପର୍ଯ୍ୟନ୍ତ ଦର୍ଶକ ମଣ୍ଡଳୀରେ ବସି ଅପେକ୍ଷା କଲି । ଦ୍ୱିତୀୟ ଅଧିବେଶନ ଆରମ୍ଭ ହେବାକ୍ଷଣି ଆମକୁ ସଭାମଞ୍ଚକୁ ଡକାଗଲା । ମୋ ସହ ଓଡ଼ିଶୀ ବିଶେଷଜ୍ଞ ରାମହରି ଦାସ ମଧ୍ୟ ମୋ'ପାଖରେ ବସିଥିଲେ । ସମସ୍ତ କାର୍ଯ୍ୟକ୍ରମ ଓଡ଼ିଆରେ ହିଁ ପରିଚାଳିତ ହେଉଥିଲା । କଲିକତାର ବୁଦ୍ଧିଜୀବୀ ଓଡ଼ିଆ ଭାଷାସହ ସମ୍ପର୍କିତ, ତେଣୁ ତାଙ୍କପାଇଁ ଓଡ଼ିଆ ବୁଝିବାରେ କିଛି ଅସୁବିଧା ହେଉନଥିଲା । ରାମହରିବାବୁ ଓଡ଼ିଶୀ ସଂଗୀତର ଶାସ୍ତ୍ରୀୟତାବିଷୟରେ ତାଙ୍କ ବକ୍ତବ୍ୟରେ ଅନେକ ଯୁକ୍ତି ଉପସ୍ଥାପନ କରିଥିଲେ । ମୋ ପ୍ରବନ୍ଧଟି ପଶ୍ଚିମଓଡ଼ିଶାର ଲୋକଗୀତ ଉପରେ ଆଧାରିତ ଥିବାରୁ ଅନେକ ଲୋକପ୍ରିୟ ଲୋକଗୀତଗୁଡ଼ିକର ଉଦାହରଣ ଦେଇ ସେଗୁଡ଼ିକର ସ୍ୱାତନ୍ତ୍ର୍ୟ ଉପରେ ମୁଁ ମୋର ବକ୍ତବ୍ୟ ଉପସ୍ଥାପନ କରିଥିଲି । ସ୍ଥଳବିଶେଷରେ ଡାଲଖାଇ, ରସରକେଲୀ, ଜାଈଫୁଲ ଆଦି ଗୀତଗୁଡ଼ିକ ନିଜକଣ୍ଠରେ ଗାଇ ତାର ସ୍ୱରବାବଦରେ ସୂଚନା ପ୍ରଦାନ କରିଥିଲି । କଲିକତାର ବୁଦ୍ଧିଜୀବୀ ମୋର ବକ୍ତବ୍ୟକୁ ସାଦରେ ଗ୍ରହଣ କରିଥିଲେ । ଅନ୍ୟତମ ବକ୍ତା ସାନ୍ତନୁ ରଥ ଗଞ୍ଜାମଅଞ୍ଚଳର ପ୍ରସିଦ୍ଧ ପ୍ରହଲ୍ଲାଦ ନାଟକର ସଂଗୀତବିଷୟରେ ନିଜ ପ୍ରବନ୍ଧପାଠ କରିଥିଲେ । କଲିକତାରେ ଆମେ ତିନିହେଁ ଆମ ସଂସ୍କୃତି ବାବଦରେ ଚର୍ଚ୍ଚା କରିଥିବାରୁ ଖୁସି ବ୍ୟକ୍ତ କରିଥିଲୁ । ପରେ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଥିଲା । ଏହି ବ୍ୟବସ୍ଥାର ନୂତନତା ଥିଲା ଗୋଟିଏ ପ୍ଲେଟ୍‌ରେ ଭାତଠାରୁ ପାନ ବିଡ଼ା ପର୍ଯ୍ୟନ୍ତ ସବୁ ସ୍ୱାଦିଷ୍ଟ ଖାଦ୍ୟପେୟର ଆୟୋଜନ ଥିଲା । ମୁଁ ନିଜକୁ ଭାଗ୍ୟବାନ ମନେ କରୁଥିଲି ଏଇଥିପାଇଁ ଯେ ରାଜ୍ୟବାହାରେ ନିଜ ଅଞ୍ଚଳର ଲୋକଗୀତ ସମ୍ପର୍କରେ ଅବଗତ କରିବାର ସୁଯୋଗ ପାଇଥିଲି ।

ସେହି ଶେଷ ଦଶନ୍ଧିରେ କେନ୍ଦ୍ର ସଂଗୀତନାଟକ ଏକାଡେମୀ ତରଫରୁ ଭବାନୀପାଟଣାର ଟାଉନ୍‌ହଲ୍‌ରେ ଓଡ଼ିଶାର ଆଦିବାସୀ ସଂଗୀତ ବିଷୟରେ ଏକ ସେମିନାର୍ ଆୟୋଜିତ ହୋଇଥିଲା । ଏହି ସେମିନାର ପାଇଁ ମଧ୍ୟ ମୁଁ ଏକ ପ୍ରବନ୍ଧପାଠ କରିବାର ନିମନ୍ତ୍ରଣପ୍ରାପ୍ତ ହୋଇଥିଲି । ଆଦିବାସୀ ସଂସ୍କୃତି ବାବଦରେ ଗବେଷଣା କରିଥିବା ବହୁ ପ୍ରାବନ୍ଧିକ ଏଥିରେ ଯୋଗଦେଇଥିଲେ । ଆଦିବାସୀ ଗୀତ ଉପରେ ମୁଁ

ଗବେଷଣା କରି ନଥିବାରୁ ଖାସ୍ ଏହି ସେମିନାର୍ ପାଇଁ ମୋତେ ଆମଅଞ୍ଚଳର କିଛି ଆଦିବାସୀଗ୍ରାମକୁ ଯାଇ ଓରାମ୍ ଜନଜାତିର ବିବାହକାଳୀନ ସଂଗୀତ ସଂଗ୍ରହକରି ପ୍ରବନ୍ଧଟିଏ ପ୍ରସ୍ତୁତ କରିଥିଲି । ଭବାନୀପାଟଣା ଯାଇ ପୂଜ୍ୟ ଜୟନ୍ତ ବେହେରାଙ୍କ ସାନ୍ନିଧ୍ୟ ପାଇ ଏ ସେମିନାର୍‌ରେ ମୋର ପ୍ରବନ୍ଧ ପାଠକରିଥିଲି । କେନ୍ଦ୍ର ସଂଗୀତନାଟକ ଏକାଡେମୀ ପରି ସାହିତ୍ୟ ଏକାଡେମୀର ବିଭିନ୍ନ ସଂଗୋଷ୍ଠୀରେ ଯୋଗଦେଇ, ସାମ୍ପ୍ରତିକ ଓଡ଼ିଆ ନାଟକର ରୂପରେଖ, ଓଡ଼ିଆ ସାହିତ୍ୟରେ ଲୋକଉପାଦାନର ଭୂମିକା, ଡ. ଶ୍ରଦ୍ଧାକର ସୁପକାରଙ୍କ ନାଟକାବଳୀ ଆଦି ପ୍ରସଙ୍ଗରେ ଭିତ୍ତିପ୍ରବନ୍ଧ ଉପସ୍ଥାପନ କରିଥିଲି । ଏଥିସହ ଓଡ଼ିଆ ଭ୍ରମଣକାହାଣୀ ଓ ଆତ୍ମଜୀବନୀ ପରମ୍ପରା ଭଳି ପ୍ରସଙ୍ଗରେ ପ୍ରବନ୍ଧ ପାଠ କରିଛି । ଓଡ଼ିଶା ସଂସ୍କୃତି ବିଶ୍ୱବିଦ୍ୟାଳୟ ତରଫରୁ ଏକ ବିଶେଷ ବୈଠକରେ ଯୋଗଦେବା ପାଇଁ ମୁଁ ପ୍ରଭୁଦତ୍ତ ପ୍ରଧାନ, ରଣଜିତ ନାଗ, ଘାଁସିରାମ ମିଶ୍ରଙ୍କ ସହ ପଶ୍ଚିମଓଡ଼ିଶାର ଲୋକବାଦ୍ୟ ବିଷୟରେ ଏକ ପ୍ରଦର୍ଶନମୂଳକ ସେମିନାର୍‌ରେ ଯୋଗ ଦେଇଥିଲି । ସେତେବେଳେ ନରେନ୍ଦ୍ର ମିଶ୍ର କୁଳପତି ଏବଂ ଶୁଭେନ୍ଦୁ ମୁଣ୍ଡ କୁଳସଚିବ ଥିଲେ ।

ଏଥିସହ ବିଭିନ୍ନ ମହାବିଦ୍ୟାଳୟର ବିଭିନ୍ନବର୍ଷରେ ଆୟୋଜିତ ୟୁଜିସି ପୃଷ୍ଠପୋଷକତାରେ ଆୟୋଜିତ ଆଲୋଚନାଚକ୍ରଗୁଡ଼ିକରେ ବହୁବାର ଯୋଗଦେଇ ଅନେକ ବିଷୟରେ ପ୍ରବନ୍ଧ ପଢ଼ିଛି, ନ'ହେଲେ ଆଲୋଚନାରେ ଅଂଶଗ୍ରହଣ କରିଛି । ଏଥିମଧ୍ୟରୁ ଅତାବିରା ମହାବିଦ୍ୟାଳୟ, ଲରମ୍ବା ମହାବିଦ୍ୟାଳୟ, ମଦନପୁର ରାମପୁର ମହାବିଦୟାଳୟ, ବଲାଙ୍ଗିର ସରକାରୀ ମହିଳା ମହାବିଦ୍ୟାଳୟ, ଅଞ୍ଚଳ ମହାବିଦ୍ୟାଳୟ, ପଦ୍ମପୁର, ଭୀମଭୋଇ ମହାବିଦ୍ୟାଳୟ, ରେଢ଼ାଖୋଲ, ବୌଦ୍ଧ ମହାବିଦ୍ୟାଳୟ, ବୌଦ୍ଧ ଆଦି ଅନୁଷ୍ଠାନ ଦ୍ୱାରା ଆୟୋଜିତ ଆଲୋଚନାଚକ୍ରରେ ଯୋଗଦେବାର ସୌଭାଗ୍ୟ ଅର୍ଜନ କରିଛି । ବଲାଙ୍ଗିର ମହିଳା ମହାବିଦ୍ୟାଳୟରେ ପାଲାସମ୍ପର୍କରେ ଆୟୋଜିତ ସେମିନାର୍‌ରେ ମୁଁ ପାଲା ଓ ସଂଚାର, ଏକ ତୁଳନାତ୍ମକ ଅଧ୍ୟୟନ, ମଦନପୁର ରାମପୁରରେ ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତି ବିଷୟରେ ମୋର ଲିଖିତପ୍ରବନ୍ଧ ଉପସ୍ଥାପନ କରିଥିଲି ଏବଂ ଆତ୍ମସନ୍ତୋଷ ଲାଭ କରିଥିଲି ।

ବିଭିନ୍ନ ଅନୁଷ୍ଠାନପରି ଅନେକ ଜିଲ୍ଲା ତଥା ରାଜ୍ୟସ୍ତରୀୟ ଲୋକମହୋତ୍ସବ ଅବସରରେ ଆୟୋଜିତ ଅଲୋଚନାଚକ୍ରମାନଙ୍କରେ ମଧ୍ୟ ଯୋଗଦେଇ ଅଂଶଗ୍ରହଣ

କରିଛି । ସମ୍ବଲପୁର ସହ ବରଗଡ, ବୌଦ, ଝାରସୁଗୁଡ଼ା, ରାଜବୋଡାସମ୍ବର ଆଦି ଲୋକମହୋତ୍ସବରେ ଆୟୋଜିତ ସେମିନାରରେ ଯୋଗଦେଇ ପଶ୍ଚିମଓଡ଼ିଶାର ଲୋକ ସଂସ୍କୃତିସମ୍ପର୍କିତ ପ୍ରସଙ୍ଗରେ ନିଜ ବକ୍ତବ୍ୟ ରଖିଛି । ସମ୍ବଲପୁର ଲୋକମହୋତ୍ସବର ଆଲୋଚନାଚକ୍ର ସହ ମୁଁ ବହୁବର୍ଷ ଧରି ଜଡ଼ିତ । ଷୋହଳଭରନୀ ଉପରେ ବରଗଡ ଲୋକମହୋତ୍ସରେ ଆୟୋଜିତ ସେମିନାରରେ ପ୍ରବନ୍ଧଟିଏ ଉପସ୍ଥାପନ କରିଥିଲି । ଲୋକଗୀତ, ଲୋକନୃତ୍ୟ, ଲୋକବାଦ୍ୟ ପ୍ରସଙ୍ଗରେ ନୂତନ ଗବେଷଣାତ୍ମକ ପ୍ରବନ୍ଧ ରଚନାକରିବା ମୋତେ ଖୁବ୍ ଭଲଲାଗେ । ଲୋକଗୀତ ଯେହେତୁ ମୋର ଗବେଷଣା ଅନ୍ତର୍ଗତ, ଏହି ବିଷୟରେ ଅଧିକରୁ ଅଧିକ ଜ୍ଞାନ ଆହରଣ କରିବାପାଇଁ ମୋର ଆଗ୍ରହ ରହିଛି । ତେଣୁ ଏହିପ୍ରସଙ୍ଗର ଆଲୋଚନାଚକ୍ର ସାଧାରଣତଃ ମୁଁ ହାତଛଡ଼ା କରେନାହିଁ ।

କେନ୍ଦ୍ର ସାହିତ୍ୟଏକାଡେମୀ ଭଳି ଓଡ଼ିଶା ସାହିତ୍ୟଏକାଡେମୀ ଆୟୋଜିତ ବିଭିନ୍ନ ସଭାରେ ନିଜ ବକ୍ତବ୍ୟ ଉପସ୍ଥାପନ କରିବାର ସୁଯୋଗ ପାଇଥିଲି । ବିଜୟ ନାୟକ ଏକାଡେମୀର ସଚିବ ଥିବାବେଳେ ଭୁବନେଶ୍ୱର ଏକାଡେମୀ ପରିସରରେ ନାଟକ ସମ୍ବନ୍ଧୀୟ ଏକ ଅଲୋଚନାଚକ୍ରକୁ ସଂଯୋଜନା କରିବାପାଇଁ ମୋତେ ଦାୟିତ୍ୱ ଦିଆଯାଇଥିଲା, ଯାହାକୁ ମୁଁ ସୂଚାରୁ ଭାବରେ ସମ୍ପନ୍ନ କରିଥିଲି, ସୋନପୁରର ପୁରୁଷୋତ୍ତମ ମିଶ୍ର, ପ୍ରଦ୍ୟୁମ୍ନ ସାହୁଙ୍କ ସହ ଓଡ଼ିଶାର ବହୁବିଶିଷ୍ଟ ନାଟ୍ୟବିତ୍ ଏଥିରେ ଅଂଶଗ୍ରହଣ କରିଥିଲେ । ଭୁବନେଶ୍ୱର, ଝାରସୁଗୁଡ଼ା, ସମ୍ବଲପୁର ଆଦି ସହରରେ ଏକାଡେମୀ ପକ୍ଷରୁ ଆୟୋଜିତ ବିଭିନ୍ନକାର୍ଯ୍ୟକ୍ରମରେ ଯୋଗଦେଇଛି, ସମ୍ବଲପୁରରେ ଆୟୋଜିତ ମେଘ ଉତ୍ସବରେ ମଧ ମୁଁ ଜଡ଼ିତଥିଲି । ଝାରସୁଗୁଡ଼ାର ଜିଲ୍ଲାସ୍ତରୀୟ ଲୋକୋତ୍ସବରେ ଯୋଗଦେଇ କବିତା ପାଠୋତ୍ସବ ଅବସରରେ ମୁଁ ଅଭିନୟ ମାଧମରେ ନିଜ ନିଃଶବ୍ଦ କବିତାକୁ ପ୍ରଦର୍ଶନ କରୁଥିଲି, ଯାହା ଦର୍ଶକମାନଙ୍କ ଦ୍ୱାରା ଆଦୃତ ହେଉଥିଲା । ସେହି ଝାରସୁଗୁଡାର ସୃଜନୀ ଆୟୋଜିତ ନାଟକ ସମ୍ବନ୍ଧୀୟ ଆଲୋଚନାରେ ମଧ କିଛିବର୍ଷ ଯୋଗ ଦେଇଥିଲି । ଏଭଳି ବୌଦ୍ଧିକ ସମାବେଶଗୁଡ଼ିକରେ ଯୋଗ ଦେଇ ମୁଁ ସତ୍‌ସଙ୍ଗ ଲାଭକରିବା ସଂଗେସଂଗେ ଅପାର ଆନନ୍ଦ ପାଉଥିଲି । କିଛି ଦାୟିତ୍ୱ ନଥାଇ ସୁଦ୍ଧା ଝାରସୁଗୁଡ଼ାର ବନ୍ଧୁମାନଙ୍କ ସହ ସତ୍‌ସଙ୍ଗ ଲାଭପାଇଁ ବହୁବର୍ଷ ମନମୋହନ ମଣ୍ଡପରେ ଆୟୋଜିତ ନୂଆଁଖାଇଭେଟ୍ ଉତ୍ସବରେ ଯୋଗଦେଇଥିଲି ।

ସମଗ୍ର ଜୀବନରେ ପତ୍ରପତ୍ରିକାରେ ଲେଖାଦେବା, ବିଭିନ୍ନ ଅନୁଷ୍ଠାନ ଆୟୋଜିତ ବିଭିନ୍ନ ଉତ୍ସବରେ ବକ୍ତା କିମ୍ବା ଅତିଥି ଭାବରେ ଯୋଗଦେଇ ବହୁଅଞ୍ଚଳ ଦେଖିବାସଙ୍ଗେ ନୂତନ ବନ୍ଧୁବର୍ଗ ସୃଷ୍ଟି କରିବାରେ ସମୟ ଅତିବାହିତ କରି ଅନେକ ଅଭିଜ୍ଞତା ପ୍ରାପ୍ତ ହୋଇଛି, ଯାହା ମୋର ସୃଷ୍ଟିଶୀଳ ମନୋଭାବକୁ ଉର୍ବର କରିପାରିଥିଲା, ନାଟକରେ ନୂତନ ଚରିତ୍ର ରୂପାୟନରେ ସାହାଯ୍ୟ କରିଥିଲା। ପ୍ରକୃତିସହ ମଣିଷର ସ୍ୱଭାବକୁ ଖୋଲାଆଖିରେ ଆବିଷ୍କାର କରିବାର ମୌକା ପ୍ରଦାନ କରିଥିଲା। ଏସବୁ ସବୁ ମୋର କୃତିତ୍ୱର ତାଲିକା ନୁହେଁ, ବରଂ ସଂସ୍କୃତିର ବୈଚିତ୍ର୍ୟସହ ନିଜକୁ ସମ୍ପର୍କିତ କରିବାର ଅବକାଶବୋଲି ମୁଁ ମନେ କରିଥାଏ, ଯାହା ମୋ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶବିଶେଷ।।



ବନ୍ଧୁତ୍ୱ ଏଭଳି ଏକ ଅମଳିନସମ୍ପର୍କ, ଯାହାର ବିଶ୍ୱସନୀୟତା ବେଳେବେଳେ ପାରିବାରିକ ସମ୍ପର୍କଠାରୁ ମଧ୍ୟ ଅଧିକ ଜଣାପଡେ। ତେଣୁ କୁହାଯାଏ, ବିପଦବେଳର ବନ୍ଧୁ ହିଁ ପ୍ରକୃତ ବନ୍ଧୁ। ବିପଦ ଆସିଲେ ଯାଇ ବନ୍ଧୁମାନେ ପଡନ୍ତି, ତାହାନୁହେଁ, ସାଧାରଣ ସମୟରେ ମଧ୍ୟ ଆସ୍ଥାବାନ୍ ହେଉଥିବା ବନ୍ଧୁମଧ୍ୟ ପ୍ରକୃତ ବନ୍ଧୁ। ଯୌବନ ପ୍ରାପ୍ତି ପରେ, ବିଶେଷତଃ କଲେଜ ଦ୍ୱାର ମାଡ଼ିବାପରେ ଘରଭିତରେ ପଢ଼ିବା ଓ ଶୋଇବା ସମୟ ବାଦ୍‌ଦେଲେ ବାକି ସମସ୍ତ ସମୟ ଯେହେତୁ ବନ୍ଧୁମାନଙ୍କ ଗହଣରେ କଟିଥିଲା, କଲେଜ୍ ଯିବାରେ, କ୍ଲାସ୍ କରିବାରେ, କଲେଜ୍‌ରୁ ଆସି ପଡିଆକୁ ଯାଇଁ ଖେଳିବାରେ, ନାଟକ କରିବାରେ, ରିହାର୍ସାଲ୍ କରିବାରେ, ଗଣେଶ ପୂଜା, ସରସ୍ୱତୀ ପୂଜା, ଦଶହରା ପୂଜା ଆଦି ଆୟୋଜନ କରିବାରେ, ବିଭିନ୍ନ ଉତ୍ସବର ସାଂଗଠାନିକ ଦାୟିତ୍ୱ ତୁଲାଇବାରେ, ଏମିତି ଛାତ୍ର ଜୀବନର ଅଧିକାଂଶ ସମୟ ବନ୍ଧୁମାନଙ୍କ ଗହଣରେ ଅତିବାହିତ ହୋଇଥିବାରୁ ଜୀବନର ଅନେକ ଘଟଣାସହ ବନ୍ଧୁମାନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଜଣାପଡେ। ସେ ପୁରୁଷବନ୍ଧୁ ହୁଅନ୍ତୁ ଅବା ମହିଳା, ନିର୍ଦ୍ଦିଷ୍ଟ ସମୟରେ ସେମାନଙ୍କ ସହଯୋଗ ଜୀଇଁବାର ଆଉ ଏକ ପାହାଚ ଡେଇଁବାରେ ସାହାଯ୍ୟକରିଥାଏ। ଛାତ୍ରାବସ୍ଥାରେ ଯେଉଁ ବନ୍ଧୁମାନେ ଘନିଷ୍ଠ ହୋଇଥାଆନ୍ତି, ସମୟବିଶେଷରେ ସେମାନଙ୍କ ମଧ୍ୟରୁ ବିଭିନ୍ନଉଦ୍ଦେଶ୍ୟରେ ଛିନ୍ନଛତ୍ର ହୋଇପଡନ୍ତି। ନିଜ ଅଞ୍ଚଳର ବନ୍ଧୁମାନେ ସାମୟିକ ଭାବରେ ନିବିଡ଼ ହେଲେ ହେଁ ବୃତ୍ତି ଓ ରୁଚି ଅନୁସାରେ ବିଚ୍ଛିନ୍ନ ହୋଇପଡନ୍ତି। ବହୁ ପୁରାତନ ବନ୍ଧୁ ଅବସରପରେ ଏକତ୍ରିତ ହୋଇଥାଆନ୍ତି, ବୃତ୍ତି ସମାନ୍‌ଧରଣର ହୋଇଥିଲେ, ସେଇ ବନ୍ଧୁତା ଅତୁଟ ରହିବାର ସମ୍ଭାବନା ଥାଏ, ଅନ୍ୟ ବୃତ୍ତି ହୋଇଥିଲେ, ସମ୍ପର୍କ ହାଲୁକା ହୋଇଯାଏ। ନିକଟରେ ରହୁଥିଲେ ମଧ୍ୟ ଦୂରଦୂର ଜଣାପଡନ୍ତି।

ଯେମିତି, ଭବାନୀପାଟଣାରେ ମୋର ଅନ୍ତରଙ୍ଗ ବନ୍ଧୁ ଥିଲେ ବିରୂପାକ୍ଷ ବୈଠାରୁ, ଉଭୟେ କବିତା ଲେଖୁଥିଲୁ, ବକ୍ତୃତା ପ୍ରତିଯୋଗିତାରେ ଅଂଶଗ୍ରହଣ କରୁଥିଲୁ । ତେବେ ମୁଁ ମୋ ଭବାନୀପାଠନା ଛାଡ଼ିବା ପରେ ଆମ ସମ୍ପର୍କର ବ୍ୟବଧାନ ଖୁବ୍ ଦୂରେଇଯାଇଥିଲା । ତେବେ, ଏବେବି ମୁଁ କୌଣସି କାମରେ ଭବାନୀପାଟଣା ଗଲେ ଆଗ ଖୋଜେ ବିରୂପାକ୍ଷଙ୍କୁ । ବହୁବର୍ଷ ପରେ ଭବାନୀପାଟଣା ଗଲାବେଳେ ମୁଁ ତାଙ୍କ ଷ୍ଟେଚ୍ୟୁଛକସ୍ଥିତ ଘରକୁ ଯାଇ ସାକ୍ଷାତ କରିଥିଲି, ତାଙ୍କ ସ୍ତ୍ରୀଙ୍କୁ ଭେଟି ଅତୀତର କାହାଣୀ ବଖାଣିଥିଲି, ସେ ବସ୍ତୁତଃ ଆନ୍ଧ୍ରାଞ୍ଚଳର, ଓଡ଼ିଆ ଖୁବ୍ କମ୍ ବୁଝି ପାରନ୍ତି, ତାଙ୍କ ଘରେ ଖାଇଲି, ଖୁବ୍ ଖୁସିରେ କିଛିସମୟ ଅତିବାହିତ କରିଥିଲି ତାଙ୍କସହ । ଗତବର୍ଷ ଜୁଗାର୍ ସମ୍ମାନ ଗ୍ରହଣ କରିବାବେଳେ ଖାସ୍ ମୋତେହିଁ ଭେଟିଆସିଥିଲେ ବିରୂପାକ୍ଷ । ମୁଁ ଖୁସିରେ ଆତ୍ମହରା ହୋଇପଡିଥିଲି । ବିରୂପାକ୍ଷ ବିଦ୍ୟୁତ୍‌ବିଭାଗରୁ ଅବସର ନେଇସାରିଲେଣି । ଆଉ ଜଣେ ବନ୍ଧୁ ଓମ୍ ପ୍ରକାଶ ଜୈନ୍, ସେ ଭବାନୀପାଟଣାର ଦୈନିକ ବଜାର ସ୍ଥାନରେ ସୁନାଅଳଙ୍କାର ଦୋକାନଟିଏ ଦେଇଛନ୍ତି । ତାଙ୍କ ସହ ଭବାନୀପାଟଣାରେ ପ୍ରାୟ ଦେଖାହୁଏ ।

ସୁନ୍ଦରଗଡର ନଟବରଲାଲ ଅଗ୍ରୱାଲ ଓରଫ ପିଲ୍‌ପିଲି ସହିତ ବହୁଥର ସୁନ୍ଦରଗଡ ଯାଉଥିଲେ ସୁଦ୍ଧା ଏ ଯାଏଁ ଭେଟି ପାରିନାହିଁ । ସେ କୁଆଡ଼େ ଏବେ ରାଉରକେଲାରେ ରହୁଛନ୍ତି, ବଡ ଲୁହା କାରଖାନାର ମାଲିକ । ଏତେ ଥର ରାଉରକେଲା ଗଲି, ଅଥଚ ସେ ସେଠାରେ ରହୁଛନ୍ତିବୋଲି ମୋର ଧାରଣା ନଥିଲା । ପିଲିପିଲି ଓ ମୁଁ ଚତୁର୍ଥ ଶ୍ରେଣୀରେ ପଢ଼ିବାବେଳେ ଖୁବ୍ ସାଙ୍ଗ ହେଉଥିଲୁ । ସେ ଗୋଟାଏ ତିନିଚକିଆ ଛୋଟ ସାଇକଲ ରଖିଥିଲେ, ସମୟ ପାଇଲେ ଆମ ଘରକୁ ଆସି ମୋତେ ଡାକି ବସ୍‌ଷ୍ଟାଣ୍ଡ ଯିବା ରାସ୍ତାକୁ ନେଇଯାଉଥିଲେ । ଆମେ ସେହି ରାସ୍ତାରେ ତିନିଚକିଆ ସାଇକଲ ଚଳାଇ ଖୁବ୍ ଆନନ୍ଦିତ ହେଉଥିଲୁ । ରାସ୍ତାର ଦୁଇପଟେ ଦୁଇଟି ବନ୍ଧ, ସ୍ୱଚ୍ଛ ଜଳରେ ଭର୍ତ୍ତି ତା ହିଡ଼ରେ ଖଜୁରୀ ଗଛ, ଖରାଦିନେ ପାଚିଲା ଖଜୁରୀ ପଥର ମାରି ଝଡ଼ାଇବାର ଅନୁଭୂତି ଏବେ ବି ଉଜ୍ଜିବିତ ହୋଇ ରହିଛି ସ୍ମୃତିପର୍ଦ୍ଦାରେ । ରଜନୀ ପୁରୋହିତ ଆଉ ଜଣେ ସୁନ୍ଦରଗଡ ସାଙ୍ଗ, ଅଠର ମସିହାରେ ସୁନ୍ଦରଗଡ ଯାଇଥିବାବେଳେ ମୁଁ ଯାହାକୁ ତାଙ୍କ ଠିକଣା ପଚାରିଲି, ଦୈବାତ୍ କ୍ରମେ ସେ ଥିଲେ ତାଙ୍କ ପୁତ୍ର । ସେ ରଜନୀ ସହ ମୋତେ ଫୋନ୍‌ରେ କଥା ଲଗାଇଦେଇଥିଲେ, ତେବେ ଭେଟ ପଢ଼ିବା ସମ୍ଭବ ହୋଇନଥିଲା, କାରଣ ଦୁଇଦିନ ପୂର୍ବେ ସେ ତା ବାଇପାସ୍ ଅପରେସନ୍ କରାଇ ଘରକୁ ଫେରିଥାନ୍ତି । ତଥାପି ଆଉକେବେ ଗଲେ ନିଶ୍ଚୟ ଭେଟ ପଢ଼ିବାର ପ୍ରତିଶ୍ରୁତି ଦେଇଥିଲେ ।

ସମ୍ବଲପୁର ଜିଲ୍ଲାସ୍କୁଲର ବନ୍ଧୁମାନେ, ପ୍ରାୟତଃ ଧନୁପାଲିର ସମସ୍ତଙ୍କ ସହ ନିବିଡ଼ତା ଥାଏ, ତେବେ ପ୍ରମୋଦ ତ୍ରିପାଠୀ, ଶାନ୍ତନୁ ହୋତା, ସୁଭାଶୀଷ ମିତ୍ର, ଯୁଗଳ ମହାପାତ୍ର, ପ୍ରଦୀପ ବେହେରା ଆଦି ବନ୍ଧୁମାନେ ଥିଲେ ଛାତ୍ରବନ୍ଧୁ, ରାମ ବିଶ୍ୱାଳ, ବିପିନ ମିଶ୍ର, ବନମାଳୀ ପୋଢ଼, ଅଶୋକ ବେହେରା, ଦଶରଥ ବେରିହା, ଅଲେଖ ଥପା, ଚିତ୍ତ ସାହୁ, ଗୋପାଲ ତ୍ରିପାଠୀ, ଗୋବିନ୍ଦ ତ୍ରିପାଠୀ, ନରେନ୍ଦ୍ର ରାୟଗୁରୁଭଳି ଅନେକ ବନ୍ଧୁ ଅଛନ୍ତି, ଯେଉଁମାନେ ଆଞ୍ଚଳିକ ସ୍ତରରେ ବନ୍ଧୁପାଳଟିଥିଲେ, ଧନୁପାଲିର କ୍ଲବ୍‌କାର୍ଯ୍ୟକ୍ରମ ସହ ଜଡ଼ିତଥିଲେ । ନାଟକର ମଞ୍ଚ, ଖେଳପଡିଆ, ରାତ୍ରଭ୍ରମଣ, ହୋଟେଲରେ ଖଟିକରିବା କାର୍ଯ୍ୟସହ ଏ ସମସ୍ତେ ମୋ ସହ ସଂଶ୍ଳିଷ୍ଟ ଥିଲେ । ଆଜିର ସମୟରେ ସମସ୍ତେ ନିଜ ବୃତ୍ତିରୁ ଅବସରନେଇ ସପରିବାର ସମୟ ଅତିବାହିତ କରୁଛନ୍ତି । ବୃତ୍ତିର ସର୍ବୋଚ୍ଚସ୍ତରକୁ ଯାଇ ଅବସର ପରେ ମଧ୍ୟ ଯୁଗଳ ବାଙ୍ଗାଲୋରରେ ରହି ଅନ୍ୟ ଏକ ବୃତ୍ତିରେ ଲିପ୍ତଅଛନ୍ତି । ଧନୁପାଲି ଆସିଲେ ବେଳେବେଳେ ଦେଖାହୁଏ, କିଛି ଆଳାପଆଲୋଚନା ମଧ୍ୟ ହୁଏ । ଅନ୍ତରଙ୍ଗ ପ୍ରମୋଦ ତ୍ରିପାଠୀ ବାର ମସିହାରେ ସ୍ୱର୍ଗବାସୀ ହୋଇଗଲେ, ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ଇଂରାଜୀ ଅଧ୍ୟାପକ ଥିବାବେଳେ । ତାଙ୍କ ତିରୋଧାନରେ ମୁଁ ବ୍ୟଥିତ ହୋଇପଡିଥିଲି । ତାଙ୍କ ସ୍ମୃତିରେ ପ୍ରମୋଦ ତ୍ରିପାଠୀ ସ୍ମୃତି ସଂସଦ ଗଠନ କରି ପ୍ରତ୍ୟେକ ବର୍ଷ ପ୍ରମୋଦ ସ୍ମୃତି ସମାରୋହ 'ପ୍ରମୋଦନାମା' ଆୟୋଜିତ କରି ନିଜ ଦାୟିତ୍ୱ ସମ୍ପାଦନ କରୁଛି । ଶାନ୍ତନୁ ସହ ଏବେ ବି ବନ୍ଧୁତ୍ୱ ଅତୁଟ ରହିଛି, ସୁଭାଶୀଷ ବେଙ୍କ୍ ଚାକିରୀରୁ ଅବସର ପରେ ତାଙ୍କ ପୈତୃକ ଗୃହ କଲିକତାରେ ରହୁଛନ୍ତି । ରାଉରକେଲାରେ ଥିବା ବେଳେ ମୁଁ ତାଙ୍କ ବରୋଦା ବେଙ୍କକୁ ଯାଇ ଭେଟପଡୁଥିଲି ।

ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ପଢ଼ିବାବେଳେ ବନ୍ଧୁସଂଖ୍ୟା ବୃଦ୍ଧି ପାଇଗଲା ସ୍ୱାଭାବିକ ଭାବରେ । ସମ୍ପର୍କ ଏତେ ଘନିଷ୍ଠ ହୋଇପଡୁଥିଲା ଯେ ବନ୍ଧୁ ନୁହେଁ, ବିଭିନ୍ନ ପାରିବାରିକ ସମ୍ପର୍କରେ ଆମେ ସମ୍ବୋଧନ କରୁଥିଲୁ ପରସ୍ପର । ଓଡ଼ିଆ ଅନର୍ସ ବେଳର ବନ୍ଧୁ କାହ୍ନୁଚରଣ ନାଥ ମୋର ଜଣେ ପ୍ରିୟବନ୍ଧୁ । ଆମେ ଏତେ ପରସ୍ପର ନିବିଡ଼ ବନ୍ଧନରେ ଅନୁବନ୍ଧିତ ହୋଇପଡିଥିଲୁ ଯେ ସେ ମୋତେ ଶ୍ୱଶୁରେ ସମ୍ବୋଧନ କରିବସିଲେ, ଏବେ ବି ଭେଟପଡ଼ିଲେ ସେହି ଶ୍ୱଶୁରେ ବୋଲି ମୋତେ ସମ୍ବୋଧିତ କରିଥାନ୍ତି । ତାଙ୍କ ଗାଁ କଲେଜରେ ପାଞ୍ଚବର୍ଷ ଅଧ୍ୟାପକ ଭାବରେ ଚାକିରୀ କରିଥିବାରୁ ଆମର ପ୍ରାୟ ଭେଟଘାଟ ହେଉଥିଲା । ଏବେ କୌଶସିକାମରେ ପରମାଣପୁର

ଯାଉଥିଲେ ତାଙ୍କୁ ଖୋଜାଲାଗେ, ପୁଅର ମୋବାଇଲ ଦୋକାନରେ ଭେଟ ପଡ଼ି ସ୍ମୃତିଚାରଣ କରିଥାଉଁ । ଜିଲ୍ଲା ସ୍କୁଲ ଏବଂ ଜିଏମ କଲେଜ ବେଳର ଅନ୍ୟ ଜଣେ ବନ୍ଧୁ ଚେରୁଆପଡାର ପ୍ରସନ୍ନ ମହାପାତ୍ର ଏକଦା ମୋର ଅତି ଘନିଷ୍ଠ ଥିଲେ । ଏପରି କି ତାଙ୍କ ଚେରୁଆପଡ଼ାର ଘରକୁ ମୁଁ ବାରବାର ଯାଇଛି ଭେଟପଡ଼ିବା ପାଇଁ । ସେ ମୋତେ ସମ୍ଧୀ ବୋଲି ସମ୍ବୋଧନ କରନ୍ତି, ଏବେ ବି କରୁଛନ୍ତି । ବାଟରେଘାଟରେ ଦେଖାହେଲେ ସମ୍ଧୀ ବୋଲି ଡାକିଦେଲେ ମୁଁ ଯେତେବଡ଼ କାମ ଥିଲେ ସୁଦ୍ଧା ଅଟକିବାକୁ ବାଧ । ଖୁବ୍ଆଳାପୀ ବନ୍ଧୁଜଣେ । ଜିଲ୍ଲାସ୍କୁଲର ଶିକ୍ଷକ ଭାବରେ ଅବସର ନେଇ ସ୍ୱଗୃହରେ ଅବସ୍ଥାନ କରୁଛନ୍ତି ।

ଜିଲ୍ଲାସ୍କୁଲ, ଗଙ୍ଗାଧର ମେହେର ମହାବିଦ୍ୟାଳୟ, ପରମାଣପୁର କଲେଜ, ଏସମସ୍ତ ସ୍ଥାନ ଓ କାଳରେ କୈଳାଶ ତ୍ରିପାଠୀ ଥିଲେ ମୋର ଅନ୍ୟ ଜଣେ ଅନ୍ତରଙ୍ଗ ବନ୍ଧୁ, ଯେ ମୋତେ ମାମା ବୋଲି ଡାଲୁଥିଲେ । ଜିଲ୍ଲାସ୍କୁଲରେ ପଢ଼ିବା ସମୟରୁ କୈଳାଶ ସଙ୍ଗରେ ସଂଗୀତକଳାକୁ ନେଇ ବନ୍ଧୁତ୍ୱ ଜମିଥିଲା । କଲେଜର ଜୀବନରେ ତ ଆମେ ଦୁହେଁ ମିଶି ସଂଖ୍ୟାଧିକ ସଂଗୀତ କାର୍ଯ୍ୟକ୍ରମ ପରିବେଷଣ କରିଛୁ । ଜ୍ୟୋତିବିହାରରେ ମଧ ଆମ ଉଭୟଙ୍କ ନେତୃତ୍ୱରେ ବହୁ ସଂଗୀତ କାର୍ଯ୍ୟକ୍ରମ ପରିବେଷିତ ହୋଇଥିଲା । ଭାଗ୍ୟକୁ ଆମ ଉଭୟଙ୍କ କର୍ମକ୍ଷେତ୍ର ମଧ ପରମାଣପୁର କଲେଜ ହିଁ ଥିଲା । ପରସ୍ପର ଗୋଟିଏ ଲୁନାରେ ଏକଦା କଲେଜକୁ ଯିବାଆସିବା କରୁଥିଲୁ । ସଂଗୀତକଳାକୁ ନେଇ ଆମ ସମ୍ପର୍କ ଖୁବ୍ ଦୃଢ଼ ଥିଲା । ତେବେ ଅସମୟରେ ତାଙ୍କ ତିରୋଧାନ, ମୋର ଆଉଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ସାନ୍ନିଧ୍ୟରୁ ବଞ୍ଚିତ ହୋଇଥିଲି । ସେହି ସଂଗୀତକୁ ମାଧମ କରି ଦଲେଇପଡାର ବନ୍ଧୁ ମୁରଲୀ ମେହେର ମୋ ସହ ଯୋଡ଼ି ହୋଇଥିଲେ । ତାଙ୍କ ଘରକୁ ଯାଇ ଗପସପ କରିବା ଏକଦା ମୋର ନିତିଦିନିଆ କାମ ଥିଲା । ମୁକେଶଙ୍କ କଣ୍ଠସ୍ୱରକୁ ଅବିକଳ ଅନୁସରଣ କରି ଗାଇବାରେ ସେ ଥିଲେ ଜଣେ ଉଚ୍ଚକୋଟୀର କଳାକାର । ଗଙ୍ଗାଧର ମେହେର ମହାବିଦ୍ୟାଳୟ, ସମଲେଶ୍ୱରୀ ମଣ୍ଡପ, ଜ୍ୟୋତିବିହାରରେ ଆୟୋଜିତ ଅନେକ ସଂଗୀତ କାର୍ଯ୍ୟକ୍ରମଗୁଡ଼ିକରେ ଆମେ ମିଳିତଭାବରେ କାର୍ଯ୍ୟକ୍ରମ ପରିବେଷଣ କରିଛୁ । ମୋ ସହ ଭେଟପଡ଼ିଲେ ଏବେ ବି ଆମେ ମୁସଲମାନୀ ଠାଣିରେ ଆଦାବ୍ ବା ଆଦା ବର୍ସେ ବୋଲି ସମ୍ମାନ ଜଣାଇଥାଉ । ଏହି ଅଭ୍ୟାସ ଏବେ ବି ଜାରିରହିଛି ।

ଅତାବିରା ମହାବିଦ୍ୟାଳୟର ଅନ୍ତଃମହାବିଦ୍ୟାଳୟସ୍ତରୀୟ ଜାତୀୟ ସେବାସଂସ୍ଥାର ଶିବିରରେ ଅଧ୍ୟାପକ ସୁନୀଲ ପଣ୍ଡା ଓ ଅଧ୍ୟାପକ ଗୋରାଚାନ୍ଦ ମହାପାତ୍ରଙ୍କ

ସହ ସମ୍ପର୍କ ଏତେ ଘନିଷ୍ଠ ହୋଇଥିଲା ଯେ ସେ ଦୁହେଁ ମୋତେ ବରିଷ୍ଠ ବୋଲି ଶ୍ୱଶୁରେ ଓ ମୁଁ ସେ ଦୁଇଜଣଙ୍କୁ ଜୋଇଁ ପିଲା ବୋଲି ସମ୍ବୋଧନ କରିଆସୁଛୁ ଆଜିଯାଏ । ଏଭଳି ସମ୍ବୋଧନ ଆମ ସମ୍ପର୍କର ନିବିଡ଼ତାକୁ ଆହୁରି ଗଭୀରରୁ ଗଭୀରତର କରିଥିଲା । ଆମେ ଭେଟପଡ଼ିଗଲେ ହୁଲସ୍ଥୁଲ ହୋଇପଡୁଥିଲା ଅଞ୍ଚଳଟି । ଆମ କାର୍ଯ୍ୟକରିବା ଶୈଳୀ ସମାନଥିବାରୁ ଆମେ ହୋଇପଡିଥିଲୁ ସମଭାବାପନ୍ନ । ଏଭଳି ଆତ୍ମୀୟତା ବନ୍ଧୁମହଲରେ ଖୁବ୍ କମ୍ ଦେଖାଦେଇଥାଏ । ସୁନୀଲବାବୁ ଏବେବି ମୋ ସହ ଫେସ୍ ବୁକ୍‌ରେ ଯୋଡ଼ି ହୋଇ ରହିଛନ୍ତି । ପ୍ରଦୀପ ରାୟ, ଜିଏମ କଲେଜ୍ ପାଠ ପଢ଼ାରୁ ଆମ ସମ୍ପର୍କ ପ୍ରତିଷ୍ଠାହେବା ସମୟରୁ ଆଜିଯାଏ ନିରବଚ୍ଛିନ୍ନ ଭାବରେ ଗତି କରୁଛି । 'ଶୂନ୍ୟଆକାଶ ଅମରଆଖି', ରିହାର୍ସେଲ ବେଳେ ଡାକ୍ତରଖାନାରେ ଏକରାତି ତାଙ୍କ ସହ ରହିବାଠାରୁ, ତାଙ୍କ ରାୟପଡ଼ାର ଘରେ ବିଏ ପରୀକ୍ଷାପାଇଁ ପ୍ରସ୍ତୁତିକରିବା ପର୍ଯ୍ୟନ୍ତ ଆମ ବନ୍ଧୁତା ନବିଡ଼ରୁ ନିବିଡ଼ତର ହେବାରେ ଲାଗିଲା । ସେ ବୌଦ କଲେଜରେ ଥିବାବେଳେ ଆମେ ଅର୍କେଷ୍ଟ୍ରା କରିଯାଇଥିଲୁ, ମୋ କଲେଜ୍‌କୁ ସେ ଗଙ୍ଗାଧର ଜୟନ୍ତୀବେଳେ ବକ୍ତା ଭାବରେ ଆସିଥିଲେ, ପୁଣି କୁଚିଣ୍ଡା ମହାବିଦ୍ୟାଳୟର ଅଧ୍ୟକ୍ଷ ଥିବାବେଳେ ପ୍ରଦୀପ କଲେଜର ସୁବର୍ଣ୍ଣ ଜୟନ୍ତୀ କାର୍ଯ୍ୟକ୍ରମକୁ ବକ୍ତାଭାବରେ ଡାକିଥିଲେ । ଏବେ ସେ ପୁଅବୋହୂ ସହ ଭୁବନେଶ୍ୱରରେ ରହୁଛନ୍ତି । ପଞ୍ଚମବେଦ ସମ୍ମାନ ଗ୍ରହଣ ଅବସରରେ ରବୀନ୍ଦ୍ର ମଣ୍ଡପକୁ ଆସି ମୋ'ସହ ସାମିଲ୍‌ହେବା ଆମ ବନ୍ଧୁତ୍ୱର ଜ୍ୱଳନ୍ତ ଉଦାହରଣ । ଏ ବନ୍ଧୁତ୍ୱ ଅମ୍ଳାନ, ସ୍ୱଚ୍ଛ, ନିରହଙ୍କାରୀ, ପବିତ୍ର ଓ ଅନ୍ତରଙ୍ଗ ।

ଏଭଳି ଆହୁରି ଅନେକ ଅଗଣିତବନ୍ଧୁ ଅଛନ୍ତି, ଯେଉଁମାନେ ମୋ' ଚଲାପଥର ସହଯାତ୍ରୀ ଥିଲେ ଘଟଣାକ୍ରମରେ । ବାଟରେ ନିରାଶହୋଇ ବସିପଡୁଥିଲେ, ଏଭଳି ବନ୍ଧୁମାନେ ହିଁ ଜୀଇଁବାର ସାହାରା ପାଲଟୁଥିଲେ, ଜୀବନର ଶେଷ ନିଶ୍ୱାସ ଛାଡ଼ିବାଯାଏଁ ଏମାନେ ମୋ ହୃଦୟର ଅଭ୍ୟନ୍ତରରେ ବାସ କରିବେ, ସେମାନଙ୍କ ବର୍ତ୍ତମାନ ଓ ଅବର୍ତ୍ତମାନରେ ମୋ' ଜୀବନ ନିର୍ବିଘ୍ନରେ ଗତି କରିଚାଲିଥିବ, ଏହା ସ୍ୱତଃସିଦ୍ଧ ।।



**ଅ**ନ୍ତରଙ୍ଗ ବନ୍ଧୁଭାବରେ ସୁଶୀଲ୍ ମିଶ୍ର ଓରଫ ପଶୁକବି ସୁଶୀଳ ମିଶ୍ର, ମୋର ଉଭୟ ସୁଖୀ ଓ ଦୁଃଖୀ ଜୀବନର ସାଥୀ । କଲେଜ ପଢ଼ିବାସମୟରୁ ଯଦିଓ ସେ ମୋଠାରୁ ଗୋଟିଏବର୍ଷ କନିଷ୍ଠ, ତଥାପି ଆମଦୁହିଙ୍କର ବନ୍ଧୁତ୍ୱ କ୍ଷେତ୍ରରେ ଏହା କେବେ ବିଘ୍ନ ସୃଷ୍ଟିକରିନାହିଁ । ବଲାଙ୍ଗିରରୁ ଆସି ଧନୁପାଲିରେ ରହିବାବେଳରୁ ନାଟକକୁ ନେଇ

ସମ୍ପର୍କ ପ୍ରତିଷ୍ଠା ଏବଂ ପରେପରେ ଘନିଷ୍ଠ ବନ୍ଧୁତା । ସୁଶୀଲ ଆଜନ୍ମ ହାସ୍ୟରସିକ, କଥାକଥାରେ ବନ୍ଧୁ ମହଲରେ ହାସ୍ୟରୋଳ ସୃଷ୍ଟି କରିବା ତାଙ୍କ ସହଜାତ ପ୍ରବୃତ୍ତି । ଧନୁପାଲିରେ ଆମକ୍ଲବ୍ ତରଫରୁ ନାଟକରେ ଅଭିନୟ କରିବାକାଳରୁ ଜିଏମ୍ କଲେଜ୍‌ର ବିଭିନ୍ନ ନାଟକ ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମଗୁଡ଼ିକରେ ତାଙ୍କ ସମ୍ପୃକ୍ତି ଯୋଗୁଁ ସେ ଲୋକପ୍ରିୟତା ହାସଲ କରିବାରେ ସମର୍ଥ ହୋଇଥିଲେ । ବଲାଙ୍ଗିରଯାଇ ଟ୍ରେଜେରୀ ଅଫିସରେ ବୃତ୍ତିଜୀବନ ଆରମ୍ଭକରିବା ପରେ ଧନୁପାଲି ଓ ସମ୍ବଲପୁରର ନାଟ୍ୟମହଲ ସହ ସମ୍ପର୍କ ପ୍ରାୟତଃ କଟିଯାଇଥିଲା । ତେବେ, ବ୍ୟକ୍ତିଗତଭାବରେ ମୁଁ ବଲାଙ୍ଗିରଯାଇ ତାଙ୍କସହ ମୋର ସମ୍ପର୍କ ବଜାୟ ରଖିଥିଲି । ବଲାଙ୍ଗିରଯାଇ ସେଠାରେ ମଧ୍ୟ ଏକ ବନ୍ଧୁଗୋଷ୍ଠୀ ସହ ମୁଁ ନିଜକୁ ଜଡ଼ିତ ରଖିଲି, ଯାହାର ସୂତ୍ରଧର ଥିଲେ ସୁଶୀଲ । ବିଶେଷତଃ, ଭୂମିକା ଆୟୋଜିତ ଏପ୍ରିଲ ଚୌଦର ବିଷୁବମିଳନର ସାହିତ୍ୟ ସମାବେଶକୁ ମୁଁ ପ୍ରାୟ ଯାଉଥିଲି ଏବଂ ସେଠାକାର ସାରସ୍ୱତ ପ୍ରତିଭାମାନଙ୍କ ସହିତ ସମ୍ପର୍କ ସ୍ଥାପନ କରୁଥିଲି ।

ସମ୍ବଲପୁରଠାରେ ସୃଷ୍ଟିର ନାଟ୍ୟ କାର୍ଯ୍ୟକ୍ରମଗୁଡ଼ିକର ଅନ୍ତ ହେବାପରେ ଗୋପାଳଜୀ ମଠ ପ୍ରକୋଷ୍ଠରେ ରଙ୍ଗରଜନୀ ନାମରେ ଉଭୟ ଓଡ଼ିଆ ଓ ସମ୍ବଲପୁରୀ କବିତାର ବିଶେଷପାଠୋତ୍ସବ ଆୟୋଜନରେ ମୁଁ ନିଜକୁ ସାମିଲ କରିଥିଲି । ଏହି କବିତାପାଠୋତ୍ସବକୁ ସୁଶୀଲ ମଧ୍ୟ ଆସି ହାସ୍ୟରସର କବିତା ପାଠକରି ସମସ୍ତଙ୍କୁ ମନୋରଞ୍ଜିତ କରୁଥିଲେ । ପ୍ରଥମବର୍ଷ ଗାଈ ଓ କୁକୁର କବିତା ଆବୃତ୍ତିକରି ସେ ରାତାରାତି ଜଣେ ଆତ୍ମଘୋଷିତ ପଶୁକବି ପାଲଟିଗଲେ । ଏହିଠାରୁ ହିଁ ଅଭିନେତା ସୁଶୀଲ ମିଶ୍ର କବିଭାବରେ ରୂପାନ୍ତରିତ ହୋଇଥିଲେ । ପରେ ସମ୍ବଲପୁର ପୁସ୍ତକମେଳାର ଉଦ୍‌ଯାପନୀ ପୂର୍ବରାତି ଆୟୋଜିତ ହେଉଥିବା ହାସ୍ୟ ଓ ବ୍ୟଙ୍ଗ ନିର୍ବାଚିତ କବି ସମ୍ମିଳନୀକୁ ମୁଁ ପ୍ରତ୍ୟେକବର୍ଷ ସୁଶୀଲଙ୍କୁ ନିମନ୍ତ୍ରିତ କରୁଥିଲି । ତାଙ୍କସହ ମନୋରଞ୍ଜନ ସାହୁ, ଜ୍ଞାନ ହୋତା, ସତ୍ୟାନାଶ, ଶାନ୍ତନୁ ପାଣିଗ୍ରାହୀ, ଦୁର୍ଗାମାଧବ ପଣ୍ଡା ଭଳି କବିମାନଙ୍କୁ ମଧ୍ୟ ଆମନ୍ତ୍ରିତ କରାଯାଉଥିଲା । ଖୁବ୍ ସଫଳତାର ସହ ଏହି କବିସମ୍ମେଳନମାନ ଆୟୋଜିତ ହେବାପରେ ଅନ୍ୟମାନଙ୍କ ସହିତ ସୁଶୀଲମଧ୍ୟ ଜଣେ ହାସ୍ୟବ୍ୟଙ୍ଗ କବିଭାବରେ ମାନ୍ୟତା ପ୍ରାପ୍ତ ହୋଇଗଲେ । ହଳଧର ସାଂସ୍କୃତିକ ସଂସଦ ଆୟୋଜିତ ରଙ୍ଗରଜନୀ ଉତ୍ସବରେ ସୁଶୀଲ ମିଶ୍ରଙ୍କୁ ହାସ୍ୟହୀରା ଉପାଧିରେ ଭୂଷିତ କରାଯାଇଥିଲା । ପରେପରେ ସୁଶୀଲ୍ ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳର ଆୟୋଜିତ ହେଉଥିବା କବିସମ୍ମେଳନରେ ଯୋଗଦେଇ ଜଣେ ରାଜ୍ୟସ୍ତରୀୟ ହାସ୍ୟକବିଭାବରେ ମାନ୍ୟତା ପାଇଲେ ।

ମୁଁ ଆଗ ବଲାଙ୍ଗିର ଯାଉଥିଲେ ସୁଶୀଲ ଘରେ ହିଁ ରହୁଥିଲି, ତାଙ୍କ ଘରେ ଖାଉଥିଲି, ଗପସପ କରି ରାତିର ତୃତୀୟ ପ୍ରହର ପର୍ଯ୍ୟନ୍ତ ଅନିଦ୍ରା ରହୁଥିଲି । ତାଙ୍କଘର ସାମ୍ନାରେ ବସି ଆଉକେତେକ ବନ୍ଧୁମାନଙ୍କ ଗହଣରେ ଗପ୍‌ଶପ୍ କେତେବେଳେ ଯେ ଚତୁର୍ଥପ୍ରହର ପ୍ରବେଶ କରିଯାଉଥିଲା, ଜଣାପଡୁ ନଥିଲା । ଜୀବନରେ ଏଭଳି ବନ୍ଧୁବତ୍ସଳ ମଣିଷ ନା ମୁଁ କେବେ ଦେଖିଥିଲି ନା ଦେଖିପାରିବି । ମୋର ଆର୍ଥିକ ଦୂରାବସ୍ଥା ବେଳେ ସୁଶୀଲ୍ ହିଁ ମୋ ଆଗରେ ଛିଡ଼ାହୋଇ ମୋ ସହ ସମଦୁଃଖୀ ହୋଇଥିଲେ । ମୋ ବ୍ୟକ୍ତିଗତ ଜୀବନର ଦୁଃଖଯନ୍ତ୍ରଣା ସହ ସେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତଥିଲେ । ତାଙ୍କ କବିପ୍ରତିଭାର ବିକାଶପାଇଁ ମୁଁ ସାମାନ୍ୟକିଛି କରିଥିଲେ ହେଁ ମୋ ଆର୍ଥିକ ଦୂରାବସ୍ଥାର ଦୂରୀକରଣରେ ତାଙ୍କ ବନ୍ଧୁତ୍ୱପୂର୍ଣ୍ଣ ସହାୟତା, ତାଠାରୁ ଢେର ଅଧିକ । ତାଙ୍କ ଦୁଇପୁଅ, ସ୍ୱାଗତ, ସ୍ୱସ୍ତିକଙ୍କ ବାହାଘରରେ ଉପସ୍ଥିତରହି ମୁଁ ଖୁବ୍ ଆନନ୍ଦିତ ହୋଇଥିଲି । ସ୍ୱସ୍ତିକଙ୍କ ବାହାଘର ବରଯାତ୍ରୀରେ ସାମିଲ ହେବା ଓ ବର୍ଷାରେ ନାଚିବା ମୋର ଏବେବି ମନେଅଛି । ପିଲାଛୁଆମାନେ ସଂସାର କରିବାପରେ ଆମ ସମ୍ପର୍କରେ କିଛି ଶିଥିଳତା ଆସିଥିଲେ ସୁଦ୍ଧା, ମୋର ତାଙ୍କ ବଲାଙ୍ଗିର ଘରକୁ ଯିବା କମିଯାଇଥିଲେ ସୁଦ୍ଧା ଆମ ବନ୍ଧୁତ୍ୱ ଠିକ୍ ସେଭଳି ଅତୁଟ ରହିଛି ।

ମୋର ସାଂସ୍କୃତିକ ଜୀବନରେ ଆଉଜଣେ ବନ୍ଧୁ ମେରୁଖୁଣ୍ଟ ଭଳି ଛିଡ଼ାହୋଇ ଦୀର୍ଘ ପନ୍ଦରବର୍ଷ ପର୍ଯ୍ୟନ୍ତ ମୋର ସମସ୍ତ କାର୍ଯ୍ୟକ୍ରମକୁ ସଫଳ କରିବାରେ ହୃଦୟଖୋଲା ସମର୍ଥନ କରିଥିଲେ, ସେ ହେଉଛନ୍ତି ଦଳେଇପଡ଼ାର ନୂତନ ଟେଣ୍ଟହାଉସ୍‌ର ମାଲିକ ତଥା ମୋର ଜିଲ୍ଲାସ୍କୁଲର ସହପାଠୀ ଶତ୍ରୁଘ୍ନଲାଲ ସାହା, ଯାହାଙ୍କୁ ମୁଁ ଘନ ବୋଲି ସମ୍ବୋଧନ କରି ଡାକେ । ସ୍କୁଲ ପଢ଼ିବାବେଳେ ଦଳେଇପଡ଼ାରେ ତାଙ୍କ ପାନଦୋକାନଟିଏ ଥିଲା, ଯେଉଁଠିକୁ ମୁଁ ବେଳେବେଳେ ତାଙ୍କ ସହ ଗପକରିବାକୁ ଯାଉଥିଲି, ମିଠାପୁଡ଼ିଆ ଖାଉଥିଲି । ଅନେକବର୍ଷ ପରେ ଆମ ଏକଷଠୀ ମେଟ୍ରିକ ବେଚ୍‌ର ସାଙ୍ଗମାନେ ଯେତେବେଳେ ବାର୍ଷିକସମାବେଶ ଆରମ୍ଭ କଲୁ, ସେବେଠାରୁ ଆମସମ୍ପର୍କ ପୁଣି ପୁନର୍ଜୀବନ ପାଇଲା । ସେତେବେଳେ ମୁଁ ପୁଭାଦମ୍ଭେ ସୃଷ୍ଟିସଂସ୍ଥାର ନାଟକ ପ୍ରଯୋଜନାରେ ମସ୍‌ଗୁଲ୍ ଥିଲି । ସୁନ୍ଦରସାଏ ନାଟକର ମଞ୍ଚ ପ୍ରଚଣ୍ଡ ବୈଶାଖୀଝଡ଼ରେ ଭୁଷୁଡ଼ିଯିବା ପରେ ମୋର ଦୋହଲି ଯାଇଥିବା ସାଂସ୍କୃତିକ ମେରୁଦଣ୍ଡକୁ ଘନ ହିଁ ସଳଖ କରିବାରେ ସକ୍ଷମ ହୋଇଥିଲେ । ମଞ୍ଚପାଖକୁ ଆସି ମୋତେ କହିଥିଲେ, 'ଦ୍ୱାରକା, ତମେ ନାଟକ କର, ଇ ମଞ୍ଚ ବନ୍ଧବାର୍‌ଟା ମୋର୍ ଉପ୍‌ରେ ଛାଡ଼ିଦିଅ । ଇ ବାବଦ୍‌ଥି ତମର୍ ଆଉ ଚିନ୍ତା କର୍‌ବାର୍ ନାହିଁ ନା ।' ଘନଙ୍କ ଏଭଳି

ଭରସା ଖାଲି କଥାରେ ନୁହେଁ, ଆଜିଯାଏଁ କାମରେ ବି ଦେଖାଇଚାଲିଛନ୍ତି । ସୃଷ୍ଟିର ପରବର୍ତ୍ତୀ ନାଟକଗୁଡ଼ିକ ଯନ୍ତ୍ରଣା, ଭ୍ରାନ୍ତି, ବ୍ରାଣ୍ଡାର୍ ବାଏର୍, କରମ୍‌ସାନୀ, ଚାରିବର୍ଷର ହଳଧର ଜୟନ୍ତୀ ଉତ୍ସବ, ଗଙ୍ଗାଧର ମଣ୍ଡପର ପ୍ରତ୍ୟେକ କାର୍ଯ୍ୟକ୍ରମରେ ଘନ ହିଁ ମଞ୍ଚସଜ୍ଜାର ସମସ୍ତଦାୟିତ୍ୱ ବହନ କରିଥିଲେ ବିନା ମୂଲ୍ୟରେ. 'ତମେ ଅଛ ବଲି' ନାଟକ ପର୍ଯ୍ୟନ୍ତ ସେ ଏହି ସହଯୋଗ ପ୍ରଦାନକରି ତାଙ୍କ ଉଦାରହୃଦୟର ପରିଚୟ ପ୍ରଦାନ କରିଥିଲେ । ହଳଧର ସାଂସ୍କୃତିକ ପରିଷଦର ସଭାପତିଭାବରେ ହଳଧର ଜୟନ୍ତୀର ଅର୍ଦ୍ଧେକ ଖର୍ଚ୍ଚ ଘନ ହିଁ ଉଠାଉଥିଲେ । ସାମାନ୍ୟ ପାନଦୋକାନୀରୁ ବ୍ୟବସାୟ ଆରମ୍ଭକରି ଆଜି ନୂତନ ଟେଣ୍ଟହାଉସ୍ ପରିଚାଳନା ସହ ଅନ୍ୟାନ୍ୟ ବ୍ୟବସାୟକରି ସମ୍ବଲପୁରର ସହରର ଜଣେ ପ୍ରତିପତ୍ତିଶାଳୀ ବ୍ୟକ୍ତିତ୍ୱ ଭାବରେ ଏବେ ସେ ପରିଚିତ । ମଝିରେ ସ୍ୱାସ୍ଥ୍ୟଗତ କାରଣରୁ ଦୁର୍ବଳ ଜଣାପଡୁଥିଲେ କିନ୍ତୁ ଦୃଢ଼ ମନୋବଳ ତାଙ୍କୁ ସୁସ୍ଥ କରିପାରିଥିଲା । ମୋର ସୁଖଦୁଃଖରେ ଘନ ସବୁବେଳେ ମୋତେ ସହଯୋଗର ହାତ ବଢ଼ାଇଛନ୍ତି । ଏଭଳି ବନ୍ଧୁ ଭାଗ୍ୟରେ ଥିଲେ ମିଳନ୍ତି । ହଳଧରଙ୍କ କବିପ୍ରତିଭାର ବିକାଶକ୍ଷେତ୍ରରେ ଘନଙ୍କ ସହଯୋଗ ମଧ୍ୟ ବହୁପରିମାଣରେ ରହିଛି ।

ଅନ୍ୟ ଜଣେ ବନ୍ଧୁପରି, ବଡ଼ଭାଇ ପରି ମୋ ଜୀବନ ମଧ୍ୟକୁ ଆସି କିଛିକାଳ ପାଇଁ ମୋର ବନ୍ଧୁ, ଦାର୍ଶନିକ ଏବଂ ମାର୍ଗଦର୍ଶକ ଭାବରେ ଉଭା ହୋଇଥିଲେ, ସେ ହେଉଛନ୍ତି ଡ. ଶ୍ୟାମସୁନ୍ଦର ଧର, ଓରଫ୍ ବାରୁଦା । ମୋ ବି.ଏ. ପରୀକ୍ଷା ଦେବାବେଳେ ବନ୍ଧୁ ପ୍ରଦୀପ ରାୟଙ୍କ ଘରେ ରହିବା ସମୟରୁ ବାରୁଦାଙ୍କ ସହିତ ମୋର ପରିଚୟ । ନାଟକ, ସଂଗୀତ ତଥା ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରତି ବିଶେଷ ରୁଚିରଖୁଥିବା ହେତୁ ଆମଦୁହିଙ୍କ ସମ୍ପର୍କ କ୍ରମଶଃ ଦୃଢ଼ ହେବାରେ ଲାଗିଲା । ତାଙ୍କ ମାଧ୍ୟମରେ ସମ୍ବଲେଶ୍ୱରୀ ଯୁବକ ସଂଘ ଆୟୋଜିତ ନୂଆଁଖାଇଭେଟ୍ କାର୍ଯ୍ୟକ୍ରମପାଇଁ ପ୍ରାରମ୍ଭିକ ସଂଗୀତ ସଂଯୋଜନା କରିଥିଲି, କେନ୍ଦ୍ରକରୁ ଦୀର୍ଘ ସାତଆଠ ବର୍ଷଯାଏଁ ବଡ଼ବଜାରର ଏହି କାର୍ଯ୍ୟକ୍ରମ ସହ ଜଡ଼ିତ ରହିଥିଲି । ପରେ ଏକାଅଣୀରେ ସୃଷ୍ଟି ସଂସ୍ଥାର ସଭାପତିଭାବରେ ରହିବାକୁ ମୋର ଅନୁରୋଧକୁ ରଖି ଆମସମ୍ପର୍କରେ ନୂତନ ଦିଗନ୍ତ ଜନ୍ମନେଲା । ଆମେ ଉଭୟ ବନ୍ଧୁ ସଂଗୀତ କାର୍ଯ୍ୟକ୍ରମ ପରିବେଷଣ କରିଛୁ । ଅନେକ ମଞ୍ଚରେ ନାଟକ ଓ ସଂଗୀତ କାର୍ଯ୍ୟକ୍ରମକୁ ନେଇ ଆମେ ଏକତ୍ରିତ ହୋଇଛୁ, ସଫଳତା ପାଇଛୁ । ଆମ ସଫଳତା ଏମିତି ଶୀର୍ଷକୁ ପହଞ୍ଚିଯାଇଥିଲା ଯେ ସମ୍ବଲପୁରର ଲୋକେ ଆମକୁ ଭିନ୍ନନଜରରେ କେବେ ଦେଖୁନଥିଲେ । ସୃଷ୍ଟି, ସମ୍ବଲପୁର ସହରର ଏକ ଅଗ୍ରଣୀ ନାଟ୍ୟସଂସ୍ଥା ଭାବରେ ନିଜକୁ ସ୍ଥାପିତକରିବାରେ ବାରୁଦାଙ୍କ ଅବଦାନ

ଅନସ୍ୱୀକାର୍ଯ୍ୟ । ଉଖୀ, ଭୂଖା, ବେଗମ୍, ବାଈାର ବାଏର୍, କରମ୍‌ସାନୀ ଆଦି ନାଟକର ମଞ୍ଚସାଫଲ୍ୟରେ ବାରୁଦାଙ୍କ ଅଭିନୟ କିଛିକାଂଶରେ ଦାୟୀ ବୋଲି କୁହାଯାଇପାରେ । ବାରୁଦାଙ୍କ ଅଭିନୟ ଦକ୍ଷତାକୁ ନେଇ ମୁଁ ଅନେକ ନାଟକରେ ତାଙ୍କପାଇଁ ଚରିତ୍ର ସୃଷ୍ଟି କରିଛି, ଯାହା ପରବର୍ତ୍ତୀକାଳରେ ମଞ୍ଚାୟନ ସମୟରେ ସଫଳ ପ୍ରମାଣିତ ହୋଇଛି । ଆମ ଦୁଇଜଣଙ୍କର ଅଭିନୀତ ବ୍ରଜେନ୍ଦ୍ର ନାୟକ ରଚିତ ସମ୍ବଲପୁରୀ ନାଟକ 'ବୁର୍‌ତି' ସବୁଠାରୁ ବଳି ସଫଳ ନାଟକ । ମୁଁ ସଂଚାର ବାହାକ ଓ ବାରୁଦା ମୋର ପାଳିଆଚରିତ୍ରରେ ଅଭିନୟକରିବା ମୋ ନାଟ୍ୟଜୀବନର ଗୋଟିଏ ସଫଳତମ ପର୍ଯ୍ୟାୟ । ଆମ ଦୁଇଜଣଙ୍କ ଅଭିନୟଗତ ସଂହତି ଯୋଗୁଁ ସାରା ଓଡ଼ିଶାର ଦର୍ଶକ ଏ ନାଟକକୁ ସାଦରେ ଗ୍ରହଣ କରିଥିଲେ । ବାଲେଶ୍ୱର, ରାଉରକେଲା, ଭୁବନେଶ୍ୱର ଆଦି ସହରରେ ଏ ନାଟକକୁ ଦର୍ଶକ ମନଭରି ଉପଭୋଗ କରିଥିଲେ । ବାରୁଦା ମଧ୍ୟ ବେଳଅବେଳରେ ମୋର ବ୍ୟକ୍ତିଗତ ଜୀବନରେ ମୃତ୍ୟୁସଂଜୀବନୀ ଢାଳି ମୋତେ ସତେଜ୍ କରିଛନ୍ତି । ଯେତେବେଳେ ବି ନୈରାଶ୍ୟ ମୋ ଗତାନୁଗତିକ ଜୀବନ ଉପରେ ସବାର୍ ହୋଇଯାଏ, ମୋତେ ବାରୁଦାଙ୍କ ଘର ଦରଜା ଖଟ୍‌ଖଟ୍ କରିବାକୁ ପଡୁଥିଲା । ସମୟସମୟରେ ଆମ ଦୁହିଙ୍କ ସମ୍ପର୍କରେ ଫାଟ ସୃଷ୍ଟିପାଇଁ କିଛି ଖଳନାୟକଙ୍କ ନଜର ପଡିଥିଲା, ହେଲେ ସମୟବିଶେଷରେ ସେମାନେ ଆମ ସମ୍ପର୍କଡୋରିର ଶକ୍ତପଣ ନିକଟରେ ହାର ମାନିଥିଲେ, ବିସ୍ତାରିତ ହୃଦୟନେଇ ଏବେବି ଆମେ ପୂର୍ବଭଳି ଅଛୁ, ରହିବୁ ।

ପିଲାମାନେ ବଡ଼ବଡ଼ ହେଲାପରେ ନୈତିକ ଦୃଷ୍ଟିରୁ ସେମାନଙ୍କ ବାହାଘର ଦାୟିତ୍ୱ ପିତାମାତାଙ୍କ ଉପରେ ନ୍ୟସ୍ତ ଥାଏ । ତେର ମସିହାରେ ଝିଅ ପୁନମ୍‌ର ବାହାଘର ଠିକଣା ହେଲା ନଭେମ୍ବର ମାସରେ । ତିନିଚାରି ଘର ଦେଖାଶୁଣା କରିବାପରେ ସୋନପୁରସ୍ଥିତ ଖ୍ୟାତିସମ୍ପନ୍ନ ରାୟଗୁରୁ ପରିବାରରେ ତା'ର ବାହାଘର ଠିକ୍‌ହେଲା । ତରଭା ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବରେ ଅବସର ନେଇଥିବା ପଦାର୍ଥ ବିଜ୍ଞାନର ଅଧ୍ୟାପକ ନାରାୟଣପ୍ରସାଦ ରାୟଗୁରୁ ହେଉଛନ୍ତି ପୁନମ୍‌ର ଶ୍ୱଶୁର ଏବଂ ତାଙ୍କ ସାନ ପୁଅ ଦେବଜ୍ୟୋତି ରାୟଗୁରୁଙ୍କ ସହ ପୁନମ୍‌ର ବାହାଘର ସମ୍ପନ୍ନ ହେଲା ତେର ମସିହା ନଭେମ୍ବରମାସରେ । ନିର୍ବିଘ୍ନରେ ସମାହିତ ଏହି ବାହାଘର ଉତ୍ସବ ବେଶି ଆଡମ୍ବରପୂର୍ଣ୍ଣ ହୋଇ ନଥିଲା, ତଥାପି, ନିରାଡମ୍ବର ବୋଲି କୁହାଯାଇପାରିବ ନାହିଁ । ଶକ୍ତି ଅନୁସାରେ ସମସ୍ତ ଆୟୋଜନ କରାଯାଇଥିଲା ନାରୀସେବା ସଦନ ପ୍ରାଙ୍ଗଣରେ । ନାରାୟଣ ବାବୁ, ସ୍ୱଭାବରେ ଖୁବ୍ ଭଦ୍ର, ମେଳାପୀ, ଏଭଳି ଜଣେ ସମଭାବାପନ୍ନ

ସମୁଧୀ ପାଇବା ମୋର ଭାଗ୍ୟର କଥା । ପୁନମ୍ ମାଧମରେ କଳାରମାଟି ସୋନପୁରସହ ଯୋଡ଼ିହେବା ମୋ ପାଇଁ ସୌଭାଗ୍ୟର ବିଷୟ । ପୁନମ୍ ଗୋଟିଏ ଝିଅର ମାଁ ହେଲାଣି, ନାତୁଣୀ ମୁନ୍ ସ୍କୁଲ୍ ଗଲାଣି, ଏବେ ପୁନମ୍ ଜୟନ୍ତପୁର ହାଇସ୍କୁଲର ପ୍ରଧାନ ଶିକ୍ଷକର ଦାୟିତ୍ୱ ସମ୍ଭାଳୁଛି ।

ତାର୍ ଠିକ୍ ଦୁଇବର୍ଷ ପରେ ପୁଅ ମୁଦ୍ରାଯୋର ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ରରେ ଡାକ୍ତରଭାବରେ ନିଯୁକ୍ତିପାଇବା ପରେ ତା'ପାଇଁ ମଧ ଦେଖାଚାହାଁ ଚାଲିଲା । ଆମ ରଚି ଅନୁସାରେ ବୋହୂଟିଏ ପାଇଲୁ । ସମୁଦୀ ଆଶୁତୋଷ ନାୟକ ଘର ରେଙ୍ଗାଲି ପାଖ ଗଣେଶ ନଗରରେ, ସେତେବେଳେ ବଡମାଲ ହାଇସ୍କୁଲର ପ୍ରଧାନଶିକ୍ଷକ ଭାବରେ କାର୍ଯ୍ୟରତ ଥିଲେ, ଏବେ ଅବସର ନେଲେଣି । ଶିକ୍ଷକତା ସହ ଚାଷ କାର୍ଯ୍ୟରେ ମଧ ରଚିଅଛି ତାଙ୍କର । ତା'ର ଶାଶୁ ମଧ ରେଙ୍ଗାଲୀ ଉପ୍ରା ସ୍କୁଲର ଶିକ୍ଷୟିତ୍ରୀ । ବୋହୂ ନିଜେ ବଡମାଲ ସ୍ଥିତ ହୀରମା ହାଇସ୍କୁଲର ଶିକ୍ଷୟିତ୍ରୀ । ମୋତେ ସବୁବେଳେ ଭଲଲାଗେ ନିରାଡମ୍ବର ଜୀବନଶୈଳୀ । ସମୁଧୀ ଆଶୁତୋଷ ନାୟକ ମଧ ସେଇଭଳି ମାନସିକତାର ମଣିଷ । ତାଙ୍କ ଏକମାତ୍ର ଝିଅ, ସୁଶ୍ରୀବାଳା ସହ ପଞ୍ଚମର ବାହାଘର ସ୍ଥିର ହେଲା ଆଠ, ମାର୍ଚ୍ଚ ମାସରେ । ଧନୁପାଲିର ଆଦିତ୍ୟ ମଣ୍ଡପକୁ ଆମଘରୁ ବରଯାତ୍ରୀ ଯାଇଥିଲା, ପଞ୍ଚମ ସେତେବେଳକୁ ମୁଦ୍ରାଯୋରରୁ ବଦଳିହୋଇ କଳାହାଣ୍ଡିର ଧର୍ମଗଡ଼ ମଣ୍ଡଳର ବେହେରା ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ବଦଳି ହୋଇସାରିଥାଏ । ଗଣେଶନଗରରୁ ଆଶୁତୋଷବାବୁ ସପରିବାର ଆସି ସେଠାରେ ବାହାଘର ସମାପନ କରିଥିଲେ । ପରଦିନ ଆମପକ୍ଷରୁ ସ୍ଥାନୀୟ ନାରୀସେବା ସଦନଠାରେ ଅଭ୍ୟର୍ଥନା ଭୋଜିର ଆୟୋଜନ କରାଯାଇଥିଲା । ଏହି ଉଭୟ ବାହାଘରର ଆୟୋଜନରେ ବନ୍ଧୁ ଘନଙ୍କ ସହଯୋଗ ଭୁଲିବାର ନୁହେଁ । ମୋର ଅଧିକାଂଶ ଶ୍ରମ ସେ ଅନାୟାସରେ ଲୋକଲଗାଇ ଉଠାଇ ନେଇଥିଲେ । ପଞ୍ଚମର ମଧ ଗୋଟିଏ ଝିଅ 'ସ୍ୱରା', ଏବେ ସେ ମଧ ସ୍କୁଲ୍ ଗଲାଣି ।

ପୁଅଟିଏ, ଝିଅଟିଏର ସଂସାରରେ ଏବେ ଜ୍ୱୋଇଁ ଜଣେ, ବୋହୂ ଜଣେ ଆସିସାରିଲେଣି । ଦି'ଜଣଙ୍କର ଝିଅ ଗୋଟିଏ ଗୋଟିଏ ଆସି ଆମକୁ ବାବା, ମାମା ବୋଲି ସମ୍ବୋଧନରେ ଆବୋରି ନେଇସାରିଲେଣି, ସେମାନଙ୍କ ମଧୁର ମଧୁର ବଚନରେ ଆମ ଘର ବାତାବରଣ ଉଚ୍ଛୁଳିସାରିଲାଣି, ଆମେଦୁହେଁ ବର୍ତ୍ତମାନ ସେମାନଙ୍କ ନାଆରେ ସବାର୍, ତଥାପି, ଦାୟିତ୍ୱର ଅନ୍ତ ନାହିଁ, ଘରସ୍ୱର୍ଗକୁ ସଜାଡ଼ିବାରେ ପ୍ରତ୍ୟେକ ମୁହୂର୍ତ୍ତ ଉପଯୋଗ ହେଉଛି, ସମୟସମୟରେ କଲମ ଚାଲୁଛି,

ବହିପତ୍ରର ପୃଷ୍ଠା ମେଲାଯାଉଛି, ନିଜ ବାହାଘରର ଫଟୋଆଲବମ୍ ଦେଖି ସ୍ମୃତିକୁ ନିକଟତର କରିବାର ଅପଚେଷ୍ଟା କରାଯାଉଛି, ବିଗତଦିନର ସୁବର୍ଣ୍ଣମୁହୂର୍ତ୍ତ ସବୁକୁ ସାଗରବେଳାରେ ମୁକ୍ତା ସାଉଁଟିବା ଭଳି ସାଉଁଟିବାକୁ ହେଉଛି, ଅତୀତର ସାହାରାରେ ଭବିଷ୍ୟତର ଚିତ୍ରପଟ ଆଙ୍କିବାକୁ ହେଉଛି । ସମ୍ଭବ ନହେଲେ ବି ଆଗର ଘଟଣାସବୁକୁ ପୁଣିଥରେ ଘଟେଇବାକୁ ବିବେକ ନିର୍ଦ୍ଦେଶ ଦେଉଛି । ସତରେ କଣ ଏସବୁ ସମୟର ଖେଳ ନା ଖେଳର ସମୟ ।



ସମୟ ଖରାପ, ତୁମର ଭାଗ୍ୟଦୋଷ ଅଛି, ଏଭଳି କପୋଳକଳ୍ପିତ କଥାସବୁକୁ ମୁଁ ମୋଟେ ବିଶ୍ୱାସ କରେ ନାହିଁ । ଯେତେବେଳେ ଯେଉଁ ଘଟଣା ଘଟିବାର ଥିବ, ସେ ନିଶ୍ଚୟ ଘଟିବ, ଆମେ ଯେତେ ଚେଷ୍ଟାକଲେ ସୁଦ୍ଧା ତାକୁ ରୋକିପାରିବା ନାହିଁ । ତେବେ ଆଗରୁ ସତର୍କତା ଅବଲମ୍ବନକରିବା ଆମ ପ୍ରାଥମିକ କର୍ତ୍ତବ୍ୟ, ସେଥିରେ ହେଳା ହେଲେ, ଯେ କୌଣସି ଘଟଣା ବା ଦୁର୍ଘଟଣା ଘଟିବ ହିଁ ଘଟିବ । ମୋର ଅବସରନେବା ବର୍ଷ ସେଭଳି କିଛି ଘଟଣା ଘଟିଥିଲା, ଯାହା ଏ ଯାଏଁ ମୋତେ ବ୍ୟଥିତ କରି ରଖୁଛି । ଷୋହଳ, ଫେବୃଆରୀରେ ମୁଁ ପଲ୍ଲୀଶ୍ରୀ ମହାବିଦ୍ୟାଳୟ, ଚିଚିଣ୍ଡାରୁ ଅବସରଗ୍ରହଣ କଲି । ଆଗରୁ କହିଛି, ମୋ କଲେଜକୁ ମୁଁ ପ୍ରାୟ ସତୁରୀ-ସତୁରୀ ଶହେ ଚାଳିଶ କିଲୋମିଟର ଯିବାଆସିବା କରୁଥିଲି । ଅବସରପରେ ହଠାତ୍ ଏଭଳି ଦୁରୂହଯାତ୍ରାରୁ ମୁକ୍ତି ମିଳିଥିଲା ସତ, ହେଲେ ଦୀର୍ଘବର୍ଷର ଅଭ୍ୟାସ ହଠାତ୍ ବନ୍ଦହୋଇଯିବାରୁ ଶରୀରରେ ଥିବା ଯେତେ ରୋଗବୈରାଗ ସମସ୍ତେ ଯେମିତି ମୋର ଅବସର ସମୟକୁ ଅପେକ୍ଷା କରିଥିଲେ ଆକ୍ରମଣ କରିବାକୁ, ମୁଁ ଯେତେ ପ୍ରତିରୋଧ କରିବାର ଚେଷ୍ଟାକଲେ ମଧ୍ୟ ସେମାନଙ୍କ ଆଗରେ ପରାଜୟ ସ୍ୱୀକାର କରିଥିଲି ।

ମାର୍ଚ୍ଚ, ଅପ୍ରେଲ ସୁରୁଖୁରୁ ଭାବରେ ଅତିବାହିତ ହୋଇଯିବା ପରେ ମେ'ର ଟାଣଖରାକୁ ସମ୍ମୁଖୀନ କରିପାରି ନଥିଲି । ତିଥି ଥିଲା, ସାବିତ୍ରୀ ଅମାବାସ୍ୟା, ଦ୍ୱିପହର ପୂଜାରୀତି, ବିଭିନ୍ନ ଘରର ମହିଳାମାନେ ଆସି ପୂଜାରେ ଯୋଗ ଦେଇଥିଲେ । ପୂଜା ଚାଲିଥିବାବେଳେ ମୁଁ ମୋର ଆଶ୍ୱସ୍ତିରେ ମଧ୍ୟାହ୍ନଭୋଜନ ସାରି ବିଶ୍ରାମ ନେଉଥିଲି । ପୂଜାବିଧି ସମାପନପରେ ବନ୍ଦାପନା କାର୍ଯ୍ୟକ୍ରମ, ଥାଳିରେ ଭର୍ତ୍ତି ଫଳମୂଳ, ଦେଶୀବିଦେଶୀ ରସାଳଆମ୍ବ, ଖଜୁର ସହ ଦେଶୀ ଖଜୁରୀ, ନାଗପୁରିଆ ସେଓ, ଅଙ୍ଗୁର, ଭୁସାବଲୀ ପାଚିଲା କଦଳୀ, ତାଜା ନାଲି ଟହଟହ ତରଭୁଜ, ଗୋଟେ ଦି'ଟା କଳା ମଶ୍‌ମଶ୍ ଜାମୁକୋଳି, ବରଫଭଳି ଦେଖାଯାଉଥିବା ତାଲସଜ, ତା'ସହ

ଦହିମୁଗର ଫେଣ୍ଟାଫେଣ୍ଟି ଦେଶୀ କସ୍ଟାର୍ଡ, ଶେଷକୁ କାଜୁ, ନଡ଼ିଆକୋରାର ଭାସମାନ ନୌକାତଳେ ଲସ୍‌ଲସ୍ ଲସିର କୂପ, ଏତିକି ସାମ୍ନାରେ ରଖାହେବା ପରେ ସହଧର୍ମିଣୀଙ୍କ ଯଥାବିଧି ବନ୍ଦାପନା, ସିନ୍ଦୂର, ତିଳକ, ଚନ୍ଦନରେ ସ୍ୱାମୀଙ୍କ ମଥା ଏକଦମ୍ ଶୀତଳ, ଟଗର ଫୁଲମାଳର ସ୍ପର୍ଶରେ ହଠାତ୍ ଅନୁଭବରେ ଆତ୍ମଘୋଷିତ ଈଶ୍ୱର, କିଛି ମୁହୂର୍ତ୍ତପାଇଁ କେବେ ମିଛକହି ନଥିବା କାଠୁରିଆ ସତ୍ୟବାନଆଗରେ ମୁଣ୍ଡିଆଟିଏ ମାରି ସମ୍ମାନପ୍ରଦର୍ଶନ ସମୟରେ ବ୍ରହ୍ମର୍ଷି ଭାବରେ 'ବୁଢ଼ୀ ହେଇଥ' ବୋଲି ଆଶୀର୍ବାଦ ପ୍ରଦାନ, ପ୍ରତ୍ୟୁତ୍ତରରେ ବୁଢ଼ୀହେବାକୁ ଆଉ କଣ ବାକି ଅଛିର ରେଡିମେଡ୍ ଉତ୍ତରଶୁଣି ଖାଇବା ପ୍ରକ୍ରିୟା ଆରମ୍ଭ । ମୁଁ ଖାଇଲେଯାଇ ତାଙ୍କ ଉପବାସର ଅନ୍ତଘଟିବ ବୋଲି ଜାଣି ଖାଇବାର ଆଗ୍ରହ ଦ୍ୱିଗୁଣିତ ହୋଇଯାଉଥିଲା । ଏଇ ମାତ୍ର ଘଣ୍ଟାଏ ଆଗରୁ ଦହିପଖାଳ, ଭେଣ୍ଡି ଭଜା, ଚଣାବାଇଗଣ ତରକାରୀ, ମୁଗଡାଲିର ଝୋଳ ସମ୍ମିଶ୍ରିତ ମଧ୍ୟାହ୍ନଭୋଜନ ସରିଥିଲା, ପୁଣି ଆଖିସାମ୍ନାରେ ସ୍ୱାଦିଷ୍ଟ ଫଳମୂଳର ଆକର୍ଷଣୀୟ ଆପ୍ୟାୟନ, ନଖାଇ କିଏ ବା ରହିପାରିବ ! ଭୋଜନ ଆରମ୍ଭ ହେଲା, ଛୋଟଛୋଟ ଫଳରୁ ବଡ଼ବଡ଼ ରସାଳ ଆମ୍ବ, ଦହି ସର୍ବର୍ ଲସ୍‌ସି ସହ ବତୁରାମୁଗ ଓ ଦହିର ମଧୁରମିଳନର ସୁସ୍ୱାଦୁ ମେନ୍ୟୁ, ତରଭୁଜର ମିଷ୍ଟଭୋଜ, ପୁଣି ଲେଡିର ସତୁଷ୍ଟ ଶୋଷଣ, ସମସ୍ତେ ଉଦରକୁ ଯାଇ ଶାନ୍ତିରେ ସିନା ସହାବସ୍ଥାନ କରନ୍ତେ, ଏମିତି ବିଶୃଙ୍ଖଳାକଲେ ଶରୀରରୂପକ ଯନ୍ତ୍ରଟି ଚାଲିବ କେମିତି !! ଥାଳୀକୁ ସମ୍ପୂର୍ଣ୍ଣ ଭାବରେ ଗ୍ରାସ ନକରିଥିଲେ ହେଁ ଦୁଇ ତୃତୀୟାଂଶ ଉଦରସ୍ଥ ହେବା ପୂରାପୂରୀ ସତକଥା । ଖାଇସାରିବା ପରେ ପାଖପଲଙ୍କରେ ଦେହଟାକୁ ପକେଇ ଦେଲି କିଛିସମୟ ବିଶ୍ରାମପାଇଁ । ହେଲେ, ଆଖିରେ ନିଦନାହିଁ, ଦେହରେ ବଳନାହିଁ । ନା ଖଟରେ ପଡିହେଉଛି, ନା ଠିଆଠିଆ ଚଲାବୁଲା କରି ହେଉଛି । ସନ୍ଧ୍ୟାଗତ ପରେ ଦେହ ବିଗିଡ଼ିବା ଆରମ୍ଭହେଲା, ବାନ୍ତି ବାନ୍ତି ଲାଗୁଛି, ଅଥଚ ବାନ୍ତି ହେଉନାହିଁ, କେତେ ଇନୋ, ଲୁଣଚିନି ପାଣି, ଜିନଟେକ୍ସ, ସମସ୍ତେ ଏ ଲଢ଼େଇରେ ପରାସ୍ତ ହୋଇଗଲେ । ଏସିଡିଟି ଓ ଗେସ୍ଟ୍ରିକ, ସଙ୍ଗବଦ୍ଧ ଭାବରେ ଆକ୍ରମଣକରି ମୋତେ ଲହୁଲୁହାଣ କରିପକାଇଲେ । ବାନ୍ତି ହୋଇଯାଇଥିଲେ ଭଲ ହୋଇଯାଇଥାନ୍ତି, ହେଲେ ଯେତେ ଆଙ୍ଗୁଠିକୁଞ୍ଚିଲେ ମଧ ଭିତରୁ ଡମ୍ଫନାଗ ବାହାରିବାକୁ ନରାଜ, ବଦଳରେ ମୋର ଶରୀରକୁ ସମ୍ପୂର୍ଣ୍ଣ ଭାବରେ କରାୟତ୍ତ କରିବାରେ ସଫଳହୋଇଗଲେ ସେମାନେ । ସେଇ ରାତି, ମୁଁ ଘରର କାହାକୁ ଶୋଇବାକୁ ଦେଇ ନଥିଲି, କିଛିଗୋଟାଏ ଦୁଶ୍ଚିନ୍ତା ମୋର ମଗଜକୁ ସମ୍ପୂର୍ଣ୍ଣ ଆଚ୍ଛାଦିତ କରିପାକଇଥାଏ । ରାତି ବାରଟା, ଗୋଟାଏ

ହୋଇଗଲା, ଖଟରେ ପଡ଼ି ରହିଦେଲା ନାହିଁ ଏ ବର୍ବର ଏସିଡିଟି । ବାଧହୋଇ ବଡ଼ଭାଇଙ୍କୁ କହିଲି, ବାନ୍ତି ହେଲାନି, ପେଟ ଫୁଲିଛି, ମୋତେ ଦୟାକରି ଡାକ୍ତରଖାନା ନେଇଯାଅ, ଡାକ୍ତରଙ୍କୁ ଭେଟ କରାଇଦିଅ । ଦାଦା ତାଙ୍କଗାଡ଼ି ବାହାର କଲେ, ସିଧା ସଦରଡାକ୍ତରଖାନା ନେଇଗଲେ । ମୁଁ ଗଲାବେଳେ ଅନୁଭବ କଲି, ମୋତେ ଧିରେଧିରେ ଭଲ ଲାଗିଆସୁଥିଲା । ଡାକ୍ତରଖାନାର ଜରୁରୀକାଳୀନ ଦାୟିତ୍ୱରେ ଥିବା ଡାକ୍ତର ମୋର ଅଭିଯୋଗର ଉତ୍ତରରେ ସେଇ ପାନ୍ ଡି ଓ ଡାଇଜିନ ସିରପ୍ ଲେଖିଦେଲେ, ଯାହା ସେଇ ଡାକ୍ତରଖାନାକୁ ଲାଗିଥିବା ଔଷଧଦୋକାନରୁ ମିଳିଯାଇଥିଲା । ମୋତେ ଔଷଧ ଖାଇବାପୂର୍ବରୁ ହିଁ ଭଲ ଲାଗୁଥିଲା । ଘରେ ପହଞ୍ଚି ଖଟରେ ପଡିବାମାତ୍ରେ ନିଦମାଉସୀ ତାଙ୍କ କୋଳକୁ ନେବାର ଦୟା ପ୍ରଦର୍ଶନ କରିଥିଲେ । ତେବେ, ବାନ୍ତି ହୋଇ ନ ଥିବାରୁ, ଉଦର ଭିତର ଫଳମୂଳ, ଦହି ତରଭୁଜର ସମାହାର ଦୃଗୂର ଭାବାର୍ଥ ଏକାଦିନେ ଜଟିଳ ବାକ୍ୟପରି ତୁଟି ନଥିଲା । କିଛିଦିନ, କିଛିରାତି ଏଇ ରୋଗ ମୋ ଆଖିରୁ ନିଦ ଚୋରାଇ ନେଇଗଲା, ଏମିତି ଘଡିସନ୍ଧି ସମୟରେ ପୁଅ ପାଖରେ ନଥିଲା, ପିଜି ପାଇଁ ସେ ଭୁବନେଶ୍ୱରରେ ପ୍ରସ୍ତୁତି ଚଳାଉଥିଲା । ରାତି ଅଧିରେ ତାକୁ ଫୋନ୍‌କରି ହଇରାଣ କରୁଥିଲି, ତାଠାରୁ ଗାଳିଖାଉଥିଲି, ନିଦ ଆସୁ ନଥିବାରୁ ରାତିରେ ସମସ୍ତେ ଶୋଇପଡୁଥିଲେ, ଅଥଚ ମୁଁ ଅନିଦ୍ରାରେ କବାଟଖୋଲି ରାସ୍ତାରେ ଚଲାବୁଲା କରୁଥିଲି । ମୋ ସହ ସହଧର୍ମିଣୀ ମଧ୍ୟ ବିନିଦ୍ର ଅବସ୍ଥାରେ ରାତି କାଟୁଥିଲେ । ପରେପରେ ମୋର ଅମୋଘ ଅସ୍ତ୍ର ପ୍ରୟୋଗକରି ଏଭଳି ଆକ୍ରମଣର ପ୍ରତିହତ କରିପାରିଲି । ଦ୍ୱିପହରବେଳା ନ ଶୋଇ କାଗଜକଲମର ସଦ୍‌ବ୍ୟବହାର କରି ଲେଖା ଉପରେ ଲେଖା ଲେଖିବାକୁ ଲାଗିଲି । ନାଟକସମ୍ପର୍କିତ ସମସ୍ତ ଅନୁଭୂତିକୁ ନେଇ ତିରିଶ୍‌ରୁଅଧିକ ଲଘୁରଚନା ଲେଖିଲି, ଏବେ ସେଗୁଡ଼ିକ ସଙ୍କଳିତ କରି ପୁସ୍ତକଟିଏ ପ୍ରକାଶ କରିବାର ଉଦ୍ୟମ କରୁଛି । ଏପରି କି କ୍ଷୁଦ୍ର ନାଟକଟିଏ ବି ଲେଖି ପକାଇଲି, ନାଁ ଦେଲି ‘ବୟସ ଷାଠିଏ’ । ରାତିରେ ନିଦବଟିକା ଥାଇ ସୁଦ୍ଧା ମୋ’ପାଖରେ ଥିବା ଅନେକ ସମ୍ବଲପୁରୀ ଓ ଓଡ଼ିଆ ପୁସ୍ତକ ପାଠକରି ନିଦମାଉସୀକୁ ମାନସପୃଷ୍ଠକୁ ଡାକିଆଣୁଥିଲି, ଆରାମ୍‌ରେ ସକାଳ ଚାରିଟା ବାଜିଯାଉଥିଲା । ସକାଳ ହେଲାମାନେ ମର୍ଣ୍ଣିଂଓ୍ୱାକ୍‌ର ସମୟ ହୋଇଯାଉଥିଲା । ପେଣ୍ଟସାର୍ଟ ଗଳେଇ, ଯୋତାମୋଜା ଲଗାଇ ପ୍ରସ୍ତୁତ ହୋଇପଡୁଥିଲି ଧନୁପାଲିରୁ ଖଣ୍ଡୁଆଳ, ପୁଣି ଖଣ୍ଡୁଆଳରୁ ଧନୁପାଲି, ଏପରି ଛ’ କିଲୋମିଟର ଚାଲିବାଭିତରେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଥିଲି । ବହିପଢ଼ା ଏକ ଔଷଧି,

ପ୍ରଥମକରି ଅନୁଭବିଲି, ତାକୁ କାର୍ଯ୍ୟକାରୀ କଲି, ସଫଳତା ପାଇଲି, ମୋ ପାଇଁ ସମସ୍ତଙ୍କୁ ହଇରାଣହେବାରୁ ବଞ୍ଚିତ କଲି ।

ଏବେ ବି ଗେଷ୍ଟ୍ରିକ୍ ବେଳେବେଳେ ଛାତିକୁ ବିନ୍ଧାଣିମାଇଲା ଭଳି ବିନ୍ଧୁଛି । ତେବେ ତା'ପାଇଁ ଆଗରୁ କହିଦେଉଛି, ମୋତେ ଖାଲି କଦଳୀଗୋଟାଏ ଦେବ, ଲସ୍‌ସି ଦରକାର ନାଇଁ, ଲୁଣଲେସମ୍ବୁର ପାଣି ଗିଲାସେ ହେଲେ ହେଲା । ସେତିକିବେଳକୁ ମର୍ଣ୍ଣିଂଓ୍ୱାକର ଗୋଟିଏ ଗୋଷ୍ଠୀ ସୃଷ୍ଟି ହୋଇଗଲେ । ବୈଷ୍ଣବ ହୋତା, ବାବୁଲି ରଥ, ପ୍ରଶାନ୍ତ ପ୍ରଧାନ, ଅନୀଲ ମହାପାତ୍ର, କୁବେର ସାହୁ, ଅଧ୍ୟାପକ ଗଙ୍ଗାଧର ସାହୁ ଆଉ କେତେଜଣ ସମ୍ମିଳିତ ହୋଇଗଲୁ ଗୋଟିଏ ପ୍ଲାଟଫର୍ମରେ, ସଂଗଠିତ ହେଲା ଧନୁପାଲିର ପ୍ରଭାତଯାତ୍ରୀ ସଂଗଠନ, ଅବଶ୍ୟ କେବଳ ଭୋଜିଭାତରେ ସୀମିତରହିଛି ଏହାର କାର୍ଯ୍ୟକଳାପ । ଅନୀଲ ମୋତେ ଏସିଡିଟିରୁ ମୁକ୍ତହେବାର ଏକ ଅନନ୍ୟ ଉପାୟ କର୍ଣ୍ଣମନ୍ତ୍ର ଦେବାଭଳି ସୂଚେଇଦେଲେ । ସେ କହିଥିଲେ, 'ଦାଦା, ମୋର କଥା ମାନ୍‌ବ, ତିନ୍ ମାସେ ଏସିଡିଟି ତମର୍ ଦିହୁ ଫେରାର୍ ହୋଇଯିବା । ବେଲ୍ ପତର୍ ଚାର୍‌ଟା, ତୁଲ୍‌ସୀ ପତର୍ ପାଞ୍ଚଟା ଗୋଲମରିଚ ଦୁଇଟା, ବୋହୂକେ କହେବ, ବାଟିଦେବେ, ସେ ରସ୍ ଦୁଇଦିନ୍‌ମାସ୍ ପିଅନ, ଦେଖ୍‌ବ, ଭଲ ଲାଗବା ।' ସେଇଦିନଠାରୁ ସେମିତି ରସ ପିଉଛି, ଭଲ ଲାଗୁଛି, ଏସିଡିଟି ଆଉ ଡରାଉନାହିଁ ।

ସମୟସମୟରେ ଦେଶୀଔଷଧ, ଖୁବ୍ ଭଲ କାମକରେ । ମୋର ସୁସ୍ଥତା ସହ ମୋ ପରିବାରର ଶାନ୍ତି ଓ ଶୃଙ୍ଖଳା ଜଡ଼ିତ, ତେଣୁ ଆଗଭଳି ଆଉ ଖାଇବାରେ ଲାଳସା ନ ରଖି ଦେହକୁ ଜଗିରଖି ଖାନାପିନା କରୁଛି । ଏବେ ମନେ ପଡ଼ିଲା, ମୋର ଖାଇବାର ଅଭ୍ୟାସକୁ ନେଇ ମୋତେ ଗୋଟିଏ ଏପିସୋଡ ଲେଖିବାକୁ ପଡିବ, ନଚେତ୍ ଅସମ୍ପୂର୍ଣ୍ଣ ଲାଗିବ ଏ ଜୀବନ କାହାଣୀ । ସତ୍ୟବାନ୍ ଜଙ୍ଗଲଯାଇ କାଠକାଟି ଆଣିଲେ ତ ଘରେ ଚୂଲୀ ଜଳିବ, ସାବିତ୍ରୀ ସ୍ୱାଦିଷ୍ଟ ଖାଦ୍ୟ ପରଶିଲେ ସିନା ଦେହରେ ବଳ ଆସିବ, ଜଙ୍ଗଲକୁ ଯାଇପାରିବ ! ପରସ୍ପର ପରିପୂରକ ଏଇ ପବିତ୍ରବନ୍ଧନ, ଏ ସମ୍ପର୍କ ଖାଲି ଏଇକାଳର ନୁହେଁ, କାଳ କାଳାନ୍ତରର ! ! ଭଲପାଇ ବାହା ହୋଇଛି, ତେଣୁ ଶକ୍ତଭାବରେ ବାନ୍ଧି ରଖିଛି ମୋର ଭଲପାଇବାର ବନ୍ଧନରେ । ଆମ ଭଲପାଇବାର ନିଦର୍ଶନ ସ୍ୱରୂପ ପୁଅଝିଅ ଦୁହେଁ ମଣିଷହୋଇ ଆମ ସୁଖଦୁଃଖରେ ବନ୍ଧୁ ପରିଜନଙ୍କ ଭଳି ଜଗିରହିଛନ୍ତି, ଏତେ ଶୀଘ୍ର ସଂସାରର ମୋହ ଆମକୁ ଛାଡୁନି, ଆହୁରି କିଛି ବୋଧହୁଏ ବାକିଅଛି ଦେଖିବାକୁ ଏ ଜୀବନରେ, ଯାହା ଅଶୀଦଶକର କଳାଧଳା ପରଦାଭଳି ନୁହେଁ, ଆଜିର ରଙ୍ଗୀନ ପରଦାରେ ଝିଲମିଲ କରୁଥିବା

ବହୁବର୍ଣ୍ଣା ପୃଥିବୀର ଚଳନ୍ତି ନାଟକୀୟ ଦୃଶ୍ୟପରି । ନୃତ୍ୟଗୀତର ସାଂଗୀତିକ ପରିବେଶ ପୁଣି ଯେମିତି ହାତଠାରି ଡାକୁଛି ଆ' ଆ' ବୋଲି । ତୋ ପାଇଁ ପ୍ରସ୍ତୁତହୋଇ ରହିଛି ମଞ୍ଚ, ତୁ ଖାଲି ଥରେ ଏ ମଞ୍ଚରେ ଛିଡ଼ାହୋଇ ଦେଖ୍ ତୁ ନୁହେଁ, ମଞ୍ଚ ନାଚିବ ତୋ ସମ୍ମୁଖରେ, ମଞ୍ଚ ଗାଇବ ଲୋକଙ୍କ ଗୀତ, ଯାହା ଆବହମାନ କାଳରୁ ଗାଇଆସୁଥିଲେ, ନାଚିଆସୁଥିଲେ ଏ ମାଟିର ତଥାକଥିତ ଲୋକମାନେ, ବଣଜଙ୍ଗଲ ଘେରା ପ୍ରକୃତି କୋଳରେ ସୁନ୍ଦର ଜୀବନ ଜୀଉଁଥିଲେ, ପ୍ରକୃତିର ସଂଗୀତରେ ସମତାଳରେ ଗାଉଥିଲେ, ପ୍ରକୃତି କ୍ରୋଡ଼ରେ ରହି ପ୍ରକୃତ ମଣିଷ ବୋଲାଉଥିଲେ ଏମାନେ । ଆ' ଆ', ତୁ ଥରେ ଖାଲି ଏ ମଞ୍ଚକୁ ଚାଲିଆ, ମୁଣ୍ଡିଆଟିଏ ମାର୍, ଦେଖିବୁ, ସକାଳୁ ତୋତେ ମୁଣ୍ଡିଆ ମାରିବାପାଇଁ ଦଳଦଳହୋଇ କଳାକାର ଅସ୍ତବ୍ୟସ୍ତ ହୋଇପଡିବେ ! ! !



ହଁ, କୌଣସି ଏକ ବିପଦ ଟଳିଗଲେ ସକାଳର କଅଁଳି କିରଣରେ ନୂଆଁ ଏକ ଶୃଙ୍ଖଳିତ ଜୀବନର ଉଦ୍‌ଭାସ ଆରମ୍ଭ ହେଲାଭଳି ଲାଗେ । ହେଲେ ଷୋହଳମସିହା ମେ' ମାସର ଏସିଡ଼ିଟି ଧିରେଧିରେ ଶାନ୍ତି ପଡ଼ିବାପରେ ଭାବୁଥିଲି ଏଣିକି ଅବସର ସମୟତକ ମୋର ସୃଜନଶୀଳ କାର୍ଯ୍ୟରେ ଅତିବାହିତ କରିବି, କିଛି ନାଟକଲେଖାର ଉଦ୍ୟମ କରିବି, ପାଖରେଥିବା ପୁସ୍ତକମାନ ପଢ଼ାପଢ଼ିକରି ତାର ସମୀକ୍ଷା ଲେଖି ପତ୍ରପତ୍ରିକାରେ ପକାଶନ ପାଇଁ ଦେବି । ଏଭଳି ଉଦ୍ୟମ ଆରମ୍ଭ ମଧ ହୋଇସାରିଥିଲା, କୁମୁଦ ଦାସ, ଧନପତି ମହାପାତ୍ର, ଅନୀଲ ଦାସ ଆଦି କେତେକ ସୁଲେଖକଙ୍କ ବହିଗୁଡ଼ିକର ସମୀକ୍ଷା ଦୈନିକ ସମ୍ବାଦର ଜୁଗାର୍ ପୃଷ୍ଠାକୁ ଦେଲି, ହରିଶଙ୍କର ବଡ଼ପଣ୍ଡାଙ୍କ କବିତା ସଙ୍କଳନର ସମୀକ୍ଷାପଢ଼ି ବହୁପାଠକ ମୋ'ନିକଟକୁ ଫୋନ୍‌କରି କୃତଜ୍ଞତା ଜଣାଇଥିଲେ । ସମସ୍ତ ସମୀକ୍ଷାର ପରିବର୍ଦ୍ଧିତ ରୂପକୁ ପୁସ୍ତକଭାବରେ ପ୍ରକାଶକରିବାର ମଧ ଚିନ୍ତା କରିଥିଲି । କେବେ ଭାବିନଥିଲି, ପୁଣି ଥରେ ଅସାଧ ରୋଗ ଆକ୍ରମଣକରି ମୋର ସୁସ୍ଥ ଶରୀରର ସର୍ବସ୍ୱ ଡକାୟତମାନଙ୍କ ପରି ଲୁଟିନେବ, ଅନୁସନ୍ଧିତ୍ସୁ ମନକୁ ମୋର ଖିନ୍‌ଭିନ୍ କରି ଗ୍ରାସ କରିଦେବ, ଶାନ୍ତ, ସରଳ ଜୀବନକୁ ମୋର ହାତୁଡ଼ିରେ ଛେଚିଛେଚି ଟୁକୁଡାଟୁକୁଡା କରିଦେବ, କେବଳ ମୋତେ ନୁହେଁ, ମୋ ପରିବାରବର୍ଗଙ୍କୁ ବିପଦଆଡକୁ ଠେଲିଦେବ, ମୋ ପାଇଁ ସମସ୍ତଙ୍କ ଦୈନନ୍ଦିନ ସାଧାରଣ ଜିବନାକାଶରେ କଳାବାଦଲ ତାଣ୍ଡବନୃତ୍ୟ କରି ଅନଧିକାର ରାଜତ୍ୱ କରିବ ! !

ସେହି ଷୋହଳର ଅଗଷ୍ଟ ତିନି ଓ ଚାରି ତାରିଖ ପ୍ରାତଃକାଳରେ ସମ୍ବଲପୁରରେ ତୁମୂଳ ବର୍ଷା ହୋଇଥିଲା । ଆମ ଘର ପୁରୁଣାଘର ହୋଇଥିବାରୁ ବେଶି ବର୍ଷା ହେଲେ ବାଡିପଟ ପାଣି, ଛାତପାଣି ଓ ରାସ୍ତାର ବର୍ଷାପାଣି ଏକ ହୋଇଗଲେ ଘରକୁ ପ୍ରବେଶ କରିଥାଏ । ପୂରା ଘରଗୋଟାକରେ ବର୍ଷାପାଣି ପ୍ରବେଶକରି ଆମ ନିଦ ହଜେଇଦିଏ । ସେହିଭଳି ହେଲା, ଘର ଭିତରକୁ ସକାଳ ଚାରିଟାବେଳକୁ ପାଣିପଶିବାର ଆରମ୍ଭ ହେଲା, ପ୍ରଥମେ ବୈଠକଘର, ତାପରେ ଶୋଇବାଘର । ପାଣି ପଛପଟୁ ଆସି ସାମ୍ନାପଟରେ ନିଷ୍କାସିତ ହେବାରେ ଲାଗିଲା । ବର୍ଷା ଥମିବାପରେ ଘର ଭିତର ପାଣି ଥାଳିବାଲଟି କରି ଛେଦାହେଲା । ଆମେ ଦୁହେଁ ଏ କାର୍ଯ୍ୟରେ ଲାଗିପଡିଲୁ । କୌଣସି ମତେ ସେହି ଦିନଟିସାରା ଆଉ ହଇରାଣହେବାକୁ ପଡିନଥିଲା । ପରଦିନ ଠିକ୍ ସେଭଳି ବାଦଲଫଟା ବର୍ଷା, ବର୍ଷାସାଙ୍ଗକୁ ବିଜୁଳୀ, ତାସହ ଘଡ଼ଘଡ଼ିର ଛାତିଫଟା ଗର୍ଜନ, ପୁରା ସକାଳଟା ବର୍ଷା ତା କବ୍‌ଜାକୁ ନେଇଯାଇଥିଲା । ଘର ବାହାରେ ପାଣି, ଭିତରେ ପାଣି, ଆମ ତିନି ଭାଇଙ୍କ ପ୍ରାୟତଃ ସବୁ କୋଠରୀକୁ ପାଣି ରାଜତ୍ୱ କରିସାରିଥିଲା, ତଳକୁ ପାଦ ଥାପିଲେ ପାଣି, ବାହାରକୁ ବାହାରିଲେ ପାଣି, ଆମ ରାସ୍ତାର ସବୁସ୍ଥାନ ଗୋଟାଏ ବନ୍ୟାକ୍ଲିଷ୍ଟ ଅଞ୍ଚଳଭଳି ଦେଖାଯାଉଥିଲା । ବର୍ଷାପରେ ଚିରାଚରିତ ଭାବରେ ପୁଣି ବାଲଟି, ଡେକଚିକରି ପାଣି ନିଷ୍କାସନ କରିବାର ପ୍ରୟାସଜାରି ରହିଲା । ବର୍ଷା ଛାଡ଼ିଲା, ପାଣି ଉତୁରିଲା, ଘରଦ୍ୱାର ଶୁଖି ସଫାରଫା ଦିଶିଲା, ଏକ ସର୍ବନାକ ଦିନର ଅବସାନଘଟି ସାଧାରଣଜୀବନର ଟ୍ରେକ୍‌ରେ ପଡିଗଲା । ହେଲେ, ମୋ ଦେହ ବିଗିଡ଼ିବାର ଆରମ୍ଭହେଲା । ପ୍ରଚୁର ପାଣିମାଡ଼ି ଘରସଫାରେ ମାତିଥିବାରୁ ଦେହ ପ୍ରଥମେ ଉଷୁମ ଲାଗିଲା, ଅନୁମାନ କରାଗଲା ଥଣ୍ଡାଜ୍ୱର, ସେହି ରାତିଟା ହିଁ ତାତିଲା ଦେହରେ ଖଟଉପରେ ପଡ଼ିରହିବାକୁ ହେଲା । ପୁଅ ଥିଲା କଳାହାଣ୍ଡିର ବେହେରା ଗ୍ରାମରେ । ତାକୁ ସବୁ ଖବର ଦେଲାପରେ ସେ ଥଣ୍ଡା ଜ୍ୱରର ଔଷଧ ଖାଇବାପାଇଁ ପରାମର୍ଶ ଦେଲା । ପ୍ରଥମେ ପାରାସିଟାମଲ୍, ପରେପରେ ପାରିଟାମଲ୍ ସହ ଏଣ୍ଟିବାୟୋଟିକ୍ । ଜ୍ୱର ଛାଡ଼ି ନଥାଏ, ସମଗ୍ର ଶରୀର ଭୀଷଣ ପୀଡ଼ାକରିବାକୁ ଆରମ୍ଭ ହେଲା । ଏଭଳି ଆଜି ଛାଡ଼ିବ, କାଲି ଜ୍ୱର କମିବ କହିକହି ପ୍ରାୟ ସାତଦିନ ପାରି ହୋଇଗଲା । ଶହେଦୁଇରୁ ଜ୍ୱର କମିବାର ନାଁ ଧରୁ ନଥାଏ । ଇତି ମଧ୍ୟରେ ମୋର ଗମ୍ଭୀର ଅବସ୍ଥା ଖବରପାଇ ପୁଅ କଳାହାଣ୍ଡିରୁ ଆସି ଘରେ ପହଞ୍ଚିଗଲା । ଶହେ ତିନି, ଚାରି ଜ୍ୱର ଦେଖି ସଙ୍ଗେସଙ୍ଗେ ବନ୍ଧୁ କବୀରଦାସ ପୁରୋହିତଙ୍କ ନିକଟକୁ ନେଇଗଲା ସଞ୍ଜିବନୀ ନର୍ସିଂହୋମକୁ । କବିରଙ୍କ ପରାମର୍ଶ

ଅନୁସାରେ ସେଇଠାରେ ମୋତେ ଏକ କେବିନରେ ରଖାଗଲା ଚିକିତ୍ସାପାଇଁ । ନର୍ସିଂହୋମରେ ରହିଲା ପରେ ମୁଁ ଆଶ୍ୱସ୍ତ ଥିଲି, ଏଥର ଜ୍ୱରରୂପକ ରାକ୍ଷସ ନିଶ୍ଚୟ ଦ୍ୱାରିକାନାଥର ଖଡ଼ିଁଚୋଟରେ ଟଳିପଡ଼ିବ, ସକାଳୁସକାଳୁ ମୁଁ ସୁସ୍ଥହୋଇ ମୋ ପ୍ରିୟ ଧନୁପାଲିକୁ ଫେରିବି ।

କିନ୍ତୁ, ସେଭଳି କିଛି ଘଟିଲାନାହିଁ, ବରଂ ଅଣ୍ଟାପୀଡ଼ା ସହ ଜ୍ୱର ସମଗ୍ର ଶରୀରକୁ ତା' ଅକ୍ତିଆରକୁ ନେଇଗଲା, କବୀର ମଧ୍ୟ ସେହି ପାରାସିଟାମଲ ଲିକ୍ୱିଡ୍‌ଡୋଜ୍ କ୍ରମାଗତ ଭାବରେ ଦେବାରେ ଲାଗିଲେ । ଅଣ୍ଟାପୀଡ଼ା ପାଇଁ ସ୍ୱତନ୍ତ୍ର ପେନ୍‌କିଲର୍ ଔଷଧ, ସବୁ ଧାରାବାହିକଭାବରେ ଦିଆଗଲା । ସହରରେ ହୁଲାଚାରୀ ହୋଇଗଲା ଯେ, ଦ୍ୱାରିକା ସଞ୍ଜିବନୀରେ ଏଡମିଟ୍ ହୋଇଛନ୍ତି । ଘରଲୋକେ, ବନ୍ଧୁବର୍ଗ ଆସି ମୋତେଭେଟି ସାନ୍ତ୍ୱନା ଦେଇଯାଉଥିଲେ । ମନେ ଅଛି, ବରଗଡରୁ ବିଭୁତିଦା, ବିଶିଷ୍ଟ ଅଭିନେତା ବିଭୂତିଭୂଷଣ ପାଢ଼ୀ କେଉଁ କାମରେ ସମ୍ବଲପୁର ଆସିଥିଲେ, ମୋର ଅସୁସ୍ଥହେବା ଶୁଣି ଦୌଡ଼ିଆସିଥିଲେ ସଞ୍ଜିବନୀକୁ ଖାସ୍ ମୋତେଦେଖି ସମବେଦନା ଜଣାଇବାପାଇଁ । ସେଭଳି ବନ୍ଧୁ ତଥା ମୋ ପ୍ରିୟ ଯୁବନେତା ସୁରେଶ ପୂଜାରୀ ସଂଞ୍ଜିବନୀକୁ ଆସି ମୋତେ ଦେଖାକଲେ ଓ ସଞ୍ଜିବନୀର ଡାକ୍ତରମାନଙ୍କୁ ମୋର ଚିକିତ୍ସାରେ ଯେମିତି ଅବହେଳା ନହୁଏ, ସମସ୍ତଙ୍କୁ ସତର୍କ କରିଦେଇଗଲେ । ବନ୍ଧୁ କବୀରଙ୍କ ଅନେକ ପ୍ରଚେଷ୍ଟା ସତ୍ତ୍ୱେ ଚାରିଦିନ ପର୍ଯ୍ୟନ୍ତ ମୁଁ ସେମିତି ପଡ଼ିରହିଲି ସଞ୍ଜିବନୀର କେବିନ୍ ଭିତରେ । ଜ୍ୱର ସହିତ ଅଣ୍ଟାପୀଡ଼ା, ମୋତେ ତ୍ରସ୍ତ କରିସାରିଥିଲା । ଚାରିରାତିର ବିକଳତା, ଯନ୍ତ୍ରଣା ମୋ ମନ ଭିତରେ ଜୀବନମରଣର ପ୍ରଶ୍ନବାଚୀ ସୃଷ୍ଟି କରିସାରିଥିଲା । ବନ୍ଧୁ ଧରମା, ମୋର ଦାଢ଼ୀ ଅକଟା ଦେଖଦେଖି ଭଣ୍ଡାରୀ ପଠାଇଥିଲେ, ଆହା, ଏକଥା ଲେଖିବେଳେ ଧର୍ମାନନ୍ଦ ମହାନ୍ତି ଆଉ ଇହଜଗତରେ ନାହାନ୍ତି ! ବିଭୁତିଦାଦା ମଧ୍ୟ ସ୍ୱର୍ଗବାସୀ ! !

ସେପଟେ ଘର ଅବସ୍ଥା ଅସମ୍ଭାଳ, ପୁଅ, ଝିଅ, ଭାଇ ବିରାଦରୀ, ସମସ୍ତେ ଅସ୍ତବ୍ୟସ୍ତ, ଏଭଳି ଏକ ନାଟକର ପରିସମାପ୍ତି ସର୍ବୋଚ୍ଚ ନାଟ୍ୟକାର କିଭଳି ରଚନା କରିଛନ୍ତି, ତାହା କେବଳ ତାଙ୍କୁ ଜଣା । ମୁଁ, ଆମ୍ଭେ, ଆମ୍ଭେମାନେ ତ ନିମିତ୍ତ ମାତ୍ର । ଝଡ଼ ଆସିଛି, ବର୍ଷାବିତ୍ପାତ ସହ, ବିରହୀଯାତ୍ରୀ ଭଳି ହାରିବାକୁ ହେବ ନା ସମସ୍ତ ପ୍ରତିରୋଧକୁ ପ୍ରତିହତ କରି ସକୁଶଳେ ବିଜୟର ବାନା ଉଡାଇବାକୁ ହେବ ! ମୁଁ ଆଉ ମୁଁ ହୋଇ ନଥାଏ ଚତୁର୍ଥ ରାତିରେ । ଦେହରେ ଖଇଫୁଟା ତାତି, ଅଣ୍ଟାରେ ଶତସହସ୍ର କୋରଡାମାଡର ଯନ୍ତ୍ରଣା, ଏମିତି କେତେଦିନ ଆଉ ପଡ଼ିରହିବି ସଞ୍ଜିବନୀର

ତିନିମହଲା କୋଠାର ନିଃଶବ୍ଦ କୋଠରୀରେ!! ଆଉ କେତେ ବା ପାରାସିଟାମଲ୍‌ର ତରଳ ପଦାର୍ଥ ରକ୍ତରେ ମିଶି, ସଂଘର୍ଷ କରି ବୁମେରାଂପରି ଫେରିଆସୁଥିବ ବନ୍ଧୁ କବୀରଙ୍କ ଚିତ୍ତକୁ, ଆଉ କେତେ ପକାଇ ରଖାହେବ ଜୀର୍ଣ୍ଣଶରୀରକୁ ମୋର ବୁର୍ଲା ଭେଷଜ ମହାବିଦ୍ୟାଳୟର ଏନାଟୋମୀ ବିଭାଗର ମଡ଼ା ଭଳି!!

ନାଃ, ଅସହ୍ୟ, ଅସମ୍ଭାଳ ଏ ପରିସ୍ଥିତି, ପୁଅ ଡାକ୍ତର, ପୁଣି ତା' ବାପ ପଡ଼ି ଛଟପଟ ହେଉଛି, କେତେ ସମ୍ଭାଳେ, ତା' ଗୁରୁପ୍ରତିମ ଡାକ୍ତର କବୀରଙ୍କୁ କହିବୋଲି ଭୁବନେଶ୍ୱରନେଇ ସେଠାକାର ବଡ଼ ଡାକ୍ତରଖାନାରେ ବାପାଙ୍କୁ ଦେଖାଇବି କହି ସଙ୍ଗେସଙ୍ଗେ ବାପାଙ୍କୁ ଡିସ୍‌ଚାର୍ଜ କରିବାର ଦାବୀ ଉପସ୍ଥାପନକରି ତାକୁ ଅଧଘଣ୍ଟା ଭିତରେ କାର୍ଯ୍ୟକାରୀ କଲା। ମୁଁ କିଛି ଜାଣିପାରୁ ନଥାଏ। କେବଳ ଥରେ ମାତ୍ର ପଞ୍ଚମ ମୋତେ ବେଡ୍‌ରୁ ଉଠାଇ କବିରଙ୍କ ଚେମ୍ବରକୁ ନେଇ ଆସିଥିବାର ଜାଣିଥିଲି, ସେ ନଦେଖିବାରୁ ପୁଣି ମୋ କେବିନ୍‌କୁ ଅଣାଗଲା। ଇତି ମଧ୍ୟରେ ଘର ଲୋକ ଆସି ରୁଣ୍ଡ ହେବାରେ ଲାଗିଲେ। ମୋତେ ପଞ୍ଚମ ଜଣାଇଦେଲା, ଆମେ ବର୍ତ୍ତମାନ ଭୁବନେଶ୍ୱର ଯିବା ଅମ୍ରି ହସ୍ପିଟାଲକୁ। ଅସୁସ୍ଥତା ସତ୍ତ୍ୱେ ମୁଁ ଭୁବନେଶ୍ୱର ଯିବାକଥା ଜାଣିଲି, ମୋର ତ ପ୍ରାୟ ହୋସ୍ ନଥାଏ। ତଥାପି ଜାଣିଲି, ସଞ୍ଜିବନୀ ଦ୍ୱାରରେ ଉତ୍ସର୍ଗର ଆମ୍ବୁଲାନ୍ସ ଆସି ଠିଆହେଲାଣି। ମୋର ମେଟ୍ରିକ୍‌ବେଚ୍‌ର ବନ୍ଧୁମାନେ ମୋତେ ଦେଖି ଆସିବାବେଳକୁ ମୁଁ ଆମ୍ବୁଲାନ୍ସ ଭିତରକୁ ଆସିସାରିଥିଲି। ସେମାନେ ମୋତେ ଆମ୍ବୁଲାନ୍ସ କବାଟ ପାଖରେ ଦେଖା କରୁଥାନ୍ତି, ଆହା, କେତେ ପ୍ରିୟ ଏହି ସତ୍‌ଜନମାନେ, ଆତ୍ମୀୟଙ୍କଠୁ ବଳି।

ସଞ୍ଜିବନୀରୁ ସାଇରନ୍‌ମାରି ଗଡ଼ିଚାଲିଲା ଆମ୍ବୁଲାନ୍ସ, କେତେବେଳେ ଧନୁପାଲିଘର ସାମ୍ନା ଆସିଗଲା, ଜଣାପଡ଼ିଲାନି। କପଡାଲତା, କିଛି ବ୍ୟବହାର୍ଯ୍ୟ ସାମଗ୍ରୀ ସହ ମୋର ସହଧର୍ମିଣୀ, ଜୋଇଁ ଓ ପୁଅ ପଞ୍ଚମ ମୋ ସହ ଭୁବନେଶ୍ୱର ଯିବାପାଇଁ ବସିପଡିଲେ। ଘରସାମ୍ନାରେ ବନ୍ଧୁ ଅନୀଲ ମହାପାତ୍ର କୁଆଡ଼େ ଯାଉଥିଲେ, ମୋର ଭୁବନେଶ୍ୱର ଡାକ୍ତରଖାନା ଯିବାଶୁଣି ମୋ'ପାଖକୁ ଧାଇଁ ଆସିଥିଲେ, ମୋର ସର୍ବାଙ୍ଗ ସ୍ପର୍ଶକରି ଅଲେଖ ମହିମାଙ୍କୁ ଧ୍ୟାନକରି କହିଲେ, 'ଦାଦା, ତୁମେ ଭଲ ହେଇକରି ଜଲ୍‌ଦି ଫିରି ଆଏବ, ଚିନ୍ତା ନାଇଁକର'। ଏଭଳି ଆଶ୍ୱସ୍ତିର ଭାଷାଶୁଣି ମୋ ଶରୀରରେ ଭାବତରଙ୍ଗଟିଏ ସଞ୍ଚରିଗଲା। ଏକ ଅଜଣାଶକ୍ତି ମୋତେ ପିଠିଥାପୁଡାଇ ଯେମିତି କହୁଥାଏ, ତୁ ଫେରି ଆସିବୁରେ, ଚିନ୍ତା କରନା, ତୋର ଆହୁରି ଅନେକ କାମକରିବାର ବାକି ଅଛି।

ଆମ୍ବୁଲାନ୍ସ ଗଡିଚାଲିଲା ଧନୁପାଲି ଛକରୁ ଡାହାଣ ପଟଦେଇ ସିଧା ଭୁବନେଶ୍ୱର । ଲମ୍ବହୋଇ ପଡିଥାଏ ସେହି ଗାଡ଼ି ଭିତରେ, ଆଖିରେ ଆଖିଏ ନିଦ, ହେଲେ ପୀଡ଼ା ପାଇଁ ନିଦ ବାରମ୍ବାର ତଡ଼ା ଖାଉଥାଏ, ଅଣ୍ଟାପୀଡାର ତାଡ଼ନାରେ ଇତସ୍ତତଃ ସମଗ୍ର ଶରୀର । ପୀଡ଼ାର ଉପଶମପାଇଁ ପଞ୍ଚମ ବାଟରେ ଇଞ୍ଜେକ୍ସନ୍ ଦେଇ ନିଦକୁ ଡାକିଆଣିଲା ସାଦରେ ମୋ ଆଖିକୁ । ଅନୁଗୋଳର ଏକ ହୋଟେଲରେ ରୁଟି, ଡାଲି ଖାଇ ପୁନରାୟ ଭୁବନେଶ୍ୱର ଅଭିମୁଖେ ଆମ୍ବୁଲାନ୍ସ ମାଡିଚାଲିଲା । ଆଉ କିଛି ଜାଣିପାରିଲିନି ନିଦ ଯୋଗୁଁ । ନିଦ ଭାଙ୍ଗିଲା ବେଳକୁ ମୁଁ ଭବନେଶ୍ୱରର ଅମ୍ରି ହସ୍ପିଟାଲର ଦ୍ୱାରମୁହଁରେ । ଆମ୍ବୁଲାନ୍ସ ବାଟରେ ହ୍ୱିଲ୍ ଚେୟାର ପକାଇ ମୋତେ ଭିତରକୁ ନିଆଗଲା, ସଙ୍ଗେସଙ୍ଗେ ଚିକିତ୍ସା ଆରମ୍ଭ, ବିଭିନ୍ନ ପ୍ରକାର ପରୀକ୍ଷା, ଏକ୍ସରେ, ରକ୍ତ, ପରିସ୍ରା, ଛାତି, ଇସିଜି, କୋଡ଼ିଏ ପ୍ରକାର ପରୀକ୍ଷା ଅଧଘଣ୍ଟା ଭିତରେ ଶେଷହେଲା ପରେ ମୋତେ ତିନି ମହଲା ଉପରକୁ ନିଆଯାଇ ଆମ ପାଇଁ ବୁକ୍ କରାଯାଇଥିବା କେବିନ୍‌ରେ ରଖାଗଲା । ସେ ଯାଏଁ କୌଣସି ଡାକ୍ତର ମୋ'ପାଖକୁ ଆସି ନଥିଲେ । ଜୋଇଁ କିଛିସମୟ ରହି ସମ୍ବଲପୁର ଫେରିଗଲେ । ପଞ୍ଚମ ଓ ତା' ମାଁ ପାଖରେ ରହିଲେ । ଦିନ ଦଶଟା ହୋଇଗଲା, କୌଣସି ଉପଚାର ଆରମ୍ଭ ହୋଇ ନଥାଏ । ସମସ୍ତ ପରୀକ୍ଷାର ରିପୋର୍ଟକୁ ଅପେକ୍ଷା କରାଗଲା । ଠିକ୍ ଦଶଟାବେଳକୁ ସମସ୍ତ ରିପୋର୍ଟ ଆସିଗଲା, ପରେପରେ ଟେଲିଫୋନ୍ ଯୋଗେ ଡାକ୍ତରଙ୍କଠାରୁ ଔଷଧର ସୂଚନା ପାଇବା ମାତ୍ରେ ନର୍ସମାନେ ଆସି ଇଞ୍ଜେକ୍‌ସନ୍ ଦେବା ବ୍ୟବସ୍ଥା କରିଦେଲେ, ଦୁଇତିନି ପ୍ରକାର ଇଞ୍ଜେକସନ୍, ଡାହାଣ ପାପୁଲିପାଖ ଶିରାରେ କୁଞ୍ଚିତ ହୋଇଥିଲା ସେ ସବୁ ମୋର ପ୍ରାଣ ସଞ୍ଚାର ପାଇଁ, ଜୀବନ ମୋତେ ଛାଡ଼ି ପଳେଇଯିବ ବୋଲି ଧମକ୍ ଦେଇଥିଲା, ହେଲେ ପ୍ରାଣଶକ୍ତିର ଅନୁପ୍ରବେଶରେ ତା ପଥ ରୋକିଗଲା । ସାମାନ୍ୟ ଚା'ପାନ ପରେ ନିଦେଇ ଯିବାରେ ପ୍ରାୟ ଗୋଟାଏ ବେଳକୁ ମୁଁ ଅନୁଭବ କଲି, ମୋ ଦେହରେ ଆଉ ନିଆଁ ଜଳୁନି, ପ୍ରତି ବଦଳରେ ଅଗଷ୍ଟପନ୍ଦର ଜାତୀୟ ସଂଗୀତରେ ମୁଖରିତ ସମଗ୍ର ଭାରତବର୍ଷର ଚେତନ୍ୱିତ ଶୀତଳତା ବସନ୍ତର ମଳୟଭଳି ଦେହରେ ବାଜି ମନକୁ ରୋମାଞ୍ଚିତ କରିବାରେ ଲାଗିଲା, ସେଦିନ ଥିଲା ଅଗଷ୍ଟ ପନ୍ଦର । ଦୀର୍ଘ ପନ୍ଦରଦିନ ପରେ ପ୍ରଥମକରି ଟିକିଏ ସୁସ୍ଥ ଅନୁଭବକଲି ମୁଁ, ଜ୍ୱର ସାଲୁବାଲୁହୋଇ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା, ଜାଣିପାରିଲିନି । ମନେମନେ ଧନ୍ୟବାଦ ଦେଉଥାଏ ପଞ୍ଚମର ବୁଦ୍ଧିମତ୍ତାକୁ, ମୋ ସ୍ୱାସ୍ଥ୍ୟର ଜାଗ୍ରତ ପ୍ରହରୀ ଭାବରେ ସେ ତାର ନିଷ୍ପତ୍ତିରେ ଅଟଳରହି ଏଠାକୁ ମୋତେ ଆଣିଛି, ସମ୍ଭାଳିଛି, ଜ୍ୱରକୁ

ପ୍ରଜ୍ଞାଶକ୍ତିର ଚାବୁକ୍ ମାଡ଼ରେ ଲହୁଲୁହାଣ କରି ମୋ ପାଖରୁ ତଡ଼ିପାରିଛି । ଯିବା ଦିନ ହିଁ ଜ୍ୱରର ଅବସାନ ଘଟିଲା, ଆଉ ତିନି ଦିନ କେବଳ ଔଷଧ ଗ୍ରହଣର ଔପଚାରିକତା ପାଇଁ ସେଠାରେ ରହିବାକୁ ପଡିଥିଲା । ପଞ୍ଚମରାତିରେ ସିଆର୍‌ପି ଛକରୁ ବସ୍‌ଯୋଗେ ସମ୍ବଲପୁର ଫେରିବାର ଯାତ୍ରାଥିଲା ସୁସ୍ଥ ମନର, ଆରୋଗ୍ୟଲାଭର ।

ଅମ୍ରି ହସ୍ପିଟାଲର ଡାକ୍ତର ସଞ୍ଜିବ ମିଶ୍ରଙ୍କ ରିପୋର୍ଟରେ ଲିପିବଦ୍ଧ ହୋଇଥିଲା ମୋର ଜ୍ୱରର କାରଣ । ପାଣି ଛେଦିବା ବେଳେ କୌଣସି ଏକ ବିଷାକ୍ତ କୀଟର ଦଂଶନରେ ଶରୀର ଦୁର୍ବଳହୋଇ ଜ୍ୱର ଆସିଥିଲା । ଅମ୍ରି ହସ୍ପିଟାଲରେ ରହଣୀର ପ୍ରଥମଦିନ ହିଁ ଚିକିତ୍ସାପରେ ଜ୍ୱର ଉତୁରିଗଲା । ଏହି ଜ୍ୱରକୁ ଟାଏଫସ୍ ବୋଲି କୁହାଯାଏ, ଯାହା ସଞ୍ଜିବନୀରେ ଚିହ୍ନଟ କରାଯାଇପାରି ନଥିଲା ।

ଜୀବନ ଫେରିଲା, ନୂଆଁ ଉତ୍ସାହ ନେଇ, କିଛି ବିଶ୍ରାମପରେ ଶକ୍ତ ହୋଇଗଲେ ସ୍ନାୟୁମାନେ, ରକ୍ତ ପ୍ରବାହ ସ୍ୱାଭାବିକ ହେଲା, ମନ ସତେଜ୍ ହେଲା, ହାତଗୋଡ଼ କାର୍ଯ୍ୟକ୍ଷମ ହୋଇଗଲେ । ପୁଣି ସକାଳର ସୂର୍ଯ୍ୟକୀରଣରେ ସୂର୍ଯ୍ୟସ୍ନାନକରି ପ୍ରଭାତଯାତ୍ରୀ ଦାମ୍ଭିକତାର ସହ ଆଗକୁ ଅଗ୍ରସର ହେଲା, ବନ୍ଧୁ ଅନୀଲଙ୍କ ଅଲେଖ ମହିମାଙ୍କୁ ଧ୍ୟାନ ସାକାର ହେଲା, ପୁନଶ୍ଚ ଜୀବନଚକ୍ର ତା' ସ୍ୱାଭାବିକ ଗତିରେ ଗଡ଼ିଚାଲିଲା । ।



**ଆ**ମ ପରିବାରରେ ପିଲାଟିବେଳୁ ଆଇଁଷ ଯାଏନି, ଯାଏନି ମାନେ ବିଲକୁଲ୍ ଘର କବାଟ ମାଡେନି । ଏ ପରମ୍ପରା ବାପା, ମାଁ ଥିବା ଯାଏଁ ଦୃଢ଼ତାର ସହ ଚାଲୁଥିଲା । ଏବେ ମଧ୍ୟ ଆମେ ଛ' ଭାଇଭଉଣୀ ମାଛମାଂସଠାରୁ ବହୁ ଦୂରରେ । ବିନା କାରଣରେ ଏମିତି ଚାଲୁଥିଲା, ଏମିତି ନୁହେଁ, ମୋ ମାଁଙ୍କ ବଡ଼ବାପା ବୈଷ୍ଣବୀ ଥିଲେ, ତେଣୁ ଆମ ମାମୁଁଘରେ ମଧ୍ୟ ଆଇଁଷ ଯାଏନାହିଁ । ମାଁଙ୍କ ପ୍ରଭାବରୁ ଆମ ପରିବାରର ପ୍ରତ୍ୟେକ ସଦସ୍ୟ କେବେ ଆଇଁଷ ଖାଇ ନାହୁଁ, ଏ ଜନ୍ମରେ ଆଉ ଖାଇବା ସମ୍ଭବ ବି ନୁହେଁ । ଏସବୁ ବ୍ୟତିରେକେ ନିରାମିଷ ଖାଦ୍ୟର ବିପୁଳତା ଏବେବି ଆମ ପ୍ରିୟ । ଗାଈ ରଖିବା, ବାଡ଼ିବଗିଚା କରିବା, ନିଜେ ପରିଶ୍ରମକରି ବାଡ଼ିରେ ବିଭିନ୍ନ ପ୍ରକାର ପନିପରିବା ଚାଷ କରିବା, ଗାଈଗୋରୁଙ୍କ ପାଇଁ ଦାନା ସଙ୍ଖୁଳିବା, ଗୋବରର ସଦ୍‌ବ୍ୟବହାର କରିବା, ତାଙ୍କପାଇଁ ପୁଆଳକାଟିବା, ଘାସ କାଟି ଖୁଆଇବା ଆଦି କାର୍ଯ୍ୟରେ ଆମେ ତିନିଭାଇ ବେଶ୍ ତାଲିମ୍ ନେଇ ସାରିଛୁ

ପିଲାଟିବେଳୁ । ବିଶେଷକରି ଅନୁଗୋଳ ଓ ଭବାନୀପାଟଣାରେ ରହଣି କାଳରେ ଏ ପ୍ରକାର କାର୍ଯ୍ୟକରିବାରେ ଆମେ ଧୁରନ୍ଧର ଥିଲୁ । ଧନୁପାଲି ଆସିବା ପରେ ମଧ୍ୟ ଆମ ଗୃହାଳରେ ଚାରି ପାଞ୍ଚପଟ ଗାଈ ଥିଲେ । ଅଶୀଦଶକର ଶେଷାର୍ଦ୍ଧ ପର୍ଯ୍ୟନ୍ତ ଥିଲେ, ତେବେ, ଗାଈଚରୁଆ ସମସ୍ୟା, କା' ଧାନକ୍ଷେତର ଧାନ ଖାଇଦେବାରେ ଗାଳିଗୁଳଜ ଯୋଗୁ ମାଁ ସମସ୍ତଙ୍କୁ ବିକ୍ରି କରିଦେଲେ । ମୋର ମନେଅଛି, ଆମଘରେ ଏତେ ଗୋରସ ଉତ୍ପାଦନ ହେଉଥିଲା ଯେ, ବଳକା ଗୋରସକୁ ଆମେ ଛକ ହୋଟେଲରେ ବିକ୍ରି କରିଦେଉଥିଲୁ । ମାଁ ଏଭଳି କାର୍ଯ୍ୟପାଇଁ ମୋତେ ହିଁ ନିଯୋଜିତ କରୁଥିଲେ । ଗାଈପାଇଁ ପୁଆଳ କିଣିବା, ରଷି ପଘା କିଣିବା, ଦାନା ପିଡୁଆ କିଣିବା, ଦାନା ପ୍ରସ୍ତୁତକରି ସେମାନଙ୍କୁ ବାଢ଼ି ଖୁଆଇବା, ସମୟସମୟରେ ଦୋହିବା କାମ କଲେଜ ପଢ଼ିବାଯାଏଁ ମୋ ଉପରେ ନ୍ୟସ୍ତ ହେଉଥିଲା । ଆମେ କେହି ଏଭଳି କାମକୁ ଅବହେଳା କରୁନଥିଲୁ । ପିଅନମାନେ ଥଲେ, ଏମାନଙ୍କ ପାଇଁ ଖଟୁଥିଲେ, ବାପାଙ୍କ ଅବସରରେ ସମସ୍ତକାର୍ଯ୍ୟ ଆମଉପରେ ପଡ଼ିଯିବାରୁ ଆମ ପାଠପଢ଼ାରେ ବ୍ୟାଘାତ ସୃଷ୍ଟିହେବା ଯୋଗୁଁ ଏ ବୋଝ ଆଉ ମୁଣ୍ଡେଇ ହେଲାନାହିଁ ।

ତେବେ ଅନୁଗୋଳ, ସୁନ୍ଦରଗଡ଼ ତଥା ଭବାନୀପାଟଣାରେ ଅତିବାହିତ ହୋଇଥିବା ଶୈଶବ, କୈଶୋର ତଥା ଧୁନପାଲିର ଅର୍ଦ୍ଧାଧିକ ଯୌବନକାଳ ଗୋରସ ଓ ଦୁଗ୍ଧଜାତ ଖାଦ୍ୟଦ୍ରବ୍ୟ ଖାଇବାରେ ଆମେ ସମସ୍ତେ ଭାଇଭଉଣୀମାନେ ଅଭ୍ୟସ୍ତ ଥିଲୁ । ବାଛୁରୀଟିଏ ଜନ୍ମ ହେଲେ, ତା ମାଁର ପ୍ରଥମ କେଇ ଦିନର ଗୋରସରେ ପିଆଁସ, ଖିର୍ସା, ରାବିଡ଼ି ଆମ ସମସ୍ତଙ୍କ ଅତିପ୍ରିୟ ଥିଲା । ମାଁ ଅଧିକ ଦୁଗ୍ଧ ହେଉଥିଲେ ପେଡ଼ା, ରାବଡି ତଥା ଛେନା ଆଦି ପ୍ରସ୍ତୁତକରି ଦ୍ୱିପହରବେଳା ଆମକୁ ଖାଇବାକୁ ଦେଇଥିଲେ । ସକାଳ ଜଳଖିଆ ଆବାହମାନ କାଳରୁ ରୁଟି ପରଠା, ଆଳୁଝୋଳ, ଜାନିଯାତ୍ରା ହେଲେ ପୁରୀ, ଆଳୁ ତରକାରୀ, କେବେକେବେ ସୁଜି ଉପମା, ମଧ୍ୟାହ୍ନ ଭୋଜନରେ ପର୍ବପର୍ବାଣୀ ତିଥି ବାଦ୍ ଦେଲେ ବାକି ସବୁଦିନ ଉଷୁନା ଚାଉଳର ଭାତ, ରାହାଡ଼ି ଡାଲି, ଋତୁ ଅନୁସାରେ ଘାଣ୍ଟ ତରକାରୀ, ଫୁଲକୋବି, ପତ୍ରକୋବି, ଗଣ୍ଠିକୋବି ଶୀତଋତୁର ମୁଖ୍ୟପରିବା ଆଦିର ସ୍ୱାଦିଷ୍ଟ ତରକାରୀ, ବେଳଅବେଳରେ କୋଳଥ ଆମ୍ବିଳ, ନହେଲେ ଦହି, ତେନ୍ତୁଳି ଆଦିରେ ପ୍ରସ୍ତୁତ ଆମ୍ବିଳ ବା ଖଟା, ପାତଳଘଟା କରଡି ଚୁଟ୍‌ଚୁଟା, ବଡିପାତଳଘଟା ଖଟା, ବର୍ଷା ଦିନରେ ଚାରୁ ପାଣି, ରସ୍‌ସମ, ମହି, ଚହ୍ଲା, ଦହିବାଇଗଣ, ବେସର ଖଟା ମାଁ ହାତତିଆରି ଖାଦ୍ୟ ଆମ ସମସ୍ତଙ୍କର ପ୍ରିୟ ମେନୁ ଥିଲା । ଭେଣ୍ଡି, କାଙ୍କଡ, ଆଳୁ, ବାଇଗଣ, କଲରା ଆଦିର

ଭଜା, ମାଖନ ସନ୍ତୁଳା, ମାଖନ ଫୁଲର ଭଜା, ଜହ୍ନିରାଇ, ଅମୃତଭଣ୍ଡା ରାଇ, ଏ ସମସ୍ତ ଖାଦ୍ୟସାମଗ୍ରୀ ଋତୁଅନୁସାରେ ଆମଘରର ଦୈନନ୍ଦିନ ଭୋଜନ ଥିଲା । ସଞ୍ଜବେଳେ ମାଁ ପାରୁଥିବା ପର୍ଯ୍ୟନ୍ତ ଚକୁଳି, ଅଟାଚକୁଳି, ମୁଢ଼ିଲଡୁ, ମୁଢ଼ିଗୋରସ, ଅଟାଭଜା, ଲିଆଲଡୁ, ରାଶିଲଡୁ, ବାଦାମଲଡୁ, ମୁଢ଼ି ରାଗଚଣା, ଚୂଡ଼ାବାଦାମ ଭଜା ତିଆରି ହେଉଥିଲା । ସ୍କୁଲ ଓ କଲେଜରୁ ଫେରି ଆସିଲା କ୍ଷଣି ଏସବୁ ଅନାୟାସରେ ଘରେ ମିଳୁଥିଲା । ରାତିରେ ରୁଟି ଆଉ ଯେ କୌଣସି ତରକାରୀ ତା ପୁଣି ଋତୁ ଅନୁସାରେ ପାଳଛତୁ, ରୁଗୁଡ଼ା, ବିହିଡେନ, ଭୁଦୋମଉଲା ଛତୁ ଆଗ୍ରହର ସହ ମାଁ ନିଜେ ବଜାରରୁ କିଣିଆଣୁଥିଲେ । ଗଣ୍ଡିକୋବି ଝୋଳ, ଖରାଦିନେ ଛୋଟଛୋଟ ଦେବଗଡ଼ିଆ ଆଳୁ ପିଆଜର ଭଜା, ମୂଳାପତ୍ର ଭଜା, ମୂଳା ପରଠା, ଆଳୁ ପରଠା ଆଦି ଥିଲା ଆମେ ଗ୍ରହଣକରୁଥିବା ଦୈନନ୍ଦିନ ଖାଦ୍ୟଦ୍ରବ୍ୟ । ମାଁ ଗଲାପରେ ହୁଏତ ଏସବୁ ବଦଳିଯାଇ ତା ସ୍ଥାନରେ ନୂଆଁ ନୂଆଁ ଏବର ନୂଆଁ ଡିସ୍‌ମାନ ଅନୁପ୍ରବେଶ କରିସାରିଲେଣି ।

ପୁଓଜାଉଁତିଆ ପରଦିନ ସକାଳେ ସମସ୍ତ ପନିପରିବା ମିଶ୍ରିତ ତରକାରୀ ଆମ ପରିବାରର ସବୁଠୁବଳି ପ୍ରିୟ ଓ ଭିଟାମିନସ୍ ତରକାରୀ ଥିଲା । ସକାଳ ଚାରିଟାରୁ ଉଠି ମାଁ ପୂଜାବିଧିସାରି ତରକାରୀ ପ୍ରସ୍ତୁତିରେ ଲାଗିପଡୁଥିଲା । ଏବେବି ମୋ ପରିବାରରେ ସେଇ ପରମ୍ପରା ଜାରିରହିଛି । ସେହିଦିନ ସକାଳେ ମା'ଙ୍କଠୁ ଗାମୁଛା କି ଗେଞ୍ଜି ଗୋଟାଏ ଲେଖାଏଁ ପାଇ ପୁରୀସହ ସ୍ୱତନ୍ତ୍ରଭାବରେ ପ୍ରସ୍ତୁତ ଘାଣ୍ଟତରକାରୀ, ଖିରୀ, ପୂର୍ବରାତିର ହଲୁଆ, ଲିଆପାଗ, ନଡ଼ିଆ ଆଦି ଆମ ଖାଦ୍ୟପେୟ ଥିଲା । ତରକାରୀ ଏତେ ପରିମାଣରେ ରନ୍ଧାଯାଉଥିଲା ଯେ ସମସ୍ତଙ୍କୁ ବଣ୍ଟାହେବା ପରେ ମଧ୍ୟ ରାତ୍ରଭୋଜନ ପର୍ଯ୍ୟନ୍ତ ଖୁଆଯାଉଥିଲା । ଜନ୍ମାଷ୍ଟମୀ ପରଦିନ ସକାଳୁ ମୋର ଜନ୍ମଦିବସ ପଡୁଥିବାରୁ ମାଁ ଥିବାବେଳେ ଜନ୍ମାଷ୍ଟମୀ ସଂଙ୍ଗରେ ପିଠା, ମଣ୍ଡା, କାକରା, ସୁଆଁରୀ, ସୁଜିହଲୁଆ, ଚଣାଆଳୁ ତରକାରୀ, ଲିଆଗୁଡ଼ପାଗ ତିଆରି ହୋଇଯାଉଥିଲା । ପୁଣି ସକାଳେ ମୋ ପାଇଁ ହୋଟେଲରୁ କିଣା ରସଗୋଲା, ପେଡା, ନୂଆଁତିଆରି ପୁରୀ, ଚଣାଝୋଳ ଆଦି ସ୍ୱତନ୍ତ୍ରଭାବରେ ପ୍ରସ୍ତୁତ ହେଉଥିଲା । ବଡ଼ଭାଇଙ୍କ ଜନ୍ମଦିନ ହେଲା ପ୍ରଥମାଷ୍ଟମୀ ଲଗ୍ନ । ସେଦିନ ସ୍ୱତନ୍ତ୍ରଭାବରେ ଏଣ୍ଡୁରୀ ପିଠା, ଉଭୟ ଛୋଟ ଏବଂ ବଡ଼ ଆକାରର, ଗୁଡ ନଡିଆକୋରାର ପୂର, ଚାଉଳଖିରୀ ନିଶ୍ଚୟ ହେଉଥିଲା, ଏବେବି ହେଉଛି । ତେବେ ମାଁ ଥିବାବେଳେ, ଏହାର ପରିମାଣ ଏତେବେଶି ହେଉଥିଲା ଯେ ସେଦିନ ଆଉ ଭାତ ଖାଇବାକୁ ଇଚ୍ଛା ହେଉନଥିଲା । ପରଦିନ ସକାଳପର୍ଯ୍ୟନ୍ତ ସେମିତି ପିଠାରେ ହିଁ ଗତି କରୁଥିଲା ଭକ୍ଷଣ ।

ଭାଇଜୀଉଁତିଆରେ ମଧ୍ୟ ତଦ୍ରୂପରି ପାଗ ପ୍ରସ୍ତୁତ ହେଉଥିଲା । ମୋ ମଝିଆନାନୀ ଓ ସାନଭଉଣୀର ଶାଶୁ ଥିବାବେଳେ ମୁଁ ଥରେ ବାହାମ ଯାଇଥିଲି । କଲେଜ୍‌ଛାତ୍ର ଥିଲି । ସେତେବେଳେ ବାହୁଡ଼ାଯାତ୍ରା ଲଗ୍ନ ଥିଲା । ଦ୍ୱିପହରବେଳାରେ ମୁଁ ତାଙ୍କ ସହ ଚୁଲିମୁଣ୍ଡରେ ବସି ରସବରା କରିବା ଶୈଳୀ ଶିଖିପକାଇଥିଲି । ତାଙ୍କ ହାତତିଆରି ମୁଗର ରସବରା ଅତି ସ୍ୱାଦିଷ୍ଟ । ତାକୁ ଶିଖି ପ୍ରତ୍ୟେକ ବର୍ଷ ରଥଯାତ୍ରା ଅବସରରେ ମୁଁ ନିଜେଘରେ ରସବରା ତିଆରି କରେଁ । ରଥ ଆସିଲା ମାନେ ରସବରା ନିଶ୍ଚୟ ହେବ, ଏହା ସ୍ୱତଃସିଦ୍ଧ । ନୂଆଁଖାଇ, ଲକ୍ଷ୍ମୀ ଗୁରୁବାର, ଏକାଦଶୀ, ଏପରି ସବୁ ପର୍ବପର୍ବାଣୀରେ ଆମ ପରିବାରରେ ଛୋଟେପ୍ରକାର ଯାତ୍ରା ହେଉଥିଲା । ମାଁ ଏକାଦଶୀ କରୁଥିଲା, ସେଦିନ ତା ପାଇଁ ପ୍ରସ୍ତୁତଥିବା ବିନାମସଲାର ଗୋଟିମରିଚପକା ଆଳୁତରକାରୀ ମୋର ଭାରି ପସନ୍ଦ ଥିଲା । ମୁଁ ତା ପାଖରେ ବସିଲି ମାନେ ସେ ମୋର ଉଦ୍ଦେଶ୍ୟ ଜାଣିପାରି ପଟେ ପୁରୀ ସହ ଗିନାରେ ତା'ଭାଗରୁ ତରକାରୀ ଟିକିଏ ବାଢ଼ି ଦେଉଥିଲା ।

ଆମେ ତିନିଭାଇ ବାହାସାହା ହେବା ପରେ ଏ ନିରାମିଷ ପରମ୍ପରା ଧିରେଧିରେ ଭାଙ୍ଗିଗଲା, ଅବଶ୍ୟ ମାଁ ଥିବାଯାଏଁ ତାକୁ ସମ୍ମାନଜଣାଇ ଘରକୁ ଏସବୁ ଆସୁ ନଥିଲା । ତେବେ ତା'ଅନ୍ତେ ଏବେଆଉ ବାଧା ବୋଲି କିଛି ନାହିଁ, ଆଗ ଦୋକାନରୁ କିଣା ହୋଇଆସୁଥିଲା, ଏବେ ଅଣ୍ଡା, ମାଂସ, ଚିକେନ୍, ବିରିଆନୀ ମୋ ପରିବାରରେ ନିତିଦିନିଆମେନୁ ପାଲଟିଗଲାଣି । ଆମେ ଭାଇଭଉଣୀ ଛ'ଜଣ ସେହି ପରମ୍ପରାର ଶେଷପିଢ଼ୀ ବୋଲି ଜଣାପଡିଗଲାଣି । ମୁଁ ପ୍ରଥମେପ୍ରଥମେ ଏସବୁକୁ ଘୃଣା କରୁଥିଲି, ତେବେ ସନ୍ତାନମାନଙ୍କ ମୁହଁକୁ ଦେଖି ସବୁକୁ ଦେହସୁହା କରିସାରିଲିଣି । ଏପରି କି ନାତୁଣୀମାନେ ମଧ୍ୟ କଅଁଳ ବୟସରୁ ଆମିଶାଷୀ ହୋଇସାରିଲେଣି, ଅବଶ୍ୟ ବୋହୂଟି ଏସବୁର ପାଖ ମାଡ଼େ ନାହିଁ, ଏପରି କି ଛତୁ ମଧ୍ୟ ଖାଏନି ।

ଏଗଲା ଘରଭିତର କଥା । ମଜାମଜାରେ ମୁଁ ଖାଇବାକୁ ନେଇ ପ୍ରଚୁର ମନଭରି ଭୋଗକରିଛି । ବିଶେଷତଃ ବନ୍ଧୁମାନଙ୍କ ବାହାଘରଭୋଜିରେ ଥଟ୍ଟାଥଟ୍ଟାରେ ଆବଶ୍ୟକରୁ ଯଥେଷ୍ଟ ଅଧିକଖାଇ ହଜମ କରିଛି । ଏପରି ଖାଇଛି, ଯାହାକୁ ନ ଦେଖିଲା ଲୋକ ବିଶ୍ୱାସ କରିବ ନାହିଁ । ମୁଖ୍ୟତଃ ମୁଁ ଜଣେ ମିଠା ପ୍ରିୟ ମଣିଷ, ବାହାଘରଭୋଜିରେ ରସଗୋଲା, ଗୋଲାପଜାମ ଦେଖିଲେ ଖାଇବାକୁ ମନ ଟକଟକ ହେଉଥିଲା । ସେହି ବାହାଘର ବେଳର କିଛି ଖାଇବା ଅନୁଭବ ଏବେ ମୋ ପାଠକବନ୍ଧୁମାନଙ୍କ ସହ ବିନିମୟକରିବା ଚେଷ୍ଟା କରୁଛି । ବନ୍ଧୁମାନଙ୍କ ବାହାଘର

ବରଯାତ୍ରୀ ଦଳରେ ଯାଇ ଶୋଭାଯାତ୍ରାରେ ନୃତ୍ୟକରିବା ସେତେବେଳେ ଥିଲା ମୋର ଭାରିସଉକ। ବାରୁଦାଙ୍କ ବରଯାତ୍ରୀଦଳରେ ଯାଇ ସିନ୍ଦୂରପଙ୍କରେ ଘଣ୍ଟାଘଣ୍ଟା ନୃତ୍ୟ କରିବାରୁ ଏମିତି ଅଭ୍ୟାସ ଆରମ୍ଭ ହୋଇଥିଲା। ବାରିପଦାରେ ବନ୍ଧୁ ପ୍ରମୋଦଙ୍କ ବାହାଘରବେଳେ, ବନ୍ଧୁ ସୁଶୀଲ ମିଶ୍ରଙ୍କ ବାହାବେଳେ ବଲାଙ୍ଗିରରେ ନୃତ୍ୟକରିବା, ବନ୍ଧୁ ଶାନ୍ତନୁର ବାହାବେଳେ ସମ୍ବଲପୁର ସାକ୍ଷୀପଡାରେ ନୃତ୍ୟକରିବା ବଡ଼ ମଜାଦାର ଥିଲା। ଏଥିମଧ୍ୟରୁ ଆମ ଧନୁପାଲିର ବନ୍ଧୁ ରାମଗୋପାଲ ଶର୍ମାଙ୍କ ବାହାଘରଟି ଅବିସ୍ମରଣୀୟ ହୋଇ ରହିଛି ଏଯାଏଁ। ଏକେତ ମାରବାଡି ଲୋକ, ପୁଣି ବରଯାତ୍ରୀ ଯିବାରଥାଏ କଟକର ବକ୍ସିବଜାର। କାଲି ବାହାଘର, ଆଜି ରାତିରେ ବରଯାତ୍ରୀ ବାହାରିବେ କଟକ ଅଭିମୁଖେ, ତେଣୁ ସନ୍ଧ୍ୟାରେ ବରଯାତ୍ରୀଦଳର ପ୍ରତ୍ୟେକ ସଦସ୍ୟଙ୍କୁ ଭୁରିଭୋଜନ ପାଇଁ ଘରଘର ଖବର ଦେଲେ ଗୋପାଳଘରର ଲୋକେ। ସନ୍ଧ୍ୟା ପାଞ୍ଚଟାଛଟାବେଳେ ବନ୍ଧୁମାନେ ଏକଯୋଟ ହୋଇଗଲୁ ତାଙ୍କଘରେ ପୁରୀ, ତରକାରୀ ସହ ରକମରକମ ମିଷ୍ଟାନ୍ନ, ସୁନ୍ଦର ସୁଡୋଳ ପାନ୍ତୁଆ ବା ଗୋଲାପ ଜାମୁନ। ବନ୍ଧୁଗହଣରେ ହସାଗିଜରା ହେଉହେଉ ଆବଶ୍ୟକରୁ ଅଧିକ ଖାଇହୋଇଗଲା। ଗୋଟାଏଦୁଇଟା ନୁହେଁ, ଗୋଟିଗୋଟି କରି ତିରିଶ ପଇଁତିରିଶଟି ଗୋଲାପଜାମ ଖାଇ ହୋଇଗଲା, ତା'ସହ ଦଶପନ୍ଦରପଟ ପୁରୀ, ତରକାରୀ। ଖାଇ ତ ଦେଲି, ହେଲେ ବସିବାସ୍ଥାନରୁ ଉଠିବା କଷ୍ଟ ହୋଇପଡିଲା। ପରେ ଛକରୁ ଘରକୁ ଯିବାପାଇଁ ରିକ୍ସାଟିଏ ଡକାଗଲା, ବନ୍ଧୁମାନଙ୍କ ସହଯୋଗରେ ବଡ଼କଷ୍ଟରେ ଉଠିଲି ଓ ରିକ୍ସାରେ ବସି ଘରକୁ ଫେରିଲି। ରାତିରେ ପୁଣି ଯିବାରଅଛି କଟକ, ବସ୍‌ରେ। ଘରକୁ ଆସି କିଛିସମୟ ବିଶ୍ରାମ ନେବାପରେ ବାହାରିପଡିଲି ବରଯାତ୍ରୀରେ ଯିବାପାଇଁ। ଘରେ କିଛି ନଖାଇ ସାଙ୍ଗମାନଙ୍କ ସହ ବସ୍‌ରେ ବସିପଡିଲି। ବସ୍‌ରେ ସମସ୍ତଙ୍କ ପାଇଁ ପୁରୀ, ଶୁଖିଲା ତରକାରୀ ବ୍ୟବସ୍ଥା ହୋଇଥିଲା। ସମସ୍ତେ ଆନନ୍ଦରେ ଖାଇ ଗପସପ କରି ନିଦେଇପଡିଲୁ। ସକାଳେ କଟକ ପହଞ୍ଚିବାପରେ ଗନ୍ତବ୍ୟସ୍ଥଳ କନ୍ୟାଘର ଖୋଜୁଖୋଜୁ ଦି' ଘଣ୍ଟା ଲାଗିଗଲା। ପରେ ବକ୍ସିବଜାରର ଏକ ଧର୍ମଶାଳାରେ ଆମପାଇଁ ଉଦ୍ଦିଷ୍ଟ ବିଶ୍ରାମକକ୍ଷରେ ସମସ୍ତେ ନିତ୍ୟକର୍ମ ସାରି ପରିଚ୍ଛନ୍ନ ହେଲାପରେ ବରବେଶରେ ଥିବା ଗୋପାଲ ସହ ବସିଥିବାବେଳେ ଆମପାଇଁ ଜଳଖିଆ ବଢ଼ାଗଲା। ପ୍ରତ୍ୟେକ ପ୍ଲେଟରେ ବର୍ଫି ଦୁଇଟା, ସିଙ୍ଗଡା, ମିକ୍ସର, କଦଳୀ, ଆଳୁଚପ ଆଦି ସଜ୍ଜିତଥିଲା। ସମସ୍ତେ ଏକାସାଥିରେ ଖାଇବାର ଆରମ୍ଭ କଲୁ। ସମସ୍ତେ ଉଠିବାପରେ ମଧ୍ୟ ମୋ ଖାଇବା ସରୁନଥାଏ। ମୁଁ ମୋର ଗୋଟାଏ ଝୁଙ୍କରେ ଖାଇ ଚାଲିଥାଏ।

ଖାଉଖାଉ ପ୍ରାୟ ପନ୍ଦର ପ୍ଲେଟ ଜଳଖିଆ ଖାଇଦେଇଥିଲି । ପରେ ଚା' ଆସିଲା, ଲସ୍‌ସି ଆସିଲା, କୋଲ୍ଡ ଡ୍ରିଙ୍କ ଆସିଲା । ବରପାତ୍ର ବସିଥିବାରୁ ଏଭଳି ଖାଦ୍ୟପେୟର ଅଭାବ ଅନୁଭବ ହେଉ ନଥାଏ । ଚା' କପେ ଦି' କପ ପରେ ଲସ୍‌ସି ପିଉପିଉ ଦଶବାରଗ୍ଲାସ୍, କୋକାକୋଲା ଆଠଦଶ ବୋତଲ, ଏମିତି ଅଗଣତି ଖାଦ୍ୟର ସମାହାର, ସବୁ ଉଦରସ୍ଥ ହୋଇଯାଉଥାଏ । ଗପସପ ଭିତରେ ପାଟି ମଧ୍ୟ ଚାଲୁଥାଏ, ଦେଖୁଦେଖୁ ମଧ୍ୟାହ୍ନ ଭୋଜନର ସମୟ ଆସିଲଗା, କନ୍ୟାଘର ଲୋକେ ନିମନ୍ତ୍ରଣ କରିଆସିଲେ, ଚାଲନ୍ତୁ ଖାଇ ପକେଇବେ । ଜଳଖିଆର ପର୍ବ ନ ସରୁଣୁ ଭାତ ଖାଇବାପାଇଁ ଡାକରା ଆସିଯିବା ଜାଣି ସମସ୍ତଙ୍କ ସହ ମୁଁ ମଧ୍ୟ ବାହାରିଲି । ଟେବୁଲ ଚୌକିର ବ୍ୟବସ୍ଥା । ବିଶୁମାମା, ଶାନ୍ତନୁ, ରାମ ବିଶ୍ୱାଳଙ୍କ ସହ ମୁଁ ବି ବସିପଡିଲି, ଯଦିଓ ଖାଇବାପାଇଁ ଇଚ୍ଛା ହେଉ ନଥିଲା । ଅରୁଆ ଭାତ ସାଙ୍ଗରେ ବହଳ ଡାଲି, ତିନି ପ୍ରକାର ତରକାରୀ, ଖଟା, ଖଜୁରୀ ଖଟା, ଦହିବାଇଗଣ, ବୁନ୍ଦିଲଡୁ, ରସଗୋଲା ଆଦି ଅସୁମାରୀ ଖାଦ୍ୟ । ଖାଉଖାଉ ଖାଇହୋଇଗଲା ପେଟେ, ମନେମନେ ମୁଁ ଭାବୁଥିଲି, ସେ ପନ୍ଦରପ୍ଲେଟର ଜଳଖିଆ ଉଦରର କେଉଁ ଅଞ୍ଚଳରେ ଆତ୍ମଗୋପନ କଲା ଏତେ ଖାଦ୍ୟସାମଗ୍ରୀ ପାଇଁ ସ୍ଥାନ ସଂରକ୍ଷଣକରି ! !

ଯା' ବି ହେଉ ଭୁରିଭୋଜନ ପରେ ପୁଣି ଧର୍ମଶାଳାକୁ ଆସି ଆମ ବିଶ୍ରାମକକ୍ଷକୁ, ଯେଉଁଠି ବରବେଶରେ ବସିଥିଲା ଗୋପାଲ ଶର୍ମା । ସେ ଯେହେତୁ ଅନ୍ନସେବନ କରିବ ନାହିଁ, ତା ପାଇଁ ଏବଂ ତା' ସହ ବସିଥିବା ବନ୍ଧୁମାନଙ୍କ ପାଇଁ ଫଳାହାର ଆସିଲା ଭାଗଭାଗ କରି । ରସାଳ ଆମ୍ବ, କଟାକଟା ମଧୁର ସପୁରୀ, ନାଲିଟହଟହ କଟା ସେଓ, କଳାମଚମଚ କାଶ୍ମିରୀ ଅଙ୍ଗୁର, ସୂର୍ଯ୍ୟବୁଡାର ରଙ୍ଗରେ ସଜ୍ଜିତ ଲୋହିତ ଖରଭୁଜ, ଆଉ କେତେ କଣ । ହଜମ ପାଇଁ ଫଳାହାର ନିତାନ୍ତ ଆବଶ୍ୟକବୋଲି ବନ୍ଧୁମାନଙ୍କ ଯୁକ୍ତି, ମୁଁ ସାମୟିକ ଭାବରେ ସମର୍ଥନକରି ଆରମ୍ଭକଲି ଗୋଟାଏ ପରେ ଗୋଟାଏ ପ୍ଲେଟ୍ ସ୍ୱାଦିଷ୍ଟଫଳର ସୁମଧୁର ସରଂଜାମ । କିଛି ବନ୍ଧୁ ଶୋଇପଡିଥିଲେ, ଆଉ କିଛି ମୋର ଖାଇବା ଦେଖି ମୋତେ ଉଷୁକାଉଥିଲେ, ହସିମଜାକ୍‌ରେ ଖାଉଖାଉ ଅନୁମାନରେ ଦଶବାର ଭାଗ ହେବ । ଫଳାହାର ପରେ ପୁଣି ଲସ୍‌ସି, ସେ ମଧ୍ୟ ପାଞ୍ଚସାତ ଗିଲାସ । ଏତେ ଭୋଜନ ପରେ କେତେବେଳେ ବରଯାତ୍ରୀ ଶୋଭାଯାତ୍ରାର ଯିବାସମୟ ଆସିଗଲା, ପୁଣି ବରପକ୍ଷରୁ ଡାକରା ଆସିଲା, ବେଣ୍ଡବାଜାର ସମବେତ ସଂଗୀତ ପରିବେଶକୁ ଉତ୍ସବମୁଖର କରିପକାଇଥିଲା । ଆମେ ବନ୍ଧୁମାନେ ଡ୍ରେସ୍ ପାଇଟି ବାହାରିପଡିଲୁ ବରଯାତ୍ରୀ ଦଳରେ ସାମିଲ ହେବାପାଇଁ । ବାଜା ବାଜିଲା, ବର ବେଶରେ ଗୋପାଳ

ସୁସଜ୍ଜିତ ଗାଡ଼ିରେ ରାଜକୀୟ ଶୈଳୀରେ ବସିପଡ଼ିଲା । ଯାତ୍ରାରମ୍ଭ ହେଲା ବକ୍ସିବଜାର ଛକ ଆଡ଼କୁ । ବାଜାସହ ନୃତ୍ୟ ମଧ୍ୟ ଆରମ୍ଭ ହୋଇଗଲା । ମୁଁ ପେଟେ ଖାଇ ଦେଇଛି, ନାଚିବା କଷ୍ଟ ହେଲେ ହେଁ ନାଚଦଳ ସହ ମିଶିଗଲି । ଯା' ହେଉ, ନାଚିବାଫଳରେ କିଛି ଖାଦ୍ୟ ଜହମ୍ ହୋଇଗଲା । କନ୍ୟାଘର ଆସିଲା ପରେ ମୁଁ, ଶାନ୍ତନୁ ଓ ବିଶ୍ବମାମା ସ୍ଥିର କଲୁ, ଭୋକ ତ ଆଉ ନାହିଁ, ଆମେ ଯାଇ ଧର୍ମଶାଳାରେ ବିଶ୍ରାମ ନେଇଯିବା, ଆଉ ଭୋଜିରେ ମିଶିବା ନାହିଁ ।

ଆମ ନିଷ୍ପତ୍ତିଅନୁସାରେ ଆମେ ତିନିଜଣ ଧର୍ମଶାଳାକୁ ଫେରି ଆମକୋଠରୀରେ ଭିତରୁ କବାଟ କିଳି ଶୋଇବାର ଉଦ୍ୟମ କରୁଛି କି ନାଇଁ, କବାଟ ଖଟ୍‌ଖଟ୍ କରି କିଏ ଜଣେ ଡାକିଲା । ଶାନ୍ତନୁ କବାଟ ଫିଟାଇବା କ୍ଷଣି ଗୋପାଳର ବାପା ବଡ ପାଟିରେ କହିଲେ, ଚଲୋ ଖାଣା ଖାଣେ ଚଲୋ । ଶାନ୍ତନୁ ମୁଣ୍ଡିଆ ମାରି ଭାରି କାକୁତି ମିନତି ହୋଇ କହିଲା, ଆମକୁ ମାଫ୍ କରନ୍ତୁ ଆଜ୍ଞା, ଆମେ ଆଉ ଖାଇ ନାଇଁପାରୁଁ । ଗୋପାଳର ବାପା କହଲେ, 'କ୍ୟା ଜବାନ ଲଡକା ହୋ, ଚଲୋ, ନେହିଁ ଯାଓଗେ ତୋ ଖରାପ୍ ହୋଗା ଚଲୋ ।' ଏତିକି କହି ସେ ଚାଲିଗଲେ । ବାଧ୍ୟ ହୋଇ ଆମେ ପୁଣି ଡ୍ରେସ ଗଳେଇ ଖାଇବା ଉଦ୍ଦେଶ୍ୟରେ ବାହାରିଲୁ । ଭୋଜନ ସ୍ଥଳକୁ ଯାଇ ଦେଖିଲୁ, ସମସ୍ତେ ଖାଇବାରେ ବ୍ୟସ୍ତ । ଖାଲିଚୌକି ଦେଖି କେଡେ ଆଦରରେ ଆମକୁ ବସାଇଦେଲେ କନ୍ୟାଘର ଲୋକେ । ସାଙ୍ଗେସାଙ୍ଗେ ଖଲିଦନା ପକା ହୋଇଗଲା, ବଢ଼ାଗଲା ଭାତଡାଲି, ଛେନା ତରକାରୀ, ସପୁରିଖଟା ସହ ବଡବଡ ଦହିବରା, ରସଗୋଲା । ପେଟରେ ଜାଗା ନାହିଁ, ଏପଟେ ସ୍ୱାଦିଷ୍ଟଖାନାର ଲୋଭନୀୟ ଆକର୍ଷଣ । ଭାତ ତ ଗଲାନାହିଁ, ଦହିବରା ଛ' ସାତୋଟି, ରସଗୋଲା ଚାରି ପାଞ୍ଚୋଟି, ଏତିକିରେ ମନ ବୁଝିଗଲା । ଏଥିଲା ବନ୍ଧୁ ରାମଗୋପାଲ ଶର୍ମାଙ୍କ ବାହାଘରର ବରଯାତ୍ରୀ ଦଳରେ ଯିବା ଜୀବନ୍ତକାହାଣୀ । ଏମିତି କୌଣସିଅବସରରେ ମୁଁ ଖାଇ ନଥିଲି, ଉପଭୋଗ କରି ନଥିଲି । ତେବେ ବାହାଘରପରେ କିଛିବର୍ଷ ଅନ୍ତରାଳରେ ପୁତ୍ରସନ୍ତାନଟିଏ ଜନ୍ମଦେଇ ଯେତେବେଳେ ସେଇ ଝିଅଟି ଯେ ଗୋପାଲର ସ୍ତ୍ରୀର ମର୍ଯ୍ୟାଦା ପାଇଥିଲା, ତାର ଅସମୟ ଦେହାନ୍ତ ମୋର ସମସ୍ତ ଅନୁଭବକୁ ଫିକା କରିଦେଇଥିଲା । ଏଭଳି ଦୁଃଖଦ ସମ୍ବାଦ ମୋର ବାହାଘର ଯିବାର ସମସ୍ତ ଉଲ୍ଲାସକୁ ଖଣ୍ଡଖଣ୍ଡ କରି ହାଣିପକାଇଲା, ହାତେ ମାପି ପାହୁଣ୍ଡେ ଚାଳର ନ୍ୟାୟିକାତତ୍ତ୍ୱକୁ ସ୍ମରଣ କରାଇଦେଲା ।।

■ ■

କିଏବେ ମୋର ଧାରଣା ହିଁ ନଥିଲା, ପୁଣି ଥରେ ସମ୍ବଲପୁର ଲୋକମହୋତ୍ସବର ଆୟୋଜନର ନେତୃତ୍ୱ ନେବାପାଇଁ ପଡିବ। ସତାନବେରେ ଶୁଭାରମ୍ଭହୋଇଥିବା ଲୋକସଂସ୍କୃତିର ମହାନ୍ ସମାବେଶ ସଂଗଠନ କ୍ଷେତ୍ରରେ ମୁଁ ଥିଲି ଅନ୍ୟମାନଙ୍କ ମଧ୍ୟରେ ଆଗଧାଡ଼ିର ଆୟୋଜକ, କେବଳ ଆୟୋଜକ କହିଲେ ଭୁଲ୍‌ହେବ, ଅଶୋକ ମିଶ୍ରଙ୍କ ସହ ମିଳିତ ନେତୃତ୍ୱରେ ସମ୍ବଲପୁରର ଗଙ୍ଗାଧର ମଣ୍ଡପରେ ଆୟୋଜିତ ଓଡ଼ିଶା ଲୋକସଂଗୀତ ଓ ଲୋକନୃତ୍ୟ ମହୋତ୍ସବର ମୁଁ ଥିଲି ଅନ୍ୟତମ ସଂଗଠକ। ଏହାର ରୂପରେଖ, ରଙ୍ଗବର୍ଣ୍ଣ, ଚିତ୍ରବୈଚିତ୍ର୍ୟ, ସାଜସଜ୍ଜା, ନୃତ୍ୟ, ସଂଗୀତର ମାନ ଓ ସମ୍ମାନ, ସବୁଥିରେ ଥିଲା ଅଶୋକଙ୍କ ସହ ମୋର ନିବିଡ଼ସମ୍ପର୍କ। ପ୍ରଥମବର୍ଷର ବିପୁଳ ସଫଳତା ପରେ ଏହି ବିରାଟସମାବେଶ ସମ୍ବଲପୁର ଲୋକମହୋତ୍ସବ ନାମରେ ନାମିତହୋଇ ସମଗ୍ର ଓଡ଼ିଶାକୁ ଦୀର୍ଘ କୋଡ଼ିଏବାଇଶ୍ ବର୍ଷ ହେଲା ଲୋକସଂସ୍କୃତିର ସାଂଗଠାନିକ ନେତୃତ୍ୱ ଦେଇଆସୁଛି। ଗ୍ରାମଗ୍ରାମରେ ଲୁକ୍କାୟିତ ଲୋକକଳାକାରମାନଙ୍କୁ ଲୋକଲୋଚନକୁ ଆଣିପାରିଛି, ଲୁପ୍ତପ୍ରାୟ ଲୋକକଳା ସମୂହକୁ ଝାଡଜଙ୍ଗଲର ଅନ୍ଧାରରୁ ତୋଳିଆଣି ସହରୀକଳା ସହ ସମକକ୍ଷ କରିବାରେ ସମର୍ଥ ହୋଇଛି, ଶେଥା ପଡ଼ିଯାଇଥିବା ସାହିତ୍ୟର ଅଧ୍ୟାପକମାନଙ୍କୁ ସତେଜ୍ କରିପାରିଛି ଲୋକସଂସ୍କୃତି ସମ୍ବନ୍ଧରେ ଗବେଷଣାକରି ଏହାର ଆହୁରି ତାତ୍ତ୍ୱିକ ଅନୁଶୀଳନ କରିବାକୁ, ଗାଁ ଖୁଲିରୁ ସାଉଁଟି ଆଣିପାରିଛି ପଲ୍ଲୀଗୀତ ଓ ପଲ୍ଲୀନୃତ୍ୟଗୁଡ଼ିକୁ ସହରର ମଖମଲି ମଞ୍ଚଉପରକୁ, ବିଶେଷତଃ ପଶ୍ଚିମ ଓଡ଼ିଶାର ଲୋକସଂସ୍କୃତିକୁ ଦେଶବିଦେଶରେ ପରିଚିତ କରାଇ ଏହାର ସ୍ୱତନ୍ତ୍ର ପରିଚୟ ସୃଷ୍ଟିକରିପାରିଛି।

ଏତେସବୁ ଲକ୍ଷ୍ୟ ପୂରଣ କରିଥିବା ସମ୍ବଲପୁର ଲୋକମହୋତ୍ସବର ସାଂଗଠାନିକ ନେତୃତ୍ୱ ଦୀର୍ଘ ଏକୋଇଶବାଇଶ ବର୍ଷ ପରେ ମୋ'ଉପରେ ନ୍ୟସ୍ତ ହେବ, ମୁଁ କେବେ ଭାବି ନଥିଲି। ଷୋହଳର ଶାରୀରିକ ଅସୁସ୍ଥତା ସମ୍ପୂର୍ଣ୍ଣ ଭାବରେ ଅପସାରିତ ନହେଉଣୁ ସମ୍ବଲପୁର ଲୋକମହୋତ୍ସବର ସଂଯୋଜକ ପଦବୀରେ ଅଧିଷ୍ଠିତହେବାରେ କିଛିଟା ସଙ୍କୋଚଭାବ ଥିବାସତ୍ତ୍ୱେ ଏହାକୁ ମଧ୍ୟ ସମୟର ଆହ୍ୱାନଭାବରେ ଗ୍ରହଣକରି ମୋର ସମ୍ମତିପ୍ରଦାନ କରିଥିଲି। ମନ ଭିତରେ ଅବଶ୍ୟ ଗୋଟିଏ ଲୁକାୟିତ ଭାବନାଥିଲା ଯେ ଲୋକମହୋତ୍ସବ ଭଳି ବିରାଟ ଆୟୋଜନ ସହ ନିଜକୁ ସମ୍ପୂର୍ଣ୍ଣ ଭାବରେ ନିର୍ଲିପ୍ତ କରିଦେଲେ, ମୋର ଶାରୀରିକ ଏବଂ ମାନସିକ ଦୁର୍ବଳତା ସମ୍ପୂର୍ଣ୍ଣ ଭାବରେ ଅପସରିଯିବ। ଅବସରପରେ ଆବଶ୍ୟକ କରୁଥିଲି ଏଭଳି ଏକ କର୍ମତତ୍ପର ଯୋଜନା,

ଯାହା ଈଶ୍ୱରଙ୍କ ଆଶିର୍ବାଦଭଳି ହାତମୁଠାକୁ ଆସିଗଲା । ଜିଲ୍ଲାପାଳଙ୍କ ଦ୍ୱାରା ଆମନ୍ତ୍ରିତ ପ୍ରଥମ ବୈଠକରେ ହିଁ ମୋସପକ୍ଷରେ ଏତେ ସଦସ୍ୟଙ୍କ ସମର୍ଥନ ଅଛି, ମୁଁ ବିସ୍ମିତ ହୋଇଥିଲି । ତେବେ, ଏଭଳି ସାଂସ୍କୃତିକ କାର୍ଯ୍ୟକ୍ରମ କରିବାରେ ଦୀର୍ଘବର୍ଷର ଅଭିଜ୍ଞତା, ବିଭିନ୍ନ ଲୋକସଂଗଠନର ନେତୃବର୍ଗଙ୍କ ସହ ବର୍ଷବର୍ଷଧରି କାମ କରିବା ଅନୁଭୂତି ତଥା ନିଜେଜଣେ କଳାକାର ହେବା ସହ ଲୋକସଂସ୍କୃତିର ଗବେଷକ ହୋଇଥିବାରୁ ଏହାର ନେତୃତ୍ୱ ନେବାରେ କିଛି ଅସୁବିଧା ହେବନାହିଁ ବୋଲି ମୋର ମନଭିତରେ ଦୃଢ଼ ଧାରଣା ଜନ୍ମନେଇଥିଲା । ଯଦିଚ, ପ୍ରଥମ ବର୍ଷର ସଂଗଠନ ଏବଂ ବର୍ତ୍ତମାନ ସାଂଗଠନିକ ଶୈଳୀ ଭିତରେ ଆକାଶପାତାଳ ସମ୍ପର୍କ । ଏ ବିପୁଳ ସମର୍ଥନପାଇ ମୁଁ ସଂଯୋଜକ ଭାବରେ କାର୍ଯ୍ୟାରମ୍ଭ କଲି । ସମର୍ଥ ବର୍ମାଙ୍କ ଭଳି ଦକ୍ଷ ତଥା ବିଜ୍ଞ ଜିଲ୍ଲାପାଳ, ପ୍ରଦୀପ୍ତ ସାହୁଙ୍କ ଭଳି ଅଭିଜ୍ଞ ତଥା ଦୃଢ଼ମନୋବଳସମ୍ପନ୍ନ ଉପଜିଲ୍ଲାପାଳ ତଥା ନୋଡାଲ ଅଫିସର, ବିଭିନ୍ନ ରାଜନୈତିକ ଦଳର ନେତୃବର୍ଗଙ୍କ ସ୍ୱଚ୍ଛ ସମର୍ଥନ, ଆଞ୍ଚଳିକ ନେତୃବର୍ଗଙ୍କ ସ୍ପଷ୍ଟ ସମର୍ଥନ, ଆଞ୍ଚଳିକ ନେତୃବର୍ଗଙ୍କ ପରୋକ୍ଷ ଭରସା, ଶହଶହ ସ୍ୱେଚ୍ଛାସେବୀଙ୍କ ନିଃସ୍ୱାର୍ଥ କାର୍ଯ୍ୟଦକ୍ଷତା ମୋତେ ଶତ ସିଂହର ଶକ୍ତି ପ୍ରଦାନ କରିଥିଲା । ସମସ୍ତ ପ୍ରସ୍ତୁତିସହ ଆରମ୍ଭ ହୋଇଗଲା ଜାନୁଆରୀ ୪, ୫, ୬, ୨୦୧୮, ତିନିଦିନବ୍ୟାପି ସାଂସ୍କୃତିକ କାର୍ଯ୍ୟକ୍ରମର ମହାସମାବେଶ ।

ବିଭିନ୍ନ ଉପସମିତିଗୁଡ଼ିକର ଆବାହକଭାବରେ ରଞ୍ଜନ ସାହୁ, ମୋହିତ ସ୍ୱାଇଁ, ଅମୂଲ୍ୟ ମିଶ୍ର, ସୁବ୍ରତ ପଣ୍ଡା, ସ୍ୱର୍ଗତ ସୁକାନ୍ତ ବଡ଼େଇ, ମହମ୍ମଦ ସନାଉଲ୍ଲା, ଡ. ଗୌରୀଦାସ ପ୍ରଧାନ, ଆତୀଶ ଶତପଥୀ, ଆଶୀଷ ପ୍ରଧାନ, କୃଷ୍ଣଚନ୍ଦ୍ର ବାଗ, ରାଜେନ୍ଦ୍ରପ୍ରସାଦ ପଣ୍ଡା ସମସ୍ତେ ନିଜନିଜ ଦାୟିତ୍ୱ ଗ୍ରହଣକରି ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟାରମ୍ଭ କରିଦେଲେ । ସଂସ୍କୃତି ଅଧିକାରୀ ମେଡମ୍ ଅର୍ପିତା ବେହେରା ଏବଂ ପର୍ଯ୍ୟଟନ ଅଧିକାରୀ ଦଳେଇବାବୁଙ୍କ ଅକୁଣ୍ଠ ସମର୍ଥନରେ ସମସ୍ତ କାର୍ଯ୍ୟରେ ବ୍ୟଗ୍ରତା ଦେଖାଦେଲା । ସମସ୍ତଙ୍କ ମତାନୁସାରେ ଏହି ମହୋତ୍ସବର ବାର୍ତ୍ତା ରଖାଗଲା, ଆମର ସଂସ୍କୃତି ଆମର୍ ଟେକ୍ । କୃଷ୍ଣଚନ୍ଦ୍ର ବାଗ, ନିଜେ ଜଣେ ପୋଖତ କଳାକାର, ସାରାଦେଶ ବୁଲିଛନ୍ତି ନୃତ୍ୟ ଦଳ ସହ, ତେଣୁ ସବୁଠାରୁ ବଳିଷ୍ଠ ଓ ଉତ୍କୃଷ୍ଟ ଦଳ ମନୋନୟନ କରିବାରେ ତାଙ୍କୁ ଅସୁବିଧା ହୋଇ ନଥିଲା । ଏବର୍ଷ ସମ୍ବଲପୁରୀ ନୃତ୍ୟ ପରିବେଷଣ ପାଇଁ ସମ୍ବଲପୁରର ସମ୍ବଲପୁର କଳାସଂସଦ, କହର୍ ସାଂସ୍କୃତିକ ଅନୁଷ୍ଠାନ, ସମ୍ବଲପୁରୀ ଓ ଆଦିବାସୀ ନୃତ୍ୟକଳା ଓ ଗବେଷଣା ପ୍ରତିଷ୍ଠାନ, ନଟରାଜ, କଳା ଓ କଳାକାର ଆଦି ଅନୁଷ୍ଠାନମାନ ମନୋନୀତ ହୋଇଥିଲେ । ଲୋକସଂଗୀତ କାର୍ଯ୍ୟକ୍ରମପାଇଁ

ବିଭୂତିଭୂଷଣ ପଟ୍ଟନାୟକ, ରୀନାଦାସ, ଶଙ୍କର ଦତ୍ତଙ୍କ ଭଳି ପୁରାତନ କଳାକାରଙ୍କ ସହ ସର୍ବେଶ୍ୱର ଭୋଇ, ପଦ୍ମିନୀ ଦୋରା ଭଳି ନବାଗତ କଳାକାରମାନେ ଅଂଶଗ୍ରହଣ କରିଥିଲେ । ରାଜ୍ୟ ତଥା ଜାତୀୟଦଳ ପାଇଁ ସମସ୍ତଙ୍କ ପ୍ରସ୍ତାବ, ଉପଜିଲ୍ଲାପାଳଙ୍କ ସିଧାସଳଖ ପଦକ୍ଷେପ, ପର୍ଯ୍ୟଟନ ଅଧିକାରୀଙ୍କ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଫଳରେ ତିନିରାତି ପାଇଁ ପ୍ରତ୍ୟହ ସତରରୁ ଅଠର ଦଳଙ୍କ ପରିବେଷଣ ସମଗ୍ର ମହୋତ୍ସବକୁ ବିରାଟ ଯୋଜନାରେ ରୂପାୟିତ କରିଦେଲା । ଆତୀଶ ଶତପଥିଙ୍କ ଉଦ୍ୟମରେ ପ୍ରତ୍ୟେକ ରାତିପାଇଁ ସଂଖ୍ୟାଧିକ ବିଜ୍ଞ ଅତିଥିଙ୍କ ଆଗମନ ମଞ୍ଚର ଶୋଭାବର୍ଦ୍ଧନ କରିଥିଲା । ଶେଷରାତିରେ ଓଡ଼ିଶାର ରାଜ୍ୟପାଳ ମୁଖ୍ୟ ଅତିଥି ଭାବରେ ଯୋଗଦେଇ ମହୋତ୍ସବର ଗାମ୍ଭୀର୍ଯ୍ୟକୁ ବହୁମାତ୍ରାରେ ବୃଦ୍ଧି କରିଥିଲା । ରଞ୍ଜନସାହୁଙ୍କ ବିଚକ୍ଷଣ ବୁଦ୍ଧି ଯୋଗୁଁ ମଞ୍ଚସଜ୍ଜାରେ ନୂତନତା ସମସ୍ତଙ୍କ ମନକୁ ଆକର୍ଷିତ କରିଥିଲା । ପିଡବ୍ଲୁଡିର ସହକାରୀ ଯନ୍ତ୍ରୀ ପଟେଲବାବୁଙ୍କ ସୂକ୍ଷ୍ମାତିସୂକ୍ଷ୍ମ ଦୃଷ୍ଟିକୋଣ, ସମଗ୍ର ମହୋତ୍ସବର ପରିସରକୁ ବହୁବର୍ଣ୍ଣା କରିଥିଲା । ମଞ୍ଚସଜ୍ଜାର ଡିଜାଇନ ପଟେଲବାବୁଙ୍କ, ପ୍ରେକ୍ଷାଳୟର ସାଜସଜ୍ଜା ମଧ୍ୟ ପଟେଲବାବୁଙ୍କ ସୂକ୍ଷ୍ମକଳାକୃତିର ପ୍ରତିଫଳନ । ସମଗ୍ର ଲୋକମହୋତ୍ସବକୁ ଡାଲଖାଇର ଷୋହଳଦେବୀଙ୍କ ରୂପରେଖରେ କଳ୍ପିତ ହୋଇଥିବାରୁ, ମଞ୍ଚସଜ୍ଜାରୁ ଆରମ୍ଭକରି, ସ୍ମରଣିକାର ପ୍ରଚ୍ଛଦ, ମାନପତ୍ର, ବେଜ୍, ପ୍ରଚାରପତ୍ର, ସବୁଥିରେ ସେଇ ସଂହତି ସତର୍କତାରସହ ପାଳନ କରାଯାଇଥିଲା । ସେମୁନାର୍ ବା ଆଲୋଚନାଚକ୍ର ପାଇଁ ପ୍ରଥମକରି ପାନ୍ଥନିବାସର ବୀର ସୁରେନ୍ଦ୍ରସାଏ ହଲରେ ଆୟୋଜନ କରାଯାଇଥିଲା । ସେମିନାର ଆବାହକ ବୟୋଜ୍ୟେଷ୍ଠ ଡ. ବିଭୂତି ଭୂଷଣ ମିଶ୍ର ଓ ସହଆବାହକ ମନୋଜ ପଣ୍ଡାଙ୍କ ନେତୃତ୍ୱରେ ପରିଚାଳିତ ହୋଇଥିଲା । ପ୍ରଥମ ଦିବସର ବିଷୟବସ୍ତୁ ଥିଲା ଆଦିବାସୀ ବାଷା ଓ ସଂସ୍କୃତି, ଲୋକମହୋତ୍ସବର ଇତିହାସରେ ପ୍ରଥମ କରି କେନ୍ଦ୍ର ସାହିତ୍ୟ ଏକାଡେମୀ ଏହାର ପୃଷ୍ଠପୋଷକ ଥିଲା । କଲିକତାରୁ ଆସି ଏକାଡେମୀ ଅଧିକାରୀ ଗୌତମ ପାଲଙ୍କ ଉପସ୍ଥିତିରେ ଏହି ଆଲୋଚନାଚକ୍ରକୁ ଭବାନୀପାଟଣା, କୋରାପୁଟ, କନ୍ଧମାଳ ତଥା ଭୁବନେଶ୍ୱରରୁ ବକ୍ତାମାନେ ଆସି ଅଂଶଗ୍ରହଣ କରିଥିଲେ । ଡ. କୁମୁଦରଞ୍ଜନ ପଣିଗ୍ରାହୀ ଏବଂ ଡ. କୃଷ୍ଣଚନ୍ଦ୍ର ପ୍ରଧାନ ଦୁଇଟି ଅଧିବେଶନରେ ଅଧ୍ୟକ୍ଷତା କରିଥିଲେ । ଦ୍ୱିତୀୟ ଦିବସରେ ପଶ୍ଚିମଓଡ଼ିଶାର ଦଣ୍ଡନୃତ୍ୟ ବିଷୟରେ ସୋନପୁରରୁ ପୁରୁଷୋତ୍ତମ ମିଶ୍ର, ଗଦାଧର ବାରିକ ଆସି ଦଣ୍ଡ ନୃତ୍ୟ ପ୍ରଦର୍ଶନସହ ଆଲୋଚନାଚକ୍ରରେ ଭାଗ ନେଇଥିଲେ । ଏଥିସହ ମଞ୍ଚ ପରିସରରେ କବିତା ପାଠୋତ୍ସବ ମଧ୍ୟ ଚାଲିଥିଲା । ଏଥିରେ ଅର୍ଦ୍ଧଶତାଧିକ କବି ସ୍ୱରଚିତ କବିତାପାଠ କରିଥିଲେ ।

ସ୍ମରଣିକା, ଗୌରୀଦାସଙ୍କ ନେତୃତ୍ୱ ଓ ପରିଶ୍ରମରେ ପ୍ରକାଶିତହୋଇ ପ୍ରଥମ ରାତିର ଉଦ୍‌ଘାଟନୀ ଅବସରରେ ହିଁ ଉନ୍ମୋଚିତ ହୋଇଥିଲା । ଡ. ପ୍ରଦୀପ କୁମାର ପଣ୍ଡା ଏହାର ମୁଖ୍ୟ ସମ୍ପାଦକ ଭାବରେ ଦାୟିତ୍ୱ ବହନ କରିଥିଲେ । ପ୍ରତ୍ୟେକ ବର୍ଷର ମହୋତ୍ସବ ଅପେକ୍ଷା ଏ ବର୍ଷର ମହୋତ୍ସବର ସ୍ୱାତନ୍ତ୍ର୍ୟ ଥିଲା ମଞ୍ଚପ୍ରଦର୍ଶନରେ ସମୟ ନିର୍ଘଣ୍ଟ । ସମୟର ସଦୁପଯୋଗ କରି, ସଂଗୀତ ଓ ନୃତ୍ୟ ପରିବେଷିତ ହୋଇଥିଲା । ମଞ୍ଚଦାୟିତ୍ୱରେ ଥିବା ରଞ୍ଜନ ସାହୁ ଏବଂ ମଞ୍ଚର ଅନ୍ୟ ଏକ ପାର୍ଶ୍ୱରେ ମୋର ବ୍ୟକ୍ତିଗତ ଉପସ୍ଥିତି ଫଳରେ ସମୟ ନଷ୍ଟ ନକରି ଦଳମାନଙ୍କର ମଞ୍ଚ ପ୍ରବେଶ ଓ ପ୍ରସ୍ଥାନ, ସବୁଯାକ ଲୋକେ ଆନନ୍ଦରେ ଉପଭୋଗ କରିଥିଲେ, ଆରମ୍ଭ ଓ ଶେଷମଧ୍ୟରେ ଗୋଟାଏ ମିନିଟ ମଧ୍ୟ ମଞ୍ଚ ପଡ଼ିଆ ପଡ଼ି ନଥିଲା । ତିନିଦିନଯାକର ପଁଚାଳିଶରୁ ପଚାଶଟି ପ୍ରଦର୍ଶନ ଏଥିପାଇଁ ସମ୍ଭବ ହୋଇପାରିଥିଲା । ସତ୍ୟରଞ୍ଜନ ବେହେରାଙ୍କ ସହଯୋଗରେ ଉଦ୍‌ଘୋଷଣାରେ ସଂକ୍ଷିପ୍ତତା ଏବଂ ମାଧୁର୍ଯ୍ୟ ରକ୍ଷା କରାଯାଇପାରିଥିଲା । କଳାକାରମାନଙ୍କ ତରଫରୁ ଖାଦ୍ୟପେୟ ସମ୍ବନ୍ଧରେ କୌଣସି ଅଭିଯୋଗ ଆସି ନଥିଲା । ନୋଡାଲ ଅଫିସର ପ୍ରଦୀପ ସାହୁଙ୍କ ଉଦ୍ୟମରେ ଜାତୀୟ ଦଳଗୁଡ଼ିକ ପାଇଁ ଆଦିତ୍ୟ ଆଲୁମିନାର ଅତିଥି ଭବନରେ ବ୍ୟବସ୍ଥା ହୋଇଥିବାରୁ ରହଣିର ଆବାହକ ମୋହିତ ସ୍ୱାଇଁ ଆଶ୍ୱସ୍ତ ହୋଇଥିଲେ । ସେମାନଙ୍କ ଯିବାଆସିବା ପାଇଁ ପୌର କମିଶନର ବ୍ୟବସ୍ଥା କରିଥିବାରୁ ଏ କାର୍ଯ୍ୟରେ କୌଣସି ଅସୁବିଧା ହୋଇନଥିଲା । ବାକିମାନଙ୍କ ପାଇଁ ମାରଓ୍ୱାଡି ଧର୍ମଶାଳାରେ ରହଣି ଓ ଖାଦ୍ୟପେୟର ଆୟୋଜନ ହୋଇଥିଲା ।

ନୋଡାଲ ଅପିସର ସାହୁବାବୁଙ୍କସହ ସଠିକ୍ ସଂହତି ରଖୁଥିବାରୁ ସେ ମୋତେ ସମ୍ମାନର ସହ ସମସ୍ତ କାର୍ଯ୍ୟରେ ସହଯୋଗ କରୁଥିଲେ । ସମଗ୍ର ମହୋତ୍ସବର ଆୟୋଜନ ପାଇଁ ମୁଁ ଜିଲ୍ଲାପାଳଙ୍କୁ ମାତ୍ର ଦୁଇଥର ବ୍ୟକ୍ତିଗତଭାବରେ ଭେଟିଥିଲି । ସମର୍ଥବାବୁଙ୍କ କେବଳ ଗୋଟାଏ ଉତ୍ତର, ଅର୍ଥାଭାବ ରହିନାହିଁ, ଆଗକୁ ମାଡିଚାଲ, ମହୋତ୍ସବକୁ ସଫଳ କର । ତୃତୀୟ ତଥା ଶେଷରାତିର ପ୍ରଦର୍ଶନପରେ ନୋଡାଲ ଅଫିସର ମୋତେ ଡାକି ସମଗ୍ର ମହୋତ୍ସବର ପ୍ରାଙ୍ଗଣରେ ଏକାଏକା ବୁଲି ଆନନ୍ଦ ଗଦ୍‌ଗଦ୍ ସ୍ୱରରେ କହିଲେ, ଆପଣଙ୍କୁ ମୁଁ ମୋ ବାପାଙ୍କ ଭଳିଆ ସମ୍ମାନ ଦିଏ, କାରଣ ଆପଣ ସେହି ବୟସର ଜଣେ ଦକ୍ଷସଂଗଠକ । ମୁଁ କହିଲି, ପ୍ରଥମବର୍ଷର ଲୋକମହୋତ୍ସବର ବେଳର ଜିଲ୍ଲାପାଳ ନରେନ୍ଦ୍ର ମିଶ୍ରଙ୍କ ଭଳି ମୁଁ ଆପଣଙ୍କୁ ନୋଡାଲ ଅଫିସର ଭାବରେ ପାଇ ନିଜକୁ ଧନ୍ୟ ମନେକରୁଛି । ଆମ ଦୁହିଙ୍କ ଅବିଶ୍ରାନ୍ତ ପରିଶ୍ରମ, ଆବାହକମାନଙ୍କ

ପ୍ରଚଣ୍ଡ ପରିଶ୍ରମ ଏବଂ ସହସ୍ରାଧିକ ସ୍ୱେଚ୍ଛାସେବୀମାନଙ୍କ ଅକ୍ଳାନ୍ତ ଖଟଣିର ଫଳସ୍ୱରୂପ ଦୁଇହଜାର ଅଠରର ସମ୍ବଲପୁର ଲୋକମହୋତ୍ସବ ସଫଳ ହେଲା । କଳା ପ୍ରଦର୍ଶନୀ, ପଲ୍ଲିଶ୍ରୀ ମେଳାର ବିରାଟ ପସରା ମଧ୍ୟ ଦର୍ଶକମାନଙ୍କୁ ଆକର୍ଷିତ କରିବାରେ ସହାୟକ ହୋଇଥିଲା । କଳାପ୍ରଦର୍ଶନୀର ଆବାହକ ସୁକାନ୍ତ ବଡ଼େଇ ଥିଲେ ଜଣେ ଶୃଙ୍ଖଳିତ କର୍ମୀ । କରୋନାରରେ ତାଙ୍କ ଅଚାନକ ଦେହାନ୍ତ ମୋତେ ବ୍ୟଥିତ କରିଥିଲା । ଲୋକମହୋତ୍ସବ ପାଇଁ ତାଙ୍କ ଅବଦାନ ଅତୁଳନୀୟ ।

ଏହି ମହୋତ୍ସବର ଭିତ୍ତିସଂଗୀତକୁ ରଚନା କରିଥିଲେ ମଙ୍ଗଳଚରଣ ବିଶ୍ୱାଳ ଏବଂ ସଂଗୀତରେ ସଜାଇଥିଲେ ବ୍ରଜେନ୍ଦ୍ର ନାୟକ । ପ୍ରଥମଥର ପାଇଁ ଉଦ୍‌ଘାଟନୀ ପୂର୍ବମୁହୂର୍ତ୍ତରେ ଏହି ଭିତ୍ତିସଂଗୀତର ତାଳେତାଳେ ମଞ୍ଚରେ ଉକିଆ ଅନୁଷ୍ଠାନର କଳାକାରମାନଙ୍କ ଦ୍ୱାରା ନୃତ୍ୟ ପ୍ରଦର୍ଶିତ ହୋଇଥିଲା । ଏହାର ନିର୍ଦ୍ଦେଶକ ଥିଲେ ସ୍ୱୟଂ ମଂଚଦାୟିତ୍ୱରେ ଥିବା ଆବାହକ ରଞ୍ଜନ ସାହୁ । ପ୍ରଥମଥର ପାଇଁ ଉଦ୍‌ଘାଟନୀ ମୁହୂର୍ତ୍ତରେ ପରିବର୍ତ୍ତନ ଅଣାଯାଇଥିଲା । ମୋର ଅନୁଜ ବନ୍ଧୁମାନେ, ବୃନ୍ଦାବନ ମିଶ୍ର, ସିଦ୍ଧାର୍ଥ ପଣ୍ଡା, ସତ୍ୟନାରାୟଣ ଠାକୁର, ପ୍ରଶାନ୍ତ ମାଝି ଭଳି ଆହୁରି ଅନେକଙ୍କ ସହଯୋଗରେ ଏତେବଡ଼ ମହୋତ୍ସବ ସଫଳ ହୋଇଥିଲା ।

ରାଜେନ୍ଦ୍ର ପ୍ରସାଦ ପଣ୍ଡାଙ୍କ ଆବାହକତ୍ୱରେ ଗଠିତ ସମ୍ବର୍ଦ୍ଧନା ଚୟନ କମିଟି ଦ୍ୱାରା ଛ' ଜଣ ବିଶିଷ୍ଟ କଳାକାରଙ୍କୁ ଏହି ମହୋତ୍ସବ ଅବସରରେ ସମ୍ମାନିତ କରାଯାଇଥିଲା । କଣ୍ଠଶିଳ୍ପୀ ବିଭୁତି ପଟ୍ଟନାୟକ, ରୀନା ଦାସ, ମୋହନ ସେଠ, ଲୋକବାଦ୍ୟଶିଳ୍ପୀ ହୃଶିକେଷ ସୁନା, ସମରା ମାଝି, ଗୀତିକବି କ୍ଷୀତିପତି ସାହୁ ଆଦି ଛ ଜଣଙ୍କୁ ଉପାୟନ ସହ ପ୍ରଥମ କରି ପାଞ୍ଚହଜାର ଟଙ୍କା ଆର୍ଥିକପୁରସ୍କାର ମଧ୍ୟ ପ୍ରଦାନ କରାଯାଇଥିଲା ।

ସବୁ ଠିକ୍‌ଠାକ୍ ଭିତରେ କିଛିଟା ବ୍ୟତିକ୍ରମ ମୋର ମନକୁ ଆସି ନଥିଲା । ମୋର ଅନିଚ୍ଛା ସତ୍ତ୍ୱେ କେତେକ ଲାଭଖୋର ଶସ୍ତା ମନୋବୃତ୍ତିର ଯୁବକ ସ୍ୱେଚ୍ଛାସେବୀ ନାମରେ ସଂଗଠନକୁ ଅନୁପ୍ରବେଶ କରିଥିଲେ, ସେମାନଙ୍କ ଉପସ୍ଥିତି ମୋତେ ସମୟସମୟରେ ଅଣନିଶ୍ୱାସୀ କରିପକାଉଥିଲା । ଅର୍ଥଅର୍ଜନ କରିବା ଉଦ୍ଦେଶ୍ୟରେ ଆସିଥିବା ଏହି ତଥାକଥିତ ସଦସ୍ୟମାନେ ସରକାରୀ ଅଫିସରମାନଙ୍କ ଦୃଷ୍ଟି ଆକର୍ଷଣ କରି ଲାଭଉଠାଇବାରେ ସଫଳ ମଧ୍ୟ ହୋଇଥିଲେ, ଯାହାକୁ ମୁଁ ବାରମ୍ବାର ପ୍ରତିରୋଧ ସତ୍ତ୍ୱେ ରୋକିବାରେ ବିଫଳ ହୋଇଥିଲି । ଏମାନଙ୍କ ସହ ଲଢ଼ିବାପାଇଁ ମୋର ଏ ବୟସ ଅନୁମତି ଦେଉ ନଥିଲା । ଏମାନଙ୍କ ଅନୁପ୍ରବେଶ, ମୋତେ ନୁହେଁ, ସାରା

ସମ୍ବଲପୁରର ସାଂସ୍କୃତିକ ବାତାବରଣକୁ କଳୁଷିତ କରିପକାଇଛି । ସଂସ୍କୃତିନାମରେ ଭଣ୍ଡାମୀ ଏମାନଙ୍କ ଉଦ୍ଦେଶ୍ୟ ! ! ଅର୍ଥଉପାର୍ଜନ ବ୍ୟତିତ ଏମାନଙ୍କ ସଂସ୍କୃତି ସହ କୌଣସି ସମ୍ପର୍କ ନାହିଁ । ଭବିଷ୍ୟତର ଆୟୋଜକମାନେ ଏଥିପ୍ରତି ସତର୍କ ଦୃଷ୍ଟିଦେବାର ଆବଶ୍ୟକତା ରହିଛି ।

ବହୁ ଚିନ୍ତା ଓ ଚେତନାର ଫଳ ସ୍ୱରୂପ ସମ୍ବଲପୁର ଲୋକମହୋତ୍ସବ ତା'ର ରଜତ ଜୟନ୍ତୀ ପାଳନ କରିବାକୁ ଯିବ ଆଉ ହାତଗଣତି କେତେ ବର୍ଷ ଭିତରେ । ଲୋକମହୋତ୍ସବ ତା'ର ଲକ୍ଷ୍ୟ ଓ ଆଦର୍ଶରୁ ଚ୍ୟୁତ ନହେଉ, ଅଧିକରୁ ଅଧିକ ଲୋକକଳାକାର ଏଥିରେ ସାମିଲ ହୁଅନ୍ତୁ, ଅଧିକ ଗବେଷକ ଲୋକସଂସ୍କୃତିର ବିଭିନ୍ନ ପ୍ରସଙ୍ଗରେ ଗବେଷଣା ଜାରି ରଖନ୍ତୁ । କାରଣ, ଲୋକସଂସ୍କୃତି ଆମ ଜାତିର ପରିଚୟ, ଏହାରି ମାଧ୍ୟମରେ ଆମେ ସମଗ୍ରବିଶ୍ୱରେ ପରିଚିତ, ତାହାର ସଂରକ୍ଷଣ ଏବଂ ପ୍ରଚାରପ୍ରସାର ଆମ ନୈତିକଦାୟିତ୍ୱ । ଲୋକମହୋତ୍ସବ ଆମ ସାଂସ୍କୃତିକ ବିରାଦରୀର ନିଦାଭଦ୍ରି, ପାଳପୁରୁଗର ପୁରୁଣା ଅରୁଆଚାଉଳ ଭଳିଆ ମହମହ, ଭଜା କଳାମୁଗର ଡାଲି ଭଳିଆ ଟହଟହ, ତାର ଯଥାଯଥ ସଂରକ୍ଷଣ, ଆମ ପୂର୍ବାପାଡି ଦିନର ଖାନଦାନୀ ପରମ୍ପରା, ନା କଣ ! !



ଏ ଯୁଗ ସମ୍ମାନ, ସମ୍ବର୍ଦ୍ଧନାର ପୁରସ୍କାର ଉପାଧିର ଯୁଗ, ଯେ କୌଣସି କ୍ଷେତ୍ରରେ ହେଉ, ଜଣେ କେତେ ଅଧିକ ସମ୍ବର୍ଦ୍ଧନା, ପୁରସ୍କାର ପାଇଛି, ତା' ଆଧାରରେ ପ୍ରତିଭାର ଗଣିତ କଷାଯାଉଛି । ଉପାୟନ, ମାନପତ୍ର, ସ୍ମାରକୀ, ଏପରି କି ଅର୍ଥମଧ ପ୍ରଦାନ କରାଯାଉଛି ବିଭିନ୍ନ ସରକାରୀ, ବେସରକାରୀ ଅନୁଷ୍ଠାନଦ୍ୱାରା । ସାହିତ୍ୟ, ସଂସ୍କୃତି, କ୍ରୀଡ଼ା ଆଦି ଅନେକକ୍ଷେତ୍ରରେ ଉଲ୍ଲେଖନୀୟ ଦକ୍ଷତା ପ୍ରଦର୍ଶନପାଇଁ ଏଭଳି ସ୍ୱୀକାରୋକ୍ତିର ପ୍ରତ୍ୟୁତ୍ତରରେ ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନଙ୍କୁ ସମ୍ମାନିତକରିବା ସମାଜ ଓ ସଭ୍ୟତାପାଇଁ ଅବିସ୍ମରଣୀୟ ତଥା ଗୁରୁତ୍ୱପୂର୍ଣ୍ଣ ଘଟଣା । ଅନେକ କ୍ଷେତ୍ରରେ ପ୍ରତିଭାକୁନେଇ ଚୟନକର୍ତ୍ତାମାନଙ୍କ ଖାମଖିଆଲୀ ନିଷ୍ପତ୍ତି ସମାଲୋଚକମାନଙ୍କୁ ଖୋରାକ୍ ଯୋଗାଏ ଆଙ୍ଗୁଳି ନିର୍ଦ୍ଦେଶକ କରିବାକୁ । ସରକାରୀ ହେଉ ଅବା ବେସରକାରୀ ହେଉ, ଠିକଣାସମୟରେ ଠିକ୍ ବ୍ୟକ୍ତି ଯଦି ପ୍ରକୃତ ସମ୍ମାନରୁ ବଞ୍ଚିତ ହୁଏ, ତାହା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । ତେବେ ଆମଭଳି କ୍ଷୁଦ୍ର ପରିସର ମଧ୍ୟରେ କଳା ଓ ସାହିତ୍ୟର ସୃଜନଶୀଳତାକୁ ନେଇ କୋଉ ଅନୁଷ୍ଠାନ ଯଦି ପ୍ରତିଭାକୁ ସ୍ୱୀକାରକରି ସମ୍ବର୍ଦ୍ଧନାପାଇଁ ନିମନ୍ତ୍ରଣ କରେ, ସେଇଠି ଆମକୁ ଗର୍ବଲାଗେ,

ଆତ୍ମସନ୍ତୋଷ ଲାଗେ, ଆହୁରି ଅଧିକ ସେଇକ୍ଷେତ୍ରରେ ମନୋନିବେଶ କରିବାକୁ ଇଚ୍ଛା ଜାଗ୍ରତ ହୁଏ, ବିଭିନ୍ନ ପ୍ରତିଯୋଗିତାରେ ଲଢ଼ିଭିଡ଼ି ପୁରସ୍କାର ଜିଣିବା ଅଲଗାକଥା, ତେବେ ସମାଜର ନିର୍ଦ୍ଦିଷ୍ଟ ସ୍ୱାର୍ଥ ସାଧନ ପାଇଁ କାର୍ଯ୍ୟ କରିଥିବା ଉଲ୍ଲେଖନୀୟ ଅବଦାନ ପାଇଁ ସମ୍ବର୍ଦ୍ଧନା ଗ୍ରହଣ କଲେ, ତ୍ରୁଟି କିଛିନାହିଁ ବୋଲି ମୋର ଦୃଢ଼ଧାରଣା । ଯଦି ସମାଜ ପ୍ରତିଭା ଏବଂ ଅବଦାନକୁ ସ୍ୱୀକାର କରୁଛି, ତା' ଦ୍ୱାରା ଲାଭବାନ୍ ହେଉଛି, ତେବେ ସେଭଳି ପ୍ରତିଭାକୁ ଯଦି ସାଦରସମ୍ବର୍ଦ୍ଧନା ପ୍ରଦାନ କରାଯାଏ, ତେବେ ଭୁଲ୍ ରହିଲା କେଉଁଠି ! !

ଆଜି ତାରିଖରେ ବହୁ ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନଙ୍କ ଘରେ ମାଳମାଳ ମାନପତ୍ର, ସ୍ମାରକୀ, ଉପାୟନର ସାମଗ୍ରୀ । ପ୍ରବୀଣଠାରୁ ନବୀନ ପର୍ଯ୍ୟନ୍ତ, ସମସ୍ତେ ଆଜି ଏହି ଘୋଡ଼ାଦୌଡରେ, କିଏ ପଛରେ, ଆଉ କିଏ ଆଗରେ, ସାଧନା ଯଦି ନିର୍ଦ୍ଦିଷ୍ଟ ଲକ୍ଷ୍ୟର, ତେବେ ଅବଶ୍ୟ ସମ୍ମାନ ପାଦତଳକୁ ଆସିବ, ଲକ୍ଷ୍ୟଚ୍ୟୁତ ସାଧନା ଏହି ସୁଯୋଗରୁ ବଞ୍ଚିତହେବା ସ୍ୱାଭାବିକ । ମୋର ସମଗ୍ର ଜୀବନକାଳ ମଧ୍ୟରେ ନାଟକ ଓ ଲୋକସଂସ୍କୃତିକୁ ନେଇ ମୁଁ ଯାହା ବି କର୍ତ୍ତବ୍ୟ ସାଧନ କରିଛି, ସେଥିରେ ମୋ ସମାଜ ଓ ସଂସ୍କୃତି ନିଶ୍ଚିତ ଭାବରେ ଲାଭବାନ୍ ହୋଇଛି । ଯା' ଫଳରେ ଅନେକ ଅନୁଷ୍ଠାନ ମୋତେ ସମ୍ବର୍ଦ୍ଧିତକରିବାକୁ ଆଗେଇ ଆସିଛନ୍ତି । ବିଶେଷତଃ ସମ୍ବଲପୁରୀ ନାଟକ ଏବଂ ପଶ୍ଚିମ ଓଡ଼ିଶାର ଲୋକସଂସ୍କୃତିକୁ ନେଇ ମୋର ଲଗାତାର ଉଦ୍ୟମପାଇଁ ଲୋକେ ମୋତେ ଚିହ୍ନନ୍ତି, ଅନୁଷ୍ଠାନମାନେ ସଭାସମିତିକୁ ଡାକନ୍ତି, ସମ୍ବର୍ଦ୍ଧନା ପ୍ରଦାନ କରନ୍ତି । ଏଭଳି କରିବାଦ୍ୱାରା ସମ୍ବର୍ଦ୍ଧନା ପ୍ରଦାନକାରୀ ଅନୁଷ୍ଠାନ ମଧ୍ୟ ଗର୍ବ ଅନୁଭବ କରିଥାଏ ।

ଦୁଇହଜାର ଅଠରର ସମ୍ବଲପୁର ଲୋକମହୋତ୍ସବର ସଂଯୋଜକ ଭାବରେ ଦାୟିତ୍ୱ ଗ୍ରହଣ ପୂର୍ବରୁ ସତରର ଲୋକମହୋତ୍ସବ ଅବସରରେ ମୋତେ ନାଟକର ବିକାଶରେ ମୋର ଭୂମିକା, ନାଟକରେ ସଂଗୀତ ନିର୍ଦ୍ଦେଶନା ତଥା 'ଭରନି' ଭଳି ସମ୍ବଲପୁରୀ ସାହିତ୍ୟ ପତ୍ରିକାର ସମ୍ପାଦକ ଭାବରେ କାର୍ଯ୍ୟ କରିଥିବାରୁ ସମ୍ବର୍ଦ୍ଧିତ କରାଯାଇଥିଲା । ଲୋକମହୋତ୍ସବ ଭଳି ଅବସରରେ ଯଦିଓ ଲୋକଶିଳ୍ପୀ ବ୍ୟତିରେକ ଅନ୍ୟକ୍ଷେତ୍ରର ପ୍ରତିଭାମାନଙ୍କୁ ସମ୍ମାନୀତ କରିବାର ମୁଁ ଘୋର ବିରୋଧୀ । ତେବେ କେତୋଟିସ୍ଥାନରେ ଅନ୍ୟର ମୁହଁକୁ ଦେଖି ନୀରବ ରହିବାକୁ ପଡେ । ତେଣୁ ବାଧ ହୋଇ ମଞ୍ଚରୁ ଏହି ସମ୍ବର୍ଦ୍ଧନା ଗ୍ରହଣକରିବାକୁ ପଡିଥିଲା । ଜାଣି ନଥିଲି, ପରବର୍ଷ ମୋତେ ହିଁ ସଂଯୋଜକ ଭାବରେ ଦାୟିତ୍ୱ ନେବାକୁ ପଡ଼ିବ ବୋଲି । ତେବେ



ମୋର ଏହି ସଂଯୋଜକ ଥିବାସମୟରେ ଦୁଇ ଜଣ ଲୋକଶିଳ୍ପୀଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା । ଦଳିତ ବର୍ଗଙ୍କ ପ୍ରତିନିଧିତ୍ୱ କରୁଥିବା ଏହି କଳାକାରମାନଙ୍କ ଭିତରେ ଥିଲେ ଜଣେ ପାରମ୍ପରିକ ଢୋଲବାଦକ ଏବଂ ଅନ୍ୟ ଜଣେ ଥିଲେ ମାନ୍ଦଲ୍‌ବାଦକ, ଯେଉଁମାନେ ବର୍ଷବର୍ଷ ଧରି ବିଭିନ୍ନ ସମାଜିକ ତଥା ସାଂସ୍କୃତିକ ଉତ୍ସବାନୁଷ୍ଠାନମାନଙ୍କରେ ଢୋଲ ଓ ମାନ୍ଦଲ ବଜେଇ ଆସୁଥିଲେ, ତଥାପି ଥିଲେ ଅଣସ୍ୱୀକୃତ । ପ୍ରଥମକରି ଉପାୟନ, ସ୍ମାରକୀ ସହ ନଗଦ ପାଞ୍ଚ ହଜାର ଟଙ୍କା ଆର୍ଥିକପୁରସ୍କାର ମଧ୍ୟ ପ୍ରଦାନ କରାଯାଇଥିଲା । ଏଭଳି କଳାକାରମାନଙ୍କୁ ସମ୍ବର୍ଦ୍ଧିତ କରିବାରେ ମୁଁ ବ୍ୟକ୍ତିଗତ ଭାବରେ ଆତ୍ମତୃପ୍ତି ଲାଭ କରିଥିଲି । ଅଠରର ଲୋକମହୋତ୍ସବର ସଫଳ ଉଦ୍‌ଯାପନୀରେ ଉଣେଇଶ ମସିହାରେ ଦୁଇଟି ପ୍ରମୁଖ ଅନୁଷ୍ଠାନରୁ ସମ୍ବର୍ଦ୍ଧିତହେବା ଘଟଣା ମୋର ସାଂସ୍କୃତିକଜୀବନର ବିଶେଷ ସ୍ୱୀକୃତି ବୋଲି ମୁଁ ବିଚାର କରେ । ପ୍ରଥମଟି ଭୁବନେଶ୍ୱରର ସମ୍ଭାବନା ଅନୁଷ୍ଠାନ ତରଫରୁ ପ୍ରଦାନ କରାଯାଇଥିଲା ଓଡ଼ିଆ ମହୋତ୍ସବ ସମ୍ମାନ, ୨୦୧୯ । ନାଟ୍ୟକାର, ନାଟ୍ୟ ସଂଗଠକ ତଥା ସ୍ତମ୍ଭରଚୟିତା ଭାବରେ ଏହି ସମ୍ମାନ ଦିଆଯାଇଥିଲା । ଅସୁସ୍ଥତା ଯୋଗୁଁ ମୁଁ ବ୍ୟକ୍ତିଗତ ଭାବରେ ଏହି ଉତ୍ସବରେ ଯୋଗ ଦେଇ ପାରିନଥିବାରୁ ଏହି ସଂଗଠନ ମୋ ଘରକୁ ଉପାୟନ ଏବଂ ମାନପତ୍ର ପଠାଇଥିଲେ । ଦ୍ୱିତୀୟ ଘଟଣାଟି ହେଲା ଦୈନିକ ସମ୍ବାଦପ୍ରଦତ୍ତ ଲୁଗାର୍ ସମ୍ମାନ, ୨୦୧୯ । ଏହି ସମ୍ବର୍ଦ୍ଧନା ଗ୍ରହଣ କରିବା ପାଇଁ ମୋତେ ଭବାନୀପାଟଣା ଯିବାକୁ ହୋଇଲା । ମୋ ସହ ରସରାଜ ବ୍ୟଙ୍ଗକବି ଅଚ୍ୟୁତ ପୁରୋହିତ, ସଂଗୀତ ନିର୍ଦ୍ଦେଶକ ବରଗଡର ରମେଶ ମହାନନ୍ଦ ଏବଂ କଳାହାଣ୍ଡିର ଜନୈକ ଘୁମୁରା ଗୁରୁ ଏବଂ ଏହି ସମ୍ମାନ ପାଇଥିଲେ । ଭବାନୀପାଟଣା ଯିବାପାଇଁ ସମ୍ବାଦ ତରଫରୁ ଗାଡ଼ିର ବ୍ୟବସ୍ଥା ହୋଇଥିଲା । ମୋ ସହ ଲକ୍ଷ୍ମୀ ହୋତା, ବରଗଡରୁ ରମେଶ ମହାନନ୍ଦ ଏବଂ ଶେଷରେ ବଲାଙ୍ଗିରରୁ ଭାଇ ଅଚ୍ୟୁତ ଏକସଙ୍ଗରେ ଭବାନୀପାଟଣା ଯାତ୍ରା ବାସ୍ତବରେ ଖୁବ୍ ଆମୋଦଦାୟକ ଥିଲା । ଏଥିପାଇଁ ଭବାନୀପାଟଣାର ଷ୍ଟାଡିୟମରେ ସ୍ୱତନ୍ତ୍ରଭାବରେ ମଞ୍ଚସଜ୍ଜା ହୋଇଥିଲା । ସମ୍ବାଦର ମୁଖ୍ୟ ସୌମ୍ୟରଞ୍ଜନ ପଟ୍ଟନାୟକ, ମନ୍ତ୍ରୀ ଦିବ୍ୟଶଙ୍କର ମିଶ୍ର, ନରସିଂହ ମିଶ୍ର ଆଦି ପ୍ରମୁଖ ନେତୃବର୍ଗଙ୍କ ଉପସ୍ଥିତିରେ ମୁଁ ଏହି ସମ୍ମାନ ଗ୍ରହଣ କରିଥିଲି । ଅଭିନୟ, ନାଟକ ନିର୍ଦ୍ଦେଶନା, ସାହିତ୍ୟ ଆଦି କ୍ଷେତ୍ରରେ ମୋର ଲଗାତାର ଉଦ୍ୟମଯୋଗୁଁ ଏଭଳି ସମ୍ମାନ ପାଇଁ ମୋତେ ମନୋନୀତ କରାଯାଇଥିଲା । ଲୁଗାର୍ ପୃଷ୍ଠାରେ ମୋର ଲଗାୟତ ଲେଖା ପ୍ରକାଶନ ମଧ୍ୟ ଅନ୍ୟଏକ କାରଣ ।

କୋଡ଼ିଏରେ କରୋନାଜନିତ ଲକ୍‌ଡାଉନ୍ ପୂର୍ବରୁ ଭୁବନେଶ୍ୱରର ପ୍ରତିଷ୍ଠିତ ନାଟ୍ୟାନୁଷ୍ଠାନ ପଞ୍ଚମ ବେଦ ତରଫରୁ ମୋତେ ପଞ୍ଚମବେଦ ସମ୍ମାନରେ ସମ୍ମାନୀତ କରାଯାଇଥିଲା ରବୀନ୍ଦ୍ର ମଣ୍ଡପରେ । ନାଟ୍ୟକଳା ପ୍ରତି ସମର୍ପିତ ଜୀବନ, ଚିଚିଣ୍ଡା ଧନୁଯାତ୍ରାରେ ସାତବର୍ଷ ଧରି କଂସ ମହାରାଜ ଭୂମିକାରେ ଅଭିନୟ କରିବା, ସଂଖ୍ୟାଧିକ ପୁସ୍ତକ ରଚନା କରି ଓଡ଼ିଶାର ସଂସ୍କୃତିର ବିକାଶକ୍ଷେତ୍ରରେ କାର୍ଯ୍ୟକରିଥିବାରୁ ଏହି ଅନୁଷ୍ଠାନ ମୋ ନାମକୁ ନିର୍ବାଚିତ କରିଥିଲେ । ଏହି ସମ୍ମାନ ଗ୍ରହଣପାଇଁ ମୁଁ ସସ୍ତ୍ରୀକ ଭୁବନେଶ୍ୱର ଯାଇଥିଲି । ବନ୍ଧୁ ପ୍ରଦୀପ ରାୟଙ୍କ ଉପସ୍ଥିତି ଆମ ଦୁହିଁଙ୍କୁ ଆହୁରି ଉଲ୍ଲସିତ କରିଥିଲା । ଗୋଟିଏ ରାତି ଝିଅ ପୁନମ୍‌ର ନଣନ୍ଦ ଘରେ ବିଶ୍ରାମନେଇ ପରଦିନ ଗାଡ଼ିଟିଏ କରି ପୁରୀ, ସାକ୍ଷୀଗୋପାଳ, ଚନ୍ଦ୍ରଭାଗା, ରାମଚଣ୍ଡୀ ଦର୍ଶନ ଏବଂ ଶେଷରେ କୋଣାର୍କର ଭଗ୍ନସ୍ତୁପ ଅବଲୋକନ କରି ପିପିଲି ବାଟରେ ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ କରିଥିଲୁ । ରାତିରେ ବରମୁଣ୍ଡାଯାଇ ବସ୍‌ଯୋଗେ ସମ୍ବଲପୁର ଫେରି ଆସିଥିଲୁ । ପଞ୍ଚମ ବେଦ ସମ୍ମାନ ଗ୍ରହଣସହିତ ସକ୍ଷୀଗୋପୀନାଥ, ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ରାମଚଣ୍ଡୀ ଆଦି ଦେବଦେବୀଙ୍କ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନକରି ନିଜକୁ ଭାଗ୍ୟବାନ ମନେକରିଥିଲୁ । ଏଥିପାଇଁ ସମୁଧୀଙ୍କ ଜୋଇଁ ପ୍ରଦୀପ ପାଣିଗ୍ରାହୀଙ୍କ ହାର୍ଦ୍ଦିକ ଆତିଥ୍ୟ ଆମ ଦୁହିଜଣଙ୍କୁ ଆମୋଦିତ କରିଥିଲା ।

ସେହି ସମୟରେ ରାଉରକେଲାର ମ୍ୟୁଜିକ୍ ସାର୍କଲ ଅନୁଷ୍ଠାନର ମୁଖ୍ୟ ବିଶିଷ୍ଟ ଗାୟିକା ଅଳକା ଚାନ୍ଦ ଫୋନ୍ ଓ ଚିଠି ମାଧ୍ୟରେ ଜଣାଇଲେ ତାଙ୍କ ଅନୁଷ୍ଠାନର ବାର୍ଷିକଉତ୍ସବରେ ସମ୍ବର୍ଦ୍ଧିତ କରିବାପାଇଁ । ତେବେ ଅଚାନକ୍ ଭାବରେ ସମଗ୍ର ଭାରତବର୍ଷରେ ଲକ୍‌ଡାଉନ୍ ଘୋଷଣା ହୋଇଯିବା ପରେ ଏହି କାର୍ଯ୍ୟକ୍ରମଟି ସ୍ଥଗିତ ରହିଥିଲା । ଗତ ଛବିଶ ତାରିଖରେ ରାଉରକେଲା ଯାଇ ଏହି ସମ୍ବର୍ଦ୍ଧନା ଗ୍ରହଣ କରିଥିଲି ।

କଥାରେ ଅଛି ନା, ବୁଣିଥିଲେ ଦାଇ !! ସମଗ୍ର ଜୀବନ ନାଟକ ଓ ସଂସ୍କୃତିକୁ ନେଇ ଅତିବାହିତ ହେବାପରେ ଏଭଳି ସମ୍ମାନରେ ସମ୍ମାନିତହେବା ମୋ ପାଇଁ ଖୁସିର ବିଷୟ । ଏଥିରେ ଆତ୍ମଗର୍ବ ଜଡ଼ିତ ନାହିଁ, ବରଂ ଅଛି ଜୀବନାନୁଭୂତିର ପ୍ରତିଫଳନ, ଅନେକ ଅଶ୍ରୁ ଗଡାଇବାପରେ ଓଠରେ ଚେନାଏ ହସ, ଝଡ଼ର ଅପ୍ରତିହତ ପ୍ରବାହ ପରେ ଶାନ୍ତ, ସ୍ନିଗ୍ଧ ଉଦ୍‌ଭାସ !! ଏହି ଜୀବନଯାତ୍ରାରେ ହରାଇଛି ଅନେକ ଆତ୍ମୀୟଙ୍କୁ, ନାଟ୍ୟକାର ପ୍ରମୋଦ ତ୍ରିପାଠୀଙ୍କୁ ବନ୍ଧୁ କୈଳାସ ତ୍ରିପାଠୀଙ୍କୁ, ଭାଇ ଦିଲୀପ ପାଢ଼ୀଙ୍କୁ, ସହପାଠୀ ଧର୍ମାନନ୍ଦ ମହାନ୍ତିଙ୍କୁ, ଦିଗଦର୍ଶକ ପ୍ରଫେସର ଗୋପାଳ କୃଷ୍ଣ ରଥଙ୍କୁ, ମାର୍ଗଦର୍ଶକ

ଅଭୟ ପାଢ଼ୀବାବୁଙ୍କୁ, ଅଭିନୟ ସମ୍ରାଟ ବିଭୂତି ଭୂଷଣ ପାଢ଼ୀଙ୍କୁ, ଗୁରୁତୁଲ୍ୟ ରାଜେନ୍ଦ୍ର ପ୍ରା ପଣ୍ଡାଙ୍କୁ, ନାଟ୍ୟଶିକ୍ଷୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କୁ, ଏଭଳି ଆହୁରି ଅନେକ ସହୋଦରଙ୍କୁ, ଯେଉଁମାନେ ନଥିଲେ ବି ଅଛନ୍ତି ଅଛନ୍ତି ଭଳି ଲାଗୁଛି, ହୃଦୟର କେଉଁ ଏକ ଅଭ୍ୟନ୍ତରରେ ଘରଟିଏ କରି ରହୁଛନ୍ତି ! ! ଦିନେ ସେମାନେ ଥିଲେ ସହଯାତ୍ରୀ, ମୋ ନାଟ୍ୟଜୀବନର, ସାଂସ୍କୃତିକ ପ୍ରବାହର ! !

ପଞ୍ଚଷଠୀ ବର୍ଷର ଏହି ଜୀବନରେ ତଥାପି ଭରିଛି ତୃଷା, ଏବେ ବି ନାଟକର ନିଶା ଉତୁରି ନାହିଁ, ରାଜୁଦାଦାଙ୍କ ଭଳି ଅଭିନେତାଙ୍କୁ ମଞ୍ଚରେ ଏଇ ବୟସେ ଉତୁରିବା ଦେଖି ହାତଗୋଡ଼ ଥରେଥରେ ବାଏଁବାଏଁ ଲାଗୁଛି । ବ୍ରଜେନ୍ଦ୍ରର ନାଟ୍ୟୋତ୍ସବ ଏବଂ ସତ୍ୟ ବେହେରାଙ୍କ ରଙ୍ଗସମାଗମର ସଫଳତାକୁ ଦେଖି ପରପିଢ଼ୀ ଉପରେ ଆସ୍ଥା ଆସିଯାଇଛି । ଆତୀଶ୍ ଶତପଥିଙ୍କ 'ବୈଷ୍ଣବ ଜନତୋ' ନାଟକ ଦେଖିବାପରେ ବିଶ୍ୱାସର ପୁନର୍ଜନ୍ମ ଘଟିଛି, ଏବେ ବି ଅଭିନୟକୁ ମଞ୍ଚ ଟେକ୍‌ନିକ୍ ଗ୍ରାସ କରିପାରିନାହିଁ, ସେ ବିଶ୍ୱସନୀୟତା ଆସିଯାଇଛି ଅନ୍ତର ଭିତରେ । ନାଟ୍ୟକଳାର ଯୁଗେଯୁଗେ ଜୟକାର ଅଛି, ତାର ଜୟଗାନରେ ଜୀବନାନୁଭୂତି ରସାଣିତ ହୋଇଯାଉ ! !



ବଞ୍ଚିବି ମୁଁ, ବଞ୍ଚିଛି, ସାତସାତ ଥର ଧନୁଯାତ୍ରାରେ କଂସ ମହାରାଜ ରୂପରେ ଇଷ୍ଟଦେବ ଶ୍ରୀକୃଷ୍ଣଙ୍କ ସାନ୍ନିଧ୍ୟ ପାଇ ମରିସାରିଥିଲେ ବି ମୁଁ ବଞ୍ଚିଛି, ଆଉ ସାତଥର ବୁର୍ଡି ନାଟକର ରୁଦ୍ରବାହକ ଭୂମିକାରେ ଅଭିନୟ କରି ଶେଷ ନିଶ୍ୱାସ ତ୍ୟାଗ କରିଛି, ତଥାପି ମୁଁ ବଞ୍ଚିଛି, ଦୁଇଟି ଶବରୁ ଗୋଟିଏରେ ପାଗଳ ଭୂମିକାରେ ଅବତୀର୍ଣ୍ଣ ହୋଇ ସମାଜ ସହ ଲଢ଼ିଲଢ଼ି ମରିଛି, ଏକା ମରିନାହିଁ, ଅନ୍ୟ ଶବ ବନ୍ଧୁ ପ୍ରଦୀପ ରାୟଙ୍କ ସହ ମରିଛି, ତଥାପି ଆମେଦିହେଁ ଏବେ ବି ବଞ୍ଚିଛୁ, କଷ୍ଟୁ ଭୂମିକାରେ ଦେବେଶ୍ୱର ମିଶ୍ରଙ୍କ ଆତ୍ମାରେ ବାସକରି ଦି ଝିଅଙ୍କ କୃତକର୍ମ ଯୋଗୁଁ ବଜ୍ଜାତ୍ ଠିକାଦାର ବୈଦାର୍‌ବାବୁଙ୍କୁ ଟାଙ୍ଗିଆ ଫାସରେ ହାଣି ଟୁକୁରାଟୁକୁରା କରି ଦେଇଥିଲି, ପରେ ସେଇ ଫାର୍ସାରେ ଦି' ଝିଅଙ୍କୁ ବି ହାଣି ମୋ ମୁଣ୍ଡରୁ କଳଙ୍କର କାଳିମାକୁ ସବୁଦିନପାଇଁ ପୋଛିଦେଇଛି ମଥାରୁ, ଏବେ କାରାବାସରେ ମରୁଛି ଅଣ୍ଟାରେ ଲୁହାଶିକୁଳି ବାନ୍ଧି ! ! ଦଳିତ, ନିଷ୍ପେସିତ, ଚିରଅବହେଳିତ ଅଏଁଠା, ପଲ୍‌ଟୁ ମହରଗୁ, ଗହଦୁମାନଙ୍କ ସହ ସମ୍ପର୍କ ବାଢ଼ିଥିଲି, ତାଙ୍କ ପରି ନିଜକୁ ମଧ ଭୁଖା କରି କସ୍ତୁରୀକୁ ଆପଣାର କରି ସମତାର ବାର୍ତ୍ତାଟିଏ ଦେଇଥିଲି, ତାଙ୍କ କଣ୍ଠର ଗୀତ, ପାଦର ନୃତ୍ୟ, କାନ୍ଧରେ ଝୁଲୁଥିବା ବାଦ୍ୟକୁ ଆଣି

ସହରର ରାଜରାସ୍ତାରେ ଥୋଇବାରୁ ଏ ସମାଜ ମୋତେ ସହିଲାନି, ଅସୀମ ନାଁରେ ମୋତେ ବାନ୍ଧି ଦିଆଗଲା ସମାଜଦ୍ରୋହୀ ବୋଲି ମିଥ୍ୟା ଆରୋପ କରି, ଏ ଯାଏଁ ମୋ ରୂପରେ ଅସୀମ କାରାବାସର ଅନ୍ଧାର କୋଠରୀରେ ବଞ୍ଚିଛି, ବେଳେବେଳେ ଜିତେନ୍ଦ୍ରୀୟ ହରିପାଲ ଆଉ ହଳଧର ନାଗଙ୍କ ସ୍ୱପ୍ନ ଦେଖି ବିଳିବିଳାଏ ଅସୀମ, ଭୁଥିଆର୍ ହଥିୟାର୍‌ର କଷ୍ଟ ନିର୍ବିକାର ଭାବରେ ଅସୀମ ନିକଟକୁ ଆସି ତାର ପିଠି ଥାପୁଡାଏ, କହେ, ଏଇ ଦେଖ୍, ମୁଁ ବି ବଞ୍ଚିଛି !!

କାଲ୍ ନାଟକର ବାଲମୁକୁନ୍ଦ ମାତ୍ର ଦେଢ଼ଶହ ଟଙ୍କା ପାଇଁ ଧରାପଡ଼େ, ଅନୟାସରେ ତା'ଠାରୁ ବଞ୍ଚିବାର ହକ୍ ଛଡ଼େଇ ନିଆଯାଏ, ତା' ସ୍ତ୍ରୀ ନିଜ ସ୍ୱାମୀ ପାଇଁ ଅନଶନକରି ଭୋକଶୋଷରେ ଦମ୍ ଛାଡ଼ିଦେଲା, ତଥାପି, ବାଲମୁକୁନ୍ଦ ବଞ୍ଚିଛି । ସେଇଦେଖ, ଦଦରା ଦର୍ପନ୍‌ର ପ୍ରତିଟି କାଚର ଟୁକୁରାରେ ତା' ପାଗଳା ସ୍ୱାମୀ ବଞ୍ଚିଛି, ହାତରେ ଗୋଡ଼ରେ କଡି ଲଗାଇ ଅନ୍ଧାରୁଆ କୋଟରକୁ ଫିଙ୍ଗି ଦେଇଥିଲ ପରା, ଦେଖିଲ ତ ମୋ ସତୀ ସାବିତ୍ରୀ ରୂପକ ସ୍ତ୍ରୀର ଦୁର୍ଗତିନାଶିନୀ ରୂପକୁ, ଗୋଇଠାମାଡ଼ ଖାଇଲ ନା ତାଠାରୁ !! ଏଇ ଦେଖ ମୋ ସ୍ତ୍ରୀ ସହ କେମିତି ମୁଁ ବଞ୍ଚିଛି, ପୁନର୍ଜନ୍ମ ଦେଇଥିବା ଆଦରଣୀୟାର ସାନ୍ନିଧପାଇ କେମିତି ସୁଖର ସୁନ୍ଦର ପୃଥିବୀଟିଏ ଗଢ଼ିବାର ସମର୍ଥ ହୋଇଛି, ଦେଖଦେଖ, ଭଲ କରି ନିରେଖି ଦେଖ !! ରୁଦ୍ରବାହାକ ମୃଦଙ୍ଗ ବଜାଇବଜାଇ ମରିଗଲା, ସମସ୍ତଙ୍କ ଧାରଣା ଥିଲା ରୁଦ୍ର ସହ ସଂସ୍କୃତିର ମଧ ଏକ ତାର ମୃତ୍ୟୁ ଘଟିଗଲା ! ହେଲେ ତାର ଅନ୍ତରାତ୍ମା ଭିତରେ ମୁଁ ବଞ୍ଚିଛି, ସେ ଗଲାପରେ ସଂଚାରମୃଦଙ୍ଗର ଅସହାୟତା ମୋ ଦେଇ ସହିହେଲାନି, ତା କଳା ମଚମଚ ଖରନ୍ ଭିତରେ ମୁଁ ଦେଖିବାକୁ ପାଇଥିଲି ଚକାଡୋଳାଙ୍କ ଆଖିର ଲୁହ, ତା'ର ବାଦିର ପ୍ରତିଟି ଗଣ୍ଠିରେ ମୁଁ ଦେଖିଲି ଶ୍ରୀକୃଷ୍ଣଙ୍କସହ ସହସ୍ର ଗୋପିନୀମାନଙ୍କ ବସନ୍ତରାସ, ଲୁହଲହୁକୁ ସାଥିରେ ଧରି ଉଠେଇ ପକାଇଲି ମୃଦଙ୍ଗକୁ, ଝୁଲାଇ ପକାଇଲି ମୋ ଉଦ୍ଧତକାନ୍ଧରେ, ଦୁଇ ହାତ ପାପୁଲିରେ ଡାୟାଁ ଓ ବାୟାଁକୁ ପିଟିବାରେ ଲାଗିଲି, ଶୁଣିବାକୁ ପାଇଲି ବ୍ରହ୍ମନାଦର ଧ୍ୱନୀ, ଗୋବିନ୍ଦ ଗୋପାଳ, ଗୋବିନ୍ଦ ଗୋପାଳ !! ଏ ସଂସ୍କୃତି ହାତଧରି ଡାକିନେଇଥିଲା ତା' କୋଳକୁ, ମୁଁ ମରିନାହିଁ, ଏବେ ବି ବଞ୍ଚିଛି ।

ତୁ କଣ ଏତେ ଶୀଘ୍ର ନିରାଶିଆ ପାଲଟିଗଲୁରେ ପାଗଳୀ, ସନ୍ତାନଟିଏ ପାଇଁ ମୋତେ ଅବିଶ୍ୱାସ କଲୁ, ସୂର୍ଯ୍ୟ, ଚନ୍ଦ୍ର, ତାରାକୁ ସାକ୍ଷୀ ରଖି ତୋ ହାତଧରି ଡାକିଆଣିଥିଲି କଣ ଏଇଥି ପାଇଁ? ପୁଅଟିଏ ନାହିଁ, ଝିଅଟିଏ ନାହିଁ ବୋଲି ମଥା

ପିଟିପିଟି କାନ୍ଦୁଥିଲୁ ପରା, ତୁ କଣ ଭାବୁଥିଲୁ ଆମ ମାଁ କରମସାନୀ ଆମପ୍ରତି ସହାୟ ହେବେ ନାହିଁ ! ଦେଖିଲୁ ତ, କରମାବେଳେ ବେକରେ ମାନ୍ଦଲ ଝୁଲାଇ ମନ୍ଦାରମାଳା ଗଳାଇ ତୋର ଝୁମେର୍ ସୁରରେ ତାଳମିଳାଇ ବଜାଇଦେଲି ଯେ ତୁ ବି ଠହରି ନ ପାରି ମୋ ମାନ୍ଦଳର ତାଳେତାଳେ ଉନ୍ମତ୍ତନୃତ୍ୟ କରିପକାଇଥିଲୁ, ଆମ ନୃତ୍ୟଗୀତ ଦେଖି ସ୍ୱୟଂ ନିପୁତ୍ରୀକେ ପୁତ୍ରଦାନୀ ମାଁ କରମ୍‌ସାନୀ ବି ନିଜକୁ ଧମ୍ଭାଳି ନପାରି ବରୁଆ ଭିତରେ ପଶି ଭରନି ପାର୍‌ରେ ନାଚିପକାଇଲେ ପରା ! ମନେ ନାହିଁ କି ତୋର ? ହଁ, କାହିଁକି ମନେ ରଖିବୁ, ଦି' ଟାର ମାଁ ହେଲୁଣି ତ ! ! ମୋ ମାଁ କରମସାନୀ ବଞ୍ଚିଛି ତ, ମୁଁ ବି ବଞ୍ଚିଛି, ଜାଣିଲୁ ତ ! !

ସେଇ ଦେଖିରେ ପୁତା, ସେଇ ଦେଖି, ସମ୍ବଲପୁର ଜେଲ୍‌ଖାନା ଛକରେ ମୁଁ ଘୋଡା ଉପରେ ବସିଛି, ଏ ଗୋରାଲୋକେ ସିନା ମୋତେ ମୋର ସମ୍ବଲପୁରକୁ ଛଡ଼ାଇ ନେଇଗଲେ, ହେଲେ ଏବେ ମୋତେ ଦେଖୁଛୁ, ସ୍ୱାଧୀନ ଦେଶର ଲୋକେ ମୋତେ ରାଜା ରୂପରେ, ଦେହରେ ମଖମଲି ଆଲଖାଲା, ପାଦରେ ଗୋଜିଆ ନାଗରା, ଛାତିରେ କବଚ ଲଗାଇ ବର୍ଷକୁବର୍ଷ ପୂଜା କରୁଛନ୍ତି ଶତସହସ୍ର ଫୁଲର ଶ୍ରଦ୍ଧାଞ୍ଜଳି ଅର୍ପଣ କରି, ମୁଁ ଆଉ ସେ ଅସୀରଗଡ଼ର ଭଙ୍ଗା ଦଦରା ଦୁର୍ଗରେ ନାହିଁରେ ପୁଅ, ମୁଁ ବଞ୍ଚିଛି, ସାରା ଭାରତର ପବିତ୍ର ମାଟିର ପ୍ରତିଟି ଅଣୁରେ, ଦିଲ୍ଲୀ ଦରବାରର ସଂଗାମୀ ପୀଠରେ, ହଜାରିବାଗ୍ କାରାବାସର ଅନ୍ଧାରୀ ମୂଲକରେ, ମୁଁ ବଞ୍ଚିଛିରେ ପୁଅ, ମୋତେ ମାରିବାପାଇଁ ଏ ଜଗତରେ ସେମିତି କୌଣସି ଅସ୍ତ୍ର ଜନ୍ମ ନେଇନିରେ ପୁଅ, ମୁଁ ମରିବାକୁ ଇଚ୍ଛା କଲେ ସୁଦ୍ଧା ଏ ଦେଶର ମୁକ୍ତି ପ୍ରେମୀ, ସ୍ୱାଧିନଚେତାମାନେ ମୋତେ ମରିବାକୁ ଦେବେନି, ମୁଁ ବଞ୍ଚିଛିରେ, ମୁଁ ବଞ୍ଚିଛି ! !

ଖାଲି ମୁଁ ବଞ୍ଚି ନାହିଁରେ ଛଏଲୀ, ଏ ଦେଖି, ତୋ ରୂପରେ ଏ ଝିଅ ଟି ବି ବଞ୍ଚିଛି, ତୋ ପାଦର ନୂପୁରକୁ ସିନା ଛିଣ୍ଡାଇ ନେଇଗଲେ ସହରିଆ ଗୁଣ୍ଡାମାନେ, ଅଏଁଠାଚଟା କୁକୁରମାନେ, ଦେହଲୋଲୁପୀ ରାକ୍ଷସମାନେ, ହେଲେ, ଏଇ ଦେଖି, ସେହି ସହରର ରଙ୍ଗୀନ ଗାଲିଚାର ମୋହକୁ ଲାତମାରି ସହ ଚାଲିଆସିଛି ମୋର ପ୍ରିୟ ଗାଁ ମାଟିକୁ ସେଇ ପାଠୋଇ ଝିଅଟି, ଯେଉଁଠି ପାହାଡ଼ ତଳେ, ଡଙ୍ଗର କୋଳେ, ନଈ କୂଳେ ପାଳଛୁଆଁ କୁଟୀରରେ ମୋ ସହ ଏକାକାର ହୋଇଯାଇଛି । ଜାଣିଛୁଲୋ ଛଏଲୀ, ମୁଁ ତାକୁ ଛଏଲୀ ବୋଲି ଡାକିଲେ ସେ 'ଓ' କରୁଛି, ତୋ ଭଳି ନୁପୂରବାନ୍ଧି ମୋ ଘୁଡକାବାଜାରେ ଛମକ୍‌ଛମକ୍ ନାଚୁଛି, କେତେ କିସମର ଗୀତ ଗାଉଛି, ଦୂରରାଇଜକୁ ନାଚିଗାଇଗଲେ ଭଲ ଦୁଇ ପଇସା ମିଳୁଲଛିରେ ଛଏଲୀ । ହେଲେ ଜାଣିଛୁ ନା ଛଏଲୀ,

ଖମନ୍‌କୁ ଦିନେ ଯାଇଥିଲୁଁ ଯେ, ଲୋକେ ପଚାରୁଥିଲେ, ତୋ ଛଏଲୀ କୁଆଡ଼େ ଗଲା, ମୁଁ ସେମାନଙ୍କୁ କିଛି ଉତ୍ତର ଦେଇପାରିଲିନିରେ, ଖାଲି ଭୋ ଭୋ କାନ୍ଦି ପକାଇଲି । ମୋ କାନ୍ଦିବା ଦେଖି ଏଇ ନୂଆଁଛଏଲୀ ଆସି ତା' କାନିରେ ମୋ ଲୁହ ପୋଛିଦେଲା । ଛଏଲୀରେ, ଖାଲି ମୁଁ ବଞ୍ଚିନିରେ, ତୁ ବି ବଞ୍ଚିଛୁ, ଏ ଲୋକ ମୁହଁରେ ତୁ ବି ବଞ୍ଚିଛୁ, ତୋ ଚମ୍ପୂରେ, ଚୌତିଶାରେ, ରସରକେଳିରେ, ଡାଲଖାଇରେ ! ଖାଲି ତୁ ନୁହେଁ, ଏ ଜାତି ବଞ୍ଚିଛିରେ, ଆମ ଘୁଡକା ତ ଆମକୁ ମରି ଦେଉନିରେ, କଣ କରିବୁ କହ ! !

ବଞ୍ଚିବାର କଳା ଏ କଳାକାରମାନଙ୍କୁ ଯେତେ ଜଣା, ଆଉ କାହାକୁ ଜଣା କି ! ! ଭୋକରେ ବି ଏମାନେ ମରନ୍ତିନି, ଶୋଷରେ ତୃଷାର୍ତ୍ତ ହୁଅନ୍ତିନି ପରା ଏମାନେ ! ଅନ୍ୟକୁ ବଞ୍ଚାଇବା ଏମାନଙ୍କ ନୈତିକତା, ସଂସ୍କୃତିକୁ ପରା ଏମାନେ ତୂଳିକାରେ ଆଙ୍କି ଦିଅନ୍ତି ସଞ୍ଜୟ ସାହୁଙ୍କ ଭଳି କଳ୍ପନାର କେନ୍‌ଭାସ୍‌ରେ । ଅକ୍ଷରେଅକ୍ଷରେ, ଶବ୍ଦରେଶବ୍ଦରେ ଦର୍ଶି ଦିଅନ୍ତି କବିତାର ଛାତିରେ ପ୍ରଦୀପ ପଣ୍ଡା, ଦୁର୍ଗା ପଣ୍ଡାଙ୍କ ପରି, ପାଦରେପାଦରେ ଛନ୍ଦ ସୃଷ୍ଟିକରନ୍ତି, ପାଏଁଝଲ୍‌ର ଛୁମ୍‌ଛୁମ୍ ନିନାଦରେ ସଜାଇଦିଅନ୍ତି ବହୁରଙ୍ଗୀ ମୁଦ୍ରାରେ ଦୀପାଳୀ ଚୌଧୁରୀ, ପୁଷ୍ପା ବେହେରାଙ୍କ ଭଳି, କୋଇଲିର କୁହୁତାନପରି ସ୍ୱରେସ୍ୱରେ ଲହରାଇ ଦିଅନ୍ତି ସଂଗୀତର କୁଳୁକୁଳୁ ନାଦରେ କ୍ରିଷ୍ଣା ପଟେଲ, ରୀନା ଦାସ, ପଦ୍ମିନୀ ଦୋରାଙ୍କ ଭଳି, ନଟରାଜଙ୍କ ଡମ୍ବରୁ ପରି ଡିରିଘିଡିଡିରିଘିଡି ତାଳବାଦ୍ୟର ଧ୍ୱନୀତରଙ୍ଗରେ ଶହଶହ ନୃତ୍ୟଶିକ୍ଷାର୍ଥୀଙ୍କୁ ନଚେଇ ପାରୁଥିବା ବାଦ୍ୟକାର ରଞ୍ଜନ ସାହୁ, କୃଷ୍ଣଚନ୍ଦ୍ର ବାଗଙ୍କ ପରି, ଆଙ୍ଗୁଳି ଆଉ ମାତ୍ରାର ସଂଖ୍ୟାସୂଚକ ଇଙ୍ଗିତରେ ଲୋକନୃତ୍ୟକୁ କରାୟତ୍ତ କରିଥିବା ରଞ୍ଜିତ ନାଗ, ମୋହିତ ସ୍ୱାଇଁ, ଆଲୋକ ପଣ୍ଡାଙ୍କ ଭଳି । ଏମାନେ ସମସ୍ତେ ବଞ୍ଚିଛନ୍ତି, ଏମାନଙ୍କୁ ବଞ୍ଚେଇରଖିବ କଳାର ଏଇ ପବିତ୍ର ସମ୍ବଳମାଟି ।

ମୁଁ ବି କଣ ଇଚ୍ଛାମୃତ୍ୟୁକୁ ଆପଣେଇ ପାରୁଛି, ମୁଁ ମରିବାକୁ ଚାହିଁଲେ ମୋ ତଣ୍ଟିଧରି ବଞ୍ଚିବାକୁ ଧମକ ଦେଉଛନ୍ତି ଏ ସିଦ୍ଧାର୍ଥ ପଣ୍ଡାମାନେ, ପ୍ରଦୀପ ପଣ୍ଡାମାନେ, ବୃନ୍ଦାବନ ମିଶ୍ରମାନେ, ଗୌରୀଦାସ, ଗୋବିନ୍ଦ, ରମେଶ, ସତ୍ୟ ଠାକୁର, କମଳ ପଣ୍ଡାମାନେ, ଅନ୍ୟାମାନେ, ଅନନ୍ୟାମାନେ, ଅନନ୍ୟ ସୃଜନଶୀଳ ବ୍ୟକ୍ତିତ୍ୱମାନେ, ସୌଭାଗ୍ୟବନ୍ତ, ଦୁର୍ଗା ପ୍ରସାଦ, ରାମକୃଷ୍ଣ, ସରୋଜ, ମୁକ୍ତକଣ୍ଠ, ଲକ୍ଷ୍ମୀନାରାୟଣମାନେ ! !

କେବେ ମରିବାକୁ ଦେଉନଥିଲେ ରାଜୁଦା, ଉତ୍ତମ ବେହେରା, ବାରୁଦା,

ସନ୍ତୋଷ ମିଶ୍ର, ପ୍ଲାବନୀ, ତୃପ୍ତି, ଅନୁପ, ସଂଚ୍ଛିବ, ନବ, ଅଞ୍ଜଳୀ, ମମତା, ପ୍ରଦୀପମାନେ। ମଞ୍ଚକୁ ଆସ ଆସ ବୋଲି ମଞ୍ଚ ଯାଏଁ ନାଲି ଗାଲିଚା ବିଛାଇ ଦେଉଥିଲେ, ପୁଷ୍ପବୃଷ୍ଟି କରୁଥିଲେ କଚ୍ଛାକାଶର ନୀଳ ବକ୍ଷରୁ, ସ୍ୱାଗତିକା ସଂଗୀତର ଝଙ୍କାରରେ ପ୍ରତିଧ୍ୱନିତ ହୋଇଉଠୁଥିଲା ଗଗନପବନ, ଝଡ଼ର ଈଗଲ୍‌ଭଳି ଆସିଯାଉଥିଲେ ସମସ୍ତେ, ବର୍ଷଣମୁଖର ମେଘଭଳି ସହୋଦରୀମାନେ, ସୂର୍ଯ୍ୟର ଆରପାରି ନଦୀକୁ ନ ପହଞ୍ଚିବା ଯାଏଁ ବୋଧହୁଏ ଏମାନେ ଛାଡ଼ିବେ ନାହିଁ। ମୁଁ ଏଏଏଏଏ ବୋଲି ଡାକିଦେଲେ ଏମାନେ ସମସ୍ତେ ସମସ୍ୱରରେ ଓଓଓଓଓଓ କରୁଥିଲେ।।

ଏମାନେ ସମସ୍ତେ ବଞ୍ଚିଛନ୍ତି ମୋ ନଜରରେ, ମୋ ହୃଦୟରେ, ମୋ ଜୀବନାନୁଭୂତିର ଆଲେଖ୍ୟରେ।।।



ଡ. ଦ୍ୱାରିକାନାଥ ନାୟକ

ପ୍ରକାଶିତ ପୁସ୍ତକ

ନାଟକ : ତମେ ଅଛ ବଲି, ଉଲଗୁଲାନ୍, ସୂର୍ଯ୍ୟର୍ ଆରପାରି ନଦୀଟେ

ପ୍ରବନ୍ଧ : ସଂ – ପଶ୍ଚିମ ଓଡ଼ିଶାର ଲୋକନୃତ୍ୟ

ସଂ – ପଶ୍ଚିମ ଓଡ଼ିଶାର ସାଂସ୍କୃତିକ ବିଭବ

ନିବନ୍ଧ – ସମ୍ବଲପୁରୀ ଲୋକଗୀତରେ ସାଂସ୍କୃତିକ ଜୀବନର ସ୍ୱରୂପ

ରମ୍ୟରଚନା : କହେଲେ ମଲ

ସମ୍ପାଦନା : ହଲଧର ଗ୍ରନ୍ଥାବଳୀ (ପ୍ରଥମ ଭାଗ)

ସମ୍ବଲପୁରୀ ସାହିତ୍ୟ ପତ୍ରିକା : ଭରନି

ଲିଖିତ ନାଟକ : ବିଜୟୀ ଟୀକା, ଦୁଇଟି ଶବ, ସମୟ, ଯେନ୍ତା କାମ୍‌କେ ହେନ୍ତା ଦାମ୍, ଭୁର୍କୁଟୀ, ତମେ ଅଛ ବଲି, ଆତତାୟୀ, ଝଡ଼, ମନ ଖୋଜୁଥାଏ ଯାହା, ସମ୍ବର୍ଦ୍ଧନା, ବଣ୍ଡିର ବା' ଚୁମ୍‌କିର ମାଁ, ବଏରୀ, ନାଟକ ହେବ, ସୂର୍ଯ୍ୟର ଆରପାରି ନଦୀଟେ, ବୟସ ଷାଠିଏ, ୧୮୮୪ : ଅସୀରଗଡ଼ର ବୀରଗାଥା, ନୂଆ ବରଷେ ନୂଆଁ ମନ୍, ରେଡ଼ିଓ ଧାରାବାହିକ : ନୂଆଁ ଜୀବନ୍, ଉକିଆ, ସଂଗୀତ ରୂପକ : ନୂଆଁ ଜନମ୍, ସେବତୀ, ସିଆନୀ, ଆଁଖଲ୍, ସହିନୀ, ଦୃଷ୍ଟିକୋଣ, ଶକ୍ତିମୟୀ ।

ଅଭିନୀତ ନାଟକ : ଅମାବାସ୍ୟାର ଅନ୍ଧକାର, ଯନ୍ତ୍ରଣାର ସ୍ୱର, ଦୁଇଟି ଶବ, ସମୟ, ମୋନାଲିସାର ହସ, ଦର୍ପନ୍, ମୋର ବା' ଦୋଷ କ'ଣ, ଶୂନ୍ୟ ଆକାଶ ଅମର ଆଖି, ପୁଆଣି ଘର, ଛଅ ନଅ ସାତ ନଅ, ଅନାଟକ, କଳଙ୍କିତ ସୂର୍ଯ୍ୟ, ମଞ୍ଚନାୟିକା, ପୁନଶ୍ଚ କାମନା, ସନ୍ୟାସୀ, ନାଟ୍ୟକାରଙ୍କ ମୃତ୍ୟୁ ପାଇଁ ଦାୟୀ କିଏ, ଉଖୀ, ଭୁଖା, ସୁନ୍ଦର ସାଏ, ମାଂସର ଫୁଲ, ଭୁର୍କୁଟୀ, ସରଗ୍ ନରକ୍, ବୁର୍‌ତି, ବାଈଥର ବାଏର୍, ବଏରୀ, ମୁଁ ସୈତାନ କହୁଛି, ପଳାତକ,

ଖେଲୱାଲା, ବିନ୍ଦୁଏ ନିଆଁର ନିଶ୍ୱାସ, କରମସାନୀ, ପିଣ୍ଡଦାନ, ସୀମାବଦ୍ଧ ।

ନିର୍ଦ୍ଦେଶିତ ମଞ୍ଚନାଟକ : ଦୁଇଟି ଶବ, ସମୟ, ମାଂସର ଫୁଲ, ପଳାତକ, ଉଖୀ, ଯେନ୍ତାକାମ୍‌କେ ହେନ୍ତାଦାମ୍, ଭ୍ରୂକୁଟୀ, ମୁଁ ସୈତାନ୍ କହୁଛି, ସୁନ୍ଦର ସାଏ, ବୁର୍‌ତୀ, ମନ ଖୋଜୁଥାଏ ଯାହା, ସରଗ୍ ନରକ୍, ରାମ୍ ରାଏଜ୍, ତମେ ଅଛ ବଲି, କେତେଦୂରେ ମୋର୍ ଆକାଶ, ବାଞ୍ଝାର ବାଏର୍, ବଏରୀ, ଗୁଣ୍ଡା, କାଲ୍, ଭୂତିଆର୍ ହଥୀଆର୍, ଭୁତି, ଉଡଲା ପତର୍ ବୁଡ଼ଲା ଡଙ୍ଗା, ବରୁଆ, ଦଦରା ଦର୍ପନ୍, ମୁଁ ସନାତନ ସନାତନ ସନାତନ, ଖେଲୱାଲା ।

ସମ୍ମାନ/ସମ୍ବର୍ଦ୍ଧନା : ଭାଗିରଥି ସମ୍ମାନ, ବଲାଙ୍ଗିର ପୁସ୍ତକ ମେଳା, ସମ୍ବଲପୁର ପୁସ୍ତକ ମେଳା ସମ୍ମାନ, ହେମଚନ୍ଦ୍ର ଆଚାର୍ଯ୍ୟ ସମ୍ମାନ, ସ୍ୱସ୍ତି ନାଟ୍ୟ ସମ୍ମାନ, ବୈଶାଖୀ ସାହିତ୍ୟ ସମ୍ମାନ, ବୁଦ୍ଧଦେବ ସ୍ମୃତି ସମ୍ମାନ, ମନୋହର ସମ୍ମାନ, ସଏଲ୍‌ତା ସମ୍ମାନ, ଅଭିମନ୍ୟୁ ସାହିତ୍ୟ ସମ୍ମାନ, ଚିତ୍ରଗୁପ୍ତ ସମ୍ମାନ, ଅଦୃଶ୍ୟ ନାଟ୍ୟ ଆଶ୍ରମ, ହିଣ୍ଡାଲକୋ କ୍ଲବ, ମହାବୀର ସଂସ୍କୃତିକ ଅନୁଷ୍ଠାନ, ସମ୍ବଲପୁରୀ ଲେଖକ ପରିଷଦ, ସମ୍ବଲପୁରୀ ଭାଷା ସମ୍ମାନ, ପଞ୍ଚମ ବେଦ ସମ୍ମାନ, ଜୁଗାର୍ ସମ୍ମାନ, ମୁକ୍ତିକାନ୍ତ ନାଟ୍ୟ ସମ୍ମାନ ।

ଅନ୍ୟାନ୍ୟ : ଆକାଶବାଣୀ ବାର୍ଷିକ ପୁରସ୍କାର ଲେଖକ ଭାବରେ –

ମାଟି ପାନିର୍ କଥା, ସେବତୀ, ନୂଆଁ ଜନମ୍, ଆଁଖଲ୍

- ତମେ ଅଛ ବଲି ନାଟକର ନାଟ୍ୟକାର ଭାବରେ ପାଞ୍ଚୋଟି ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ନାଟ୍ୟକାର ଭାବରେ ପୁରସ୍କୃତ ।
- ଶ୍ରେଷ୍ଠ ସଂଗୀତ ନିର୍ଦ୍ଦେଶକ ଭାବରେ ପାଞ୍ଚଥର ପୁରସ୍କୃତ ।
- ସମ୍ବଲପୁର ବିଶ୍ୱବିଦ୍ୟାଳୟ ତରଫରୁ ପିଏଚ.ଡି. ଡିଗ୍ରୀ (୧୯୯୪) ।
- ସମ୍ବଲପୁର ଶୀତଳଷଷ୍ଠୀ ଯାତ୍ରାର ପ୍ରତ୍ୟକ୍ଷଦର୍ଶୀ ଧାରାବିବରଣୀର ଉଦ୍‌ଘୋଷକ – ୧୯୯୬-୨୦୧୭,୨୦୨୦ ।
- ପାଖାପାଖି କୋଡିଏଟି ୟୁ.ଜି.ସି. ସେମିନାରରେ ପ୍ରବନ୍ଧ ପାଠ ।

- ସାତ ବର୍ଷ ଧରି ଚିଚିଣ୍ଡା ଧନୁଯାତ୍ରାରେ କଂସ ମହାରାଜ ଭୂମିକାରେ ଅଭିନୟ (୧୯୮୬-୯୩) ।
- ପ୍ରାକ୍ତନ ସଦସ୍ୟ, ସାହିତ୍ୟ ଏକାଡେମୀ, ନୂଆଁଦିଲ୍ଲୀ ।
- ପ୍ରାକ୍ତନ ସଦସ୍ୟ, ପୂର୍ବାଞ୍ଚଳ ସଂସ୍କୃତି ପରିଷଦ, କୋଲକାତା ।
- ୧୯୮୬ରେ ତ୍ରିଭାନ୍ଦ୍ରମ୍‌ଠାରେ ଆୟୋଜିତ Youth for Peace ସେମିନାରକୁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଜାତୀୟ ସେବା ସଂସ୍ଥା ତରଫରୁ ପ୍ରତିନିଧିତ୍ୱ ।
- ନାଟକ ପ୍ରତିଯୋଗିତାରେ ବିଚାରକ ଭାବରେ ଯୋଗଦାନ : ହିଣ୍ଡାଲକୋ କ୍ଲବ, ବୀର ସୁରେନ୍ଦ୍ରସାଏ ସମ୍ବଲପୁରୀ ନାଟକ ପ୍ରତିଯୋଗିତା, ସ୍ୱସ୍ତି ଝଙ୍କାର ରାଉରକେଲା, ଜାଗରଣ ଦେବଗଡ଼, ସମଲେଶ୍ୱରୀ କ୍ଲବ, ବରଗଡ, ରେମୁଣ୍ଡା, ସୋନପୁର, ରାଉରକେଲା କଲଚରାଲ୍ ଏକାଡେମୀ ।
- ସମ୍ବଲପୁର ଲୋକମହୋତ୍ସବର ସଂଯୋଜକ, ୨୦୧୮ ।





ଡ଼. ଦ୍ୱାରିକାନାଥ ନାୟକ

ଅଧ୍ୟାପକ ଜନାର୍ଦ୍ଦନ ପାଣିଗ୍ରାହୀଙ୍କ ଭଳି କେତେଜଣ ହୃଦୟଗ୍ରାହୀ ବନ୍ଧୁ କେଇ ବର୍ଷ ତଳେ ମୋ ଭିତରେ କଣ ଦେଖିଲେ କେଜାଣି, କହିଥିଲେ, 'ଦାଦା! ତମର ଆତ୍ମଜୀବନୀଟା ଲେଖିପକ, ବଢ଼ିଆ ହେବା!!' ଅର୍ଥାତ୍, ମୋ ଜୀବନଯାତ୍ରାରେ ଏମିତି ଘଟଣାମାନ ଘଟିଯାଇଛି, ଯାହାର ଏକ ଜୀବନବୋଧ ରହିଛି, ସାହିତ୍ୟିକ ମୂଲ୍ୟ ରହିଛି, ଯାହା ମୋଠାରୁ ମୋ ବନ୍ଧୁବର୍ଗ ଅଧିକ ଜାଣିଛନ୍ତି। ମୁଁ ମଧ, ସେମିତି ଏକ ନିରୋଳା ମୁହୂର୍ତ୍ତକୁ ଅପେକ୍ଷା କରିଥିଲି, ଅତୀତକୁ ପୁଣିଥରେ ପ୍ରେମିକା ଭଳି ଭଲପାଇବି, ତୋଳିଆଣିବି ମୋ ଅନ୍ତଃସ୍ଥଳକୁ ଭାଷାରେ, ଶବ୍ଦରେ, ଅଳଙ୍କୃତ ପଦାବଳୀରେ, ରକ୍ତର ରଙ୍ଗରେ ସଜେଇଦେବି ଜୀବନର ରସାଳ କାଳଖଣ୍ଡିକୁ, ନିରସ ନିୟତିସର୍ପର ଦଂଶନକୁ, ମୁହୂର୍ତ୍ତ ମୁହୂର୍ତ୍ତର ଜୀବନାନୁଭୂତିକୁ ବଖାଣିଦେବି ପ୍ରିୟ ପାଠକମାନଙ୍କ ନିକଟରେ। ଆଜି ଏକାନ୍ତବାସର ନିଃସଙ୍ଗବେଳାରେ ସେ ସୁଯୋଗ ପାଇଛି, ପାଣ୍ଡୋରା ବାକ୍ସର ତାଲା ଭାଙ୍ଗି ଖୋଲିଦେବି ତାକୁ ସର୍ବସମ୍ମୁଖରେ, ସେମାନେ ହିଁ ଜାଣିବେ, ସେ ଜୀବନୀ ବାକ୍ସରେ ଅନ୍ଧାରୀ ଶୂନ୍ୟତା ଅଛି ନା ଅଛି ରଙ୍ଗୀନ ପ୍ରଜାପତିର ଚିତ୍ରପଟ!!!



**NIJASWA SANLAPA**

Autobiography by

Dr. Dwarikanath Nayak
Dhanupali, Sambalpur, Odisha - 768005